





ଶ୍ରୀ ଜୟକୃଷ୍ଣ ପଟ୍ଟନାୟକ

ପ୍ରକାଶକ :—
ଓଡ଼ିଶା ସାହିତ୍ୟ ଏକାଡ଼େମୀ
ଭୁବନେଶ୍ବର-୧
ଜିଲ୍ଲା—ପୁରୀ

ମୁଦ୍ରାକର :—
ଶ୍ରୀ ହୃଦୟନାଥ ଷଡ଼ଙ୍ଗୀ
ସତ୍ୟବାଦୀ ପ୍ରେସ
କଟକ-୧

ପ୍ରଥମ ସଂସ୍କରଣ
୧୯୬୪

ମୂଲ୍ୟ ଟ ୧୫୧

# ଅଗ୍ରଲେଖ

"ଶ୍ରୀକୃଷ୍ଣ" ଭାରତର କୋଟି କୋଟି ନରନାରୀଙ୍କର ଆରାଧ୍ୟ ଦେବତା । ତାଙ୍କର ଅଲୌକିକ ଚରିତ, ଅସାଧାରଣ ଗୁଣଗରିମା ଓ ବିଚିତ୍ର କ୍ରିୟାକଳାପ ଆଲୋଚନା କଲେ ମନରେ ପବିତ୍ର ଭାବ ଜାତ ହୁଏ, ଚରିତ୍ରଗଠନ ସହଜସାଧ୍ୟ ହୁଏ ଏବଂ "ସତ୍ୟର ଜୟ"ରେ ବିଶ୍ୱାସ ଜାତ ହୁଏ । ଶ୍ରୀ ଜୟକୃଷ୍ଣ ପଟ୍ଟନାୟକ ଶ୍ରୀକୃଷ୍ଣଙ୍କର ମାନବିକତା ପ୍ରତି ଅଧିକ ଧ୍ୟାନ ଦେଇ ତାଙ୍କ ଜୀବନର ଘଟଣାବଳୀ ଅତ୍ୟନ୍ତ ସରଳ-ତରଳ ଭାଷାରେ ବର୍ଣ୍ଣନା କରିଅଛନ୍ତି । କାବ୍ୟର ପ୍ରକାଣ୍ଡ କଳେବରରୁ ହିଁ ତାଙ୍କର ସାଧନା, ନିଷ୍ଠା ଓ ସାହିତ୍ୟପ୍ରୀତିର ପରିଚୟ ମିଳେ । ଭାଗବତ ପ୍ରଭୃତି ଗ୍ରନ୍ଥରୁ ନାନା ତଥ୍ୟ ସଂଗ୍ରହ କରିଥିଲେ ହେଁ, ସେ ବହୁ ସ୍ଥଳରେ ନିଜର ମୌଳିକ ଦୃଷ୍ଟିକୋଣରୁ 'ଶ୍ରୀକୃଷ୍ଣ'ଙ୍କର ଚରିତ୍ରର ବିଶ୍ଳେଷଣ କରିଅଛନ୍ତି । ତାଙ୍କର ଏହି କାବ୍ୟର ବହୁଳ ପ୍ରସାର ହେଉ, ଏହାହିଁ କାମନା ।

ଭୁବନେଶ୍ୱର
ତା ୧୦ । ୬ । ୭୪



**ସନ୍ତୋଷକୁମାର ସାହୁ**
ସଭାପତି,
ଓଡ଼ିଶା ସାହିତ୍ୟ ଏକାଡେମୀ

# ଦୁଇ ପଦ

ଓଡ଼ିଶା ସାହିତ୍ୟ ଏକାଡେମୀ ସମସାମୟିକ, ଜୀବିତ ଲେଖକମାନଙ୍କର ରଚନାବଳୀ ପ୍ରକାଶକରି ସେମାନଙ୍କୁ ଉତ୍ସାହିତ କରିବା ସଙ୍ଗେ ସଙ୍ଗେ ଓଡ଼ିଆ ଭାଷା ଓ ସାହିତ୍ୟର ସମୃଦ୍ଧି-ସମ୍ପାଦନ ଦିଗରେ ଧ୍ୟାନ ଦେଇଅଛନ୍ତି । ଶ୍ରୀଯୁକ୍ତ ଜୟକୃଷ୍ଣ ପଟ୍ଟନାୟକଙ୍କର "ଶ୍ରୀକୃଷ୍ଣ"ର ବିଷୟବସ୍ତୁ ଅତ୍ୟନ୍ତ ପ୍ରାଚୀନ ହେଲେ ହେଁ ତାଙ୍କର "ଚରିତ୍ର-ଚିତ୍ରଣ" ଶୈଳୀ ଅତ୍ୟନ୍ତ ଅଭିନବ । ମୁଣି, ଯଥା-ସମ୍ଭବ ଚଳନ୍ତି, କଥିତ ଭାଷାରେ ସେ ନିଜର କବିତ୍ୱ ଫୁଟାଇବାକୁ ଯେଉଁ ପ୍ରୟାସ କରିଅଛନ୍ତି, ତାହା ମଧ୍ୟ ପ୍ରଶଂସନୀୟ । ଏ ଦେଶର ଅଗଣିତ ଜନତା ଏପର୍ଯ୍ୟନ୍ତ ଧର୍ମ-ଧାରଣାର ବଶୀଭୂତ । ସେମାନଙ୍କ ପାଇଁ "ଶ୍ରୀକୃଷ୍ଣ"ଙ୍କ ଜୀବନୀକୁ ବୈଜ୍ଞାନିକଭାବରେ ପରିବେଷଣ କରିବାକୁ ଶ୍ରୀ ପଟ୍ଟନାୟକ ଉଦ୍ୟମ କରିଅଛନ୍ତି । ପାଠକମାନଙ୍କ ମଧ୍ୟରେ ଏହା ଆଦୃତ ହେବ ବୋଲି ଆଶା ।

ଗୌରୀକୁମାର ବ୍ରହ୍ମା
ସେକ୍ରେଟାରୀ

# ସୂଚିପତ୍ର

# ମନ୍ତବ୍ୟ

କବି ଶ୍ରୀ ଜୟକୃଷ୍ଣ ପଟ୍ଟନାୟକ 'ଶ୍ରୀକୃଷ୍ଣ' ନାମକ ଏ ବିରାଟ ଗ୍ରନ୍ଥ ତାଙ୍କ ଚିରଆଦୃତ ସିଗରେ ପ୍ରଣୟନପୂର୍ବକ ଓଡ଼ିଆ ଜାତି ଆଗରେ ଅତ୍ୟନ୍ତ ମହାର୍ଘ ସମ୍ଭାର ବାଢ଼ି ଧନ୍ୟ ହୋଇଅଛନ୍ତି । କୃଷ୍ଣଚରିତ-ଗାନର ଅପୂର୍ବ ମହିମା ରହିଅଛି । "କୃଷ୍ଣ ନାମରେ ପାପ-କ୍ଷୟ ଯେତେ; କରି ନ ପାରେ ପାପୀ ପାପ ତେତେ"—ଏହା କବିସୁଲଭ ଅତିଶୟୋକ୍ତି ନୁହେଁ, ବରଂ ମୁନି ଋଷି ଓ ଭକ୍ତଜନମାନଙ୍କ ଜୀବନରେ ପ୍ରତ୍ୟକ୍ଷୋପଲବ୍ଧ ପରମ ସତ୍ୟ । ଓଡ଼ିଆ ସାହିତ୍ୟରେ କୃଷ୍ଣଚରିତମୂଳକ ଅସଂଖ୍ୟ କାବ୍ୟକବିତା ଆଗରୁ ଲିଖିତ ହୋଇଅଛି ଏବଂ ଉତ୍କଳୀୟ ନରନାରୀଙ୍କ କଣ୍ଠରେ ସେସବୁର ଦିବ୍ୟ ସ୍ୱରନା ନିତ୍ୟ ଉଚ୍ଚାରିତ ହେଉଅଛି । ଶ୍ରୀ ଜୟକୃଷ୍ଣ ପଟ୍ଟନାୟକ ପାଶ୍ଚାତ୍ୟ ଶିକ୍ଷାର ପ୍ରସାର ଫଳରୁ ଏ ଦେଶରେ ବ୍ୟାପିଯାଉଥିବା ଭଗବଦ୍ ବିମୁଖତାକୁ ନିବାରଣ କରିବା ନିମନ୍ତେ ତାଙ୍କ ଲେଖନୀର ସେ ଭୁବନପାବନ କୃଷ୍ଣ-ଚରିତରୂପକ ଅମନ୍ଦ ମନ୍ଦାକିନୀ ପ୍ରବାହିତ କରିବାକୁ ପ୍ରଚେଷ୍ଟିତ ହୋଇ-ଅଛନ୍ତି । ଏ ଗ୍ରନ୍ଥର କଥାବସ୍ତୁ ସଂକଳନ କରିବା ନିମନ୍ତେ ତାଙ୍କୁ ନିଶ୍ଚୟ ବହୁ ଅତନ୍ଦ୍ରିତ ଶ୍ରମ କରିବାକୁ ପଡ଼ିଅଛି ଏବଂ ବହୁଶାସ୍ତ୍ରଦର୍ଶିତା ଉପଲବ୍ଧି କରିବାକୁ ହୋଇଅଛି । ଏ ଶ୍ରମକାତର ଯୁଗରେ ସେ ଓଡ଼ିଆ ନରନାରୀଙ୍କ ଆଗରେ ସାର୍ଥକ ଶ୍ରମର ସମୁଜ୍ଜ୍ୱଳ ଆଦର୍ଶ ଉପସ୍ଥାପିତ କରି ଧନ୍ୟ ପଦବୀ ଲାଭ କରିଅଛନ୍ତି । ବହୁ ପୁଣ୍ୟରେ କୃଷ୍ଣଚରିତକୁ ଲିଖିତ ଆକାର ଦେବା ପାଇଁ ସେ ଯେଉଁ ଅବକାଶ ଲାଭ କରିଅଛନ୍ତି, ସେ ଅବକାଶ ଏକାନ୍ତ ସ୍ପୃହଣୀୟ । ଓଡ଼ିଶାର ଆଧୁନିକ କବିମାନଙ୍କ ମଧ୍ୟରେ ଏତେ ବିରାଟ ଆକାରର କୃଷ୍ଣଚରିତମୂଳକ କାବ୍ୟ ଆଉ କେହି ଲେଖିବାର ପ୍ରୟାସ କରିଥିବା ମୋତେ ଜଣା ନାହିଁ । ମୁଁ ପଟ୍ଟନାୟକଙ୍କୁ ତାଙ୍କ ଅପୂର୍ବ କୃତିତ୍ୱ ଯୋଗୁଁ ଆନ୍ତରିକ ଅଭିନନ୍ଦନ କରୁଅଛି । ଏ ଗ୍ରନ୍ଥର ପ୍ରଚାର ଫଳରେ ସେ ଅବଶ୍ୟ ଅଭିବନ୍ଦିତ ହେବେ ।

ଗ୍ରନ୍ଥର ବିରାଟ ଆକାର ସତ୍ତ୍ୱେ କବି ଦ୍ୱାରକାଲୀଳାରେ ହାତ ଦେବାକୁ କ୍ଷମ ହୋଇ ପାରିନାହାନ୍ତି । ମୋର ବିଶ୍ୱାସ, ସେ ଲୀଳାକୁ ଲିପିବଦ୍ଧ କରିବାର ପରିକଳ୍ପନା ତାଙ୍କର ରହିଅଛି ଓ ଏହି ଗ୍ରନ୍ଥକୁ ପୂର୍ଣ୍ଣାଙ୍ଗ କରିବା ପାଇଁ ମଧ୍ୟ ତାଙ୍କୁ ମୁଁ ଅନୁରୋଧ କରୁଅଛି ।

ଗ୍ରନ୍ଥର ପ୍ରଣୟନ ପରେ ମୁଦ୍ରଣ କବିଙ୍କ ପକ୍ଷରେ କଠିନ ସମସ୍ୟା ହେବାର ସମ୍ଭାବନା ରହିଅଛି । ତଥାପି କୌଣସି ପ୍ରତ୍ୟବାୟ ଦୁରତିକ୍ରମ୍ୟ ନୁହେ ।

ମୋର ଭରସା ଅଛି, କବି ଗ୍ରାହକ, ରାଜପୁରୁଷ ତଥା ଧନିକ ପ୍ରକାଶନ ସଂସ୍ଥାମାନଙ୍କ ସୁଦୃଷ୍ଟି ଆକର୍ଷଣ କରିବେ ଓ ତାଙ୍କ ବହୁଶ୍ରମପ୍ରସୂତ ଏହି 'ଶ୍ରୀକୃଷ୍ଣ' ଗ୍ରନ୍ଥ ଲୋକଲୋଚନ ଗୋଚରକୁ ଆସିବାରେ ବିଳମ୍ବ ହେବ ନାହିଁ ।

ତା ୨୧ । ୭ । ୧୯୫୯
କଳିଙ୍ଗ ଭାରତୀ ଭବନ,
କଟକ

ଶ୍ରୀ ବିଚ୍ଛନ୍ଦଚରଣ ପଟ୍ଟନାୟକ
ପ୍ରତିଷ୍ଠାତା-ସଭାପତି,
କଳିଙ୍ଗ-ଭାରତୀ ଓ
ଉତ୍କଳ-ଗ୍ରନ୍ଥ-ସାହିତ୍ୟ ସମାଜ

# ଅଭିମତ

କବୀଶ୍ୱର ବ୍ୟାସଦେବ ମହାଭାରତରେ ଯେତେ ଚରିତ୍ର ସୃଷ୍ଟି କରିଛନ୍ତି, ସେମାନଙ୍କର ସଂଖ୍ୟା ଯେପରି ବ୍ୟାପକ, ପୁରୁଷ ସ୍ତ୍ରୀ, ବୃଦ୍ଧ ବୃଦ୍ଧା, ବାଳକ ବାଳିକା, ଯୁବକ ଯୁବତୀ, ସାନ ବଡ଼ ପ୍ରତ୍ୟେକ ଚରିତ୍ର ସେହିପରି ସ୍ୱତନ୍ତ୍ର ଓ ମହୀୟାନ୍। କିଏ ଧର୍ମରାଜ, କିଏ ସବ୍ୟସାଚୀ, କିଏ ମହାବୀର, କିଏ ମହାଦାନୀ, ଆଉ କିଏ ମହାଜ୍ଞାନୀ । କାହାର ହିଂସା ବିଶ୍ୱଧ୍ୱଂସୀ, ଆଉ କାହାର କ୍ଷମା ଜଗତର ଆଧାର । କାହାର ଲୋଭ ବିଶ୍ୱଗ୍ରାସୀ, ଆଉ କାହାର ତ୍ୟାଗ ଅତୁଳନୀୟ । ତେବେ ଏହି ଅସଂଖ୍ୟ ଚରିତ୍ର ଭିତରେ ଗୋଟିଏ ଚରିତ୍ର ସେ ସୃଷ୍ଟି କରିଛନ୍ତି । ସେ ଚରିତ୍ରଟି ହେଲା ମହାଭାରତ ଯୁଦ୍ଧରେ ରଥର ଚାଳକ—ସାରଥି । ଚରିତ୍ରସୃଷ୍ଟିର ପୂର୍ଣ୍ଣତା ଆଣିବା ପାଇଁ ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଶ୍ରୀକୃଷ୍ଣ-ଚରିତ୍ର ଯେପରି ନିପୁଣ ଭାବରେ ଚର୍ଚିତ ହୋଇଛି, ସେଥିରେ ସେ କେବଳ ଅତିମାନବ କିମ୍ବା ମହାମାନବ ନୁହନ୍ତି, ମନୁଷ୍ୟ ଶରୀରରେ ସ୍ୱୟଂ ପରଂବ୍ରହ୍ମ ଭଗବାନଙ୍କର ଅବତାରରୂପେ ଚିତ୍ରିତ । ଶ୍ରୀକୃଷ୍ଣ-ଚରିତ୍ରକୁ ଖାଲି ଶ୍ରୀମଦ୍ ଭଗବଦ୍ ଗୀତା ଏହି ଭାବରେ ପ୍ରତିପନ୍ନ କରି ନାହିଁ, କବୀଶ୍ୱର-ତନୁଜ ଶୁକ ମହାମୁନି ମଧ୍ୟ ଶ୍ରୀମଦ୍ ଭାଗବତ ଗ୍ରନ୍ଥରେ "ଶ୍ରୀକୃଷ୍ଣଙ୍କୁ ସ୍ୱୟଂ ଭଗବାନ୍" କରି ଧରିଛନ୍ତି ।

ଅନ୍ୟାନ୍ୟ ଭାରତୀୟ ଆଞ୍ଚଳିକ ସାହିତ୍ୟ ପରି ଓଡ଼ିଆରେ ମଧ୍ୟ ଅତିବଡ଼ ଜଗନ୍ନାଥ ଦାସଙ୍କଠାରୁ ଆରମ୍ଭ କରି ଦୀନକୃଷ୍ଣ, ଉପେନ୍ଦ୍ର, ଅଭିମନ୍ୟୁ, ଭକ୍ତଚରଣ, କବିସୂର୍ଯ୍ୟ ପ୍ରମୁଖ ବହୁ ବୈଷ୍ଣବ କବିଙ୍କ ଲେଖନୀରେ ଏହି ବିଶ୍ୱଚରିତ୍ରର ଆରାଧନା ବିଚିତ୍ର ଛନ୍ଦୋବଦ୍ଧ ଭାଷା ଓ ରସଭଙ୍ଗୀରେ ପ୍ରକାଶିତ । ଆଜି ସୁଦ୍ଧା ସେ ଚରିତ୍ର ନିଃଶେଷ ହୋଇ ନାହିଁ ।

ଶ୍ରୀ ଜୟକୃଷ୍ଣ ପଟ୍ଟନାୟକ ସର୍ବଜନବୋଧଗମ୍ୟ ସରଳ ଭାଷାରେ ସେହି ମହାନ୍ ଚରିତ୍ରର ପୂର୍ଣ୍ଣ ରୂପ ପ୍ରକାଶ ନିମିତ୍ତ ଏକ ବିରାଟ ଉଦ୍ୟମ

କରିଛନ୍ତି । ତାଙ୍କର ଏହି ପୁରାଣ କଥା ସମ୍ପୂର୍ଣ୍ଣ ହୋଇଛି ବାଂଟିତ ଖଣ୍ଡରେ । କୃଷ୍ଣଜନ୍ମ ତଥା ବାଲ୍ୟଲୀଳାଠାରୁ ଆରମ୍ଭ କରି ସ୍ୱର୍ଗାରୋହଣରେ ଏହା ସମାପ୍ତ । ବିଷୟବସ୍ତୁ ଓ ଘଟଣା ଅନୁରୂପ ଭାଷାର ଶୃଙ୍ଖଳା ମାଧ୍ୟମରେ ରଚନାକୁ ଜୀବନ୍ତ କରି ଫୁଟାଇବା ଦିଗରେ କବି ସହଜ ପ୍ରୟାସ କରିଛନ୍ତି; ଫଳରେ ତାହା ପାଠକର ହୃଦୟଗ୍ରାହ୍ୟ ହୋଇଛି । ବିଶେଷ କରି ବହୁ ସ୍ଥାନରେ କଥିତ ଭାଷାର ବ୍ୟବହାର ଏହାକୁ ଜନପ୍ରିୟ କରିବାର ଯୋଗ୍ୟତା ଆଣିଦେଇଛି । ଯେଉଁ ଶ୍ରୀକୃଷ୍ଣ ବାଲ୍ୟ, କୈଶୋର ଓ ଯୌବନ କାଳରେ ବାତ୍ସଲ୍ୟ ଓ ପ୍ରେମର ପ୍ରତିମୂର୍ତ୍ତି, ସେହି ପୁଣି ପ୍ରୌଢ଼ିରେ ଶାସକ ଆସନରେ ପ୍ରତିଷ୍ଠିତ ହୋଇ ପ୍ରଜାପାଳନରେ ଚରମ ଆଦର୍ଶ ଦେଖାଇଛନ୍ତି । ପୁଣି ନିଜ ବଂଶର ଧ୍ୱଂସସାଧନ କରି ମଧ୍ୟ ଏକ ନିଃସଙ୍ଗ ଆସକ୍ତିଶୂନ୍ୟ ଜୀବନାଦର୍ଶ ଫୁଟାଇଛନ୍ତି । ସେହିପରି ମହାଭାରତ ଯୁଦ୍ଧରେ ଶ୍ରୀମଦ୍ ଭଗବଦ୍ ଗୀତାରେ ଚୂଡ଼ାନ୍ତ ଜୀବନଦର୍ଶନ ବାଢ଼ିଅଛନ୍ତି । କବି ଶ୍ରୀ ଜୟକୃଷ୍ଣ ପଟ୍ଟନାୟକ ଶ୍ରୀକୃଷ୍ଣଙ୍କର ସମୁଦାୟ ରୂପ ତାଙ୍କର ଏହି ମହାନ୍ କୃତି ମଧ୍ୟରେ ପ୍ରକାଶ କରିବାକୁ ଯେଉଁ ଉଦ୍ୟମ କରିଛନ୍ତି, ଓଡ଼ିଆ ସାହିତ୍ୟରେ ତାହା ଅନନ୍ୟ । କବିଙ୍କର ଏହି ଗ୍ରନ୍ଥ ସଠିକ ପ୍ରକାଶିତ ହେଲେ ଜାତିର ଚରିତ୍ର ଓ ମାନ ଗଠନ ଦିଗରେ ଯେ ପରମ କଲ୍ୟାଣ ସାଧନ କରିବ, ଏହା ନିଃସନ୍ଦେହରେ କୁହାଯାଇପାରେ । ମୁଁ ଏହି ଗ୍ରନ୍ଥର ଆଶୁ ପ୍ରକାଶ କାମନା କରୁଛି ଓ କବି ଶ୍ରୀ ପଟ୍ଟନାୟକଙ୍କୁ ଦୀର୍ଘଜୀବନ ଲାଭ କରି ଜାତୀୟ ସାହିତ୍ୟର ଉନ୍ନତିକଳ୍ପେ ନିଜକୁ ନିୟୋଜିତ କରିବା ପାଇଁ ଆନ୍ତରିକ ଶୁଭେଚ୍ଛା ଜଣାଉଛି ।

**କାଳନ୍ଦୀଚରଣ ପାଣିଗ୍ରାହୀ**
ତା ୮ । ୪ । ୭୨

---

# ମୋ ମନକଥା

ଶ୍ରୀକୃଷ୍ଣଙ୍କୁ ଓ ତାଙ୍କର ଦେବଶକ୍ତିକୁ ଜାଣିବା କେବଳ ହିନ୍ଦୁ-ଜଗତରେ ସୀମିତ ନୁହେଁ; ସମଗ୍ର ପୃଥିବୀ ଶ୍ରୀକୃଷ୍ଣଙ୍କୁ ଭଲ ଭାବରେ ଜାଣେ ଓ ତାଙ୍କର ଶକ୍ତିକୁ ପୂଜା କରେ । ତାଙ୍କର ଅସାଧାରଣ ଜ୍ଞାନ ଓ ଶକ୍ତି ହିନ୍ଦୁଜଗତରେ ତାଙ୍କ ଦେବତ୍ୱର ଏକ ନିର୍ଭୁଲ ସଂକେତ ।

କେଉଁ ଯୁଗରେ ସେ ଭାରତରେ ଅବତୀର୍ଣ୍ଣ ହୋଇଥିଲେ ! ତଥାପି ଆଜି ସେ ଘରେ ଘରେ ପୂଜିତ, ବନ୍ଦିତ—ପୁଣି ଦେବତା ବା ନରଦେହ-ଧାରୀ ଭଗବାନଙ୍କ ରୂପରେ । ଏ ନାସ୍ତିକ ବା ନିରୀଶ୍ୱର ଯୁଗରେ ମଧ୍ୟ ସେ ସର୍ବଶକ୍ତିମାନ ଭଗବାନ । ସେ ହିଁ ଏ ଯୁଗରେ ଓ ସେ ଯୁଗରେ ଏକମାତ୍ର ଉଚ୍ଚତମ ପରମ ଆଦର୍ଶ ଓ ଉପାସ୍ୟ ।

କେହି କେହି ନାସ୍ତିକ ତାଙ୍କର ସବୁ ଭଲ ଗୁଣ ଓ ଶକ୍ତିକୁ ନିକିତିର ଗୋଟାଏ ପାଖରେ ଏବଂ ରାଧାଙ୍କ ସହିତ ତାଙ୍କର ଅବ୍ୟକ୍ତ ଲୀଳାକୁ ଅନ୍ୟ ପାଖରେ ଥୋଇ, ତଉଲି ତାଙ୍କୁ ମାନବ, ଖାଲି ଭଣ୍ଡମାନବ ବୋଲି କହି ନିନ୍ଦା କରନ୍ତି । ଏହାଦ୍ୱାରା ଧର୍ମର ଗ୍ଲାନି ଘଟାଇ ପୁଣି ତାଙ୍କର ଅବତାରକୁ ଅପେକ୍ଷା ବା ନିମନ୍ତ୍ରଣ କରିବା ଛଡ଼ା ଆଉ କ'ଣ ହୋଇପାରେ ? ଏଇ ନିନ୍ଦାରେ ତ ପରମ ଆସ୍ତିକତାର ପ୍ରଚାର ।

ଏଇ ନିନ୍ଦା ଶୁଣି ଯଦି ତାଙ୍କର ଆବିର୍ଭାବ ହୁଅନ୍ତା, ତାହାହେଲେ ବା ଧରଣୀରୁ ଅନ୍ୟାୟ ଅଧର୍ମ ଦୂର ହୁଅନ୍ତା । ତା ନ ହେଲେ ଦୁଃଖୀର ଆଉ ଆଶା ଭରସା ନାହିଁ । ତାଙ୍କର ଗୀତୋକ୍ତ ତ ତାଙ୍କୁ ଆଉ ନୂଆ ନୁହେଁ ; ତେଣୁ ସେ ବୋଧହୁଏ ଗୀତାପାଠକୁ କାନଡେରି ନାହାନ୍ତି ! ସେଥିପାଇଁ ବହୁ ଜାତବେଳୁ ଶୁଣାଯାଏ । ସେ ଯେଉଁ ଗୀତା ଶୁଣାଇ ଯାଇଛନ୍ତି, ତାକୁ ହିଁ ପଢ଼ିଲେ, ଶୁଣିଲେ ବା ଶୁଣାଇଲେ ପୃଥିବୀରୁ ସବୁ ପାପତାପ ଯେ ନଷ୍ଟ ହେବ ଏବଂ ତାଙ୍କର ପୁନରାବିର୍ଭାବ ଆବଶ୍ୟକ ହେବ ନାହିଁ, ଏ'କଥାଟିକୁ ପ୍ରାୟ ସମସ୍ତେ ଭୁଲି ଯାଉଛନ୍ତି ।

ମୁଁ ତାଙ୍କର ଅନୁଗ୍ରହ ବା ନିର୍ଦ୍ଦେଶ ପାଇ ତାଙ୍କର ଗୁଣ ଗାଇବାକୁ ପ୍ରୟାସ କରୁଛି ମାତ୍ର । କିନ୍ତୁ ସେ ଦୟା ନ କଲେ ଏହା ଯେ କୌଣସି ପାର୍ଥିବ ଲୋକ ପକ୍ଷରେ ଅସମ୍ଭବ । ବ୍ୟାସଦେବ ପାରିଥିଲେ, କାରଣ ତାଙ୍କଠାରେ ଶ୍ରୀକୃଷ୍ଣଙ୍କର ଅପାର କରୁଣା ଥିଲା । ଇତି ।

ଦୀନ ଲେଖକ

# ଭାରତୀ ବନ୍ଦନା

ଜନନି ଭାରତି ବୀଣାବାଦପ୍ରିୟି
ତୋ ଦେବତା ତୁମ୍ଭ ନ ପୂଜ ଏକା,
କହିଦେ କବିକୁ ପୂଜୁ ସେ ସଭକ୍ତି
ପୂଜିବା ବିଧାନ ଅଛୁଟେ ଦେଖା ।
କାହିଁ ବଇକୁଣ୍ଠ କାହିଁ ବା ଧରଣୀ
କପରି ତାଙ୍କର ପାଇବ ଭେଟ ?
ତୋର କୃପା ବିନା ଏ ପାପ ସଂସାରେ
ଭକତର ମୁଣ୍ଡ ହୋଇଲା ହେଠ ।
ବଜାଉ ତୁ ବୀଣା ସେଇ ସ୍ୱର କିବା
ତୋର ଦେବତାର ପୂଜୋପଚାର ?
କିବା ତା ସଙ୍ଗକୁ ଲୋଡ଼ା ହୁଅଇ ଗୋ
ନିର୍ମଳ ଚରିତ୍ର ଶୁଦ୍ଧ ଆଚାର ?
ତୁ ତ କବିକଣ୍ଠେ ପାରୁ ଲୋ ଆସନ
ରମାଙ୍କୁ କରିଣ ଦୁର୍ଲଭ୍ୟ ମାନ,
କମଳା କି ବିଷ୍ଣୁ ପାଖେ ପାଖେ ରହି
ଶୁଣିଲେ କାହିଁ ତୋ ବାଜଣା ଗାନ ।
ତୁ ଯେବେ ବଜାଉ ବିଷ୍ଣୁଙ୍କ ସମୀପେ
ତୁଣ୍ଡ଼ କି ପଳାଏ ଘର ଦୁଆର ?
ଆଉ କି ପାଏନା ଭିକ୍ଷୁ ଥାନ୍ତିଏ
ଆଶ୍ରୟ କରଇ ହାଡ଼-କୁଆର ।

ଜଗତର ଲୋକ ସତେ ଭଲ ଲାଗେ ତାକୁ
ଚଣ୍ଡାଳ ଘରର ମାଛ ଆଦୃର ?
ତୋ ଗୀତ ବାଜଣା ତୋ ରୂପ ଧରମ
ଆଖି କାନ ମୋହେ ନାହିଁ କି ତାର ?
ବାଲମିକ ହେଲେ ଋଷି ନାମୋଚ୍ଚାର,
ବ୍ୟାସ ହେଲେ ମୁନି ତୋ ଗୁଣ ଗାଇ,
କେତେ ମହା ମହା ପତି ହେଲେ ସବୁ
ତୋହର ଦେବତା ରୂପକୁ ଧାୟି ।
ଯେଇ ନାମ ମୋତେ କହିଦେ ଜନନି
ସେଇ ରୂପଟିକୁ ଦେଏ ଦେଖାଇ,
ତୋ ବିଦ୍ୟାବୁଦ୍ଧିରୁ ଦେଏ କଣିକାଏ
ତାଙ୍କ ପୂଜାବିଧି ଦିଏ ଶିଖାଇ ।
ଯୁଗେ ଯୁଗେ ଗାଇ ସେ ସୁନ୍ଦର ଗୁଣ
କେବେହେଁ ତ ହେଉ ନାହିଁ ପୁରୁଣା,
କାଳେ କାଳେ ଚନ୍ଦ୍ର ସେ ରୂପ-ମାଧୁରୀ
ହୃଦମା ଢାଳିବେ ହେଉନ ଊଣା ।
ସବୁବେଳେ ସେଇ ମଧୁର ନାଆଁଟି
ଶୁଣଇ କାନକୁ ବଇଁଶୀ ପରି,
ଧରଣୀ ଉପରେ କୋଉ ଧରମରେ
କଏ ଅଛି ଜଣେ ସେ ନାଁ ନ ଧରି ?
ଦୃଢ଼ ବିସ୍ତୃ-ବକ୍ଷ ଥରୁଛି ମୋ କକ୍ଷ
କର ଲୋକ ଆଲୁଅ ଉଜ୍ଜ୍ୱଳେ ହସି,
ଗାଇ ଦେଇ ଯାଅ ପତି ଗୁଣରାଶି
ମୋହର ଏ ମୂକ କଣ୍ଠରେ ବସି ।
ଗାଇ ସାମ ବେଦ ଦମିବ ବଳକୁ
ଗୀତାରେ ଜଣିବ ମହାଭାରତ,
ବକ ହତ ଦେଖି ରାମାୟଣ ଗାଇ
ମୁହିତ କରିବ ହତ ଆହତ ।

ମାଗିନେବ ଥରେ   'ଗୀତରେ ଗୀତରେ
ଚକ୍ଷୁ-ସୀମା-ଶକ୍ତି ବଢ଼ିବ ମୋର,
ଦେଖି ବିଶ୍ୱରୂପ   କ୍ଷୁଦ୍ର ଲୋଚନରେ
ମୂକତା ହୋଇବ କୃପାରୁ ତୋର ।
ମରାଳେ ତ ବସୁ   ବସ ମୋର କଣ୍ଠେ
ପକ୍ଷୀପିଠିରୁ କି ମୋ କଣ୍ଠ ମିଠା ?
ହଂସ ହଂସ କଲେ   ଉଡ଼ଇ ପବନେ
ଗୃଲେଁ ଧରଣୀରେ ନୁହେ ତ ମିଛ ।
କିନ୍ତୁ ମୋ ସଙ୍ଗୀତ   ଯିବ ସବୁ ଆଡ଼େ
ଅନଳେ ନିର୍ଭୟେ ପଶିବ ଯାଇଁ,
ଧରଣୀ-ଦେହରେ   ସବୁଠି ସର୍ବଦା
ଜ୍ଞାନ-ଆଲୁଅକୁ ଦେବ ଜଳାଇ ।
କହିଦେ ଜନନି   କୋଉ ବାହନରେ
ବସିବୁ ତୁ ରସି, ବାଛିନେ ଥରେ,
ବୃଢ଼ା ମରାଳର,   ତପସ୍ୱୀ ଭୃଣ୍ଡରେ,
ଯୋଗୀ ଦର୍ଶନରେ କି ମୋ କଣ୍ଠରେ ?
ମହ୍ଲାର ରାଗରେ   ବରଷେ ବାରଦ
ଦୀପକେ ଜଳଇ କଦଳୀ ଗଛ,
ଭୈରବୀ ରାଗରେ   ରୋଗ ହଟିଯାଏ
ଅଚଳ ସଚଳ ହୁଏ ପ୍ରତ୍ୟକ୍ଷ ।
ମାଲକୋଶ ରାଗେ   ମୂର୍ଚ୍ଛା ଯାଏ ହଙ୍ଗି
ମୂର୍ଚ୍ଛିବା ପାରଇ ସେଇ ନାଁ ଚଳ,
ନିରାଟ ଟାଣୁଆ   ମୁଗୁନି ପଥର
ପାଣି ହୋଇ ବହିଯାଏ ତରଳ ।
ଲଳିତ କାମୋଦୀ   ନାଶ କରେ ପୀଡ଼ା
ମୁଣ୍ଡବଥା, ମୋହ ଆବର ଶୋକ,
ତୋର କୃପା ବିନା   କିଏ ବା ଗାଇବ
ସଂସାରେ ଏପରି ଅଛି କି ଲୋକ ?

ବସନ୍ତ ରାଗରେ ଗାଇଲେ ସଙ୍ଗୀତ
ନିଦ୍ରାମଗ୍ନ ଚକ୍ଷୁ ହୁଏ ଉନ୍ମୁଦ୍ରିତ,
ଶୁଖିଲା ଗଛରେ ସେ ରାଗ ବାଜିଲେ
ମନକୁ ହୁଅଇ ସେ ପଲ୍ଲବିତ ।
ଯୋଡ଼ ରାଗେ ତୋର ଆଦର ଲେ ବେଶୀ
କହିଦେ ଲେଖିବି ସେଇ ରାଗରେ,
ଗାଇବ ଗାୟକ ତୋ ମନ ମନାଇ
ବାଇବୁ ତୁ ବୀଣା ସେଇ ରାଗରେ ।
ତମସା ତଟକୁ କବା ନୈବିତକେ
ପାରିବି ନ ଯାଇ ଅତ୍ତ ଚରିବ,
କହିଦେ ଜନନି ଜଞ୍ଜାଳିଆ ଘରେ
କିବା ବସି ତୋର ସେବା କରିବ ।
ସେଇ ହେବା ବଳେ ପାରିବ ମୁଁ ଲେଖି
ଶ୍ରୀକୃଷ୍ଣ-ଚରିତ ସହିତ ଗୁଣ,
ତୋର ବୀଣାସ୍ୱର ସଙ୍ଗେ ମିଶିଯିବା—
ଯାଇଁ ତା ସଙ୍ଗୀତ, ହେବ ନିପୁଣ ।
ଯୁଗେ ଯୁଗେ ଅଗେ ତୋତେ ଯେ ପୂଜିଛି
ଲେଖିଛି କବିତା ହୋଇଛି କବି,
ପୂଜୁଛି ଯେ ତୋତେ ସେଇଥି ପାଇଁ କି
ଶ୍ରୀକୃଷ୍ଣଙ୍କର ସେ ଆଙ୍କିବ ଛବି ।
ନାହିଁ ତାର ହାତେ ପୂଜାର ସମ୍ଭାର
ଅଛି ତାର ଖାଲି କଲମ କାଳି,
ସେଇଥିରେ ଯେବେ ଖୁସି ତୁ ହୋଇବୁ
ହୃଦାସନେ ବସି ମାରିବ ତାଳି ।
ତୁ ତ ବଇଷ୍ଣବୀ ଆଇଁଷ ଭୋଜନ
ତୁଟିବ ନ ତୋତେ କି ଦେବ ଆଉ ?
କହିବୁ ତୁ ଯେବେ କାଟି ନିଜ ଶିର
ଖୋଜିବ ଚରଣେ ତୋ ଭୋକ ଯାଉ !

ଶାସନ ଆଇନ କରିଚୁ ତ କଡ଼ା
ବଳ ଦେବାକୁ ତ କରିଚୁ ମନା,
କୋଉ ଦାନ ଦେଲେ ତୃପତ ହୋଇବୁ
କହିଦେ, ଥରୁଟେ ତା ଆଡ଼େ ଅନା ।



# କାରାଗାରେ କୃଷ୍ଣ

ଯେତେବେ ଯେବେ ଭବେ ହୁଏ ଧର୍ମହାନି
ଅବତରି ବିଷ୍ଣୁ ଧରଣୀ ତଳେ,
ଅଧର୍ମ ନିବାରି ରଖନ୍ତି ଧରମ
କରାନ୍ତି ସୁକର୍ମ ସୁଶିକ୍ଷା ବଳେ ।
କଂସ ଶିଶୁପାଳ ଜରାସନ୍ଧ ଆଦି
ହୁଡ଼ିଲେ ଧରମ ବୁଝିଲେ ନାହିଁ,
ତାଙ୍କ ଅତ୍ୟାଚାର ନିବାରିବା ପାଇଁ
ବଇକୁଣ୍ଠୁ ଛାଡ଼ି ଆସିବେ ଧାଇଁ ।
ମଥୁରା ନଗରୀ ଆନନ୍ଦେ ବିଭୋଳ
ବାଜୁଛି ବାଇଦ ମଧୁର ହୋଇ,
ଘରେ ଘରେ ଆଜି ଲାଗିଛି ଉତ୍ସବ
ଦୁଆରେ ଦୁଆରେ କଳସ ଥୋଇ ।
ଛକରେ ଛକରେ ତୋରଣ ହୋଇଛି
ସୁନେଲି ରୂପେଲି କାଗଜ ଦେଇ,
ନାନା ଫୁଲ ଫଳ ସଜ୍ଜିତ ହୋଇଛି
ଝୁଣ୍ଟରେ ଝୁଣ୍ଟରେ ମନ ମନେଇ ।
ନାନା ବରଣର ବିଚିତ୍ର ଶିକୁଳି
ଡାଳରେ ଡାଳରେ ଖେଳୁଛି ଦୋଳ,
ଦୂରରୁ ଦୂରରୁ ବହୁଛି ପବନ
ଦେହରେ ଦେହରେ ସୌରଭ ବୋଳି ।

ଶଙ୍ଖରେ ଶଙ୍ଖରେ    ବାଜୁଛି ଗମ୍ଭୀରରେ
ଝିଅ ଜ୍ୱାଇଁଙ୍କର ମିଳନ ଗୀତ,
ମହୁରୀ ମହୁରୀ    ଗାଆନ୍ତି ମଧୁରେ
ଶୁଭ୍ର ବରବଧୂର ଛନ୍ଦ ବଚନ ।
ଢୋଲ ଢୋଲ ମିଳି    ବାଜନ୍ତି ଉଚ୍ଚରେ
ଯୋଡ଼ି ନାଗରୀକୁ ସଙ୍ଗରେ ଧରି,
ଅଶୁଭ ଦୃଷ୍ଟିକୁ    ଘଉଡ଼ାଇ ଦୂରେ
ବରକନ୍ୟା ତ୍ରାଣୁ ଉଗାଇ କରି ।
ନାରୀଏ ନାରୀଏ    ମିଳିମିଶି କରି
ହୁଳହୁଳୀ ସ୍ୱର ଦିଅନ୍ତି ତାଳି,
ଦଳ ଦଳ ହୋଇ    ହସି ହସି ଆସି
ଦେଖିଆଉଛନ୍ତି କୁଆଁରୀ ବାଳୀ ।
କିଏ ସେ ପିନ୍ଧିଛି    ନୀଳମେଘୀ ଶାଢ଼ୀ
କିଏ ସେ ପିନ୍ଧିଛି ବସନ୍ତ ବାସ,
କାହାର ଦେହରେ    ରକତ ବସନ
ଅଧରେ ଅଧରେ ମଧୁର ହାସ ।
କେତେକ ଗଉରୀ    କେତେକ ଶ୍ୟାମଳୀ
ମିଳାଇ ମିଶାଇ କିଏ ସେ ହାର,
ଗୁନ୍ଥିଛି ଯତନେ    ଫୁଲ ବସନ୍ତରେ
ଶୋଭୁଛି ମଥୁରା ହସୁଛି ହାର ।
ଯମୁନା ଜଳରେ    ଉଠିଛି ହିଲ୍ଲୋଳ
ଧୀର ପବନର ମୃଦୁ ପରଶେ,
ଦେବକୀ ମନରେ    କି ଭାବ ଉଇଁଛି
ପ୍ରୀତିବୋଲା ମୁହଁ ମୂକ ହରଷେ ।
ଗଛରେ ଗଛରେ    ଫୁଟିଛି କୁସୁମ
ଗଗନ-ବକ୍ଷରେ ତାରକା ପରି,
ମନରେ ମନରେ    ଖେଳୁଛି ଆନନ୍ଦ
ସାଗର ସଲିଳେ ଜ୍ୟୋଛନା ପରି ।

ବସୁଦେବ ମନେ    ପଶିଚି ପ୍ରଣୟ
ଯୁବକ ହୃଦୟ ମିଳନ ଆଶା,
ଗୋଟାଇ ନେଇ କି    ଛୁଟାଇ ଦେବ ସେ
ସୁଜନ ମିତର ପ୍ରେମ-ପିପାସା ?
ସତେ ଏଥିପାଇଁ    ଆକୁଳ କାନ୍ଦିକି
ପରାଗ ପରାଣ ରଜନୀ ଦିବା !
ଅମୃତ କି ତହିଁ    ସାଇତା ହୋଇଚି
ସୁର ମନ୍ଦାକିନୀ ବହୁଚି କିବା ?
ଦୁଇଟି ଶରୀର    ହୋଇବ କି ଏକ
ଯୋଡ଼ିଏ ପରାଣ ଯିବ କି ଝୁଲି ?
ଯେତେକ ବିରହ-    ବେଦନା ସଂସାରେ
ଅଛୁ ଏ ମିଶାଣେ ଯିବ କି ଜଳି ?
ବିଧାତାର ସତେ    କି ବଚନ ମିତ
ଗୋଟିଏ ମୁହୂର୍ତ୍ତେ ଯୋଡ଼ିଏ ପ୍ରାଣ,
ମିଳିମିଶି କରି    ଏକ ହୋଇଯାନ୍ତି
ଜୀବନେ ହୁଏନା କେବେ ଫେଡ଼ାଣ ।
ଏହି ମିଶାଣର    ମଧୁର ବଇଁଶୀ
ଫୁଟିଯାଏ ପରା କୋଇଲି କଂଠେ,
ଏଇ ମିଳନର    ସୁନ୍ଦର ଭଂଗିମା
ଦିଶିଯାଏ ପରା ମୟୂର ନଟେ ।
ଏହି ମିଳନର    ପ୍ରଚଣ୍ଡ ତାଣ୍ଡବ
ଦିଶଇ ସାଗର ନଦୀ ସଂଗମେ,
ଏହି ମିଳନର    ନଗ୍ନ ଅଭିନୟ
ହୋଇଯାଏ ନିତି ମୀତ ଜଂଗମେ ।
ଫୁଲରେ ଫୁଲରେ    ପ୍ରୀତି ଦୋଳିଯାଏ
ଝଙ୍କାର ବଜାଇ କଳା ଭଅଁର,
ମତ୍ତରଜନୀ ଶିରେ    ଢାଳି ଦେଇଥାଏ
ରସିକ ଚାନ୍ଦର ଶ୍ୱେତ ଚଅଁର ।

ଯମୁନାର ନୀଳ ତରଳ ଉରସେ
ପଶି କରି କେତେ ମଥୁରାବାଳୀ,
ଅଧୀର ଆନନ୍ଦେ କଣ୍ଠ ମିଶାଇଣ
ମିଳନ-ସଂଗୀତ ଦିଅନ୍ତି ତାଳ ।
ଅଂଗ ଦୋହଲାଇ ପାଣି ଚହଲାଇ
ଚଢ଼ାଇ ଦିଅନ୍ତି ଲହରବଣି,
ଲହରୀ ଉପରେ ତରଳ ହୋଇ କି
ପ୍ରେମର ପ୍ରବାହ ଯାଉଛି ଭାସି ?
କଂସର ମନରେ ଜାଗିଚି ହରଷ
ଭଉଣୀ ତାହାର ହେଉଚି ବାହା,
ସୁନ୍ଦର ଯୁବକ ବୀର ବସୁଦେବ
ହୋଇଚି ତାହାର ପରାଣନାହା ।
ନିଜେ ରଥ ସାଜି ଯୋଚିଦେଲା ଅଶ୍ୱ,
ଭଉଣୀ ଭଣୋଇ ତହିଁ ବସାଇ,
ଧରିଲା ଲଗାମ ପିଟିଲା ପୃଷ୍ଠକୁ
ଘୋଡ଼ାଏ ଚାଲିଲେ ଅଳପ ଧାଇଁ ।
ସେତିକି ବେଳରେ ଶୁଭିଲା ଶୂନ୍ୟରୁ
ବାଣୀ ଭୟଙ୍କରୀ ଭେଦିଲା କାନ,
"ଶୁଣ ଶୁଣ କଂସ ! ଯା ରଥ ବାହୁଚୁ
ମାରିବ ରେ ତୋତେ ତାର ସନ୍ତାନ ।
ତୋର ଅତ୍ୟାଚାରେ ପୃଥ୍ୱୀ ଜର୍ଜରିତ
କାନ୍ଦଇ ବିକଳେ ଦିବସ ନିଶି,
ତୋତେ ମାରିବାକୁ ବଷ୍ଣୁର ହୋଇଚି
ପୃଥ୍ୱୀ ସଂଗେ ଛନ୍ତି ଦେବତା ମିଶି ।
ଦେବକୀ ଅଷ୍ଟମ ଗରଭେ ଜନ୍ମିବେ
ବିଷ୍ଣୁ ସନାତନ ହୋଇ ମାନବ,
ତୋର ସହିତରେ ମାରିବେ ଧରାରେ
ବଡ଼ ହୋଇଛନ୍ତି ଯେତେକ ଦାନବ ।"

କଂପିଲା ହୃଦୟ          ଭାବିଲା ମନରେ
"ମୂଳରୁ ଦୁହିଁଙ୍କୁ ଦେବ ମୁଁ ଦଳି,
ଖାଇଥିଲେ ସିନା          ପୁଅ ପ୍ରସବିବେ
ଦେବତାଙ୍କ ସଙ୍ଗେ ହୋଇବ କଳି ।"
ଧଇଲା ଚୁଟିକି          ଉଁଚାଇଲା ଖଣ୍ଡା
କାଟିଦେବ ବୋଲି ଦେବକୀ ଶିର,
ତା ଦେଖି କାତରେ          ହାତ ଯୋଡ଼ି କରି
ବସୁଦେବ କାନ୍ଦି କହିଲା ଗିର ।
"ନବ ବିବାହିତ          ପୁରୁଷ ପକ୍ଷରେ
ଯୁବତୀ ପତ୍ନୀର ଶିର ଛେଦନ,
କିପରି ଲାଗିବ          ପତିର ମନକୁ
ଅନୁମାନ କର ତରୁଣ ଜନ ।"
ଆନନ୍ଦ ମନରେ          କଂସ ନିଦାରୁଣ
ବ୍ୟବହାର ତାକୁ ଦେଲାଟି ଟେକା,
ହାତ ଯୋଡ଼ି କରି          ନେହୁରା ହୋଇଣ
କହିଲା ବିକଳେ ପକାଇ ଡକା ।
"ଏହାର ତନୟ          ତୁମ ଶତ୍ରୁ ସିନା
ଭଉଣୀ ତ ନୁହେ କାହିଁକି ରାଗ ?
ନାରୀହତ୍ୟା କରି          କି ଯଶ ପାଇବ
ମାରନା ତାହାକୁ କରି ସୋହାଗ ।
କରୁଛି ଶପଥ          ପୁଅ ଜନମିଲେ
ନେଇ ମୁଁ ତୁମକୁ ଆସିବି ଦେଇ,
ତୁମ ଇଚ୍ଛା ଯାହା          କରିବ ହାଁ ତାହା
ବାଳୁତ ପୁଅକୁ ହାତରେ ନେଇ ।"
ବସୁଦେବ କଥା          କଲେ ବିଶ୍ୱାସ
ରଖିଲା ଦୁହିଁଙ୍କୁ କଏଦୀ ଘରେ,
ଜଗାଇ ପ୍ରହରୀ          ରଖିଲା ଆକଟେ
ବେଢ଼ି ପିନ୍ଧାଇଲା ହାତ ଗୋଡ଼ରେ ।

ଉଗ୍ରସେନେ ଡାକି କହିଲା ରାଗରେ
"ଜଗିଥିବ ତୁମେ ହୋଇ ସତର୍କ,
ଆଜଠାରୁ ମୁହିଁ ତୁଟାଇ ଦେଉଛି
ଦେବକୀ ପାଖରୁ ମୋର ସଂପର୍କ ।"
କିଛି ଦିନ ଅନ୍ତେ ଗର୍ଭ ସଂଚରିଲା
ରକ୍ଷକ କହିଲା କଂସର ଆଗେ,
ପ୍ରହରୀଙ୍କୁ ଡାକି କହିଲା ଡିଆରି
"ଜନମିଲେ ପୁଅ ଆଣିବ ବେଗେ ।"
ଜନମିଲା ପୁଅ, ଦେବକୀ ହୃଦୟ
ଦେଖି ପୁଅ ମୁହିଁ ହେଲା ବିକଳ,
ଦର ଭରିଯାଙ୍କ ଦୃଷ୍ଟି ନୟନରୁ
ଶୋକରେ ବହିଲା ଲୋତକ ଜଳ ।
କେତେ କନ୍ଦାକଟା କଲେ ଦୁହେଁଯାକ
ବସୁଦେବ ତାର ପ୍ରତିଜ୍ଞା ବାଣୀ—
ପାଳିଲା, ପୁଅକୁ ଧରିଲା ବକ୍ଷରେ
କଂସର ଆଗରେ ଥୋଇଲା ଆଣି ।
ଦେଖି କଂସ ମନେ ହୋଇଲା ହରଷ
ବସୁଦେବେ କଲା କେତେ ପ୍ରଶଂସା,
ଭାବିଲା ଅଷ୍ଟମ ସନ୍ତାନ ବଇରି
ଏହାଠି କାହିଁକି କରିବି ହିଂସା ?
"ନେଇ ଯା ପୁଅକୁ ଅଷ୍ଟମ ଗର୍ଭର
ତନୟ ଏଠାରେ ଦେବୁ ତୁ ଆଣି,
ନ ହେଲେ କହୁଛି ଏଇ ଖଡ଼ଗରେ
ଦର ଭରିଯାଙ୍କୁ ଦେବି ମୁଁ ହାଣି ।"
ବସୁଦେବ ମନେ ଧାଇଁଲା ଧରମ
ଭାବିଲା କଂସର ନିର୍ଦ୍ଦୟ କାୟା,
କପଟ ଛୁଇଁଲା ଏସନ କରୁଣା
ସତରେ କି ଏହା ଦେବତା ମାୟା !

ପୁଣି ପରେ ପରେ ଧାଇଁଲା ରକ୍ଷସ
ପୁଅକୁ ବକ୍ଷରୁ ଆଣି ଓଟାରି,
ଦୁଇ ଗୋଡ଼ ଧରି ଉପରେ ବୁଲାଇ
ପଥର ଗୋଟାରେ ଦେଲା କଚାଡ଼ି ।
ଦେଖି ବସୁଦେବ ବୁଜିଦେଲା ଆଖି
ମୁଣ୍ଡରୁ ତାହାର ଉଠିଲା ଝାଇଁ,
କହି ପାରିଲାନି ପଦେ ହେଲେ କଥା
କେବଳ ରହିଲା କଂସକୁ ଚାହିଁ ।
କେତେବେଳ ପରେ ପାଇଲା ଚେତନା
କାନ୍ଦିଲା ବହୁତ ଗଲା ସେ ଫେରି,
କଇଦୀ ଭିତରେ ଦେବକୀ ଏକଲେ
ଚାହିଁ ବସିଥିଲା ଶ୍ରବଣ ଡେରି ।
ପଶିଲା ଭିତରେ କାନ୍ଦି କାନ୍ଦି କରି
ପଡ଼ିଲା ଅଣ୍ଟୁଡ଼େ ଗଡ଼ିଲା ତଳେ,
ଗଳ ଗଳ କରି ଲୋଚନ ଯୁଗଳୁଁ
ଅଜାଡ଼ି ଦେଲା ସେ ଲୁହ ଏକଲେ ।
ଶୁଣିଲା ଦେବକୀ ରଡ଼ିଲା ଉଚ୍ଚରେ
କହିଲା, "ଦଇବ କି କଲା ସତେ !
ଉଡଆଣି ପିଲା— ଟାଏ ମାରିଦେଇ
କଂସ କି ଖାଇବ ସର୍ବଦା ମର୍ତ୍ତ୍ୟେ !
ଏଇପରି କଲେ କି ଏଡ଼ିବ ମରଣ ?
ଆଉ ସବୁ ମିଛ ମରଣ ସତ,
କିଏ ବା ଜାଣିଚି ଚିରଦିନ ପାଇଁ
ସେଥିପାଇଁ କଲା ଶିଶୁଟା ହତ !"
ଛଅ ପୁଅ ତାର କଂସ ହତ କଲା
ଦେବକୀ ପଥର କଲା ତା ଛାତି,
ଧ୍ୟାଇଲା କେବଳ ଭଗବାନଙ୍କୁ ସେ
କଇଦୀ ଭିତରେ ଦିବସ ରାତି ।

ସପ୍ତମ ଗରଭ                    ନଷ୍ଟ ହୋଇଗଲା
ଦେବକୀ ହୋଇଲା ମହା ଆନନ୍ଦ,
ଆଖିରୁ ଲୋତକ                    ବହିଯାଏ କାନ୍ଥୁ
ଭଗବାନେ କହେ ହୋଇ ଗଦ୍‌ଗଦ ।
"ତୋର ସର୍ଜନା ତୁ                    ରଖ ରେ ଦାରୁଣ
ଦେବକୀ ତ ଆଉ ପାରୁନ ସହି,
ଛଅ ପୁଅ ନେଲୁ                    କୋଳରୁ ଛଡ଼ାଇ
ଜନନୀର ପ୍ରାଣ ନିର୍ଦ୍ଦୟେ ଦହି ।
ତୁହି-ପରି ସତେ                    ସଂସାର-କରତା
ଜଗତ-ଜନନୀ ଜଗତ-ପିତା,
ଶିଶୁହତ୍ୟା କ'ଣ                    ବାଧୁନ ରେ ତୋତେ
ସେଥିପାଇଁ କ'ଣ ହେଉନ ଚିନ୍ତା ?
ପିତା ମାତା ମନ                    ଜାଣୁନୁ କାହିଁକି
କପରି ଦାରୁଣ ହେଲୁ ରେ ଏତେ,
ତୋର ଠାଣି କ'ଣ                    ମୋହର ଅଛୁ ରେ
ସନ୍ତାନ-ନିଧନ ସହିବ କେତେ ?
ଭାଇ ହୋଇ କଂସ                    ହେଲା ତ ଭଗାରି
କିଏ ତା ହୃଦୟେ ଭରିଲା ବିଷ,
ସେଥିପାଇଁ କ'ଣ                    ତୁ ରେ ଦାୟୀ ନୁହଁ
ଅମୃତକୁ ରଖି କରିବୁ କିସ ?
ତୋର ଇଚ୍ଛା ତୁହି                    କରିବୁ ପୂରଣ
ମୋତେ କନ୍ଦାଇବା କି ଲାଭ ତୋର ?
ଆଉ କି ପାରିବି                    ପୁଅ ଜନ୍ମାଇ
ବଳ ବୟସ କି ଆସୁଛି ମୋର !
ଜନନୀକୁ ଦେଲେ                    ସନ୍ତାନ-କଷଣ
ଯୁବତୀକୁ ଦେଲେ ବିଧବା ଦଶା,
ଆଉ କି ଡାକିବେ                    ତୋତେ ପ୍ରଭୁ ବୋଲି
ହେବୁ ନାହିଁ ସତେ ତୁ ଲୋକହସା !

ଆଉ ଗର୍ଭକଷ୍ଟ  ଦେଏନା ରେ ମୋତେ
ପୁଅ ବଦନ ମୁଁ ଚୁହିଁବ ନାହିଁ,
ଚୁହିଁ ଚୁହିଁ କରି  ଅନ୍ଧୁଣୀ ହୋଇଚି
ଆଉ ଦେଖିବାକୁ ଆଖି ବା କାହିଁ ?
ଆରେ ନିରଦୟ  ଦୟା କି ତୋହର
ଅଛି କୋଉଠାରେ ଟିକିଏ ଲୁଚି ?
କିବା ପାରୁ ନାହୁଁ  ସେଇ ଟିକିକ ରେ
ଘିନା ରମଣୀକୁ ଦେବାକୁ ମୁଞ୍ଚି ?
ଦୟାନିଧି ନାମ  କେ ଦେଲା ରେ ତୋତେ
କେତେ ଅବିବେକ ସତେ ସେ ଭବେ,
ଯଦି ଦୟା ଥାନ୍ତା  ମନରେ ତୋହର
ଏତେ ଅନ୍ୟାୟ କି ସହନ୍ତୁ ଲବେ !
ଯଦି ଦୁଃଖ ଦେଲୁ  ସହି ଦେଖି ଥରେ
ମୋହର କଷଣ ଗରଭେ ପଶି,
କୋଉ ଗର୍ଭକୋଣ  ଲୁଚିଚି କି ତୋତେ
ଗରଭ-କଷଣ ପାରୁନୁ ଧ୍ୱଂସି ?
ତୋତେ ତୁ ରଖିବୁ  ଘଣ୍ଟକୁ ଘୋଡ଼ାଇ
ମୋତେ ଥରୁଟିଏ ଦେଏ ରେ ଚୁହିଁ,
ନ ହେଲେ କାହିଁକି  ମୋ ପରି ଦୁଃଖିନୀ
ତୋ ଚରଣ ପ୍ରାନ୍ତେ ଯିବଟି ଧାଇଁ !
ତୋହର ମର୍ଯ୍ୟାଦା  ତୁହି ରକ୍ଷାକର
ମୋତେ ଚୁହିଁବାରେ କି ଅଛି ଆଉ ?
ଛଅ ଥର ମୁଁ ତ  ମଲିଣି ସଂସାରେ
ଯାଇଛି ମୋ ସୁଖ ତୋହର ଆଉଁ ।"
ଶୁଣି ଶୁଣି କରି  ଦେବକୀ କାନ୍ଦଣା
ସତେ କି କହିଲେ ମାରବେ ରହି,
"ରହି ଲୋ ଜନନି  ଆଉ କେତେ ଦିନ
ପୁଅଙ୍କ ମରଣ-କଷଣ ସହି ।

ଏଥର ମୋ ପାଳ ପଡ଼ିଲା ଲୋ ମାଆ
ପଶିବ ଗରଭେ ରଖିବ ତୋତେ,
ନାଶିବ କଂସକୁ ଗ୍ରାସିବ ଅନ୍ୟାୟ
ରଖିବ ସଂସାର ରଖିବ ତୋତେ ।
ଆଉ କେତେ ଦିନ ରହ ଧୈର୍ଯ୍ୟ ଧରି
ଦେଖିବୁ ନୟନ ମୋହନ ମୂର୍ତ୍ତି,
ପାଶୋରି ଦେବୁ ଲୋ ହୃଦୟରୁ ତୋର
ଛଅ ପୁଅଙ୍କର କରୁଣ ସ୍ମୃତି ।”
କେ ଢାଳିଲା କାନେ ସୁଧା ଧାର ଧାର
ପବନରେ ଗୋଳି ସାନ୍ତ୍ୱନା ବୋଲି ?
ସନ୍ତ୍ରା ନନ୍ଦିନୀକୁ କିଏ ସତେ ନେଲା
ଏତେ ରାତକତେ ସରଗେ ତୋଳି ?
ଅନାଇଲା ଶୂନ୍ୟେ ଚକିତ ନୟନେ
ଦେଖିଲା ଚହିଁରେ ପୂର୍ଣ୍ଣ ପ୍ରକାଶ,
ଧରଣୀ ଦେହରୁ ପାପ ତାପ ସବୁ
କ୍ଷଣକରେ କ୍ଷଣକରେ କରୁଚି ନାଶ ।
ବସନ୍ତ ରାଗରେ କେ କହିଲା କଥା
ଅନିଦ୍ର ନୟନ ହେଲା ମୁଦ୍ରିତ,
ଅପତ୍ୟ ଶୋକରେ ସନ୍ତପ୍ତା ଦେବକୀ
ଭୂଇଁରେ ସେଇଠି ହେଲା ନିଦ୍ରିତ ।
ଦେଖିଲା ସପନ ନବୀନ ଜଳଦ
ମୃଦୁ ଶୂନ୍ୟରୁ ଓହ୍ଲାଇ ଆସି,
ଧୀରେ ଧୀରେ ଧୀରେ କଳସୀ-ମଧ୍ୟରେ
ଦେବକୀ ଗରଭେ ପଶିଲା ହସି ।
କି ସୁନ୍ଦର ରୂପ ବେଶ ମନୋହର
କରେ ଶଂଖ ଚକ୍ର ଗଦା କମଳ,
ବକ୍ଷରେ ଶ୍ରୀବତ୍ସ ପଦଚିହ୍ନ ଶୋହେ
ମୃଦୁ ବଦନରେ ହସ ନିର୍ମଳ ।

ସ୍ୱପ୍ନରେ ଗାଇଲା ଦେବକୀ ହରଷେ
"ମନୋହର ସିତାଳକ ସୁନ୍ଦର,
ସୁରେନ୍ଦ୍ର ଗରବ- ଗଞ୍ଜନ ହେ ପ୍ରଭୁ
ବରିଂଶର ମୋହ ଭଂଜନ କର ।"
ଭାଙ୍ଗିଗଲା ସ୍ୱପ୍ନ ତୁଟିଗଲା ନିଦ
ଦେଖିଲା ପାଖରେ ପତିଙ୍କୁ ଏକା,
ମୋହ-ବିହ୍ୱଳିତ ହୋଇଣ କହିଲା,
"ଦେଖା ମୋତେ ଥରେ ସେ ରୂପ ଦେଖା !
ଯୋଡ଼ ରୂପ ଗୋଟି ହସି ହସି ଆସି
ଦେଖାଦେଇ ଗଲେ ମୋତେ ସପନେ,
ସେ ରୂପ କି ସତେ ଆଜ କେବେ ହେଲେ
ଦେଖିବି ଜୀବନେ ପାପ-ନୟନେ !
ଆସ ଆସ ଆସ ଆସ ରେ ନନ୍ଦନ
ଚିରଦିନ ତୋତେ ଧରିବି ଗର୍ଭେ,
ପ୍ରସବିବି ନାହିଁ ଲୁଚାଇ ରଖିବି
କଂସ କିଣ ନେଇ ପାରିବ ଗର୍ବେ ?
କଙ୍କାରୁ ଛୁଆଙ୍କୁ ବାଘ ଖାଏ ନାହିଁ
ଯେଣୁ ସେ ରହଇ ଗରଭ ଖୋଳେ,
ରହ ରେ ଗରଭେ ଲୁଚି ଲୁଚି କରି
ଆଜ ଧରିବିନି ତୋତେ ମୁଁ କୋଳେ ।
ମାଆ କୋଳେ ସିନା ବଢ଼ଇ ସନ୍ତାନ
ମୁଁ ଅଲକ୍ଷଣୀର କୋଳ ଏପରି,
ଟଳେ ପଡ଼ୁଁ ପଡ଼ୁଁ କଂସ କାଢ଼ିନିଏ
ମୁହୂର୍ତ୍ତେ ମୁଁ କୋଳେ ପାରେନି ଧରି ।
ରଖ ରେ ଭୁ ତୋତେ ମୁଁ ଅବଳା ନାରୀ
ପଶିଲୁଣି ଯେବେ ଗରଭେ ଆସି,
ଦେଖୁଛୁ ତ ନସି ମୋହର ମନରେ
ପୁଅର ମରଣ ହୋଇନ ବାସି ।"

ଦେବକୀ ଆଗରୁ ଦଶିଲା ସୁନ୍ଦରୀ
ଅଙ୍ଗରେ ଅଙ୍ଗରେ ଫୁଟିଲା ଶିରୀ,
ଶୋଭା-ସଂପଦକୁ କୋଉ କାରାଗାର
ଥୋଇ ଦେଇଗଲା ତୋ ଅଙ୍ଗ ଚିର୍ ।
ନଖୂଣ ଶରୀର ଦାଆଟିଏ ନାହିଁ
କୋଉ ବାଟେ ଶୋଭା ପଶିଲା ଆସି,
ବସନ୍ତ କାଳର କଅଁଳ ସୁଷମା
ପ୍ରକୃତିର ଦେହେ ଉଠେ କି ଭାସି ?
ଫୁଟିଯିବ ଫୁଲ ଫଳିଯିବ ଫଳ
କଅଁଳ ପତ୍ରର ପଡ଼ିବ ଝଡ଼,
ରହ ଗୋ ଦେବକୀ ଟାଣ କର ହିଆ
କଂସର ପରାଣ ଉଠିବ ଥର ।
ବାଉଁଶ ଗଛ ତ ସହେନା ବସନ୍ତ
କଂସ କି ସହିବ କନ୍ଦର୍ପ ରୂପ ?
ଯେଉଁ ରୂପକୁ ତୁ ଗରଭେ ରଖିଚୁ
କରିବ କଂସକୁ ପାଉଁଶ ସ୍ତୂପ ।
ଦଶଟା ମାସ ତ ଦଶ ଯାମ ପରି
ଉଡ଼ି ଚାଲିଯିବ ପବନ ପରି,
ରଖିବୁ ସଂସାର ରଖିବୁ କୀରତି
ସୁନ୍ଦର ପୁଅକୁ କୋଳରେ ଧରି ।
ପୁଅ ପୁଅ ବୋଲି କେତେ ତୁ କାନ୍ଦିଚୁ
ତୋ ସଂସାର ହେବ ଜନପୂର୍ଣ୍ଣ,
ଜଗତର ନାଥ ହେବେ ଲୋ ତୋ ପୁଅ
ପୁଅର ଅଭାବ ଘୁଞ୍ଚିବା ଅସ୍ତୁ ।
ଡରିଲାଣି କଂସ ଦେଖି ତୋ ଗରଭ
ରହିବ ସେ ଅଧେ ମରି ସଂସାରେ,
ମାରିବାକୁ ଆଉ ଡର ହେବ ନାହିଁ
ଦେଖି ମରିଯିବ ତୁଆଁ ମଂତ୍ରରେ ।

ମାର୍ଗଶିର ମାସ ସବୁ ମାସଠାରୁ
ବରଷ ଭିତରେ ଅଟଇ ସାର,
ଛଅ ଋତୁଯାକ ଭୋଗ ହୋଇଯାଏ
କେହି ଜାଣେ ନାହିଁ ସେ ସମାଚାର ।
ଲୁଚି ଲୁଚି କରି ଆସଇ ବସନ୍ତ
ଚୈତ୍ରରେ ଚୈତ୍ରରେ ବଉଳେ ଆମ୍ବ,
ବୁଢ଼ି ବୁଢ଼ି କରି ଥାଏ ଗୋ ଗ୍ରୀଷ୍ମ
ଶୀତ କରୁଥାଏ ଦେଖାଇ କାମ ।
ଗଗନ ଦେହରେ ମେଘ ଭାସୁଥାଏ
ଏଠେଇ ସେଠେଇ ପକାଏ ଛାଇ,
କେବେ କେବେ ବାରି ବରଷି ଯାଏ ଗୋ
ପାଚିଲା ଧାନକୁ ଦେଇ ଭିଜାଇ ।
ଅଳପ ଅଳପ ପଡ଼ଇ କାକର
କେବେ ବା କୁହୁଡ଼ି ଆସଇ ମାଡ଼ି,
ଚଷାର ଗୃହରୁ ଅନ୍ନର ଅଭାବ
ଦୂର ଦୂରାନ୍ତକୁ ପଳାଏ ଛାଡ଼ି ।
ଏଇ ମାସରେ ତୋ ଗରଭ ସଂଚାର
ପୁଅ ତୋ ହେବ ଲୋ ସଂସାରେ ସାର,
ଆଉ କି ଭାବନା ଅଛି ଲୋ ତୋହର
କାହିଁକି ତାଳୁଚୁ ଲୋତକଧାର ?
ପାଣି ପରି ବେଳ ବହି ଚାଲିଗଲା
ଶରତ ଆସିଲା ଦେଖାଇ ଛବି,
ସରସୀ ସଲିଳ ନିରମଳ ହେଲା
ତହିଁରେ ଫୁଟିଲେ ଅମଳ କଇଁ ।
ଗଗନ ଦେହରୁ ବାରିଦ ଘୁଂଚିଲା
ଉଜ୍ଜ୍ୱଳ ଦିଶିଲେ ଶଶୀ ତାରକା,
ଛାୟାପଥେ କେତେ ଦୀପାଳି ଜଳିଲା
ଅନ୍ଧାର ମନରେ ପଶିଲା ଦକା ।

ଖଣ୍ଡ ଖଣ୍ଡ ମେଘ ମନ୍ଥିରେ ମନ୍ଥିରେ
ଭାସି ଭାସି ଆସେ ବୋଇତ ପରି,
କେବେ କେବେ ନଭ ରଂଜିତ ହୁଅଇ
ଗଛ ଗଜ ନଗ ରୂପକୁ ଧରି ।
ବରଷି ବରଷି ଯାଏ ଅଳପକେ
ଭୂଇଁର ଶୋଷ ତ ନ ଥାଏ ବଢ଼ି,
ଯୋଉଠାକ ପାଣି ପଡ଼େ ଧରଣୀରେ
ଧାର ଧାର ହୋଇ ଯାଏ ସେ ଗଡ଼ି ।
ରଡ଼େ ନାହିଁ ବେଙ୍ଗ ଡାକେ ନା ଡାହୁକ
ନାଚେ ନା ମୟୂର ବାସେ ନା ମହୀ,
ବିରହିଣୀ ମନ ପଥିର ପାଇଁକି
ଏ ବାଦଲ ଦେଖି ହୁଏ ନା ଦହି ।
ନିର୍ମଳ ରବିର ପ୍ରଖର କିରଣ
ପଡ଼ଇ, ଧରଣୀ ପୋଡ଼ଇ ନାହିଁ,
ପବନ ଦେହରେ ଝାଳ ବଳ ପଡ଼େ
ଦେହରେ କାଉଳ ଦିଏ ବଢ଼ାଇ ।
ବାଡ଼ରେ ବାଡ଼ରେ ଜହ୍ନି କାକୁଡ଼ିର
ଲତା ମାଡ଼ିଥାଏ ଗହଳା ହୋଇ,
ତାହାର ଉପରେ ସୁନା ଫୁଲଗୁଣା
କେଉଁ କାରିଗର ଦିଅଇ ଥୋଇ !
ନୀଳ ବଳୟରେ ଝୁରୁଝୁରୁ ବର୍ଷା
ଇନ୍ଦ୍ରଧନୁ ଆଙ୍କି ଦିଏ କାହିଁକି ?
ରବିର ଆଡ଼କୁ ବାଦଲର ବାରି
ଝିଞ୍ଜି ମିଞ୍ଜି କରି ଦିଏ ଗୁହିଁ କି ?
ଭାଦ୍ରବ ମାସର କାଳିଆ ଅଷ୍ଟମୀ
ଚେନେ କୋଉଠି ନାହିଁ ବାଦଲ,
କଳୁଷ ଗଗନ, ତାତିଲା ଧରଣୀ
ବନ୍ଧନ ପବନ ନିଶ୍ୱାସ ରୁନ୍ଧ ।

ପବନ ଝୋଲରେ ଶରୀରର ଝାଳ
ମିଶି ଯାଇଅଛୁ ଏକାଠି ହୋଇ,
ମଥୁରା ନଗରେ କେହି ହେଲେ ଜଣେ
ପାରୁ ନାହିଁ ବସି ପାରୁ ନ ଶୋଇ ।
ଯମୁନା ସଲିଳ ହାତେ ଗଭୀରରେ
ଖର ତେଜ ବାଜ ଯାଉଛି ଛାଡ଼ି,
ଖର ନିଶ୍ୱାସରେ ପଡ଼ୁଛି ଉଠୁଛି
ଭୂତ ପରି ଅଧିବାସୀଙ୍କ ସ୍ମୃତି ।
ଯମ କି ଆସିଛି ଭଉଣୀ ସଙ୍ଖୋଳ
ମଥୁରା ନଗରେ ନାଆଁରେ ଚଢ଼ି ?
ତେଣୁ କି ସେଠାର ପାଣି ପବନରେ
ଉତ୍ତାପ ଯାଉଛି ଏଡ଼େହେଁ ବଢ଼ି ?
ଦିନ ହେଲା ଶେଷ ପଶ୍ଚିମ ଦିଗରେ
ସୁନାଥାଳି ପରି ଦିଶିଲେ ରବି,
ଉଚ୍ଚ ପାହାଡରେ ଗଛଲତା ସବୁ
ଧରିଲେ ନୂତନ ସୁନ୍ଦର ଛବି ।
ଦିନ ଦିନ ଧରି ଏଇପରି ଚିତ୍ର
ଅଙ୍କିତ ହୁଅଇ ବାରୁଣୀ ଶିରେ,
ସଭିଙ୍କୁ ରୁଚଇ ସଭିଙ୍କୁ ତୋଷଇ
କିଏ କେତେ ବାରେ ଦେଖେ ଆଖିରେ ।
ଆସିଲା ପ୍ରଦୋଷ କଳାଶାଢ଼ୀ ପିନ୍ଧି
ମଥୁରା ହୋଇଲା ଅନ୍ଧାରମୟ,
ଗଗନ ଗାତ୍ରରେ ତାରକା ଦୀପାଳି
ଜଳିଲା, ଅନ୍ଧାର ହୋଇଲା କ୍ଷୟ ।
ଦୂରରେ ଆଲୁଅ ପାଖରେ ଅନ୍ଧାର
ଲୁଚଇ ଖୋଜଇ କାହାକୁ କିଏ ?
ଯିଏ ସେ ଶୋଭାକୁ ଗଢ଼ି ଦେଇଅଛି
କିପରି ତା ରୂପ କିଏ ବା ପିଏ ?

ଦେଖାଦେଲେ କି'ଣ ଚର୍ମ ନୟନରେ
ସମ୍ଭାଇବ ସେଇ ରୂପ ବିଶାଳ ?
ବିଶ୍ୱ ବ୍ରହ୍ମାଣ୍ଡକୁ ଘୋଡ଼ାଇ ରଖିଛି
ସବୁବେଳେ ଯାର ସୁଷମା ସାର ।
ଦେଖିଲେ କା ଚକ୍ଷୁ ହୁଏ ନା ତୃପତ
କେହ୍ନେ କି ବିରକ୍ତ ହୁଅଇ ଲବେ ?
ପୁରୁଣା ଶୋଭାଟା ନିତି ନିତି ଆସି
ଆଖି ଆଗେ ନାଚିଚାଲେ ଏ ଭବେ ।
ବଢ଼ିଲା ରଜନୀ ଘୋଟିଲା ବାରିଦ
ଗାଢ଼ କରିଦେଲା ଅନ୍ଧାର ରାତି,
ଶୀତଳ ପବନ ଉଷ୍ଣା କରିଦେଲା
ଧରଣୀ ଦେହର ପ୍ରବଳ ତାତି ।
ଢାଳିଲା ବରଷା ମୂଷଳଧାରରେ
ମାଇଲା ବିଜୁଳି ପଡ଼ିଲା ପବି,
ଶୋଇଲେ ସକଳେ ନିଘୋଡ଼ ନିଦରେ
ଦିବା ଅବସାଦ ନେଲେଟି ଦବି ।
ଦେବକୀର ହେଲା ଗରଭ ବେଦନା
କହିଲା କାତରେ, "ଶୁଣ ଗୁହାରି ।
କିଏ ସେ ଅଛ ମୋ ଗରଭ ଭିତରେ
ରଖିଲୁ ରେ ତୋତେ ରଥାଙ୍ଗଧାରୀ ।
ସପନରେ ଦେଖା- ଦେଲୁ ଯୋଉ ରୂପେ
ସେଇ ରୂପ ମୋତେ ଦେଖାଇଦିଅ,
ନ ହେଲେ କହୁନି ଗରଭ କଷଣ
ସଙ୍ଗତରେ ମୋର ପରାଣ ନିଅ ।
ବାଘ ଖାଇବାଠୁଁ ଘୋଷଡ଼ା ବାଧେ ରେ
ପୁଅ ସୁଖ ଆଉ ପାଇବି କାହିଁ ?
କାହିଁକି ମୋ ଗର୍ଭେ ଆସିଲୁ ରେ ଲୁହ
ପୁଅ ଧରିବା ତ କପାଳେ ନାହିଁ ।"

କହିଲା ପତିଙ୍କୁ କାତର ହୋଇଣ
"ସହ୍ୱ ସହ୍ୱ କର ଗରଭ ଛାଡ଼,
ରକ୍ତ-ମାଂସ ଦେହ ପଥର କରଚ
ଆଉ କ ସେପରି ଅଛି ମୋ ସ୍ଥିତ !
ବାପ ଲୋ, ମାଆ ଲୋ, ଆହେ ଭଗବାନ !
କଅଣ କରିବ, ଯିବ କେଣିକି ?
ଜଳ ଜଳ ହୋଇ ହସେ ବଢ଼ୁଥିବା
ପୁଅର ଲାଗି ମୁଁ ଗୃହେଁ ଯେଣିକି ।
ଏଇନା ଜନମ ହୋଇ ତ କାନ୍ଦିବ
ଶୁଣିବେ ପ୍ରହରୀ ଆସିବେ ଧାଇଁ,
କାହିଁକି ରେ ମୋର କୋଳକୁ ଆସିବୁ
ଦୁଃଖିମାକୁ ପୁଣି ଜାଳିବା ପାଇଁ ?
'ତୋତେ ତୁହ୍ୱ ରଖ', ନାହିଁ 'ମୋତେ ମାର'
ଦୁଇଟି ଭିତରୁ ଗୋଟିଏ କର,
ଆଉ ପୁଅ ହତ୍ୟା ଦେଖାନା ରେ ମୋତେ
କଂସର ନାଆଁକୁ ମାଡ଼ଇ ଡର ।
ହାତ ଗୋଡ଼େ ବେଡ଼ି କବାଟେ କିଳଣୀ
ଯମୁନାରେ କ'ଣ ପାରିବ ବୁଡ଼ି !
ସେଥିପାଇଁ କହେ କିଏ ଆସୁଅଛି
ପରାଣ ଯେନାଣ ପଳା ବାହୁଡ଼ି ।"
ଫିଟିଗଲା ବେଡ଼ି ମନକୁ ଅଲକ୍ଷ୍ୟେ
କବାଟ ହୋଇଲା ମୁକୁଳା ସ୍ୱୟଁ,
ନିଜ ହାତ ଗୋଡ଼ ସହ ବସୁଦେବ
କର ଚରଣକୁ ଦେବକୀ ଗୃହେଁ ।
ଦୁଇ ଜଣ ଯାକ ବେଡ଼ିରୁ ମୁକତ
ଦୁହିଁଙ୍କ ମୁହଁରେ ଚନ୍ଦ୍ରାର ଲେଖା,
ଦୁହିଁଙ୍କ ଆଖିରେ ସ୍ୱର୍ଗୀୟ ଆଲୋକ
କୋଉଠୁ ଆସି ଦେଲାଟି ଦେଖା ।

କଂସ କାରାଗାରେ ଦେବକୀ କୋଳରେ
ଜନମି ଶୋଇଲା ଅପୂର୍ବ ପୁଅ,
ନେଳିଆ ରଙ୍ଗରେ କାଳିଆ ଘରକୁ
କୋଉ ପରି ସତେ କଲା ଆଲୁଅ !
ଦାନ୍ତ ନାହିଁ କନ୍ତୁ ହସ କି ସୁନ୍ଦର
ଅଧର ଯୋଡ଼ିକ କେଡ଼ାହେଁ ନାଲି,
ଏ ରୂପକୁ ଦେଖି ଦେବକୀ ମନରୁ
ପୁଅ କଷ୍ଟ କାହିଁ ଯିବନ ଚାଲି !
କହିଲା ଅନାଇଁ "କେଉଁଠି ଥିଲୁ ରେ
କାଳିଆ ଚନ୍ଦ୍ରମା ମୁହଁ ଲୁଚାଇ,
କେତେ କାନ୍ଦିଛି ରେ ଦିନ ରାତି ବସି
ଅନ୍ଧାର କଣରେ ତୋତେ ଅନାଇଁ !"
ଦୁନିଆକୁ ତୁହି ହସାଇ ଦେବୁ କି
ଭସାଇ ବା ଦେବୁ ତୋ ପ୍ରେମ-ନୀରେ ?
କାହିଁକି ରେ ବାପ ଆସିଲୁ ମୋ କୋଳେ
ହସାଇଣ ଦେଇ ଦେଖିବୁ କିରେ ?
ଏସବୁ ଚିହ୍ନ ତୁ ପାଇଲୁ କେଉଁଠୁ
କିଏ ସେ ଦେଲା ତୋ ଦେହରେ ଖଞ୍ଜି ?
ଶ୍ରୀବତ୍ସ-ଲାଞ୍ଛନା ରହିଛି ତ ବକ୍ଷେ
ଶଙ୍ଖ ଚକ୍ରେ କର ଦେଇଛୁ ରଞ୍ଜି ।
ତୋ ରୂପକୁ ଦେଖି ମାଡୁଛି ରେ ଡର
ହସି ତ ପାରୁନି ପେଟ ପୂରାଇ,
ଏଇନା ତ କଂସ ଆସିବ ରେ ଧାଇଁ
ମୋ କୋଳରୁ ବଳେ ନେବ ଛଡ଼ାଇ ।
ତୋତେ ତୁହି ରଖ ମୁହିଁ ତ ଅରକ୍ଷ
କାହିଁ ମୋ ଗରଭ ଆସିଲୁ ଛାଡ଼ି ?
କିଏ ବା ସେଠେଇ ଖୋଜୁଥିଲା ତୋତେ
ମୋ ପାଇଁ ତ ଦୁଃଖ ଦେଲୁ ହେ ବାଢ଼ି ।

ଆସିଲୁଣି ଯେବେ ବତା ରେ ଉପାୟ
କପର ତୋତେ ମୁଁ ପାରବ ରଖି,
ନ ହେଲେ କହୁଚ ତୋହର ଆଗରେ
ମୋର ଏ ପରାଣ ଦେବ ଉପେକ୍ଷି ।"
ଜନମୀ ଅନ୍ତର ଜାଣିଲେ ସେକ୍ଷଣି
କହିଲେ, "ଲୋ ମାଆ ଡର ନା କେବେ,
ଆସିଲ ତୋ କୋଳେ ରଖିବା ପାଇଁ କ
କଏ ରଖିବ ମୁଁ ମରବ ଯେବେ ?
ସଂସାରେ ବଢଲ ଘୋର ଅନ୍ୟାୟ ଲୋ
ତୋହର କାନ୍ଦଣା ବାଜଲ କାନେ,
ଆସିଲ ବୈକୁଣ୍ଠ ବରଜ ଜନନ
ନ ହେଲେ କ କଂସ ମରବ ଆନେ ?
ଶୁଣ ହେ ଜନକ ଜନକ ମୋହର
ନଅ ମୋତେ ବେଗେ ଗୋପପୁରକୁ,
ଯୋଶୋଦା କୋଳରେ ଝିଅ ଜନମିଚ
ମୋତେ ଥୋଇ ତାକୁ ଆଣ ଘରକୁ ।
ମୋହର ମାୟାରେ ସକଳେ ନଦ୍ରତ
ଉଗ୍ରସେନ ଛଡ଼ା ଆଉ ଲୋ କେହି,
ଜାଣି ପାରବେନ ଯେବେ ଯିବେ ସେ ଲୋ
କୋଳରେ ପୂରାଇ ଲୁଚାଇ ନେଇ ।
ସିନ୍ଧୁ ନଦ ତଟେ ସାଗର ନକଟେ
ପାତାଲ ବୋଲଣ ଅଛଇ ରାଜ୍ୟ,
ତହିଁରେ ବସତ କର ରହୁଥିଲ
ନାଗ ନାମେ ଏକ ଜାତ ଅନାର୍ଯ୍ୟ ।
ସେମାନେ ନୁହନ୍ତ ଭୁଜଂଗ ଲୋ ମାଆ
ମଣିଷ ସମସ୍ତେ ଆମର ପର,
ଆର୍ଯ୍ୟମାନେ ଆସି ସେ ରାଜ୍ୟରେ ପଶି
ଘଉଡ଼ ଦେଲେ ଲୋ ଅନ୍ୟାୟ କର ।

କେତେକ ଠାଇଁରୁ ଆସି ନାଗପୁରରେ
ଅଛନ୍ତି ବସତି କରି ସୁଖରେ,
ପୁଣି କେତେକ ଲୋ ଅଛନ୍ତି ଏଇନା
ଶ୍ରେଷ୍ଠନାଗପୁରେ ମନଦୁଃଖରେ ।
ଜରାସନ୍ଧ ତାଙ୍କୁ ଦେଉଛି କଷଣ
ଲୁଟୁଛି ତାଙ୍କର ଧନ ସଂପତ୍ତି,
ଜରାସନ୍ଧ ପାଇଁ ଦିନ ରାତି ଲାଗି
ରହୁଛି ତାଙ୍କର ଘୋର ବିପତ୍ତି ।
ମଥୁରାରେ ଅଛୁ ଗୋଟିଏ ନାଗ ଲୋ
ନାମ ତ ବାସୁକୀ ନୁହଇ ସାପ,
ଯମୁନା କୂଳରେ କାଳନ୍ଦୀ ହ୍ରଦରେ
କଂସ ପାଇଁ ତାର ଘୋର ସଂତାପ ।
କଂସର ବଇରି ହୋଇଛି ସେ ଏବେ
ହେବ ଗୋ ସହାୟ ଆସିବ ଧାଇଁ,
ମୋ ଶିରେ ତା ଫଣା ଛତା ପରି କରି
ଧରିବ ବର୍ଷାରୁ ରଖିବା ପାଇଁ ।
ସବୁ ନାଗଯାକ ମିଳି ମିଶି କରି
କୁହୁଳୁ ଅଛନ୍ତି ଭିତରେ ଖାଲି,
ସୁବିଧା ସୁଯୋଗ ପାଇବେ ଲୋ ଯେବେ
ରାଗରେ ଗରଜି ଆସିବେ ଚାଲି ।
କଂସ ଜରାସନ୍ଧ ବିପକ୍ଷେ ଲଢ଼ିବେ
ହୋଇବେ ମୋହର ସାହା ସକଳେ,
କାହିଁକି ଜନକ ଜନନୀ ମୋହର
କାନ୍ଦୁଛ ଏଇନା ଏତେ ବିକଳେ ?
ବାସୁକୀ ନାଗକୁ କେତେ ଦିନ ପରେ
ପଠାଇଦେବି ମୁଁ ଦେଶକୁ ତାର,
ସେଠି ସେ ମିଶିବ ତାର ଜାତି ସହ
ସୁଖରେ କରିବ ଘରଦୁଆର ।

ତାର ପୁଅ କାଳୀ ରହିବ ଗୋ ଖାଲି
ଢାଳିବ ଗରଳ ଅନ୍ୟାୟ କରି,
କାଳିନ୍ଦୀର ପାଣି ବିଷ ପାଲଟିବ
କେହି ତା ପାଖକୁ ଯିବେନି ଡରି ।
ଫଣିର ଫାଶିରେ ,ଦଳିବ ତାହାକୁ
ଯିବ ସେ ମନକୁ ଯମୁନା ଛାଡ଼ି,
ଜୀବଜନ୍ତୁ ସବୁ ସୁଖରେ ରହିବେ
ପିଇବେ ନିର୍ଭୟେ ଯମୁନା ବାରି ।
ଦେଖି ମୋର ରୂପ ଚିହ୍ନି ମୁଁ କିଏ ସେ
ମନରୁ ଆଶଂକା କର ଗୋ ଦୂର,
ଚାଲ ଯା ବନ୍ଧନ ମୋତେ ନେଇ କରି
ଆଉ କର ନାହିଁ ତିଳେ ଡେରି ।
ଯମୁନା ମନକୁ ; ବାଟ ଛାଡ଼ିଦେବ
ନନ୍ଦ ଘରେ ସବୁ ଥିବେ ଅଜ୍ଞାନ,
ଏତିକ ବେଳରେ ଯାଅ ହେ ବନ୍ଧନ
ମୋତେ ଥୋଇ ସେଠି ଝିଅକୁ ଆଣ ।"
ଉଗ୍ରସେନ ଜଗି କହିଲି ରାଗରେ
"କିଏ ସେ ରେ ତୁହି ଯାଉଚୁ କେଣେ ?
କାଇଁପା କାଳଣୀ କିଏ ଫିଟାଇଲି
ଏପରି ତୋ ସଙ୍ଗ ଅଛୁ କି ଜଣେ ?
ଉଗ୍ରସେନ କଥା ଶୁଣି ଶିଶୁ କୃଷ୍ଣ
ଦେଖାଇଣ ଦେଲେ ନିଜ ମୂରତି,
ଉଗ୍ରସେନ ଚିହ୍ନି ଦେବାଧିଦେବଙ୍କୁ
ପଦେ ଶିର ଢାଳି କଲି ଭକତି ।
କୋଉଠେଇ ଥିଲି ଆସିଲି ବାସୁକୀ
ଭକତିରେ ଶୋଇ ଟେକିଲି ଛତା,
ଘୋର ବରଷାରେ ତିନ୍ତିଗଲି ନାହିଁ
କୃଷ୍ଣଙ୍କ ଶରୀର କୃଷ୍ଣଙ୍କ ମଥା ।

ଚଲେ ବସୁଦେବ ପୁଅକୁ ଯାକଣ
ବଜ୍ରକୁଳ ଚହଟ କଡ଼ାଏ ବାଟ,
ଛରଛର ହୋଇ ଝାଉଁବନ ବକଲେ
ପଦାଙ୍କ ଯାଇଁ ଯମୁନା ଘାଟ ।
ବଢ଼ିଛି ଯମୁନା ଦୁଇ କୂଳ ଡେଇଁ
ସୁଅରେ ଛୁଡ଼ବ ସାପର ମୁଣ୍ଡ,
ଶମନ କି ଯତେ ଭଉଣୀର ଘରେ
ଦଳବଳ ନେଇ କରଛି ରୁଣ୍ଡ ।
କୁମ୍ଭୀର ମଗର ଜୀବ ଭୟଙ୍କର
ଅନାଇଁ ଅଛନ୍ତି ଶିକାର ପାଇଁ,
ଶୃଗାଳ ଗୋଟିଏ ଚଢ଼ ଚଢ଼ କରି
ଯାଏ ଆଗେ ଆଗେ ଚଞ୍ଚଳ ଧାଇଁ ।
ଶଗାଳ ଯୋଉଠି ପଶିଲା ପାଣିରେ
ବସୁଦେବ ସେଇ ଘାଟରେ ପଶି,
ଚଳିଲା ବକ୍ଷରେ ପୁଅକୁ ଯାକଣ
ଯମୁନା ଉଠିଲା ସ୍ନେହେ ଉଲ୍ଲସି ।
ବୁଡ଼ିଗଲା ବେଳେ ବସୁଦେବ ମୁଣ୍ଡ
ଡାକିଲା ବକଲେ "ରଖ ହେ ହରି !
ମଲି ବୁଡ଼ିକରି ଯମୁନା ଗର୍ଭେ
ପୁଅକୁ ମୋହର ଶିରରେ ଧରି ।"
ଶୁଖିଲା ଯମୁନା ଗଲା ପାରି ହୋଇ
ତରତରରେ ପଶି ନନ୍ଦର ଘରେ,
ଦେଖିଲା ସକଳେ ଅଚେତନ ହୋଇ
ନିଦ୍ରିତ ଅଛନ୍ତି ଯେଝା ଶେଯରେ ।
ଅନ୍ତୁଡ଼ିଶାଳରେ ଯଶୋଦା କୋଳରେ
ଶୋଇଛି ଗୋଟିଏ ଅପୂର୍ବ କନ୍ୟା,
ଅଙ୍ଗେ ଅଙ୍ଗେ ତାର ଉଛୁଳି ଯାଉଛି
ସରଗ ଶିରର ମୃଦୁଳ ବନ୍ୟା ।

ଥୋଇଲା ପୁଅକୁ ଆଣିଲା ଝିଅକୁ
ବାହୁଡ଼ି ପଶିଲା କାରା ଘରେ,
ପଶିଲା ମାତ୍ରକେ ରଡ଼ିଲା ତନୟା
ଶୁଣିଲେ ପ୍ରହରୀ ଧାଇଁଲେ ଖବର ।
କହିଲେ କଂସକୁ "ଜନମିଲା ପିଲା
କି କରିବୁଁ ଶୀଘ୍ର କରନ୍ତୁ ଆଜ୍ଞା,"
ଖଣ୍ଡା ସାଉଁଟିଣ ଧରିଲା ହାତରେ
ଧାଇଁଗଲା କଂସ ହରାଇ ସଂଜ୍ଞା ।
ପଶିଲା କାରା ଭିତରେ ବନ୍ଧନ
ଦେଖିଲା ଝିଅଟା ଶୋଇଛି ତଳେ,
ତାହାର ଦେହରେ ଦେବତାର ତେଜ
ଦାଉଦାଉ ହୋଇ ବଢ଼ାହେଁ ଜଳେ ।
କାଳିଆ ମୁହଁରେ ନାଲିଆ ଜିଭଟା
ଲହଲହ ହେଲା ପରି ଦିଶୁଛି,
ସତେ କି ଅନୁଡ଼- ଶାଳରେ ଛୁଆଟା
କଂସକୁ ତରାଟି ଗୃହ୍ମୀ ହସୁଛି ।
କହିଲା ଦେବକୀ, "ଝିଅ ଗୋଟାଏ ତ
ତାହାକୁ ହେ ଭାଇ କାହିଁକି ଡର ?
ମାମୁଁ ବୋଲି ସିନା ସେନେହ କରିବ
ଭଣିଜୀ ମାମୁଁର ହୁଏ କି ପର ?"
ଶୁଣିଲାନି କଂସ ନେଲା କରେ ତୋଳି
ବୁଲାଇ ପିଟିଲା ଶିଳା ଉପରେ,
ଖସିଲା ହାତରୁ ପଶିଲା ଗଗନେ
କହିଲା ଶୁଣାଇ କରି ଉଚ୍ଚରେ ।
"ଶୁଣ ଶୁଣ କଂସ ! ତୋତେ ଯେ ମାରିବ
ଜନମି ଧରାରେ ରହିଛି ଲୁଚି,
ମରିବୁ ନିଶ୍ଚେ ବିଳମ୍ବ ତ ନାହିଁ
ରଖିଥା ମନରେ ସତ କହୁଛି ।"

ଶୁଣ ରେ ଲେଖକ କାନ ଡେରି କରି
ଦେବତା ବଚନ ବେଦର ଗାର,
କୃଷ୍ଣ ରୂପ ଗୁଣ ଲେଖି ଯା ଭକ୍ତିରେ
ସଂସାର ସଂତାପୁଁ ହୋଇବୁ ପାର ।
ତୋ ପାଇଁ ତରିବେ ବହୁ ପାପୀ ତାପୀ
ପୃଥିବୀ ହୋଇବ ସୁସ୍ଥ ଓ ସ୍ଥିର,
ଅଧର୍ମ ଲୁଚିବ ଧର୍ମ ଦିଶିଯିବ
ହବୁଟି ଶୁଝିବ ଗୀତାର ଗିର ।

———

# ନନ୍ଦୋତ୍ସବ

ପାହିଲା ରଜନୀ  ହସିଦେଲା ଉଷା
କନକ କିରଣେ ଭୂଷିଲା ଧରା,
ଭାଙ୍ଗିଗଲା ନିଦ  ଉଠିଲେ ଯଶୋଦା
ଦେଖିଲେ ଆଗରେ ଶୋଭା ପସରା ।
ଉଠିଲା ପୁଲକ  ଉଲ୍ଲସିଲା ମନ
ତରଳିଲା ସ୍ତନ ବହିଲା କ୍ଷୀର,
ସ୍ତନଟିଏ ଧରି  ଗୁଂଜଦେଲେ ତୁଣ୍ଡେ
ଆଖିରୁ ଝରିଲା ସେନେହ ନୀର ।
ଚୁମ୍ବିଲେ ଅଧର  କଅଁଳିଆ ଗଣ୍ଡ
ଝମ୍ପିଲା ବଦନ ଫୁଲିଲା ଗଣ୍ଡ,
ମାଆର ମନରେ  କି ସୁଖ ଜାଗଇ
ପାଇଲେ ପୁଅର ମଧୁର ଛାଡ଼ ।
ଧାଈ ପରିବାର  ଉଠିଲେ ସକଳେ
ଦେଖିଲେ କୋଳରେ ବାଳୁଆ ସୁନା,
ଧାଇଁଲେ ଆନନ୍ଦେ  କହିଲେ ଖବର
ଗୋପପୁରଯାକ ପାଇଲେ ଶୁଣା ।
ଆସିଲେ ସକଳେ  ଦଳ ଦଳ ହୋଇ
ଦେଖିଲେ ପୁଅକୁ ହୋଇଲେ ଖୁସି,
ଠେଲାଠେଲି ହୋଇ  ଆସନ୍ତି ଯାଆନ୍ତି
କେହି କା'କୁ ଘଗେ ପାରେନା ରୁଷି ।

ନନ୍ଦର ମନ୍ଦରେ ଜନ୍ମିଛି ନନ୍ଦନ
    ନବାନନ୍ଦ ଘରେ ଆଜି ଆନନ୍ଦ,
ଅନ୍ଧାର ଗୃହରେ ଜଳୁଛି ଆଲୁଅ
    ଉଆଁସରେ କାହ୍ନୁ ଉଇଁଲା ଚନ୍ଦ !
ଗୋବରଗାଡ଼ରେ ଫୁଟିଲା ଅବ୍ଦନ-
    ନଳିନ କି ସତେ ଉଜ୍ଜ୍ୱଳ ହୋଇ,
ଏ ତ ପୁଅ ନୁହେ, କୁସୁମଟିଏ ଲୋ
    ଯଶୋଦାର କୋଳେ ରହିଛି ଶୋଇ ।
ଗୋବର ପାଣିରୁ ଆସି ନାହିଁ କଲେ
    ମଇଳା ଚାହାର କେ ଦେଲା ଧୋଇ !
କବା ଆଉ କୋଉ ସରେ ଫୁଟିଥିଲା
    ଛୁଣ୍ଡାଇ ଆଣି କେ ଦେଇଛି ଥୋଇ ?
ଗଉଡ଼ ଘରର ପିଲା ଏ ତ ନୁହେ
    କୋଉ ଦେବତା କି ଶରୀର ଧରି,
ଜନମ ହୋଇଛି ନନ୍ଦର ମନ୍ଦିରେ
    ଶିଶୁ ତ ଶରୀରେ ଯାଇଛି ଭରି ।
ରାମଙ୍କ ସଂଗକୁ ମିଳିଗଲା କୃଷ୍ଣ
    ଆଖିଡୋଳା ଭରି ଦଶିବେ ବେନି,
ଶୁଭ୍ର ରଜତକୁ ଇନ୍ଦ୍ରନୀଳମଣି
    ମିଶାଇ ଖେଳିବା କୋଳରେ ଯେନି ।
ଶୁକ୍ଳ ସାରସର ପିଠି ପକ୍ଷୀ ପରେ
    ଉଠିଲା କି ଆଉ କାଳିଆ ପର,
ଅମଳ ଧବଳ ସରସିଜ ଦଳେ
    ବସାଇ ଦେଲା କେ କଳା ଭ୍ରମର ।
ଶ୍ୱେତ ଶତଦଳ ଶୁଭ୍ର ପାଖୁଡ଼ାରେ
    କିଏ ସେ ଖଂଜିଲା ନୀଳ କୁମୁଦ ?
ଏପରି ମିଳନ ଦେଖିଲେ ଆଖିରେ
    ପୁଲକେ ଫୁଲିବ ନାହିଁ କା ହୃଦ ?

ଜାହ୍ନବୀ ଜଳରେ ଯମୁନାର ଧାର
ଯବଏ ହସିବ ସମଶରୀର,
କି ଅବା ଧବଳୀ ରମଣୀ ପିଠିରେ
କାଳିଆ କବରୀ ଶୋଭେ ରୁଚିର !
ଗଛରେ ଗଛରେ ଗାଇଲେ ପକ୍ଷିଏ
ଛଅ ରାଗିଣୀରେ ସପତ ସ୍ୱର,
ଯମୁନା ଗାଇଲା ତାଙ୍କ ସଙ୍ଗେ ସଙ୍ଗେ
କୁଳୁ କୁଳୁ କରି ଗୀତ ମଧୁର ।
ଦୁଆରେ ଦୁଆରେ ବସି ବାଜାଦାର
ବଜାଇଲେ ମିଶି ଯୋଡ଼ି ନାଗରା,
ତା ସଙ୍ଗେ ବାଜିଲା ଢୋଲ କରତାଳ
ମହୁରୀ ବିପଞ୍ଚୀ ସପତ ସ୍ୱରା ।
ପାହାନ୍ତା ପହରେ ବାଜଇ ଭୈରବୀ
ଉଷା ଆସେ ହସି ପ୍ରଫୁଲ୍ଲ ହୋଇ,
ହିନ୍ଦୋଳେ ଥାଆନ୍ତି ଭୋଦୁଅ ମାସରେ
ବସନ୍ତ ଆସଇ ଜୀର୍ଣ୍ଣତା ଧୋଇ ।
ଗଛପତ୍ର ସବୁ କଅଁଳ ଉଠଇ
ବିଷାଦ ପଳାଏ ଦୂରକୁ ଦୂଂଚ,
ତାହା ସଙ୍ଗେ ସଙ୍ଗେ ଲୁଚଇ ଜୀର୍ଣ୍ଣତା
ଅଧୀର ଆନନ୍ଦେ ଲେଉକ ମୁଂଚ ।
କୋକିଳ ସଙ୍ଗୀତ ଗାଏ ପଞ୍ଚମରେ
ପ୍ରଦୋଷ ଆସଇ ଚଢ଼ିଣ ଦୋଳ,
ଗଗନ ଦେହରେ ଧରଣୀର ବକ୍ଷେ
ପାତଳ କରିଣ କାଳିମା ବୋଳ ।
ମାଲକୋଶେ ଗାଇ ଉତ୍ତେଜନା ବୋଳ
ନଚାଇ ହଅନ୍ତି ଗୋପ ଗୋପୀଙ୍କୁ,
ଦୀପକରେ ଗାଇ ଜଳାଇ ଦୀପାଳି
ଝୁରାଇ ହଅନ୍ତି ତମଃରାଶିକୁ ।

ଦୁଇ ପ୍ରହରରେ                    ବାଜେ ଗୁଣକରୀ
        ଭୈରବୀ ଗୁର୍ଜ୍ଜରୀ ଶ୍ରାବଣ ମୋହନ,
ତୃତୀୟ ପ୍ରହରେ                    ବୈରାଟୀ କାମୋଦୀ
        ପ୍ରଦୋଷେ ଦୀପକ ପ୍ରଦୀପ ଥୋଇ ।
ଖରାବେଳେ ବସି                    ଗାଆନ୍ତି ମହ୍ଲାର
        ବରଷଇ ମେଘ ଗରଜି କରି,
ଯଶୋଦା କୋଳରେ                    ଯାକନ୍ତି ପୁଅକୁ
        କାଳେ ପୁଅ ପିବ ସେ ନାଦେ ଡରି ।
ନନ୍ଦ ଗନ୍ଧାଘର                    ପଡ଼ିଛି ମୁକୁଳା
        ଯିଏ ଯେତେ ପାରେ ନେଉଛି ଧନ,
ଖାଇବା ପିଇବା                    ଲାଗିଛି ସବୁଠି
        ସର୍ବଦା ଶୁଭୁଛି ହରଷ ସ୍ୱନ ।
ଦୁଃଖୀ ରଙ୍କୀଙ୍କର                    ଲାଗିଅଛି ଯାତ
        ପିଲାଏ ପିଲାଏ ମିଠେଇ ପାଇଁ,
ଯାଆନ୍ତି ଆସନ୍ତି                    ମିଠେଇ ଖାଆନ୍ତି
        କଜିଆ କରନ୍ତି ବାଟରେ ଯାଇଁ ।
ଗୋରୁ ଗାଈ ଧନ-                    ଧାନ୍ୟ ସୁନା ଆଦି
        ଠାଆ ଠାଆ ହୋଇ ହେଉଛି ବଣ୍ଟା,
ଦାଣ୍ଡରେ ଦାଣ୍ଡରେ                    ସବୁଠି ହୋଇଛି
        ପାଣି କାଦୁଅର ଘଣ୍ଟା ଚକଟା ।

---

# ପୂତନା ବଧ

ଆକାଶ ବଚନ ନନ୍ଦର ଉତ୍ସବ
କୃଷ୍ଣଜନ୍ମ କଥା କଲା ପ୍ରକାଶ,
କଂସର ମନରେ ଭୟ ସଂଚରିଲା
ଭାବିଲା କପରି କରିବ ନାଶ ।
ବସାଇଲା ସଭା ଡାକିଲା ସଭିଙ୍କୁ
ଭାଳିଲା କପରି ମାରିବ ଝିଅ,
କୋଉଠି ଲୁଚିଲା ମୋହର ବଇରି
ବସୁଦେବ କାହିଁ—ନେଲା କପରି ?
କିଏ ଖୋଜିଦେବ କିଏ ବା ଆଣିବ
କହିଦେବ,ମୋତେ ଖବର ଆସି,
ଦେବି ମୁଁ ତାହାକୁ .ବହୁ ଧନ ରତ୍ନ
ଜୀବନଟା ଯାକ ଖାଇବ ବସି ।
କଂସର ଭଉଣୀ ପୂତନା ରାକ୍ଷସୀ
କହିଲା, "ଖୋଜି ମୁଁ ଆଣିବି ବଳେ,
କି ଅବା ମାରିବି ତାହାକୁ ସେଇଠି
ଯୋଉଠି ପାଇବି କଳେ କୌଶଳେ ।"
ସାଜିଦେଲା ବେଶ ମନୋହର କରି
ଦିଶିଲା ଷୋଡ଼ଶୀ ରୂପସୀ ପରି,
ଚାଲିଲା ଗୋପକୁ ତରତର ହୋଇ
ସ୍ତନ ଯୁଗଳରେ ଗରଳ ଭରି ।

ଗୃହଗଲା ବେଳେ କ୍ଷୀର ଝରୁଥାଏ
ବକ୍ଷର ବସନ ତିନ୍ତାଇ କରି,
ଦୁଇଟି ସ୍ତନକୁ ଦୁଇଟି ହାତରେ
ଚେକ ରଖିଥାଏ ଯତନେ ଧରି ।
ଘରେ ଘରେ ପଶି କହଲା ଦୁଃଖରେ
"ବିଧାତାର ସତେ କୋଉ ବିଚାର !
ଗୋଟାଏ ଛୁଆକୁ ସ୍ତନେ ମୋ ଭରିଲା
କାହିଁ କି ମିଛରେ ଦୁଧର ଭାର ।
କେତେ ବା ଦହିଁବ ମାଟିଟା ଉପରେ
ଭୂଇଁ ପିଇଗଲେ କି ଅବା ଲାଭ ?
ମଣିଷ ଦୁଧକୁ ମଣିଷର ଛୁଆ
ଖାଇଲେ ପୂରନ୍ତା ମିନା ଅଭାବ ।
ଦୁଧଖିଆ ପିଲା କାହାର ଅଛି ଗୋ
କଅଁଳା ଦୁଧକୁ ଖୁଆନ୍ତି ଧରି,
ଭୋକିଲା ଛୁଆଟା ସୁସ୍ଥ ହୁଅନ୍ତା ଗୋ
ମୋର ସ୍ତନୁଁ ଖାଇ ଉଦର ଭରି ।
କେତେ ମାଆ ସ୍ତନେ ହୁଏ ନାହିଁ ଦୁଧ
ଛୁଆ ପାଳିବାରେ ହୁଅଇ ଦୁଃଖ,
କାହାର ସ୍ତନରେ କ୍ଷୀର ହେଉ ନାହିଁ
ଖୁଆଇ ଥରୁଟେ ଭୋଗୁ ଗୋ ସୁଖ ।
ଛୁଆର ମୁହଁରୁ କାନ୍ଦଣା ଶୁଣିଲେ
ମାଆ ମନ ହୁଏ କେତେ ବିକଳ,
ଛୁଆ ଜନ୍ମ କରି କ୍ଷୀର ନ ହେଲେ ଗୋ
ଜନମକଳରେ ଅଛି କି ଫଳ !
ପେଟ ପୂରା କରି ଛୁଆ ଖୁଆଇଲେ
ମାଆ ମନେ ହୁଏ ଯୋଉ ଆନନ୍ଦ,
ଶହେଟା ବ୍ରାହ୍ମଣ ଭୂରିଭୋଜନରେ
ମିଳଇ କି କାହିଁ ତହିଁର ଗନ୍ଧ !

ମାଆ ହେଲେ ସିନା  ସ୍ନେହରୁ ତାହାର
ବକ୍ଷର ରକତ ହୋଇବ କ୍ଷୀର,
ଛୁଆଠାରେ ଯାର  ସେନେହ ହୁଏନା
ସ୍ତନଟା ଶୁଖିଲା ରହଇ ଚର ।
ପିଲାଟା ଜୀଇବ  କଅଣ ଖାଇବ
ଖାଲି ଚମଟାରେ ଥାଏ କି କଷ,
ଚୁଚୁମିଲେ ଖାଲି  ପେଟ କି ପୂରିବ
ଚୁଚୁମୁଥିଲେ ସେ ନିଶି ଦିବସ ।
ଦୁଧ ନଅଣ୍ଟିଆ  ପିଲା କା'ର ଅଛି,
ଆଧା ଦୁଧ ଦେବ କୋଳରେ ଧରି,
ଥରୁଟେ ଖାଇଲେ  ଭୋକ ମରିଯିବ
ଦିନଯାକ ଥିବ ପେଟଟି ଭରି ।
ମୋର ଦୁଧ ଖାଇ  ଯେ ପିଲା ବଢ଼ିବ
ବଧାରେ ପାହାଡ଼ କରିବ ଚୂନା,
ତାର ବଳ କଣ  କାହ୍ନୁ କେତେବେଳେ
ଜୀବନ ଯାକରେ ହୋଇବ ଊଣା ?"
ଶୁଣିଲେ କେତେକ  ନେଇଗଲେ ଡାକି
ଛୁଡ଼ିଲେ ଯଶୋଦା ପାଖରେ ନେଇ,
କହିଲେ ଦେଖାଇ  "ଖୁଆଅ ଗୋ ରାଣୀ,
ପାଳ ଗୋ ପୁଅକୁ ସ୍ୱା କ୍ଷୀର ଦେଇ ।
ସହଳ ବଢ଼ିବ  ବଳୁଆ ହୋଇବ
ରୋଗ ବଇରାଗ ପଶିବ ନାହିଁ,
ଆଉ ଗୋ ପୁଅକୁ  ଖୁଆ ସ୍ତନ୍ ଦୁଧ
ପୁଅ କି ଏଇନା ଶୋଇଛି କାହିଁ ?"
ଯଶୋଦା ନାରୀର  ମୂରତିକୁ ଦେଖି
ହୁଡ଼ିଗଲେ ବୁଦ୍ଧି ହସିଲେ କେତେ,
ପୂତନାକୁ ବହୁ  ଆଦର କରଣ
ଛାନ୍ଦିଦେଇ ଗଲେ ପ୍ରଶଂସା ଯେତେ ।

ଆଣିଲେ ପୁଅକୁ ଦେଲେ ତା କୋଳରେ
ପୂତନା ଭରିଲା ତୁଣ୍ଡରେ ସ୍ତନ,
ଜାଣିଲେ ଶ୍ରୀକୃଷ୍ଣ ବିଷ ବୋଲି କରି
ଶୋଷିନେଲେ ପରାଣ ମଲା ତକ୍ଷଣ ।
ମଲାବେଳେ କଲା ଭୀଷଣ ଗର୍ଜ୍ଜନ
ସୁନ୍ଦର ରୂପ ତା ଗଲା ବଦଳି,
ଖଣ୍ଡିଆ ଓଦର ଫଟି ତ ଦିଶିଲା
ମରିବା ସ୍ଥାନକୁ ଦେଲା ସେ ଦଳି ।
ଶୁଭିଲା ଚହଳ ନାରୀଟାଏ ଆସି
ଦୁଧ ଦେଉଥିଲା କୃଷ୍ଣକୁ ଧରି,
ବସି ବସି କରି ଦୁଧ ଦେଉଁ ଦେଉଁ
ମରିଗଲା କିଆଁ ମ୍ଲାଡ଼ିଲା ରଡ଼ି ।
ଧାଇଁଗଲେ ସବୁ ଦେଖିବା ପାଇଁକି
ଦେଖିଣ ହଲକ ଗଲାଟି ଶୁଖି,
ଯଶୋଦାଙ୍କୁ କେତେ ଭର୍ତ୍ସନା କରିଲେ
ସମସ୍ତେ ହୋଇଲେ ସମାନ ଦୁଃଖୀ ।
ନାରୀ ତ ନୁହଇ ରାକ୍ଷସୀଟାଏ ଗୋ
ଆସିଥିଲା ପୁଅ ମାରିବ ବୋଲି,
ରଖିଲା ଦଇବ, ଯଶୋଦା କପର
ପୁଅକୁ ତା କୋଳେ ଦେଲା ଟେକି ତୋଳି ।
ପୁଅର ହୋଇଲା ବାନ୍ତି ମଇଦାନ
ବାନ୍ଧୁଣୀ ଲଞ୍ଜରେ ଦେଲେଟି ଝାଡ଼,
ଗୋବରେ ଗାଧୋଇ ଗୋବରର ଟିକା
ଦେଇ ପୁଅ ଦେହ ଦେଲେ ସଜାଡ଼ି ।
କେତେ ପିଲାଙ୍କୁ ତ ହୁଏ ଏଇ ରୋଗ
ଯାହାକୁ କହନ୍ତି ପିଶାଚ ବାଡ଼ି,
ବାନ୍ଧୁଣୀ ଲାଂଜରେ ଝାଡ଼ିଝୁଡ଼ି ଦେଲେ
ରୋଗ ବଇରାଗ ପଳାଏ ଛାଡ଼ି ।

କେହି କେହି ତାକୁ କହନ୍ତି ପୂତନା
ଝାଡ଼ାବାନ୍ତି ହେଲା ତାର ଲକ୍ଷଣ,
ଏ ରୋଗରେ ପିଲା ବହୁତ ମରନ୍ତି
ତେଣୁ ତ ତାହାର ରାକ୍ଷସୀ ନାମ ।
ଶୁଣିଲା ଯେ କାଳେ ପୂତନା-ନିଧନ
ଆକୁଳ ହୋଇଲା କଂସର ମନ,
କହିଲା— "ଶକଟ ମାରିବୁ କି ଶିଶୁ
ନ ହେଲେ ଆଣି ଦେ ତାକୁ ବନ୍ଧନ ।"
ରାଜ ଅଜ୍ଞା ନେଇ ଚଳିଲା ଶକଟ
ମିଳିଲା ଗୋପରେ ଶୁଣିଲା ଯାଇଁ,
କେବଳ ପୂତନା ମରଣର କଥା
ଆଉ କାହା ତୁଣ୍ଡେ କଥା ତ ନାହିଁ ।
ଧୀରେ ଧୀରେ ଧୀରେ ଗଡ଼ି ଗଡ଼ି ଗଲା
ରହିଲା ନନ୍ଦର ମନ୍ଦିର ପାଶେ,
ଚାହିଁ ରହିଲା କେତେବେଳେ କୃଷ୍ଣ
କୋଳ ଉପାନ୍ତରେ ତା ପାଖେ ଆସେ ।
ଯଶୋଦା ଦେଖିଲେ ଶଗଡ଼ ତଳଟି
ହୋଇଚି ନିର୍ମଳ ଦିଶୁଚି ସଫା,
କହିଲେ ଦାସୀକୁ "ଶେଯଟିଏ ଝାଡ଼ି
ଶଗଡ଼ର ତଳେ ନେଇ ଲୋ ପକା ।"
ଶୁଣିକରି ଦାସୀ ପାରିଦେଲା ଶେଯ
ଯଶୋଦା ପୁଅକୁ ଶୋଇଲେ ନେଇ,
ନିଜେ ପୁଅ ପାଖେ ଶୋଇଲେ ଟିକଏ
ଖୁଆଇଲେ ସ୍ତନ ତୁଣ୍ଡରେ ଦେଇ ।
ଖାଇ ଖାଇ ପୁଅ ଆଖି ବୁଜିଦେଲା
ଯଶୋଦା ଉଠିଲେ ତଳପ ଗୁଡ଼ି,
ଘର ଭିତରକୁ ତରତରେ ପଶି
ଦୁଧ ସର ନେଇ ବସିଲେ ବାଢ଼ି ।

କୃଷ୍ଣ ଗୋଡ଼କୁ ଗୋଇଠାଏ ମାରି
ଭାଂଗିଲେ ସେଇନା ଚଢ଼ିଲା ଝଡ଼,
ଫଳ ଅର ସବୁ ଭାଂଗିଭାଂଗି ଗଲା
ଚକଟେ ଶୁଭିଲା ଭୀଷଣ ରଡ଼ ।
ସକଳେ ଦଉଡ଼ି ଆସିଲେ ସେଇନା
ଦେଖିଲେ ଶଗଡ଼ ପଡ଼ିଚି ଭାଂଗି,
ଶ୍ରୀକୃଷ୍ଣ ତା ତଳେ ଶୋଇଛନ୍ତି ଏକା
ଯଶୋଦାଙ୍କୁ ସବୁ କହିଲେ ରାଗି ।
"କୋଉ ଚପଦରେ କଅଁଳା ଛୁଆକୁ
ଶୁଆଇଲ ସତେ ଶଗଡ଼ ତଳେ !
ଖାଇଚଲା ସିନା ପୁଅ ଲୋ ଅମର
ଆମ କରମକୁ ଦଇବ ବଳେ !"
ଚକିତ ହୋଇଲେ ଦେଖିଣ ଏସନ
ଭୟରେ ଥରିଲେ ସକଳେ ସେଠି,
କହିଲେ, "ସତେ ଲୋ ଶଗଡ଼ ତ ନୁହେଁ
ରାକ୍ଷସ ଗୋଟାଏ ହୋଇବ ସେଠି ।
ତରବର କରି ପୁଅକୁ ଉଠାଇ
ଯଶୋଦା ଧଇଲେ କୋଳରେ ନେଇ ।
ଆଉଁସି ପାଉଁସି କେତେ ଗେଲ କଲେ
ପୁଅର ଗଣ୍ଡରେ ଚୁମ୍ବନ ଦେଇ ।
ଭାଂଗିଲା ଶକଟ ; ମରିଲା ରାକ୍ଷସ
ଶବଦ ପଶିଲା କଂସର କାନେ,
ଗଣିଲା ପ୍ରମାଦ ହେଲା ଛଟପଟ
ରାଗରେ ଗରଜି ହେଲା ଉତାନେ ।
ତୃଣାବର୍ତ୍ତ ଆସି ଗରବେ କହିଲା,
"ମୁହିଁ ଖାଇଥାଉଁ କିଆଁ ବା ଡର ?
କୋଳରେ ପୁରାଇ ଆଣିବ ଉଡ଼ାଇ
ନ ହେଲେ ମାରିବ ଶିଶୁ କୁମର ।

ତୁଆଁଠାଲୁ ମାର- ବାଳୁ କି ବଚନ
ଆଗୁଁ ଯାଇଥିଲେ ଥାଆନ୍ତି ମାରି,
ଯାହା ହେବାର ତ ହୋଇ ସାରିଲାଣି
ଏଇନା କି ହେବ ହେଉଛି ଘାରି ।
ଯାଉଚି ଏଇନା ଆଉ ଡରନ୍ତୁ ନ
ଦେଖିବେ ମୋହର କି କରାମତି,
କପରି ତୁଆଁଠା ଜଳିବ ଏଥର
ଦୁଧଖିଆଁଠାର କେତେ ଶକତି !"
ଶୁଣି ତୃଣାବର୍ତ୍ତ ଆଶ୍ୱାସ ବଚନ
କଂସ ମନେ ମନେ ହେଲା ହରଷ,
ଭାବିଲା ଏହାର ଆବର୍ତ୍ତନେ ପଡ଼ି
ପିଲାଟା ପଡ଼ିବ ମରି ଅବଶ୍ୟ ।
ଘୂର୍ଣ୍ଣିବାୟୁ ରୂପେ ଯାଏ ଯେତେବେଳେ
ଏହା ଭଉଁରେ ଉଡ଼ଇ ତୃଣ,
ତେଣୁ ତୃଣାବର୍ତ୍ତ ବୋଲି ନାମ ସିନା
ଲୁହା ଉଡ଼ାଇବା ପରି ଯା' ଗୁଣ ।
ତୁଆଁଠା କପରି ଚଂଚଳ ମରିଲେ
ଜୀବନ ଟିକଏ ହୋଇବ ସ୍ଥିର,
ତୃଣାବର୍ତ୍ତ ହାତେ ବ୍ୟର୍ଥ କରିଦେବ
ଆକାଶୁଁ ଶୁଣିଲା ଯେ କୂଟ ଗିର ।
ଚଂଚାଇତେ ଡାକ କହିଲା ଚଂଖରେ
"ପାଟଶାଢ଼ୀ ଆଣି ବାନ୍ଧ ଯା' ମୁଣ୍ଡେ,
ଯାଉ ଗୋପପୁରେ ମାରୁ ସେ ଶିଶୁକୁ
କରୁ ସେ ଯେପରି କହୁଚି ତୁଣ୍ଡେ ।"
ଶାଢ଼ୀ ବାନ୍ଧି ଶିରେ ଗଲା ତୃଣାବର୍ତ୍ତ
ରାଜ୍ୟ କୁଟାକାଠି ଦେହରେ ଧରି,
ଧରଣୀ ଦେହରୁ ଗଗନର ଯାଏଁ
ଖେଳିଲା ପବନ ଚକାଭଉଁରି ।

ଉଡ଼ିଲା ପଞ୍ଜର ପଡ଼ିଲା କବାଟ
ଉଠିଲା ପଡ଼ିଲା ଘରର ଶୃଳ,
ଗୋପପୁରବାସୀ ଭାବିଲେ ମନରେ
କେଉଁଠୁଁ ଏପରି ଆସିଲା କାଳ !
ଦାଣ୍ଡେ ଦାଣ୍ଡେ ବୁଲି ଉଡ଼ାଇଣ ଧୂଳି
ପଶିଲା ନିର୍ଭୟେ ନନ୍ଦର ଘରେ,
ଗୁଡ଼ାଇ ପୁଡ଼ାଇ ଶେଯ କନାପଟା
ଗୋଟାଇ ପୋଟାଇ କୃଷ୍ଣଙ୍କୁ କରେ ।
ଧରି ପୂରାଇଲା ଆବର୍ତ୍ତ ଭିତରେ
ଗଗନକୁ ବୋଲି ନେଲା ଉଡ଼ାଇ,
କିନ୍ତୁ କୃଷ୍ଣ ତାର ବେକ କୁଣ୍ଢାଇଲେ
ପାରିଲାନି କେବେ ତାଙ୍କୁ ଛଡ଼ାଇ ।
ଚିପିଲେ ତା ତଣ୍ଟି ରୁନ୍ଧିଲେ ନିଶ୍ୱାସ
ପଡ଼ିଲା ଅସୁର ଧରଣୀ ପରେ,
ଧାଇଁ ଧାଇଁ ଯାଇ ଦେଖିଲେ ସକଳେ
କୃଷ୍ଣ ବସିଛନ୍ତି ତାହାର ବକ୍ଷରେ ।
ରହିଲା ପବନ ପଡ଼ିଲା ଅନ୍ଧାର
ଝାଡ଼ିଲେ କୃଷ୍ଣଙ୍କୁ ଧରିଲେ ତୋଳି,
ଜଣ ଜଣ କରି ଗୋପ ଗୋପୀ ମିଳି
କୃଷ୍ଣ ଗଣ୍ଡେ ଦେଲେ ଚୁମ୍ବନ ବୋଳି ।
କହିଲେ ଦୁଃଖରେ "ଛୁଆଟାକୁ ସତେ
ଛାଡ଼ୁ ନାହିଁ ଅସି କେତେ ବିପତ୍ତି ।
ଦଇବ ବଳରୁ ବାଳୁତ ପିଲାଟା
ଯାଇଅଛି ସିନା ପ୍ରାଣେ ବଞ୍ଚି !
କେଉଁ କୁକ୍ଷଣରେ ଜନ୍ମିଲା ଛୁଆଟା
ବିପଦ ଉପରେ ବିପଦ ଆସି,
ଗୋଟା ଗୋଟା ହୋଇ ପଡ଼ୁଛନ୍ତି ତାକୁ
କେଉଁ ଡାଆଣୀଟା ଅଛି କି ଗ୍ରାସି !

ପୁଅକୁ କେବେ ଗୋ    ପଦାକୁ କାଢ଼ ନା
ଆଖିରେ ଆଖିରେ ରଖ ଲୋ ତାକୁ,
ଏତେ କାଳକରେ    ପୁଅଟିଏ ହେଲା
ବୋଝ କ ହୋଇଚ ସତେ କାହାକୁ ?
କାଖରେ କାଖରେ    ବଢ଼ାଅ ଲୋ ସବୁ
ତଳେହେଁ ଦାଣ୍ଡରେ ଚଳଅ ନାହିଁ,
ଡାଆଣୀ ଡାଆଣୀ—    ଗୁଡ଼ା ଲୋ କାହିଁକି
ଛୁଆ ବକଟକୁ ଅଛନ୍ତି ଚାହିଁ !
ଡାଆଣୀ ଆଖିରେ    ଦଇବ କାହିଁକି
ଗେଞ୍ଜି ଦେଉ ନାହିଁ ଶୁଖୁଆ କଣ୍ଟା,
ମୁହଁ ।ମଖାଣ୍ଟଙ୍କ    ଆଖି ଫୁଟିଯାନ୍ତା
ହଟିଯାନ୍ତା ବଳ ଭାଂଗନ୍ତା ଅଂଠା ।
କୋଉ ଘଇଜରେ    ଅଛି ଲୋ ଏପରି
ଗୋଟାଏ ଛୁଆକୁ ଏତେକ ଆଖି,
ଚାହିଁ ବସିଛନ୍ତି    ଦିନ ରାତି ଖାଲି
ନେଇ ପଳାଇବେ ବୋଲି ଲୋ ଯାକ ।
ଟିକିଏ ଆଖିରୁ    ଆଡ଼ ହୋଇଗଲେ
ଆସୁଚି ଗୋଟାଏ ବିପଦ ମାଡ଼ି,
କାହିଁ ଗୋ ଯଶୋଦେ    ସତର୍କ ହେଉନା
ପୁଅକୁ ଯାଉଚ ଏକାକୀ ଛାଡ଼ି !
ଦୁଧରେ ପକାଅ    ଛୁଂଚୁଣୀର ଅଗ
କାନକୋଳି କଂଠା ଆଉରି ପକା,
ଡାଆଣୀ ଆଖିର    ଯେତେକ ଅବଗୁଣ
ସବୁ ନାଶଯିବ ନ ଥିବ ଶଙ୍କା ।"
ଶ୍ରୀକୃଷ୍ଣଙ୍କୁ ଯେବେ    ଡାଆଣୀ ଖାଇବ
ଆଉ ବା ସଂସାର ରହିବ କାହିଁ ?
ଲେଖକଙ୍କୁ ପଛେ    ଖାଇଯାଉ ଆଗ
କୃଷ୍ଣଚରଣକୁ ବସିଚ ଚାହିଁ ।

କୃଷ୍ଣଙ୍କୁ ଲେଖକ ଧନ୍ଦା ଲଗିଥାଉ
ଲେଖକଙ୍କୁ ଲଗୁ ଶ୍ରୀକୃଷ୍ଣ ଧନ୍ଦା,
ଜୀବନେ ମରଣେ ଶୟନେ ସପନେ
କୃଷ୍ଣଙ୍କୁ ତ କରଅଛୁ ସେ ଫନ୍ଦା ।

---

# ନାମକରଣ

ନନ୍ଦର ମନ୍ଦିରେ ପୁଅ ରଖି ଆସି
ବସୁଦେବ ମନେ ଭାଳଇ ବସି,
କଂସ ଅଳପକେ ଜାଣିଲେ ଏ କଥା
ମୁକର ମାରିବ ଗୋପରେ ପଶି ।
ବାପ ମାଆ ମନ ଯେସନ ବିକଳ
ହୁଏ ପୁଅଝିଅମାନଙ୍କ ପାଇଁ,
ସଂସାର ଭିତରେ ଆଉ କେହି ହେଲେ
ମନର ସେ ଦୁଃଖ ଜାଣେ କି କାହିଁ ?
ଲୁଚାଇ ଲୁଚାଇ ମରମ କଷଣ
ଅନ୍ତରେ ଅନ୍ତରେ ହୁଅଇ ଦହି,
ଛାତିକୁ ପଥର କରିଦେଇଥାଏ
କା ଆଗେ ସେ କଥା ପାରେନା କହି ।
ମାରିବରେ ସିନା କାନ୍ଦଇ ସନ୍ତତି
ପୁଅକୁ ସତେ କି ପାଇବି ଫେରି ?
କଂସ ପରମାୟୁ ସରିବ କି ସତେ
କିବା ତା ମରଣ ହୋଇବ ଡେରି ।
ଜଣ ଜଣ କରି ପେଶୁଛି ଅସୁର
ମୋହର ପୁଅକୁ ମାରିବା ପାଇଁ,
ଧରମ ବଳ କି ମୋର ଏତେ ଅଛି
ଯିଏ ଯାଏ ସିଏ ଫେରଇ ନାହିଁ ।

ଦୈବ ବାଣୀ କି ଫଳିବ ସତରେ
ମୋ ପୁଅ ହାତରେ ମରିବ କଂସ,
ବିଧାତା କି ମନେ ମନାସିଛି ଏହା
ସଂସାରୁ ସାରିବ ଅସୁର ବଂଶ ।
ଦେବକୀ କାନରେ କାନ୍ଧ କରି କହେ
"ପୁଅକୁ ପୂରିଲା ଦେଢ଼ ବରଷ,
ଜୀବନରେ କ'ଣ ପୁଅ କୋଳେ ଧରି
ଥରୁଟିଏ ହେବା ନାହିଁ ହରଷ ?
ଫଳନ୍ତ ଗଛରେ ଫଳ ନ ରହିଲେ
କେହି କି ତା ଆଡ଼େ ଅନାଏଁ ଗୃହୀ ?'
ଗଛ ଲତା ସବୁ ଫଳାଇ ଦେବାକୁ
ପ୍ରକୃତି କି କେବେ କରଇ ନାହିଁ ।
ବସନ୍ତ ଆସିଲେ ମୁକୁଳଇ ଗଛ
ଯୌବନେ ଢୁଳକେ ଜୀବର ଦେହ,
ମନେ ମନେ ଜଣେ ଜଣକୁ ଖୋଜଇ
ଦୁଇ ଜଣଙ୍କର ବଢ଼ଇ ସ୍ନେହ ।
ଏହି ସ୍ନେହ ପାଇ ମିଶିଯାଏ ଦେହ
ସେ ମିଳନୁଁ ବଢ଼େ ପ୍ରକୃତି ବଂଶ,'
ଯେତେ ଜୀବଜନ୍ତୁ ଯେତେ ଗଛଲତା
ଏକେ ଏକେ ସବୁ ତାହାରି ଅଂଶ ।
ଏହି ମିଳନକୁ ଜୀବତା କରିଛି
ମାନବ ବିବାହ-ବନ୍ଧନେ ବାନ୍ଧି,
ଏହି ବନ୍ଧନକୁ ସହୁଛି ସଂସାରେ
କେତେବେଳେ ହସି କେବେ ବା କାନ୍ଦି ।
ବିବାହ କଥାଟା ସହଜ ନୁହଇ
ସଂସାରେ ସମାଜ ବଡ଼ ଅଡ଼ୁଆ,
ମିଳିମିଶି କରି ଘର କରୁ କରୁ
କେବେ କେବେ ମନ ହୁଏ କଡ଼ୁଆ ।

ତଥାପି ଏ ବୋଧ ଗଲୁ ଲାଗେ ନାହିଁ
ପ୍ରକୃତ ମୂର୍ତ୍ତିଏ ରଜନୀ ହେବା,
ସେ ବୋଝରେ କେଉଁ ଗୂଢ଼ ଜିଅ ଅଛି
ସେଥିପାଇଁ ସବୁ ପାଗଳ କବା !
ପ୍ରଜାଙ୍କୁ ହେଏ ଅଜ୍ଞାତ ଚେତାଇ
କଶୋରଙ୍କୁ ହେଏ ଭବିଷ୍ୟ ଆଶା,
ମନରେ ମନରେ ଲୁଚକାଳି ଖେଳେ
ପ୍ରୀତିବୋଳା କେତେ ନୂଆ ପିପାସା ।
ଦମ୍ପତ୍ତିଙ୍କୁ ହେଏ ବିରହ, ସରହ
ସ୍ମୁବନ୍ଧ କଟିଣ ଜୀବନଯାକ,
ଦୂରନ୍ତ ବୋଲି ତ କେହି କହେ ନାହିଁ
ସୁଖ ଦୁଃଖ ଖାଲି ପଡ଼ଇ ଡାକ ।
ବାପ ମାଆ ଭାଇ ମିଳମିଶି କରି
ମିଶାଇ ହେଅନ୍ତି ଆଶିଷ ବୋଳ,
ପର ପୁଅଟିଏ ଘରର ସଙ୍ଗରେ
ଘରକୁ ନିଅନ୍ତି ଆଦରେ ଟୋଳି ।
ବାପଘର ଲକ୍ଷ୍ମୀ ଧୋଇଦେଇ ଝିଅ
ଶାଶୁଘର ଲକ୍ତ ହୁଏ ଦେହେ,
ଏହି ମିଶାଣରେ ଆପଣାର ଭୁଲି
ପରକୁ ନିଅଇ କୋଳକୁ ଟେନ୍ଦେ ।
ଏହି ଏକଲୟରେ · ସୃଷ୍ଟିର ସମ୍ଭାର
ସୃଷ୍ଟିର ପାଳନ ପୁଣି ସଂହାର,
ଯିଏ ସୃଷ୍ଟି କରନ୍ତି କେଡ଼େ ମହାନ ସେ
ତାହାର ଚରଣେ ଶତ ଜୁହାର ।
କଂସ ଜାଣି ଆମ · ମିଳନରେ ଲାଗି
ହୋଇ ନ ଥିଲା ଗୋ ଟିକଏ ଖୁସି ?
ଗୃହ ନ ଥିଲା କ ମାଟେ ରଥ ସାଜି
ଏଇନା କାହିଁକ ବସିଲ ରୁଷି ?

ଗୋଟି ଗୋଟି କରି ଛଅଟି ପିଲାଙ୍କୁ
ମାଇଲା କପଟ ମୁହଁକୁ ଚୁହିଁ,
ତାହା ପରଜନ୍ମରେ ସଂହାର ନ ଖାଲି
ପାଳନ କି କେବେ ହୋଇବ ନାହିଁ ?
ମିତ୍ର, ବନ୍ଧୁ ପାଖେ ପାଖେ ରହି
ମାଙ୍କର ହୋଇଣ ଦିଅନ୍ତି ଦେଖା,
ନିନ୍ଦା ପରଶଂସା ପଛେ ପଛେ ଧାଏଁ
ଭଲ ମନ୍ଦ ସବୁ ରହିଇ ଲେଖା ।
ଏହାଠାରୁ କ'ଣ! ଦେଖାଇବା ପାଇଁ
ସଂସାର ଭିତରେ ସବୁ ସର୍ଜନା,
ଅନ୍ଧ ହୋଇ କଂସ କିଛି ଦେଖୁ ନାହିଁ
ମଣୁଛି ଏସବୁ ଖାଲି କଳ୍ପନା !
ଆଜି କେତେ ଦିନ ରଖିବା ଲୁଚାଇ ?
ଦେଖିବା ଇଚ୍ଛା ତ ପଡ଼ିଲା ବଳ,
କେଉଁ ମୁକୁଳା ବା ଥାଏଁ ଗୋ ଏଇନା
ନନ୍ଦଘର ଯାଏଁ ପାରିବା ଚଳ !
ପୁରବାସୀଙ୍କୁ କେ ଖବର ଦିଅନ୍ତା
ଚୋର ଝିଅଏ ନନ୍ଦର ଘରେ,
ଯାଆନ୍ତେ ବା କେହି ଅଜାଣନ୍ତା ହୋଇ
ଦେଖି ଆସନ୍ତେ ମୋ ପୁଅକୁ ଥରେ ।
ଜାତକ ଦିଆର ଜଣ ନାଆଁ ଦେଇ
ଫେରନ୍ତେ ସେଠାରୁ ଦିନୁଁ ଛ ରହି,
ନନ୍ଦ ଯଶୋଦାଙ୍କୁ ଶୁଣାଇଣି ଓ ଶମ
ପୁଅ ଭଲ ମନ୍ଦ ଦିଅନ୍ତେ କହି ।
କେ ଅଛି କାହାକୁ କହି ପଠାଇବି
କଂସର ଦାଣ୍ଡକୁ ମାଡ଼ିଇ ଡର,
ନିଜର ହୋଇ ସେ କାହିଁକି ଏଇନା
ହେଲା ବା ପରରେ ଏଡ଼ିକେ ପର ?"

ଦଇବ ଯୋଗକୁ ଗର୍ଗ ପୁରୋହିତ
ମିଳିଲେ ସେଠାରେ କେଉଁଠୁଁ ଆସି,
ତାଙ୍କୁ ଦେଖି ବର- ଯଶୋଦାଙ୍କ ଆଖି
ଲୋତକ-ସଲିଳେ ଗଲା ତ ଭାସି ।
ବୁଝାଇ ସୁଝାଇ କେତେ କଥା କହି
ଭୁଲାଇଲେ ବାପ ମାଆଙ୍କ ମନ,
ଚଳିଲେ ବହନ ନନ୍ଦର ମନ୍ଦିରେ
ଦେଖିଲେ ଶ୍ରୀକୃଷ୍ଣ ଚନ୍ଦ୍ରବଦନ ।
ନୀଳ ଗଗନର ଶିଖା ଶରୀରରେ
ଧନ୍ୟ ଧରଣୀରେ ହୋଇଛୁ ଜନ୍ମ,
ପୀତବାସ ସାଜ ଦେଇଛୁ ତନୁକୁ
ଗଗନକୁ ସ୍ୱର୍ଣ୍ଣକିରଣ ସମ ।
ନୀଳ ଯମୁନାର ସଲିଳ ଉରସେ
ବାଳ ରବିକର କରେ କି ଖେଳା,
ସାଗର ବକ୍ଷରେ ଭାସଇ କି ଆଜ
କନକ ଗଠିତ ବୋଇତ ଭେଳା ?
ଶିରେ ଶିଖୀପୁଚ୍ଛ କଅଁଳ ଖସିରେ
ଦିଶଇ ମେଘରେ ବିଜୁଳି ପରି,
ଆଜ କେଉଁ ପିଲା ମରତେ ଜନମି
ଅଛୁ ବା ଏମନ ସୁଷମା ଧରି ।
ବକ୍ଷେ ବନମାଳା ଓହଳି ପଡ଼ୁଛୁ
ଉଆଁସୀ ରାତିରେ କି ଛାୟାପଥ !
ତାରକା-ବଳୟେ ବିଭୂଷିତ ହୋଇ
ଦିଶୁଛୁ ଆଲୋକ ରେଖାଟି ଡଥ ।
ନୀଳ ଲଲାଟରେ ଗୋରୋଚନା ଟୀକା
ଯେସନ ନିଶାନ୍ତେ ବାଳ ଭାସ୍କର,
ଅପରାଜିତାର ନୀଳ ଦଳରେ କି
ଶୋଭୁଛୁ ସୁନ୍ଦର ଗୋଲା ସିନ୍ଦୂର !

କଟିଦେଶେ ସୁନା      କଙ୍କିଣି ବେଢ଼ିଛି
ହିମାଂଶୁମଣ୍ଡଳ ପରିଧି ପରି,
ଯଶୋଦା କୋଳରେ      ହସି ହସି ଖେଳେ
ଛୁଆ ହାତଟିରେ ବଇଁଶୀ ଧରି ।
ଚରଣରେ ଗୁରୁ      ନୂପୁର ସାଜିଛି
ମୟୂର କଣ୍ଠେ କି ରୂପାର ଜରି,
ଠୁକେଇ ଠୁକେଇ      ଗୁଲି ଗୁଲିଯାଏ
ମାଆର କାନିକୁ ଓଟାରି ଧରି ।
ବାଜୁଛି ନୂପୁର      ରୁଣୁଝୁଣୁ ହୋଇ
ରହି ରହି କରି ଶ୍ରବଣ ମୋହି,
ମାଆ ବାପଙ୍କର      ମନରୁ ବିଷାଦ
ହସରେ ହସରେ ଦିଅଇ ଧୋଇ ।
ମାଆର ପଛରେ      ଲୁଚୁଛି ଗୁହୁଁଛି
ଆଡ଼ନୟନରେ ନେଟରାଇ କରି,
ଜନନୀ ଜାନୁକୁ      ଆଶ୍ରୟ କରିଛି
ବାହୁ ଦୁଇଟିରେ କୁଣ୍ଢାଇ ଧରି ।
ଦେବେଟି ଭାଷାରେ      କି କଥା କହୁଛି
ଶୁଭୁଛି କେଡ଼ାଟେହିଁ ମଧୁର ହୋଇ,
ତହିଁରେ କି କିଏ      ଅମୃତ ଗୋଳିଛି
ଶୁଣି ଶୁଣି ମନ ହେଉଛି ମୋହି ।
ବଳରାମ ସଙ୍ଗେ      ଦାନ୍ତକୁ ଦେଖାଇ
ଖତାଇ ହୁଅଇ ସାଥୀ ଛୁଆଙ୍କୁ,
ପୁଣି କେତେବେଳେ      ଗୁହୁଁ ଗୁହୁଁ ହଏ
ପଞ୍ଜୁରି ଭିତରେ ଶାରି ଶୁଆଙ୍କୁ ।
ବଳେଇ ଛୁଆଙ୍କୁ      ଲାଞ୍ଜ ଧରି ଟାଣି
ତୋଳଇ ବଛକୁ ଭୟ ନ କରି,
ପୁଣି କେତେବେଳେ      ଫିଙ୍ଗଇ ନଳାରେ
ଟୋ ବେକ ଚମକୁ ମୁଠାଇ ଧରି ।

କଅଁଳା ବାଛୁରି ଧାଇଁବା ଦେଖିଲେ
ଦଉଡ଼ଉଡ଼ ପଛରେ ଧରିବା ପାଇଁ,
ପାରୁଇ ନାହିଁ ତ କାନ୍ଦଇ ରାଗରେ
ଯାହା ପାଏ ତାହା ଦିଏ ପକାଇ ।
ପାଣି ହାଣ୍ଡିଟାଏ ଦେଖି ପକାଇଲେ
ଜଗୁଡ଼ାଇ ଦିଏ ଫଙ୍ଗକୁ ଧରି,
ଇଡ଼ଆଡ଼ ଗଲେ ଲିପିଲିପି ଦିଏ
ହାତରେ ଗୋଡ଼ରେ ଚକଟି କରି ।
ରାମ ଗହଣରେ ବସି ଖେଳୁଥିଲେ
ଦିଶେ ଶ୍ୱେତ ପାରା ସଂଗେ କି ଠିକ,
କିବା ଶ୍ୱେତ ନୀଳ କୁମୁଦ ଯୋଡ଼ିଏ
ଏକାଠି ଫୁଟିଛି ଦିଶୁଛି ନିକ ।
ଆହା ମରି ମରି କି ଅପୂର୍ବ ଶିଶୁ
କି ଖେଳ କୌତୁକ ବିଚିତ୍ର ମାୟା !
ଯେତେ ଲୁଚାଇଲେ ଲୁଚୁ ତ ନାହିଁ ସେ
ଦିଶି ଯାଉଅଛି ପ୍ରକୃତ କାୟା ।
ଏହି ରୂପଟିରେ ଶଂଖ ଚକ୍ର ଥିଲେ
ବାରି କି ହୁଅନ୍ତା ମାନବ ବୋଲି ?
କି କାମ କରିବ ବୋଲି ଜନମିଛି
ସେ କଥାଟି କିଆଁ କହୁନ ଖୋଲି ?
ବଳିଲା କି ପାପ ଉଣା ହେଲା ପୁଣ୍ୟ
ଛାଡ଼ିଲା ବୈକୁଣ୍ଠ ରାଗରେ ଜଳି ?
ଯେତେ ପାପୀ ତାପୀ ସଂସାରେ ଅଛନ୍ତି
ଦେବ କି ସଭିଙ୍କୁ ମୂଳରୁ ଦଳି ?
ହସରେ କାନ୍ଦରେ କହୁଛି କି ଆଉ
ସେହି କଥାଟାକୁ ଲୁଚାଇ କରି ?
କଂସ ଜରାସନ୍ଧ ଶିଶୁପାଳ ଆଦି
ଦୁର୍ଜ୍ଜନ ମାରିବ ରଥାଂଗ ଧରି ।

କେତେ ପୁଣ୍ୟ କରି ଏ ନନ୍ଦ ଯଶୋଦା
ଜନମ ନ କରି ପାଳିଲେ କୋଳେ,
କାହାର ଏ ପୁଅ ? କିଏ ସେ ଯଶୋଦା ?
ପୁଅ ବୋଲି ଭାବିଅଛି ସେ ଭୋଳେ ।
ବସୁଦେବ ଅବା କାହାର ପାଇଁକି
ବନ୍ଦୀଘରେ ହୁଏ ଏଡ଼େ ବିକଳ ?
କାହା ପାଇଁ ସତେ ଦିନ ରାତି ବସି
ଆଖିରୁ ଢାଳୁଛି ଲୋତକ, ଜଳ ?
ଦେବକୀର କିବା ନାହିଁ କିଛି ପୁଣ୍ୟ
ତାହାର ଫଳ କି ଖାଲି କାନ୍ଦଣା ?
କାହିଁକି ବା ନନ୍ଦ- ଯଶୋଦା ଏପରି
ପୁଅକୁ ପାଇଲେ ତୁଚ୍ଛା ମାଗଣା ?
ଯାହାକୁ କେ ମାରିବ, କିଏ ବା ରଖିବ ?
ସଭିଙ୍କୁ ଯେ ମାରେ ରଖେ ସଂସାରେ,
ଏହି ତ ସତରେ ସକଳ କରତା
ସକଳ ବିହନ୍ତା ଚିହ୍ନିଲି ତାରେ ।
କି ଭାଗ୍ୟ ମୋହର ଦେଖିଲି ଆଖିରେ
ବିଶ୍ୱରୂପଟିକୁ ଶିଶୁଟି ପରି,
ଏହି ଦେହଟିରେ ରଖିଛି ଗୁପତ
ଅସୀମକୁ ସୀମା ଭିତରେ ଭରି ।
କାହିଁ ମୋ ଶକତି ଦେଖି ମୁଁ ପାରିବି
କ୍ଷୁଦ୍ର ନୟନରେ ରୂପ ବିଶାଳ !
ଯୋଉ ଆଡ଼େ ଚାହେଁ ସିଆଡ଼େ ଦିଶଇ
ଖାଲି ମରୀଚିକା ଚକରବାଳ !
ଏ ଶିଶୁ ଦେହରେ ଅଛି ଯେ ଶକତି
ତାହାର କଳନା କରିବ କିଏ ?
ପରମାଣୁ ପରି ସୂକ୍ଷ୍ମ ଦେହଟିରେ
ବିଶ୍ୱଗ୍ରାସୀ ବଳ ଧରିଛି ସିଏ ।

ଏ ଯେବେ କୋପିବ ଧ୍ୱଂସ କରିଦେବ
ବିଶ୍ୱ ବ୍ରହ୍ମାଣ୍ଡର ସକଳ ସତ୍ତ୍ୱ,
ଯେବେ ଶାନ୍ତ ହେବ ରଖିଦେବ ସବୁ
ତାରଣ ମାରଣ ସବୁର କର୍ତ୍ତା ।
ବଇକୁଂଠ ଛାଡ଼ି କାହିଁକି ରେ ବାପ
ଆସିଲୁ ବାଟୋଇ ପରାୟେ ଏଠି ?
ସେଠି ତ ଆସନ ଖାଲି ପଡ଼ିଥିବ
ଲକ୍ଷ୍ମୀ ସରସ୍ୱତୀ ଥିବେ କି ସେଠି ?
କୋଉ କୁଞ୍ଜବନେ ରହିଥିବେ ରମା
କି ଅବା ସାଗରେ ଥିବେ ସେ ପଶି,
ବାପଘରେ ତାଙ୍କ ମନ କି ଲାଗିବ
କରେ ଗଣ୍ଡ ଥୋଇ ଥିବେ ତ ବସି ।
ଦଳ ଦଳ ହୋଇ ଭାସନ୍ତି ମରାଳ
ଯମୁନା ଜଳକୁ ଧବଳ କରି,
କଳ କଳ କରି ଗାଉଛନ୍ତି ଗୀତ
ବାଣୀ କି ବଜାନ୍ତି ବିପଞ୍ଚୀ ଧରି ?
ବାପଘରେ ସତେ ଗଲେ ନାହିଁ କିଆଁ ?
ପତି ବିରହେ କି ଅଥିର ହୋଇ,
ହଂସରୁ ଗୁଡ଼ିଏ ପେଶି ଦେଇଛନ୍ତି
ପତି-ସହବାସ ସ୍ମୃତିରେ ଧୋଇ ?
ଅଦିନ ବସନ୍ତ ଦିନ ରାତି ଏଠି
ବହୁଛି ମଧୁରେ କାହାର ପାଇଁ ?
ଗଛେ ଗଛେ ବସି କୋଇଲି ପାପିହା
ବଇଁଶୀ ବଜାନ୍ତି କି ଗୀତ ଗାଇ ?
କଦମ୍ବ ଗଛରେ ବାରମାସ ଫୁଲ
ଫୁଟଇ ଝଡ଼ଇ କାହା ଚରଣେ,
କାହିଁକି ଏଠେଇ ଜୀବ ଜନ୍ତୁ ସବୁ
ଖେଳନ୍ତି ବୁଲନ୍ତି ଏଡ଼େ ହରଷେ ?

କାନ୍ତାର ପ୍ରାନ୍ତର ସବୁ ତ ସବୁଜ
କାହାର ଆଖିକୁ ଶୀତଳ କରେ,
ପତରେ ପତରେ ଶିଶିର ମୁକୁତା
କାହା ପାଇଁ ତୋଳ ଯତନେ ଧରେ ?
ଶିଖଣ୍ଡୀ ଶିଖର ଦଶୁଛି ରୁଚିର
କାହାର ରଙ୍ଗକୁ ବୋଲଛି ରସି ?
କାହାର ସନ୍ଧାନେ ମୁଣ୍ଡ ଟେକି କରି
ଗଗନେ ଗରବେ ଯାଉଛି ପଶି ?
ସୁନୀଳ ଶିଖର ଶ୍ୟାମଳ ଧରଣୀ
ସୁନୀଳ ଯମୁନା ନଈର ବାରି,
ଶିଶୁ ଶ୍ୟାମଳମା ସଂଗେ ସରି ନୋହୁ
ରୂପବୈଭବରେ ଯାଆନ୍ତି ହାରି ।
ଗୋଠରେ ଗୋଠରେ ଗାଈ ବାଛୁରୀଏ
କାହାଁକ ଚରନ୍ତି ଆନନ୍ଦ ମନେ ?
କଣ୍ଟାରେ ଲଟାରେ ପଶନ୍ତି ନିର୍ଭୟେ
ବାଘ ସାପ ଭବି ନାହାନ୍ତି ବନେ ?
ଗୋଧୂଳି ବେଳରେ ବାହୁଡ଼ନ୍ତି କିଆଁ
ଘରକୁ ଦଉଡ଼ ଉଡ଼ାଇ ଧୂଳି ?
କାହା ରୂପ ଶିରୀ ଦେଖିବା ପାଇଁକି
ଗୋପ ରମଣୀଏ ଏଡ଼େ ବାଉଳି ?
ଧାଡ଼ି ଧାଡ଼ି ହୋଇ ଯୁବତୀ ପ୍ରଉଢ଼ା
କାହାଁକି ଯାଆନ୍ତି ଯମୁନା ଘାଟେ ?
କାହା କଥା କୁହା- କୁହି ହେଉଥାନ୍ତି
ଅନାଅନି ହୋଇ ଚାଲିବା ବାଟେ ?
ଅଧରେ ଅଧରେ ଫୁଟାଇ ହରସ
ଚଇତି ସଂଜର ମଲ୍ଲିକା ପରି,
କଂଠରେ କଂଠରେ ଗାଆନ୍ତି ସଂଗୀତ
ମଣ୍ଡିରେ ମଣ୍ଡିରେ ଲହରି ଧରି ।

ହସ କଉତୁକେ          ପୂରିଯାଏ ଦାଣ୍ଡ
ମୁହେଁ ମୁହେଁ ପଡ଼ ଚନ୍ଦ୍ରମା ଖଣ୍ଡ,
ରଂଗାଇ ଦଅଇ          ସବୁ ମୁହଁତକ
ମୁକୁଳାଇ ଦେଇ ଶୋଭା-ପସରା ।
କାଖରେ କାଖରେ          ଶୋଭଇ କଳସ
ହାତରେ ହାତରେ ଉଜ୍ଜ୍ୱଳ ଲୋଟା,
ମଝିରେ ମଝିରେ          ପଡ଼ୁଛି ବାଟରେ
ଟାଆଁମୁଣ୍ଡେ କେତେ ଗହଳ ଚୋଟା ।
ଗଛର ଗୁଛଇରେ          ଲୁଚି ଯାଉଅଛି
ଛଇଳା ଛଇର ଶୁଭ୍ର ସୁଷମା,
ଖଣ୍ଡ ବାଦଲରେ          ଲୁଚିଯାଏ ଯଥା
ଅଶିନ ମାସର ପୂର୍ଣ୍ଣ ଚନ୍ଦ୍ରମା ।
ଗୋଧୂଳି କୁନ୍ତଳେ          ହସି ଉଇଁଆସେ
କଆଁ ଶୁକତାରା ନୀଳ ଗଗନେ ?
କାହାକୁ ଅନାଇଁ          ଅନାଇଁ ଆସଇ
କାହା ରୂପଶିଖା ପକାଏ ମନେ ?
ଏଇ ଶିଶୁ ପାଇଁ          ଏତେ ଉପଚାର
ଏଇଥି ପାଇଁ କି ଶୋଭାର ହାଟ ?
ବସିଛି ଗୋପରେ          ଦିବସ ରଜନୀ
ପୂରି ଯାଇଅଛି ବାଟ ଓ ଘାଟ ।
ଗ୍ରହଗଣ କେବେ          ମିଛୁଆ ନୁହନ୍ତି
ଯା ଜାତକେ ଛନ୍ତି ଯେତେକ ଗ୍ରହ,
ତାଙ୍କ ପ୍ରଭାବ କି          ମିଛ ହୋଇଯିବ ?
କାହିଁକି ବା ହେବ ? କଦାପି ନୁହ ।
ନର ଦେହ ଧରି          ନାରାୟଣ କାହିଁ
କେବେ କି କରମେ ହୋଇବ ଧନ୍ଦ ?
ସଂସାର-ବନ୍ଧନ          ବାପ ମାଆ ସବୁ
କାହାରି ମାୟାରେ ହେବ କି ଛନ୍ଦ ?

ମୁକ୍ତି ଦେବା ପାଇଁ          ଯାର ଅବତାର
ସେହି କି ନୋହିବ ଶର ମୁକତ ?
ଯୁଗେ ଯୁଗେ ତୁହି          ପଗ ଭଗବାନ
ଏ କିଣ୍ଣ, ପ୍ରକୃତ ତୋର ଭକତ ।
ଦଇତ ସଂହାର          ହେବୁ ଦଇତାର
ଯେନେ ଦୟାକର ତୁ ଦୀନବନ୍ଧୁ,
ଦଅ ସୁଷ୍ଠୁ ଦୃଷ୍ଟି          ଦଅ ଶୁଭ ବୁଦ୍ଧି
ଅଧମ ଜନ ତୋ ଚରଣ ବନ୍ଦୁ ।
କାଳିଆ ରୂପଟି          ବଡ଼ ମନୋହର
ଗୁଣଟି ମଧୁର ନାମ ତୋ କୃଷ୍ଣ,
ସାଧୁଙ୍କୁ ଶୀତଳ          ଦୁଃଖୀକୁ ଦୟାଳୁ
ଦାନବ ଦଳନେ ଅଟୁ ତୁ ଉଷ୍ଣ ।
କଂଠେ ବନମାଳା          ଅଂଗେ ପୀତଧଡ଼ା
ବନମାଳୀ ପୀତବାସ ତୋ ନାମ,
ନବ ନୀରଦର          ବରଣ ସୁନ୍ଦର
ଚିତ୍ତବିନୋଦିଆ ତୁ ଘନଶ୍ୟାମ ।
ମୁରଲୀ ବଜାଇ          ମୋହିବୁ ତୁ ମନ
ତେଣୁ ତୋର ନାମ ଜଗମୋହନ,
ପଦ୍ମ ପରି ଆଖି          ସୁଢ଼ଳ ସୁନ୍ଦର
କହିବେ ରେ ତୋତେ ପଦ୍ମଲୋଚନ ।
ନାହିଁ ତୋର ଅନ୍ତ          ତେଣୁ ତୁ ଅନନ୍ତ
ପୁଣି ଆଦି ନାହିଁ ନାମ ଅନାଦି,
ଏତେ ଗୁଣ ଧରୁ          ତେବେ କାହିଁ କଂପ
ବୃଥାରେ ତୋହର ହୋଇଛ ବାଦୀ ?

---

# ଯାମଳାର୍ଜ୍ଜୁନ ଭଂଜନ ଓ ପରିଚୟ

ପ୍ରାଚୀ ଦିଗ ମୂଳେ          ଉଦୟ ଅଚଳେ
ଜଳେ ଜକ ଜକ ଲୋହିତ ରବି,
ସରଗ ସୁଷମା          ଓହ୍ଲାଇ ଆସି କି
ଧରଣୀ ଦେହରେ ଧରିଛି ଛବି ?
ସାଗର ଗଗନ          ମିଶିଅଛି ଯହିଁ
ନୀଳିମା ନୀଳିମା ହୋଇଛି ଏକ,
ମଝିରେ ଜଳୁଛି          କନକ ଦୀପାଳି
ଶୂନ୍ୟରେ ପୂର୍ଣ୍ଣର ବିକାଶ ଦେଖ ।
ଶୂନ୍ୟେ ପୂର୍ଣ୍ଣେ କିଛି          ନାହିଁ ବ୍ୟବଧାନ
ମନର ବିକାର ସେସବୁ ସିନା,
ଶୂନ୍ୟ ହଜିଗଲେ          ପୂର୍ଣ୍ଣ କି ରହିବ
ଶୂନ୍ୟ କି ଅଛଇ ପୂର୍ଣ୍ଣର ବିନା ?
ଗଗନକୁ ଶୂନ୍ୟ          ବୋଲିଣ କହନ୍ତି
ଶୂନ୍ୟ କି ସେ ହୋଇପାରେ କଦାପି ?
ତାହାର ଦେହରେ          ବ୍ରହ୍ମାଣ୍ଡ ସୁଷମା
ପ୍ରକୃତି ଦେଇଛି ଯତନେ ଥାପି ।
ଗଗନରେ ରବି          ହୁଏ ଆତଯାତ
ଗଗନେ ହସଇ ଚନ୍ଦ୍ରମା ବସି,
ନିଶିରେ ନିଶିରେ          ନକ୍ଷତ୍ରେ ନାଚନ୍ତି
ଯୌବନ ଚଳଇ ମନକୁ ଗ୍ରସି ।

ଏ ମହା ପୃଥ୍ୱୀକୁ ଶୂନ୍ୟ ଯେ କହିବ
ତାହାର କି ଅଛି ଆଖି ଓ କାନ ?
ସଂସାର ଭିତରେ ସେହି ଏକା ମୂର୍ଖ
ପାଇପାରେ ନାହିଁ ପୂର୍ଣ୍ଣ ସନ୍ଧାନ ।
କନକ କିରଣ ବୋଲି ହୋଇ ଧରି
ହସୁଛି ସାଧବବୋହୂଟି ପରି,
ଉଷା ନଉତ୍ରୁଣୀ ଆନନ୍ଦ କି ପ୍ରକୃତି
କୁସୁମ-ରାଶିକୁ ହାତରେ ଧରି ?
ବୃଶଆଢ଼ ପଡ଼ ଆଲୋକର ଛଟା
ଗଗନ ଭୁବନ ଉଜ୍ଜ୍ୱଳ କରେ,
ଶଶାଂକ ତାରକା ଅପମାନ ପାଇ
ଶୁଖାଇ ବଦନ ଲୁଚିଲ ଖରେ ।
ଗଛେ ଗଛେ କୁଞ୍ଜେ କୁଞ୍ଜେ ବିହଙ୍ଗମ
ମଧୁପ ଉଡ଼ିଲେ ସଙ୍ଗୀତ ଗାଇ,
ଆଲୁଅ ଆସିଲା ବେଶଭୂଷା ପିନ୍ଧି
ଅନ୍ଧାର ଲୁଚିଲା ଆଡ଼େଇ ଯାଇ ।
ନିଶି ନିଦ ସହ ନିଶୀଥ ସପନ
ଭାଙ୍ଗିଭୁଙ୍ଗି ଗଲା ଆଲୁଅ ପାଇ,
ରାତିଟା ଯାକର କେତେ ସୁଖଦୁଃଖ
କେଣେ ଗଲା କିଛି ରହିଲା ନାହିଁ ।
ନିରାଶାରେ କେତେ ଆଶା ଲୁଚିଥିଲା
ମରୀଚିକା ଦେହେ ପାଣିର ସମ,
ସପନେ ସପନେ ସୁଖ ହସୁଥିଲା
ଜାଗରଣ ଦେଲା ଦୁଃଖ ବିଷମ ।
କେତେ ନିଶିଗନ୍ଧା ଲୋଟିଲେ ଧରାରେ
ବିରହିଣୀ ନାରୀମାନଙ୍କ ପରି,
ରାତିକ ଭିତରେ କୋଉ ପାପ ଫଳେ
ପରମାୟୁ ସାରି ଗଲେଟି ଝଡ଼ି ?

ସୁନ୍ଦରୀ ଶେଫାଳୀ ଧୂଳ ବୋଲ ହୋଇ
ଶୋଇଲା ଭୂଇଁରେ ମହଲା ଯାଇଁ,
ଆଜ ତ ତାହାକୁ କେହ୍ନ ଗୃହୁଁ ନାହିଁ
ମଧୁପ ତା ପାଖେ ଯାଉନ ଧାଇଁ ।
ଫୁଲବନ ତାର ଉଜୁଡ଼ି ଯାଇଛି,
ସୌରଭ ଲୁଟିଛି ମଧୁ ସରିଛି,
ଗୁଡ଼ ଚାହ୍ନି ଦନ ଆସିବାରୁ ସିନା
ଲାଜ ସରମରେ ମରି ପଡ଼ିଛି !
ଅନ୍ଧାରେ ଅନ୍ଧାରେ ଲୁଗୁଇ ଛପାଇ
କେମିତ ପୀରତ କ'ଳଲ ସେ ରସି ?
ଗୁଡ଼ ନ ଚାହ୍ନଣୁ ସରଗଲ ସବୁ
ବାସି ହୋଇ ବୃନ୍ତୁଁ ପଡ଼ିଲା ଖସି ?
ସରମ ଯାହାର ନାହିଁ ଏ ସସାରେ
ମୁହିଁ ଟେକ ସିନା ଦେଖଇ ସବୁ,
ହରମ ବଢଲେ ମରମ ଦହଇ
ସହଳ ଅନ୍ତର ହୁଅଇ ଭବୁଁ ।
ଯୌବନ ସୁନ୍ଦର ବୋଲ ହୁଣପଡ଼େ,
ପୀରତ ମଧୁର କହନ୍ତି ଲୋକେ,
ଯୌବନ ଚଞ୍ଚଳ ଯାଏ ବ୍ରହ୍ମଚର୍ଯ୍ୟ
ପୀରତ ମାରଇ ପୋଡ଼ି ପାବକେ ।
ପୀରତ କରଇ ଦୂରକୁ ନକଟ
ଦୁଇଟି ପ୍ରାଣୀଙ୍କୁ ମାରିବା ପାଇଁ,
କାଠ ଜଗତରେ ପୀରତ ସଇଲେ
ମରଇ କେ ପଡ଼ି କୋଉଠି ଯାଇଁ ।
ଏଇ ପୀରତକୁ ଭୋଗ କରିବାକୁ
ତ୍ରିଜଗତ କାହିଁକ ଏଡ଼ାହେଁ ବାଇ ?
ସର୍ଜ୍ଜନା ଆଗରୁ ସଂହାର ଆସଇ
ପୀରତ-ଭୋଗୀର ପାଖକୁ ଧାଇଁ ।

କିଛି ବନ୍ଧ ବାଡ଼ ମାନେନା ପୀରତି
ପଥର ପାଚେରୀ ଦଳଇ ଭାଙ୍ଗି,
ସାତ ସମୁଦର ପହଁରି ଯାଏ ସେ
କୋଉ ସୁଆଦର ସନ୍ଧାନ ଲାଗି ।
ମନରେ ସରଗ ମାନସୀ ସୁନ୍ଦରୀ
ଗୋଡ଼ାଏ ପନ୍ଥରେ ଧରିବା ପାଇଁ,
ଭାସଇ ପବନେ, ଚଳଇ ଗଗନେ
ପଡ଼ଇ ସାଗରେ ଅନଳେ ଯାଇଁ ।
ପ୍ରୀତି-କାଂଗାଳର ଭୋକ ମରିଯାଏ
ଶୋଷ ଲୁଚିଯାଏ ଶୂନ୍ୟରେ ପଶେ,
ସପନ-ରାଇଜେ ଭୂଆଁ ବୁଲି ବୁଲି
କେତେବେଳେ କାନ୍ଦେ କେବେ ବା ହସେ ;
ଦିନଗଣା ସବୁ ହସିଲେ ଖୁସିରେ
ଆଲୁଅର ସଂଗେ ତୁଣସୁ କବା ?
ତହିଁରେ କି ନାହିଁ ବାଧା ବନ୍ଧ କିଛି
ପ୍ରୀତି କରିବାକୁ ଝଂଟେ ନା ଦିବା ?
ତାଙ୍କ ମୁହେଁ କ'ଣ ନାହିଁ ଲଜ ସରମ
କବା ଜାଣିଶୁଣି ବୁଜନ୍ତି ଆଖି,
ସୀମା ସରହଦ କିଛି ମାନନ୍ତି ନି
କଳଙ୍କ ହୁଏ ନା ମୁହଁରେ ମାଖି ?
ଧୀରେ ଧୀରେ ଧୀରେ ଦିନକର କର
ପ୍ରଖର ହୁଅଇ ବଢ଼ଇ ତାତି,
ଏଇ ତାପ ବାଜି ଫାଟିଯାଏ ନାହିଁ
ପ୍ରୀତି-ପାଗଳର ତରୁଣ ଛାତି ?
୧ର ଖରା ବାଜି ମହକେ କୁମୁଦ,
ଫୁଟଇ ନଳିନ କାହିଁକି ହସି ?
ଦୁହେଁ ତ ଜଳଜ ଦୁହେଁ ତ ପଙ୍କଜ
ଗୋଟିଏ କାହିଁକି ଖେଳଇ ରସି ?

ଆରଟି ଦୁଃଖରେ ଝାଉଁଳ ପଡ଼ଇ
ରହଇ କେବଳ ତଳକୁ ଗୁହିଁ,
ଆଲୁଅକୁ ଦେଖି ଲାଜ ମାଡ଼ଇ କି,
ଦିବସରେ ତାର ପୀରତି ନାହିଁ ?
ତୁଷାର-ମଣ୍ଡିତ ରଜତ ଶିଖରେ
ସଉର କିରଣ ଝଳିଲା ଯାଇଁ,
ତୁଷାର ତରଳ ସରୁ ସରୁ ଧାରେ
କୁଳୁ କୁଳୁ ଗାଇ ଆସିଲା ଧାଇଁ ।
ସେଇ ବାଟ ଦେଇ ଦେବର୍ଷି ନାରଦ
ସରଗୁଁ ଆସନ୍ତି ମରତ ପରେ,
କୁବେର ନଗର ଅଳକା ଭବନ
ସେଇ ଶିଖରର ଚରଣ ତଳେ ।
କଇଲାସ ଶିଖେ ହରଙ୍କ ଆଶ୍ରମ
ଶିବ ଶିବା ଦୁହେଁ ଯୋଗରେ ବସି,
କେତେ ଯୁଗ କେତେ ବରଷେ ବସିଣ
ବିତାଇ ଦିଅନ୍ତି ଦିବସ ନିଶି ।
ହର ମଉଳିରୁ ଜାହ୍ନବୀ ଝରଇ
ତଟ ଅଟବୀକୁ ଶ୍ୟାମଳ କରି,
କେତେ ମରୁଭୂଇଁ ଶସ୍ୟପୂର୍ଣ୍ଣ କରି
ଧରଣୀକୁ ଦିଏ ଧନରେ ଭରି ।
ଆଜି କେତେ କେତେ ଗିରି-ଝିଅ ମିଶି
ଫୁଲାଇ ଦିଅନ୍ତି ତାହାର ଗାତ୍ର,
କାହାର କୋଳକୁ ଧାଇଁଥାନ୍ତି ସବୁ
ସତରେ ନାହିଁ ଦିନ ଅଟେ ନା ରାତି ।
କାହା ପୀରତିର କଅଁଳ ଡାକରା
ବାଜଇ କାନରେ ପାଗଳୀ କରେ,
ମତ୍ତା ଓ ଅମତ୍ତା କିଛି ବାରନ୍ତି ନ
ଧାଇଁଥାନ୍ତି ସବୁ ବଙ୍କା ବାଟରେ ?

ପ୍ରୟାଗେ,ଯମୁନା ସରସ୍ୱତୀ ମିଶି
ବଢ଼ାଇ ଦେଲେ ତା ଗୌରବଗତି,
ତିନ ସୁଅ ମିଶି କଲେ ମହାତୀର୍ଥ
ପାପ ତାପ ସବୁ ଦେଲେଟି ନାଶି ।
ଭଗୀରଥ ସ୍ୱର୍ଗୁଁ ଆଣିଲେ ଜାହ୍ନବୀ
ସଗର ବଂଶର ମୁକତି ପାଇଁ,
ସମତଳେ ଧାଇଁ ଭାଗୀରଥୀ ନାମେ
ସାଗର ଗରଭେ ପଶିଲା ଯାଇ ।
ଏଇ ସାଗର୍ କ ଡାକଲା ସତରେ
ପୀରତି-ବାସନା ପୂରାଇ କରି ?
ପାଗଳୀର ପରି ଅଧମ ଗତିରେ
ଧାଇଁଲା କୁଟିଳ ସ୍ୱଭାବ ଧରି ।
ସଗର ପୁଅଙ୍କ ରହି ଜଳୁଥିଲା
କପିଳ ମୁନିଙ୍କ କୋପ ଅନଳେ,
କେତେ ଯୁଗର ଯେ ନିଆଁ ଲିଭିଗଲା
ଖାଲ ପୂରିଗଲା ଜାହ୍ନବୀ ଜଳେ ।
ସେଇ ପରା ହେଲା ଆମର ସାଗର
ଗଂଗାକୁ କୋଳରେ ଧରିଲା ନେଇ,
ଗଂଗା ଓ ସାଗର ମିଳନ ମୁହାଣେ
ମହାତୀର୍ଥଟିଏ ସରଜ ଦେଇ ।
କେତେ ବାପ ମାଆ ଅରଜିଲେ ପୁଣ୍ୟ
କବା ମହାପାପ ଶିଶୁଙ୍କୁ ମାରି !
ଏ ଭ୍ରାନ୍ତ ବିଶ୍ୱାସେ କେଉଁ ନରକରୁ
ସପତ-ପୁରୁଷ ହେଲେ ବା ପାରି ?
କୁବେର ତ ନିଜେ ଦେବ ଗନ୍ଧାଇତ
ସରଗ ସଂପଦ ତାଙ୍କର ଘରେ,
ଦୁଇଟି ତନୟ ନଳ ମଣିଗ୍ରୀବ
ତାଙ୍କ ଧନ ଗର୍ବ କିଏ ବା କଳେ ?

ବଡ଼ ଘର ପୁଅ                ଭଲ ଖାଇପିଇ
ବଢ଼ିଲେ ସବଳ ସବଳ ହୋଇ,
ଯଉବନ ଆସି                ପୀରତି-ବାସନା
ଦେଇଗଲା ତାଙ୍କ ମନରେ ଥୋଇ ।
ଭଲ ବୁଦ୍ଧି ଛାଡ଼ି                ଚଳିଲେ ଅବାଟେ
ବଳାଇଲେ କାମ ସମ୍ବେଗେ ମନ,
ନାରୀ-ସମାଜକୁ                କିଣିନେବେ କିବା
ଯେତେ ଇଚ୍ଛା ତେତେ ଦେଇଣ ଧନ ।
ସତୀ ନାରୀ କାହିଁ                ଧନର ପାଇଁକି
ବିକଇ କି କେବେ ନାରୀ-ଧରମ ?
ଲମ୍ପଟ ପୁରୁଷ                ବୁଝଇ କି କେବେ
ସ୍ନେହ ପୀରତିର ମନ୍ଦା ମରମ ?
ପୀରତି ଭିତରେ                ପରମାଦ ଥାଏ
ଯଉବନ କ'ଣ ଜାଣଇ ନାହିଁ ?
ଯୁବକ ଯୁବତୀ                ଜାଣିବେ ବା କାହୁଁ
ଯୋଗୀ ଋଷି ଯହିଁ ପଡ଼ନ୍ତି ଯାଇ ।
ଗଙ୍ଗାରେ ଗାଧୋଇ                କୁବେର ତନୟ
ଶିବଙ୍କ ପାଖରେ କଲେ ଗୁହାରି,
"ତୁମେ ପର ପ୍ରଭୁ,                ଯୋଗୀଙ୍କ ଈଶ୍ୱର
ତୁମ ଶରୀରରୁ ଅଧେ ତ ନାରୀ !
ସେଇ ସଉଭାଗ୍ୟ                ଦିଅ ହେ ଆମକୁ
ନାରୀ ନେଇ ପ୍ରେମ କରିବୁ ନିତି,
ସଂସାରେ ରମଣୀ                ସଙ୍ଗେ ମାତିଥିବୁ
କେବେହେଁ ଶୁଣିବୁ ନାହିଁ ଅକୀର୍ତ୍ତି ।"
ହର ବର ଦାଇ                ହେଲେ ମତୁଆଲ
ପିଇଲେ ମଦିରା ହେଲେ ଉଚ୍ଛୁଳ,
ଉଲଗ୍ନ ହୋଇ                କଲେ ଜଳ-କେଳି
କଳୁଷିତ କରି ଜାହ୍ନବୀ ଜଳ !

ନାରଦ ତାଙ୍କର          ଢଙ୍ଗ ଦେଖି କରି
ଜଳିଲେ ରାଗରେ କହିଲେ ଶାପ,
"ମରତେ ଜନମି          ଯାମଳ ଅର୍ଜ୍ଜୁନ
ପାଦପ ହୋଇଣ ବେଗରେ ତାପ ।
ଦ୍ୱାପର ଯୁଗରେ          ବସୁଦେବ ଘରେ
ଜନମିବେ ବିଷ୍ଣୁ ବଢ଼ିବେ ଗୋପେ,
ଯଶୋଦା ଜନନୀ          ଧରି ନେଇ ତାଙ୍କୁ
ବାନ୍ଧିବେ ଗଛରେ ନୁହୁଁରି କୋପେ ।
ସେହି ପରଶରେ          ଭଙ୍ଗିଯିବ ତୁମେ
ମୁକତ ହୋଇବ ଯାଆଁଳା ଭାଇ,
ଏଇ ଶାପ ପାଇ          ଗୋପପୁରେ ଯାଇ
ରହିଥା ଏଇନା ଯୁଗକୁ ଚାହିଁ ।"
ପୁଷ ମାସ ଦିନ          ଏତେ ସାନ କିଆଁ
ଖରାରେ ନ ଥାଏ ବହୁତ ତାତ,
ଶୀତ ଗୁଡ଼େ ନାହିଁ          ବେଳ ବୁଡ଼ିଯାଏ
ଭିତରେ ଭିତରେ ଥରଇ ଗାତ ।
ଅନାଉଁ ଅନାଉଁ          ସଂଜ ମାଡ଼ିଆସେ
ପକ୍ଷିଏ ଆସନ୍ତି ବସାକୁ ଫେରି,
ପକ୍ଷୀ କଂଠେ କଂଠେ          କି ସଂଗୀତ ଗାଇ
ରଜନୀ ଆସଇ ନ କରି ଡେରି ।
ପୁଷ ମାସ ରାତି          କେତେହିଁ ଏ ବଡ଼
ତହିଁରେ ପଡ଼ଇ କାଠୁଆ ଶୀତ,
ଯଶୋଦା କୋଳରେ          ପୁଅକୁ ଧରାଇ
ଶୁଆଇ ପକାନ୍ତି ଗାଇଣ ଗୀତ ।
"ଧନ ଦେହ ମୋର          କେତେ କଅଁଳିଆ
ତହିଁରେ ବାଜିଲେ ଶୀତଳ ବାଆ,
ଓଠ ଫାଟିଯିବ          ଶୀତଫୁଲ ହେବ
ତଳିପା ଫାଟିବ ହୋଇବ ଘାଆ ।

ଲୁନଗାନ ହୋଇ ଶୋଇପଡ଼ ବାଘ
ଘୋଡ଼ାଇଦଏ ମୁଁ ତୂଳାର ଶେଯ,
ମଲ୍ଲ ଏ ରାତିଟା କେଡ଼େ ଅନ୍ଧାର ଲୋ
ମଣ୍ଡଳ କରୁଛି ଘାପାଳ ଚେଙ୍କ ।
ଖଜର ବଜର ହୁଅନା ରେ ଧନ
ଶୀତ ପଶିଯିବ ଶେଯ ଆଡ଼େଇ,
ବଳେଇ ପିଲଟା କାହୁଁ ଅଇଲଣି
ଟଣିବ ଏଇନା ଢଏ ବାଡ଼େଇ ।
ଉଦ୍ନେଇ ନଆଁ ଟା ଲିଭି ଲିଭି ଯାଏ
ଜାଳ ଢ'ଖଣ୍ଡ ମୁଁ ଦଏଁ ମୁହାଁଇ,
ଦୁରୁଦୁରୁ ହୋଇ ଜଳିଲେ ସିନା ରେ
ଶୀତ ଯିବ ତୋର ପାଶୁଁ ପଳାଇ ?
ଜାକଜୁକ ହୋଇ ଶୋଇଥା ରେ ପୁଅ
ବିଛଣାରେ ଆଉ ଦେଏନା ମୁତି,
ଶେଯ ଓଦା ହେଲେ ଶୀତ ବଳିଯିବ
କାଳୁଆ ଲାଗିଲେ ଥରିଯିବୁଟି ।
ଯମୁନା ନଈରେ ବାଲି-ଟଶେଯ ବାପ
ହୁଗୁଳା ହୋଇଣ ପଡ଼ୁଛି ପଗ,
ବେଳ କାଳ ଉଣ୍ଡି ତାହାର ଭିତରେ
ପଶଇ କାଳୁଆ ଆହୁରି ଖର ।
ଚବଡ ବାଜିଲେ ହଟିଯାଏ ଶୀତ
ପାଦକୁ ଅଳପ ଉଷୁମ ଲାଗେ,
ବେଳ ବୁଡ଼ିଗଲେ କାଳୁଆ ହୁଅଇ
କୋଳ ମାରିଯାଏ ତଳପା ଆଗେ ।
ପାଦରୁ ତାଳୁକୁ ଚଢ଼ିଯାଏ ଜାଡ଼
ପିଠି ଓ କଲିଜା ଉଠଇ ଥରି,
ପବନ ଦେହରୁ କାକର ପାଣି ଢ
ଝରଝର ହୋଇ ପଡ଼ଇ ଝରି ?

ବାଳ କାହିଁ ପାଇଁ ଛାଟଇ ଚଞ୍ଚଳ
ସବୁଳ ଶୀତଳ ହୁଅଇ ଘାଏ ?
ପାଣି ବା କାହିଁକି ତାତଇ ଜନ୍ତୁରେ
ମଠରେ ମଠରେ ଉଷୁମ ଯାଏ ?
ବଡ଼ ସକାଳରେ ନଈ ପୋଖରୀରୁ
ଉଠଇ କାହିଁକି ଫଗୁଆ ଧୂଆଁ ?
ଖରା ପଡ଼ିଗଲେ କେଉଣେ ଲୁଚିଯାଏ
ମେଘରେ କି ଆଜ ହୁଅଇ ଥୁଆ ?
ହାଇ ମାରିଦେଲେ ବାହାରେ କୁହୁଡ଼ି
ମୁହଁରୁ ମୁହଁରୁ କାହିଁକି ମାତେ,
ପେଟର ତାତି କି ପାଣିକୁ ତତାଇ
ବାମ୍ଫ କରି ଛୁଟେ ନିଶ୍ୱାସ ସାଥେ ।
ଦରପଣଟିଏ ଧଇଲେ ପାଖରେ
କୁହୁଡ଼ି ତରଳ ହୁଅଇ ପାଣି,
ବଙ୍କାନ ଦେହର ଗହ୍ୱର ପାଠ ଏ
ଛୋଟ ପର ପିଲା କି ପାରିବ ଜାଣି ?
ନଈ ପୋଖରୀର ପାଣି ଖରା ବାଜି
ତାତି ଦେଖାଦିଏ ହୋଇଣ ବାମ୍ଫ,
ପବନେ ଉଡ଼ଇ ବାଦଲ ଗଢ଼ଇ
ମେଘ ବରଷଇ କମିଲେ ତାପ ।
ମେଘର ଦେହରୁ କାଳୁଆ କାକର
ପବନରେ ଭସି ଧରାରେ ଛୁଟେ,
ପକ୍ଷୀ ପକ୍ଷିଣୀଏ ଯୋଡ଼ ଯୋଡ଼ ହୋଇ
ନଦୋଡ଼ ନଦରେ ଶୋଇଲେ ମିଠେ ।
ଅନ୍ଧାର ଭିତରେ ଶୀତ ପଶି କ'ଣ
ହାତ ଗୋଡ଼ ଓଠ ଦିଏ ଥରାଇ ?
ବୁଢ଼ାବୁଢ଼ୀ ରୋଗୀ ଦୁଃଖୀ ରଙ୍କୀ ଯେତେ
ସମସ୍ତଙ୍କୁ ପରା ଦିଏ ଡରାଇ ?

ଛେଳୁଆ ଅଟିକେ ; ମାଡ଼େନା କି ନିଦ
ସେସବୁଡ଼ାଙ୍କୁ କ'ଣ କରେନା ଜାଡ଼ ?
ଘଞ୍ଚରେ ପଦାରେ ହୁକାହୁଆ କରି
କାହିଁକି ବୁଲନ୍ତି ବିରିଜ ଗାଡ଼ ?
କୁକୁରଗୁଡ଼ାକ ଭୁକି ଭୁକି କରି
କାହାକୁ ଗୋଡ଼ାନ୍ତି ଘୁନିଆଁ କରି ?
ବାଡ଼ ବାଡ଼େ ପଶି କିଏ ସେ ପଳାଏ
ଖସ ଖସ ହୋଇ କାହାକୁ ଡରି ?
ଗୋଟାଏ ଚଢ଼ିଲେ ସମସ୍ତେ ରଡ଼ନ୍ତି
ମଲା ମୋର ସତେ କୋଉ ସ୍ୱଭାବ,
ନ ଚଢ଼ିଲେ କ'ଣ ଗୁଣ୍ଡ ଫାଟିଯିବ
କିଏ ଜାଣେ ତାଙ୍କ ଭିତରି ଭାବ ।
ଶୁଣୁ ନାହିଁ କରେ ପେଚାଟାଏ କାହିଁ
ଘଡ଼ିକରେ ଥରେ କହୁଛି କୁଁଉ,
ଅନ୍ଧାରେ କି ଆଉ ଅନ୍ଧାର ଗୁଡ଼୍ ଗୁଡ଼୍
ଦେଖାଇ ଦେଉଛି ଚୋଟେ ରେ 'ଜଉ' ?
ନିଶିରେ ନିଶିରେ ନିଶାଚରସବୁ
ବାହାରନ୍ତି ଦେଖି ଖୋଜି ଆହାର,
ଦିନର ଆଲୁଅ ଆଖିରେ ପୂରାଇ
ରାତିରେ କରନ୍ତି ତା କାରବାର ।
ସେଇ ଆଲୁଅର ଚରଣକୁ ପାଇ
ଦେଖି ସେ ପାରନ୍ତି ଆମଠୁଁ ବେଶୀ,
ଯେତେ ଇଚ୍ଛା ସେତେ ଅନ୍ଧାର ଆସିଣ
ରଜନୀ ଦେହରେ ହେଲେ ବି ଲେସି ।
ଘର ଚହରରେ ଡାକଇ କୁକୁଡ଼ା
ରାତିଘଡ଼ିକ ବା ଚରଣାୟୁଧ,
ଚଳୁ ଚଳୁ କାହିଁ ବିପକ୍ଷର ସଂଗେ
ଚରଣ ଚଳାଇ କରଇ ଯୁଦ୍ଧ ।

କାଉ ରବ ଦେଲେ ଫଟକର ମିଳଇ
ଘଣ୍ଟ ପାହ୍ନବାର ଫସର ଫାଟି,
ଦୁଆର ଦୁଆରେ ମୁକୁଳା ହୁଅଇ
ଫିଟିଯାଏ ସବୁ କବାଟ ଛାଟି ।
ଧାଡ଼ିଲ ସହଳ ଥିବ ଯାଏ ନାହିଁ
ଶୋଇ ଶୋଇ କଢ଼ ଯାଏଟି ରାତ,
ବେଣୀ ବେଣୀ କରି ଶୀତ ମାଡ଼ିବସେ
ଥର ଥର ହୋଇ ଥରଇ ଗାତ ।
ଥିର ଥିର କରି ଦୂଷଇ ରଜନୀ
ଓହ୍ଲାଇ ଓହ୍ଲାଇ ଆସଇ ଉଷା,
ରଙ୍ଗ ଢଙ୍ଗ ତାର କିଛି ଦିଶେ ନାହିଁ
ପିନ୍ଧି ନ ଥାଏ ସେ କନକ ଭୂଷା ।
ପବନ ଦେହରେ କାକର ଭସଇ,
ଅବର ଗୁଣ୍ଡି କି ପାଉଁଶ ଦରି,
ବଗମୂଳ ସଫା ଦିଶିଯାଏ ନାହିଁ
ଖରା ଆମେ ନାହିଁ ପାଣି ପହଁରି ।
ପାଖରେ ଆଲୁଅ ଦୂରରେ ଅନ୍ଧାର
କେହି କାହା ସଙ୍ଗେ ମିଶଇ ନାହିଁ,
କୋଉ ଶୋଷକୁ କେ ତହିଁରେ ପୂରଇ
ଲୁଚି ଲୁଚି ଦେଖୁଥାଏ ବା ଗୁହିଁ ।
ରବି ଉଇଁ ଆସେ ଦକ୍ଷିଣକୁ ଚଳି
ସିଆଡ଼େ ସିଆଡ଼େ ଯାଏ ସେ ଚଳି,
ଦକ୍ଷିଣା ପବନ କଣ୍ଢା ଝଟା ଡେଇଁ
ମଂଜେ ବାଲୁଣୀରେ ଉଠଇ ଜଳି ।
ମନ୍ଥମ ଦୁଆର କଅଁଳିଆ ଖରା
ଦେହକୁ ଟିକଏ ଉଷୁମ ଲଗେ,
ନସଇନାଏଁ ବେଳ ଗଡ଼ି ଚାଲିଯାଏ
କୋଉ ବାଟକୁ କାହାର ବାଗେ ।

ଘରରେ ବସିଲେ ଶୀତ ମାଡ଼ିବସେ
ଖଟ ଚୂଆଁଇଲେ କାଠଇ ଖଟ,
ଘରରୁ ଖଟକୁ ଖଟରୁ ଘରକୁ
ଯା'ଆସ ଆ'ଆସ କରଏ ଚର !
ପାଦରେ ଗଣ୍ଡରେ ମଳି ବସିଯାଇ
ଫଟାଇ ଫୁଟାଇ ଦଅଇ ଚମ,
ଘଷିଘାଷି ତାକୁ ଛଡ଼ାଇ ନ ଦେଲେ
ଦିଶଇ ଅଇଁଠା-ଯାଦୁଟା ସମ ।
ଗଛ ଲତା ଦେହୁଁ ଚିକ୍‌କଣ ଛାଡ଼ଇ
ଗଂଠିରୁ ଅଙ୍କୁର ବାହାରେ ନାହିଁ,
ବସନ୍ତ କାଳର ଉଷ୍ମ ବାଆକୁ
ଦିନ ଗଣ୍ଠି ଶୋଇ ଥାଆନ୍ତି ଗୁହିଁ ।
ଶୀତ ଲାଗି ସବୁ ଶୋଇ ପଡ଼ିଥାନ୍ତି
ଯୋଡ଼ିଯାଡ଼ି ହୋଇ ଯେ ଯା'ର ଘରେ,
ଭେକ ଶୋଷ ସବୁ ପାଶୋରି ପକାନ୍ତି
ହାଡ଼ଫଟା ଶୀତ ଦାଉର ଡରେ ।
ମଉଜି ପିଲାଟି ମଉଜ କରୁଥା
ଶୋଇ ଶୋଇ କରି ତୁଳା ତଳପେ,
ନ ହେଲେ ଖେଳୁଥା ଭୁନଗାନ ହୋଇ
କାନ୍ଦନା ରେ କେବେହେଲେ ଅଳପେ ।
ଯାଉଛି ମୁଁ ଟିକେ ଦହି ମୋହିଁ ଦେଇ
ଆସିବ ଏଇନା ଧରିବ ପୁଣି,
ଘୃତରେ ତୁ ପୁଣି ମୁହଁ ପୂରାଇବୁ
ଖାଇବୁ ରେ ବାପ ସ୍ତନରୁ ଛୁଣି ।"
ଏଇତକ କହି ବୁଝାଇ ମଣାଇ
ଉଠିଲେ ଯଶୋଦା ତଳପ ଛାଡ଼ି,
ଦାସୀକୁ ଡାକିଣ କହିଲେ, "ଆଣ ଲୋ
କୋଉଠି ଥୋଇଛ ମୋ ଚୂଆବାଡ଼ି ?

ଖୁଆ ସଢ଼ି ସବୁ ଉଷୁମ ପାଣିରେ
ଧୋଇଧାଇ ଦେଇ କର ଲୋ ସଫା,
ଲହୁଣୀ କପର ବାହାରିବ ନାହିଁ
ମୋହିଁ ମୁଁ ଦେଖାଇ ଦେବ ସେ କଥା ।
ଘର ଘର ହୋଇ ଦୁଧ ଦୁହାଁ ହୁଏ
ହାଣ୍ଡି ହାଣ୍ଡି କରି ବସାଏ ଦହି,
ଲହୁଣୀ କଅଁ ଲୋ ଉଣା ଉଣା ହୁଏ
ପଗୃଶଲେ କେହି ପାରୁନା କହି ।
ସକାଳୁ ସକାଳୁ ଦହି ଘଷିଦେବଲ
ବାହାରନ୍ତା ସିନା ଲହୁଣୀ ବେଣୀ,
ବେଳ ଚହରକୁ ଉଠିବ ଲୋ ସବୁ
ଓରିବ ଲୋ ବଡ଼ ହାଣ୍ଡିଟା ଦେଖି ।
ତୁମେ ସବୁ କର ବାସି ପାଇଟି ଲୋ
ପୁଅ ପାଖେ ଜଣେ ଥାଅ ଲୋ ବସି,
ଯାଉଛି ଏଇନା ଆସିବ ମୁଁ ଫେରି
ଦହିଟିକ ଖାଲି ଦେଇଣ ଘଷି ।
ଶୀତଟା ପଡ଼ୁଛି ବଡ଼ କାଠୁଆ ଲୋ
ପାଣି ଟିକେ ଦିଅ ଉଷୁମ କରି,
ନ ହେଲେ ଲହୁଣୀ ଉକୁଟିବ ନାହିଁ
ଫେଣରେ ଫେଣରେ ରହିବ ମରି ।"
ରାତିପିନ୍ଧା ଲୁଗା ପାଲଟି ପକାଇ
ଅଣ୍ଟାରେ ପଣନ୍ତ ଭିଡ଼ିଲେ କଟି,
ଖୁଆଟାକୁ ଧରି ଡରଡର ହୋଇ
ଦହିମୁହାଁ ଘରେ ଗଲେ ସେଁପଶି ।
ଖୁଣ୍ଟ ମୂଳେ ଯାଇ ଗୋଡ଼ ଫରକଟି
ଠିଆ ହୋଇଗଲେ ଘୁଣ୍ଡକୁ ଠେଲି,
ଚାର୍ଣ ମଳାଟାକୁ ଚିପିଗୁପି ଦେଇ
ଦହି ହାଣ୍ଡି ତଳେ ଦେଠଲଟି ପେଲି ।

ଖୁଆ ବେଣ୍ଟେ ଜୋଡ ଦ୍ୱ'ସର ଗୁସର
ଦହି ହାଣ୍ଡି ମଧ୍ୟେ ରଖିଲେ ଭରି,
ଚଳାଇଲେ ହାତ ଆଗ ପଛ କରି
ଯୋଡ ଦୁଇ ସରୁ ହାତେ ଧରି ।
ମୁଣ୍ଡେ ଗେଣ୍ଡୁ ଫୁଲ ମାନଇ ସୁନ୍ଦର
ବାସି ହୋଇ ଟିକେ ମଉଳ ଅଛି,
କଳା କୁନ୍ତଳେ କ କନକ କମଳ
ଉପରକୁ ଗୃହିଁ ଗୃହିଁ ହସୁଛି ?
ସ୍ତନ ଯୁଗଳରୁ ବସନ ଖସିଛି
ଝରୁଛି ତହିଁରୁ କେତେ ଯେ କ୍ଷୀର,
ବସନ ଭୂଷଣ ଭିଜି ଯାଇଅଛି
ଦହିମନ୍ଥା ଶ୍ରମେ ନିଗିଡ଼ି ନୀର ।
ଦହି ମୋହୁଁ ମୋହୁଁ ଖୋଷା ବନ୍ଧା କେଶ
ଆଲୁବାଲୁ ହୋଇ ପଡ଼ୁଛି ଫିଟି,
କେଶ କେଶ ହୋଇ ଗୃରଅଡ଼େ ପଡ଼ି
ଘୋଡ଼ାଇ ଦେଉଛି ଗଉର ପିଠି ।
ହୁଳଧାବସନ୍ତ ଚଢ଼େଇ ପିଠିରେ
ଉଠିଲ କି ଆଜ କାଳିଆ ପକ୍ଷୀ ?
ଦଳା କୁଙ୍କୁମରେ କଜଳପାଖିକୁ
କିଏ ବା ଏପରି ଦେଇଛି ରଖି ?
ସୁନାର ଗହଣା ଦିଶୁ ନାହିଁ ତୋର
ଗଉର କାନ୍ତିକୁ ଯାଇଛି ହାରି,
କିଏ ଦେହ, କିଏ ସୁନା ଅଳଙ୍କାର
ସହଜରେ ହେଉ ନାହିଁ ତ ବାରି ।
ଦହି ଘଣ୍ଟୁ ଘଣ୍ଟୁ ଗାଉଛନ୍ତି ଗୀତ
"କାହ୍ନୁଟି ମୋର ତ ପଡ଼ୁଛି ଶୋଇ,
ସୁନା ମୁଅ ହାତେ ସଜ ଲହୁଣୀରୁ
ମେଞ୍ଚାଏ ନେଇଣ ଦେବି ମୁଁ ଥୋଇ ।

ପୁଳି ପୁଳି କରି ଖାଇବ ମୋ ବାପ
ଆଜି ତ ଅଣ୍ଟ ହୋଇବ ନାହିଁ,
ଏତେ ଦୁଧ ଦହି ଏତେ ବା ଖାଉଛଣି
ମୋହର ବା ଆଉ କାହାର ପାଇଁ ?"
ଯାଉଛି ଯାଉଛି ଦହି ମୋହି ଦେଇ
ଆହୁରି ଟିକଏ ଥାଆ ତୁ ଶୋଇ,
ହୋଇ ସଜଲିଣି ଲହୁଣୀକୁ ଛାଣି
ଶିକା ଉପରେ ମୁଁ ଦଅଛି ଥୋଇ ।
ଏଠୁଁ ଯାଇଁ ତୋତେ ଧରିବି କାଖରେ
ଧନଯାକ ଆଉ ଥୋଇବ ନାହିଁ,
ବୁଲି ବୁଲି କରି ତୋ ସୁନ୍ଦର ମୁହଁକୁ
ନରେଖି ନରେଖି ଥିବ ରେ ସୁହିଁ ।
ପିଲାର ପାଟିଟା ପୋଛି ଦେଇ ନାହିଁ
ରାତିରୁ ମୁହଁଟା ପଡ଼ୁଛି ବାସି,
ଉଷୁମ ପାଣିରେ ଧୋଇଧାଇ ଦେଇ
ଖୁଆଇ ଦେବି ମୁଁ ଗାଧୋଇ ଆସି ।"
ବଳେଇ ଗୁଡ଼ାଏ କୋଉଠେଇ ଥିଲେ
ପଲ ପଲ ହୋଇ ବସିଲେ ବେଢ଼ି,
ହାଣ୍ଡି ଗୁରିପାଖେ ସାଲୁବାଲୁ ହୋଇ
ସଭିଏଁ ସଭିଙ୍କୁ ଗୁହାଁଲେ ଚେଡ଼ି ।
ଦହିରୁ ପଡ଼ଇ ଯେତିକ ଛିଟିକା
ମାଡ଼ି ବସି କରି ଦଅନ୍ତି ଗୁଟି,
କଏ ବା କାହାକୁ ଗୋଡ଼ରେ ମାରଇ
ଦାନ୍ତ ନକୁଟଇ ମେଲାଇ ପାଟି ।
ସରୁ ସରୁ ଦାନ୍ତ ବଡ଼ାଏଁ ମୁନିଆ
ଭିତର ଆଡ଼କୁ ସମସ୍ତେ ବଙ୍କା,
ଏହି ଦାନ୍ତ ପାଇଁ ମୂଷାଙ୍କର ବଂଶ
ବଳେଇଙ୍କୁ ଦେଖି କରଇ ଶଙ୍କା ।

ଜାଅନ୍ତା ଶିକାର ଧରବା ପାଇଁକ
ବଙ୍କା ଦାନ୍ତ ନଖ ଗଢ଼ିଛନ୍ତି ବନ୍ଧ,
ବିଲେଇ ପାଟିରେ ମୂଷାର ମରଣ
ବିଧାତା ଆଗରୁ ଦେଇଛନ୍ତି ଲହି ।
ଦହିମୁହାଁ ଟିକେ ହୋଇଲା ଉଚ୍ଛୁର
ଶ୍ରୀକୃଷ୍ଣ ଧାଇଁଲେ ଶେଯରୁ ଉଠି,
ଦାସୀଏ ଧଇଲେ ଆଦର କରଣ
ସମସ୍ତଙ୍କୁ ପ୍ରଶ୍ରୟ ଦେଲେ ସେ କୁଣ୍ଠି ।
ପଶିଗଲେ ଯାଇଁ ଦହିମୁହାଁ ଘରେ
ମାଆର ସଙ୍ଗରେ କରିଲେ ଅଳି,
ମାଆର ବସନ ଧରି ଓଟାରିଲେ
ରାଗରେ ଜନନୀ ହୋଇଲେ ଚଳି ।
ଏଇନାଏଁ ଆଜ ଲଗାନା ସୁଆଗ
ଟିକଏ ନାଁକୁ ତୁ ରହିଥା ବସି,
ଦେଖିରେ ସେଠେଇ ବେଢ଼ି ବସିଛନ୍ତି
କେତେ ସୁନ୍ଦରିଆ ଶଙ୍ଖିଆ ପୁସି ।
ତେଣେ ଚୁଲିଟାରେ ଦୁଧ ବସିଥିଲା
ଖିର ନଆଁ ଲଗି ପଡ଼େ ଉଚୁରି,
ଦହିମୁହାଁ ଛାଡ଼ି ଧାଇଁଲେ ଯଶୋଦା
ମୁଅକୁ ଆଡ଼େଇ ଦେଇଣ ଧରି ।
ରାଗିଗଲେ କୃଷ୍ଣ ଏଇ ଟିକକରେ
ଶିଳପୁଆଟାଏ ଦେଖିଲେ ଆଗେ,
ଦଉଡ଼ି ଯାଇଣ ଗୋଟାଇ ଆଣିଲେ
ଦହି ହାଣ୍ଡିଟାକୁ ପିଟିଲେ ରାଗେ ।
ବିଲେଇଙ୍କର ତ ପିନ୍ଧଲ ପଡ଼ିଲା
ଯେ ଯେତେ ପାରୁଛି ଖାଉଛି ଦହି,
ଯଶୋଦା କୋଉଟି ଦେଖିଦେଲେ ଯହୁଁ
ରାଗରେ ନ ପାରି ଏକଥା ସହି ।

ଧଇଲେ ହାତରେ                    ଗୁଠଠାଏ ଆଣି
        ଧାଇଁଲେ ପୁଅକୁ ପିଟିବା ପାଇଁ,
ପଳାଇଲେ କୃଷ୍ଣ                    ଗୋଡ଼ାଇଲେ ମାଆ
        ଧରି ପାରିଲେନ ଛଛରେ ଧାଇଁ ।
ଦଉଡ଼ ଦଉଡ଼                    ଥକଲେ ଯଶୋଦା
        କୃଷ୍ଣ ମାଆ କଥା ଜାଣିଲେ ମନେ,
ଧରା ଦେବେ ବୋଲି                    ଠିଆ ହୋଇଗଲେ
        ମାଆ ମୁହଁ ଚାହିଁ ମଳ ନୟନେ ।
ରାଗ ପରିହରି                    ଧଇଲେ ଜନନୀ
        ଭାବିଲେ ମନରେ ମାରିବେ ନାହିଁ,
ବାନ୍ଧି ପକାଇବେ                    ଖୁଣ୍ଟରେ ଆଣ୍ଟରେ
        ଛାଡ଼ ଦେବେ ନାହିଁ ପୁଅକୁ କାହିଁ ।
ପଶିଗଲେ ଘରେ                    ଆଣିଲେ ଦଉଡ଼ି
        ପୁଅର ଅଣ୍ଟାକୁ ଅଣ୍ଟିଲା ନାହିଁ,
ପୁଣି ଘରେ ପଶି                    ଆହୁରି ଆଣିଲେ
        ବାନ୍ଧିଲା ବେଳକୁ ପାଉଛୁ କାହିଁ ?
ଆହୁରି ଆଣିଲେ                    ଖୋଜ ଖାଜ କରି
        ଦୁଇଟି ଆଙ୍ଗୁଳ ହୋଇଲା ଊଣା,
ଗୋପୀଏ ଦେଖିଲେ,                    ହସିଲେ ସକଳେ
        ମେଲ ଦେଇ ଗଲେ ଯେ ଊଳୁଗୁଣା ।
କହିଲେ, "ଗୋପରେ                    ଧଣୀ ଟର ତୁ ଗୋ
        ବାଳୁତ ପିଲାଟା ବାନ୍ଧିବା ପାଇଁ,
ଘରେ ତୁ ଦଉଡ଼ି                    ସାଇତି ନାହୁଁ ଗୋ
        ଗୋରୁ ଗାଈ ବାନ୍ଧି ରଖୁ ତୁ କାହିଁ ?"
ମାଆ ଅପମାନ                    ଜାଣିଲେ ଶ୍ରୀକୃଷ୍ଣ
        ଦଉଡ଼ି ପାଇଲା, କଲେ ସେ ମାୟା,
କେହି ଜାଣିଲେ ନ                    କେତେବେଳେ କାହିଁ
        ସରୁଆ କରିଲେ ଅଣ୍ଟାର କାୟା ।

ବାନ୍ଧଲେ ଯଶୋଦା ଖୁଂଟଟାରେ ନେଇ
ଗୃହଗଲେ ଅନ୍ୟ ପାଇଁ କରି,
ହଲଇ ହଲଇ ଓପାଡ଼ିଲେ କୃଷ୍ଣ
ଖୁଂଟଟାକୁ ଦୁଇ ହାତରେ ଧରି ।
କୃଷ୍ଣ ଯାଉଛନ୍ତି ଆଗକୁ ଆଗକୁ
ଖୁଂଟ ଘୁଷୁଡ଼ୁଛି ତାଙ୍କର ପଛେ,
ଆଖି ପଡ଼ିଗଲା ପାଖରେ ସେଇଠି
ଦୁଇଟି ଯାଆଁଳା ଅର୍ଜ୍ଜୁନ ଗଛେ ।
ଦୁଇ ଗଛ ମଧ୍ୟେ ପଶିଗଲେ କୃଷ୍ଣ
ଖୁଂଟଟା ରହିଲା ଗଛରେ ଲାଗି,
ଟାଣିଲେ ଖୁଂଟକୁ ନଇଁପଡ଼ି କରି
ସେ ଟଣାରେ ଗଛ ପଡ଼ିଲେ ଭାଂଗି ।
କୁବେରଙ୍କ ପୁଏ ଦିବ୍ୟ ରୂପ ଧରି
ଗଛର ଭିତରୁ ହେଲେ ବାହାର,
କର ଯୋଡ଼ି ବନ୍ଦି ଶ୍ରୀକୃଷ୍ଣ ଚରଣେ
ପବନେ ଗଗନେ କଲେ ବିହାର ।
ମଡ଼ ମଡ଼ ଶବ୍ଦ ଶୁଣିଲେ ଯଶୋଦା
ଗୋପପୁରଯାକ ଆସିଲେ ଧାଇଁ,
ସକଳେ ବିକଳେ ଖୋଜି ପକାଇଲେ
ସମସ୍ତଙ୍କ ମୁହେଁ "ଶ୍ରୀକୃଷ୍ଣ କାହିଁ ?"
ଗଛର ତଳରେ ଶୋଇଛନ୍ତି କୃଷ୍ଣ
କୋଉଠି ଟିକଏ ଆଂଚୁଡ଼ା ନାହିଁ,
କାନ୍ଦଣାର ଲେଶ ନାହିଁ ତ ମୁହଁରେ
ଖାଲି ବଲବଲ ଅଛନ୍ତି ଚାହିଁ ।
ଗଛକୁ ଆଡ଼େଇ ଆଣିଲେ ପୁଅକୁ
କୃଷ୍ଣ ଅଂଗ ପରି ଦେଲେଟି ହସି,
ମାଇପେ ମିଣିପେ ମିଳାମିଶି କରି
ପୁଅର ଦେହକୁ ଦେଲେ ଆଉଁସି ।

ହସି ହସି କରି ମାଆଙ୍କ ଗ୍ରୀବରେ
ମୁହଁକୁ ଲୁଗୃଇ ଧଇଲେ ଯାକି,
ଗୁଣିଆ ଗୋପରେ ଯେତେ ଯନ୍ତ୍ରୀ ଥିଲେ
ଗୋପାଳେ ଆଣିଲେ ସଭିଙ୍କୁ ଡାକି ।
ଝାଡ଼ ଫୁଙ୍କିଦେଲେ ପୁଅକୁ ଗୁଣିଆ
ଖୁଆଇଲେ ଆଦରେ ସର ଲହୁଣୀ,
ଶୁଆଇଲେ ଖଟରେ ବିଂଚିଲେ ପଂଖାରେ
କେତେ ଗେଲ କଲେ ଗୋପ-ତରୁଣୀ ।
ହେ କୃଷ୍ଣ ! ଲେଖକ ପାପ-ବିଷ ପିଇ
ମରୁଛି ସଂସାରେ ବିକଳ ହୋଇ,
ଥରୁଟିଏ ଖାଲି କୃପାବାରି ଢାଳି
ତାହାର ସେ ବିଷ ଦିଅ ହେ ଧୋଇ ।

# ବୃନ୍ଦାବନ ଶୋଭା ବର୍ଣ୍ଣନ

ଯାମଳ ଅର୍ଜ୍ଜୁନ          ହୋଇଲା ମୁକତ
କୃଷ୍ଣ ପାଇ ସବୁ ହେଲେ ଆନନ୍ଦ,
ଭାଳିଲେ ଏଣିକ          ରହିଲେ ଗୋପରେ
ଆଉ ଭଲ ନାହିଁ ହୋଇବ ମନ୍ଦ ।
ଧରମ ବଳରୁ          ପିଲାଟା ସିନା ହେ
ଅଳପକେ ଯାଉଅଛି ଉବୁରି,
ଏଥର ସକଳେ          ସାବଧାନ ହୁଅ
ପିଲାଟି ନଜର ରହୁ ସବୁରି ।
ବଡ଼ ଗଛ ଦି'ଟା          ଉପୁଡ଼ି ପଡ଼ିଲା
ପିଲାଟା ରହିଲା ତଳେ କପରି !,
ଧରମ ନ ଥିଲେ          ବାଳୁତ ପିଲା କି
ବଂଚି ଯାଇଥାନ୍ତା ଜୀବନ ଧରି !
ଅନୁଡ଼ଶାଳରୁ          ଆଜଯାଏଁ ବୋଲି
ଲାଗିଛି ଏହପ୍ରା ଏଇପ୍ରା ଖାଲି,
ଆଉ ତ ଏଠେଇ          ରହିହେବ ନାହିଁ
ଘରଦ୍ୱାର ଭାଂଗି ଯିବା କି ଭଲ ?
ଗୋପରେ କି ଆଉ          କୋଉ ଆଡ଼ୁ ଆସି
ଭୂତ ପଶିଲାଣି ମନାସି ମନ୍ଦ,
କି ଅବା କାହାର          କୋଉ ଅପରାଧ
କରିଛନ୍ତି କାହିଁ ଯଶୋଦା ନନ୍ଦ !

ଭାବ ଚନ୍ତି ସବୁ କହୁନା କାହିଁକି
ଯିବା କି ରହିବା ଏଠେଇ ପଡ଼ି ?
ରହିଲେ ସୁଦ୍ଧା କହୁଛୁ ଜାଣିଥା
ଦର୍ଦ୍ଦିନ ଦୁଃଖ ଯିବଟି ବଢ଼ି ।
କହିଲେ ସମସ୍ତେ ଏକସ୍ୱର ହୋଇ
"ଚାଲ ହେ ଗୋକୁଳେ ରହିବା ପାଇଁ,
ସୁଶୀତଳ ଛାଇ ସୁକୋମଳ ଘାସ
ନିରମଳ ପାଣି ପାଇବେ ଗାଈ ।
ସୁଖରେ ରହିବେ ବେଶୀ ଦୁଧ ଦେବେ
ଆମେମାନେ ସବୁ ରହିବା ଭଲ,
ଗୋପପୁରେ ରହି ଆଉ ସହିବାନି
ଏତେ ଆପଦର ଦାରୁଣ ଫଳ ।"
ଏତକ ବେଳରେ କୋଳି ବିକିବାକୁ
ଶବରୁଣୀଟିଏ ମିଳିଲା ଆସି,
"କୋଳି କିଏ ନେବ" ବୋଲି ଡାକଦେଲା
"ନିଅ ସଜ କୋଳି ହୋଇନି ବାସି ।
ଆସ ରେ ପିଲାଏ ଖାଅ ସବୁ କୋଳି
ସୁଆଦିଆ କୋଳି ଆସ ହେ ଆସ,
କୋଳିରେ ତ ମୋର ନିବାତ ବୋଲିଛି
ଖାଇଲେ ମେଣ୍ଟିବ ମନର ଆଶ ।"
ଧାଇଁଲେ ପିଲାଏ ଯେ ଯାହାର ଘରେ
ଅଳି ଲଗାଇଲେ ମାଆଙ୍କ ସଙ୍ଗେ,
କିଏ ସେ ଜଉଡ଼ି କିଏ ଅବା ଧାନ
ଧରଣ ହାତରେ ଧାଇଁଲେ ରଂଗେ ।
ଧୂଳିରେ ଧୂସର ହୋଇଅଛି ତନୁ
ପିଠିରେ ପିଚ୍ଛରେ ସିଂଘାଣି ଦାଗ,
ପେଲାପେଲି ହୋଇ ଦଉଡ଼ନ୍ତି ସବୁ
କିପରି କେ କୋଳି କିଣିବ ଆଗ ।

ଶବରଣୀ କରେ ଅଜାଡ଼ିଲେ ସବୁ
ଜଣ ଜଣ କରି କଉଡ଼ି ଧାନ,
କୋଳ ମାଗି କରି ଦେଲା ଶବରଣୀ
ମନକୁ ମନାଇ ମୂରୀଇ ମାଣ ।
ଲଂଗଳା କହ୍ନାଇ କାହାକୁ ନ କହି
ପଶିଗଲେ ଧାନ ଥିଲାଟି ଯହିଁ,
ଅଂଜୁଳାଏ ଧାନ ପେଟରେ ଯାକଣ
ନଇଁ ନଇଁ କରି ଆସିଲେ ଧାଇଁ ।
ଶବରଣୀ ଡାଲା ପତାଇ ତାହାକୁ
ଖୁସି ହୋଇ କରି ଅଜାଡ଼ି ନେଲା,
ଅଂଜୁଳା ମୂରୀଇ ଶ୍ରୀକୃଷ୍ଣଙ୍କ କରେ
ବାଛି ଭଲ କୋଳ ଆଦରେ ଦେଲା ।
ଅନାଇଁ ରହିଲା ମାଳ ଦେହଟିକୁ
ଆଖିରେ ପିଛୁଳା ପଡ଼ିଲା ନାହିଁ,
କେଜାଣି କ ଭାବି ମନରେ ଉଠିଲା
କୋଉ ସରଗରେ ପଡ଼ିଲା ଯାଇ !
ହାତେ କୋଳ ଧରି ହସି ହସି କରି
କୋଳ ବୋଝଟାକୁ ଗୁହିଁଲେ ନଇଁ,
ବୋଝଯାକ କୋଳ ସୁନା ହୋଇଗଲା
ଶବରଣୀ କିଛି ନ ପାରି କହି—
କେବଳ ଗୁହିଁଲା କୃଷ୍ଣଙ୍କ ମୁହଁକୁ
ଆନନ୍ଦରେ ଲୁହ ପଡ଼ିଲା ଗଡ଼ି,
ଭାବିଲା ମନରେ ଶରଧନ ପାଇଁ
ରହିଲା ପିଲାର ଚରଣେ ପଡ଼ି ।
ସଜବାଜ ହୋଇ ବାହାରିଲେ ସବୁ
ଛାଡ଼ି ଗୋପପୁର ଯିବେ ଗୋକୁଳେ,
କାହା ମୁଣ୍ଡେ ବୋଝ କାହା କାନ୍ଧେ ଘର
କାହା କରେ କନା-ପୁଟୁଳି ଝୁଲେ ।

କଏ ଯାଉଅଛି ଶଗଡ଼ରେ ଚଢ଼ି
କଏ ସେ ଯାଉଛି ଗୋଡ଼ରେ ଚାଲି,
କଏ ବା ବକ୍ଷରେ ଯାକଛି ଛୁଆକୁ
କଏ ବା ଯାଉଛି କେବଳ ଖାଲି ।
ଯଶୋଦାଙ୍କ ବକ୍ଷେ ସୁନୀଳ ଶ୍ରୀକୃଷ୍ଣ
ଦିଶୁଛନ୍ତି ଆହା କେଡ଼ାଦେଁ ଝଲି !
ନୀଳ ଗେଣ୍ଡୁ ଫୁଲ ପୀତଦଳ ପରେ
ବସିଛି କି ଆଜ ତରୁଣ ଅଳି ।
ଅଶଣ ପୁନିଅ— ଚନ୍ଦ୍ରମା ଦେହରେ
ଶୋଭଇ କି ସତେ ଶଶର ଲେଖା,
କନକ ପଦକେ ଇନ୍ଦ୍ର-ନୀଳମଣି
ଦାଉ ଦାଉ ହୋଇ ଯାଏ କି ଦେଖା ?
କୋଉଠି ପଡ଼ୁଛି ବଣ ବୁଦା ଗୋଡ଼ି
କୋଉଠି ବାଟରେ କେବଳ ବାଲି,
କୋଉଠି ପଡୁଛି ଝଲବାଉ ନାଳ
କୋଉଠି ସବୁଜ ପଡ଼ିଆ ଖାଲି ।
ଗୋଡ଼ରେ ଶଗଡ଼ ଗଡ଼େ ଘର ଘର
ବାଲିରେ ଶୁଭଇ କି ସାଇଁ ସାଇଁ,
ମାଇପେ ମିଣିପେ ଦଳ ଦଳ ହୋଇ
ଚାଲନ୍ତି ଶଗଡ଼ ପଛରେ ଧାଇଁ ।
ଆଗରେ ପଛରେ ଉଡ଼ୁଅଛି ଧୂଳି
ମୁଖ ସବେ ଦାଣ୍ଡ ପଡ଼େ ଉଛୁଳି,
ସକାଳୁଆ ଖରା ବଢ଼ି ଯାଉଅଛି
ବାଲିର ତବତ ଯାଉଛି ବଳି !
ଚାଲୁ ଚାଲୁ ଚାଲୁ ସରିଗଲା ବାଟ
ନିକଟ ହୋଇଲା ଯମୁନା ତଟ,
ଖରା ଗିରିଷମେ ବାଟ ଚାଲି ଚାଲି
ଅଉଟିପାଉଟି ହେଲେ ନିପଟ ।

କ୍ରମେ କ୍ରମେ ସବୁ ଦିଶଲା ସବୁଜ
ଶ୍ୟାମଳିମା ଅଛି ଗଗନ ଛୁଇଁ,
ଆଖିକୁ ଶୀତଳ କରୁଅଛି ଦୂରେ
ନଈ କୂଳେ କୂଳେ ଘାସୁଆ ଭୂଇଁ ।
ଦୂରରୁ ଦିଶୁଛି ଯମୁନାର ଜଳ
ଝଳ କାଚ ପରି ସ୍ୱଚ୍ଛ ନିର୍ମଳ,
ଲହରି ଉପରେ ନାଚୁଛନ୍ତି କେତେ
ଶୁକଳ ଓ ଲାଲ ସଜ କମଳ ।
କମଳକୁ ବେଢ଼ି ଖେଳନ୍ତି ମରାଳେ
ମୃଣାଳ ଖୋଜନ୍ତି ପାଣିରେ ବୁଡ଼ି,
କେତେକ କାହାର ଛାଇକୁ ଦେଖିଣ
ଉପରେ ଗଗନେ ଯାଆନ୍ତି ଉଡ଼ି ।
ଉଡ଼ିବା ବେଳରେ ପଡ଼ିଯାଏ ଛାଏଁ
ଯମୁନା ଜଳରେ ଚଞ୍ଚଳ ଛାଇ,
କିନ୍ତୁ କି ବିଚିତ୍ର ଜଳ ଉରସରେ
ସେ ଛାଇ ତ କାହିଁ ଦିଶଇ ନାହିଁ !
ପାଣି ଅନ୍ଧାରିଆ ଛାଇ ଅନ୍ଧାରିଆ
ଅନ୍ଧାରେ ଅନ୍ଧାରେ ମହାମିଳନ,
ସଚଳେ ସଚଳ ହଜିଯାଏ କାହିଁ
ଛାଇ ସଲିଳରେ ହୁଏ ଗୋପନ ।
କ୍ରମେ କ୍ରମେ ହେଲା ବନ ଗହଳିଆ
ପଶୁ ପକ୍ଷୀ ସବେ ଶବ୍ଦେ ଚହଲ,
ଗଛରେ ଲତାରେ ଫୁଟିଅଛି ଫୁଲ
କୁଞ୍ଜେ କୁଞ୍ଜେ କେତେ ଫଳିଛି ଫଳ ।
ଶୀତଳ ପବନ ବହେ ଅବିରଳ
ଦେହରୁ ଶୁଖାଇ ଶରମ ବାରି,
ଶୀତ ପରଶରେ ଆହ୍ଲାଦିତ ହେଲେ
ବାଟ ଚାଲୁଁ ଚାଲୁଁ ନର ଓ ନାରୀ ।

ମନ୍ଦ ମନ୍ଦ ହୋଇ          ବାସନ୍ତ ପବନ
ମିଶାମିଶି ଗନ୍ଧେ ପୂରାଇ ବନ,
ସତେ କି ପବନ          ବୋଲି ହୋଇଅଛି
ସୁଗନ୍ଧ ଅତର ଚୂଆ ଚନ୍ଦନ !
ଗଗନର ଶୋଭା          ଧରି କି ଏ ବନ
ଶଶୀ ଛାୟା ସମ ଫଳ ସୁମନ,
ସଜାଇ ଶାଖାରେ          ଧରିଅଛି ପତ୍ର
କରିଛି ବନକୁ ସରଗ ସମ !
ସରଗ ବରଜ          ଅପ୍‌ସରୀ ଭୁବନ
ଏଠେଇକି କଲା ଅବତରଣ ?
କି ଅବା ସ୍ୱର୍ଗର          ସୁରନଦୀ ତୀରେ
ଶୋଭୁଛି ସୁନ୍ଦର ନନ୍ଦନ ବନ ।
ସରଗ ମନ୍ଦାର          ଫୁଟିଛି ଏଇଠି
ସରଗ ସୁଷମା ହସୁଛି ପରା,
ଯମୁନା ପୁଳିନେ          ଶୁଭୁଛି ସଙ୍ଗୀତ
ଗନ୍ଧର୍ବ ରାଇଜ କରି ଏ ଧରା ।
ଶ୍ୟାମ କୁଞ୍ଜେ କୁଞ୍ଜେ          ସଜାଡ଼ିଛି ତନୁ
ଦେଖାଇ ସନ୍ତାପ ହରୁଛି ମନୁଁ,
ମଥାନେ ମଥାନେ          ଦେଖାଇ ସୁମନ
ତୁଟାଏ ବିଷାଦ ଶ୍ରାନ୍ତ ନୟନୁଁ ।
ସୁନା, ରୁପା, ମୋତି,          ନୀଳା, ହୀରା ସମ
ଦେଉଛି ବନରୁ ଅନ୍ଧାର ତଡ଼ି,
ମନ ମନାଇଣ          ପ୍ରକୃତି ସୁନ୍ଦରୀ
ନାଇଛି କି ସବୁ ଗହଣା ଗଢ଼ି ?
ପେନ୍ଥା ପେନ୍ଥା କେତେ          ଫଳିଅଛି ଫଳ
କଞ୍ଚା ପାଚେଲ୍‌ରେ କେଡ଼େ ମଞ୍ଜୁଳ,
କିଏ ହଳଦିଆ          କିଏ ସେ ବୀ ନାଳି
କିଏ ବା ଶାଗୁଆ, ସବୁ ପ୍ରଚୁର !

କଏ ବା ସୁଆଦ    କଏ ବା ଆମ୍ବିଳା
  କଏ କଷା ପିତା ଜାଣିଛି କଏ ?
ଯିଏ ଖାଇଅଛି    ଗୋଟି ଗୋଟି ଗୁଣି
  ତାର ଭଲ ମନ୍ଦ ବୁଝିଛି ସିଏ ।
ଖାଆନ୍ତି ଚଢ଼େଇ    ଖାଆନ୍ତି ମାଙ୍କଡ଼
  ଖାଆନ୍ତି ହରିଣ ଖାଆନ୍ତି ହାତୀ,
ଏତେ ଏତେ ଫଳ    ପାଚୁଛି ଝଡ଼ୁଛି
  ସେସବୁ ଜୀବ କ ଏଠି ନାହାନ୍ତି ?
କେତେ ବା ଖାଇବେ    କେଉଁଠୁ ଖାଇବେ ?
  ବଣଆଡ଼େ ପୂରି ରହିଛି ଫଳ,
ପ୍ରକୃତି ଯାହାକୁ    ଫଳାଇ ଦେଇଛି
  ତାକୁ କେ ସାରିବ କାହାର ବଳ ?
ଗଛରେ ଗଛରେ    ମାଙ୍କଡ଼ ଅଛନ୍ତି
  ଖାଉଛନ୍ତି ଫଳ କଞ୍ଚା ପାଚିଲା,
ତାହାର ପାଟିକୁ    ସବୁ ତ ସୁଆଦ
  ଧନ୍ୟ ସେ ଯେ ତାକୁ ଏ ଜିଭ ଦେଲା ।
ସୀତା ଦେବୀ ବର    ଫଳିଲା କି ସତ
  ତେଣୁ ତା ପାଟିକୁ ସବୁ ମଧୁର,
ଯେତେ ଫୁଲ ଫଳ    ସବୁ ତ ଖାଉଛି
  ତାକୁ ନାହିଁ ଅସୁନ୍ଦର ସୁନ୍ଦର ।
ମଶା ମାଛି ଆଦି    ଭଅଁର ପାବତ
  ଯେଉଁମାନେ ରସ ଚୁଷି ଖାଆନ୍ତି,
ଚୋବାଇବା ଶକ୍ତି    ତାଙ୍କର ତ ନାହିଁ
  ଖାଲି ମହୁ ପାଇଁ ଧାଇଁଥାଆନ୍ତି ।
କୁସୁମେ କୁସୁମେ    ବୁଲି ବୁଲି ଫେରି
  ସୁମନ ପରାଗ ଦେହରେ ବୋଳି,
ବାହାରନ୍ତି ସବୁ    ଫଳ ଫଳ ହୋଇ
  ଝୁଲି କାନେ କାନେ କି ଗୀତ ବୋଲି ।

ଗୁଣୁଗୁଣୁ କାର ବାଜଇ ପିନ୍ଧାର
ତା ସଙ୍ଗରେ ମିଶେ କାହାର ଶଙ୍ଖ,
କାହାର ମହୁରି ବାଜଇ ସୁସ୍ୱରେ
ପୁଲକଇ ମନ ଉଲ୍ଲସେ ଅଙ୍ଗ ?
କେ ବାଏ ମୁରଲୀ କଏ ବାଏ ବୀଣା
କଏ ଘଣ୍ଟା ବାଦ୍ୟ ବଜାଏ ଦଣ୍ଡି,
କଏ ଶୁଣୁଥାଏ କାନ ଡେରି କରି
ମାଳବେ କୁସୁମ ଆସନେ ବସି ?
କୋକିଳ ସ୍ୱରଲେ ଗାଏ କଳଗୀତ
କୁମ୍ଭାଟୁଆ ଦିଏ ତନ୍ତ୍ରିମ ବସି,
ଉଗର ତାହୁକ ବଜାଏ ନାଗରା
ଦର୍ଦ୍ଦୁର ଚମକ ଦିଅଇ ହସି ।
କେକା କେକା ବାଣୀ ଶୁଭଇ ଗମ୍ଭୀରେ
ଶ୍ରୀକୃଷ୍ଣ ବନକୁ ଆସିବା ଜାଣି,
ହଳଦୀବସନ୍ତ ସଙ୍ଗେ ଶଙ୍ଖଚିଲ
ମିଶିକରି ଗାଏ କଉତା ବାଣୀ ।
ଯମୁନା ଜଳରେ ଲାଗିଅଛି ବାଆ
ନଚୁଇ ନଚୁଇ ଦେଉଛି ନାଆ,
ଲହରୀ ଉଠୁଛି ଧାଡ଼ି ଧାଡ଼ି ହୋଇ
ଆଗରେ ପଛରେ ଲାଗିଛି ଧାଆଁ ।
କୂଳେ କୂଳେ ଆସି କାଢ଼ି କାଢ଼ି କେତେ
କହନ୍ତି ମରମ କଥାଏ—କାହ୍ନୁ,
ତୋହର ପାଇଁକି ଗୁହାଁ ଗୁହାଁ କରି
ଦିନ ରାତି କେତେ କାନ୍ଦୁଛି, ଜାଣୁ ?
କର ଅନୁଗ୍ରହ ଏହିଠାକ କାହ୍ନୁ
ତୋର କାନ୍ତ ବୋଲି ମୋହର ଜଳେ,
ସେହି କାନ୍ତଟିକୁ ବୋଲ ଟେହାଇ କରି
କୁଟିଳ ପଥେ ମୁଁ ଆଗେଇ ଚଳେ ।

ଶିବ-ମଣ୍ଡଳରୁ ବାହାରି ଜାହ୍ନବୀ
ପତିତ-ପାବନୀ ଧରଣୀ ତଳେ,
ତୋର ଅଙ୍ଗ ରଙ୍ଗ ଲଭି କରି ମୁହିଁ
ଦେଖେ ମୋ ସଲିଳ କି ପୁଣ୍ୟ ଧରେ !
ନିକଟେ ପ୍ରୟାଗେ ମିଶିଯିବୁଁ ଦୁହେଁ
ଧରି ସେ ଯା ପୁଣ୍ୟ ଅଲଗା କରି,
କେହି କାହା ଦେହେ ହଜିଯିବୁ ନାହିଁ
ଥିବୁ ନିଜ ନିଜ ଶିଖାକୁ ଧରି ।
ଦେଖିଲି ରେ ତୋତେ ଏତେ ଦିନ ପରେ
କହ ଥରୁଟିଏ ଆଦର କରି,
ଆସିଲୁ କି ମୋତେ ଉଦ୍ଧାର ଦେବାକୁ
ମୋହର ବକ୍ଷରେ ଖେଳ ପହଁରି ?
ଆସିଛୁ ତ ଏଠି ବଇକୁଣ୍ଠ ଛାଡ଼ି
ଦୟା କି ତୋ ହୃଦୁଁ ଦେଇଛୁ କାଢ଼ି ?
ଧରଣୀରେ ପାପ ବଳି ପଡ଼ିଲା କି
କାହା ପାଇଁ ଦେବୁ ମୁକତି ବାଢ଼ି ?
ମୋ ଦେହରେ କାଳୀ ଦେଇଅଛୁ ଢାଳି
ଗୋଳା ଗରଳକୁ ନିର୍ଦ୍ଦୟ ହୋଇ,
ପାପୀ ତାପୀ କ'ଣ ସଂହାରିବୁ ନାହିଁ
ମୋ ଦେହରୁ ବିଷ ଦେବୁନି ଧୋଇ ?
ଗାରେଡ଼ି ମନ୍ତ୍ର ତୁ ଜାଣିଅଛୁ ପରା
ଧରା ଦେଇ କିଆଁ ଦେଉନୁଁ ଧରା ?
ବିଷର ଜ୍ୱାଳାରେ ଜଳୁଛି ମୋ ଦେହ
ଦହଗଂଜ ହେଉଅଛୁ ମୁଁ ପରା !
ରହ ତୁ ଏଇଠି ମୋର ସୁଖ ପାଇଁ
ହରିବ ମୋ ଦୁଃଖ ତୋ ମୁଖ ଚାହିଁ,
ସଜାଇବି କୁଂଜ ଆହୁରି ସୁନ୍ଦର
ତୋ ଶ୍ୟାମ ରୂପକୁ ଆଗରେ ଚାହିଁ ।

ବସନ୍ତ ଏଠାରେ ବହୁଥିବ ନିତି
ପକ୍ଷିଏ ଗାଇବେ ମିଳିତ ଗୀତି,
ଗଛ ଲତା ମିଳି ସଜାଇବେ କୁଞ୍ଜ
ନିତି ନୂଆ ନୂଆ କରିବୁ ପ୍ରୀତି ।
ଚରଣ ଚଳାଇ ବୁଲିଯିବୁ ଯେବେ
ପବିତ୍ର ହୋଇବ ମୋହର ବାଲି,
ସେହିବ ଚରଣ ଧନ ଗତି ବସି
ଏହିଟିକି ଦୟା କର ତୁ ଖାଲି ।
ତୋର ଆସିବାର ବାଟକୁ ଅନାଇଁ
ପଡ଼ି ରହିଥିଲି ନୀରବ ହୋଇ,
ଏଥର କହ୍ନାଇ ମାଡ଼ି ବୁଲିଯିବ
ଦୁଇ କୂଳ ପ୍ରେମ-ବନ୍ୟାରେ ଧୋଇ ।
କୂଳରେ କୂଳରେ ତୋଳିବ ଦେଉଳ
ପ୍ରେମର ପ୍ରବାହ ଦେବି ମୁଁ ଭରି,
ତାଜମହଲର ପବିତ୍ର ପ୍ରଣୟ
ସ୍ମୃତି ବହିବ ଶରୀର ଧରି ।
ଜାହ୍ନବୀ ବକ୍ଷରେ ଢାଳିଦେବି ଦେହ
ପ୍ରୟାଗ କ୍ଷେତ୍ରକୁ ପବିତ୍ର କରି,
ପାପୀ ତାପୀ ସବୁ ବୁଡ଼ ପକାଇବେ
ସରଗେ ଚଳିବେ ବିଗ୍ରହ ଧରି ।
ତୋର ନଖ କଣୁଁ ବାହାରି ଜାହ୍ନବୀ
ବିଷ୍ଣୁପଦୀ ବୋଲି ଲଭିଲା ସିଦ୍ଧି,
ତୋ କାଳିଆ ରୂପ ଦେହରେ ଧରି ମୁଁ
କାହିଁକି ହେବିନି ଅବା କାଳିନ୍ଦୀ !
ଶିବ ସଙ୍ଗ ଲଭି ଜାହ୍ନବୀ ଧବଳୀ
ପତିତ-ପାବନୀ ହେଲା ତା ନାମ,
ବିଷ୍ଣୁ ଅନୁଗ୍ରହ ପାଇ ମୁଁ ହେବିନି
କାଳିନ୍ଦୀ, ପରମ ମୁକତି ଧାମ ?

ତୁମ କୃପାକଣା ପାଇ ଏ ସଂସାରେ
କଏ ହେଲା ଧଳା କଏ ବା କଳା,
ଲେଖକ କେବଳ ରହିଲା ଅରଙ୍ଗ-
ତୁମ ଦୟା ବିନା ତା ଦିନ ଗଲା ।
ଆସିବ ନି ତୁମେ ? ଦେଖା ଦେବ ନାହିଁ ?
ତେବେ ସେ ହୋଇବ କଂସର ପରି,
ସେବା ପୂଜା ଛାଡ଼ି କରିବ କଜିଆ,
ମନକୁ ଆସିବ ଆୟୁଧ ଧରି ।
ହାତ ହତିଆର ଲୋଡ଼ା ହେବ ନାହିଁ
ଖାଲି ଥରୁଟିଏ ଦେଖିବ ତୁହିଁ,
ସେଇତକରେ ତ ପଶିବ ଦେହରେ
ଆଉ କି କଜିଆ କଅଣ ପାଇଁ ?

---

# ବାଛୁରୀ ଚାରଣ

ଦିନେ କୃଷ୍ଣ ହସି    ନନ୍ଦକୋଳେ ବସି
କହିଲେ ବେକକୁ କୁଣ୍ଢାଇ ଧରି,
"ଯାଆନ୍ତି ମୁଁ ବାପା !    ପିଲାଙ୍କ ସଙ୍ଗରେ
ବାଛୁରିଗୁଡ଼ିକ ଅଡ଼ାଇ କରି ।
ସକାଳୁ ଯାଆନ୍ତି    ଆସନ୍ତି ବାହୁଡ଼ି
ବେଳ ବୁଡ଼ିଯିବା ଆଗରୁ ଘରେ,
ଆଗରେ ଆଗରେ    ବାଛୁରି ଆସନ୍ତେ
ଆସନ୍ତି ମୁଁ ନିତି ତାଙ୍କ ପଛରେ ।
ଆମର ବାଛୁରି    'କେଡ଼େହେଁ ରୋଗିଣା
ପେଟଗୁଡ଼ିକ ତ ଯାଇଛି ପଶି,
ପରପୁଅ ଘରୁ    ବାଛେଇ ନଅନ୍ତି
ଚରାଇବା ଛାଡ଼ି ଖେଳନ୍ତି ବସି ।
ରକତ ମାଉଁସ    କିଛି ନାହିଁ ଦେହେ
ପଞ୍ଜରା ହାଡ଼ ତ ଦିଶୁଛି ଫୁଟି,
କଏ ବା ଗୁହାଳେ    ଶୋଇ ପଡ଼ିଥିଲେ
ନ ଟେକିଲେ ପାରୁ ନାହିଁ ସେ ଉଠି ।
ବାଟ ଚାଲୁ ଚାଲୁ    ଥରି ଥରି କରି
ଏଠେଇ ସେଠେଇ ପଡ଼ନ୍ତି ଝୁଣ୍ଟି,
କୋଉଠି କଦବା    ବୁଦାରୁ ଲଟାରୁ
ଘାସ ପତରଟେ ଖାଅନ୍ତି ଖୁଣ୍ଟି ।

ଏଇ ଚଗରେ କ ପେଟ ପୂରିଯିବ
ଦେହରେ ରକତ ହୋଇବ ବେଶୀ ?
ହାଡ଼ମାଳ ସବୁ ଲୁଚିଲାଚ ଯିବ
ମନକୁ ମାଉଁସ ହୋଇବ ଲେସି ?
ଆଜ ସମସ୍ତଙ୍କ ବାଛୁରୀଗୁଡ଼ିକ
ଖାଇପିଇ କରି ସୁସ୍ଥ ସବଳ,
ଆମରି କେବଳ ଶୁଖିଲ ଧଡ଼ିଆ
ନର୍ଜୀବ ଯେତେକ ବାଛୁରୀ ଦଳ ।
ବନେ ଯୋଉଠେଇ ଗହଳିଆ ଘାସ
ସେଠେଇ ଚରାନ୍ତୁ ବାଛୁରୀ ନେଇ,
ସଂଜକୁ ଆଣନ୍ତୁ ଚରାଇ ବୁଲାଇ
ଯମୁନାରୁ ପାଣି ପିଆଇ ଦେଇ ।
ଧୋବଲୀ ଗାଈର ବାଛୁରୀଟି ବଡ଼
କସ୍ତୁରୀ କଦମ୍ବୀ ବାଛୁରୀ ସାନ,
କାଳୀ ଓ ଶ୍ୟାମଳୀ ଦୁହିଙ୍କ ବାଛୁରୀ
ଦେଖିବା ପାଇଁ କ ସରି ସମାନ ।
ମୋ ପାଇଁ ଗୋଟିଏ ଛଡା କରିଦିଅ
ତାଳପତରରେ ମ୍ରେଟିଆ କରି,
ଗୋରୁ ଡନ୍ତାଟିଏ ଧୂଡ଼ୁକ କରଣ
ବାନ୍ଧ ମୁଁ କାନ୍ଧରେ ବୁଲିବ ଧରି ।
ଗଛଟରେ ବସି ମୁଁ ଧୂଡ଼ୁକ ବାଇବ
ବାଛୁରୀଗୁଡ଼ିକ ଚରିବେ ବୁଲି,
କେବେ ଗଛ ତଳେ ଛଡା ଥୋଇ ଦେଇ
ଗଛ ଡାଳେ ଡାଳେ ଖେଳିବ ଝୁଲି ।
ସାନ ସାନ କରି କାଠରେ କଠାଉ
ଯୋଡ଼ିଏ ମୋ ପାଇଁ ଦିଅ ହେ ଗଢ଼ି,
ବନେ ବଣେ ପଶି ବାଛୁରୀ ପଛରେ
ବୁଲିଯିବ କଂଟା ବୁଦାରେ ଚଢ଼ି ।

ସରୁ ବାଉଁଶରେ ସୁନ୍ଦର କରଣ
କରିଣି ଗୋଟିଏ ଦିଅ ହେ ଆଜି,
ଯୋଉ ବାଛୁରିକି ଡାକିବି ବଜାଇ
ସେ ତାହା ଶୁଣିଲେ ପାରିବ ଜାଣି ।"
ନନ୍ଦ 'ହଁ' କଲେ, କୃଷ୍ଣ ଖୁସି ହେଲେ
ଦଉଡ଼ିଲେ ବଳରାମଙ୍କ କତି,
କହିଲେ, "ହେ ଭାଇ ! ବାପା କହିଲେଣି
କାଲିଠୁଁ ବାଛୁରି ଜଗିବା ନିତି ।
ଦେବେ ସେ ଆଣାଇ ଶିଂଗା ବେଣୁ ସହି
ଆମ ପାଇଁ ଛୁଆ କଠାଉ ଛତା,
କଠାଉ ମାଡ଼ିଲେ କଂଟା ଭୁକିବ ନି
ଛତା ତ ରଖିବ ଖରାରୁ ମଥା ।"
ଦୁଇ ଭାଇଯାକ ଖାଇଲେ ପିଇଲେ
ଶୋଇଲେ ଏକାଠି ନିଦ ତ ନାହିଁ,
ରାତିଯାକ ଖାଲି ସେଇ କଥାବାର୍ତ୍ତା
ସକାଳ ହେବାକୁ ରହିଲେ ଚାହିଁ ।
ରାତ୍ର ପାହିଗଲା ଫରଚ୍ଛ ଦିଶିଲା
କାଉ ରାବ ଦେଲା ପିଢ଼ାରେ ବସି,
ଧଡ଼ପଡ଼ ହୋଇ ଉଠିଲେ ଶେଯରୁ
ଚରଚରେ ଦାନ୍ତ ପକାଇ ଘଷି ।
କ୍ଷୀର ସର ସହି ଖାଇଲେ ଲହୁଣୀ
କହିଲେ ମାଆଙ୍କୁ ଅନାଇଁ ହସି,
"ବାଛୁରିଙ୍କୁ ନେଇ ଯିବୁଁ ଗୋ ଏଇନା
ଚରାଇବୁ ତାଙ୍କୁ ବନରେ ପଶି ।"
ଯଶୋଦା ସେହ୍ନଣୀ ପିନ୍ଧାଇଲେ ଲୁଗା
ଗୋବର ଗୋଚନା କପାଳେ ଦେଇ,
ହାତପୁଡ଼ା ଦୁଇ ବାନ୍ଧିବୁନ୍ଧି ଦେଇ
କହିଲେ ' ଏତକ ଥାଅ ରେ ନେଇ ।

ଉଚ୍ଛୁର ହୋଇଲେ ଭୋକ କରିବ ରେ
ନେଇଥା ସଙ୍ଗରେ ଖାଇବ ଫେଇ,
ଦୁଧ ଦହି ସର ନେଇ ଥାଆନ୍ତି ରେ
ଚତର ପୂଡ଼ାରେ ହେବ କି ନେଇ ?"
କହିଲେ, "ରେ ବାପ ! ସହଳ ଆସିବ
ବେଳ ନ ବୁଡ଼ୁଣୁଁ ପଶିବ ଘରେ,
ବନସ୍ତରେ କେହି ରହନ୍ତି ନାହିଁ ରେ
ରାତି ହୋଇଗଲେ ବାଘର ଡରେ ।"
ହାତେ ଶିଂଗା ବେଣୁ ପୁଣି କେନ୍ଦୁ ବାଡ଼ି
ଶିରେ ଶୋଭା ପାଏ ମୟୂର ଝାଲି,
ସାନ ଜୁଡ଼ାଟିକୁ ବେଢ଼ି ରହିଥାଏ
ନାଲିକଳା ମିଶି ଗୁଂଜରି ମାଳି ।
ଦାଣ୍ଡରେ ଦାଣ୍ଡରେ ଚାଲିଗଲା ବେଳେ
ଶୋଭାରେ ତ ଦାଣ୍ଡ ଉଠିଲା ହସି,
ସଂସାରଯାକର ଶିଶୁ ସଂପଦ କି
କାହ୍ନୁଁ ଆସି ଦାଣ୍ଡେ ପଡ଼ିଲା ଖସି !
ଆଗରେ ଆଗରେ ବାଛୁରିଗୁଡ଼ିକ
ଯାଉଥାନ୍ତି ଧୀରେ ଧୀରେ ଦଉଡ଼ି,
କୃଷ୍ଣ ବଳରାମ ଦଉଡ଼ନ୍ତି ପଛେ
କାନ୍ଧେ ଛତା ହାତେ କେନ୍ଦୁ ଲଉଡ଼ି ।
ଗୋପ ପିଲେ ସବୁ ଯେ ଯାର ବାଛୁରି
ନେଇ ଯାଉଥାନ୍ତି ଅଲଗା କରି ,
କେତେବେଳେ ସବୁ- ଯାକ ମିଶିଯାନ୍ତି
ବାଟରେ ବାଟରେ ଯାଆନ୍ତି ଚରି ।
ବଣେ ବଣେ ପଶି ତୋଳନ୍ତି କୁସୁମ
କୁଂଜେ କୁଂଜେ କେତେ ଖେଳନ୍ତି ଲୁଚି,
କିଏ ସେ ରୂପକୁ ଦେଖିଲେ ନୟନେ
କେବେ କି ମନରୁ ପାରିବ ମୁଛି ?

ଖେଳ କଉଡ଼ି କବାଡ଼ି କୁସ୍ତି କସରତ
କରନ୍ତି ଗୋପାଳ ପିଲାଙ୍କ ସଙ୍ଗେ,
ଧସ୍ତାଧସ୍ତି ହୋଇ ଗଡ଼ଯାନ୍ତି ତଳେ
ମିଶାଇ ଦେଇଣ ଅଙ୍ଗକୁ ଅଙ୍ଗେ ।
ଚକା ତାଳପତ୍ର ଛତା ହାତେ ଧରି
ଖୁସିରେ ଧୂତୁରା ବଜାଉଥାନ୍ତି,
ବଣେ ବଣେ ପଶି ବଇଁଶୀ ବଜାଇ
ବାଲ୍ଲସ୍ତ ଚରାଇ ଗୀତ ଗାଆନ୍ତି ।
କୋଇଲି ବୋବାକୁ ଅନୁକରି କରି
କହନ୍ତି ମଧୁରେ କୁହୁ ଓ କୁହୁ,
ବାଘୁଆ ମାଛିର ଗୁଂଜନ ଶୁଣିଲେ
ଶିହରି ଶିହରି କହନ୍ତି ଉହୁଃ ।
ମୟୂର ନାଚିବା ଦେଖିଲେ କୋଉଠି
ନାଚନ୍ତି ତା ପରି ଘୂରି ଓ ଫେରି,
ଦୂର ବନସ୍ତରେ କେ ବଂଶୀ ବାଇଲେ
ଶୁଣନ୍ତି ମାତିବେ ଶ୍ରବଣ ଡେରି ।
ସବୁଦିନ ଯାନ୍ତି ବଣକୁ ଏପରି
ଗୋପ ବାଳକଙ୍କୁ ସଙ୍ଗରେ ଧରି,
ଫେରନ୍ତି ଘରକୁ ବେଳ ବୁଡ଼ିଗଲେ
ବାଲ୍ଲସ୍ତଗୁଡ଼ିକୁ ଚରାଇ କରି ।
କଂସର ମନରେ ଦକା ବଢ଼ିଲାଣି
ଦିନୁଁ ଦିନ କୃଷ୍ଣ ବଢ଼ିବା ଦେଖି,
ମରମ ଭିତରେ ନିକଟ ମରଣ
ଥରି ଥରି କରି ରଖୁଛି ଲେଖି ।
କୋଉ ଉପାୟରେ ମାରିବ କୃଷ୍ଣଙ୍କୁ
ସବୁବେଳେ ତାର ଗୋଟିଏ ଚିନ୍ତା,
ରାଜ୍ୟ ରାଜସୁଖ ଘର ଓ ସଂସାର
ସବୁ ଲାଗିଲାଣି ତାହାକୁ ପିତା ।

ଜଣ ଜଣ କରି 'ଡକାଇ ବିଶ୍ୱାସୀ
ବସାଇ ପାଖରେ ଭାଳଇ ନିତି,
କିଏ ସେ ପାରିବ କୃଷ୍ଣକୁ ସଂହାରି
ମୋହର ମନରୁ ଛୁଟିବ ଭୀତି ।
ବତ୍ସାସୁର ଝଟେ କହିଲା ଦମ୍ଭରେ,
"ମାରିବି କୃଷ୍ଣକୁ ପଶି ମୁଁ ବଣେ,
କାହିଁକି ହେ ରଜା ଡରୁଅଛ ତୁମେ
ପାଖେ ଥାଉଁ ଥାଉଁ ମୋ ପରି ଜଣେ ?"
କଂସ ଖୁସି ହୋଇ ବାନ୍ଧିଦେଲା ଶାଢ଼ୀ
କହିଲା, "ତୁ ଯାଆ କରନା ଡେରି,
ପିଲାଟାଏ କୃଷ୍ଣ, ତାକୁ ମାରିଦେଇ
ବେଇଗି ଆସ ତୁ ମୋ ପାଖେ ଫେରି ।
ଚଳିଲା ଅସୁର ବାଛୁରୀଟେ ହୋଇ
ବାଛୁରୀଙ୍କ ମେଳେ ଚରିଲା ପଶି,
କୃଷ୍ଣଙ୍କୁ ଦେଖିଣ ବାଳ ଗୋପ ବେଶେ
ଲୁଚ୍ଚଇ ଲୁଚ୍ଚଇ ପକାଏ ହସି ।
ତା ହସ କପଟେ ଲୁଚିବ କୃଷ୍ଣଙ୍କୁ
ସଭିଙ୍କ ମନ ତ ଜାଣନ୍ତି ସିଏ,
କେଉଁଠୁ ଆସିଲା ନୂଆ ବାଛୁରୀଟା
ଜାଣିଲେ ହେଇନା ସେଇଟା କିଏ ।
କଇଥ ଗଛରେ ଫଳ ପାଚିଅଛୁ
ଗଛର ଡାଳ ତ ପଡ଼ୁଛି ନଇଁ,
ଗୋପାଳ ପିଲାଏ ଠିକଠିକ ହୋଇ
କହିଲେ, "କେତେ ଖାଆନ୍ତେ ଭାଇ !
ଚଢ଼ି ହେଉ ନାହିଁ, ହାତ ପାଉ ନାହିଁ
କଇଥ ତ ଖାଇ ପାରିବା ନାହିଁ,
କହ୍ନାଇ ଆମର କୋଉ ଆଡ଼େ ଗଲା ?
ବତାଇ ଦିଅନ୍ତା ଉପାୟ କହି ।"

ସାଥିପିଲା ମନ ଜାଣିଲେ ଶ୍ରୀକୃଷ୍ଣ
ବତ୍ସାସୁରଟାକୁ ଥିଲେ ତ ଜାଣି,
ଚାଲି ଚାଲି ଗଲେ ଅସୁର ପାଖକୁ
ପଛଗୋଡ଼ ଦୁଇ ଟେକିଲେ ଟାଣି ।
ବୁଲାଇ ବୁଲାଇ କଇଥ ଗଛରେ
ପିଟିଦେଲେ ତାକୁ ଦୋହସ୍ତ କରି,
ସେଇ ଆଘାତରେ କଇଥ ଝଡ଼ିଲା
ବତ୍ସାସୁର ଗଲା ସେଇଠି ମରି ।
ଏକା ଚୋଟକରେ ଯୋଡ଼ାଏ ଶିକାର
କରିଲେ ଶ୍ରୀକୃଷ୍ଣ ଅଳ୍ପ ଆୟାସେ,
ତା ଦେଖି ଗୋପାଳ ପିଲାଏ ଧାଇଁଲେ
ହସି ହସି କରି କୃଷ୍ଣଙ୍କ ପାଶେ ।
ପଚାରିଲେ ସବୁ "କାହିଁ ବାଛୁରିକୁ
ମାରିଲୁ କହ୍ନାଇ କାହିଁକି ଲାଗି ?
ସିଏ କ'ଣ ତୋତେ ଅଡୁଆ ହେଲା କି
ଅଝଟ ହେଲା ବା କଅଣ ମାଗି ?
ବାଛୁରିଗୁଡ଼ିକ ଗୁହାଳେ ଗଣିଲେ
ଗୋଟିଏ ତ ହେବ ନିଶ୍ଚୟ ଊଣା,
କାହାର ବାଛୁରି ମାରିଲୁ ତୁ ସତେ
କପରି ବା ଏହା ପଡ଼ିବ ଜଣା ?
ଗୋରୁ ମାରିବାଟା ମନା ପରା ଭାଇ
ଅଧର୍ମ କଲୁ ତ ଗୋରୁଟା ମାରି,
କପରି ରେ ଭାଇ ଗୋରୁମରା ପାପୁଁ
ମୁକତ ହୋଇବୁ କହ ବିଚାରି ?
ପାଳ ଦଉଡ଼ିରେ ତୋ ଚୁହାଡ଼ି ବାନ୍ଧି
ବେକରେ ପକାଇ ବୁଲିବୁ ସିନା !
କଥା କହିବୁନି ଗୁହାଳେ ଶୋଇବୁ
ଦିନ ସରିବନି ଭିକର ବିନା ।

କେହି ଛୁଇଁବେନି ପୂରା ମାସଟାଏ
ଶେଷରେ ପିଇବୁ ଗୋବରପାଣି,
କାହିଁକ ରେ ସତେ ବାଛୁରି ମାଇଲୁ
ଏସବୁ କଥା କି ନ ଥିଲୁ ଜାଣି ?"
ଶ୍ରୀକୃଷ୍ଣ କହିଲେ ହସି ହସି କରି
"ବାଛୁରି ନୁହେଁ ରେ ଅସୁରଟାଏ,
କଂସ ପେଶିଥିଲା ମୋତେ ମାରିବାକୁ
ରହିଥାନ୍ତା ମୋତେ ମାରିବା ଯାଏଁ ।
ଗଣ ଭଲ କରି ଆମର ବାଛୁରି
ଗୋଟିଏ ଚହିଁରୁ ହେବନି ଊଣା,
ଦୁଧ ଦୁହିଁବେଳେ ଯେଝା ମାଆ ପାଖେ
ଗୋଟି ଗୋଟି ହୋଇ ପଡ଼ିବେ ଜଣା ।"
ସମସ୍ତେ ସେଇଠୁଁ ପରଶଂସା କଲେ
କୃଷ୍ଣଙ୍କୁ କୁଣ୍ଢାଇ ଧରିଲେ ଟେକ,
ସତରେ ଦେବତା- ମାନେ ଖୁସିହେଲେ
ମର୍ତ୍ତେ ଶ୍ରୀକୃଷ୍ଣ ଲୀଳାକୁ ଦେଖି ।
ସେଇଠୁଁ ସମସ୍ତେ ପେଲପେଲି ହୋଇ
ଖାଇଲେ ଝୁଡ଼ିଲୁ କରିଥ ବାଛି,
କେ ରସ ବାହାର କରିଣ ଦେଉଛି
କାହା ହାତ ଧରି ସ୍ନେହରେ ଯାଚି ।
ବେଳ ନଇଁ ଗଲା ଖରା ମହଲିଲା
ରତ ରତ ରବି ପଶ୍ଚିମ ନଗେ,
ପବନରେ ଭାସି ଗଗନେ ଉଡ଼ିଲେ
ନୀଡ଼ ଅଭିମୁଖେ ବିବିଧ ଖଗେ ।
ଘରମୁହାଁ ସ୍ୱର କେଡ଼ାହେଁ କଅଁଳ
କରୁଣ ଗତରେ ଉଠିଲା ବାଜି,
ସଂଜୁଆ ଖରା ତ ଅଂଗେ ଅଂଗେ ପଡ଼ି
ସୁନ୍ଦର କରିଣ ଦେଇଛି ସାଜି ।

ପବନ ବହୁଛି ପଛରୁ ପଛରୁ
ଉଡ଼ିବା ବେଗ ତ ଯାଇଛୁ ବଢ଼ି,
ରବି ଲୁଚି ଲୁଚି ଯାଉଅଛୁ ଧୀରେ
ଆଲୁଅ ଯାଉଛୁ ଅନ୍ଧାରେ ଜଡ଼ି ।
ଦିନକେ ଦି'ଥର ହୁଏ ସନ୍ଧ ବେଳ
ଗୋଟିଏ ହୁଅଇ ଗୋଟିକେ ଲୀନ,
ସଂଜ ବୁଡ଼େ ଲୁଚେ ଦିବସର ଶିଘ
ଅନ୍ଧାରେ ଆଲୁଅ ହୁଅଇ କ୍ଷୀଣ ।
ଉଷାରେ ଝକଶେ ଆଲୁଅର ଛଳ
ମାଡ଼ିଆସେ ଦିନ ଦୁଂଚଳ ଗତି,
ଧରଣୀରେ ବସେ ଶୋଭାର ପସରା
କାରବାର ସବୁ କରନ୍ତି ମାତି ।
ସୁଖ ପରେ ଦୁଃଖ ଦୁଃଖ ପରେ ସୁଖ
ଆସେ ଯାଏ ପରା ବିଧିବିଧାନ,
କାହାର କାହିଁରେ ଶେଶେଷ ନାହିଁ
ଦୁହେଁ ଚିରଦିନ ଥାନ୍ତି ସମାନ ।
ଆଉ ଦିନକର ବାତ୍ସୁଘ ନେଇଣ
ବୃନ୍ଦାବନ ବନେ ପଶିଲେ ଯାଇଁ,
ଦେଖିଲେ ଅଦୂରେ କାଳିନ୍ଦୀର କୂଳେ
ବଗଟାଏ ବସି ରହିଛି ଚାହିଁ ।
ଜାଣିଲେ ଶ୍ରୀକୃଷ୍ଣ ସେ ବଗଟା କିଏ
ଭାଳିଲେ ମନରେ ମାରିବି ଆଜି,
ମୋତେ ମାରିବାକୁ ଆସିଛି ଅସୁର
ଅମଳ ଧବଳ ବଗଟେ ସାଜି ।
ପିଠି ଉପରେ ତା ଶ୍ୟାମଳ ଶାମୁଲ
କେରି କେରି ହୋଇ ହଲୁଛି ଗୁଏଁ,
ନୋହିବ ଆଉକୁ ଛଦ୍ମ କରିଣ
ଥରି ଥରି କରି କାହାଁକୁ ଚାହେଁ ?

ବଗଟାର ବେଶେ ରାକ୍ଷସ ରୂପଟା
ଲୁଚାଇବ ବୋଲି ଭାବିଛି ପାଜି,
ଅଜ ତାର ଛଳ ଛଦ୍ମ ଯେତେକ
ଏଇନା ଏଇଠି ଯିବ ଯେ ଭାଜି ।
ବକାସୁର ଭାବେ କଅଁଳା ପିଲାଟା
ହାଆକୁ କନା ତ ଦେବ ମୁଁ ଗିଳି,
ଉଡ଼ିବି ମୁଁ ଖରେ ମଥୁରା ନଗରେ
କଂସର ଆଗରେ ଯିବି ମୁଁ ମିଳି ।
କହିବି ଖୁସିରେ ତାକୁ ସବୁ କଥା
ରଜା ଖୁସି ହେବ ମୋ କଥା ଶୁଣି,
ଧନ ଦଉଲତ ସହ ରାଜ୍ୟଟିଏ
ପୁରସ୍କାର ଦେବ ମୋ ଗୁଣ ଗୁଣି ।
କୃଷ୍ଣ ଚାଲି ଚାଲି ଗଲେ ବଗ ପାଶେ
ଧଇଲା କୃଷ୍ଣଙ୍କୁ ଲମ୍ବାଇ ବେକ,
ମାଛକୁ ଗିଳିଲା ପରି ଗିଳିଦେଲା
ଦେଖାଇବ ବୋଲି ଅସୁର ଠେକ ।
ବଗ ତୁଣ୍ଡ ପଶି ତାତିଲେ ଶ୍ରୀକୃଷ୍ଣ
ପାଟିଲା ଲୁହାରୁ ବଳିଲା ତାତି,
ସମ୍ଭାଳି ନ ପାରି ଜୀବନ ବିକଳେ
ସେଇନା ସେଇଠି କରିଲା ବାନ୍ତି ।
ଆହୁରି ଭାବିଲା କଅଁଳ ଦେହକୁ
ଖଣ୍ଡ ଖଣ୍ଡ କରି ଗିଳିବି ସୁଖେ,
ପବନେ ବିହରି ଗଗନେ ଉଡ଼ିବି
କଂସର ପାଖକୁ ମଥୁରା ମୁଖେ ।
ଏଇତକ ଭାବି ଥଣ୍ଟକୁ ମେଲାଇ
ବେକ ଲମ୍ବାଇଲା ଧରିବା ପାଇଁ,
ଶ୍ରୀକୃଷ୍ଣ ଆଗରୁ ଧରି ପକାଇଲେ
ବଗର ଥଣ୍ଟକୁ ପାଖକୁ ଧାଇଁ ।

ଥଣ୍ଟ ଦୁଇ ଫାଳ        ଦୁଇ ହାତେ ଧରି
    ଚିରି ପକାଇଲେ ଦ୍ୱ'ଫାଳ କରି,
ଏଡ଼େ ବଗଟାଏ        ଛଟପଟ ହୋଇ
    ଏକା ଠାଆକରେ ହେଲା ମରି ।
ଆଉ ସବୁ ଦିନେ        କୁହାକୁହି ହେଲେ
    "କାହିଁକି ବଗୁଟା ମାଇଲା କୃଷ୍ଣ,
କେଉଁ ଦୋଷ ଅବା        କରୁଥିଲା ତାର
    କାହିଁକି ତାଠାରେ ହେଲା ବିତୃଷ୍ଣ ?"
ଗାଈ ପେଣ୍ଡାରେ ତ        ବଗ ପଲ ଦଶି
    ଦୋଡ଼ାଇ ଥାଆନ୍ତି ଗାଈଙ୍କ ପଛେ,
ଲମ୍ବ ବେକ ସଂଗେ        ଲମ୍ବ ଥଣ୍ଟଟାକୁ
    ବଢ଼ାଇ ଦିଅନ୍ତି ସିଧା ଯଲଖେ ।
ଗୋରୁ କମଳରୁ        କଅଣ ଖାଆନ୍ତି
    ଠିଙ୍କା ଲାଗିଥାନ୍ତି ଏଡ଼େ ବହଳ ?
ସେଇସ୍ବାଙ୍କୁ ଧରି        ଗୋଟି ଗୋଟି କରି
    ଓଟାରି ଖାଆନ୍ତି ଏ ବଗ ପଲ ।
ବଜଲଚାଡ଼ଟା        ଷଣ୍ଢଚୂଳ ପରେ
    ଗାଈଙ୍କ ପିଠିରେ ବସି ତ ଥାଏ,
କେଜାଣି କାହିଁକି        ସେଇନାଏ ଉଠି
    ଖଣ୍ଡିଉଡ଼ା ଦେଇ ଚଲାଇଯାଏ ।
ଆଡ଼ୁର ଲେଉଟି        ଆସି ବସିପଡ଼େ
    ଚରୁଥିବା ଗାଈ ପିଠି ଉପରେ,
ଟେଏଁ ଟେଏଁ କରି        ବୋବାଇ ଦିଅଇ
    କାହାକୁ କଅଣ କହେ ରାଗରେ ?
ଡାମରାକାଉକୁ        ଆଗରେ ଦେଖିଲେ
    ଦଉଡ଼ଇ କିଆଁ କାମୁଡ଼ିବାକୁ ?
କାଉ ଧାଏଁ ଆଗେ        ଗୋଡ଼ାଏ ସେ ପଛେ
    ମଝିରେ ମଝିରେ ଖୁଂପି ତାହାକୁ ।

କାଉଗୁଡ଼ା ଯନ୍ତି ଗାଈ ପେଟତଳୁ
ମଣ୍ଡା ଚିଙ୍କ ସବୁ ଖାଆନ୍ତି ଖୁଣ୍ଟି,
ଗୃଲୁ ଗୃଲୁ କଥାଁ ବାଟରେ ବାଟରେ
ପଡ଼ଯାଏ ନାହିଁ ପଥର ଝୁଣ୍ଟି ।
ଗାଈ ନାକପୁଡ଼ା ଭିତରେ ଥାନ୍ତ୍ତି
ପୂରାଇ କି ଶଳ ଓଟାଣ ଖାଏ ?
ଇସ୍ କି ଅସନା ଜୀବଟାଏ କାଉ
ସିଂଘାଣିକୁ କ'ଣ ସେ ଭଲ ପାଏ ?
ଷଣ୍ଢ ପିଠିଟାରେ ଉଚ୍ଚ ଚୂଲଟାଏ
ଗୋଟାଏ ପାଖକୁ ପଡ଼ିଛି ଢଳି,
ଏତେ କୁଜଟାଏ ପିଠିରେ ପକାଇ
ଚଂଚଳ କପରି ପାରେ ସେ ଚଳି ?
ଶ୍ୟାମଳୀ ଶୁଣିଲେ ବଇଁଶୀ ବାଜଣା
କାନ ଦୁଇଟାକୁ ପଟାଇ କରି,
ଧବଳୀ ଗାଈଟା ଛତାଟିଏ ଦେଖି
ପଳାଏ ଦୂରକୁ ହୁରୁଡ଼ି କରି ।
କାଳୀ ଗାଈଟି ତ ବଡ଼ ସୁଧାଣିଆ
ପାଖରେ ପଶଇ ଆଉଁଷା ଲାଗି,
ତାହା ବାଛୁରିକୁ ଆଉ କେ ଧଇଲେ
ଧାଏଁ ନା ମାରିବା ପାଇଁ କି ରାଗି ।
ଧୂଡ଼ୁକି ବାଜଲେ ବାଛୁରି ଡିଅଁନ୍ତି
ପିଠିର ଉପରେ ଲାଞ୍ଜକୁ ଟେକି,
ଆଉ ଗାଈ ସବୁ ଦଉଡ଼ି ପଳାନ୍ତି
ଧୋବଧାବଳିଆ ଦୂରରୁ ଦେଖି ।
"କାହିଁକି ରେ କୃଷ୍ଣ ବଗଟା ମାଇଲୁ
କରିଥିଲା ତୋର ସେ କୋଉ ଦୋଷ ?
ଗାଈଙ୍କ ଦେହରୁ ଚିଙ୍କ ଖାଉଥିଲା
'ଏଥିରେ କି ତୋର ହେଲାନ ତୋଷ ?"

କହିଲେ ଶ୍ରୀକୃଷ୍ଣ "ବଗ ନୁହେ ସେ ରେ
ଅସୁର ଗୋଟାଏ ଥିଲା ତ ଆସି,
ମାରି ନ ଥିଲେ ମୁଁ ଦେଖନ୍ତ ରେ ସବୁ
ଯାଇଥାନ୍ତା ମୋତେ ଏଇନା ନାଶି ।"
ଶୁଣି ସବୁ ପିଲା ହୋଇଲେ ହରଷ
କହିଲେ "ରେ କୃଷ୍ଣ ଜାଣୁ ତୁ ସବୁ,
ଏପରେ ଯାହା କଲେ ତୋର ସଂଗରେ କ
କେହି ହେଲେ କେବେ ସମାନ ହେବୁ ?"
ସବୁ ଜାଣିଛନ୍ତି ସବୁ ଦେଖୁଛନ୍ତି
ଲେଖକର ଦୁଃଖ ଜାଣୁ ନାହାନ୍ତି,
ତାଙ୍କ ଛଡ଼ା ତାର ଦୁଃଖ ଦେଖିବାକୁ
ଆଉ ଜଣେ ତାଙ୍କ ପରି କାହାନ୍ତି ?

---

# ଅଘାସୁର ବଧ

ଆଉ ଦିନେ କୃଷ୍ଣ          ଗୋପ ପିଲା ସଂଗେ
ବୃନ୍ଦାବନ ବନେ ପଶିଲେ ଯାଇଁ,
ଖେଳିଲେ ନାଚିଲେ          ସଂଗୀତ ଗାଇଲେ
ତାଳେ ତାଳେ ତାଳେ ମୁରଲୀ ବାଇ ।
ଗୋବର୍ଦ୍ଧନ ଦେହୁଁ          ଗୀତ ବାଜଣର
ମିଶା ପ୍ରତିଧ୍ୱନି ନେଉଛି ଆସେ,
ବନେ ବନେ ଭେଦ          ପବନେ ସଂଚରି
ସଭିଙ୍କ କାନରେ ମୃଦୁଳେ ପଶେ ।
କୃଷ୍ଣ ପଚାରନ୍ତି          ବଡ଼ ପାଟି କରି
"କହିବୁଟି ଯାଇ ପୁଞ୍ଜ କି ଥିଅ",
ପ୍ରତିଧ୍ୱନି କହେ          ସେଡ଼ିକ ପାଟିରେ
"କିଏ ରେ ତୁ ଖୋଜୁ ହଂସାରଖିଅ ?"
"କୁଳେ ତ ଚୋର          ସବୁ ଗୋବର୍ଦ୍ଧନ ?"
ପଚାରନ୍ତି ଯେବେ ଶ୍ରୀକୃଷ୍ଣ ବସି,
"କୁଶଳ ତ କୃଷ୍ଣ"          ବୋଲି ପ୍ରତିଧ୍ୱନି
ଦିଅନ୍ତି ଉତ୍ତର ତୁରନ୍ତ ହସି ।
କଥାରେ କଥାରେ          ସ୍ନେହ ଦିଆନିଆ
ଦେହରେ ଦେହରେ ପରଶ ସୁଖ,
ଫାଙ୍କଟିଏ କାହିଁ          ମଝିରେ ନ ଥାଏ
ଦୁଃଖ ପଶିବାକୁ ଦେଖାଇ ମୁଖ ।

ହସରେ ଖେଳରେ ବନ ପ୍ରାନ୍ତରେ
କାହାର ଶବଦ ଶୁଭୁନାହିଁ,
ବନ ଗିରି ଲତା କୁଣ୍ଠାକୁଣ୍ଠି ହୋଇ
କୃଷ୍ଣ ରୂପଟିକୁ ଥାଆନ୍ତି ଗ୍ରହି ।
ବାଛୁରିଗୁଡ଼ିକ ଚରି ଚରି କରି
ବଣରେ ବୁଦାରେ ହଜନ୍ତି କାହିଁ,
ଖୋଜନ୍ତି ପିଲାଏ ପାଖରେ ଆଖରେ
ବାଛୁରିଟିଏ ତ କୋଉଠି ନାହିଁ ।
ଦଉଡ଼ନ୍ତି ସବୁ ଛଡ଼ା ବାଡ଼ି ଧରି
ଡାକନ୍ତି ବାଛୁରି ନାଆଁକୁ ଧରି,
ପଶନ୍ତି କଂଟାରେ ହାତଗୋଡ଼ ଚିରି
ରକତ ଦେହରୁ ପଡ଼ଇ ଝରି ।
ଡାକନ୍ତି ଶ୍ରୀକୃଷ୍ଣ ବଇଁଶୀ ବଜାଇ
"ଆସ.ରେ ବାଛୁରିଗୁଡ଼ିକ ଫେରି,
ବେଳ ଗଡ଼ିଲାଣି ଉଛୁର ହେଲାଣି
ପେଟ ପୂରିଲାଣି କରନା ଡେରି ।"
ବେଣୁ ସ୍ୱନ ଶୁଣି ବାଛୁରିଗୁଡ଼ିକ
ଆସନ୍ତି ଦଉଡ଼ି ଜଂଗଲୁ ଠେଙ୍କି,
ଆଉ ସବୁ ପିଲା ଆନନ୍ଦ ହୁଅନ୍ତି
ଯେ ଯାହା ବାଛୁରି ପାଖରେ ଦେଖି ।
ପାଖକୁ ଆସିଣ ଦେହ ଶୁଂଘି କରି
ଲେଉଟି ଯାଆନ୍ତି ଚରିବା ପାଇଁ,
ଆଗରେ ବାଛୁରି ପଛରେ ପିଲାଏ
ହଅ ହଅ କହି ଥାଆନ୍ତି ଧାଇଁ ।
କଂସ ପେଷିଥିଲା ଅଘାସୁରଟାକୁ
ଶ୍ରୀକୃଷ୍ଣଙ୍କୁ ଟିକି ମାରିବ ବୋଲି,
ଡେଙ୍ଗିଟାଏ ପରି ପଡ଼ିଥାଏ ବାଟେ
ଦେହେ ଧୂଳି ମାଟି ହୋଇଣ ବୋଳି ।

ବାରି ହେଉ ନାହିଁ କଏସେ ବା ବାଟ
　　କଏ ସାପ ଦେହ କଏ ବା ମାଟି,
ଧରଣୀ ଦେହରୁ ଗଗନର ଯାଏଁ
　　ମେଲଇ ରଖିଛୁ ତାହାର ପାଟି ।
ବାଛୁରୀ ଅଡ଼ାଇ ସବୁ ପିଲାଙ୍କ
　　ଚଲି ଯାଉଁ ଯାଉଁ ସିଧା ସଳଖେ,
ପଶିଗଲେ ସବୁ ଅଜଗର ମୁହେଁ
　　ଜାଣି ପାରିଲେନ କେହି ଅଳପେ ।
କେବଳ ବାରିଲେ କୋଉଠୁ ଆସୁଛୁ
　　ବଡ଼ ବରକୁଆ ଆଇଁଷ ଗନ୍ଧ,
ତଥାପି ତ କେହି ଜାଣି ପାରିଲେନ
　　କୋଉ ପରାଣୀର ଗନ୍ଧ ପିନଧ ।
ଶ୍ରୀକୃଷ୍ଣ ଜାଣିଲେ ସାପ ଗରଭରେ
　　ବାଛୁରୀ ସହିତ ପଶିଲେ ପିଲା,
କପରି ସେ ତାଙ୍କୁ ଉଦ୍ଧାର କରିବେ
　　ଚିନ୍ତା କରୁ କରୁ ବୁଦ୍ଧି ହଜିଲା ।
ସାପ ଭାବୁଅଛୁ ମୋହର ବଇର
　　ଅସଲ ତ କୃଷ୍ଣ, ସେ ପଶି ନାହିଁ,
ପାଟି ମେଲା ଥାଉ ସେ ପଶିବା ଯାଏଁ
　　ଏଇନା ବା ବୁଜି ଦେବ କପାଇଁ ?
ସାପ ମତଲବ ଜାଣିଲେ ଶ୍ରୀକୃଷ୍ଣ
　　ଉଚ୍ଚୁର ନ କରି ପଶିଲେ ଯାଇ,
ସାପ ତରତରେ ମୁହଁ ବୁଜିଦେଲା
　　ଭାବିଲା କୃଷ୍ଣଙ୍କୁ ଦେଲା ତ ଖାଇ ।
କୃଷ୍ଣ କ'ଣ ସତେ ଗଉଡ଼ ପିଲା ସେ
　　ସାପ ଖାଇ ଦେଇ ଜୀଇ ରହିବ,
ଜାଣେନା ରାକ୍ଷସ ଏ ମରଣ ଗ୍ରାସ
　　ତାହାକୁ ଜୀବନେ ସେଇ ମାରିବ ।

କୃଷ୍ଣ ଲାଗି ଯାଇ ବଢ଼ାଇଲେ ଦେହ
ସାପ ପାରିଲାନି କେବେହେଁ ଢୋକ,
ରହିଲେ ସାପର ତଂଟିରେ ଅଟକ
ଦେଲେ ତା ଗିଳିବା ବାଟକୁ ରୋକ ।
ଆହୁରି ବଢ଼ିଲେ ଏତେ ବଢ଼ିଲେ ଯେ
ସାପର ତୁଣ୍ଡରେ ହେଲାନି ଥାନ,
ଶ୍ରୀକୃଷ୍ଣଙ୍କ ଦେହ ହେଲା ଅତି ବଡ଼
ସାପ ପାଇଁ ହେଲା ନିତାନ୍ତ ସାନ ।
ଶେଷେ ଅଜଗର ଦୁଇ ଫାଳ ହୋଇ
ସଙ୍ଗେ ସଙ୍ଗେ ସେଠି ପଡ଼ିଲା ମରି,
ସାପର ପେଟରୁ ଆଣିଲେ ସଭିଙ୍କୁ
ଅମୃତ ଦୃଷ୍ଟିରେ ଜୀଆଇ କରି ।
ଜାଣିଲେ ସକଳେ ସାପ ଗିଳିଥିଲା
କୃଷ୍ଣ ଯୋଗୁଁ ସିନା ଗଲେ ଉବୁରି,
ନ ହେଲେ ଏଇନା ସାପର ପେଟରେ
ପ୍ରାଣ ଯାଇଥିଲା ସିନା ସବୁରି ।
କୃଷ୍ଣଙ୍କ ଦେହରେ ଅଜଗର ସାହା
ପଶିଲା ଲେଉଟି ହେଲା ମୁକତି,
ବାହୁଡ଼ି ଆସିଣ ଯେ ଯାହାର ଘରେ
ବାପ ମାଆଙ୍କୁ ସେ ଦେଲେ ଉଦନ୍ତ ।
ସମସ୍ତେ ତା ଶୁଣି ହୋଇଲେ ଚକିତ
ଛଅ ବରଷରେ ବାଳୁତ ପିଲା,
କେତେ କେତେ ଦୁଃଖ ଦେଲାଣି ଗୋପେ
ପିଲା ବକଟିକ ସିନା ରଖିଲା !
ଦଉଡ଼ିଲେ ସବୁ ଦଳ ଦଳ ହୋଇ
କୃଷ୍ଣଙ୍କ ମୁହଁକୁ ଦେଖିବା ପାଇଁ,
ସବୁ ପାପତାପ ଧୁଇଗଲା ଦେହୁଁ
ନର-ନାରୀପୂଣ ମୂରତି ଚାହିଁ !

ନିଜ ପିଲାଠାରୁ ଅଧିକ କରୁଣ
ମଣିଲେ ସକଳେ ନନ୍ଦ ପୁଅଙ୍କୁ,
ଯେ ଦେଖେ ପାଖରେ ଖୁଆଏ ପିଆଏ
ଝାଉଁଝଡ଼ ନିଏ ନିଜ କୋଳକୁ ।
ଲେଖକ ଆଖିରେ ଦେଖି ନାହିଁ ସିନା
ସ୍ମୃତିରେ ରଖିଛୁ ଯତନେ ଲେଖି,
ସେହି କଳା ରୂପ ସେହି ବଇଁଶୀଟି
ମରଣର ପରେ ପାରିବ ଦେଖି ।

———

# ବସ୍ତ୍ରାହରଣ

ଗୋପ ପିଲା ମେଳେ　　କୃଷ୍ଣ ବଳରାମ
　　ନଈକୂଳ ବନେ ଖେଳିଲେ ପଶି,
ଖେଳୁ ଖେଳୁ ଖେଳୁ　　କେଜାଣି କାହିଁକି
　　ସବୁ ପିଲାଙ୍କ ପଳାନ୍ତି ହସି ।
ନଈ ଦୁଇ ପାଖେ　　ଉଜ୍ଜ୍ୱଳ ବାଲୁକା
　　ମଝିରେ ସୁନୀଳ ତରଳ ପାଣି,
କିଏ ମେଲାଇଛି　　ସରୁ ଲହଡ଼ିଆ
　　ନୀଳ ଶାଢ଼ୀ ଜରି ଧଡ଼ିକୁ ଟାଣି ?
ନଈଗର୍ଭ ଛାଡ଼ି　　ଅଳପ ଦୂରରେ
　　ଦୁଇ କୂଳ ମାଡ଼ି ଶ୍ୟାମଳ ବନ,
ଗଛଲତା ସବୁ　　ଉପରକୁ ବଢ଼ି
　　ଛୁଇଁ ଦେଇଛନ୍ତି ନୀଳ ଗଗନ ।
ଗଛ ତଳେ ତଳେ　　ଅଖଣ୍ଡ ଛାଇର
　　ଅନ୍ଧାରିଆ ଶେଯ ହୋଇଛି ପରା !
ଠାଆ ଠାଆ ହୋଇ　　ତାହାର ଉପରେ
　　ଛିଟଶାଢ଼ୀ ବୁଣି ଦେଇଛି ଖରା,
ପବନ ପରଶେ　　ହଲୁଅଛି ଗଛ
　　ହଲୁଅଛି ଛାଇ ସହିତ ଖରା,
ଶରତ ନଦୀର　　ଉଆଁସ ଗଗନେ
　　ହସେ ଯଥା ମିଟିମିଟିଆ ତରା ।

ଝରିଲ ଜଳରେ ଖରା ତେଜ ପଡ଼ି
ସ୍ୱଚ୍ଛ ଦର୍ପଣକୁ ଯାଉଛି ବଳି,
ଶୀକର ଦେହରେ ଇନ୍ଦ୍ରଧନୁ ରଙ୍ଗ
ଲୁଚି ଲୁଚି କରି ଉଠଇ ଝଲି ।
ଦୂର ବଳେ ବଳେ ନାଚେ ମରୀଚିକା
ଶୋଷାତୁର ମନେ ଜଗାଇ ଆଶା,
ମୃଗତୃଷ୍ଣା ଛନ୍ଦେ ଦଉଡ଼ ବା କା'ର
ତୁଟି ଯାଇଅଛି କେତେବ ପିପାସା ?
ପାଣି ପାଖେ ପାଖେ ଓଦା ବାଲି ଶେଯେ
ପଡ଼ିଛି ଶୁକଳ ଫେନିଲ ରାଶି,
ପୁଣି କେତେ ଫେଣ ମେଞ୍ଚା ମେଞ୍ଚା ହୋଇ
ସଲିଳ ଉପରେ ଖେଳୁଛି ଭାସି ।
ପାଣି ତଳେ ତଳେ କେତେ ଜଳଜୀବ
ବୁଡ଼ି ଉଠି କରି କରନ୍ତି କେଳି,
ଧବଳ ଶଫରୀ ଉପରେ ଉପରେ
ଲଞ୍ଜକୁ ହଲାଇ ମାଆନ୍ତି ଖେଳି ।
ଖେଳରେ ପିଲାଙ୍କ ମନ ଲାଗିଗଲା
ଆଉ କୋଉଆଡ଼େ ନଜର ନାହିଁ,
ବେଳ ବଳିଗଲା ଖେଦ ବେଶୀ ହେଲା
ଖେଳ ଛାଡ଼ି ସବୁ ବସିଲେ ଯାଇ ।
ନନ୍ଦ ଗହଳରେ ଧୋବ ବାଲିକୁଦ
ତହିଁରେ ପଡ଼ିଛି ମେଘର ଛାଇ,
ଶ୍ରୀକୃଷ୍ଣ କହିଲେ, "ଗାଧୁଅ ରେ ଭାଇ !
ସେହି ବାଲିକୁଦେ ବସିବା ଖାଇ ।"
ପିଲାଙ୍କ ମନକୁ ପାଇଲା ସେକଥା
ପଶିଗଲେ ସବୁ ଯମୁନା ଜଳେ,
ବୁଡ଼ି ଉଠି କରି ଗାଧୋଉ ଗାଧୋଉ
ମାଳ ନରମଳ ପାଣି ଚହଲେ ।

ସରୁ ସରୁ ଢେଉ ଗଡ଼ି ଗୃଳୟାଏ
ଖଣ୍ଡେ ଦୂର ଯାଇଁ ଯାଏ ମିଳାଇ,
ଗୋପାଳ ପିଲଙ୍କୁ ଭସାଇ ବୁଡ଼ାଇ
ହସାଇ ହସାଇ ଦଏ ଖେଳାଇ ।
କଏ ବୁଡ଼ ଦଏ ଉଠି ପହଁରଇ
କଏ ପାଣି ଫିଙ୍ଗେ କାହାର ମୁଖେ,
ମୁହଁର ପାଣିକୁ ଫୁଙ୍କ କରିଦେଇ
ରବିଙ୍କ ଆଡ଼କୁ ଅନାଏ ସଖେ ।
କେ କମ୍ଭୀର ହୋଇ ଗୋଡ଼ ଓଟାରଇ
ଅଳପ ପାଣିରେ ବୁଡ଼ଣ ରହି,
କଏ ବା କାହାକୁ ହସାଇ ଦଅଇ
ଭୁନିକର କାନେ କ କଥା କହି ।
ଗାଧୋଇ ପାଧୋଇ ପୋଛୁପାଛୁ ହୋଇ
ଯେ ଯା'ର ବସନ ପିନ୍ଧିଲେ ବାଛୁ,
କଏ କାହା ଲୁଗା ଭୁଲରେ ନଅଇ
ପୁଣି ଯାହା ଲୁଗା ଦଅଇ ପାଛ ।
ଲୁଗା ପିନ୍ଧସାରି ଧାଇଁଲେ ବଣକୁ
ଆଣିଲେ ପତର ଓସାର କରି,
ଯମୁନା ଭିତରେ ପଶିଗଲେ ପୁଣି
ଧୋଇଧାଇ ଦେଲେ ସୁନ୍ଦର କରି ।
ନଈ ବାଲିକଦେ ପାରିଦେଲେ ଲୁଗା
ତହିଁ ପରେ ଦେଲେ ପତର ପାରି,
ଯେତ୍ଥା ଘରପୁଡ଼ା ଫିଟାଇଲେ ସବୁ
ଯେ ଯା'ର ପତରେ ଦେଲେ ଅଜାଡ଼ି ।
କଏ ସେ ଆଣିଛୁ ଭାତ ଫିଗେ ଡାଲି
କଏ ସେ ଆଣିଛୁ ଦଧ ଓ ଦହି,
କଏ ସେ ଆଣିଛୁ ପଖାଳ-ଚକୁଳି
ଉପରେ ଶାଗରୁ ମେଞ୍ଚାଏ ଥୋଇ ।

କଏ ଟାଳ ଭାତ ଆଣିଛି ପୁଡ଼ାଏ
ଲୁଣରୁ ଟିକାଏ ଅଛି କେବଳ,
ଖାଇବ ତାହାକୁ କି ଅବା ଶୁଖିଲା
କି ଅବା ବୋଳିବ ଯମୁନା ଜଳ ?
ଖାଉ ଖାଉ ସବୁ ବାଛୁରୀଗୁଡ଼ିକ
ଚରି ଚରି ଗଲେ ବହୁତ ଦୂର,
ପିଲାଏ ତ କେହି ଜାଣି ପାରିଲେନି
ଖାଉ ଖାଉ ହେଲା ବେଳ ଉଛୁର ।
ବେଦପତି ତହିଁ ମିଳିଲେ ଗୋପନେ
ଦେଖିଲେ ଗୃହିଁଲେ କୃଷ୍ଣଙ୍କ ଲୀଳା,
ଖେଳନ୍ତି ବୁଲନ୍ତି ନାଚନ୍ତି ଗାଆନ୍ତି
ସଂଗତେ ନେଇଣ ଗୋପାଳ ପିଲା ।
ହଳଦିଆ ଲୁଗା ପିନ୍ଧିଛନ୍ତି କାଛି
ଶିରେ କେଙ୍କାପୁଚ୍ଛ କାଇଁଚ ମାଳୀ,
ତାଳି ତାଳି କରି ନାଚୁଛନ୍ତି ସବୁ
ହାତରେ ହାତରେ ବଜାଇ ତାଳି ।
ବଣୁଁ ନାନା ଫୁଲ ତୋଳିତାଳି ଆଣି
ଗୁନ୍ଥି ଦେଇଛନ୍ତି ସୁନ୍ଦର ମାଳ,
ଗଳାରେ ଗଳାରେ ଲମ୍ବାଇ ଦେଇଣ
ନାଚନ୍ତି ଗାଆନ୍ତି ପକାଇ ତାଳ ।
ଖେମଟା ନାଚକୁ ଗୋଡ଼ରେ ଘୁଂଗୁର
ହାତେ କରତାଳ ମୁରଲୀ ସ୍ୱନ,
କଟିରେ ଘାଗୁଡ଼ି ଶୁଭେ ଠଣଠଣ
ପୂରାଇ ଅରଣ୍ୟ ମୋହୁଛି ମନ ।
ପୀତ ଦୁକୂଳକୁ ନୀଳ କଳେବର
ମାନୁଛି ସୁନ୍ଦର ମନ ମନାଇ,
ଗୁରୁପାଖେ ବେଢ଼ି ନାଚନ୍ତି ପିଲାଏ
ମଝିରେ ନାଚଇ କଳା କହ୍ନାଇ ।

ଅନିମେଷ ନେତ୍ରେ ଗୁହିଁ ଗୁରୁମୁଖ
ଭାବିଲେ, "କୃଷ୍ଣର କି ଲୀଳା ସତେ !
ଏଇଥି ପାଇଁକି ମାନବ ଦେହରେ
ଅବତରିଲେ କି ମରଣ-ପଥେ ?
ମର୍ତ୍ତ୍ୟରେ କି ଅବା ସିଂଚିବେ ଅମୃତ
ସକଳେ ହୋଇବେ ଅମର ଭବେ,
କିବା ନିଜେ ଏଠି ମରଣ ଭୋଗିବେ
ଅମର ସୁଖକୁ ନ ଲୋଡ଼ି ଲଭେ,
ମର୍ତ୍ତ୍ୟ ନାମ କ'ଣ ବଦଳାଇ ଦେବେ
ସକଳେ ରହିବେ ଏଠି ନ ମରି,
କି ଅବା ବୈକୁଣ୍ଠ ଏଠିକି ଆସିଲା
ଶ୍ରୀକୃଷ୍ଣ ରୂପରେ ବସ୍ତ୍ରକୁ ଧରି ?
ଗୁହିଁଥିଲ ମୋର ଅମୃତ ଦୃଷ୍ଟିରେ
କହିଥିଲ ହେବ ମରତେ ନର,
ସେଇ ଦୃଷ୍ଟି କ'ଣ ନାହିଁ ମୋ ଉପରେ
ରାଗ କି ହୋଇଛୁ ମୋଠି ତୁମର ?
କ୍ଷୀର ଜଳଧିରେ ଅନନ୍ତ ଶୟନେ
ଶୋଇଥିଲ ପରା ଆରାମ କରି,
ଦେବତାଙ୍କୁ ନେଇ ନିଦ ଭାଂଗିଦେଲି !
ନିବେଦନ କରି ଚରଣ ଧରି ।
କରିଅଛି ପ୍ରଭୁ ! ବଡ଼ ଅପରାଧ
ତୁମରି ସୃଷ୍ଟିର ପାଳନ ପାଇଁ,
ମର୍ତ୍ତ୍ୟରେ ଅନ୍ୟାୟ ବଢ଼ିଲା ବହୁତ
ତେଣୁ ସିନା ଗଲି ପାଖକୁ ଧାଇଁ ।
ସେ ଅଧିକାର ତ ଦେଇଅଛ ତୁମେ
ଯୁଗେ ଯୁଗେ ନିଦ ଭାଂଗିବି ପଶି,
ତୁମରି ହାତରେ ଥରି ଥରି କରି
ଯେତେକ ଦାନବ ହୋଇବେ ଧ୍ୱଂସ ।

ମୋର କାମ ଖାଲି ସରଜନ କରା
ତୁମର ଆଦେଶେ କରେ ମୁଁ ତାହା,
କାଳେ କାଳେ ତୁମେ ପାଳ ଓ ବଢ଼ାଅ
କ୍ଷତ ନ କରଣ ଗଢ଼େ ମୁଁ ଯାହା ।
ଅନ୍ୟାୟ ବଢ଼ିଲେ ନାଶ କର ତୁମେ
ଭୀମ ଶିବ ରୂପ ଧରଣ ଭବେ,
ଏଇନା ତ ତୁମେ କମନୀୟ ରୂପ
ଭୀମତ୍ୱ ନାହିଁ ତ କୋଉଠି ଲବେ ?
ତୁମେ ଏକା ତିନ ଶକତି ସଂସାରେ
ତିନ ମହାକାଳ ତିନ ଦେବତା,
ମୁଁ ଆଉ ମହେଶ ଅଂଶ ସିନା ଖାଲି
ତୁମେ ତ ସଂସାରେ ଏକା କରତା ।
ଏଇନା ଏ କ'ଣ ବେଳ ହୋଇ ନାହିଁ
ସଂହାର କରିବା ପାଇଁ ଦୁର୍ଜ୍ଜନ ?
ତୁମେ ଏକା ଜାଣ ତୁମ କାମ କଥା
କୋଉ ଦିନ ହେବ ତା ସମାପନ ।
ଭାରତ ଭୂଇଁରେ ମହାନ ଭାରତ
କୋଉ ଦିନ ହେବ ? ଗାଇବ ଗୀତା !
ସମର କ୍ଷେତ୍ରରେ ଶମିବ କଳୁଷ
ସଂସାରୁ ସରିବ ଦୂଷଣ ଚିନ୍ତା ?
ମୁଁ ଅବା କ ଛାର ତୁମକୁ ପଠାନ୍ତି
ମର ମର୍ତ୍ତ୍ୟପୁରେ ମାନବ କରି ?
ତୁମେ ଇଚ୍ଛା କରି ଆସିଲ ତ ପ୍ରଭୁ !
କାହିଁକି ବସିଛ ମୋ ଦୋଷ ଧରି ?
ମରଣକୁ ସବୁ ଡରନ୍ତି ସଂସାରେ
ସେ ଡର ନାଶିବା ପାଇଁକି ହରି !
ନିଜେ ମରି ଥରେ ଦେଖାଇ ଦେବ କି ?
ମରଣ ରଖିଛୁ ଅମୃତ ଧରି ।

ମରଣ ଆସିଲେ ଯାଏ ଦୁଃଖ ଶୋକ
ମରଣରେ ଜୀବ ନିଶ୍ଚିନ୍ତ ହୁଏ,
ସୁଖ ସ୍ୱପନରୁ ଆଉ କେ ଅଧିକ ?
ସ୍ୱପନ ତ ସୁଖ ସାଇତି ଥୁଏ ।
ଭଂଗା ସ୍ୱପନ କି ସ୍ୱପନରେ ଲେଖା
ନଈ ସହେ ଥର ଭାଂଗେ ଯେ ଗାଏଁ,
ଯୋଉ ନଦ କେବେ ଭାଂଗିଯାଏ ନାହିଁ
ସେ ନଦକୁ କ'ଣ ଏ ନଦ ପାଏ ?
ସପନ ସହିଁରେ ପଶିପାରେ ନାହିଁ
ହସାଇ କନ୍ଦାଇ ପାରେନା ଲବେ,
ସେ ନଦରୁ କଏ ଉଠିବାକୁ ଇଚ୍ଛେ
ବୁଲିବା ପାଇଁ କି ଦୁର୍ଗମ ଭବେ ?
ନଈ ବାଟ ଚଲି ଲାଗଇ କି ସୁଖ ?
ଚରଣରେ ଯିନା ବୋଲଇ ବ୍ୟଥା,
ମହାନିଦ୍ରା ମହା- ଯାତ୍ରା ଏ ଯୋଉକି
ଖାଲି ସୁଖ ସତ ନୁହେଁ ଏ କଥା ?
ଏକା ଥରକରେ ଚଲି ସାରିଦେବା
ନୁହେ କି ବାହୁତ ନୁହଇ ହିତ ?
ନଈ ନଈ ଲମ୍ବା ବାଟଟା ଆଗରେ
ବାଟୋଇକୁ କରେ ନାହିଁ କି ଭୀତ ?
ଯାହାର ଦର୍ଶନ ପାଇଁ ଦେବତାଏ
ଦିନ ରାତି ହେଉଥାନ୍ତି ବିକଳ,
ସେଇଟିକି ତୁମେ ଏଇନା ଗୋକୁଳେ
ଗୋପାଳ ବେଶରେ ଖେଳୁଛ ଖେଳ ?
କେଡ଼େ ଭାଗ୍ୟ ଆଜ ଏ ଭୂଇଁ ଖଣ୍ଡର
ତୁମକୁ ରଖିଛି କୋଳରେ ଧରି,
ଏ ଗୋପ ପିଲି ତ ଦେବଙ୍କୁ ବଳିଲେ
ତୁମରି ସଂଗରେ ନଈ ବହରି ।

ସଖା ସହୋଦର ସମ ଏ ବାଳକେ
ଆଚରଣ କରୁଛନ୍ତ ସଙ୍ଗରେ,
ତୁମଲାଗି ଦ୍ରବ୍ୟ ଛଡ଼ାଇ ନେଇଣ
ଜଡ଼ାଇ ଦଅନ୍ତ ନିଜ ଅଂଗରେ ।
ଯୋଗ କଇବଲ୍ୟ ଶିବଙ୍କୁ ମିଳେନା
ଗଉଡ଼ ପିଲାଙ୍କୁ ହେଲା ସୁଲଭ,
ସରଗରେ ପ୍ରଜା- ପତି ମୁଁ ବୋଲାଏ
ତୁମ ଦରଶନ ମୋତେ ଦୁର୍ଲ୍ଲଭ ।
ସୁଲଭ କରିବା ପାଇଁ କି ଝିଅଙ୍କୁ
ଭେଟି ଦେଲ ପଦେ ଭରସା କରି,
କେବେ କି ପାଇନି ତୁମ ଅନୁଗ୍ରହ
ଗୃହି ମୁହେଁ ଗୁଣ ଗାୟନ କରି ।
କାହିଁ ଶଙ୍ଖ ଚକ୍ର କାହିଁ ଗଦା ପଦ୍ମ ?
ହାତରେ କେବଳ ପାଞ୍ଚଣି ଖଣ୍ଡେ,
ଭଗବାନ କାହିଁ ଭକ୍ତଙ୍କୁ ଏପରି
ଗୁପତ ବେଶରେ କେବେ କି ଭଣ୍ଡେ ?
ଗୋଲକଧାମ ତ ଅନ୍ଧାର ହୋଇଛି
ଗୋପ ବୃନ୍ଦାବନେ ଜଳେ ଆଲୁଅ,
କେତେ ପୁଣ୍ୟ କରି— ଥିଲା ଏ ଥାନଟା
କେତେ କପାଳିଆ ଗଉଡ଼ ପୁଅ ?
ତୁମ ମହିମାରୁ ଏସବୁ ସିନା ହେ
କାହିଁକି ଠକୁଛ ଗୋରୁ ଚରାଇ ?
ମୋର ନିବେଦନ ଶୁଣୁନା କି କାନେ ?
କାହିଁକି ଦେଉଛ ମୋତେ ଡରାଇ ?
ତୁମ ସଙ୍ଗେ ଥିକେ ଖେଳନ୍ତ ମୁଁ ହେଲେ
ଚରନ୍ତ ବାଛୁରି ସଙ୍ଗରେ ବୁଲି,
ନିଜକୁ ଗଉଡ଼- ଛୁଆ ବୋଲି କହି
ଏରୁଟିଏ ଭଲା ଯାଆନ୍ତ ଭୁଲି !

ବାଛୁରି ବା କାହିଁ ପାଇବ ମୁଁ ଏଠି ?
ତୁମର ବାଛୁରି ନେବ ମୁଁ ହଟ,
ଦେଖିବ କପଟ ଧରି ଦେବ ନାହିଁ
ବାଛୁରି ପାଇବ କାହୁଁ କପଟ ?"
ଏଇତକ କହି କଲେ ଦେବମାୟା
ବାଛୁରିଗୁଡ଼ିକ ନେଲେ ଗୋରାଇ,
କମଣ୍ଡଳେ ଭରି ରଖିଲେ ଯତନେ
କୃଷ୍ଣ ଉପାୟକୁ ବସିଲେ ଚାହିଁ ।
ଗଉଡ଼ ପିଲାଏ ଭାତ ଖାଇସାରି
ଖୋଜିଲେ ବାଛୁରି ପାଇଲେ ନାହିଁ,
ଗଛରେ ଉଛରେ ଚଢ଼ି ଚଉଦିଗେ
ନିରେଖି ନିରେଖି ଦେଖିଲେ ଚାହିଁ ।
ଦେଖିଲେନି କାହିଁ, ଧାଇଁଲେ ଉଜାଣେ
ବଣେ ବଣେ ପଶି କେତେ ଖୋଜିଲେ,
ବାଛୁରିଙ୍କ ପରି ଗୋପାଳପିଲଙ୍କୁ
ପୁଣି ଚୋରମୁଖ ତେଣେ ହଇଲେ ।
ଶ୍ରୀକୃଷ୍ଣ ଜାଣିଲେ ବ୍ରହ୍ମାଙ୍କର ମାୟା
ମନେ ମନେ ହସ ହସିଲେ କେତେ,
ନିଜ ଦେହୁଁ ସବୁ ସରଜନା କଲେ
ବ୍ରହ୍ମା ହରି ନେଇଥିଲେଟି ଯେତେ ।
ସଞ୍ଜ ବୁଡ଼ିଗଲା ଘରକୁ ଫେରିଲେ
କେହି ହେଲେ କିଛି ଜାଣିଲେ ନାହିଁ,
ବିଧାତା କେବଳ ଲୁଚି ରହିକରି
କୃଷ୍ଣ ଶକତକୁ କଳିଲେ ଚାହିଁ ।
ଦେଖିଲେ ଯୋଜନା ବାଛୁରି ବାଳକ
କୃଷ୍ଣଙ୍କର କିଛି ନାହିଁ ଅଭାବ,
ଆସିଲେ ମନକୁ ଲୁଚିବା ସ୍ଥାନରୁ
ଶ୍ରୀକୃଷ୍ଣଙ୍କ ସଙ୍ଗେ କରିବେ ଭାବ ।

ଆସୁ ଆସୁ ବାଟେ ଦେଖିଲେ ସଭିଙ୍କୁ
ଶଙ୍ଖ ଚକ୍ର ଗଦା ପଦ୍ମେ ଭୂଷିତ,
ବ୍ରହ୍ମା ହୋଇକରି ଶଙ୍କା କରିଗଲେ
କୃଷ୍ଣ ପଦପ୍ରାନ୍ତେ ହେଲେ ପତିତ ।
କହିଲେ, "ହେ ପ୍ରଭୁ ! କ୍ଷମା କର ମୋତେ
ଦ୍ରୋହ ଆଚରିଲି ତୁମରି ସାଥେ,
କରି ଅନୁଗ୍ରହ, ଦିଅ ଏହି ବର,
ତବଚରଣକୁ ଧରିବି ମାଥେ ।"
ବ୍ରହ୍ମା ତ ଧଇଲେ ଚରଣ ଦୁଇଟି
ଲେଖକ ପାଇଁ କି ରଖିଲେ କ'ଣ,
ବଳରି ପରିପ୍ରେ କରି ହେ ତାହାକୁ
ନାହିଁକି ଗୋଟିଏ କାଡ଼ ଚରଣ ।
ବ୍ରହ୍ମା କରଯୋଡ଼ି ମାଗେ ଅନୁଗ୍ରହ
ଲେଖକ କି କରି ମାଗିବ ତାହା ?
ତାହାର ଆଖିରେ ଅଛି ଖାଲି ଲୁହ
ସେତିକି ମାତର ତାହାର ସାହା ।
କେଉଁ ଜନମରେ କି ଦୋଷ କରିଛି
ଜାଣି ତ ପାରୁନି ଇହ ଜନମେ,
ତୁମ ଅନୁଗ୍ରହ ପାଇବା ପାଇଁକି
ନାନା କାମ କରି ପଡ଼ୁଛି ଭ୍ରମେ ।
ତାର ଏ ଭ୍ରମ କି ଦୂର ହେବ ନାହିଁ
ଦିନ ରାତି ଚିନ୍ତା ଥିବ କି ଲାଗି ?
ତବଦ୍ଦନ ପାଇଁ ସାରିଦିଅ ସବୁ
ଏତିକି ଖାଲି ନେଉଛି ମାଗି ।

---

# କାଳୀୟ ଦଳନ

ଖରାଦିନେ ଦିନେ ଜନନୀ କୋଳରେ
ଶୋଇଥିଲେ କୃଷ୍ଣ ସୁଖ-ଶୟନ,
ଯମୁନା ଉପରେ ଜହରେ ଜଳୁଛି
କେଡ଼ାଟେହେଁ ବିକଳ ହୁଏ ତା ମନ !
ଦେଖିଲେ ସପନ ଭାଙ୍ଗିଗଲା ନିଦ
ପାହିଥିଲା ରାତି ଉଠିଲେ ବସି,
ମାଆଙ୍କୁ ହଲାଇ ଉଠାଇଲେ ନିଦୁଁ
କହିଲେ ମୁରୁକି ମୁରୁକି ହସି ।
"ଦିଅ ମାଆ ମୋତେ ସଜବାଜ କରି
ଆଜି ମୁଁ ଚଞ୍ଚଳ ଯିବି ଗୋ ବନେ,
ଖରାଦିନ ପରା ବାଲି ତାତିଯିବ
ଗୋଡ଼ ପୋଡ଼ିଯିବ ନାହିଁ କି ମନେ ?"
ହସି ହସି କରି ଯଶୋଦା ପୁଅକୁ
କହିଲେ, "ଯ୍ୱାଡ଼କୁ ଯାଆନା ଭୁଲି,
ତୋହର ବଦଳେ ଆଜି ପିଲାଟିଏ
ବାପାଙ୍କୁ କହିଣ ପେଷିବି ମୁହିଁ ।
ବଳରାମ ପରା ଶୋଇଛନ୍ତି ଉଠିନି
ଖରା ତ ଏଇନା ପଡ଼ିନି କାହିଁ,
ଅନ୍ଧାର ନ ଯାଉ ଉଠିଲୁ କିଆଁ ରେ
ତୋହର ଆଖିରେ ନିଦ କି ନାହିଁ ?

ଖରାଦିନଟାରେ ଗିଷ୍ଷମ ବେଶୀ
ବଂଚ ହେଉ ହେଉ ସରଗ ଗତି,
ପାହାନ୍ତାକୁ ଟିକେ ଶୀତଳ ଲଗେ
ନିଦ ମାଡ଼େ ଆସେ ବୁଜାଇ ଆଖି ।
ରହିଥା ରେ ଟିକେ ଶୋଇ ମୁଁ ପଡ଼ିଲିଁ
ଅଳସ ଅଳସ ଲଗଇ ଖାଲି,
ବାପଟା ମୋହର ଶୋଇପଡ଼ି ଭଲା
ନ ଯିବୁ ରେ ପଛେ ଡାକିଲେ ବାଲ ।"
କହିଲେ ଶ୍ରୀକୃଷ୍ଣ, "ପାହିଲାଣି ରାତି
ଗୃହଁନୁ କାହିଁକ ମେଲଇ ଆଖି,
ରାତିଟାଯାକ ତ ଘୁଂଗୁଡ଼ି ମାରୁଛୁ
ଶୋଇ ନାହୁଁ କହି ଦେଉଛୁ ଫାଙ୍କି ।
ଘଡ଼ିକି ଏଣିକା ଉଠାଇଣ ଦେବ
ବଇଁଶୀ ବଜାଇ ବଡ଼ାହେଁ କର,
ଦେଖିବୁ ଏଣିକା ଆଉ ସବୁ ପିଲା
ଦଉଡ଼ି ଆସିବେ ମିଶି କପରି ?"
ଏତିକ କହି ଟେକିଲେ ଦଣ୍ଡି
ବଂଶୀ ପଡ଼ିଥିଲା ଶେଯର କଡରେ,
ଫୁଙ୍କିଲେ ବଡ଼ାହେଁ ବାଜିଲା ଉଚରେ
ଶବଦ ପଶିଲା ସବୁର ଘରେ ।
ଭାଙ୍ଗିଦେଲା ନିଦ ଛୁଟାଇ ଅଳସ
ସତକୁ ସତ ତ ଧାଇଁଲେ ରାମ,
ରାମ ପଛେ ପଛେ ଅଇଲେ ସଭିଏଁ
ତାଙ୍କ ଆଗେ ଆଗେ ଧାଏଁ ସୁଦାମ ।
ଡାକିଲା ମୁରଲୀ "ଆସ ଲୋ ଯମୁନେ
ଆସ ଲୋ ଜାନକି ଆସ ଲୋ ଗଙ୍ଗେ,
କଅଁଳିଆ ଘାସ ଚରିବ ବଣରେ
ଆସ ଆସ ଯିବ ଶ୍ରୀକୃଷ୍ଣ ସଙ୍ଗେ ।

ଆସ ଲୋ ଶ୍ୟାମଳ ଆସ ଲୋ ଧବଳ
ଆସ ଲାଲ କାଳ ସମସ୍ତେ ଧାଇଁ,
ଆସ ଲୋ ବଉଳ ଆସ ଲୋ କସ୍ତୁରୀ
ଯିବ ପର ସବୁ ଚରିବା ପାଇଁ ?
ଆସ ହନୁମାନ ଆସ ରେ ଅଙ୍ଗଦ
ଆସ ନଳ ନୀଳ ଆସ ସୁଗ୍ରୀବ,
ଆଲୁଅ ହେଲାଣି ଖରା ପଡ଼ିଲାଣି
ଆଉ କେତେ ଯାଏଁ ଶୋଇ ବା ଥିବ ?"
ପଶିଲା ସେ ଡାକ ବାଛୁରୀଙ୍କ କାନେ
ଧଡ଼ପଡ଼ ହୋଇ ଉଠିଲେ ସବୁ,
ବୋବାଇ ବୋବାଇ କହିଲେ କି ଆଉ
"ଗୃହଲ ଗୃହଲ ଆମେ ଏଇନା ଯିବୁ ।
କଅଁଳିଆ ଘାସ ଲାଗଇ ଖାଇଆ
ଗଣ୍ଡି ଯାକ ଖାଲି ଲାଗଇ ମିଠା,
ନିତି ଖାଇ ଖାଇ ସେଇଆ ସେଇଆ
ଲାଗିଲାଣି ପରା ଆମକୁ ଛିଠା ।
କାଳନ୍ଦୀ କୂଳକୁ ନେବ କି ହେ ଆଜି
ସେଇଠାରୁ ଘାସ ବେଶୀ ପାକଳ ?
କାଳନ୍ଦୀର ପାଣି ବେଶୀ ଗହୀର ହେ
ଛୁଇଁ ଦେଲେ କରେ ବେଶୀ ଶୀତଳ ।
ଅଳପ ପାଣି ପିନା ଖଟ୍ଟେଇ ବାଜ,
ଖରାଦିନେ ଯାଏ ବଢ଼ାହେଁ ଛାତି,
ସେ ପାଣି ପିଇଲେ ଶୋଷ ମରେ ନାହିଁ
କାହାର ମନରେ ହୁଏ ନା ଶାନ୍ତି ।
ସେଇଠାରେ ବନ ବେଶୀ ଗହଳିଆ
ଛୁଇଁ ଚ ମନକୁ ବେଶୀ କାଳିଆ,
ଖରା ପଡ଼ କରି ଛୁଇଁକୁ କରେନା
ସୁନା ମିରଗର ଚମ ଭଳିଆ ।"

କୃଷ୍ଣ ମନକଥା ଜାଣିଲେ ବାଛୁରି
ଜାଣିଲେ କପର ସତେ ସେମାନେ,
ଯମୁନା ଯେ କାଲେ କହିଲା କାହାଣ
ପଶିଲା କ ଆଉ ବାଛୁରି କାନେ ?

ଯମୁନାର ସେ ତ ନୀରବ କାହାଣୀ
କହି ତ ନ ଥିଲା ଶୁଣାଇ କରି,
ସେ ଭାଷା ତ ନୁହେଁ ଗୋରୁ ଗାଈଙ୍କର
ଗୋରୁକାନ ବୁଝିଲା ବା କପରି ?

ଋଷିର କଳ୍ପନା ଦର୍ଶନର ସମ
ଧରଇ ଯେପରି ଶରୀରଟିଏ,
ଯମୁନାର ବାଣୀ ସାକାର ହେଲା କ ?
ନ ହେଲେ କପର ଜାଣନ୍ତା କଏ ?

ଯେତେ ଗୋରୁ ଗାଈ ଯେତେ ପୋକମାଛି
ସମସ୍ତେ କ ଜଣେ ଜଣେ କହିଲାଇ ?
ସମସ୍ତେ ଜାଣନ୍ତି ସଭିଙ୍କର ମନ
କରନ୍ତି କରମ ତାକୁ ଅନାଇଁ ?

କହିଲେ ଶ୍ରୀକୃଷ୍ଣ ଆହୁରି ବଂଶୀରେ
"ଆସ ଆସ ଆଜ ଯିବା ସେଇଠି,
ମିଳମିଶି କରି ଦେଖିବ କପରି
କରିବ ଗୋଟାଏ ବଡ଼ ପାଇଁଟି ।

କାଳନ୍ଦୀର ପାଣି ପାଣି ତ ନୁହଇ
ଗୋଳା ଗରଳର ବହଳ ପଣା,
ଶୀତଳ ବୋଲଣ ଗବୁଛ କଆଁ ରେ
ତାକୁ ପିଇବାକୁ ହୁଅନା ବଣା ।

ପାତାଳରୁ ଆସି     କାଳିଆ ନାଗ ରେ *
କରଛି ପାଣିକୁ ତାହାର ଘର,
ଘର ଚାରିପାଖେ     ଘେରାଇ ରଖିଛି
କୋଉଠଉ ଆଣି ଭୁଛା ଜହର ।
ନାଗ ଜାତିଟା ତ     ବଡ଼ ଅବିଶ୍ୱାସୀ
ଦୋଷ ଅଦୋଷରେ ଦଅଇ ଦଂଶି,
କେତେ ଜୀବଜନ୍ତୁ     ସେଇ ଦଂଶନରେ
ବାଟ ଅବାଟରେ ହୁଅନ୍ତି ଧ୍ୱଂସ ।
ତାହାର ଦାଉରେ     କେହି ଯାଏ ନାହିଁ
ଚଢ଼େଇ ପାରେନା ଉପରେ ଉଡ଼ି,
ବିଷର ଗନ୍ଧରେ     ମରିଯାଏ ଛୁଏଁ
ଖସି ଚଢ଼େ ଜଳେ ଯାଏଟି ବୁଡ଼ି ।
ସେଥିରୁ ଗୁଡ଼ାଏ     ଛନ୍ତି ନାଗପୁରେ
ବଣ ପାହାଡ଼ରେ ବସତି କରି,
ଫଳମୂଳ ଖାଇ     ଥାଆନ୍ତି ସେଠେଇ
ପିଲାକବିଲାଙ୍କୁ ସଂଗରେ ଧରି ।
ଆହୁରି ଗୁଡ଼ାଏ     ଛୋଟନାଗପୁରେ
ଅଛନ୍ତି ଏଠେଇ ସେଠେଇ ହୋଇ,
ଜଗିସନ୍ଧ ତରେ     ଥରୁଥାନ୍ତି ଖାଲି
ବିଷ ରଖିଛନ୍ତି ଲୁଚାଇ ଥୋଇ ।
ବିଷଦାନ୍ତସବୁ     ଭାଂଗି ଯାଇଅଛି
କାମୁଡ଼ ଦେବାକୁ ନାହିଁ ଶକତି,
ବଣେ ଦଣେ ଲୁଚି     ଲୁଚି ବୁଲୁଥାନ୍ତି
ବଡ଼ ଦୁଃଖ କଷ୍ଟେ ଥା'ନ୍ତି ବରତି ।

---

* ସିନ୍ଧୁନଦ ତଟରେ ପାତାଳ ବୋଲି ଗୋଟିଏ ସ୍ଥାନ ଥିଲା । ନାଗମାନେ ଭାରତର ଏକ ପ୍ରାଚୀନ ଆଦିମ ଜାତି । କଳାହାଣ୍ଡି ରାଜବଂଶକୁ ନାଗବଂଶ ବୋଲି କହନ୍ତି ।

ସେଦେଶରୁ ଜଣେ  ଅଛି କାଳନ୍ଦୀରେ
ତାହାରି ଗରବ ଗଂଜିବ ଆଜ,
ଯମୁନାକୁ ଛାଡ଼ି  ଚୁଆପିଲା ଧର
ଆହୁରି ସାଗରେ ପଶିବ ଆଜ !!
ସିନ୍ଧୁ ନଦ ତଟେ  କରାଚି ନିକଟେ
ପାତାଳ ବୋଲିଣ ଗୋଟିଏ ରାଜ୍ୟ,
ଥିଲା ସେଇଠାରେ  ଏ ନାଗ ଜାତିଟା
ଦେଖିବାକୁ କଳା ବଡ଼ ଅନାର୍ଯ୍ୟ ।
ଆର୍ଯ୍ୟମାନେ ଆସି  ଘଉଡ଼ିଲେ ତହୁଁ
ନାଗପୁରେ ଆସି କଲେ ବସତି,
ସେଠାରେ କେତେକ  ଗଲେ ଏଣେତେଣେ
ଛୋଟନାଗପୁରେ କେତେ ଅଛନ୍ତି ।
ଆଉ କେତେ ଦିନ  ପରେ ଏ ରଜାର ※
ଝିଅ ନାଗବାଳୀ ନିହାଇବ ବାହା,
ମଝିଆଁ ପାଣ୍ଡବ  ବୀର ଅରଜୁନ
ହୋଇବେ ତାହାର ପରାଣନାହା ।
ଏହି ବିବାହରୁ  ଜନମ ହୋଇବ
ପୁଅଟିଏ ନାମ ନାଗ ଅର୍ଜ୍ଜୁନ, †
ବାପ ମାଆଙ୍କର  ନାମ ସେ ବହିବ
ନେବ ଦୁହିଁଙ୍କର ରୂପ ଓ ଗୁଣ ।
ପାଣ୍ଡବଙ୍କ ଗଣ୍ଡା  ହରି ଉଦ୍ୟାନରେ
ଜଗିବ ସେ ପୁଅ ହରି ଆଦେଶେ,
ପିତୃଶ୍ରାଦ୍ଧ ପାଇଁ  ସେଇ ଗଣ୍ଡାଟିକୁ
ମାରିବେ ଅର୍ଜ୍ଜୁନ ମୃଗୟା ବେଶେ ।

※ ସାରଳା ମହାଭାରତରେ ନାଗବାଳୀକୁ ଅର୍ଜ୍ଜୁନ ବିବାହ ହୋଇଥିଲେ । ଏହି ଦମ୍ପତିର ପୁଅ ନାଗାର୍ଜ୍ଜୁନ । କଳାହାଣ୍ଡି ରାଜବଂଶ ନାଗବଂଶ ।

† ଇଲାବାନ୍ ଉଳୁପୀ ପୁଅ ।

ହର ଓ ଅର୍ଜ୍ଜୁନ କରିବେ ସମର
ଶିବ ହାରିଯିବେ ଅର୍ଜ୍ଜୁନ ଶରେ,
ପାଶୁପତ ଶର ଅକ୍ଷୟ ତୂଣୀର
ପାଇବେ ଅର୍ଜ୍ଜୁନ ତୁହିଁଙ୍କ ବରେ ।
କାଳିନ୍ଦୀରେ ନାହିଁ ଆଉ ଜୀବଜନ୍ତୁ
ଅଛନ୍ତି କେବଳ କାଳିଆ ନାଗ,
ଆଉ କାହାକୁ ସେ ପୂରାଇ ଦିଏନା
ସବୁ ଜୀବଠାରେ ତାହାର ରାଗ ।
ଆମ ରଜା କଂସ ତାହାର ସଙ୍ଗରେ
ଅଛି ଏ ନାଗର କୁଟିଳ ମିତ୍ର,
ଯାକୁ ହାତ କରି ମତେ କୂଟେ ମାରି
ରଖିବ କୁଆଡ଼େ ଗୋଟାଏ ଜାଗି ।
ତାହା ହେବ ନାହିଁ, କରିଦେବି ନାହିଁ,
ଆଜ ମୁଁ ଏହାକୁ କରିବି ବଦା,'
ଆଉ କେତେ ଦିନେ କଂସ ମାରିବାକୁ
ହୋଇବ ଆମର ବଡ଼ ସୁବିଧା ।
କଂସ ମଥୁରାରେ କାଳୀ ଯମୁନାରେ
କରନ୍ତି ରାଜୁତି ଅନ୍ୟାୟ କରି,
ଆଜ ସେଥିପାଇଁ ପଶିବି ପାଣିରେ
ଦଳି ମୁଁ କାଳୀକୁ ଦେବଟି ତଡ଼ି ।
ଯମୁନା ପାଣିରୁ ହରିବି ମୁଁ ବିଷ
କରିବି ଅମୃତ ପିଇବ ସୁଖେ,
ଆଉ ଆଜଠାରୁ ଗିରାମେ ଲାଗି
ଉଦକବିକଳ ହେବନ ଦୁଃଖେ ।
ସାପ କାମୁଡ଼ଲେ ବୁଡ଼ାନ୍ତି ପାଣିରେ
ପାଣି ପରା କାହିଁ ନାଶଇ ବିଷ,
ସାପର ବିଷରେ ନିଜେ ତ ଜଳୁଛି
ଆଉ ବା କାହାର କରିବ କସ ?

ଦେହରୁ ଗୁଡ଼ଏ ଅଛୁ ଢହିଁ ଖାଲ
ଯେଣୁ ସେ ଶୀତଳ ବରଫ ପରି,
କିନ୍ତୁ ବେଳେ ବେଳେ ତାତିଯାଏ ତାହା
ସଞ୍ଜୀବୁଡେ ଶୁଖିଯାଏଟି ମରି ।
ଆହ୍ନ କହୁ ହେଲେ ନାହିଁ ତ ସେଥିରେ
ସାପ ସାଲୁବାଲୁ ହେଉଛୁ ପାଣି,
ତେଣୁ ତା ପାଖକୁ କେହି ଯାଏ ନାହିଁ
ଆଗରୁ ଏକଥା ଅଛନ୍ତି ଜାଣି ।
କଦମ୍ବ ଗଛଟା ଅଛୁ ତା କୂଳରେ
କେତେ କାଳ ହେଲା ଜୀବନ ଧରି,
ଯେଣୁ ତା ଦେହରେ ଅଛୁ କାଦମ୍ବରୀ
ସେଟା ବି ଗୁଣରେ ଜହର ପରି ।
ବିଷକୁ ବିଷରେ ଜାରିଦିଏ ପରା
ନୋହିଲେ କି ସେଟା ଥାଆନ୍ତା ଆଉ ?
କୋଉ ଦିନୁଁ ମରି- ପୋଡ଼ି ଯାଇଥାନ୍ତା
ସମ୍ଭାଳି ନ ପାରି ବିଷର ଦାଉ ।
ଏଇ ନାଗଙ୍କର ବାପ ତ ବାସୁକି
ରଖିଥିଲା ମୋତେ ଫଣା ଯୋଡ଼ାଇ,
ଯେତେବେଳେ ବାପା ମୋତେ ଘେନି କରି
ନନ୍ଦ ଘରେ ଆସିଥିଲେ ପଳାଇ ।
ତେଣୁ ମୁଁ କାହାକୁ ମାରିଦେବି ନାହିଁ
କେବଳ ଠୋଇ ଦେବି ତା ଦେଶେ,
କଂସ ଜରାସନ୍ଧ ବିପକ୍ଷେ ଲଢ଼ିବେ
ସମସ୍ତେ ଆସିବେ ଭୁମରି ବେଶେ । ✻

---

✻ କେତେକ ନାଗସେନା ମଧ୍ୟ ଗୋପାଳ ବେଶରେ ଜରାସନ୍ଧ ସଙ୍ଗେ ଲଢ଼ିବାକୁ ମଥୁରା ଯାଇଥିଲେ ।

କାଳୀୟ ଫଣାରେ         ନାଚିବ କହ୍ନାଇ
    ପରିଚିତ ହେବ ସେ ନାଗ ବୋଲି,
ତାହା ପୁଅ ଶିରେ         ରଖିଦେବ ଚିହ୍ନ
    ତଂପ ହୋଇ ଫଣା ହେବ ସେ ଢୋଳ ।
ଏଇ ବୃନ୍ଦାବନେ         ଅଛି ଶଂଖଚୂଡ଼
    ଆଉ ଏକ ନାଗ ଏହାରି ବଂଶ,
ତା ଶିରେ ମଣିଏ         ଜଳେ ଦାଉଦାଉ
    ମନାସିଛି ମୋତେ କରିବ ଧ୍ୱଂସ ।
ପାରିବ ନାହିଁ ସେ         ମାରିବି ମୁଁ ତାକୁ
    ହରିନେବି ମଣି ନାଇବି ଶିରେ,
ଅଳପ ଦିନରେ         ଦେଖିବ ଏଇଠି
    ମରି ପଡ଼ିବ ସେ ଏଇ ଭୂଇଁରେ ।
ଆସାମରେ ଅଛି         ନାଗା ବୋଲି କରି
    ଆହୁରି ଗୋଟାଏ ଦୁର୍ଦ୍ଦାନ୍ତ ସାପ,
କେତେ କାହାକୁ ସେ         କାମୁଡ଼ି ଦେଲାଣି
    ଅରଜିଲାଣି ସେ ଗୁଡ଼ାଏ ପାପ ।
ମହାଭାରତରେ         କୌରବ ପକ୍ଷରେ
    ଲଢ଼ିବ ସେ ଆସି ଜଗାରି ବିଷ,
ମରିବ ସେ ସେଠି         ସମର ଭୂଇଁରେ
    ସେଠାର ହାତରେ ହେବ ବା କିସ ?
ଆସ ଆସ ସବୁ         ଉଚ୍ଛୁର କରନା
    ଯିବା ବୃନ୍ଦବନେ ବୁଲିବା ଖେଳି,
ରବି ଉଇଁଲାଣି,         ଆଲୁଅ ହେଲାଣି
    ପୂର୍ବଦିଗ ଦ୍ୱାର ଦେଲାଣି ମେଲି ।
ଯାଅ ସଜବାଜ         ହୁଅ ରେ ସମସ୍ତେ
    ଛତା ବାଡ଼ି ଧରି ବାହାର ହୁଅ,
ଧୀର ଧୀର ହୋଇ         ଦକ୍ଷିଣ ଦିଗରୁ
    ବହିଲାଣି ପରା ପବନ-ସୁଅ ।

ଏତିକି ବେଳରୁ ଗୃଲଗଲେ ସିନା
ଦେହରୁ ବଢ଼ିବ ନାହିଁଟି ଝାଳ,
ଗୃହୁଁ ଗୃହୁଁ ଖର ମାଡ଼ ତ ଆସିବ
ଖର ନୁହେଁ ସେ ତ ସାକ୍ଷାତ କାଳ ।"
ଧାଇଁଲେ ଟିକିଏ ଯେ ଯାହାର ଘରେ
ଖାଇପିଇ କରି ବାଛୁରି ଅଣି,
ଡାକିଲେ ଦୁଆରେ "କାହିଁରେ ଉହୁର ?
ଚଂଚଳ ଆସ ରେ ମୁରଲୀ-ପାଣି !
କାହିଁ ଚଲ୍ ରାମ ଆସୁନ କାହିଁକି
ତାହାର ବି କ'ଣ ସତନ କାମ ?
ଶିଂଗାଟାଏ ଧରି କିଛି କରେ ନାହିଁ
କାଲୁଆ ହାଣ୍ଡିଟା ଛୁଆଁକୁ ରାମ ।
ଲଂଗଳ ଗୋଟାଏ ବୁହାଏ କାନ୍ଧରେ
ସତେ ତାକୁ କ'ଣ ଲାଗେନା ଭରି ?
କଖାରୁ ଫୁଲକୁ ଟାରୁଡ଼ା ପୋକ ତ
ସତରେ ପିଲାଟା ତେସିକ ଭରି ।
ଅଣ୍ଡିରି ବାଛୁରି ମଣି କରୁ ନାହିଁ
ଯମୁନା ବାଲିକୁ କରୁନି ହଳ ?
ଦୁଧ ଦହି ବସି ନିତି ତ ଖାଉଛୁ
କହାଇ ପରି କି ଅଛୁ ତା ବଳ ?
ବାଛୁ ପିନ୍ଧଥାଏ ନେଳିଆ ଲୁଗାଟା
ମାନଇ ସୁନ୍ଦର ରଂଗ ଶୁକଳ,
କାନୁ କୃଷ୍ଣ ପରି ନୁହେ ହସ ହସ
ଆଖିକୁ ଲାଗେନା ସେତେ ଶୀତଳ ।
କୃଷ୍ଣକୁ ଯେପରି ମାନେ ଶିଖୀ ପୁଚ୍ଛ
ସାଜେ ଗୋରୋଚନା ଶତା ଯେପରି,
ରାମ ଦେହଟାରେ ହଜିଯାଏ ସବୁ
ଆଖିକୁ ରୁଚେନା କାହିଁ ସେପରି ?

ସାତ ଫେଣିଆଟା କୋଉ ସୁନ୍ଦର ବା
ମୋଟାସୋଟା ଖାଲି ଦେହଟା ସିନା,
ନାହିଁ ଆଖିଠାର ନାହିଁ ବଂଶୀ ବଜା
ସୁନ୍ଦର ବର୍ଣ୍ଣନେ କୌତୁକ ବନା ?
କହୁଥାଇ ପରି ସେ ନୁହଇ ଚତୁର
ସବୁବେଳେ ଖାଲି ଓଦା କାନ୍ଥଟା,
ବେଳେ ବେଳେ ଯେବେ ରାଗିଯାଏ ଭାଇ
ନାଆଁଠାରୁ ବଳିଯାଏ ରାଗ ତା ।
କୃଷ୍ଣ ବଳରାମ ଧରା ପରା ଦେଲେ
କିଏ ସେ କାହାକୁ ପାରିବ କହ,
ଭଲ କଥା ଭାଇ ମନେ ପକାଇଲୁ
ଆଜି ପରଖିବା ସେ କଥା ରହ ।"
କହୁଁ କହୁଁ ଘରୁ ବାହାରିଲେ କୃଷ୍ଣ
ମୁହଁ ହସ ହସ ପଛରେ ରାମ,
କଇଲାସ ଗୁଡ଼ ଆସିଲେ କି ଆଜ
ଆଗ ପଛ ହୋଇ ଶିବ ଓ କାମ !
ମଦନକୁ ପରା ପୋଡ଼ିଥିଲେ ହର
କପଟ ପାର୍ଶ୍ଵ ପାଇଲା ପ୍ରାଣ ?
ବ୍ରହ୍ମା କ'ଣ ଆଜ ଝିଅ କାନ୍ଧବାରୁ
ତା ପତିକୁ ଦେଲେ ଜୀବନ ଦାନ ?
ରାମଙ୍କ କାନ୍ଧରେ ସୁନେଲି ଦୋସତ୍ତା
ହରଙ୍କ ବେକରେ ଗରଳ ସରି,
କୃଷ୍ଣଙ୍କ ଗଳାରେ ପୀତ ପୁଷ୍ପହାର
ବାରିଦ କୋଳରେ ବିଜୁଳି ପରି ।
ବାହୁଗି ଅଡ଼ାଇ ଗୁଳିଗଲେ ଧରୁ
ଆଗରେ ଶ୍ରୀକୃଷ୍ଣ ପଛରେ ବସା,
ତାଙ୍କ ପଛେ ପଛେ ଗଉଡ଼ ପିଲାଏ
ମୁହେଁ ମୁହେଁ ହସ ସୁନ୍ଦର ସଂସ୍ତ ।

ପଶିଗଲେ ଯାଇଁ ବନସ୍ତ ଭିତରେ
ଦୂରରୁ ଦିଶିଲା କଦମ୍ବ ଗଛ,
ବାହୁଡ଼ି ବରଜ ଦଉଡ଼ିଲେ ସବୁ
କିଏ ଅବା ଆଗ କିଏ ବା ପଛ ।
ସବା ଆଗେ କୃଷ୍ଣ ପହଞ୍ଚିଲେ ଯାଇଁ
କଦମ୍ବଗଛର ମୂଳର ତଳେ,
ଭାବିଲେ ମନରେ ଆଜ ମୁଁ ନିଶ୍ଚୟ
ଘଉଡ଼ିବି କାଳୀ ପଶିଣ ଜଳେ ।
ଚଢ଼ିଲେ କଦମ୍ବ ଗଛର ଉପରେ
ଡେଇଁ ଡେଇଁ କରି ମାଙ୍କଡ଼ ପରି,
ଡାଳଟିରେ ବସି ମନେ ମନେ ହସି
ଗୁହାଁଲେ ପାଣିକୁ ତଳାଇ କରି ।
ନିରିମଳ ଜଳେ ପଡ଼ିଅଛି ଛାଇ
ଫୁଟିଛି ତହିଁରେ କଦମ୍ବ ଫୁଲ,
ନାଚୁଅଛି ଛାଇ ଡେଇଁ ଡେଇଁ କରି
ତା ସଙ୍ଗେ ନାଚନ୍ତି ମୟୂର-ଝୁଲ ।
ଭିଡ଼ାଭିଡ଼ି ହୋଇ ଡେଇଁଲେ ପାଣିକୁ
ଶୁଭିଲା ଶବଦ ହୋଇ ଝପଟେ,
ଚରୁଥିଲା କାଳୀ ଭାବିଲା ମନରେ
କୋଉଠୁଁ ଆସିଲା ଏ ଗରଜନ !
ଉଠିଲା ଉପରେ ଦେଖିବାର ଲାଗି
କିଏ ସେ ପଶିଲା ତା ଘରେ ଆସି,
ଜାଣୁ ଜାଣୁ କିଏ ବେକରେ ବାନ୍ଧିଲା
ମରିବା ପାଇଁକି କଉଳ-ଫାଶି ।
ଦେଖିଲା ଜଳରେ ମଣିଷ ପିଲାଟା
ଭାସୁଅଛି ଶୋଳ ବିଡ଼ାଟା ପରି,
ଆସିଲା ବେଗରେ ଦଉଡ଼ି ପାଖକୁ
ମାରି ପକାଇବ ବୋଲିଣ ଧରି ।

ଫଅଁ ଫଅଁ କରି ଗରଜୁଅଛି ସେ
ଜିଭ ଲହ ଲହ ଦେଉଛି କରି,
ଦଉଡ଼ି ଆସୁଛି ରାଗରେ ଗରଜି
କୃଷ୍ଣଙ୍କୁ ଏଇନା ଗିଳିବ ଧରି ।
ଡାମଣା ଯେପରି ଧରଇ ବେଂଗକୁ
ଦୂରରୁ ଦେଖିଣ ଦଉଡ଼ି ଆସି,
ତୁଣ୍ଡରେ କାମୁଡ଼ି ଗିଳିବା ପାଇଁକି
ଉପରକୁ ଟେକି ଧରିଲା ଭାସି ।
"ଅଇଲା, ଅଇଲା ଧଇଲା, ଖାଇଲା"
କହିଲେ ପିଲାଏ କାନ୍ଦିଲେ ଖାଲି,
ଡାକିଲେ ବାକିଲେ "ଧାଇଁ ଆସ ସବୁ
କୃଷ୍ଣକୁ ଖାଇଲା ଧରି ଏ କାଳୀ ।"
ମୁଠା ମୁଠା କରି ଫୋପାଡ଼ିଲେ ବାଲି
ଝର ଝର ହୋଇ ଉଡ଼ଇ ଯାଇ,
ଅନାଉଁ ଅନାଉଁ ଝାଉ ଝାଉ କରି
ଶ୍ରୀକୃଷ୍ଣଙ୍କୁ ଗିଳି ଦେଲା ତ ଖାଇ ।
ଗିଳିଦେଲା ସିନା ସମ୍ଭାଳୁଛି କାହିଁ
ରଡ଼ନିଆଁକୁ କେ ପାରିବ ଗିଳି ?
ପୋଡ଼ିଗଲା ପାଟି ସହି ପାରିଲାନି
କାଢ଼ି ପକାଇଲା ଭଅଙ୍କ କରି ।
ରାଗରେ ଜଳୁଛି ଦେହ ଗୋଟାଯାକ
କୃଷ୍ଣଙ୍କୁ ଗୁଡ଼ାଇ ଧଇଲା ଆଣ୍ଟେ,
ଭାବିଲା, ମାରିବ ହାଡଗୋଡ଼ ଭାଂଗି
ପଛରେ ଖାଇବ ପୂରାଇ ଗାଣ୍ଟେ ।
ବଢ଼ାଇଲେ ଦେହ ଶ୍ରୀକୃଷ୍ଣ ସେଇନା
ସାପ ପାରିଲାନି କେବେହେ ବାନ୍ଧି,
ନିଜେ ଛିଣ୍ଡିଯିବ କୃଷ୍ଣଙ୍କୁ ବାନ୍ଧିଲେ
ଜାଣିଲା ଯୋଉନା ଦେଲା ସେ କାନ୍ଦି ।

ଘୁଞ୍ଚିଲ କୃଷ୍ଣଙ୍କୁ ଗୁନ୍ଧିଲା କେବଳ
 ଜଙ୍ଘକୁ ହଲାଇ ଦେଲାଟି ଖାଲି,
ଭରସି କରି ସେ କୃଷ୍ଣଙ୍କ ପାଖକୁ
 ଆଉ ଆଗ ପରି ଗଲାନି ଚାଲି ।
ଆତୁରି ଭାବିଲା, ଗ୍ଲେଷ୍ଟ ଗ୍ଲେଷ୍ଟ କରି
 କାମୁଡ଼ି ଜହର ଦେବି ମୁଁ ଢାଳି,
ଶିରାରେ ଶିରାରେ ବିଷ ଭେଦାଇବ
 ଏଇଟା ହିଁ କଲେ ପାରିବ ମାରି ।
ବଦନ ଉପରେ ବଦନକୁ ହାଣି
 ବୁହାଇଣ ଦେଲା ଗରଳ ଧାର,
କୃଷ୍ଣଙ୍କ ଦେହରେ ସବୁ ଗଲା କାହିଁ
 ବିଷେ କିଛି ହେଲା ନାହିଁ ତାହାର ।
ଦଉଡ଼ିଲେ ପିଲା କେତେଜଣ ଘରକୁ
 କହିଲେ ଏ କଥା ସଭିଙ୍କୁ ଯାଇଁ,
ଗୋପ ଗୋପୀ ସବୁ ଗ୍ଲେହ୍ବଣୀ ଯଶୋଦା
 ନନ୍ଦଙ୍କୁ ନେଇଣ ଆସିଲେ ଧାଇଁ ।
ଦେଖିଲେ ଯୋଜନା ପାଣିରେ କୃଷ୍ଣଙ୍କୁ
 ଯଶୋଦା ଧାଇଁଲେ ପଶିବା ପାଇଁ,
ବଳରାମ ତାଙ୍କୁ କରିଲେ ବାରଣ
 କହିଲେ, "ତୁ ଥାଆ ଦେଖେ ମୁଁ ଯାଇଁ ।"
କୃଷ୍ଣ ପହଁରିଲେ ଭଉଁରୀ ପକାଇ
 କାଳୀ ଗୋଡ଼ାଇଲା ପଛରେ ବାଚି,
କାମୁଡ଼ିବା କଥା ଆଉ ତ ଦୂରକୁ
 ଧାଇଁ ଧାଇଁ ପଛେ ପାରେନା ଲଗି ।
ଦଉଡ଼ ଦଉଡ଼ ଆକେତା ହୋଇଲା
 ଜାଣିଲେ ଶ୍ରୀକୃଷ୍ଣ ହଟିଲା ବଳ,
ସାପର ପାଖକୁ ଲଗି ଲଗି ଗଲେ
 ଦେଖିଲେ ଚାହିଁଲେ ତା ସବୁ କଳ ।

ଦେଖିଲା କୃଷ୍ଣଙ୍କୁ ଯୋଉନା ପାଖରେ
ରାଗି କରି ଉଚ୍ଚେ ଟେକିଲା ଫଣା,
ବନ୍ଧନ ଶ୍ରୀକୃଷ୍ଣ ଡେଇଁଲେ ଉପରେ
ଗୋଡ଼ରେ ମୁଣ୍ଡକୁ ମାରିଲେ ଠଣା ।
ଓଜନ ବଢ଼ାଇ ହୋଇଗଲେ ଗରୁ
ସାପ ପାରିଲାନି ଆଉ ସମ୍ଭାଳି,
କାନ୍ଦି କାନ୍ଦି କରି ତା ସବୁ ମୁହଁରୁ
ପକାଇଲା ଖଣ୍ଡ ରକତ ଗାଳି ।
ହେଲା ଆତଙ୍କିତ କାନ୍ଦିଲା ବହୁତ
କୃଷ୍ଣଙ୍କ ଶରଣ ଲୋଡ଼ିଲା ଶେଷେ,
ଛୁଆ ପିଲା ନେଇ ପଡ଼ିଲା ଚରଣେ
ସାପୁଣୀ କାନ୍ଦିଲେ ଭିକ୍ଷୁଣୀ ବେଶେ ।
କୃଷ୍ଣ ଦୟା କରି କ୍ଷମା ଦେଲେ ତାଙ୍କୁ
କହିଲେ, "ଏଇନା ଯାଅ ସାଗରେ,
ସେଇଠେଇ ଥିବ ଡାକିଲେ ଆସିବ
କଂସକୁ ମାରିବା ଏକା ସଂଗରେ ।"
ଚାଲିଗଲା କାଳୀ କୃଷ୍ଣ ବୋଲ ମାନି
ମୁଣ୍ଡରେ କଠାଉ ଚିହ୍ନକୁ ବହି,
ସେଇ ଦିନଠାରୁ ତାହାର ପାତକ
କୃଷ୍ଣ ପରଶରେ ଗଲାଣି ଦହି ।
ଏଇଥିରୁ ହେଲା ନାଗ ଜାତିଟାର
ଜାତୀୟ ପତାକା କଠାଉ ଚିହ୍ନ,
ଜଣେ ସଲିଳରେ ଜଣେ ଶୁଖିଲାରେ
କେତନ ଉଡ଼ାଇ ହୋଇଲେ ଶନ୍ତ ।
ସମର କ୍ଷେତ୍ରରେ ଅବତୀର୍ଣ୍ଣ ହେଲେ
ଫଣାରେ ଧରନ୍ତି ଏହି ନିଶାଣ,
ଫଁଅଁ ଫଁଅଁ କରି ଗରଜି ଗରଜି
ଛାଡ଼ି ଦେଇଯାନ୍ତି ଗରଳ-ବାଣ ।

କାଳନ୍ଦୀର ନୀର ହୋଇଲା ଅମୃତ
କେତେ ଜଳଜୀବ ରହିଲେ ଆସି,
ସେଇ ଦିନଠାରୁ ଅଦ୍ୟାବଧି କେତେ
ସ୍ମୃତି ତା ସଲିଳେ ରହିଛି ଭାସି ।
ସେହି ସ୍ମୃତି ଆଜ ହଜିଯିବ ନାହିଁ
ସୁନୀଳ ବହିବ ଯମୁନା ନୀର,
ସେ ଗୋପ ମଥୁରା ସେହି ବୃନ୍ଦାବନ
ରହିଛି ଏଜନା ରହିବ ଚିର ।
କିନ୍ତୁ କୃଷ୍ଣ ଆଜ ଦେଖା ଦେବେ ନାହିଁ
ରହିଯିବ ତାଙ୍କ ଗୀତାର ବାଣୀ,
ସେଇଗ୍ରନ୍ଥ ପଢ଼ି ସେଇଗ୍ରନ୍ଥ ଶୁଣି
କୃଷ୍ଣ ଥିଲେ ବୋଲି ପାରିବା ଜାଣି ।
ଲେଖକ କୃଷ୍ଣଙ୍କୁ ଡାକୁଛି ସତତ
ତାଙ୍କର ମହିମା ଜପୁଛି ମନେ,
ସତେ କ'ଣ ଦେଖା ଦେବେନି ଅରୁତେ
ଏ ଜୀବନେ କିବା ଆର ଜନମେ ?
ମରଣ ପରେ ତ ଉଠିବ ପରଦା
ମୁକୁଳି ଯିବ ତ ସରଗ-ପଥ,
ସେଠି କ'ଣ କୃଷ୍ଣ ଦେଖା ଥରେ ଦେଇ
ପୂରାଇ ଦେବେନି ତା ମନୋରଥ ?
ନାଗ ଜାତିଟାକୁ ବ୍ରହ୍ମା ସରଜିଲେ
ବିଷ ଦେଇ ତାକୁ କରିଲେ ବଳୀ,
ସେ ବିଷରେ ସେ ତ ନିଜେ ଜଳେ ନାହିଁ
ଅନ୍ୟ ପ୍ରାଣିଏ ମରନ୍ତି ଜଳି ।
ରଖିଲେ ତାହାଙ୍କୁ ରମ୍ୟକ ଦ୍ୱୀପରେ
ସାଗର ଭିତରେ ଦୁର୍ଗମ ସ୍ଥଳ,
ସେ ଥାନରେ କେହି ପଶି ପାରେ ନାହିଁ
ଘେରି ରହିଅଛି ଅଗାଧ ଜଳ ।

କେବଳ ଗରୁଡ଼ ଫଣିହାରେ ସେଠି
ଯେଣୁ ସେ ପାରଇ ପବନେ ଉଡ଼ି,
ଜଳ ଗଡ଼ଖାଇ କ କରିବ ତାର
ସେ ତ ମରିବନି ଜଳରେ ବୁଡ଼ି ।
ସାପଗୁଡ଼ାକ ତ ତାହାର ଆହାର
ଖାଏ ସେ ସବୁଠି ସାପଙ୍କୁ ଖୋଜି,
ସାପ ଖନା ଦେଲେ ଉପାସ ରହଇ
ସେଦିନ ତାହାର ହୁଏନା ଭୋଜି ।
ଖାଇଲା ବହୁତ ସାପ ନିତ ନିତ
ସାପଯାକ ମିଳି କଲେ ବିଚାର,
"ସାପ ବଂଶ ଲୋପ ପାଇ ତ ଯିବରେ
ଗରୁଡ଼ ଏପରି କଲେ ଆହାର ।
ଆସ ଆମେମାନେ କହିଦେବା ପାଳି
ଜଣ ଜଣ କରି ଖାଉ ସେ ପକ୍ଷୀ,
ଏପରି କଲେ ବା ଆମର ଜାତିଟା
ପାରିବ ତାହାର ବଂଶକୁ ରଖି ।"
ଏବେ କାଳୀୟର ପଡ଼ିଗଲା ପାଳି
ଭାବିଲା ମନରେ ଗରୁଡ଼ କେଉଁ ?
ମୋତେ ଡରାଇ ସେ ଭୋଜି ଖାଇଯିବ
ତାହାର ଭରସା ହେଲା କ ଏଡ଼େ !
ଦେବି ନାହିଁ ଭୋଜି ଦେଖିବି କପରି
ଛାର ଗରୁଡ଼ଟା କ କରିପାରେ ?
ସାପ ଜାତିଟାକୁ ମୁହିଁ ଥାଉଁ ଥାଉଁ
ହଇରାଣ କରି ଡରାଇ ମାରେ ।
ମୋର ସାନ ଭାଇ ବାସୁକି ଏକାକୀ
ଏକା ଫଣାକରେ ଧରଇ ମହୀ,
ମୁଁ ତା ବଡ଼ ଭାଇ ହଜାର ଫଣା ମୋ
ଛାର ଗରୁଡ଼କୁ ଦେବିନି ଦହି ?

ଏହିପରି ଭାବ ଶୋକ ଦେଲା ନାହିଁ
ରହିଲା ଅନାଇଁ ଗରବ କରି,
ଗରୁଡ଼ ଆସିଲେ ଲଢ଼ିବ ପଟାଏ
ନିଶ୍ଚୟ ଚଢ଼େଇ ଯିବଟି ମରି ।
ବେଳ ହୋଇଗଲା ଗରୁଡ଼ ଆସିଲା
ଗଗନୁଁ ଶବଦ ଆସିଲା ଧାଇଁ,
ଶାଗୁଣା ଯେପରି ଉଡ଼ୁଥାଏ ଉଚେ
ତଳେ ମଡ଼ା ଦେଖି ଆସେ ଓହ୍ଲାଇ ।
ଦେଖିଲା ତା ପାଇଁ ଖୋଜ ରହି ନାହିଁ
ଜଳଲା ଭିତରେ ଗୁହିଁଲା ପାଖେ,
ସାପଟାଏ ଅଛି ଫଣା ଟେକି କରି
ଡରୁ ନାହିଁ ଟିକେ ଗରୁଡ଼ ତାପେ ।
ଗରୁଡ଼ ବା ତାହା ସହନ୍ତା କପରି ?
ଭାବିଲା, ତାହାକୁ ଖାଇବ ଧରି,
ବଡ଼ ସାପଟାଏ ମିଳି ତ ଯାଇଛି
ମାଉଁସ ରହିଛି ଦେହରେ ଭରି ।
ଧାଇଁଲା ଗରୁଡ଼ ଡେଇଁ ଡେଇଁ କରି
ସାପର ପାଖକୁ ମେଲାଇ ଡେଣା,
ତା ଦେଖି କାଳୀୟ ଫଅଁ ଫଅଁ କରି
ରାଗରେ ଗରଜି ଟେକିଲା ଫଣା ।
ଗରୁଡ଼ କି ଡରେ ସାପର ଫଣାକୁ ?
ଚମକି ଗଲା ତା ପାଖକୁ ବୋଲି,
ଧରିଆଣି ତାକୁ ଖଣ୍ଡ ଖଣ୍ଡ କରି
ଗିଳିବ ଅଣ୍ଟରେ ଉପରେ ତୋଳି ।
ସାପ କାମୁଡ଼ିଲା ତାହାର ଗୋଡ଼କୁ
ସାପ ବିଷରେ କି ଗରୁଡ଼ ମରେ ?
ଜଗନ୍ନାଥଙ୍କୁ କେତେ ପୁଣ୍ୟ କଲା
ଧରମ ବଳରେ ଯେ କାଳନ୍ଦି ଧରେ ।

ଗରୁଡ଼ ମାଇଲା ତା ପକ୍ଷୀରେ କଷି
କାଳୀୟର ଜ୍ଞାନ ଗଲା ତ ହଜି,
ଏକା ମାଡ଼କରେ ପଡ଼ିଲା ସେଇଠି
ମନେ ମନେ ଇଷ୍ଟ ଦେବତା ଭଜି ।
ପୁଣି ଚେତା ପାଇ ଅନାଇ ଦେଲା ସେ
ଗରୁଡ଼ ବସିଛି ଆଗରେ ଜଗି,
ଜୀବନ ଘେନିଣ ପଳାଇଲା ଖରେ
ଯାଉଁ ଯାଉଁ ଡରେ ପକାଏ ହଗି ।
କାଳିନ୍ଦୀ ଗର୍ଭରେ ପଳାଇ ପଶିଲା
ପାତାଳ ବିବରେ ଲୁଚିଲା ଯାଇ,
ପାଳାଇଲା ବେଳେ ଅତରଛ ହୋଇ
ପଛକୁ ଥରୁଟେ ପାରେନ ଗୃହିଁ ।
ଏ ବଡ଼ ବଚନ କଥାଟାଏ ହେଲା
କାଳିନ୍ଦୀରେ ସାପ ପଶିଲା ପାଇଁ ।
ଗରୁଡ଼ ତାହାକୁ ଧରି ପାରିଲାନି
କାହିଁକି ତାକୁ ବା ଖାଇଲା ନାହିଁ ।
ଅଛି କଥାଟିଏ ଗୁପତ ହୋଇଣ
ଜାଣନ୍ତି ଶ୍ରୀକୃଷ୍ଣ ଜାଣଇ କାଳୀ,
ଜାଣନ୍ତି ସୌଭରି ଆଉରି ଗରୁଡ଼
ଯାଙ୍କ ଛଡ଼ା ଅନ୍ୟ ପାରେନା ଭାଳି ।
ବ୍ରହ୍ମର୍ଷି ସୌଭରି ଦିନେ ଦିନେ ବସି
କାଳିନ୍ଦୀ କୂଳରେ କରନ୍ତି ତପ,
ନିଷ୍ଠଳରେ ବସି ଏକା ଲୟ କରି
କୃଷ୍ଣ କୃଷ୍ଣ ଖାଲି କରନ୍ତି ଜପ ।
ତପ ଜପ କରି ହିଂସା ବରଜିଲେ
ସବୁ ଜୀବଜନ୍ତୁ ମଣିଲେ ସମ,
ସବୁରି ଦେହରେ ଛନ୍ତି ଭଗବାନ
ଏହା ଭାବ ମନୁ ଛାଡ଼ିଲେ ତମ ।

କାଠ ପଥରରେ ଦେଖିଲେ ଦେବତା
ଶୂନ୍ୟରେ ପୂର୍ଣ୍ଣରେ ଅଛନ୍ତି ପୂରି,
ଭଗବାନଙ୍କର ବିଶ୍ୱରୂପ ଦେଖି
ମନୁଁ ଭେଦଭାବ ଗଲେଣି ଭୁଲି ।
ଋଷିଙ୍କୁ ଅହିଂସ ଦେଖି ଦେଖି କରି
ମାଛ ସବୁ ଆସି ଖେଳନ୍ତି ପାଖେ,
ମୁନି ତାଙ୍କୁ କିଛି କରନ୍ତି ନାହିଁ କି
ମାଛ ଡରନ୍ତି ନ ଋଷିଙ୍କ ଧାପେ ।
ଦିନେ ରୋହିମାଛ ଯୁବାଟିଏ ଆସି
ଖେଳୁଥିଲା ସେଠି ଲାଂଜ ହଲାଇ,
ଗରୁଡ଼ ତାହାକୁ ଦେଖି ଆକାଶରୁ
ପବନ ବେଗରେ ଗଲା ଓହ୍ଲାଇ ।
ମନା କରୁ କରୁ ଝାଂପି ନେଲା ମାଛ
ଋଷିଙ୍କ ଆଗରେ ଖାଇଲା ବସି,
ମାଛ ସେ ତ ନୁହେଁ ଋଷିଙ୍କର ଦେହ
ଋଷି ମନେ ରାଗ ଗଲାଣି ପଶି ।
କହିଲେ ରାଗରେ, "ବିଷ୍ଣୁ ବାହନ ତୁ
ନ ହେଲେ ଏଇଠି ଦିଅନ୍ତି ଶାପ,
ଏଇକ୍ଷଣି ତୋତେ ଭସ୍ମ କରି ଦିଅନ୍ତି
ଜାଣନ୍ତୁ ଅହିଂସା-ନୀତିର ତାପ ।
ଦୁର୍ବଳ ରକ୍ଷଣେ ସବଳ ଦମନ
ନୀତିଶାସ୍ତ୍ରରେ ତ ନୁହଇ ହିଂସା,
ଅହିଂସ ସଂସାରେ ବଡ଼ ସେ କଠିନ
ତହିଁ ତୋର ମୋର ନ ଥାଏ ମିଶା ।
ସବୁ ଆପଣାର ସମସ୍ତେ ସମାନ
ସମସ୍ତଙ୍କ ଦେହ ସେଇ ତ ଜଣେ,
ବିଶ୍ୱ ଚରାଚର ଯାହାର ସର୍ଜନା
ଯେ ଯାର ସୃଷ୍ଟିକୁ ସମାନ ମଣେ ।

ତଥାପି ଏ ଶାପ		ଦେଲା ରେ ପାଷଣ୍ଡ
ଆଜଠୁଁ ଏଠିକି ଆସିବୁ ନାହିଁ,
ଆସିଲେ କହୁଛି		ଜଳଯିବୁ ତୁହିଁ
ଶ୍ରୀକୃଷ୍ଣଙ୍କୁ ପାରିବୁନି ତୁ ଛୁଇଁ ।”
ଏଇ କଥାଟିକୁ		ଶୁଣିଥିଲା କାଳୀ
ତେଣୁ ତ ଲୁଚିଲା କାଳିନ୍ଦୀ ଜଳେ,
ଋଷି ଅଭିଶାପ		ପଡ଼ିଯିବ ବୋଲି
ଗରୁଡ଼ ଗଲାନି ସେଠିକି ଡରେ ।
ସେଇ ଦିନଠାରୁ		କାଳିନ୍ଦୀ ଜଳରେ
ରହିଲା କାଳୀୟ ବଂଶ ନେଇ,
ନିର୍ମଳ ପାଣିରେ		ବିଷ ମିଶାଇଲା
ଆଉ ପ୍ରାଣୀ ଡରେ ଗଲେନି କେହି ।
ଧରଣୀରେ ଧର୍ମ		ହୋଇଗଲା ଊଣା
ଖାଇବା ଜଳରେ ମିଶିଲା ବିଷ,
ଦେବତାଙ୍କ ମନେ		ପଡ଼ିଲା ଘାଲେଣି
ଧର୍ମ ରଖିବାକୁ କରିବେ କିସ ?
ସବୁ ଦେବତାଏ		ଉକାଉକ ହୋଇ
ରୁଣ୍ଡ ହେଲେ, କଲେ ସଲାସମିତ,
ବିଷ୍ଣୁଙ୍କୁ କେ ଯାଇ		କହିବ ଏ କଥା
ଜନମ ହୋଇ ସେ ରଖନ୍ତୁ କ୍ଷିତ ।
ନ ହେଲେ ସଂସାର		ହେବ ଛାରଖାର
ଦେବତା ଦାନବ ହେବେନି ବାରି,
ତାଙ୍କ ଛଡ଼ା ଆଉ		କିଏ ସେ ବା ଅଛି
ସନ୍ଥଙ୍କୁ ପାଳିବେ ଦୁଷ୍ଟଙ୍କୁ ମାରି ?
କ୍ଷୀରସିନ୍ଧୁ ତୀରେ		ଧାଇଁଲେ ସକଳେ
ବ୍ରହ୍ମାଙ୍କୁ ଧରିଲେ ଆଗୁଆ କରି,
ସମ ସ୍ୱରେ ମିଶି		ଅବକାଶ ପାଇ
ଖୋସାମଦ କରି ଡାକିଲେ ହରି ।

ହାତ ଯୋଡ଼ି ସବୁ          କହିଲେ ବିକଳେ
"ଦେଖ ଭଗବାନ ତୁମ ସଂସାର,
କପଟ ଅକାଳେ          ଅନ୍ୟାୟ-ବିଷରେ
ଜଳୁଛି କର ହେ ତା ପ୍ରତିକାର ।"
ଦେବଙ୍କ ଗୁହାରି          ଶୁଣିଲେ ସରବେ
କହିଲେ, "ଯାଅ ହେ ଯେ'ଯାହା ଘରେ,
ଦୁଷ୍ଟ ଦଳିବାକୁ          ଜନମ ହୋଇବି
ଆଜି କେତେ ଦିନେ କୃଷ୍ଣ ରୂପରେ ।"
ସେଇ ଭଗବାନ          ପରା କୃଷ୍ଣ ହୋଇ
ମଥୁରା ନଗରେ ହେଲେ ଜନମ,
ମଂଗଳାମଂଗଳ          ସବୁ ତ ତାଙ୍କର
କରିବେ ମନକୁ ତାଙ୍କ କରମ ।
କୃଷ୍ଣ ଜନମ ତ          ମଂଗଳର ପାଇଁ
ସୁଧାରି ଦେଲେ ସେ କାଳୀୟ ଗଂଜ,
କାଳନ୍ଦୀ ବାରିରେ          ଢାଳିଲେ ଅମୃତ
ଛଠ ଅଠବକୁ ଦେଲେ ସେ ରଂଜ ।
ଲେଖକ କେବଳ          ଅନାଇଁ ବସିଛି
କୋଉ ଦିନ ତାର ଘୁଂଚିବ ଦୋଷ,
କୃଷ୍ଣ କ'ଣ ତାକୁ          କ୍ଷମା ଦେବେ ନାହିଁ
କେବଳ କି ବହିଥିବେ ସେ ରୋଷ ?

— —

# ଋତୁଚକ୍ର

## ( ବସନ୍ତ ଓ ଗ୍ରୀଷ୍ମ )

ବରଷକେ ବାର ମାସ ଛଅ ଋତୁ
ଋତୁଙ୍କ ମଧ୍ୟରେ ବସନ୍ତ ରଜା,
ରଜା ବିଜେ ବେଳେ ଆଗରେ ଆଗରେ
ବାଜଇ ବାଜଣା ଲାଗଇ ମଜା ।
ବାଟରେ ବାଟରେ ତୋରଣ ତୋଳଇ
ଗଛ ଲତା ସବୁ ରଚିତ କରି,
ଗଂଠିକେ ପତର ଗଂଠିକେ କୁସୁମ
ଗଂଠିକରେ ଫଳ ଥାଏଟି ଫଳି ।
ଗଛରୁ ଝଡ଼ଇ ପାକଲା ପତର
କଅଁଳ ଉଠଇ ନୂଆ ମୁକୁଳ,
ଗଛ ଲତା କ'ଣ ଦେଉ ଲୁଗା କାଢ଼ି
ପିନ୍ଧନ୍ତି କେବଳ ନାଲି ଦୁକୂଳ ?
କରପଲ୍ଲବରେ ଚରିଲ ଅଳତା
ବୋଳିବାଲି ଦେଇ ହଲଇ ହଏ,
କୁଂଜ ସାଜ ଦେଇ କାହାକୁ ଡାକଇ
ପାଟିକୁ ଦଉଡ଼ ଯାଏ ବା କଏ ?
ପକ୍ଷିଏ ପକ୍ଷିଏ ଗାଇ ଦେଉଥାନ୍ତି
ପ୍ରେମ-ବିନମୟ ପ୍ରଣୟ-ଗୀତ,

ପ୍ରୀତି କାରବାର ହୁଅଇ ସବୁଠି
ଯୁବତୀ ପ୍ରକୃତି କରଇ ନତି ।
ପ୍ରୀତି ଦିଆନିଆ ଗୁପତ ନୀରବ
କାନ୍ତ ଠାଟରଠାରେ ଉଠଇ ଫୁଟି,
ହୃଦୟକନ୍ଦର ପ୍ରେମର ସର୍ବସ୍ୱ
ନେଇଯାଇ ଲୁଚଇ ନୁହଇ ଲୁଟି ।
ଲୁଟି ପାଇଁ କିଏ ଦଣ୍ଡ ପାଇଥାଏ
କିଏ ପୁରସ୍କୃତ ହୁଅଇ ଭବେ,
ଭଲ ମନ୍ଦ ପାଇଁ କେହି ନେଉଥିବେଳେ
ତନ୍ମରି କରି ରହିଛନା ଲବେ ?
ପୁରସ୍କାର ପରି ମନକୁ ଆସଇ
ଫଳ ଫଳଯାଏ ହସାଇ କରି,
ତିରସ୍କାର ଆସେ ପଛରେ ପଛରେ
ଫଳ ଫଳି କିଏ ଯାଏ ବା ମରି ? *
ଏଇ ମରଣରେ ସରିଯାଏ ନାହିଁ
ସଂସାର ଧର୍ମ ନା କୋଉଠି କେବେ,
ବରଂ ଶତେ ଗୁଣ ହୋଇ ବଢ଼ିଯାଏ
ଧରଣୀରେ ଥାନ ହୁଏନା ତେବେ ।
ସେଇଥି ପାଇଁ ତ ଦିନ ରାତି ଖାଲି
ଲାଗି ରହିଅଛି ଭଡ଼ାଓଟରା,
ଥାନ, ପାଣି, ବାୟୁ, ଆଲୁଅ, ଆହାର
ପାଇଁ ପରସ୍ପରେ ଏ ଧରାପରା ।
ଏଇ ଅଭିନୟ ପଡ଼ିଯାଏ ନାହିଁ
ଯବନିକା କେବେ ସର୍ଜନା ମଂଚେ,
ଚିରଦିନ ପାଇଁ ମର ମଂଚୟରେ
ମରଣଶୀଳ ତା ଦାୟାଦ ସଂଚେ ।

* ପତଙ୍ଗ ଓ ଗଛଙ୍କ ଭିତରେ କିଏ ସଂଗମ ପରେ, କିଏ ଡିମ୍ବ ଦେବା ପରେ ଓ କିଏ ଫଳ ପାଚିବା ପରେ ମରିଯାନ୍ତି ।

ପବନ ବୋଲଲ ଦେହରେ ତାହାର
ସୁବାସ ଅତର କୋଉଠୁ ଏତେ ?
ମକାଳେ ସଂଜରେ ଦ'ଥର ମହକେ
କଏ ସେ ବା ବସି ଶୁଂଘଇ କେତେ !
ଏ ଅତରେ କଣ ବୋଲା ହୋଇଥାଏ
ପ୍ରେମ-ମତାଣିଆ ମାଦକ ମନ୍ତ୍ର ?
ନ ହେଲେ ବା କଆଁ ପୀରତି-କାଙ୍ଗାଳ
ଶୁଂଘି ଦେଇ କର କହନ୍ତି ଉନ୍ତ୍ରଃ ।
କୋଇଲ କାହିଁକି ଗାଆନ୍ତି ଗଛରେ
ଆବାହନ ଗୀତ କହଣ କୁହୁ,
ଭଅଁର ବା କଆଁ ପାଗଳର ସମ
ବୁଲନ୍ତି ଗାଇଣ କେବଳ ଭୂଉଁ ?
କଏ କେତେବେଳେ ତିଆରେ ଅତର
କୋଉଠି ତାହାର କାରଖାନାଟି ?
କଏ ସେ କାହିଁରୁ କୋଉ ଉପାୟରେ
ଅତର ଆସିବ ବଗାଡ଼ଇଟି ?
ମିଶାମିଶି ଗନ୍ଧ ଅଧିକ ମଧୁର
କାହାର କାହିଁରେ ନ ଥାଏ ଦମ୍ଭ,
ମିଶାଇ ଦେଇଛୁ ସମ ଅନୁପାତେ
କଏ ସେ ବା ଗୁଣୀ କଏ ବା କର୍ତ୍ତା ?
ସୁଗନ୍ଧ ସଙ୍ଗରେ ସାଇଁଚ ଦେଇଛୁ
ଫୁଲେ କାହୁଁ ଆଣି ମଧୁର ମହୁ ?
ତାକୁ ଖାଇବାକୁ କୋଉ ସଙ୍କେତୁ
ଦଉଡ଼ି ଆସନ୍ତି ମଧୁପ ବହୁ ।
* ଏଗୁଡ଼ାକ କଣ ପୀରତି-କାଙ୍ଗାଳ,
କବା ମହୁ ପାଇଁ ଖାଲ ପାଗଳ,
ଫୁଲର ସେଥିରେ କୋଉ ସୁଖ ଅବା
ବାରଣ ନ କର ତାକେ କେବଳ ?

* ଭଅଁର ଓ ମହୁମାଛି ପ୍ରଭୃତି ଖାଲ ମହୁ ପାଇଁ ଫୁଲକୁ ଭେଟନ୍ତି ।

* ପ୍ରଣୟ ବାସନା                    କେବଳ ଫୁଲର
ଭଅଁର ଭେଟଇ ପେଟର ପାଇଁ,
ଫୁଲ ସେଥିପାଇଁ                    ମନା କରେ ନାହିଁ
ମିଳନ ବେଳକୁ ଥାଏ ସେ ଗୃହିଁ ।

ଶୀତ ଉଣା ହୁଏ,                    ପବନ ତାତଇ,
ଧରଣୀ ଖୋଜଇ ଶୀତଳ ସ୍ପର୍ଶ,
† ପବନ ଦେହରେ                    ପାଣି ବୋଳଦେଇ
ଅନ୍ଧାରଆ କର ମେଘେ କି ହର୍ଷ ?

†† ପାଣିର କୋଉଠି                    ନାହିଁ ରୂପ ରେଖ
ଫଗୁଆ ହେଲ କି ପବନ ଲାଗି ?
କିବା ପାଉଁଶିଆ                    ହସୁଛି ଏପରି
ବୈରାଗୀ ହେଲ କି ଘରକୁ ରାଗି ?

ଆମ୍ବ ବଉଳରେ                    ବାଜଗଲା ଯହୁଁ
ପୋଡ଼ି ଜଳିଗଲା କଅଁଳ ରୂପ,
କୁଢ଼ କୁଢ଼ ହୋଇ                    ଧରଣୀରେ ଝଡ଼ି
ଗଦାହେଲେ ଯେହ୍ନେ ଅଙ୍ଗାର ସ୍ତୂପ ।

ଏଇ ପରଶରେ                    ସରିଗଲା ତାର
ଇହ ଜୀବନର ପ୍ରଣୟ ଆଶା,
ମଉଳା ଶରୀର                    ନିଃସଙ୍ଗ ଜୀବନ
ସଉରଭହୀନ ନୀରବ ଭାଷା ।

ଧୀରେ ଧୀରେ ଧୀରେ                    ପବନ ଦେହରେ
ପାଣି ପଶିଯାଏ ମେଲାଇ ବାଟ,
ମେଘ ସରଜନା                    ହୁଅଇ ଗଗନେ
ଅଳପ ତାତିଇ ବାଲି ଓ ପାଟ ।

---

* ଫୁଲର ରେଣୁ ସଙ୍ଗମ ହୁଏ । † କୁହୁଡ଼ି ପବନରେ ବସେ ।
†† ପାଣିର ରୂପ, ଗନ୍ଧ, ସ୍ୱାଦ ନାହିଁ ।

ସାଗର ଅପେକ୍ଷା ସ୍ଥଳ ତାତେ ବେଶୀ
ସାଗରୁଁ ପବନ ଆସଇ ବହି,
ପାଣି ବୋହି ଧରି ସଳଖି ହୋଇଣ
ଚୂଲପାରେ ନାହିଁ ପଡ଼ଇ ନଇଁ ।
ଦକ୍ଷିଣ ପଶ୍ଚିମ କଣରୁ ବହଇ
ଉତ୍ତର ପୂରୁବ ଦିଗକୁ ଚାହିଁ,
ବାଟରେ ତାର ସରଇ ନାହିଁ କି
ଯିନ ପ୍ରତି ଖାଲି ଥାଏ ସେ ଧାଇଁ ।
ସେ ଦିଗରେ ତାର ଅଛି କି କୋଉଠି
ପ୍ରେମ-ପାଗଳିନୀ ସ୍ୱର୍ଗ-ସୁନ୍ଦରୀ ?
କିବା କେ ବିରହୀ ପଠାଇ ଦେଇଛି
ପବନ ବାହନେ ଦୂତଟି କରି ।
ବାଟ ଚାଲି ଚାଲି ଥକେନା କି ଗୋଡ଼
କୋଉଠି ଟିକିଏ ବସଇ ନାହିଁ,
ଅପର ବାଟକୁ ଉଡ଼ନ୍ତା ବାଉଁଶ
କିଏ ବା କାହାକୁ ଡରୁଛି କାହିଁ ?
ଗ୍ରୀଷମେ ଧାଇଁବ ଆହୁରି ଅଧିକ
ବୋହି ଭରି ହେବ ଆହୁରି ବେଶୀ,
ଗଗନୁଁ ଓହ୍ଲାଇ ଧରଣୀକୁ ଲାଗି-
ଥିବା ପବନରେ ହୋଇବ ଲେସି ।
ବାଟରେ ବାଟରେ ବିଶ୍ରାମ କରିବ
ପାହାଡ଼ ଜଙ୍ଗଲ ଆଗରେ ଦେଖି,
କଳା ଧଳା ରୂପ ଦେଖାଇଣ ଦେବ
ପାହାଡ଼ ଶିଖରେ ଯତନେ ଲେଖି ।
ପବନ ତାତିବ ଆହୁରି ବଢ଼ାହେଁ
ଆମର ଶରୀର ହେବ ଶୀତଳ,
ପବନରୁ ବାମ୍ଫ ଦେହରେ ଲାଗିଲେ
ଫଟେ ଫଟେ ହୋଇଯିବ ତରଳ ।

ଝୀଲ ନଦିଡ଼ାଇ ଶୋଷ ବଢ଼ାଇବ
ପ୍ରାଣିଏ ପିଇବେ ଅଧିକ ପାଣି,
କେଉଁ ବାଟେ ତାହା କେଉଁ ଆଡ଼େ ଯିବ
ସହଜରେ ହେବ ନାହିଁ ତା ଜାଣି ।
ଯୋଉଁ ମେଘୁଁ ଆସେ ସେଇ ମେଘେ ପଶେ
ମେଘ ପାଣି ଫାନ୍ଦି ପଶେ ସାଗରେ,
କେତେବେଳେ ଯାଏ କେଉଁ ରୂପେ ଯାଏ
ଜଳ ଜଳ ଦଶିଯାଏ ଆଗରେ ।
ବାଷ୍ପରୂପେ ମେଘ ଧରଣୀରେ ବର୍ଷା
ନଈ ନାଳ ରୂପେ ସାଗରେ ପଶେ,
ଏଇ ଚକ୍ରନେମି ଗତିରେ ସକଳ
ଧାଇଁଥାଏ ସଦା କେବେ ନ ବସେ ।
ଏଇ ପାଣି ପାଇଁ ଲାଗଇ କାଉଳ
ଶୀତ ଉପଗ୍ରହ ହୁଅଇ ଲୋଡ଼ା,
ଶୀତ ଲଗି ଝୀଲ ପବନେ ଉଡ଼ଇ
ଚଢ଼ି ପଯିରାଜ ସୈନ୍ଧବ ଘୋଡ଼ା ।
ଗ୍ରୀଷ୍ମ ପୀରତି ମନ ମତାଣିଆ
ନୁହଇ ବସନ୍ତ ପୀରତି ପର
ଫୁଲର ସୌରଭ ପକ୍ଷୀ କଳଗୀତ
ଦଏନା କାହାକୁ ପାଗଳ କର ।
ଖୋଜଇ ସେ ଖାଲି ବାଇଣା ପବନ
ଧରଣୀ ସ୍ୱପ୍ନ ଘଷା ଚନ୍ଦନ,
ତୃଷା ତଳପକୁ ଛୁ ଛୁ କରଇଏ
ମଣଇ ତାହାକୁ ଅନଳ ସମ ।
ଏଇ କାମନାକୁ ପୂରାଇବା ପାଇଁ
ମେଘ ବରଷଇ କୁଆପଥର,
ଗ୍ରୀଷ୍ମ ସଭାପରେ ସଚତ୍ର ବରଷା
ସୁହାଇଲା ବୋଲି କହେ ଏଥର ।

ସଞ୍ଜରେ ସଞ୍ଜରେ ଫୁଟିଯାଏ ମଲ୍ଲୀ
ସକାଳେ ଫୁଟଇ କଣ୍ଟାଫିଶକ,
ବାସନାରେ ମତ୍ତ ମହକାଇ ଦିଏ
ନନ୍ଦନବନର ଏକ୍ ଯୌତୁକ ।
ଫିଶକକୁ କିଏ ହରିନେବ ବୋଲି
କଣ୍ଟାରେ ଘେରାଇ ଦେଇଛି ରଖି,
ମଲ୍ଲୀ ଫୁଲଟି ତ ରାତିରେ ଫୁଟଇ
କାହାକୁ ସେ ଚାହେଁ ନାହିଁ ସଲଜି ।
ବହଳ ମେଘର ତଳେ ତଳେ ଚନ୍ଦ୍ର
ମଇଳା ହୋଇଣ ଦିଶଇ ନାହିଁ,
କିନ୍ତୁ ତା ଜ୍ୟୋତ୍ସ୍ନା ଆକୁଳ ନୟନେ
ଧରଣୀ ଆଡ଼କୁ ଥାଏ ଅନାଇଁ ।
ଧରଣୀ ସଙ୍ଗରେ କି ସମ୍ବନ୍ଧ ତାର
କୁମୁଦ କି ଆଖି ଦିଅଇ ଠାରି ?
କି ଅବା ସାଗର ଫୁଲି ଫୁଲି ଉଠେ
ଚନ୍ଦ୍ର ଦେଖିବାକୁ ଆକୁଳ ଭାରି ?
ଚନ୍ଦ୍ର କୁମୁଦର ପୀରତି କପଟ
ଦୂର ଦୂରାନ୍ତରୁ ହୁଅଇ ସତେ ?
ଗୋଟିଏ ସରଗେ ଘର କରିଥାଏ
ଆରଟି ତ ଥାଏ ପଡ଼ି ଏ ମର୍ତ୍ତ୍ୟେ ।
ଚନ୍ଦ୍ର କୁମୁଦରେ ବ୍ୟବଧାନ କାହିଁ
ଜ୍ୟୋତ୍ସ୍ନାରେ ପରା ଯାଇଛି ମିଶି,
ତେଣୁ ଦୁହେଁଯାକ ଅତି ଲଗାଲଗି
ପୀରତି କରନ୍ତି ସକଳ ନିଶି ।
ରବି କମଳର ପ୍ରଣୟ ସେପରି
ଦିନରେ ଦିନରେ ଦିଅନ୍ତି ସାରି,
କେହି କାହାଠାରୁ ଅନ୍ତର ହୁଏନା
ଦୁହେଁ ଦୁହିଁଙ୍କର ନିକଟ ଭାରି ।

ଚୈତନ୍ୟ କୁଆଡ଼େ   ନାଶ ହେବେ ପୂଜା
କର ପାରଥିଲେ ତୁମକୁ ତୃପ୍ତ,
ହେ କୃଷ୍ଣ ! ଲେଖକ   କପର ପୂଜନେ
ପାଇବ ତୁମକୁ ହୋଇବ ମୁକ୍ତ ।

## ( ବର୍ଷା )

ଗ୍ରୀଷ୍ମ ଶେଷେ   ମାଟିତଳ ପାଣି
ଉଠଇ ଉପରେ ପାଇଣ ଗୃପ,
ସାଗରେ ସଳିଳ   ବାଷ୍ପ ହୋଇ ଉଡ଼େ
ପାଇଣ ରବିର ପ୍ରଖର ତାପ ।
ପବନ ଦେହରେ   ପାଣି ବଳପଡ଼େ
ମେଘର ଶରୀର ହୁଅଇ ଭାରି,
ତଳକୁ ତଳକୁ   ଓହ୍ଲାଇ ଆସଇ
ଭାରି ଦେହଟାକୁ ବହି ନ ପାରି ।
ପବନର ପାଣି   ମାଟି ତଳ ପାଣି
ଧାଆନ୍ତି ଏକାଠି ମିଶିବା ପାଇଁ,
କେହି ଦେଖେ ନାହିଁ   କେତେବେଳେ ମିଶେ
କିନ୍ତୁ ଧରି ଦେହ ଯାଏ ଜକାଇ ।
ଏଇ ହେଲ୍ ଆମ   ସମାଜ ଭିତରେ
ଝିଅମାନଙ୍କର ପହିଲି ରଜ,
ଏଇ ଦିନଠାରୁ   ଶ୍ୟାମଳ ଧରଣୀ
ଫଳ ଫଳିବାକୁ ହୁଅଇ ସଜ ।
ଅକ୍ଷୟ ତୃତୀୟା   ଦିନରୁ ଆରମ୍ଭ
ହୋଇ ଯାଇଥାଏ ଋତୁ-ସଂଗ୍ରହ,
ଗୃହ ଜଗତରେ   କୃଷିକୁଳ ଘରେ
ବନ୍ଦନ ବୁଝିବା ଅଛି ପ୍ରଚୁର ।

ହଳପାଳ କରି          ଯେ ଯାହା କ୍ଷେତରେ
ଯତ୍ନ ଅଯତ୍ନରେ ପୋତିଲେ ମଞ୍ଜି,
ଗଜା ମରେ ନାହିଁ          ମଞ୍ଜି ବୁଡ଼େ ନାହିଁ
ଧରା ଦେହ ହୁଏ ଶସ୍ୟରେ ରଞ୍ଜି ।
କ୍ଷୟ ହୁଏ ନାହିଁ          ପୋତିବା ମଞ୍ଜିଟି
ତେଣୁ ଏ ଧନଟି ଅକ୍ଷୟ ବୋଲି,
ଆମ ଚାଷୀକାର          ଗଉରବ କରି
ସମାଜରେ ଦେଲେ ଉପରେ ତୋଳି ।
ସାବଣୀକୁ ଘରେ          ଶାଗମଂଜ କାହିଁ
ନ ଥାଏ କାହାର ବୁଣିବା ପାଇଁ,
ମାଟିରେ ବତର          ବଳ ଚଢ଼ିଥାଏ
ଥିଲେ ମଧ୍ୟ କେହି ବୁଣନ୍ତି ନାହିଁ ।
ବରଷାର ଏଇ          ନିର୍ମଳ ସଂକେତ
ପବନ ଗତିରୁ ମିଳଇ ପତ୍ର !
ଦକ୍ଷିଣ ପଶ୍ଚିମୁଁ          ବହୁ ବହୁ କେବେ
ଦିଗ ବଦଳାଇ ଦିଅଇ ଛତ୍ର ।
ପବନର ବେଗ          ହୁଅଇ ମନ୍ଥର
ଉଚ୍ଛର ଆଉ ପାରେନା ଗୁଳି,
ଯୋଉ ଆଡ଼େ ଚାହିଁ          ଦେଖିବ ସିଆଡ଼େ
ବାଣଭରା କଳା ବଉଦ ଖାଲି ।
ଖରା ଦିଶେ ନାହିଁ          ପ୍ରଖର ଉଜ୍ଜ୍ୱଳ
ଆଗେ ମରୀଚିକା ନାଚଇ ନାହିଁ,
ଗ୍ରୀଷ୍ମ ବଢ଼ଇ          ଝାଳ ନିଗିଡ଼ଇ
ଝିଂକାରୀ ଦିଅଇ କେନ୍ଦରା ବାଇ ।
ଶିଖରୀ ଶିଖରେ          ଆଉଜଇ ମେଘ
ଖୋଜ ଶୀତ ବାଆ ଖୋଜେ କି ଗୁଇ ?
ଦେହରୁ କାଉଳ          ଛଡ଼ାଇ ଦେବାକୁ
ବାକଳ ହୋଇ କି ଯାଏ ସେ ଧାଇଁ ?

କାଉଁଳା ମେଘର ମଞ୍ଜୁଳା ରୂପକୁ
ମୟୂର ଦେଖିଲେ ମେଲନ୍ତି ପୁଚ୍ଛ,
ତାଣ୍ଡବ ନାଚକୁ ନାଚଯାଏ ଖାଲି
କେକା କେକା କହି ଡାକନ୍ତି ଉଚ୍ଚ ।
ମୟୂରୀଗୁଡ଼ିକ ଦେଖି ଶୁଣି କରି
ମୀରବେ ଅସନ୍ତି ପାଖକୁ ଧାଇଁ,
ଟିଟୋ ନ ପକାଇ କାହାର ରୂପକୁ
ଅନାଇଁ ରହନ୍ତି କଅଣ ପାଇଁ ?
ଏ ଗୃହାଣୀରେ କି ସରଜନା ମୀତ
ନାହିଁ ଲୁଚି କରି ଭିତରେ ହସି,
ପୁରୁଷକୁ କଣ ଖୋଜେନା ରମଣୀ
ସଜବାଜ ହୋଇ ମୀରବେ ବସି ?
ନାରୀ-ସମାଜର ମଉନ ବଦନ
ମୀରବ ଭାଷା କି ନୁହେ ମଧୁର ?
ଏହି ସାଜସଜା ଏହି ମୀରବତା
କରେନା ପୁରୁଷ ପ୍ରଣୟ ଦୂର ?
ମେଘ ଗରଜଇ ମହାନ୍ ରାଗରେ
ପାଣି ବରଷଇ ମୂଷଳ ଧାରେ,
ଧରାଧର ଦେହ ଶିରୀ ହୋଇଯାଏ
ସରୁ ସରୁ କେତେ ସଜଳ ଗାରେ ।
ଦେହ ନୁହେ ସେ ତ ସେନେହର କୋଳ
ଖେଳାଏ ଆଦରେ ଗୁଡଏ କନ୍ୟା,
ବାପ ଘର ଛାଡ଼ି ଶାଶୁଘରେ ଯାନ୍ତି
ବାଟରେ ବୁହାଇ ପ୍ରେମର ବନ୍ୟା ।
କିଏ ବା କହିବ କୋଉ ଭାବ ନେଇ
ଧାଆନ୍ତି ଏତ୍ତାଡେଁ ଆକୁଳ ହୋଇ,
ଝୋଲା ହୃଦୟରେ କାହାର ବକ୍ଷକୁ
ହସି ରସି କରି ଦେବେ ବା ଧୋଇ !

ମେଘର ଦେହରୁ ବାହାରଇ ନିଆଁ
ଆଖି ଝଲସିଆ ଘର ଚଞ୍ଚଳ,
ନିଆଁ ପଛେ ପଛେ ଆସଇ ଶବଦ
କମ୍ପଇ ଗଗନ ଧରଣୀ ତଳ ।
ରଜନୀ ଆସଇ ଅନ୍ଧାରିଆ ହୋଇ
ଗୃହ ଛାଡ଼ି ସବୁ ଲୁଚନ୍ତି କାହିଁ ?
ବାଟୋଇଏ ହାଟ- ହାଟରେ ପଡ଼ନ୍ତି
ଚାଲିବାକୁ ବାଟ ପାଆନ୍ତି ନାହିଁ ।
ମେଘ ଅନ୍ଧାରରେ ଜଳି ଲିଭିକରି
ଉଡ଼ନ୍ତି ଯେତେକ ଖଦ୍ୟୋତ ପୋକ,
ଗହଳିଆ ବଣ ବହଳ ତମିରେ
ଜଳି ଜଳି ପୁଣି ହୁଅନ୍ତି ଲୋପ ।
ଦିନ ଦିନ ଧରି ଢାଳଇ ବରଷା
ଘଡ଼ଘଡ଼ି ଚଡ଼ଚଡ଼ିର ସଙ୍ଗେ,
ବେଙ୍ଗ ବେଙ୍ଗୁଲିଏ ପାଣି ଖାଲେ ଖାଲେ
ଗାଆନ୍ତି ପ୍ରେମ-ସଙ୍ଗୀତ ରଙ୍ଗେ ।
ବାଦଲଘରେ ମାଦଳ ବାଜଇ
ଶୁଣେ ବେଙ୍ଗ ବାଜା ଗମ୍ଭୀର ହୋଇ,
ଦୁହୁଦୁହୁ ହୋଇ ଦୁଲୁକଇ ମହୀ
ବିରହ ବେଦନା ଦିଏ କି ଧୋଇ ?
ନଈନାଳ ସବୁ ଉଚ୍ଛୁଳି ପଡ଼ଇ
ସଲିଳ ଦେହରେ ଗୋଳାଇ ମାଟି,
ପାଟରେ ପାଟରେ ବନ୍ଧଳିଆ କରି
ଠାଏ ଠାଏ ଦେଇଯାଏ ସେ ଗ୍ରନ୍ଥି ।
ଶେଷେ ବାରିଧିରେ ପଶଇଟି ଯାଇ
ସେଇଠେଇ ନିଏ ବିଶ୍ରାମ ଟିକେ,
ବସନ୍ତ ଗ୍ରୀଷ୍ମ ଆସିଗଲେ ପୁଣି
ବାଦଲ ରୂପରେ ଉଡ଼ଇ ଶିଖେ ।

ହେ କୃଷ୍ଣ ! ଲେଖକ ତୁମଠୁଁ ସଂଭବ
ତୁମକୁ ତ ଛାଡ଼ି ଆସିଛୁ ଏଠି,
ଜନମ ଦିନରୁ ଆଜଯାଏଁ ବୋଲି
ଖାଟୁଛୁ କେବଳ ତୁମରି ବେଠି ।
ସେ ବେଠିର କ'ଣ ମୂଲ୍ୟ ପାଇବନି ?
ଦେବ ଯେବେ, ନଅ ମୁକତ କରି,
ଏତିକ ମାଗୁଛୁ କଲବଲ ହୋଇ,
ତୁମ ରଙ୍ଗା ଛନ୍ଦାଚରଣ ଧରି ।

( ଶରତ )

ଶରତ କାଳ ତ ଋତୁଙ୍କର ରାଣୀ
ରାଣୀ ନୁହେ ଖାଲି ରାଣୀଙ୍କ ହୀରା,
ଉଜ୍ଜ୍ୱଳ ବରଣ ନିର୍ମଳ ଭୂଷଣ
ଶୋଭା ପାଇଛନ୍ତି ଶିରା ପ୍ରଶିରା ।
ବସରା ଗୋଲାପ ଦରି ମନୋହର
ପରଗବାଇଜ ଉର୍ବଶୀ ପରି,
ତା'ର ପରଶରେ ପ୍ରକୃତି ହସଇ
ସୁନ୍ଦର ଦିଶଇ ମାଟିର ଧରା ।
ଫୁଲ ବନାରସୀ ଶାଢ଼ୀ ସେ ପିନ୍ଧଇ
ସୁନା ବୁନ୍ଦ ତାରା ତହିଁରେ ଝୁଲେ,
ଦିବସରେ ପିନ୍ଧେ ଅମଳାନ ବାସ
ଅନଳର ରଙ୍ଗା ପା ତେଜେ ଜଳେ ।
ଜ୍ୟୋଛନାରେ ହସି ଖେଳଇ ନିଶିରେ
ଶୋଭାସଂପଦରେ ଗୋଟିଏ ପରୀ,
କୋଉଠି ଜନମି କୋଉଠି ବଢ଼େ ସେ
ଧରଣୀକୁ ଦିଏ ଆଲୁଅ କରି ?
ତାହାର କଙ୍କଣି ବାଜେନା ଉଚ୍ଚରେ
ଶୁଭେ ଗୁଣୁ ଗୁଣୁ କରୁଣ ହୋଇ,
ସେଇ ବାଜଣାରେ ହୃଦ-ବେଦନା
ବଢ଼ିଯାଏ ସିନା ଯାଏନା ଧୋଇ ।

ଧୋଇଦେବା ପାଇଁ କରଇ ଯତନ
ଢାଳିଦେଇ ଥଣ୍ଡା ଶିଶିର ନୀର,
ଊଷ୍ମା ହୁଏ ସିନା ଉପର ତାତଟା
ଭିତରେ ଭିତରେ ଜଳେ ଶରୀର ।
ସେଇଥି ପାଇଁକି ପୋଡ଼ଇ କମଳ
ଦିନକର ଖରେ ଅନାନ୍ତ ରାଗେ,
ସେଇ ରାଗ କ'ଣ ଦାବାନଳ ହୋଇ
ଜାଳଇ ଧରାକୁ ତତଲ୍ ଲାଗେ ?
ବଇଦେହୀ ସେ ତ କାନ୍ଦଇ ହରଷେ
ଶିଶିର ମୁଂଚଇ ଲୋତକ କରି,
ଅନଳ ପରୀକ୍ଷା ଦିଅଇ ନ ଡରି
ସତୀର ମହତ ଅଙ୍ଗରେ ଧରି ।
ସତୀ ଶିରୋମଣି ନାରୀ ସୀମନ୍ତିନୀ
ଅପମାନ ଲବେ ପାରେନା ସହି,
ବିକଳେ ଡାକଲେ ମାଆ ମାଆ ବୋଲି
ଥର ଥର ଥରି ଫାଟଇ ମହୀ ।
ଦ୍ରଉପଦୀ ପରି ସଦା ଶୁଚିମତୀ
ନିଆଁରେ ଗାଧୁଏ ପାଧୁଏ ନିତି,
ସହସ୍ର କିରଣ ଲୁଗା ପିନ୍ଧିଥାଏ
ତାହା ପରି କିଏ ଅଛି କି କ୍ଷିତି ?
ନୈଷେଧ-ତନୟା ଦମୟନ୍ତୀ ସେ ତ
ସୁନାର ମରାଳ କରଇ ଦୂତ,
ପତିର ପାଇଁକି କରିଦେଇ ପାରେ
ରମଣୀ ବିଳାସବାସନା ଚ୍ୟୁତ ।
ବିଦର୍ଭ-ନନ୍ଦିନୀ ରୁକ୍ମିଣୀ ସେ ସତେ
ପତି ବାଛିନିଏ ମନକୁ ବରି,
ମାନିନୀ ସେ ଅତି ସତ୍ୟଭାମା ସମ
ଆଖିରେ ରଖଇ ଲୋତକ ଭରି ।

ମରତ ପୁରର ଶେଫାଳୀ ତ ପିଏ
ଆଲୁଅକୁ ଲବେ ପାରେନା ସହ୍ନି,
ରାତି ଥାଉ ଥାଉ ସଢ଼ଇ ଲାଜରେ
ମୁହଁ ମାଡ଼ି ଆଣ୍ଡୁ କରଇ ମହୀ ।
ସରଗ ଗାମିନୀ କୋଉ ଦେବୀ ସେ ତ
ଖଣ୍ଡ ବଉଦରେ ଚଢ଼ି ସେ ଯାଏ,
ଧୋବଲ ଶାଢ଼ୀର ଉଡ଼ନ୍ତ ଅଞ୍ଚଳ
ପବନ ସୁଅରେ ଭସୁଣ ଥାଏ ।
ସୁର ସରସୀର ନୀଳ କୁମୁଦ କ
ମନ୍ଦ ଜହ୍ନ ଦେଖି କାନ୍ଦଇ ବସି,
ବାଡ଼ଲୁଚୁ ନୀଳ ଅପରାଜିତା କ
ବାଡ଼ରେ ବାଡ଼ରେ ଲୁଚଇ ହସି ।
ନନ୍ଦନ-ବନର ପାରିଜାତ ସେ ତ
କିଏ ସେ ତା ସଙ୍ଗେ ସମାନ ହେବ,
ସରଗ-ସଂପଦ ସୁଖ ସଉରଭ
ମରତବାସୀଙ୍କୁ କିଏ ବା ଦେବ ?
ବରଷା ଶରତ ଆଗ ପଛ ହୋଇ
ଆସନ୍ତି ଧରାକୁ ଖେଳିବା ପାଇଁ,
କେବେ କେବେ ଅବା ଧରାଧରି ହୋଇ
ଆସନ୍ତି ଏକାଠି ହସି ହସାଇ ।
ବଉଦର ତଳେ ଲୁଚିଯାଏ ହସି
କମିଛଟକେ ପୁଣି ଉଠଇ ଫୁଟି,
କେହି କେହି କେବେ ସେଇ ଶିରୀଟିକୁ
ନେଇ ପାରେ ନାହିଁ କୋଉଠୁଁ ଲୁଟି ।
କେବେ କେବେ ଅବା ଥିର ପବନରେ
ଓହଳି ଖେଳନ୍ତି ମୃଦୁଳ ଦୋଳି,
ପୁଣି ଛଡ଼ାଛଡ଼ି ହୁଅନ୍ତି ସେଇନା
ଗୁଳିଁଖିରି ଧରା ଦେହରେ ବୋଳି ।

ଗଛଲତା ସବୁ ଶାଗୁଆ ପତ୍ରରେ
  କାଠୁଆ ଶାକର କରନ୍ତି ବେଶୀ,
ଶୀତ ପଡ଼ିଗଲେ ଉଣା ଉଣା ହୁଏ
  ତାଳୁଇ ମିଝାଇ ଖାଆନ୍ତି ବସି ।
ଚଗଚନ ଭୁବନେ ସବୁଆଡ଼େ ଖାଲି
  ବହି ଯାଇଥାଏ ଶୋଭାର ହାଟ,
ଶୋଭା ସୌରଭର ଅସର ପସରା
  ମାଡ଼ି ବସିଥାଏ ବାଟ ଅବାଟ ।
ସଞ୍ଜର କିରଣେ ଝଲେ ସାତ ରଙ୍ଗ
  ଧୂର ବୁଲିବାରୁ ଦିଶଇ ଧଳା,
ଫୁଲ ଦଳେ ଦଳେ ଗୋଟି ଗୋଟି ହୋଇ
  ସେଇ ବର୍ଣ୍ଣ ସବୁ ବାନ୍ଧନ୍ତି ଭେଳା ।
କୋଉ କୋଉ ଫୁଲେ ପାଞ୍ଚ ସାତ ରଙ୍ଗ
  ବୋଳବାଳ ହୋଇ ଦିଶନ୍ତି ଲୁଗା,
ଗଛ ଶିରେ ଶିରେ ଠାଆ ଠାଆ ହୋଇ
  ଛିଟ ଶାଢ଼ୀ ଥୋଇ ଦିଅନ୍ତି ପଗା !
ହରଗଉରାର ବିଚିତ୍ର ବରଣ
  କାହାର ଆଖିକୁ ସୁହାଏ ନାହିଁ ?
ଶିବ ପାରବତୀ ନାଆଁ ଚରିତାର୍ଥ
  କଲ କି ସରଗେ ପଟଇ ଯାଇଁ ?
ଶୀତ ଗିରୀଷମ କୋଳାକୋଳି ହୋଇ
  ଥାଆନ୍ତି ଏକାଠି ଗୋଟିଏ ଘର,
କେତେବେଳେ ଶୀତ କେବେ ବା ଗ୍ରୀଷମ
  ଦେଖାଦେଇ ଯାନ୍ତି ଡରାଇ କରି ।
ରାତିରେ ରାତିରେ ପଡ଼ଇ କାକର
  ପବନ ଚୁପୁଡ଼ା ନଗିଡ଼ା ପାଣି,
କିଏ ନିରିମଳ କରିଛି ତାହାକୁ
  ମୁକୁତାର ସମ କାହିଁରେ ଛୁଣି ?

ଗଗନରୁ ମେଘ ହଟି ହଟି ଯାଏ
 ବରଷା ଦେହରୁ ସରଇ ବଳ,
ମେଘବାଇଜକୁ ଗୁଡ଼ିଯିବା ପାଇଁ
 ବରଷା ଘୁଞ୍ଚଇ ତାହାର ଘର ।
ଗଗନ ଭୁବନ ଦିଶନ୍ତି ଶ୍ୟାମଳ
 ଉଭୟ ପିନ୍ଧନ୍ତି ନୀଳ ବସନ,
ଘାସ ମଥାନରେ ଶିଶିର ଝଲଇ
 ହସି ଦିଏ, ଦିଶିଯାଏ ଦଶନ ।
ଗଗନ ଦେହରେ ସଡ଼କ ଗଢ଼ଇ
 ଠାଏ ଠାଏ ଜାଳି ବଜୁଳିବତ୍ତି,
ବୃନ୍ଦକୁ ବେଢ଼େଇ ଆଲୋକ ପରିଧି
 ଦେଖିଲେ ମନକୁ ଭଲଇ ମତ ।
ଖଣ୍ଡ କଳା ଧଳା ବଉଦ ଭାସଇ
 ଜହ୍ନକୁ ଘୋଡ଼ାଏ ନିମେଷ ପାଇଁ,
ଧରଣୀ ଉପରେ ପକାଇ ପକାଇ
 ପାଣିଚିଆ କଳା ପାତଳ ଛାଇ ।
ଶଶୀ ଓ ତାରକା ଆଲୁଅ ପକାଇ
 ରଜନୀ ଦେହରୁ ପୋଛନ୍ତି କଳା,
ଜୁଳୁଜୁଳା ପୋକ ନିଆଁ ଗୁଣ୍ଡ ପରି
 ଅନ୍ଧାର ଭିତରେ ଦିଶନ୍ତି ଭଲା ।
ପିଢ଼ାରେ ପିଢ଼ାରେ ଲାଉ କଖାରୁର
 ଲତା ମାଡ଼ି ଫୁଲ ଦିଏ ଘୋଡ଼ାଇ,
ଧରଣୀଏ ସବୁ ଯେ ଯାହା ସ୍ଥଳରେ
 ରଂଗା ପୋଷି ଦେଇଥାନ୍ତି ମଡ଼ାଇ ।
ବାଟ ମାଆ ମନ କପଟ ହୁଅଇ
 କୋଳରେ ଧରିଲେ ସୁନ୍ଦର ଛୁଆ,
ଧରଣୀର ଶିଶୁ ଦିଶେନା ସୁନ୍ଦର
 ଫୁଲ ଫଳ ମିଶି ହୋଇଲେ ଥୁଆ ।

ମେଦୁଅ ଅଶିଣ ଅସରଆ ବର୍ଷା
ବଡ଼ ବଡ଼ ଟୋପା ଦିଏ ବରଷି,
ନଈରେ ନଈରେ ଜଳ ଛଳେ ଛଳ
ଶୋଇ ନରନାରୀ ଶୁଣନ୍ତି ରସି ।
ଗଛରେ ଗଛରେ ଫୁଲ ଫୁଟିଥାଏ
ଗଣ୍ଡିକେ ଅଣ୍ଡିରୀ ଗଣ୍ଡିକେ ମାଈ,
କାହୁଁ କେତେ ଜାତି ପୋକଜୋକ ଆସି
କେଶର ଖାଆନ୍ତି କି ଗୀତ ଗାଇ ?
ମାଈ ଫୁଲ ଛଳେ ଥାଏ କଢ଼ିଟିଏ
ଚିହ୍ନାଇ ଦେବାକୁ ପୁରୁଷ ନାରୀ,
ସେତକ ନ ଥିଲେ କେହି କି କୋଉଠି
ଏତେ ସହଜରେ ପାରନ୍ତା ବାରି ?
ବଣରେ ବଣରେ କେତେ ଜାତି ଫୁଲ
ଫୁଟଇ ବଣକୁ ଶସିତ କରି,
ଫୁଲରେ ଫୁଲରେ ହୁଏ କି କଜିଆ
ଗୁଣୁଗୁଣୁ କରି ଉଡ଼ିଲେ ଅଳି ?
ବାଡ଼ରେ ବାଡ଼ରେ ଫୁଟିଯାଏ କେତେ
ନେଳିଆ ନେଳିଆ ଅପରାଜିତା,
ମୂଷା କାନପତ୍ରି ଗଡ଼ଣ ଛାହାର
ବାଦ ନାହିଁ ତେବେ ଜଗତଜିତା ।
ଛଣପଟ ଗଛ ଅଗରେ ଅଗରେ
ଫୁଟିଯାଏ କେତେ ବସନ୍ତ ଫୁଲ,
ଆଉ ଯେତେ ଜାତି ହଳଦିଆ ଫୁଲ
କେହି ଦେଖେ ନାହିଁ ତା ସମତୁଲ ।
ଗଡ଼ଣରେ ସେ ତ ପ୍ରଜାପତି ଚରି
କଏ ବା ତା ସଙ୍ଗେ ହୋଇବ ସରି,
ଦେହରେ ଦେହରେ ଭଅଁର ବସାଇ
ଯାର ସୁଷମାକୁ ରଖଇ ଧରି ।

ନଈ ପାଖେ ପାଖେ      ଫୁଟିଥାଏ ତଣ୍ଡି
ନଧାବଲ୍ଲ କେତନ ଉଡ଼ାଇ କରି,
ସେଥିରେ ବା କୋଉ      ସଉରଭ ଥାଏ
ଭୃଙ୍ଗାକୁ ଦେଖାଇ ହୁଏ ସେପରି ।
ଲେଖକ ନୟନ      ଲୋଡ଼ନା ଶୁକଲ
ଖୋଜଇ ସେ ଖାଲି କଜ୍ୱଳ କାନ୍ତି,
ତା ସଙ୍ଗେ ମୁରଲୀ      ମୟୂରଚନ୍ଦ୍ରିକା
ଗୁଞ୍ଜମାଳ ଆଉ ଚନ୍ଦନପାଟୀ ।
ଘେତ କି ସେ ରୂପ      ଦେଖିବ ସେ କେବେ
ଚରମାୟୁ ଆସି ଗଲଣି ସନ୍ନ,
ମରଣ କାଳରେ      ଶ୍ରୀକୃଷ୍ଣ କି ସତେ
ଛୁଡ଼ା ଦେବେ ଆଗେ କରୁଣା କରି ?

## ( ହେମନ୍ତ ଓ ଶିଶିର )

ହେମନ୍ତ ଆସଇ      ହିମ ବୋଳି ହୋଇ
କାକର ପଡ଼ଇ ଟିକଏ ଖାଲି,
ଧରଣୀ ଶରୀର      ଦିଶେ ଧୂଳଧୂଆ
ସବୁଜତା ଯାଏ କୁଆଡ଼େ ଚୂଲି ।
ଗଗନ ଦିଶେ      ଟିକେ ପାଉଁଶିଆ
ଚନ୍ଦ୍ର ତରା ହୁଏ ଟିକେ ମଳିନ,
ଉତ୍ତର ଦିଗରୁ      ବହେ ଶୀତ ବାଆ
ଗଚ୍ଛର ଆସଇ ସରେ ନଳିନ ।
ବଢ଼ି ବଢ଼ି ଆସେ      ମନକୁ ରଜନୀ
ଦକ୍ଷିଣକୁ ଢଳି ପଡ଼ଇ ରବି,
ଗଗନେ ଭୁବନେ      କୋଉଠେଇ ହେଲେ
ଦେଖାଯାଏ ନାହିଁ ଶ୍ୟାମଳ ଛବି ।

କ୍ଷେତରେ କ୍ଷେତରେ      ପାଚି ପାଚି ଯାଏ
ଅଶିଣ ଧାନର ଶାଗୁଆ ଗନ୍ଧ,
ଗଗନ ପଥରେ      ଆଡ଼େଇ ଆଡ଼େଇ
ରବି ଚୂଲିଯାଏ କରିଣ ଛନ୍ଦ ।
ପାଚିଲା ଧାନର      କୁଞ୍ଚ କୁଞ୍ଚ ବେଣୀ
ସଜାଇ ଦିଅଇ ଧାନ କିଆରି,
ଚଷା ଚଷୁଣୀଏ      ଦେଖି ଖୁସି ହୋଇ
ଉଷୁମ ଚଳପ ଦିଅନ୍ତି ପାରି ।
ସକାଳୁଆ ଧାନ      କାକରରେ ଓଦା
ଏଡ଼େ ଯତନରେ ସାଉଁଲେ କିଏ,
କବା ଫଳଭିତରେ      ସୁଖ ଶଯ୍ୟାରେ
ପୁଅ ଝିଅ ଧରି ଶୁଅଇ ସିଏ ?
ସଂଜ ସକାଳରେ      ଶୀତେଇ ଶୀତେଇ
ଉଠଇ କାହିଁକି ସଭିଙ୍କ ଦେହ,
ଶୀତ ଉତ୍ରାଏ କି      ଥରାଏ କି ଅବା
କୋଳକୁ ନେବାକୁ କରଇ ସ୍ନେହ ।
ସପ୍ତର୍ଷି ଦିଶନ୍ତି      ଗଗନ ଦେହରେ
ପ୍ରଶ୍ନବାଚକର ଚିହ୍ନଟି ପରି,
ଉତ୍ତର ଦିଗକୁ      ଦେଖାଇ ଦିଅନ୍ତି
ଧ୍ରୁବତାରାଟିକୁ ସଲଖ କରି ।
ସାଗର ଜଳ      ଚହଲେ ଅଳପ
ଧୀରେ ଧୀରେ ଦୋଳି ବୋଇତ ଭାସେ,
ରାଜହଂସ ଡେଣା      ମେଲି ଗୀତ ଗାଇ
ଉଡ଼ି ଉଡ଼ି ଯାନ୍ତି ନୀଳ ଆକାଶେ
କୋଉ ମୁନାଫାର      ଆଶାଟିଏ ରଖି
ସଂସାର ସାଗରେ ଜୀବନତରୀ,
ଭସାଇ ଦିଅନ୍ତି      ଅନ୍ଧ ହୋଇ ସବି
କିଏ ବା ଭୁଲଇ ନଂଗରୁ ଧରି ।

କାଉଙ୍କ ବୋବାଳି ଶୁଣଇ କରୁଣ
ଦେହରେ ବୋଲନ୍ତି ଚକ୍‌କଣ କଳା,
ଶରତ ସୁଷମା ସାଇତି ରଖନ୍ତି
ଚଇତେ ପୀରତି କରିବେ ପର !
ହେମନ୍ତ ଶିଶିରେ ଆଖି ଠାରଦିଏ
ଆସିବା ପାଇଁକି ତା ପଛେ ଧାଇଁ,
ଦୁହେଁ ଦୁହିଁଙ୍କର ଥାଆନ୍ତି ପାଖରେ
ଜଣେ ଜଣକୁ ତ ଥାଏ ଅନାଇଁ ।
ଆସିଲ୍ ବେଳରେ ଆଗ ପଛ ହୋଇ
ଆସନ୍ତି ଧରାକୁ ଥରାଇ କରି,
ମଝିରେ ମିଶନ୍ତି ଏକାକାର ହୋଇ
କ୍ଷୀର ନୀର ମିଶିଯାଏ ଯେପରି ।
କୁହୁଡ଼ି ଆସଇ ଅନ୍ଧାରିଆ କରି
ଗଛ ପତରରୁ ଝଡ଼ଇ ପାଣି,
କୁହୁଡ଼ି ରାତିରେ ଶୀତ ଉଣା ହୁଏ
କିଏ ବା ନ ଅଛି ଏ କଥା ଜାଣି !
ପବନ ଦେହରେ ଭାସଇ ଅମ୍ବର
କିଏ ସେ ମାରଇ ଫଗୁ ପିଚ୍‌କାରି !
ସକାଳୁଆ ଖରା ଭେଦି ପାରେ ନାହିଁ
ଆସିପାରେ ନାହିଁ ଚଂଚଳ କରି ।
କୁହୁଡ଼ି ଅନ୍ଧାରେ ଲୁଚି ଲୁଚି କରି
ଆସଇ କି ଆଉ ରତୁରାଜ ବସନ୍ତ,
ଦେଖାଇ ଦେଖାଇ କହିଦେଇ ଯାଏ
ହେମନ୍ତ ଶିଶିର ହୋଇବେ ଅନ୍ତ ।
କୋଇଲିଟା ସତେ କୋଉଠେଇ ଥାଏ
କହଇ କାହାକୁ ମଧୁର କଥା,
ଗଛ ଲତା ସବୁ ଲୁଚିଇ ଲୁଚିଇ
ସଜାଡ଼ି ହଅନ୍ତି ମୁକୁଳେ ମଥା ।

ଆମ୍ବ ବଉଳର କାନ୍ଥ କାନ୍ଥ ହୋଇ
ବାସ ଚହଟଇ ପବନେ ଭାସି,
ମହୁମାଛି ସବୁ କଅଁଳେଇ ଗାନ
ଚୁମ୍ବି ଯାନ୍ତି ମହୁ କୁଆଡ଼ୁ ଆସି ।
ବଉଳ ଦେହରେ ପଡ଼ିଲେ କୁହୁଡ଼ି
ପୋଡ଼ଇ ସେ ଜଳ ସରେ ପୀରତି,
କାକର ପାଣିରେ ପୋଡ଼ଇ ବା କିଏ ?
ପର ପରଶରେ ମରେ ଯେ ସତୀ ।
ଥଣ୍ଡା ପାଣିରେ କି ଛପି ରହିଥାଏ
ଦାରୁଣ ବିରହ ଅନଳ ହୋଇ,
ପୋଡ଼ଇ ବିରହୀ, ବିରହିଣୀ କାନ୍ଦେ
ରଂଗ ଗଣ୍ଡ କରପଲ୍ଲବେ ଥୋଇ ।
ମଳୟ ପବନ ଆକୁଳ ହୁଅଇ
ମୁକୁଳାଇ ଦିଏ ଧକ୍ଷିଣ ଦ୍ୱାର,
ଥର ଥର ଥର ବହି ଯେ ଆସଇ
ଚନ୍ଦନ ବୋଳିବ ଦେହରେ କାର ?
ସେ ଚନ୍ଦନ କ'ଣ ହିତ କରେ ନାହିଁ
ବାଉଁଶ ଗଛଟା ଯାଏ ଝାଉଁଳି,
କିବା ସେ ପ୍ରଲେପ ଅଂଟେ ନାହିଁ ତାକୁ
ଛଡ଼ାଇ ପାରେନା ତାର କାଉଳ ?
ବିରହୀ ଗଛ କି ବିରହ ତାତିରେ
ଦେହଟାକୁ ତା'ର ଦିଅଇ ଦହି,
ଶୀତ କାକରରେ ରହି ରହି କରି
ଦେହ ତାର ଆଉ ପାରେନା ସହି ?
ଗହୀର ମାଟିରେ ପାଣି ପଶିଯାଏ
ବାଉଁଶ ଗଛର ଚେରଠୁଁ ଦୂରେ,
ତେଣୁ କି ପାଦପ ପତର ଅଜାଡ଼ି
ପୀରତି-ପଣାକୁ ଏଡ଼ାହେଁ ଝୁରେ ?

ଆଜ ସବୁ ଗଛ ଚତର ଝାଡ଼ନ୍ତ
କଅଁଳବା ପାଇଁ ଆହୁରି ଥରେ,
କାଖରେ କାଖରେ ଶୋଇଥିବା କଳ
ହସୁଁ ଉଠି ଆଖି ଚୋଳୁ ମଳେ ।
ବାଉଁଶ ଗଛରୁ ଶିଗ୍ର ଛୁଟିଯାଏ
ଶୁଖିଶାଖି ଯାଏ ଡାଙ୍ଗଟା ପର,
ବସନ୍ତ କାହିଁକ ନରଦୟ୍ ହୋଇ
ତାର ସୁଝ-ଶାନ୍ତ ହଅଇ ହର ?
ପାପୀ ସଦେ ନାହିଁ ପୁଣ୍ୟବନ୍ତ ଗ୍ଭଇ
ପଡ଼ଲେ ଚଢ଼ଇ ଡଅଁଇ ନାହି,
ହଂସାରେ ହଂସାରେ ଜଳଇ ଭିତରେ
ସୁଖ ଶାନ୍ତ ଆଜ ପାଏନା କାହିଁ ।
କୃଷ୍ଣ ସଢ ବାସ ଲୋଡ଼ ନାହିଁ କଂସ
ଖୋଜଇ ସେ ଖାଲ ମାରିବା ପାଇଁ,
ଆଣିବ ଧରାଇ ସମ୍ଭବ ନାହିଁ ତ
ମରିଯିବ ପଡ଼ ତାହାକୁ ଗୃହିଁ ।
ମଙ୍କର ସେ ତ ଅମର ହୋଇବ
କୃଷ୍ଣଙ୍କ ଦେହରେ ପାଇବ ଥାନ,
ଲେଖକ ସେପରି ମରିବ ନାହିଁ କ
ମର ପାଇବନ ତା ସମ ମାନ ?

———

# ଶ୍ରୀକୃଷ୍ଣଙ୍କ ରୂପ-ଗୁଣ କଥନ

ପାଞ୍ଚ ସାତ ଗୋପୀ ଏକାଠି ହୋଇଲେ
କୃଷ୍ଣ ସୁଷମାକୁ ଝୁରନ୍ତି ଖାଲି,
"ଛୁଆ ହାଣ୍ଟିଏ ପର ଝୁଲି ଝୁଲି
ସବୁବେଳେ ଖେଳ ଯାଏ ସେ ଗୁଳି ।
କାଳିଆ ରୂପକୁ ଯଶୋଦା ଦେଇଛି
ହଳଦିଆ ଲୁଗା ପିନ୍ଧାଇ ବାନ୍ଧି,
କଏ ସେ ବା ଅଛି ମଂଚମଣ୍ଡଳରେ
ଛୁଆକୁ ସୁଆଗ ଦେବାନ ପାରି ?
କୁଂଚୁ କୁଂଚୁକିଆ କାଳିଆ କେଶକୁ
ମାନଇ କଟରେ ମୟୂର-ଖାଳି,
ଜୁଡ଼ାକୁ ବେଢ଼ାଇ ଦେଇଛି ଜନନୀ
ନାଲି କଳା ମିଶା କାଇଁଚମାଳ ।
ଅଧରରେ ବୋଳ ଦେଇଛି କେ ଯତେ
ବଧୂଳି ଫୁଲରୁ ରଂଗିମା ଆଣି,
ତା ସଂଗକୁ ପୁଣି ଆଖିରେ କୁଟିଛି
କୋଉଠୁଁ ଆସି ସେ ବଂକା-ଚାହାଣୀ ।
କପାଳରେ ତାର ନାଇ ଦେଇଅଛି
ସୁଗୋଲ କରଣ ଗୋରଚନା ଚଟା,
ଆଖି ଯୋଡ଼କ ତ ସଦା ଢଳଢ଼ଳ
ଯତେ କ ତହିଁରେ ଭାସଇ ଚନ୍ଦ୍ରା ।

ଆଉ ପିଲା କ'ଣ ଗୋପରେ ନାହାନ୍ତି
କେହି କି ତା ପରି ଏଡ଼େ ସୁନ୍ଦର ?
ଆଉ କିଏ ଭଲା ଘଡ଼ି ଘଡ଼ିକରେ
କରିପାରେ ଏତେ ନୂଆ ହୁନ୍ଦର ?
ବଳରାମ ପରା ସେହି ଘର ପିଲା
ସିଏ କ'ଣ ହେଲେ ତା ସଂଗେ ସରି ?
କିଏ ବା ରମଣୀ ଅଛି ଏ ସଂସାରେ
କୋଳେ ନେଇ ଚୁମା ଦେବନି ଧରି ?
ପେଟର ଛୁଆକୁ ଆଡ଼େଇ ଦେଇ ଲୋ
ତାକୁ ଧରିବାକୁ ବଳିବ ମନ,
କ୍ଷୀର ଦେବା ପାଇଁ କେଉଁ ଜନମାର
କାନ କନ ହେବ ନାହିଁ ବା ଥନ ?
କୋଉ ବାପର ବା ଯୁଣ୍ଡି ଫୁଲିବନି
ଏପରି ପୁଅକୁ ପାଇଲେ କୋଳେ,
କିଏ ଏ ପୁଅକୁ କାଖରେ ଧରିଲେ
ସୁଖରେ ଭାସିବ ନାହିଁ ବା ହେଲେ ?
କୋଉ ପିଲା ଧରୁ ନାହିଁ ବା ବଇଁଶୀ
କିଏ ବା ବଜାଏ ଏତେ ବାଗରେ,
ପିଲାଟାଏ ସତେ କୋଉଠୁ ଶିଖିଲା
ଗୀତ ଗାଇବାଏ କେତେ ରାଗରେ ?
ନାଚୁଥିଲେ କେତେ ନାଚୁଣୀ ପିଲା ତା
ସରମେ ଚୋଡିବେ ନଜର ମୁହିଁ,
ତା ସଂଗେ ନ ପାରି ରାଗେ ରାଗିକରି
ଆଖିରୁ ସିନା ଲୋ ଢାଳିବେ ଲୁହ ।
ବୁଢ଼ା ଖୁଂଟ ପରି କହିବ ଲୋ କଥା
ଫାନ୍ଦକରି ଏତେ କୋଉଠୁ ଆଣେ ?
ପିଲାଟାଏ ସିନା ବଡ଼ ମଣିଷର
କଥାକୁହା ଢଂଗ ବହୁତ ଜାଣେ ।

ଯେତକ ଭଲ ସେ  ସେତିକ ମନ୍ଦ ଲୋ
ସବୁ ନୁଝ୍ଝୁଛି କରେ ବସି,
କାନ୍ଦୁ କାନ୍ଦୁ ସତେ  କପଟ ସେଇନା
ଠୋଅ ଠୋଅ କରି ଦିଏ ଲୋ ହସି ।
ହସିବା କାନ୍ଦିବା  ଦୁଇଟି ଯାକ ଲୋ
କପଟ ଏକାଠି କରଇ ସତେ,
କେହି ତ କାହାକୁ  ଦେଖିପାରେ ନାହିଁ
ଶୁଣିଲେ କି କେହି ଯିବ ଲୋ ପ୍ରତେ ?
ସାଥି ଟୁଆଙ୍କୁ ଲୋ  କୁଟି ଦେଇଯିବ
ଆହୁରି ସେଇନା ଭୁନାଇ ଦେବ,
ସବୁ ପିଲାଯାକ  ମିଳମିଶି ଥିବେ
ତାହା ପରି ଆଉ କିଏ ସେ ହେବ ?
ଗଉଡ଼ ପିଲାର  ଲକ୍ଷଣ କି କାହିଁ
ଅଛି ବା ତାଠାରେ ଠିକିଏ ହେଲେ,
କେଉଁ ପୁଣ୍ୟରୁ ବା  ଦେବତାଏ ଯାଚି
ନନ୍ଦ-ଯଶୋଦାଙ୍କୁ ଏ ପୁଅ ଦେଲେ ?
ଯଶୋଦା କୋଳରେ  ଏ ପୁଅ ଦିଶଇ
କାଉର ବସାରେ ମୟୂର ପରି,
ମାଆକୁ ପୁଅକୁ  ଠିଆ କରିଦେଲେ
କେହି ଦିଶେ ନାହିଁ କାହାରି ସରି ।
ଖିରସ ପଣରେ  ବଳିଛି ସଭିଙ୍କୁ
ପୁଣି ସନ୍ଥ ପଣେ ଭୁଲଯୀଟିଏ,
ଟୋକାଠାରେ ପୁଣି  ଏତେ ଗୁଣ ଅଛି
ଦେଖିକରି ତାକୁ ଜାଣିବ କିଏ ?
ସୁନ୍ଦରପଣର  ପଟାନ୍ତର ନାହିଁ
ବାଛୁନେବ କରି ସବୁଠୁଁ ସାର,
ଏ,ପରି ପୁଅକୁ  କୋଳରେ ଧରିଲେ
କୁଣ୍ଢେମୋଟ ମନ ନ ହେବ କାର ?

ଗାଈ ବାଛୁରିଙ୍କ ମନର କଥା କ
ଜାଣି ସେ ପାରନ୍ତି କହଇ ତାହା,
ତାର ପଛେ ସବୁ ଧାଆଁନ୍ତ କାହ୍ନଙ୍କ
କରନ୍ତି ସେଇତା କହନ୍ତେ ସେ ଯାହା ।
ଚଢ଼େଇ ବୋବାକୁ ନକଲ କରନ୍ତି
ଶୁଣିଲେ ଛଡ଼ାଇ ବୋବାଇ ଦିଏ,
ଦଉଡ଼ିବ ଯେବେ ବାଛୁରି ପଛରେ
ତାର ବେଗକୁ ବା ମାପିବ କିଏ ?
ନକଲକୁ କ'ଣ ଅସଲ କରିବା
ପାଇଁକି ସେ ପୁଅ ଅଛନ୍ତି ଜନମି,
ତା ବୋବାଳ ସବୁ ଶୁଣିବ ଲୋ ଯେବେ
ଅସଲ ବୋଲିଣ ଯିବ ଭରମି ।
ଶୋଇଥିଲେ ଆସି ବଳେ ଗେଂଜହୋଇ
ଶୋଇବ ଲୋ ପାଖେ ନ କହି କଛି,
ଥାନ ଅଥାନରେ ହାତ ବାଜିଗଲେ
କାହ୍ନଁ କ ଲୋ ଏତେ ହସେ ସେ ଛି ଛି ।
ମୁଆଁଗ କରିଣ କାଖରେ ଧରିଲେ
ମୁହଁ ପାଖେ ଦେବ ଗାଲକୁ ଗେଂଜ,
ସେଇ ନ କରେ ଲୋ ମନରେ କାହ୍ନିଁକ
ପୀରତି-ନଆଁ କୁ ଦିଅଇ ଟେଂଗି ।
ଛାଡ଼ି ଚାଲିଗଲେ ମନଟା କାହିଁକି
ଘାଂଟିଘୁଂଟି ହୁଏ ତାହାରି ପାଇଁ,
ବିକଳ ଲାଗଇ ଦିନଟାଯାକ ଲୋ
ମନ ହୁଏ ପୁଣି ଧରନ୍ତି ଯାଇଁ ।
ସେ ତ ଯାଏ ଯାଏ ହେଜ ଶୋଷ ସବୁ
ଆଖିରୁ ନିଦକୁ ନେଇଣ ଯାଏ,
ରାତିଯାକ ଝାଳ ଛଟିରପଟିରେ
ଦେହଟା କ ସତେ ତାତିଣ ଥାଏ !

ଜହ୍ନକୁ ଦେଖିଲେ          କାଜଳ ଲାଗଇ
ଭୂଇଁରେ ଶୋଇବା ପାଇଁକି ମନ
ହୁଏ ସବୁବେଳେ,          ଆଖି ଦେଖୁଥାଏ
ତା ସୁଷମା ସମ ନୀଳ ଗଗନ ।
କାନ ଡେରି ହୁଏ          ଶୁଣିବା ପାଇଁକି
ତାର ସ୍ୱାଦୁ ସ୍ୱାଦୁ ବଇଁଶୀ ସ୍ୱନ,
ସ୍ମୃତି ଥରୁଥାଏ          ଖାଇ ଦୁହୁଦୁହୁ
ଉଚ୍ଚାଟ ହୁଅଇ କାହିଁକି ମନ !
ଥନ ଥନ ହୁଏ          ଆଖି ପୋଡ଼ାକ ତ
ନଚିଡ଼ ପଡ଼ଇ ଉଷୁମ ଲୁହ,
କହିପାରିବ କି          କା ଆଗେ ଏ କଥା ?
ଜାଣିଛ ତ ସବୁ କଦମ କଢ ।
କାଖରୁ ଓହ୍ଲାଇ          ଠିଆ କରିଦେଲେ
ଆମ୍ବିଳାଇ ହଏ ମୁହଁକୁ କିଆଁ ?
ହସି କାନ୍ଦକରି          ହେଇ ଠାଆକରେ
କେଜାଣି କାହିଁକି ହୁଅଇ ଠିଆ !
ପୁଣି ଧରିବାକୁ          ହାତ ବଢ଼ାଇଲେ
ଦଉଡ଼ ପଳାଏ ହେନୋ ଧରା,
ଦଉଡ଼ୁ ଦଉଡ଼ୁ          ଅନାଏଁ ପଛକୁ
ଟିକେ ଠିଆହୋଇ ହୁଏ ଗ୍ଲେହରା ।
ଆଜହୁଁ ତାହାର          ଆଖିଠାରି କ'ଣ
ଦେଖିବ, ଠାରରେ କହିବ ପରା !
ସେଇଥିରେ ତାର          ହଳର ଗୁମର
ଥୁଏଁ ଥୁଏଁ ପଡ଼ି ଯାଏ ଲୋ ଧରା ।"
ସେତିକି ବେଳରେ          ଆଉ ଜଣେ ଆସି
କହିଲା ଗରଜି, "ଶୁଣ ଲୋ ଶୁଣ,
ଆସ, ସବୁ ଦେଖ,          କଅଣ କରିଛି,
ଯଶୋଦା ସେରନ୍ଧା ପୁଅର ଗୁଣ ।

ଏଇନାଏଁ ଗଲି ଗାଈଟାଏ ପାଇଁ
ମୋ ପଛରେ କ'ଣ ଥାଏ ସେ ଜଗି ?
ଗଲି ଲୋ ଯୋଉନା କୋଉଠେଇଁ ଥିଲା
ଦୁଆରେ ଯାଇଛୁ ନେଂଗୁଏ ହଗି ।
ଅଦ୍ଭୁତ ପୁଅ ହୋଇଛୁ ଲୋ ଏକା
ଆଉ କାହା ଘରେ ପୁଅ କ ନାହିଁ ?
କଏଁ ବା ହୋଇଛୁ ପୁଅ ସାଙ୍ଗୁ ଲୋ
ଯଶୋଦା ପୁଅକୁ ବସିଛୁ ଚାହିଁ ?
ଚାଲ ସବୁ ମିଳି ଯିବା ତା ଘରକୁ
କହିବା ତାହାକୁ ରଖୁ ତା ପିଲା,
ନ ହେଲେ କହୁଛୁ ଆଜଠୁଁ ତାହାର
ରାଣୀପଣ ସବୁ ହୋଇବ ଢିଲା ।"
ସମସ୍ତେ ସେଇଠୁ ସାଙ୍ଗ ହୋଇ କରି
ଗଲେ ରାଗିମାଗି ନନ୍ଦର ଘରେ,
ଦେଖିଲେ ଯଶୋଦା ଠିଆ ହୋଇଛନ୍ତି
ପୁଅ ଚନ୍ଦ୍ରମାକୁ ଧରି କାଖରେ ।
କହିଲେ, "ଗୋ ରାଣୀ ! ଶୁଣ ପୁଅ ଗୁଣ
ଏଇନାଏଁ ଗଲି ସଉଦା ପାଇଁ,
ଖୋଜିଲି ମୁଁ ତାକୁ ଚାରିଆଡ଼େ ଚାହିଁ
ଦେଖିଲିଁ ତ ସତେ କୋଉଠି ନାହିଁ ।
ଦୁଆର ଦେଇ ମୁଁ ଗଲି ଗୋ ବାହାରେ
କେତେବେଳେ ଆସି ପଶିଲା ଘରେ,
ଦହି ହାଣ୍ଡିଟାଏ ଥୋଇ ଦେଇଥିଲି
ପାଲମଲା ଦେଇ ଟେଙ୍ଗଡ଼ାଟାରେ ।
କାହିଁକି ଗୋ ସତେ ଭାଙ୍ଗିଦେଲା ତାକୁ
ଘରଯାକ ଖେଳୁଅଛି ଲହଡ଼ି,
ଦେଖି ପକାଇଲା ମୋତେ ଗୋ ଯୋଉନା
ପଳାଇ ଆସିଲା ପୁଡ଼େ ଦଉଡ଼ି ।

ପୁଅର ତ ଆଉ ଭଲ ଗୁଣ ନାହିଁ
ରଖିଛୁ କେବଳ ଯେତେକ ଦୋଷ,
ତୁମେ ତ ଗୋ ରାଣୀ ! କହିଦେବ ଯେବେ
ନ ବୁଝି ମୋଠାରେ କରିବ ରୋଷ ।
ତୁମ ପରି ମାଆ ପେଟରୁ ଜନମି
କାହିଁକି ହେଲା ଗୋ ଏଡ଼େ ଖରସ,
ଆଜହୁଁ ତ ତାର ଏଡ଼େ ହୁରୁକରୁ
ବଡ଼ ହେଲେ ନ କରିବ ବା କସ ?
ଆକଟ ନାହିଁ ଗୋ ପିଲାଟାକୁ କଆଁ
କେତେ ବା ସହିବୁ ତାର ଅଦ୍ଦଳ,
ଗରିବ ଘର ତ, କୋଉଁଠୁ ପାଇବୁଁ
ରାଣୀ କି ହୋଇଛୁଁ ତୁମରି ଭଳି ?"
ଆଉ ଜଣେ ଆସି ପହଞ୍ଚିଲା ସେଠି
ହାତରେ ଗୁଡ଼ାଏ ଖପରା ଧରି,
କହିଲା ସକାଇ, "ଦେଖିଲ ଗୋରାଣି !
କଅଣ କରିଛୁ ପୁଅ ତୁମରି ?
ବଡ଼ା ଆଡିକାକୁ ପୋଡ଼ପାଡ଼ କରି
ଧୋଇଧାଇ ଦେଇଥିଲି ଉଗାଡ଼ି,
ସବୁତକ ସଡ଼, ପୁଅ ପଶିଗଲା,
ହାତରେ ଧରିଚି ଗୋଟାଏ ବାଡ଼ି ।
କେହି କାହିଁ ନାହିଁ, ଦେଖିଲା ଯୋଉଠୁ
ଗୋଟି ଗୋଟି କରି ଦେଲା ବାଡ଼େଇ,
ଖପରାଗୁଡ଼ାକ ସ୍ୟାଡ଼େ ସ୍ୟାଡ଼େ କରି
ଗୋଡ଼ରେ ଗୋ ପେଲି ଦେଲା ଗଡ଼େଇ ।
ଦେଖି ପକାଇଲି, ହାଆଁ ହାଆଁ କରି
ଧାଇଁଗଲି ବେଗେ ଧରିବି ବୋଲି,
ପଳାଇ ଆସିଲା ଆଗେ ଆଗେ ମୋର
କାଖ ହୋଇଗଲା ହାତକୁ ତୋଳି ।

କହୁଛ ଗୋ ଭଲ ! କାହୁଁ ଆଣିବ ମୁଁ
ଏତେ ଠେକ ଘଡ଼ି ? ଗରିବ ଘର,
କେତେ ଦିନେ ଭଲ ହାଣ୍ଡି ଓ ଆଣ୍ଠିକା
ଦୁଧ ଘିଅ ପିଇ ହୋଇବ ସର ?”
ଆଉ ଜଣେ ଆସି କହିଲା ସେଇଠି
କଥାର ଉପରେ ପକାଇ ନଥା,
“ପୁଅ ବଳଟକ କ ନୁରୁଖୁରୁ ଲୋ
ହାତ ଗୋଡ଼ ସବୁ କହୁଛି କଥା !
“ଗଉଡ଼ ଗାଆଁରେ କୁମ୍ଭାର କ ଅଛି
ମଥୁରାକୁ କଏ କେତେ ଧାଇଁବ,
ଖାଲି ହାତେ ଗଲେ କଅଣ ବା ହେବ
କଏ କାହୁଁ ଏତେ ଧନ ପାଇବ ?”
ବୁଢ଼ୀଟିଏ ଆସି କହିଲା ଧକାଇ,
“ନାତିଟିକୁ ଧରିଥିଲି ମୁଁ ବସି,
କୋଉ ଆଡ଼ୁ ଧାଇଁ ଗଲା ଗୋ ପାଖକୁ
କ ସୁନ୍ଦର ହୋଇ ବସିଲା ହସି ।
କେତେବେଳେ ତାକୁ କଅଣ କଲା ଗୋ
କାନ୍ଦିଲା ତ ଖାଲି ଧରିଣ ରାହା,
ଶୁଣିଲା ବେଳକୁ ଅଛି କ ପାଖରେ
ବୁଝାଇଲା ପୁଣି ଆସି ତା ମାଆ ।”
ଆଉ ଜଣେ ଗୋପୀ ପହଞ୍ଚିଲା ଆସି
ହାତରେ ଧରିଛି ଗୋଟାଏ ଛନ୍ଦ,
କହିଲା, “ଗୋ ରାଣି ! ଆକଟ କରୁନା ?
ପୁଅ ହନ୍ତୁ ଦିନ ହେଉଛି ମନ୍ଦ ।
ରାତି ପାହାନ୍ତାରୁ କେତେବେଳେ ଯାଇ
ଫିଟାଇ ଦେଇଛି ବାଛୁରୀପାଳ,
ଦୁଧ ପିଇସାରି ଠିଆ ହୋଇଛନ୍ତି
ମାଆ ଗୃହଁଛନ୍ତି ତାଙ୍କର ବେଳ ।

ଓଳକର ଦୁଧ ମହଣେ ହେବ ଗୋ
କଂସକୁ କୋଉଠୁ ଦେବ ମୁଁ ଦହ୍ନ,
ଅସୁର ରଜାକୁ ଚହ୍ନି ନା କ ତୁମେ
ବୁଝାଇବ ତାକୁ କଅଣ କହ ?”
ସବୁ ଶୁଣି ଶୁଣି କହିଲେ ଯଶୋଦା,
“ଜାଣିଲ ଲୋ ସବୁ ସହୁଛ ଯେତେ,
ଜଣ ଜଣ କଥା ସେଇପ୍ରା ସେଇପ୍ରା
ମାଠିମୁଠି କରି କହୁଛ କେତେ !
ପିଲାଟାକୁ କେତେ ମାରିବ ଲୋ ଆଉ
ମାଇଲେ କ କଛୁ ଜାଣୁଛି ସିଏ,
ସେଇଥି ପାଇଁ କ ସହୁଛି ଲୋ ସବୁ
ଯେତେ ଜାତକରି କହୁଛି ସିଏ ।
ଶୃଙ୍ଗ ପୁଞ୍ଜାଏ ତ ନେଇଯା ଲୋ ଘରୁ
ଗିରସ୍ତକୁ କହ ନେଉ ସେ ଦୁଧ,
ଏଇଥି ପାଇଁ କ ସକାଳଠାରୁ ଲୋ
ତୁଚ୍ଛାକୁ କାହିଁକ କରୁଛ ଯୁଦ୍ଧ ?”
ତୁମମାନଙ୍କର ନାହିଁ କ ଲୋ ଦୋଷ
ହସିଖୁସିର ସବୁ ହେଉନା ଭଆଁ,
ବସ୍ତୁର ପିଲା ତ କଅଣ କରିବ
ଏଇଥି ପାଇଁକ ଲଗାଅ କଆଁ ।
ସରିବ କଆଁ ଲୋ ଜାଣିଲ ଲୋ ସତ,
କରିବ କ ସେଥିପାଇଁ କଜଆ,
ଯଶୋଦା ଜାତକେ ନାହିଁ ଲୋ ସେଇଟା
ନେଉନା କାହିଁକ ହେଲ ଯେ ଠିଆ ?”
ଦିନେ କୃଷ୍ଣ ବସି ମାଟି ଖାଉଥିଲେ
ବଳରାମ ଦେଖି କହିଲେ ଯାଇ,
ଯଶୋଦା ଯୋଉନା ଶୁଣିଲେ ସେ କଥା
ତରବର ହୋଇ ଗଲେ ସେ ଧାଇଁ ।

କହିଲେ, "କାହିଁକି ମାଟି ତୁ ଖାଉ ରେ ?
ଦେହରେ ମାଉଁସ ଲାଗିବ ନାହିଁ,
ସର ଲହୁଣୀ ତ ଥୁ ଥୁ କରି ଫିଙ୍ଗୁ
ଗୁଣ୍ଡାଇଲେ ଦୁଧ ଖାଉ ତ ନାହିଁ ।
ଦୁଧଖିଆ ପିଲା ଦୁଧ ଖାଇ ଖାଇ
ମାଟି ଖାଇବାକୁ ହୁଅନ୍ତି ବାପୁଁ,
ରକତରୁ ଲୁଣ ଊଣା ହୋଇଯାଏ
ପ୍ରକୃତି କେବଳ ତା ପାଇଁ ଦାୟୀ ।
ସଇନ୍ଧବ ଲୁଣ ପାଣିରେ ଗୋଳାଇ
ପିଆଇଲେ କୁଆ ଦି ଚାରି ଥର,
ନଅଁଟିଆ ଲୁଣ ସୁଷମ ହୁଅଇ
ମାଟିଖିଆ ରୋଗ ଛାଡ଼େ ସତ୍ୱର ।"
କୃଷ୍ଣ କାନ୍ଦ କରି "କହିଲେ ଗୋ ମାଆ !
ଭାଇ ପାଇଁ ମିଛ କହିଲେ ପର !
ମାଟି ତ ଖାଇନି ମିଛ କଥା ଶୁଣି
କାହିଁକି ତୁ ଧାଇଁ ଆସିଲୁ ଉର ?
'ଦେଖ ମୋର ପାଟି ଆଁ କରୁଅଛୁ
ଦେଖ ଖାଲି ପାଟି କିଛି ତ ନାହିଁ,
'ମାଟି ଖାଇଥିଲେ ଥାଆନ୍ତା ତ ଲାଗି
ଏଡ଼େ ବେଗେ ଛାଡ଼ା ଯାଆନ୍ତା କାହିଁ ?"
ଦେଖିଲେ ଯଶୋଦା କୃଷ୍ଣଙ୍କ ପାଟିକୁ
ନଇଁପଡ଼ କରି ନରେଖି ଚାହିଁ,
ଦିଶିଲା କେବଳ ଅଶେଷ ବ୍ରହ୍ମାଣ୍ଡ
ମାଟିର ଚିହ୍ନ ତ କେଉଁଠି ନାହିଁ ।
ମୁଣ୍ଡକୁ ତାଙ୍କର ଝାଇଁ ମାରିଗଲା
ଥରିଲା କଲିଜା ଦେଖିଲେ ଯାହା,
କ୍ଷୁଦ୍ର ନୟନରେ ବିଶ୍ୱ ରୂପଟିକୁ
କିପରି ବିଶ୍ୱାସ କରନ୍ତେ ତାହା ?

ଯଶୋଦା ତ ଆଜ                 ଅଦ୍ଭୁତ ନୂହନ୍ତି
ବୋଇଲ ତୁଆର କାରୁଣୀ ମାଆ,
ବିଶ୍ୱ ବ୍ରହ୍ମାଣ୍ଡକୁ                 ତୁଣ୍ଡରେ ରଖିଛୁ
ଏପରି କୃଷ୍ଣର ଯେପରି ମାୟା ।
କିପରି ବୁଝନ୍ତେ                 ମାନବୀ ହୋଇ ସେ
କୃଷ୍ଣର ତ ଗାଢ଼ ଶ୍ୟାମଳ କାୟା,
ତାହାର ଭିତରେ                 ଲୁଚି ରହିଥିଲା
ବିଶ୍ୱ ବ୍ରହ୍ମାଣ୍ଡର ଯେତେକ ମାୟା ।
ଏ ଶକ୍ତି କିଏ                 ଦେଲା ଯଶୋଦାଙ୍କୁ
ସ୍ଥୂଳ ନୟନରେ ଦେଖିଲେ ତାହା,
କିବା ସେ ଦେଖିଲେ                 ଦିବ୍ୟ ନୟନରେ
ସୂକ୍ଷ୍ମେ ସ୍ଥୂଳ ହୋଇଥିଲାଟି ଯାହା ।
ହୀନ ଲେଖକକୁ                 ଦିଅ ସେହି ଆଖି
ଦେଖି ସେ ଥରୁଟେ ଚରଣ ଦୁଇ,
ସବୁ ଦେଖିବାକୁ                 କରିଛୁ କି ପୁଣ୍ୟ
ପାପ ସବୁବେଳେ ଅଛୁ ତ ଛୁଇଁ !
କୃଷ୍ଣ କୃପାକଲେ                 ତା ପାପ ରହିବ ?
ସବୁ ଅଳପକେ ଯିବ ତ ଜଳି,
ଘୋର ଅରଣ୍ୟକୁ                 କଣାଟାଏ ନିଆଁ
କମିତକେ ଭସ୍ମ ଦିଏନା କରି ?

---

# ଅନଳ ଭକ୍ଷଣ

କାଳୀୟ ସାପକୁ ବଧ କରୁ କରୁ
ବୁଡ଼ିଗଲା ଦିନ ଆସିଲା ରାତି,
କୃଷ୍ଣ ଉଦ୍ଧରିବା ଦେଖିଲେ ଯୋଜନା
କୁଣ୍ଡେମାଠ ହେଲା ସଭିଙ୍କ ଛାତି ।
ଅନ୍ଧାର ରାତିରେ ଘରକୁ ନ ଫେରି
କାହ୍ନ ଚାରି ସବୁ ଶୋଇଲେ ସେଠି,
ଅଧ ରାତିବେଳେ ଭାଂଗିଗଲା ନିଦ
ଦେଖିଲେ ଅନଳ ଦହ୍ନବ ଭେଟି ।
ଚୁହୁଁ ଚୁହୁଁ ନିଆଁ ବେଢ଼ିଗଲା ଆସି
ହୋଇ ଯିବାକୁ ନାହିଁ ତ ରାହା,
ଦେଖିଦେଲେ ଯହୁଁ ହାଲକ ଶୁଖିଲା
ଅତରଛ ହେଲେ ଉଡ଼ିଲା ସାହା ।
କହିଲେ, "ରେ କୃଷ୍ଣ କଅଣ କରିବା
କୋଉ ବାଟେ ଏଠୁଁ ଯିବା ପଳାଇ,
କଏ ସେ ଗୋଟାଏ କୋଉଠୁ ଆସି
ରାତିଟାରେ ନିଆଁ ଦେଲା ଲଗାଇ ?
ଖରାଦିନେ ପରା ଗଛେ ଗଛ ଘଷି-
ହୋଇ ଅରଣ୍ୟରେ ଲାଗଇ ନିଆଁ,
ସେଇଥି ହେଲା କି ନ ହେଲେ କାହିଁକି
କଏ କାହୁଁ ଆସି ଲଗାନ୍ତା ନିଆଁ ?

ଏଇନା ତ ସବୁ ପୋଡ଼ ଜଳି ଯିବା
ରଖିପାରୁ ଯେବେ ରଙ୍ଗ ରେ ବେଗ,
ଜଳିଲୁ ଜଳିଲୁ ସବୁ ଜଳିଗଲୁ
କିଏ କୋଉ ଆଡ଼େ ଯିବା ରେ ଏବେ ?"
ଦୁଃଖ ନିବେଦନ ଶୁଣିଲେ ଯୋଜନା
ଶ୍ରୀକୃଷ୍ଣ ରଚିଲେ ସେଇନା ମାୟା,
ଗଗନେ ଘୋଟିଲା ମେଘ କାହୁଁ ଆସି
ତା ସଂଗେ ବହିଲା ପ୍ରବଳ ବାଆ ।
ବରଷିଲା ପାଣି ଝର ଝର ଝର
ଅରଣ୍ୟଟାଯାକ ତିନ୍ତାଇ ଦେଲା,
ସମସ୍ତେ କହିଲେ, "ମେଘ ତ ନ ଥିଲା
କୋଉଠୁଁ ଅଇଲା କଅଣ ହେଲା ?
ଭୁବନର ନିଆଁ ଗଗନେ ଗଲା କି
ମେଘର ଦେହରେ ଉଠିଲା ଜଳ,
କି ଅବା ଶ୍ରୀକୃଷ୍ଣ ଉଡ଼ାଇଲେ ନଭେ
ଜଳନ୍ତା ନିଆଁକୁ ପବନେ ଭର !"
କହିଲେ, "ଏସବୁ କହ୍ନାଇର ମାୟା
ନୋହିଲେ କାହିଁକି ଲିଭନ୍ତା ନିଆଁ ?
ବରଷା ସଂଗରେ ପ୍ରବଳ ବତାସ
ଯୁଡ଼ ଯୁଡ଼ ହୋଇ ବହନ୍ତା କିଆଁ ?"
ପୂତନା ମାରଣୁଁ କାଳୀ ଦଳାଯାଏ
ଶ୍ରୀକୃଷ୍ଣ କରିଲେ ପୋଉଠି ଯାହା,
ସେଇଥିରୁ ସବୁ ବିଶ୍ୱାସ କରିଲେ
କୃଷ୍ଣ ଇଚ୍ଛେ ଯାହା ହୁଅଇ ତାହା ।
ଆଉ ଦିନେ କୃଷ୍ଣ ବଳରାମ ଦୁହେଁ
ଗୋପ ପିଲା ସହ ପଶିଲେ ବନେ,
ଗୋରୁ ଚରି ଚରି ଚଲେ ବହୁ ଦୂର
ଗୋରୁଙ୍କ ପଛରେ ନ ଥିଲେ ଜଣେ ।

ମନେ ପଡ଼ିଗଲା ଅନାଇଁଲେ ଯାଇ
ଗୋରୁଟିଏ କାହିଁ ପାଖରେ ନାହିଁ,
ଛଡା ବାଡ଼ ଧରି ଏଣେ ତେଣେ ପଶି
ଖୋଜିଲେ ଗୋରୁଙ୍କୁ ବାଲେ ଧାଇଁ ।
ଡାକିଲେ ଯେ କେତେ ବଡ଼ ପାଟି କରି
ଗାଈମାନଙ୍କର ନାଆଁକୁ ଧରି,
ଶୁଣିଲେ ନାହିଁକି ଆସିଲେନି କେହି
କେତେ ଦୂର ଯାଇଥିଲେ ତା ଚରି ?
ଶ୍ରୀକୃଷ୍ଣ ଗଛରେ ଚଢ଼ି ବଂଶୀ ଧରି
ବାଇଲେ ଶୁଣିଲେ ଗାଈଏ ତାହା,
ନଆଁ ତ ଜଳୁଛି ସବୁଆଡ଼େ ଘେରି
ଆସିବା ପାଇଁକି ନାହିଁ ତ ରାହା ।
ଦେଖିଲେ ପିଲାଏ ଉପାୟ ତ ନାହିଁ
ତାଙ୍କୁ ବି ତ ଘେରି ଗଲାଣି ନଆଁ,
ଆକୁଳେ ବିକଳେ କାନ୍ଦିଲେ ସମସ୍ତେ
ଏକା ଠାଆକରେ ହୋଇଲେ ଠିଆ ।
ଆରତ ହୋଇଣ ଡାକିଲେ କୃଷ୍ଣଙ୍କୁ,
"କୋଉଠି ରହିଲୁ ରଖ ରେ ଭାଇ,
କୋଉ ବିପଦରୁ ରଖି ନାହୁଁ ତୁ ବା
ଏବେ ନା କାହିଁକି ରଖିବୁ ନାହିଁ ?
ଗୃହୁଁ ଗୃହୁଁ ନଆଁ ମାଡ଼ି ତ ଆସିଲା
ସମସ୍ତେ ଏଇଠି ପୋଡ଼ି ମରିବୁଁ,
ଆଉ କାହା ସଙ୍ଗେ ଖେଳିବୁ ରେ କାହ୍ନୁ
ଆମକୁ ହରାଇ ସିନା ଝୁରିବୁ ?
ତୁହି ଥାଉ ଥାଉ ଯଦି ସବୁ ମରୁ
ମରନ୍ତୁ ତୋହରି ବାଛୁରି ଗାଈ,
କୋଉ ମୁହଁ ନେଇ ଘରକୁ ଫେରିବୁ
ସତେ କ'ଣ ଆଉ ଯିବୁ ରେ ଭାଇ ?

ରଖ ରଖ ଭାଇ ଡୋଉଡ଼ିଲୁଁ ପୋଉଡ଼ିଲୁଁ
ଦେହରେ ବାଜିଲା ଅନଳ ଧାସ,
ଛାଟିଗଲା ଦେହ ସିଝିଗଲା ମୁହଁ
ଫୋଟକା ହୋଇବ ଚଞ୍ଚଳ ଆସ ।
କାହିଁ ଗଲା ମେଘ ଶୀତଳ ପବନ
କେବଳ ଉତ୍ତପ୍ତ ଆସୁଛି ବହି,
ଆଜ ଟିକକରେ ମରିବୁ ରେ ସବୁ
ନିଆଁ ତ ଦେବ ରେ ଖାଇନ୍ତା ଦହି ।
କାହିଁ ଗଲ ରାମ- କୃଷ୍ଣ ଦୁହିଁଯାକ
ଜନମରୁ ପରା ଥିଲେଲି ସାଥି,
ଏଇନା ମରିବୁଁ ଅନଳରେ ପୋଡ଼ି
କହରେ ସହିବ ତୁମର ଛାତି ?”
ଡାକିଲେ ଗାଈ, କହିଲେ କ ଆଉ
“ରଖ ରଖ ବେଗେ ନୋହିଲେ ମଲୁଁ,
ନିଆଁ ଘେରିଗଲା ଆଉ ବାଟ ନାହିଁ
ଆମକୁ ଛାଡ଼ି ତୁ କୁଆଡ଼େ ଗଲୁ ?”
ଦଉଡ଼ିଲେ କୃଷ୍ଣ କହିଲେ ପିଲଙ୍କୁ
“ବୁଜ ସବୁ ଆଖି ଲିଭିବ ନିଆ ,
ଡରନା ରେ ଭାଇ ଏଇଠି ଅଛି ମୁଁ
କାହିଁକି ହେଉଛ ଏଡ଼େ ଗୁନିଆ ?”
ବୁଜି ଦେଲେ ଆଖି ନିମିଷ ଗୋଟିଏ
ନିଆଁ ଲିଭିଗଲା ଧଅପକନ,
ସକଳେ ଚାହିଁଲେ ଆଖି ମେଲି କରି
ମରଣକୁ ଗଲେ ସେଇନା ଜିଣି ।
ଜଳନ୍ତା ନିଆଁକୁ ଗିଳିଲେ ଶ୍ରୀକୃଷ୍ଣ
ଆଖି ବୁଜୁ ବୁଜୁ ମେଲିଇ ପାନି,
ଗାଈ ବାଛୁରିଏ ଦଉଡ଼ ଆସିଲେ
ଶ୍ରୀକୃଷ୍ଣ ଦେହକୁ ଦେଲେଟି ଘୃଷି

ଅରଣ୍ୟ ଅନଳ ଜଠରେ ପୂରାଇ
ଉଦର ନାଆଁରେ ଦେଲେ ମିଶାଇ,
ଦୁଇ ନାଆଁ ଯାକ ଏକାକାର ହୋଇ
ଅନନ୍ତ ଗରଭେ ଲୁଚିଲେ ଯାଇଁ ।
ବଡ଼ଟି ଦେହରେ ସାନଟିଏ ମିଶି
ହଜାଇଦେଲା ତା ନିଜର ଚିହ୍ନ,
ବଡ଼ର ସାନର ଏକ ଉପାଦାନ
ଗୁଣରେ ଧର୍ମରେ ନୁହଇ ଭିନ୍ନ ।
ଯୋଉ ଗରଭରେ ଅଶେଷ ବ୍ରହ୍ମାଣ୍ଡ
ସେଥିରେ କି ଛାର ବନ-ଅନଳ ?
ଅନନ୍ତ ଗରଭେ ଅସୀମ ସାଗର
ଜଳେ ଜଳେ ତହିଁ ବାଡ଼ବାନଳ ।
ପିଲାସବୁ ମିଶି ଖୁସି ହୋଇକରି
କୃଷ୍ଣଙ୍କୁ ଧରିଲେ କୁଣ୍ଢାଇ କରି,
ଘେରିଲେ ହସି ଓଠ ଧରି କରି
"ନାଆଁ ଲୁଚାଇଲୁ କହ କପଟି ?
ତୁ କି ସତେ ଭାଇ କୋଉ ଦେବତା ରେ
ତାଙ୍କରି ପରି ତ କରୁଚୁ କାମ,
ମରଣ କାଳରେ ସ୍ମରଣ କଲେ ରେ
ଏକମନ ହୋଇ ତୋହର ନାମ ।
ଯମ କି ଭରସି ପଶିବ ପାଖରେ ?
ଦୂରରେ ରହିବ ମନକୁ ଡରି,
ମରତେ ଜନମ ହେଲୁ କି ରେ ଆଜି
ସଭିଙ୍କି ଯିବୁ ତୁ ଅମର କରି ?
ମର ମାନବ କି ଅମର ହୋଇଲେ
ସତରେ ଭୋଗେନା ଅଧିକ ସୁଖ ?
ତେବେ ତୁ କାହିଁକି ମର୍ତ୍ତ୍ୟକୁ ଆସିଲୁ
ଭୋଗିବା ପାଇଁକି ମରଣ ଦୁଃଖ ?

କିବା ସୁଖ ଦୁଃଖ    ଶୀତ ଉଷ୍ଣ ସବୁ
ତୋହର ଆଖିରେ ସବୁ ସମାନ,
ତେଣୁ ଏ ସଂସାରେ    ଜୀବନ ମରଣ
ଦୁଇଟିଯାକ ତ ତୋହରି ଦାନ ।
ମରଣ ନ ଥିଲେ    ଜୀବନର ସ୍ୱାଦ
କିଏ କି କେଉଁଠି ପାରନ୍ତା ଚାଖି ?
ଜୀବନ ସେପରି    ନ ଥିଲେ ସଂସାରେ
ମରଣ କାହାକୁ ଆସନ୍ତା ଡାକି ?
ଅମୃତ ଗରଳ    ଚିହ୍ନାଇବା ପାଇଁ
ଦୁହିଙ୍କର ସିନା ଏ ଜକାଜକି,
ଜୀବନ ମରଣ    ଯୋଡ଼ିଏ ନ ଥିଲେ
ସଂସାରଟା କ'ଣ ହୁଅନ୍ତା ରଖି ?
ଏ ଯୋଡ଼ିକ ବିନା    ସୃଷ୍ଟି ହୁଅନ୍ତା କି
ସଂସାର ବୋଲିଣ ଥାନ୍ତା କି କିଛୁ ?
ଜୀବନର ପାଇଁ    ସଂଗ୍ରାମ ନ କଲେ
ସଂସାରଟା ଖାଲି ହୁଅନ୍ତା ଛିଣ୍ଡି ।
କିଏ ସେ କରାଏ    ଏ ସମର-ଲୀଳା
ମରଣ ନୁହେ କି ତୁଚ୍ଛ ନିମିତ୍ତ ?
ମୃତ୍ୟୁ ହଜିଯାଉ,    ଦେଖିବ ଜୀବନ
ସହ୍ୟ ହେବ ନାହିଁ ହେବ ଅସ୍ଥିର ।
ମରଣ ତ ନୁହେଁ    ଧ୍ୱଂସର କାରଣ
ଦେଇଯାଏ ଯାତ ମହା ଜୀବନ,
ସେଥି ମରଣର    ସଂଧାନ ପାଇଁ କି
ଯୋଗେ ଯୋଗୀ ଋଷି ଦିଅନ୍ତି ମନ ?
ମରିବାକୁ ଏତେ    ଡରନ୍ତି କିଆଁ ରେ
କେବଳ କି ତୋତେ ଡାକିବା ପାଇଁ,
ମରଣ ବିକଳ    ଡାକ ନ ଶୁଣିଲେ
ତୁ କ'ଣ ଆସୁନା ପାଖକୁ ଧାଇଁ ?

ତେବେ ତ ଲୁହ୍ନ ରେ ଓଗ୍ରାଉଛୁ ନଜେ
କାହିଁକ ଓଗ୍ରାଉ କହିଲୁ ଭଲ,
ଓଷଣ ବନା କ ଆଉ ବାଟ ନାହିଁ
ପାଇବାକୁ ତୋତେ ତୁ କ ଚଗଲ ?
ତୋ ଦେହଟା କ'ଣ ପାହାଚ-ପାହାଚ
ସେଟିକି ଯିବାକୁ ନଶୁଣୀ ଲୋଡ଼ା,
ସତରେ କ ସେଠି ଯାଇ ହେବ ନାହିଁ
ଚଢ଼ିଲେ ବ ମନ-ପବନ ଘୋଡ଼ା ?
ରାବଣ କଲ୍ପନା ତେବେ ସବୁ ସତ
ମର୍ତ୍ତ୍ୟ, ପ୍ରେତ, ସ୍ୱର୍ଗ ଗୋଲକଧାମ,
ଏସବୁ ପାହାଚ ଥାକ ଥାକ କରି
ଗଢ଼ି ରଖିଦେବା ତୋହର କାମ ।
ଏତେ ବନ ଚୋର ଲୁଚି ଘର ରହି
ଜାଣି ନ ଥିଲୁଟି ତୋର ମହିମା,
ଦଣ୍ଡକ ଅନ୍ତର ଦେଖାଇ ତ ଦେଲୁ
ତୋ ଗରିମା ସଙ୍ଗେ ଆମ ଲଘିମା ।
ସବା ସାନ ହୋଇ ସବୁଠୁଁ ବଡ଼ ରେ
ସ୍ୱଳ୍ପର ସ୍ଥୂଳର ତୁ ଲୁଚକାଳି,
ତୋର ରୂପ ଗୁଣ କଳିବ କିଏ ରେ
ଏତେ ଶକତି କ ଅଛି କାହାର ?
ଧନ୍ୟ ହେଲୁଁ ଆମେ ତୋହର ପାଇଁ କି
ଧନ୍ୟ ହେଲା ଆମ ଜନମଭୂଇଁ,
ତୁ କ'ଣ ଦେବତା ସତେ ନୋହୁ ଭାଇ
କହୁବୁଟି ଆମ ମୁଣ୍ଡକୁ ଛୁଇଁ ।
ଗଉଡ଼ କୁଳରେ ଜନମ ହୋଇ କେ
ପାଏ ରେ ତୋ ସମ ଦେବତା ଟିଏ,
ଆମଠାରୁ ବଳି କାର ଭାଗ୍ୟ ବଡ଼
ଆଜି କାହିଁ ହେଲେ ଅଛି କ କିଏ ?

ଦେଖାଇ ଦେବୁନି    ବୋଲି କି ତୋ ବଳ
ବୁଜାଇଲୁ ଆଖି କପଟ କରି ?
ଦେଖା ଦେଖା ଥରେ    ତୋ ସାଂଗସାଥୀଙ୍କୁ
ନିବେଦନ କରୁଁ ଚରଣ ଧରି ।
ସ୍ନେହ ସଖ୍ୟ କିବା    ହୋଇଗଲା ରେ ଊଣା
ଭକତଙ୍କ ଖାଲି ଲୋଡ଼ିଲୁ ସତେ ?
ଗ୍ରୀବ ଫାଡ଼ିଦେଉଁ,    ଦେଖ ତୁ ଥରୁଟେ
କିଛି ଊଣା ନାହିଁ କର ତୁ ଦ୍ରତେ !
ଦେଖା ଦେଲେ କିଣ    ଦେଖି ପାରିବୁନି
ଆମ ଆଖିର କି ନାହିଁ ସେ ଶକ୍ତି,
ବ୍ରହ୍ମା ଶିବ ପରି    କଣ ପାରନ୍ତିନି
ଶୂନ୍ୟକୁ ନମାମି କରନ୍ତି ଭକ୍ତି ?
ସେହି ଶୂନ୍ୟରେ ତୁ    ଆକାର ହଜାଇ
ଅଣାକାରତ୍ୱର କଲୁ ଡଗର,
ନିରାକାରତ୍ୱରେ    ରୂପ ବିକଶାଇ
ସୂକ୍ଷ୍ମ ଦର୍ଶନର ହେଲୁ ସାକାର ।
ଆମ ଆଖିରେ ତୁ    ସର୍ବଦା ସାକାର
ଲୁଚୁ ନାହିଁ ଖାଲି ରୂପ ମୋହନ,
ଧୂଳି ମାଟିର ଏ    ଗୋପ ବୃନ୍ଦାବନ
ତୋହର ପାଇଁ ତ ସ୍ୱର୍ଗ ଭୁବନ ।”
ବାଳକ ଭାଇ ରେ    ଲେଖକକୁ ଥରେ
କର ତୁମ ସାଥୀ ବୃନ୍ଦାବନରେ,
ଦେଖୁ ତୁମ ସଂଗେ    ଶ୍ରୀକୃଷ୍ଣଙ୍କ ଲୀଳା
ଚିନ୍ତୁ ଥରେ ତାଙ୍କ ରୂପ ମନରେ ।
ତୁମ ପରି କ’ଣ    ଅଛି ତାର ପୁଣ୍ୟ
ଖେଳିବ ବୁଲିବ କୃଷ୍ଣଙ୍କ ସଂଗେ ?
ଭବ-ଜଳଧିରେ    ବୁଡ଼ି ମଲାବେଳେ
କୃଷ୍ଣ କି ତାରିବ ବସିଣ ମଙ୍ଗେ ?

———

# ବ୍ରାହ୍ମଣୀ ମୋକ୍ଷ

ଗୋପପିଲା ସଂଗେ        କୃଷ୍ଣ ବଳରାମ
    ଗୋରୁଗାଈ ନେଇ ନ ଚାହୁଁ ରାତି,
ଗଲେ ଅରଣ୍ୟକୁ        ଆହାର ନ ନେଇ
    ପେଟରେ ପଶିଲା ଭୋକର ତାତି ।
ସମସ୍ତେ ହୋଇଲେ        ଅଉଟି ପାଉଟି
    କଅଣ ଖାଇବେ ଭାବିଲେ ମନେ,
ଖୋଜିଲେ ବହୁତ        କିଛି ପାଇଲେନି
    କଅଣ ମିଳନ୍ତା ଶୁଖିଲା ବନେ ?
କୃଷ୍ଣଙ୍କୁ ବେଢ଼ିଣ        କହିଲେ ବାଳକେ,
    "ଭୋକ ତ ହେଲାଣି ଖାଇବା କିସ ?
ଜୁଳୁଜୁଳୁ ଚୋକ        ଆଖିରୁ ଉଡ଼ିଲେ
    ଅନ୍ଧାର ଦିଶେ ତ ସକଳ ଦିଶ ।
ତୋହର ପାଇଁ ତ        ରାତିରୁ ଆସିଲୁ
    ଆଣିଲୁ ନାହିଁ ତ ସଂଗରେ ଭାତ,
ଏଇନା ଭୋକରେ        ହଂସା ଉଡ଼ିଲାଣି
    ବତାଇ ଦେଉନୁ କଆଁ ରେ ବାଟ ?"
ଶ୍ରୀକୃଷ୍ଣ ଜାଣନ୍ତି        ସେଇଠି ପାଖରେ
    ଯଜ୍ଞ କରୁଛନ୍ତି ବ୍ରାହ୍ମଣମାନେ,
ପିଲାଙ୍କୁ କହିଲେ,        "ଯାଅ ମାଗ ଅନ୍ନ
    ବ୍ରାହ୍ମଣ ନୁହଇ କୃପଣ ଦାନେ ।

ଯଜ୍ଞର ସଂଗରେ ଥାଏ ଦାନ ପୁଣ୍ୟ
ଅନ୍ନ ଓ ବସନ ଦିଅନ୍ତି ଯାଚ,
ଆଗେ ଦେଇଥିଲେ ମିଳଇ ପଛରେ
ତେଣୁ ଅନ୍ନଦାନ କରନ୍ତି ବାଛ୍ଁ ।
ହରିଶ୍ଚନ୍ଦ୍ର ରଜା ଦାନ ଦେଇଥିଲେ
ସେଥିପାଇଁ ସ୍ୱର୍ଗେ ହୋଇଲେ ରଜା,
ବଳି ଦାନ ଦେଇ ପାତାଳେ ରହିଲ
ସେଇଠି ଖାଇଲ ସରଗ ଖଜା ।''
ଗଲେ ପିଲମାନେ କହିଲେ ଭକତେ,
''ଶୁଣ ହେ ଠାକୁରେ ଆମ ଗୁହାରି,
କୃଷ୍ଣ ବଳରାମ ଉପାସ ଅଛନ୍ତି
ବୋକରେ ବିକଳ ହେଲେଣି ଭାରି ।
ସ୍ୱାଡନ୍ତୁ ଆସିଲେ ତରବର ହୋଇ
ଭୂମିରେ ବ ଦେଇ ନାହାନ୍ତି ଚାଣି,
ବେଳ ଗଡ଼ିଲଣି ଭୋକ ବଢ଼ିଲଣି
ସଂଗରେ ତ ଭାତ ନାହାନ୍ତି ଆଣି ।
ଆମକୁ କହି ସେ ପଠାଇ ଅଛନ୍ତି
ଦିଅ ଗଣ୍ଡେ ଭାତ ଖାଇବା ପାଇଁ,
ଆମେ ଯିବାଯାଏ ଦୁଇ ଭାଇଯାକ
ଜଙ୍ଗଲରେ ବସି ଥିବେଟି ଗୁହିଁ ।''
ବ୍ରାହ୍ମଣ କହିଲେ, ''ଇଜବ ଗଉଡ଼େ
ଯଜ୍ଞ ଅନ୍ନ ପାଇଁ ହେଲ କି ଯୋଗ୍ୟ ?
କୋଉ ସାହସ ରେ ମାଗିଲରେ ଆସି
ସେ ତ ଖାଲି ଦେବ ବ୍ରାହ୍ମଣ ଭୋଗ୍ୟ ?
ଗଉଡ଼ଙ୍କର ତ ନାହିଁ ଅଧିକାର
ଶିକ୍ଷାରେ ଦୀକ୍ଷାରେ ଯଜ୍ଞରେ କାହିଁ,
କେତେ ବଢ଼ାଇ ରେ ଗଉଡ଼ଗୁଡ଼ାକ
ଯଜ୍ଞ ଅନ୍ନ କ'ଣ ପାରିବ ଖାଇ ?'

ଯାଅ ଯାଅ କହ          ତୁମର କୃଷ୍ଣକୁ
    ଯଜ୍ଞ ଅନ୍ନ ତୁମେ ପାଇବ ନାହିଁ,
ଅଧମ କୁଳରେ          ଜନମ ହୋଇଛ
    ହୋମ ପିଅ ପାଇଁ ଆସୁଛ ଧାଇଁ ?
ଖାଇଲେ ତ ଆଉ          ହଜମ ହେବନି
    ଅଜୀର୍ଣ୍ଣ ରୋଗରେ ମରିବ ପରା,
ଦ୍ୱିଜ ଛଡ଼ା କେହି          ଖାଇବା ପାଇଁ କି
    ଅଧିକାର କା'ର ଅଛି ଏ ଧରା ?
ଯଜ୍ଞେ ଦାନ କରା-          ଅଛି ରେ ବିଧାନ
    କିନ୍ତୁ ଶଉଡ଼ଙ୍କୁ ଦେବାକୁ ନାହିଁ,
ଶାସ୍ତ୍ର ପୁରାଣରେ          କୋଉଥିରେ ହେଲେ
    ନମୁନାଟିଏ ତ ମିଳଇ ନାହିଁ !
ପୁଣି ବ୍ରାହ୍ମଣ ତ          ଗ୍ରହଣ କରଇ
    ଇତର ଜାତିର ମୁକତି ପାଇଁ,
ଦେବତାଙ୍କୁ ତୋଷି          ମୁକତି ଖୋଜିବା
    ଲାଗି ଦେବା ପାଇଁ ଥାଆନ୍ତି ରହିଁ ।
ଦାନେ ପ୍ରତିଗ୍ରହ          ବ୍ରାହ୍ମଣର କିଛି
    ନିଜ ଉପକାର ନ ଥାଏ କେବେ,
ସଂସାରେ ସମାଜେ          ଲୋଡ଼ା ହୁଏ ଯେବେ
    ହାଏ ନାଏ ସବୁ କରଇ ତେବେ ।
ଯାଅ ଯାଅ ସବୁ          ଫଳମୂଳ ଖାଅ
    ବଣରୁ କି ଆଉ ପାଇଲ ନାହିଁ ?
କିଂବା ଯଜ୍ଞ ହେବା          କଥା ଜାଣି ଶୁଣି
    ଲୋଭ କରି ଏଠି ଆସିଲ ଧାଇଁ ?
ଯଜ୍ଞସ୍ଥଳେ ଶୂଦ୍ର          ଜାତିଟାର ଛାଇ
    ପଡ଼ିଗଲେ ପରା ହୁଅଇ ମାରା,
ଯାଅ ସବୁ ବେଗେ          ତୁମେ ଗଲେ ଯାଇଁ
    ଅନଳେ ଢାଳିବୁ ଆହୁତି ଧାରା ।

କଏ ସେ ଅଛୁ ରେ ଆସିବୁଟି ବେଗେ
ଛୁଂଚଦେଲୁ ଟିକେ ଗୋବରପାଣି,
ଭୂଇଁଟାକୁ ଆସି ମାଗ କଟଦେଲେ
ପିଲଗୁଡ଼ାକ ତ ନାହାନ୍ତି ଜାଣି ।
ଯାଅ ଯାଅ ବେଗେ ଆଉ ଆସିବନ
ଯଜ୍ଞ ନ ସରିବା ଯାଏ ରେ ଏଠି,
ଯାଅ ଗାଈ ଜଗ ବଣେ ବଣେ ପଶି
ନାଚୁଥା ଗାଉଥା ଖେଳୁଥା ସେଠି ।
ଆହୁରି ଅସିଲେ ଦଅଁ ରଗିସିବେ
କାହାର ମଙ୍ଗଳ ହୋଇବ ନାହିଁ,
ଏତେ ଯଜ୍ଞଟାଏ ବିଫଳ ହୋଇବ
ତୁମରି ଗଉଡ଼ ଛୁଆଙ୍କ ପାଇଁ ।
ସଂସ୍କାର ଆଗୃହ କଷ୍ଟ ହେଲେ କ'ଣ
ଅଛୁ ଏ ଅଛବ ହୀନ ଜାତିର ?
ସମାଜରେ କେହି ଜଣେ ହେଲେ କାହିଁ
ଟିକଏ ହେଲେ ବି କରେ ଖାତିର !
ବିଧବଗୁଡ଼ାକ ଦ୍ୱିଶପ୍ୟୁ ହୁଅନ୍ତି
ପଢ଼ିଲେ ମିଳିଲେ ଦଅରଟାକୁ,
ସାନଟାଏ ହୋଇ ବଡ଼କୁ ଆଦରେ
ଏ କଥା କି କହି ହେବ କାହାକୁ ?"
ପିଲଏ ବୁଝିଲେ ନାହିଁ କୋଉ କଥା
ତାଙ୍କର ଭାବନା ପେଟର ପାଇଁ,
ପାଇଲେ କି ଅନ୍ନ ଅଇଲେ ବାହୁଡ଼ି
କାନ୍ଦ ଶ୍ରୀକୃଷ୍ଣଙ୍କୁ କହିଲେ ଯାଇ ।
ବୁଝିଲେ ଶ୍ରୀକୃଷ୍ଣ, ବ୍ରାହ୍ମଣ ବଡ଼ାଇ
ହସିଲେ ମନକୁ ମନ ସେ କେତେ,
କହିଲେ, "କାହିଁକି ଦ୍ୱିଜ ବୋଲି କରି
ବ୍ରାହ୍ମଣ ଗରବ କରଇ ଏତେ ?

'ବ୍ରାହ୍ମଣ ପିଲା ତ ବ୍ରତ ହେବା ଆଗୁଁ
ଶୂଦ୍ର ପିଲାଠାରୁ ନୁହଇ ଆନ,
ସେ ତ ପୁଣି ଖାଏ ପଞ୍ଚ ଅନ୍ନ ଘିଅ
ବ୍ରାହ୍ମଣଙ୍କ ସଙ୍ଗେ ପାଏ ତ ଥାନ ।
ତାର କ ଆଗରୁ ସଂସ୍କାର ବା ଅଛି
ସବୁ ପିଲାଯାକ ସମାନ ସିନା,
ବ୍ରାହ୍ମଣ ବୋଲଇ ସାନ ହେବ ନାହିଁ
କପଟ ବ୍ରାହ୍ମଣ ସଂସ୍କାର ବିନା ?
ଏକା ତ ରକତ ଏକା ହାଡ଼ ମାଂସ
ଏକା ତ ଶରୀର ସମାନ ପ୍ରାଣ,
କାହିଁ କ ବ୍ରାହ୍ମଣ କରଇ ଗରବ
ଆଉ ସମସ୍ତଙ୍କୁ ମଣଇ ସାନ ?
ମିଛ ଅଭିମାନ ବଡ଼ର ଲକ୍ଷଣ
ନୁହଇ ତ କେବେ ଧରଣୀ ପରେ,
ବଡ଼ ଏକା ସେହି ଯିଏ ସାନଟିକୁ
ଶିଖାଇ ମଣାଇ ବଡ଼ଟି କରେ ।
ଶିଖାଇବା ଗୁଣ ବ୍ରାହ୍ମଣ ହାତରେ,
ଶିଖାଇବ ନାହିଁ କାହାକୁ ଯାଚ,
ଶିଖିବା ପାଇଁକ ଇତର କେ ଗଲେ
ରାଗ ଅହଂକାରେ ଯାଏ ସେ ପାଚ ।
ତାହାର କ ଅଛି ନାହିଁ କୁସଂସ୍କାର
ମିଥ୍ୟା ଆବରଣେ ଘୋଡ଼ାଇ ଦେବ ?
ଜଳନ୍ତା ନିଆଁକୁ ଚଷୁଗଦା ତଳେ
କେତେବେଳେ କ'ଣ ଲୁଚାଇ ହେବ ?
ବ୍ରାହ୍ମଣର ଏଇ ଅଭିମାନ ପାଇଁ
ଜଳିବ ସମାଜେ ଭେଦ ଅନଳ,
ସେ ନିଆଁରେ ପୋଡ଼ି ମରିବେ ସକଳେ
' ଲିଭାଇ ଦେବାକୁ ନ ଥିବ ବଳ ।

ବ୍ରାହ୍ମଣ କ୍ଷତ୍ରିୟେ ପଢ଼ିଲେ ଲାଗିବ
ତୁମୁଳ କଳହ ସମାଜ ଗଣ୍ଡି,
ଏହି କଳହରେ ଖଣ୍ଡ ଖଣ୍ଡ ହେବ
କଞ୍ଚା ରକତରେ ଧୋଇବ ମଣ୍ଡି ।
ଯାହା ହାତେ ଥାଏ ଧରମ ରଖିବା
ସେ ଯଦି ନ ରଖେ କରମ କଉ,
ସଂସାର ସମାଜ ରହେଟି କି ଆଉ,
ଆଉ କିଏ ରଖି ପାରିବ ଧରି ?
ଏଇଥି ପାଇଁ କି ହୁଏ ଧର୍ମହାନି
ସଂସାର ଖୋଜଇ ଜଣକୁ ଖାଲି,
ସେ ଜଣକ କିଏ ? ସୁଧାରେ ସମାଜ
ରଖଇ ସଂସାର ଧରମ ଚାଲି ?
କଂସ ପରି ଦ୍ୱିଜ ପୁଣି ରାଜରାଜ
ସେ ହେବେ କାହିଁକି ହେବ ଅସୁର,
କାହିଁକି ତାହାର ନାଆଁ ଟାକୁ ଶୁଣି
ଭୟେ ଥରହର ହୁଏ ହିପୁର ?
ଅନ୍ୟାୟ କରି କେ ହୋଇଛି ବା ବଡ଼
ତାର ବଡ଼ପଣ ରହଇ ନାହିଁ,
ଅନ୍ୟାୟ ବଳୁଛେ ସାନଟେ ଲଡ଼ିଲେ
ସବୁ ବଡ଼ପଣ ନିଏ ଛଡ଼ାଇ ।
ନିକଟରେ କ'ଣ ଧରିବ ବ୍ରାହ୍ମଣ
ଧନୁ, ତୂଣ, ଶର, ଛାଡ଼ିବ ଧର୍ମ
କ୍ଷତ୍ରିୟ କି ସତେ ସମରକୌଶଳେ
ମାରିବ ବ୍ରାହ୍ମଣ କରିବ କର୍ମ ?
ତ୍ରେତୟା ଯୁଗରେ ଦ୍ୱିଜ ପର୍ଶୁରାମ
ମାରିଲେ କ୍ଷତ୍ରିୟ ଧରିଣ ଧନୁ,
ସେଇ ଅନ୍ୟାୟରୁ ହାରିଲେ ଶେଷରେ
ସେ କଥା ପାଶୋରି ଦେଲ କି ମନୁ ?

ରାବଣ ଯେପରି ହରିଲା ଜାନକୀ
ମରିଲା ସବଂଶେ କ୍ଷତ୍ରିୟ କରେ,
ଏ ଯୁଗରେ କି'ଣ ବ୍ରାହ୍ମଣ ଧରିବ
ଜାଣିକରି ଧନୁ ପଣି ସମରେ ?
ଏହି ଅନ୍ୟାୟର ଲାଗି ରାବଣର
ବୃଥା ହୋଇଗଲା ଅମର ବର,
ବିନା ସାଧନାରେ ବ୍ରାହ୍ମଣ ଜାତିଟା
କରିବ ଅନ୍ୟାୟ ନାହିଁ କି ଡର ?
ଏହାର କି କିଛି ନାହିଁ ପ୍ରତିକାର ?
କିଏ ସେ କରିବ କ୍ଷତ୍ରୀ ବ୍ରାହ୍ମଣ ,
ବେଉସା ଯାହାର ହିଂସା ଅଭିମାନ
ସ୍ୱଭାବ ଯାହାର ଅପହରଣ ।
ବୈଶ୍ୟ ଶୂଦ୍ର କି'ଣ ହୋଇବେ ଅରକ୍ଷ ?
ବେଉସା ବଣିଜ ଚଳିବ ନାହିଁ ?
ତାହେଲେ ତ ସବୁ ଧ୍ୱଂସ ହୋଇଯିବ
ସଂସାର ରହିବ କାହାର ପାଇଁ ?
ମୋହର ଆଗରେ ସବୁ ହୋଇଯିବ
ଜଳ ଜଳ କରି ଥିବି ମୁଁ ଚୁହିଁ,
ବଇକୁଣ୍ଠ ଛାଡ଼ି ତେବେ ମୁଁ କାହିଁକି
ଆସିଲି ମରତେ ମରିବା ପାଇଁ ?
ହେବ ନାହିଁ ତାହା କରାଇ ଦେବିନି
ଏକ ଜାତି ଧର୍ମ୍ମ କରି ସ୍ଥାପନା,
ସବୁ ଜାତି ଧର୍ମ୍ମ ମିଳାଇ ମିଶାଇ
ମହା ସମାଜ କରିବ ଗଠନ ।
ମୋର ଆଗମନ ଧରମର ପାଇଁ
ଜାତି ଓ ଅଜାତି ମୋହର ନାହିଁ,
ଅନଳ ଯେପରି କିଛି ବାଛେ ନାହିଁ
ଯାହା ପାଏ ତାହା ଦହଇ ଖାଇ ।

ଏପରି ଗୋଟିଏ ସମାଜ ଗଢ଼ିବ
ଛୁଆଁ ଅଛୁଁଆଁ ଆଉ ନ ଥିବ ଭେଦ,
ଉପନିଷଦକୁ ଚୂଡ଼ାନ୍ତ କାଢ଼ିବ
ଭଗବତ ଗୀତା ହୋଇବ ବେଦ ।
ବୈଦିକ ଧର୍ମ ବ୍ରାହ୍ମଣର ଧର୍ମ
ଅନ୍ୟ ଜାତିର ତା ହେବନି କେବେ,
ସବୁ ଜାତି ପାଇଁ ଗଢ଼ିବ ଧରମ
ସମାଜରେ ଲୋଡ଼ା ହେଲାଣି ଏବେ ।
ମହାଭାରତରେ ମହାଧର୍ମ ଏକ
କରିବ ପ୍ରଚୁର ସଂସ୍କାର ଆଣି,
ସେଥିପାଇଁ ଲୋଡ଼ା ହୋଇବ ମୋହର
ଏକା ବ୍ୟାସଙ୍କର ଲଳିତ ବାଣୀ ।
ଭିନ୍ନ ଜାତି ଧର୍ମ ଭିନ୍ନ ଭିନ୍ନ ରାଜ୍ୟ
ପରସ୍ପରେ ଘୃଣା ବଢ଼ି ବିପଦ,
ନିବାରିବ ସବୁ ଶିକ୍ଷା ଦୀକ୍ଷା ଦେଇ
ସମାଜୁଁ ଘୁଂଚାଇ ଦେବ ଆପଦ ।
ରଜା ରଜା ସବୁ କରିବେ ଧରମ
ବ୍ରାହ୍ମଣ ପଶିବ ତହିଁରେ ଆସି,
ଭାଙ୍ଗି ଖଣ୍ଡ ରାଜ୍ୟ ଗଢ଼ି ମହାରାଜ୍ୟ
ଏସବୁ ଫିସାଦ ଦେବ ମୁଁ ନାଶି ।
କଂସ ଜରାସନ୍ଧ ନୃଶଂସ ତ ଖାଲି
ଧରମହାନିର ମୂଳ କାରଣ,
ସଂସାରପାପୀଙ୍କ ମୂରଚ୍ଛା ଅଧର୍ମ
ଆସିଛୁ କରିବ ମୁଁ ନିବାରଣ ।
ମନର କଥାକୁ ରଖିଲେ ଲୁଚାଇ
ଭିତରେ ଭିତରେ ହସିଲେ ଟାଳି,
ଅଳପ ଦିନରେ ଏହି କୁସଂସ୍କାର
ଦ୍ୱିଜ ସମାଜରୁ ଦେବ ନିକାଳି ।

ପିଲାଙ୍କୁ ବୁଝାଇ          କହିଲେ ହସିଣ,
"ପୁରୁଷ ମନ ତ ଶୁଖିଲା କାଠ,
ଲୁହାକୁ ପାଣିରେ          ବତୁରାଇ ଦେଲେ
ହେବ କି କଅଁଳ ଛାଡ଼ିବ ଆଣ୍ଠ ?
ଭୋକ ଶୋଷ ଦାଉ          ଜାଣି ଶୁଣି କରି
ଦେଲେ ତ ନାହିଁ ସେ ମୁଠାଏ ଅନ୍ନ,
ଏଇଥିରୁ କ'ଣ          ଜାଣି ପାରୁ ନାହିଁ
ପୁରୁଷ ପ୍ରକୃତି, ପୁରୁଷ ମନ ?
ପୁଅ ନାରୀ ପାଖେ          ମାଗିଆଣ ଅନ୍ନ
ସ୍ନେହ-ମନ୍ଦାକିନୀ ଶୀତଳ ହୋଇ,
ବାହ୍ୟ ନିଷ୍ଠୁର          କଠିନ ଉପର
ପେଟର ନିଆଁକୁ ଦେବ ସେ ଧୋଇ ।
ଜନନୀ ଜାତି ସେ          ବକ୍ଷର ରକତ
ଖୁଆଏ ପିଲାକୁ ଆଦରେ ଧରି,
ସ୍ନେହ ବୋଳିଦେଇ          ନାଲି ରକତରେ
ଢାଳଇ ମୁହଁରେ ଶୁକଳ କରି ।
ବହୁଥାଏ ହୃଦେ          ବାତ୍ସଲ୍ୟ-ମମତା
ଅନ୍ତଃସ୍ରୋତା ଫଲ୍‌ଗୁ ନଈର ପରି,
ପିତୃପୁରୁଷଙ୍କୁ          ପିଣ୍ଡ ଦେଲା ପରି
ଦେବ ଯାଚି ଅନ୍ନ ଶରଧା କରି ।
ଦେଖିବ ଏଇନା          ବରଷି ଯିବ ସେ
ସ୍ନେହ-ବାରିଧାରା ଏଇଠି ଆସି,
ସେଇ ସ୍ନେହ ନୀରେ          ଲିଭିଯିବ ପରା
ପେଟର ଦାରୁଣ ଅନଳ ରାଶି ।"
ଚାଲିଲେ ପିଲାଏ          ବାହ୍ମଣ ଗାଆଁକୁ
ଦେଖିଲେ ଗାଆଁଟି ସୁନ୍ଦରମଳ,
ଦୁଆରେ ଦୁଆରେ          ପଡ଼ିଛି ମୁରୁଜ
ନାନା ଭଙ୍ଗେ ରଂଜ ଏରୁଣ୍ଡି ତଳ ।

ତହିଁରେ ଫୁଟିଛି ନାନା ଜାତି ଫୁଲ
    ଫଳ ଯାଇଅଛି ସୁନ୍ଦର ଫଳ,
ମୁକୁଳ ଦୋଡ଼ାଇ ରଖି ଦେଇଅଛି
    ଫୁଲ ଫଳ ଛଡ଼ା ଦଟୁନ ତଳ ।
କାନ୍ଥରେ କାନ୍ଥରେ ଚିତା ପଡ଼ିଅଛି
    ତହିଁରେ କାଂଟୁଲ ଜଳୁଛି ପଢ଼,
ଗଗନ ଦେଖନ୍ତି ଶଶିତାରକା କି
    ଭିତରେ ବାହାରେ ପଡ଼ିଲେ ଝଡ଼ି ?
ବ୍ରାହ୍ମଣୀଗୁଡ଼ିକ ଦୁଆରେ ଦୁଆରେ
    ଠିଆହୋଇଛନ୍ତି ଦେହଲି ଧରି,
ଗୃଳ ଛୁଇ ତଳେ ଦିଶି ଯାଉଛନ୍ତି
    ଶ୍ୟାମ ଘନେ ଥିର ବିଜୁଳି ପରି ।
ଅଧରେ ଅଧରେ ହସ ଫୁଟିଅଛି
    କୁଆଁରପୁନିଅ ଶେଫାଳି ପରି,
କେଉଁ କେଉଁ ହସି ବସି ଧରଣୀରେ
    ଛୁଆଙ୍କୁ ଖେଳାନ୍ତି କୋଳରେ ଧରି ।
ନଣନ୍ଦ ଭାଉଜେ ପାଳି କାଟି ଦେଇ
    ଖେଳନ୍ତି କଉଡ଼ି ଡାକନ୍ତି ଦଶ,
ଦୁଗା ପଡ଼ିଗଲେ କାହା ମୁହଁ ଶୁଖେ
    କାହାର ବଦନେ ଦିଶଇ ହସ ।
ଦୁଇ ଘର ଗଣି ଦାନ ଗୃଳ ଦେଇ
    ଭାଉଜ ନଣନ୍ଦ ଗାଲକୁ ଧରି,
କହେ ନଣନ୍ଦଇ, "ବଡ଼ ତ ରସିକ
    ନନ୍ଦାଈ ବାଛିଲେ ଦବଣ୍ଡି କରି ।
ଟୋକା ମୁହଁଟି ତ ବଡ଼ ସୁନ୍ଦର ଗୋ
    ସାକ୍ଷାତ ଗୋଟିଏ ଚକୁଳି ପିଠା,
ଠାଆ ଠାଆ ହୋଇ ପଡ଼ିଛି ତହିଁରେ
    କାଳିଆ ପାଣିଆ ଗୁଡ଼ର ଛିଟା ।"

ପିଲାଏ ଚଞ୍ଚଳ କହିଲେ, "ଟେଗା ମାଆ
କୃଷ୍ଣ ବଳରାମ ଦୁଇଟି ଭାଇ,
ଆମ ସଙ୍ଗେ ଆସି- ଥିଲେ ଗୋ ବନସ୍ତେ
ଏତେ ବେଳଯାଏଁ ନାହାନ୍ତି ଖାଇ ।
ଖାଇବାକୁ କିଛି ପାଖରେ ତ ନାହିଁ
ଦୂରରୁ ଦିଶିଲା ତୁମର ଗାଆଁ,
କହିଲେ ବ୍ରାହ୍ମଣ ଗାଆଁକୁ ଯାଅ ରେ
ଭାତ ମାଗ କହି ଆମର ନାଆଁ ।
ଦେବ କି ଗୋ ମାଆ ହାତ ଦୁଇ ମୁଠା
କାନରେ ନେଇ ତା ଖୁଆଇ ଦେବୁ,
ଗୋରୁ ବାହୁଡ଼ିବା ବେଳ ହୋଇଗଲେ
ସଙ୍ଗେ ଧରି ତାଙ୍କୁ ଘରକୁ ନେବୁ ।
କେତେ ଯେ ଅସୁର ମାଇଲେଣି ଦୁହେଁ
କଅଣ କହିବୁଁ ତୁମକୁ ମାଆ,
କାଳନ୍ଦୀରେ ପଶି କାଳିଆ ନାଗକୁ
କୃଷ୍ଣ ନିକଟରେ କଲା ଗୋ ସାହା ।"
ଶୁଣିଲେ ଯୋଉନା କୃଷ୍ଣଙ୍କର ନାଆଁ
ଉଚ୍ଛନ୍ନ ହୋଇଲେ ଦେଖିବା ପାଇଁ,
ଭାଳିଲେ ମନରେ ଘରଦ୍ୱାର ଛାଡ଼ି
ଛୁଆଙ୍କୁ ପକାଇ ଯିବେ କି ଧାଇଁ !
ସ୍ନେହର ଫଲଗୁ ବହିଲା ମାରବେ
ଅନ୍ତର ସ୍ରୋତ ତ ଧାଇଁଲା ଖରେ,
ଭିତରେ ସମ୍ଭାଳି ରହି ପାରିଲେନି
ଦେଖାଦେଲା ମୁଏଁ ବନ୍ଧ ଉପରେ ।
ହିମାଳୟୁ ତିରୁଁ ବହିଗଲା ଗଙ୍ଗା
ଲେଉଡ଼ା ହେଲା ନାହିଁ ଅଇରାବତ,
ଜଣ ଜଣ ହୋଇ ଆସିଲେ ବ୍ରାହ୍ମଣୀ
ମିଳିଲେ ଏକାଠି ହୋଇଲେ ଶତ ।

ନାସା-ହ୍ରଦସ୍ଥର ହିମାଳୟ-ଶିଖେ
ବାଜଲ ପିଲଙ୍କ ପେଟର ଡାକ,
ତରଳିଲା ହିମ କୁଳୁକୁଳୁ ଗାଇ
ଚରିଦେଇ ନାସା ନରମ ଗ୍ରନ୍ଥ ।
ଆସୁ ଆସୁ ବାଟେ ଜଗିଲେ ବ୍ରାହ୍ମଣେ
ଜହ୍ନୁ ଋଷି ପରି ରଖିଲେ ବାନ୍ଧ,
ଜାହ୍ନବୀ ରୂପରେ ବାହାରିଲେ ତହୁଁ
ବନ୍ଧନ ଫିଟାଇ ବହୁତ କାନ୍ଦ ।
ମୁବତୀ, ପ୍ରଉଢ଼ା, ବିଧବା, ସଧବା
ସମସ୍ତେ ଧାଇଁଲେ ହୋଇ ଅଥିର,
କାହା କରେ ପିଠା କାହା କରେ ଘିଅ
କାହା କରେ ଖିରି ସୁବାସ ମାର ।
ବାଟ ଚୂଲିବାରୁ ବିନ୍ଦୁ ବିନ୍ଦୁ ହୋଇ
ମୁହଁରେ ଝଳୁଛି ଶରମ ମାର,
ପୀତ ଗୋଲାପେ କି ଶୋଭା ପାଉଅଛି
ଟଳ ଟଳ ହୋଇ ସ୍ୱଚ୍ଛ ଶିଶିର ?
କାଳିଆ କବରୀ ଫିଟି ପଡ଼ିଅଛି
ପିଠିର ଉପରେ ଖେଳେଇ ହୋଇ,
ସୁନା ଖଟୁଲିରେ ଚଅଁର ମୁଠାଏ
ମେଲାଇ କରି କେ ଦେଇଛି ଥୋଇ ?
ଦେଖିଲେ ଶ୍ରୀକୃଷ୍ଣ ଦୂରରୁ ବ୍ରାହ୍ମଣୀ
ଧାଇଁଛନ୍ତି କରେ ଆହାର ଧରି,
ଭାବିଲେ ମନରେ ନାରୀ ହୃଦୟରେ
କରୁଣା ବହିଲା ତରଳି କରି ।
ବ୍ରାହ୍ମଣ ବ୍ରାହ୍ମଣୀ ଗୋଟିଏ ତ ଜାତି
ଏକା ତ ସଂସ୍କାର ଏକା ଆଚାର,
ବ୍ରାହ୍ମଣ କାହିଁକି ଏଡ଼ାହେଁ କଠିନ
ଏଡ଼େ ନରିଦୟ ଅଣଉଦାର ।

ନାରୀ ପୁରୁଷରେ ଏତକ ପ୍ରଭେଦ
କାହିଁକି ବା ହେଲା କିଏ ବା କଲା ?
ଗୋଟିଏ ହୃଦୟ ଅମଳ ଧବଳ
ଅନ୍ୟଟି କାହିଁକି କଜଳ କଳା !
ଏଇ ପାରଥକ୍ୟ ନ ଥିଲେ ସଂସାରେ
ସମତା ତ କାହିଁ ରହନ୍ତା ନାହିଁ,
ସୁଖ ଦୁଃଖ ଧନ- ଗତର ପ୍ରଭେଦ
କେହି କ ଜୀବନେ ଜାଣନ୍ତା କାହିଁ ?
ବ୍ରାହ୍ମଣୀଏ ଆସି ଖାଇବାର ଥୋଇ
କୃଷ୍ଣ ମୁହଁ ଚାହିଁ ଗଲେ ତ ଚାଲି,
ଦୁଇ ଭାଇ କିନ୍ତୁ ହେଲେ ଉପାସ
ମାରବେ ଚାହିଁଲେ ଉପରେ ଖାଲି ।
ଗୋଟିଏ ବ୍ରାହ୍ମଣୀ ଆସି ଚାଲିଲା
ତାହାର ଗିରସ୍ତ ରଖିଲା ବାନ୍ଧି,
ବନ୍ଧା ହୋଇ କରି କୃଷ୍ଣ ନାଆଁ ଝୁରି
ରହିଲା କେବଳ ମାରବେ କାନ୍ଦି ।
କୃଷ୍ଣ କଥା ଭାବି କୃଷ୍ଣ ଗୁଣ ସ୍ମରି
ଖୁଣ୍ଟା ମୂଳରେ ଢଳିଲା ମରି,
ଚଳିଲା ସରଗେ ଦେବରଥେ ଚଢ଼ି
କୃଷ୍ଣ ଅନୁଗ୍ରହେ ଶରୀର ଧରି ।
ଲେଖକଙ୍କୁ ଦେଇ ବାନ୍ଧି ପକାଇଛି
ତାହାର ଦୁର୍ଭାଗ୍ୟ ସଂସାର ଧନ୍ଦା,
କିନ୍ତୁ ସବୁବେଳେ କରୁଛି ଅନ୍ତରେ
କୃଷ୍ଣ ନାମଟିକୁ ତାହାର ଫନ୍ଦା ।
ବନ୍ଧନ ସ୍ଥଳରେ ମରିଲେ ସେ ପଡ଼ି
ପାଇବ ନାହିଁ କି ବ୍ରାହ୍ମଣୀ ଗତି,
କୋଳେଇ ତାହାର ହେଉ ଦେବରଥ
ଏତିକି ମାଗୁଛି କରି ଭକତି ।

କୃଷ୍ଣଙ୍କୁ ତ କେବେ ଦେଖିନ ଆଖିରେ
କଳ୍ପନାରେ କାନ୍ତି ଲେଖଇ ଖାଲି,
ସବୁବେଳେ ସେ ତ ଅନ୍ତରେ ଅଛନ୍ତି
ସେଥିରୁ କପର ଯିବେ ବା ଗ୍ଭଲ ?
ଯାଆନା ଯାଆନା ! କଂସ ଜରାସନ୍ଧ
ମରି ସାରିଛନ୍ତି ନାହାନ୍ତି ଜୀଇ,
କେବଳ ଲେଖକ ଘାଣ୍ଟି ହେଉଅଛି
ପେଣ୍ଡୁ ସେ ଅମୃତ ପାରନ୍ତି ପିଇ ।
ପିଆଇ ଦେବନି ? ସରି କି ଯାଇଛି ?
ତେବେ ଗୋଲନ୍ଦାଅ କଡ଼ା ଜହର,
ଦୀନ ଲେଖକର ଦିନ ସରିଯାଉ
କୃପା କରି ଧରା ଛନ୍ଦାପୁର ।



# ବରୁଣ ହାତରୁ ନନ୍ଦ ଉଦ୍ଧାର

ମାସକରେ ପଡ଼େ ଦୁଇ ଏକାଦଶୀ
ଏ ଦିନଟି ପରା ହରି-ବାସର,
ଶୁଦ୍ଧପୂତ ହୋଇ ଉପାସ ରହିଲେ
ପାପ ଛୁଟେ, ମୁକ୍ତ ହୁଅଇ ନର ।
ରୋଗ ବଳସବ ପଶେନା ଦେହରେ
ମାନବ ହୁଅଇ କର୍ମକ୍ଷମ,
ଅକାଳ ମରଣ ଅସେନା ପାଖକୁ
ତୁଳସୀ ଦଳକୁ ଡରଇ ଯମ ।
ନନ୍ଦ ଯଶୋବନ୍ତ କରନ୍ତି ଉପାସ
ଯମୁନା ଜଳରେ ଶଉଚ ହୋଇ,
ନନ୍ଦ ଥରେ ଫେରି ଆସିଲେ ନାହିଁଟି
ଯମୁନାକୁ ଯାଇଥିଲେ ଗାଧୋଇ ।
ଜଳ ଅଧିକାରୀ ବରୁଣ ଦେବତା
ଭାବିଲେ ମନରେ କି ପୁଣ୍ୟ କରି,
ତୁଚ୍ଛ ମାନବଟା ବିଷ୍ଣୁ ସନାତନେ
ପାଳନ୍ତି କୋଳରେ ପୁଅଟି ପରି !
ମୁଁ ଏତେ ଡାକୁଛି କିଏ ବା ଶୁଣୁଛି
ଦେବତା ତ ନେଲେ ମୋ କୋଳୁଁ କାଢ଼ି,
କୋଉ ଦୋଷଟା ବା ନଦେଖିଲେ ମୋହର
ତାଙ୍କୁ ନନ୍ଦ କୋଳେ ଦେଲେଟି ଛାଡ଼ି ।

ନର ସଙ୍ଗେ ଦେବ                    ସମାନ ହେଲାନ୍ତି
    କୋଉ ଗୁଣେ ନନ୍ଦ ମୋଠାରୁ ବଡ଼,
ଅନନ୍ତଶଯ୍ୟାକୁଁ                    ବେଶୀ ସୁଖକର
    ହୋଇଲା କି ସତେ ଗଉଡ଼ ଘର ?
ଆଜ ମୁଁ ନନ୍ଦକୁ                    ଧରଣ ଆଣିବ
    ଦେଖିବ ତାହାର ଶୁଭ ଲକ୍ଷଣ,
ସେଥିପାଇଁ ଅବା                    ମିଳିଯାଇ ପାରେ
    ଭଗବାନଙ୍କର ପଦଦର୍ଶନ ।
ଆଜ ଏକାଦଶୀ                    ଆସିବ ଗାଧୋଇ
    ଧରି ମୁଁ ରଖିବ ଛାଡ଼ିବ ନାହିଁ,
ଏହା କଲେ ଅବା                    ବାପର ପାଇଁକି
    ଶ୍ରୀକୃଷ୍ଣ ଆସିବେ ଟାଣକୁ ଧାଇଁ !
ମନେ ତ ହେଉଛି                    ଆସିବେ ନିଶ୍ଚୟ
    ଦେଖିବ ତାହାଙ୍କୁ ଆଖି ପୂରାଇ,
ସେବିବ ଚରଣ                    ପାଇବ କଲ୍ୟାଣ
    ତାପରେ ନନ୍ଦକୁ ଦେବ ଫେରାଇ ।
ଏଇତକ ଭାବ                    ଭାରି ଖୁସି ହୋଇ
    ଅନାଇଁ ରହିଲେ ବେଳକୁ ଖାଲି,
ଏଇନାଏ ସେ ତ                    ଆସିବ ଗାଧୋଇ
    ଜଗି ନ ବସିଲେ ଯିବ ତ ଗଳି ।
ସତକୁ ସତ ସେ                    ଗଲେ ସେଇନାଏ
    କାନ୍ଧରେ ଗାମୁଛା, ହାତରେ ଡାଳ,
ଖରା ଲାଗି କରି                    ଦେହରୁ ବହୁଛି
    ଗମଗମ ହୋଇ ବହୁତ ଝାଳ ।
ବୁଡ଼ିଲେ ପାଣିରେ                    ଆଉ ଉଠିଲେନି
    ବରୁଣ ଆଦରେ ନେଲେ ଘରକୁ,
ସବୁ ଉପଚାରେ                    ତରଗ୍ନ କରିଲେ
    ନନ୍ଦ ପାଶୋରିଲେ ଗୋପପୁରକୁ ।

ଉକ୍ତ ର ଦ୍ୱାଇଲ ନନ୍ଦ ଫେରିଲେକ
ଜାଣିଲେ ଶ୍ରୀକୃଷ୍ଣ ବରୁଣ ମନ,
ଧାଇଁଲେ ବାପକୁ ଖୋଜିବା ପାଇଁକି
ଦେଖିଲେ ତ୍ରୁଠରେ ଉପକରଣ ।
ଲୋକେ ଦେଖିବାକୁ ଖୋଜିଲେ ବହୁତ
ଶେଷରେ ବୁଡ଼ିଲେ ଯମୁନା ଜଳେ,
ବରୁଣ ତ ଚେତଣେ ଗୃହେଁ ବସିଥିଲେ
ପଡ଼ିଲେ ଆନନ୍ଦେ ଚରଣ ତଳେ ।
କହିଲେ, "ହେ ପ୍ରଭୁ, ଦାସ ଅପରାଧ
କ୍ଷମ ଦୟାକରି କରିଛୁ ଦୋଷ,
ତୁମ ଦରଶନ ଲୋଡ଼ିଲି ମୋ ମନ
କର ନାହିଁ ଆଉ ମୋଠାରେ ରୋଷ ।
ନିଅ ହେ ବାପାଙ୍କୁ, ଯାଅ ଘରେ ଫେରି
ଜନନୀ ଥିବେ ତ ଦୁଆରେ ଗୃହିଁ,
ନହିଁରେ ନହିଁରେ ଦରଶନ ଦେବ
ଏଇ ନିବେଦନ ଭୁଲିବ ନାହିଁ ।"
ନନ୍ଦ କ ବୁଝିବେ ଦେବତାଙ୍କ ମାୟା
ପାଣିରେ ବୁଡ଼ିଲେ ଜାଣିଲେ ନାହିଁ,
ହପ୍‌ପା ହୋଇଗଲ "ବୁଡ଼ି ମରୁଥିଲେ
ପୁଅ ବୁଡ଼ିକରି ଆଣିଲା ଯାଇଁ ।"
ବାହୁଡ଼ି ଆସିଲେ ଘରକୁ ତ ସଙ୍ଗ
ଆଗ ପର ସେଇ ପୁରୁଣା ନନ୍ଦ,
ବରୁଣକୁ କଣ୍ଠୁ ଭୁଲିଗଲେ ମନୁଁ
ମଣିଷ କପାଳ ଏଡ଼ିକ ମନ୍ଦ !
ଦେବ ଦରଶନ ପାଇ କରି ମଧ
ଏଇତକ କଥା ଜାଣିଲେ ନାହିଁ,
କୃଷ୍ଣ ବଳରାମ ନେଇ ଯେ ଖେଳନ୍ତି
ବରୁଣକୁ କଅାଁ ଥାଆନ୍ତେ ବୃହିଁ ?

ଲେଖକ ସଭିଙ୍କୁ ଅନାଇଁ ବସିଛି
ସବୁର କରୁଣା କରୁଛି ଭିକ୍ଷା,
ସବୁଠାରୁ ବେଶୀ ଶ୍ରୀକୃଷ୍ଣ ଚରଣ
ଦରଶନକୁ ସେ କରୁଛି ଦୀକ୍ଷା ।

———

# ଗୋବର୍ଦ୍ଧନ ପୂଜା

ଦିନେ ଗୋପ ମେଳେ          ନନ୍ଦ ନିଜେ ବସି
    ଇନ୍ଦ୍ର ପୂଜିବାକୁ କଲେ ବିଚାର,
କହିଲେ, "ହେ ସବୁ          କର ଆୟୋଜନ
    ଗଗନେ ମେଘର ହେଉ ସଂଚାର ।
"କୂଅ ପୋଖରୀ ତ          ଶୁଖିଲାଣି ସବୁ
    ନଈନାଳ ଧାର ହୋଇଛି କ୍ଷୀଣ,
ଉଦକ ବାଜିଲା          ପାଣି ଛାଡ଼ିଗଲା
    ଆକୁଳ ବିକଳ ହୋଇଲେଣି ମୀନ ।
ପବନର ତାଡ଼ି          ସହି ହେଉ ନାହିଁ
    ଗଛଲତାସବୁ ଝାଉଁଳିଲେଣି,
ମଞ୍ଚିକା ନାଚ          ପବନ ଦେହରେ
    ଚଳନ୍ତି କେତେ ସରୁଆ ବେଣୀ ।
ଧରଣୀ ଉପର          ନୀରସ ହେଲାଣି
    ଘାସପତ୍ରସବୁ ଗଲାଣି ମରି,
ଗୋରୁଗାଈ ସବୁ          ଧକେଇ ଗଲେଣି
    ଜିଇବେ କାହାର କଅଣ ଚରି ?
ଗଗନରେ କାହିଁ          ବଉଦ ଖସୁନି
    ଖରା ଝାଳ ଝିକେଇଦିଶେ ମଇଳା,
ତଳପ ବରଜ          ତଳେ ଶୋଇ ଶୋଇ
    ବିଚଣା ବୁଲାଇଲେଣି ମହିଳା ।

ଶୀଘ୍ର ଇନ୍ଦ୍ରପୂଜା ସାରିଦିଅ ସବୁ
ଅସରାଏ ମେଘ ବରଷି ଯାଉ,
କର ଏ କାମଟି ଚଞ୍ଚଳ ଚଞ୍ଚଳ
ଆଜ ସବୁ କାମ ପଛକୁ ଥାଉ ।
ଯନ୍ତ୍ର ତ ଲଙ୍ଗଳ ବାହାରିଲା ନାହିଁ
ଗୁହାଳୁ ବଳଦ ଫିଟିଲେ ନାହିଁ,
ଚାରି ମାସ ହେଲା ଭୂଇଁ ଫାଟିଲାଣି
ବରଷା ଟୋପାଏ ପଡ଼ିଲା କାହିଁ ?
ଦକ୍ଷିଣା ପବନ ବହୁଅଛି ଖାଲି
ସୁଉ ସୁଉ ହୋଇ ଦିବସ ରାତି,
ପବନ ଖାଲି ତ ଧୂଳିରେ ଧୂସର
ସେଥିରୁ କପର ଛାଡ଼ିବ ତାତି ?
ଶାଗ ମୂଗ ସବୁ ନପାଉ ଜଳପାଏ
କିଏ ସେ ଢାଳିବ ଏତେ ବା ପାଣି ?
ଗଛ ଜୀବଜନ୍ତୁ ଝାଉଁଳି ଗଲେଣି
ମେଘ ତ ସେ କଥା ପାରୁନ ଜାଣି ।
ପବନ ଦେହରେ ମିଳେଇ ଯାଉଛି
ଗଗନ ଦେହରେ ଯାଉଛି ଲୁଚି,
ଦେହରେ ଜାକଛି ସବୁ ପାଣିପାକ
ଟୋପାଏ କି ହେଲେ ପାରୁଛି ମୁକ୍ତି ।
କିବା କାହିଁ ପାଇଁ ଇନ୍ଦ୍ର କୋପ କରି
ବାସନ୍ଦ କରିଛି ମେଘକୁ ଡାକି,
ସେଥିପାଇଁ ଅବା ଜମା ବରଷୁନି
ଇନ୍ଦ୍ର ହୁକୁମକୁ ପାରୁନି ଫାଙ୍କି ।”
ଶୁଣୁଥିଲେ ସେସି କୃଷ୍ଣ ବଳରାମ
ପଚାରିଲେ କୃଷ୍ଣ ପୂଜାର କଥା,
ଉତ୍ତରିଲେ ନନ୍ଦ ଟିକିଏ ହସିଣ
ଆଉଁସି ଆଉଁସି କୃଷ୍ଣଙ୍କ ମଥା ।

“ଇନ୍ଦ୍ର ପବ ରଜା ସରଗ ରାଇଜେ
ନିଆଁ ପାଣି ବାଆ ତାଙ୍କ ଅଧୀନ,
ଏ ତିନିଙ୍କୁ ନେଇ ମେଘ ‘ଧନ୍ଦରେ
ବରଷଇ ପାଣି ଇଚ୍ଛେ ସେ ଦିନ ।
ବରଷା ନ ହେଲେ ବଞ୍ଚିବା କି ଆମେ
ଜୀଇବେ କି ଗାଈ ନ ଖାଇ ତୃଣ,
ଧରଣୀ କି ଆଉ ସୁନ୍ଦର ଦିଶିବ
ତରୁ ତୃଣ ଶସ୍ୟ ହୋଇବ ପୂର୍ଣ୍ଣ ?
ସେଇଥି ପାଇଁକି ବରଷେ ବରଷେ
ଇନ୍ଦ୍ର ପୂଜା ହୁଏ ହୁଅଇ ବର୍ଷା,
ଦୁର୍ଭିକ୍ଷ ହୁଏନା ଖାଇବାକୁ ମିଳେ
ଜଳୁସି ଉଠଇ ମାଉସ ରସା ।”
ହସିଦେଲେ କୃଷ୍ଣ ପଚାରିଲେ ପୁଣି
“କିଏ ଇନ୍ଦ୍ର, କିଏ ପବନ, ପାଣି ?
କିଏ ବା ବରୁଣ କିଏ ସେ କୁବେର
କପରି କାହାକୁ ପାରିବା ଜାଣି ?
ବିଶ୍ୱ ପ୍ରକୃତିର ଅଂଶ ଏକ ଏକ
ସମସ୍ତେ କରମ ଅଧୀନ ସିନା,
ବନ୍ଧା ହୋଇଛନ୍ତି କରମ-ସୂତାରେ
କେହି କି ରହିବ କରମ ବିନା ?
କରମକୁ ମାନି ଚଳନ୍ତି ସଭିଏଁ
ତାଙ୍କ ପାଇଁ ବନ୍ଧା ହୋଇଛି ବାଟ,
ସେ ବାଟରୁ ଟଳେ ଏଣେ ତେଣେ ହେଲେ
ସଂସାରେ ଘଟଇ ମହା ବିଭ୍ରାଟ ।
ପ୍ରକୃତି ଭିତରେ ମାନବ କେବଳ
ସ୍ୱାଧୀନ ତାହାର କରମ ପାଇଁ,
ଇଚ୍ଛା କଲେ ସିଏ ସୁଆଡ଼େ ସେଆଡ଼େ
ସ୍ୱାଧୀନ ଭାବରେ ପାରଇ ଯାଇ ।

ସ୍ୱାଧୀନକୁ ଛାଡ଼ି କଏ ସେ ପୂଜିବ
ଇନ୍ଦ୍ର ପର ପରାଧୀନକୁ ଯାଇ ?
ପୂଜିବାର ହେଲେ ପୂଜ ମାନବଙ୍କୁ
ନ ହେଲେ ପୂଜା ଏ ବାଛୁରି ଗାଈ ।
ଏଇ ନାଏ ଆମ ମାଟିରୁ ପଡ଼ିଛୁ
ସାଗର ରହିଛି ସ୍ୱ୍ୟାଡ଼େ ଶୀତଳ,
ତେଣୁ ତ ପବନ ସାରା ଦିନରାତି
ବହେ ଦିନ ସନ ହୋଇ ପ୍ରବଳ ।
ଆମର ଉତ୍ତରେ ଦେଖ ହିମାଳୟ
କୁଆପଥରରୁ ବଳି ଶୀତଳ,
ତାକୁ ଡେଇଁ କରି ବାହାର ଯିବାକୁ
ଅଣ୍ଟିବ ନାହିଁ ତ ପବନ ବଳ ।
ହେଇଟି ପବନ ହୋଇବ ଶୀତଳ
ପୁଣି ପଛମୁହାଁ ଆସିବ ଫେରି,
ବେଳ ହୋଇଲେ ଆସିବ ସେ ଛୁଏଁ
ଆଜ କିଛି ଦିନ ହୋଇବ ଡେରି ।
ଯେତେବେଳେ ଯାଇ ହୋଇବ ବରଷା
ଇନ୍ଦ୍ର କଏ ସେ ଯେ ବରଷା କରି,
ଦୁର୍ଭିକ୍ଷ ଦୂରାଇ ସୁଭିକ୍ଷ ଆଣିବ
ସଂସାରଟା ଦେବ ଧନରେ ଭରି ?
ପୂଜ ଗୋବର୍ଦ୍ଧନ ଦେଖିବ କିପରି
ମେଘ ଦେଇଯିବ ବରଷା ତାଳି,
ଏତେ ବର୍ଷିବ କାତ ମାରିଯିବ
କେହି ହେଲେ ପାରିବ କି ସମ୍ଭାଳି ?
କଣ ଜଣ କରି କରିବା ପାଇଁକି
ଅଛି ତ ସଂସାରେ ନିର୍ଦ୍ଦିଷ୍ଟ କର୍ମ,
ସେ କର୍ମ ସାଧିବା ବଧିକ ମାନବ
ଯୁଗେ ଯୁଗେ ଅଟେ ତାହାର ଧର୍ମ ।

ଯେ ଯାର କରମ        କରି ନ ପାରିଲେ
ତାହାର ସ୍ୱଧର୍ମ ହୁଅଇ ନଷ୍ଟ,
ଧର୍ମହୀନ ହେଲେ        କରମ ଭୂଇଁରେ
ଜୀବନ ଖେତେ ବହୁତ କଷ୍ଟ ।
ଆମ ଜାତି ଧର୍ମ        ଗୋରୁଙ୍କୁ ପାଳିବା
ତାଙ୍କୁ ଯୋଗାଇଲେ ପାଣି ଓ ଘାସ,
ଆମର କରମ        କରିପିବା ଆମେ
ଆଉ କା'ର କିଆଁ ହୋଇବା ଦାସ ?
ଯାହା ଯାହା ଦେଇ        ପୂଜନ୍ତେଇ ଇନ୍ଦ୍ର
ସେଇସବୁ ଦେଇ ପୂଜିବା ଗିରି,
ଦେଖିବା କିପରି        ଆମ ଗୋପପୁରେ
ହସିବନ ଆସି ସକଳ ଶିରି ।
ଆମ ଜାତିର କି        ଅଛି ଅଧିକାର
ଭଲ ଘର କରି ରହିବା ପାଇଁ ?
ସ୍ୱର୍ଗ ଦେବତାଙ୍କୁ        ପୂଜିବା ପାଇଁ ତ
ଆମ ଅଧିକାର କେଉଁଠି ନାହିଁ ।
ପୂଜିବାକୁ ହେଲେ        ଖୋଜିବା ବ୍ରାହ୍ମଣ
ତାଙ୍କର ଦେବତା ପୂଜିବେ ସେହି,
ସେଠେଇ କାହାର        ଗୁଇ ପଡ଼ିବନ
ସେ ପୂଜା କି ଦେଖିପାରିବା କେହି ?
ତାଙ୍କର ତ ଅଛି        ବହୁ ଶିକ୍ଷା ଦୀକ୍ଷା
ବହୁ ତନ୍ତ୍ର ମନ୍ତ୍ର ବହୁ ଦେବତା,
ତାଙ୍କ କଥା ସବୁ        ନୁହେ ମଣିଷର
ସେ ତ ବ୍ରହ୍ମାଙ୍କର ସ୍ୱମୁହଁ କଥା ।
ତାଙ୍କର ତ ଅଛି        ରାଜ୍ୟ ଜନପଦ
ଘର ଅଟ୍ଟାଳିକା ରହିବା ଲାଗି,
ଆମ ପାଇଁ ଏଇ        ପାହାଡ଼ ଅରଣ୍ୟ
ତାଙ୍କ ପାଖେ ଗଲେ ଚଡ଼ନ୍ତି ରାଗି ।

ତାଙ୍କ ଧର୍ମ ସବୁ ବେଦର ଦେବତା
ଇତର ମୂର୍ଖରେ ବେଦ ଅଶୁଦ୍ଧ,
ତାଙ୍କ ପାଇଁ ପରା ଦ୍ରବ୍ୟ ସନ୍ତୁ ଅନ୍ନ
ଆମର କୋଦୁଅ ମାଣ୍ଡିଆ କ୍ଷୁଦ ।
ସେ ଯାହା କରନ୍ତି ସେ ତ ବେଦଗାର
ସେଥିରେ କି କାହିଁ ରହିବ ଭୁଲ ?
ଆମ କଥା ପରା ଗୃଜର, ନେଉର
ତାଙ୍କ କଥା ସଙ୍ଗେ ହେବ କି ତୁଲ ?
ତାଙ୍କ ଦେଓଙ୍କର ଭୋଗ ପାଇବାକୁ
ଅଧିକାର ପରା ନାହିଁ ଆମର,
କୋଉ ଦେଓ ପାଖେ ଗୁହାରି କରିବ
ଅନାର୍ଯ୍ୟ ଗଉଡ଼ ହୀନ ପାମର ?
ଆମ ପାଇଁ ପରା କେବଳ ଜାହିରା*
ତାଙ୍କୁ ହିଁ ପୂଜିଲେ ଆମର ଭଲ,
ଯାହାକୁ ତାହାକୁ ପୂଜୁଥାଅ ପଛେ
ମନଟିକୁ କର ଖାଲି ନିର୍ମଳ ।
ତାଙ୍କ ନିରାକାର ପୂଜନ୍ତୁ ସେମାନେ
ଆମ ଦେଓଙ୍କର ଅଛୁ ଆକାର,
ସାକାର ହେଉ ବା ନିରାକାର ହେଉ
ଜାଣେ ହିଁ ସବୁଠି ଏକ ପ୍ରକାର ।
ଆମେ ଖାଉଥାଇଁ କଂଚ୍ଚ ଫଳମୂଳ
କି ଅବା ତାହାକୁ ନିଆଁରେ ପୋଡ଼ି,
ସେମାନେ ଖାଆନ୍ତି ରାନ୍ଧି ବାଢ଼ିକରି
ତା ସଂଗରେ ଘିଅ ମସଲା ଯୋଡ଼ି ।

---

* ଆଦିବାସୀଙ୍କର ଦେବପୀଠ ।

ଆମ ଛୁଆଁ ପାଣି    ଖାଇବେ ନାହିଁ ସେ
ମନକୁ ମନକୁ କେତେ ପାହୁଅ,
ଦୁଧ ଦିଅ ସବୁ    ଛଡ଼ାଇ ଖାଇବେ
ସେ ଚଳ କୁଆଡ଼େ ହୁଏନା ଛୁଆଁ !
ବାହା ପୁଆଣିରେ    ବାହାରିବେ ଯେବେ
ଆମକୁ ଅଣିବେ ବଣରୁ ଧରି,
ଶୁଆରି ପାଲଙ୍କି    ସଜାଇଣ ଦେବେ
ବସିବେ ଆମରି କାନ୍ଧରେ ଚଢ଼ି ।
ହଳଘ ବାଡ଼ିରେ    ଆମେ ବଳ ଦେଲେ
ସବୁ କଟକଣା ହେଇଥିପାଇଁ,
ତାଙ୍କ ଦେଖା ଆଗେ    ଶହ ଶହ ଜୀବ
ହଣା ହେଉଛନ୍ତି ବାଛନ୍ଧ ନାହିଁ ।
ଆମରି ବିଧବା    ସଂଗାଠାଏ ହେଲେ
କହନ୍ତି ତ ଛୁଇ-ଗୁକର କରି,
ତାଙ୍କ ବିଧବାକୁ    ପତିର ଚିତାରେ
କଲବଲ କରି ପୋଡ଼ନ୍ତି ଧରି ।
ପୂଞ୍ଜା ପୁଞ୍ଜା କରି    ବାହା ହୁଅନ୍ତି ସେ
କାହାକୁ ବା ବରି କାହାକୁ ହରି,
ତାଙ୍କ ସଂଗେ ଆମ    ଅଛବ ଜାତିକୁ
କିଏ ସେ ପାରିବ ସମାନ କରି ?
ଆମ ଘରଦ୍ୱାର    ଭାଂଗିଭୁଂଗି ଦେଇ
ଘଉଡ଼ିଲେ ବଟଳ ପଶିଲେ ବଣେ,
ଏତେ ଅତ୍ୟାଚାର    କଲେ ଯେତେବେଳେ
କେହି ହେଲେ ମନା କଲେ କି ଜଣେ ?
ସମତଳ କ୍ଷେତ    ଛଡ଼ାଇ ସେ ନେଲେ
ଚଢ଼ଲେ ଆମକୁ ଦେଲେ ପାହାଡ଼,
କହିଲେ ଡରାଇ    'ଯାଅ ସେଇଠିକି
ସେଇଠେଇ ରହ ପାହାଡ଼ ତାଡ଼' ।

ପାହାଡ଼ ତ ଆମ          ଘର ଓ ଦୁଆର
ଆମ ଧାନକ୍ଷେତ ଆମ ସଂବଳ,
ତେବେ କିଆଁ ଆମେ          ପାହାଡ଼ ନ ପୂଜି
ପୂଜିବା ବୈଦିକ ଦେବସକଳ ?
ପୂଜି କି ପାରିବା          ଭୋଗରାଗ ବାଢ଼ି
ପକାଇ ତହିଁରେ ତୁଳସୀ ଦଳ,
ଆମ ତୁଳସୀ ଯେ          ତୁଚ୍ଛା ବଣୁଆଡ
ଛୁଆଁ ପର ଆମ ଜାହ୍ନବୀ ଜଳ !"
କୃଷ୍ଣଙ୍କ କଥାରେ          ମନ ମାନିଗଲା
ଗଲେ ଗୋବର୍ଦ୍ଧନ ପୂଜିବା ପାଇଁ,
ତେଣେ ବଇଦିକ          ବ୍ରାହ୍ମଣେ ଏକାଠି
ରଗିଲେ ଗଉଡ଼ ଢଂଗକୁ ଗୃହିଁ ।
କହିଲେ, "ଗଉଡେ          ହେଲେ କି ବଡ଼ିଆ
ବୈଦିକ ଦେବତା ପୂଜିବା ଛାଡ଼ି,
ପାହାଡ଼ ଟୋଠାକୁ          ପୂଜିବା ପାଇଁକି
ଯାଉଛନ୍ତି ସବୁ ଅମଡ଼ା ମାଡ଼ି ।
ସଂଗରେ ଅଛନ୍ତି          ପିଲା ଗଉଡୁଣୀ
ଏମାନେ କି ପୂଜା କରିବେ ଯାଇଁ,
'ଗଉଡ଼ର କ'ଣ          ଅଛି ଅଧିକାର
କାହାକୁ କି କେବେ ପୂଜିବା ପାଇଁ ?
ଅନାର୍ଯ୍ୟ ମୂରୁଖ          ବେଦ ବ୍ରାହ୍ମଣଙ୍କୁ
ତିଳେହେଁ ନ ଡରି ଅବଜ୍ଞା କରି,
କୋଉ ସାହସରେ          ମାଡ଼ି ଯାଉଛନ୍ତି
ଅହ୍ଲଣିଆସବୁ ହାତରେ ଧରି !
କୋଉ ମନ୍ତ୍ର ପଢ଼ି          ପୂଜିବେ ପାହାଡ଼
ନୀଚ ପୂଜାରୀକୁ ହୀନ ଦେବତା,
ଆସ ଆସ ସବୁ          ଯିବା ରେ ସେଠିକି
କରିଦେବା ଥରେ ତାଙ୍କୁ ଜାବତା ।

ଏ ପୂଜାର ଫଳ ଭଲ ତ ନୁହଇ
ଯାଙ୍କ ପାଇଁ ସବୁ ମରିବା ସିନା,
ଇନ୍ଦ୍ର କୋପ କଲେ ବର୍ଷିବନି ଆଜି
ଫସଲ ହେବ କି ବରଷା ବିନା ?
ସତଆନାଶିଆ ଅଧମ ଗଉଡ଼େ
ଏ ଦୁର୍ବୁଦ୍ଧି ତାଙ୍କୁ କିଏ ସେ ଦେଲା,
ବ୍ରାହ୍ମଣ ଦେବତା ବେଦ ଆଢ଼ କରି
କେଉଁ ରଦ୍ଧବେଳି ଭଲ ତ ହେଲା !
କହିବା ବୁଝାଇ ଯଦି ନ ମାନିବେ
ଠେଂଗା ବାଡ଼ି ଧରି ପିଟିବା ମିଳି,
କେଉଁ ସାହସରେ ଗଉଡ଼ଗୁଡ଼ାକ
ଝାଙ୍କିପିବେ ବ୍ରହ୍ମ ଅନଳ ଗିଳି ?
ହେବ ନାହିଁ ଉଁହୁଁ ଭାଂଗିଦେବା ପୂଜା
ଉଜାଡ଼ିବା ଦ୍ରବ୍ୟ ଯାଆନ୍ତୁ ଫେରି,
ଧାଇଁ ଆସ ସବୁ ଚଂଚଳ ଚଂଚଳ
ଆଜି ଏତେ ଟିକେ କରନା ଡେରି ।
ଆଉ ଜଣେ ଥାଇଁ କହିଲା ରାଗରେ
"ସାତ ବରଷର ମେଂଚଡ଼ାଟାଏ,
ତାହାରି ବୋଲକୁ ମାନନ୍ତି ଗଉଡ଼େ
କରନ୍ତି ସେ ଯେବେ ଯାହା ବତାଏ ।"
ନ ସରୁଣୁ ପୁଣି କହିଲା ଅନେକ
"ସେ ଟୋକାକୁ କ'ଣ ମଣୁଛ ହାନ,
ଦି ଦି ଥର ପରା ନିଆଁ ଗିଳିଲାଣି
ସେଇଥି ପାଇଁକି ଏତେ ଗୁମାନ ।
ସାପ କାମୁଡ଼ିଲା ଗୁଡ଼ାଇ ଭିଡ଼ାଇ
ସେଥିରେ କି ତାର କିଛି କି ହେଲା,
ନିଆଁ ଗିଳାଟାକୁ ସାପବିଷ କେତେ ?
ସବୁ ତ କୁଆଡ଼େ ଉଡ଼ାଇ ଦେଲା !

କହୁଛନ୍ତି ସବୁ          କଂସ ମାରିବାକୁ
ସରଗୁଁ ଆସିଛି ଦେବତା କଏ,
ତେଣୁ ସିନା ତାର          ବହପ ବଢ଼ିଛି
ଦେବତା ବ୍ରାହ୍ମଣ ମାନୁନ ସିଏ ।"
ଆଉ ଜଣେ ଶୁଣି          କହିଲା ଗରଜି
"ଆମ ବାହ୍ମୁଣିଏ କଅଣ ଊଣା ?
ସେ ଧନ ଭଜନା          ମନା କରୁ କରୁ
ବାହାର ଆସିଲେ ହଲଇ ଗୁଣା ।
ଯୋଉ ଦିନୁଁ ଆମ          କଣ ଭୁଆସୁଣୀ
ଦେଖିଲେଣି ତାହାକୁ ବ୍ରାହ୍ମଣ ଭାତ,
ଆଉ କ ଟୋକାର          ମୁଣ୍ଡକୁ ପାଉଛି
ଯମ ଦେବତାର ମାରଣା ହାତ !
ଯୋଉ ଦିନୁଁ ଆମ          ଘରଣୀଏ ସବୁ
ଟୋକାକୁ ବଣରେ ଆସିଲେ ଦେଖି,
ସେହି ଦିନଠାରୁ          ଗୁଡ଼ ଘୁଡ଼ ସବୁ
ମନରେ ତାହାକୁ ରଖିଲେ ଲେଖି ।
ଗଉଡ଼ ଟୋକାଟା !          ସରଗ ଦେବତା ?
ରୂପ ଗୁଣ ସବୁ ଯାଇଛି ମିଶି,
ବ୍ରାହ୍ମଣୀ ତୁଣ୍ଡରେ          ଏସବୁ ପ୍ରଶଂସା
ସୁନ୍ଦର ଶୁଣେ କି ମରୁନା ଛି ଛି !
ସେଇଟା ତ ଖାଲି          ନିପଟ୍ଟ କାଳିଆ
ଅନାର୍ଯ୍ୟର ଚିହ୍ନ ସବୁ ତ ତା'ଠି,
ମୟୂର ଚନ୍ଦ୍ରିକା          କାଇଁଚର ମାଳ
ଗେରୁ ଚିତା ସଙ୍ଗେ ତିଳକ ମାଟି ।
ମୁହଁରେ ବଂଶୀ,          କାନ୍ଧେ ନ୍ଥାଟାଏ
ପାଦରେ କଠାଉ ହାତରେ ବାଡ଼ି,
ଏଇ ବେଶକୁ ତ          ଦେଖି ବ୍ରାହ୍ମଣୀଏ
ଧଉଡ଼ିଲେ ପୁଅ ଘଇତା ଛାଡ଼ି ।

ସବୁବେଳେ ଖାଲି ତୁଣ୍ଡରେ ତା କଥା
ଖାଲି ତ ସୁନ୍ଦର ଗଉଡ଼ ପିଲା,
କହେ ! ସେଇ ଖାଲି ଏକା ତ ସୁନ୍ଦର ?
କେତେ ଗଲେ ତୁମ ଚିଲା ଓ ଝିଲା !
ସେଦିନ ନେଇଣ ଦେଲୁ ସିନା ଭାତ
ସିଏ ହେଲେ କ'ଣ ଜମା ଖାଇଲା,
ଆଜ ପିଲାଙ୍କୁ ତ ବାଣ୍ଟିଦେଇ ସବୁ
ଜଳ ଜଳ ଉପରକୁ ମୁହିଁଲା ।
ସତେ କ ଅମିରୁ ଝରି ଆସୁଥିଲା
ଝାଉଁଧା ହୋଇଣ କୁଢ଼ ଦ ଧାର,
କବା କ ଚନ୍ଦ୍ରାରେ . ବୁଡ଼ିଥିଲା ସିଏ
ଯେ ଶନ୍ଦା ଲଲଟେ ଟାଣିଲା ଗାର ।
ମନ ହେଉଥିଲା ଝୁଆଇ ଦାଅନ୍ତ
ପୁଅ ପରି କରି କୋଳରେ ଧରି,
ଏତେ ଭାଗ୍ୟ ସତେ କାହାର ଅଛି ମ
ପୁଅ ପ୍ରସବିବ ସେ ପିଲା ପରି ।
ଆଜ ଏ ମୂର୍ଖ ଗଉଡ଼ଙ୍କ ସହ
ବେଦ ବ୍ରାହ୍ମଣର ହେବ ଲଢ଼ାଇ
ତେବେ ସିନା ଯାଇଁ ତାର ଏ ଗରବ
ସାହସ ବଢ଼ାଇ ଦେବା ଛଡ଼ାଇ ।
ଗଉଡ଼ର କେନ୍ଦୁ ଲଉଡ଼ ସହିତ
ବେଦର ଏ ଶ୍ରୁବ ପାରିବ ଟିକ ?
ଗଉଡ଼ଙ୍କ ପରି ବ୍ରାହ୍ମଣ ବାହ୍ମରେ
ସମତୁଲ ହୋଇ ବଳ ଅଛି କ ?
ସେଗୁଡ଼ାଙ୍କୁ ଯମ କଢ଼ାଇଲାଣି ତ
ମରଣ ର ବାଟ ମାରିବା ପାଇଁ,
ସେଥିପାଇଁ ପୁଣି ବୈଦିକ ବାହ୍ମଣ
ପିଟିବା ପାଇଁକ ବସିଛୁ ଗୁହିଁ ।"

ଦଇବେ ହୋଇଲା ପ୍ରବଳ ବରଷା
ଯେଠି ଯେତେ ଥିଲେ ଥରିଲେ ପଡ଼ି,
ବ୍ରାହ୍ମଣ କହିଲେ, "ଶୁଣ ରେ ଗଉଡ଼େ,
ଇନ୍ଦ୍ର ସଗିକର ଦେଲେଣି ରଡ଼ି ।
ସମ୍ଭାଳ ଏଥର ପୂଜ ଗିରିବର
ସର୍ବନାଶ ହେଲା ତୁମରି ପାଇଁ,
ପଳାଅ ପଳାଅ ଜୀବନକୁ ଧରି
ସେ ମେଂଚଡ଼ ଟୋକା କୃଷ୍ଣଟା କାହିଁ ?"
ଶ୍ରୀକୃଷ୍ଣ ଶୁଣିଲେ ବ୍ରାହ୍ମଣ ଟାହୁଲି
ବାହାର ଆସିଲେ ହରଷ ବୋଲି,
ଦେଖିଲେ ସକଳେ ହାତ ବଢ଼ାଇଣ
କାଣି ଆଂଗୁଠିରେ ପାହାଡ଼ ଟେକି ।
ଧଇଲେ ସହଜେ ଛତାଟାଏ ପରି
ରହିଲେ ସମସ୍ତେ ତାହାର ତଳେ,
ଦନେ ନୁହଇ କ ଓଳିଏ ନୁହଇ
ସାତ ଦିନ ଯାଏ ଟେକିଲେ ବଳେ ।
ବ୍ରାହ୍ମଣ କହିଲେ, "ଇନ୍ଦ୍ର ଗୋବିନ୍ଦର
ଲଢ଼ାଇ ଲଗିଛି ଦେଖିବା ଦେଖି,
ଇନ୍ଦ୍ର ତ ସ୍ୱଗରେ ବଜ୍ର ଘଡ଼ଘଡ଼ି
ବର୍ଷା ସଗରେ ଦେଉଛି ଛେଚି ।
ଗୋବିନ୍ଦ ପିଆଡ଼େ ଗୋରୁ ଗାଈ ନେଇ
ହାତରେ ପାହାଡ଼ ଧରିଛି ଟେକି,
ଗଉଡ଼ଗୁଡ଼ାକ ହାଲହୋଲ କରି
କାନ୍ଦୁଛନ୍ତି ଖାଲି ସମର ଦେଖି ।"
ସାତ ଦିନ ଯାଏ ହୋଇଲା ବରଷା
ବ୍ରାହ୍ମଣ ଯାଇଣ ଦେଖନ୍ତି ନିତି,
ବରଷା ଛାଡ଼ିଲା କୃଷ୍ଣ ପାହାଡ଼କୁ
ହାତରୁ ଓହ୍ଲାଇ ଥୋଇଲେ କ୍ଷିତି ।

ବ୍ରାହ୍ମଣ ଦେଖିଲେ ତୁଆ କରାମତି
କହିଲେ "ବଚନ ପିଲା ରେ ଘଡ଼,
ବ୍ରାହ୍ମଣୀ କହିବା କଥାକୁ ତ ଆଉ
ହସରେ ଉଡ଼ାଇ ଦାଣ୍ଡା ନାହିଁ ।
ଅନେକ ବ୍ରହ୍ମାଣ୍ଡ ଯାହାର ଦେହରେ
ଲଚ ରହିଅଛି ଅଣୁଟି ପରି,
ଗୋବର୍ଦ୍ଧନ ଗିରି କେତେ ବା ମାତର
ତାଙ୍କୁ ଟେକ କଟରେ ପାରେନା ଧରି ?"
ଇନ୍ଦ୍ର ହାରିଗଲ ବୋଲି ତ କହିଲେ
ଗୋବର୍ଦ୍ଧନ ପୂଜା କଲେ ପ୍ରଚୁର,
ସେଇ ଦିନଠାରୁ ବ୍ରାହ୍ମଣେ ବି ମିଶି
ବିଧିମତେ ପୂଜା କଲେ ତାହାର ।
ଲୋକେ ତା ଦେଖି କାଠ ଦିଅଁ ଟିଏ
ଜଗନ୍ନାଥ କରି ପୂଜୁଛି ମନେ,
କେବେ କେଉଁବେଳେ ଦରଶନ ଖୋଜ
ଯାଏ ସେ ଦିଅଁ ର ଛନ୍ଦାଚରଣେ ।
ଏତିକରେ କ'ଣ ସରିବ ତା ପାପ
ବ୍ରାହ୍ମଣୀ ପରି ତ କରିନ ସ୍ନେହ,
ସତେ ଜଗନ୍ନାଥ କାଠଦେହୁଁ ଆସି
ଦେଖାଇବେ ରକ୍ତ ମାଂସର ଦେହ !

———

# ବସ୍ତ୍ର ହରଣ

ଧରଣୀ ଦେହରେ ଅଛୁ କେତେଠାରେ
ଗାଧୁଅନ୍ତି ସବୁ ଲଙ୍ଗଳା ହୋଇ,
ନଈ ପୋଖରୀରେ ପଶନ୍ତି ପାଣିରେ
ତୁଠରେ ତୁଠରେ ବସନ ଥୋଇ ।
ଦିନେ ଗୋପୀମାନେ ଯମୁନା ନଈକୁ
ଗଲେ ଏକାଠିକ ହୋଇ ସକଳେ,
ହସାହସି ହୋଇ ଗୀତ ଗାଇ ଗାଇ
ପହଞ୍ଚିଲେ ସବୁ କଦମ୍ବ ତଳେ ।
ଗଛ ତଳଟି ତ ବଡ଼ ନିରମଳ
ଛାଇ ସୁଶୀତଳ ସୁଷମା ପୂର୍ଣ୍ଣ,
ଚଉଦିଗ ଚାହିଁ କାନେଇଲେ ପୁଣି
କାହିଁ ଶୁଭୁ ନାହିଁ ପୁରୁଷ ତୁଣ୍ଡ ।
ଫିଟାଇ ବସନ ଥୋଇଲେ ସୁଖରେ
ପଶିଲେ ପାଣିରେ ଖେଳିଲେ ହସି,
କୃଷ୍ଣ କାହିଁ ଥିଲେ କେତେବେଳେ ଆସି
କଦମ୍ବ ଡାଳରେ ରହିଁଲେ ବସି ।
ଦେହ ଦୋହଲାଇ ପାଣି ଚହଲାଇ
ଖେଳାଇ ହୁଅନ୍ତି ଲହରିରାଶି,
କାଳିଆ କବରୀ ହୋଇ କେଶ କେଶ
ଶିଉଳର ସମ ଦିଶଇ ଭସି ।

ନିଗଳା ଦେହର ମୁକୁଳା ସୁଷମା
ହୃଦେ ମୋରେ ନୁହି ଲୁଚୁ ତ ନାହିଁ,
ଯମୁନା କି ଆଉ ସେ ଶୋଭାକୁ ଯାକି
ଧରିଛି ହୃଦୟରେ ଭୋଗିବା ପାଇଁ ?
ପାଦୁଁ ବେକଯାଏଁ ଧରିଛି କୁଣ୍ଡାଇ
କେବେ କେବେ ପୁଣି ଗଣ୍ଡ ପରଶି ,
ଚୁମ୍ବି ଚୁମ୍ବିଦିଏ ଅଳପ ଅଳପ
ଖେଳି ଖେଳି ଖେଳି ମଧୁରେ ହସି ।
କାଚ ସ୍ୱଚ୍ଛ ଜଳ ତଳୁ ଉଠିସେ
ଫୁଟି ଫୁଟି ଦିଶେ କନକ କାନ୍ତି ,
ସଜଫୁଟା ଚଂପା କୁସୁମଗୁଚ୍ଛଏ
ଭାସୁଛି ବୋଲିଣ ଜଗାଇ ଭ୍ରାନ୍ତି ।
କେଁଳେ ବେଳେବେଳେ ପୃଥୁଳ ସ୍ତନ କା
ଉଚ୍ଛ୍ୱାସ ହୋଇଣ ପାଣିରେ ଭାସେ ,
କନକ କମଳ ବୃନ୍ତ ଭାସଇଁ କି
ଆଉ କା ସୁଷମା ଦେଖିବା ଆଶେ ?
ଗୋପୀଙ୍କ ବାହାରେ ଅଛି କି ସୁଷମା
ଆଉ କେଉଁଠାରେ ମୁକୁଳା ହୋଇ ?
ଶଶାଙ୍କ ଦେହରେ ଅଛି ତ କଳଙ୍କ
ଏବେ ବି ତହିଁରୁ ଯାଇନି ଧୋଇ ।
ପବନ ବହଇ ଧୀର ଧୀର ହୋଇ
ସେଇ ଦେହକୁ ତ ଛୁଇଁବା ପାଇଁ ,
ପାରେ ନାହିଁ ପରି ରହଇ ରାଗରେ
ଯମୁନାର ସୁଖ ସଂଭୋଗ ଚାହିଁ ।
କେବେ କେତେବେଳେ ଛୁଇଁ ଦିଏ ଟିକେ
ରକତଆ ଚୂନ୍ତ କଅଁଳ ଗାଲ ,
ସେତିକରେ କି ତା ତୃପତି ଆସଇ
ତେଣୁ ମାର ସଙ୍ଗେ ସମର ତାର ।

ଶେଷେ ଦାଣ୍ଡମାଇ ଗଗିଗଲା ପରା
ଖେଳିଲା ଲଜଁଘ ଉଡ଼ାଇ ବାସ,
କଦମ୍ବର ଡାଳେ ଡାଳେ ଲଖାଇଲା
ଗୋପୀଙ୍କ ମନରେ ଜାଗିଲା ତ୍ରାସ ।
ବସନେ ଅନାଉଁ ଅନାଉଁ ପଡ଼ିଲା
କୃଷ୍ଣଙ୍କ ଉପରେ ନଜର ଯାଇ,
କେଣିକ ବା ଯିବେ କୃଷ୍ଣ ବସିଛନ୍ତି
ହସି ହସି କରି ତାଙ୍କୁ ହିଁ ଚାହିଁ ।
ଆଖି ଠରାଠରି ହୋଇକରି ସବୁ
ଜିଭ କାମୁଡ଼ିଲେ ମୁହଁକୁ ମାଡ଼ି,
ସେଇଠାକରେ ତ ମନ ମରିଗଲା
ଖେଳ କଉତୁକ ଗଲା ତ ଛାଡ଼ି ।
ଲାଜ ସରମରେ ପଡ଼ିଗଲେ ଯିନା
କହିଲେ ବିନମ୍ରି, "ଦେଏ ରେ ବାପ,
ଦୁର୍ଦ୍ଦାଣ୍ଡିଆ ବାଆ କୋଉଠୁଁ ଆସିଲା
ଆମର ମହତ କଲାଟି ନାଶ !"
ଶ୍ରୀକୃଷ୍ଣ କହିଲେ, "ଭଲ ଘର ଝିଅ
ଭଲ ଘର ବୋହୂ ଲଙ୍ଗଳା ହୋଇ,
ପାଣିରେ ପଶିଲ କୋଉ ପସନ୍ଦରେ
ଲୁଗାଟିମାନଙ୍କୁ ଉପରେ ଥୋଇ ?
ମୋର କ ଗରଜ ପଡ଼ିଛି ବସନ
କାଢ଼ିଦେବି ସରୁଡ଼ାଳରେ ଚଢ଼ି,
କୋଉ ପସନ୍ଦରେ କହୁଛ ଗୋ ସବୁ
ତୁମ ପାଇଁ କ'ଣ ମରିବା ପଡ଼ି ?
ଅଣ୍ଡିରା ପୁଅ ମୁଁ ମାଇପି ପାଲଟା
ଜାହିଁକି ହୁଅନ୍ତିବି କହ ତ ଭଲ,
କହିବଟି ସତ କଏ ସେ କାହିଁକି
ତୁମକୁ ଏଠେଇ ଲଂଗଳା କଲା ?

ଜାଣି ନ ଥିଲ କି ନନ୍ଦ ଘାଟଟାଏ
    ବାର ଲୋକେ ଯାଆ ଆସ କରିବେ,
ତୁମକୁ ଲାଂଗଳା ହେବା ଦେଖି ପାଇଁ
    ଘରେ ଘରେ ପଣି ନିନ୍ଦା ଗାଇବେ ।
ପବନକୁ ସବୁ ମନା କଲ ନାହିଁ
    ଉଡ଼ାଇ ନ ଆଣୁ ବସନ କା'ର,
ତୁମର ଲାଂଟଳା ଶୋଭା ଦେଖିବାକୁ
    ଇଚ୍ଛା କି ଗୋ ସତେ ନ ଥିଲ ତାର ?
ପବନର ଦେହ ନାହିଁ ବୋଲି କରି
    ଭାବିଲ କି ତାର ନାହିଁ ଗୋ ମନ ?
ସବୁରି ସଙ୍ଗରେ ତାହାର ପୀରତି
    ସମସ୍ତଙ୍କୁ ଦେଇଯାଏ ଚୁମ୍ବନ ।
ପୁରାଣ ଦେହର କଥାଗୁଡ଼ାଏ ଗୋ
    ମନଦେଇ ସବୁ କହୁଛି ଶୁଣ,
କେଉଁଠି କଅଣ କରିଛି ପବନ
    ତାହାର ତ ଅଛି ବହୁତ ଗୁଣ ।
ଉର୍ବଶୀ ଉପରେ ଉଡ଼ି ଯାଉଥିଲା
    ଉଡ଼ାଇଲା ବାସ ପାଡ଼ିଲା ଛୁଇଁ,
ବିଶ୍ୱାମିତ୍ରକ ଋଷି ତପ କରୁଥିଲେ
    ମୁଣ୍ଡ ଟେକି ଥରେ ଦେଲେ ଗୋ ଚାହିଁ ।
ଥରୁଟିଏ ଖାଲି ଗୋଟିଏ ଥାନରେ
    ନିମିଷକ ପାଇଁ ପଡ଼ିଲା ଆଖି,
ସେଇ ଥରକରେ ଟଳିଲା ଧଇର୍ଯ୍ୟ
    ରହିଲା ନଜର ସେଇଠି ଲାଖି ।
ଋଷିଗିରି ହେଲା ଛଳିଭୁଳି ଚୂନା
    ସେଇଥିରୁ ଋଷ୍ୟଶୃଙ୍ଗ ଜନମ,
ତୁମର ଦେହଟା- ଯାକ ତ ମୁକୁଳା
    ତା ଦେଖି ହେବନି କା' ମତି ଭ୍ରମ ?

ପବନର କ'ଣ ନ ଥିଲା କି ଭାଗ
ଛୁଇଁଥିଲା ଜବେ ଉର୍ବଶୀ ଅଙ୍ଗ,
ଲୋଡ଼ୁ ନ ଥିଲା କି ଦଣ୍ଡେ ଦଣ୍ଡେ
ରମଣୀ ସଂଭୋଗ ସୁଖର ସଂଗ ?
ଯାଉ ଯାଉ ଥରେ ପଡ଼ିଗଲା ଆଖି
ଯୁବତୀ କୁମାରୀ ଅଞ୍ଜନା ଅଙ୍ଗେ,
ସେତିକି ବେଳରୁ ହେଲା ଗୋ ପାଗଳ
ଶେଷେ ପ୍ରୀତି କଲା ତାହାର ସଙ୍ଗେ ।
ସେଇଥିରୁ ପରା ହନୁମାନ ଜନ୍ମ
ଏସବୁ କଥାକୁ ଜାଣିଛ ପରା ?
ଫୁଲ ଜଗତରେ ପ୍ରସ୍ରେ ବାଣ୍ଟଇ
ଏଇ ପବନଟା ବୁଝିଣ ଧରା ।
ତାହାର ତଳିଁରେ ନ ଥାଏ କି ସୁଖ ?
ତେବେ ସେ କାହିଁକି ବୁଲନ୍ତା ଖାଲି ?
କୋଉଠେଇ ହେଲେ ବସନ୍ତା ନାହିଁ କି
ହନ ବନ୍ତ ଧାଇଁ ଥାଆନ୍ତା ଚାଲି ?
ତୁମ ସୁଷମାର ନାହିଁ କରାମତି
ତାକୁ ଭୋଗିବାକୁ ଟିକେ ନୁହେ ବାଇ,
ଦେଖୁଛ ଯମୁନା କୋଳରେ ଧରଛି
ପବନ ଆସୁଛି କୋଉଠୁ ଧାଇଁ ।
ଋଷି ଆଶ୍ରମରେ ଇନ୍ଦ୍ର ଓ ତପନ
ଦେଖିଦେଲେ ଯହୁଁ ଅହଲ୍ୟା ଶିରୀ,
ଭିତରେ ଚୂରିଇ ରଖିଲେ ଶୀରନ୍ତି-
ଲାଳସା ମନକୁ ହୃଦୟ ଚିର ।
ସେଇ ଶୀରଷ୍ତରୁ ଜନମ ହୋଇଲେ
ବାଳି ଓ ସୁଗ୍ରୀବ ଦୁଇଟି ଭାଇ,
ଶେଷ ଶୀରଷ୍ତରୁ ମାଙ୍କଡ଼ ହୋଇଲେ
କିଷ୍କିନ୍ଧ୍ୟା ବଣରେ ରହିଲେ ଯାଇ ।

ଶୂର୍ପଣଖାଠାରୁ ଜାନକୀ ସୁଷମା
ଶୁଣିକରି ଧାଇଁ ଆସି ରାବଣ,
ଧଇଁନେଲା ବଳେ ପଶିଣ ଅରଣ୍ୟେ
ଅକାଳ ମରଣ କଲା ବରଣ ।
ଫୁଲଟିଏ କାହିଁ ରଂଗଢଂଗ ହୋଇ
ଫୁଟିଲେ ତା ପାଶେ ଯାଏନା ଆଖି,
ଯାଏ ଯେବେ ଥରେ ଫେରି କି ପାରଇ
ସେଥିରେ ତା ମନ ଯାଏନା ଲାଖି ?
ମୋତେ ପିଲଟିଏ ବୋଲି କହୁଅଛ
କାହିଁକି କହୁଛ ଶୁଣେ ମୁଁ ଥରେ,
ଅଛି ତ ଶରୀର ଅଛି ଆଖି କାନ
ମନ କ'ଣ ମୋର ନାହିଁ ଭିତରେ ?
ସେ ମନଟି କ'ଣ ? ପ୍ରଣୟ୍ର ବାସନା
ନୁହଇ କି ତାହା କହିଲ ସତ,
ତୁମମାନଙ୍କର ନାହିଁ ସେ ଲାଳସା ?
ତୁମେ ତ ଭ୍ୟାଇଲ୍ ସବୁ ଅନର୍ଥ ।
ବାଳକ ହେଉ ବା ଯୁବକ ସେ ହେଉ
ହୃଦୟରେ ଥାଏ ପ୍ରଣୟ-କଢ଼ି,
ପ୍ରୀତି ଭୋଗିବାକୁ ଆଶାଟିଏ ରଖି
ଦିନୁଁ ଦିନ ଯାଉଥାଏ ସେ ବଢି ।
ସେ କଳିଟି ଖାଲି ଶୋଇଥାଏ ସିନା
ସେଇଥିରେ ଥାଏ ପୀରତି ଲୁଚି,
ନିଦରେ ସପନ ଦେଖୁଥିଲା ପରି
ଦିଶି ଦିଶେ ନାହିଁ ମଧୁର ରୁଚି ।
ସେ ରୁଚିଟି ବା କି ଲାଜକୁଳୀଟିଏ
ମୁହଁ ଫିଟାଇଣ କହେନା କଥା,
ଲାଜ ଛାଡ଼ିଗଲେ ଭୋଗିବାକୁ ପ୍ରୀତି
ଧାଇଁ ଆସେନା କି ଟେକିଣ ମଥା !

ମୂକର ମନରେ ଥାଏନି କାମନା ?
ଗୀରତ ତା କାଟେନ ଫୁଙ୍କେନା ମନ୍ତ୍ର ?
ଟୋଭିର ପସର ମୁକୁଳା ଦେହର
ଆଖି କାନ ନୁହେଁ ବେଚାର ଯନ୍ତ୍ର ।
* ସେ ଯନ୍ତ୍ର ବାଜଇ ମନକୁ ମନକୁ
ଶବଦ ଯାଏ ତ ପବନେ ଭାସି,
କଥା କହୁ କହୁ ଠିଆ କରାଦିଏ
ଲୋଚନ ଆଗରେ ସୁଷମାରାଶି ।
ସେଇଥିରେ ଯାଏ ବୁଡ଼ି ବୁଡ଼ି ମନ
ଆଉ ତ ସେଥିରୁ ଉଠେଇ ନାହିଁ,
ମାରିବେ ମାରିବେ ଖୋଜୁଥାଏ ତାକୁ
କଥା କହୁଁ କହୁଁ ଯାଏ ସେ ପାଇ ।"
"କଅଣ ଗୁଡ଼ାଏ କହୁଛୁ ରେ କୃଷ୍ଣ,
କେଉଁଠୁ ଶିଖିଲୁ ଏସବୁ କଥା ?
କାଲିକା ଲଣ୍ଡି ତୁ ଡରି ଭୟ ନାହିଁ
ମାନ ମହତର ଖାଇଲୁ ମଥା ।
ଆଜହୁଁ ତ ଏତେ ବଡ଼ ହେଲେ କେତେ
ରସିକପଣିଆ କରିବୁ ନାହିଁ,
ଦେଏ ଲୁଗା କାଢ଼ି ଫେଉଛୁ ନେହୁରା
କାହିଁକି ବସିଲୁ ଆମକୁ ରୁହିଁ ?"
ଆତୁର କହିଲେ, "ଜାଣିଥିଲୁ କି ରେ
ପବନ ବହିବ ଏଇନା ଏଠି,
ତୁଂବା ଆସି କାହୁଁ ଗଛଠାରେ ଚଢ଼ି
ଆମକୁ ଅନାଇଁ ବସିବୁ ସେଠି ?"
ଶ୍ରୀକୃଷ୍ଣ କହିଲେ, "ମୁଁ ଏବେ ଯାଉଛି
ନିଅ ସବୁ ଲୁଗା ଗଛରେ ଚଢ଼ି,
ନ ହେଲେ ହଲାଅ ଗଛକୁ କୁଣ୍ଢାଇ
ବସନ ଉପରୁ ପଡ଼ିବ ଝଡ଼ି ।"

* Television

ଗୋପୀଏ କହିଲେ, "କି କଥା କହୁଛୁ
ମାଇପେ କୋଉଠି ଚତ୍ରନ୍ତ ଗଛ ?
ଲୁନା ପୁଅ ପରି ପାରି ଦେ ବସନ
ଆମେ ସବୁ ପିନ୍ଧି ବୁଲି ରେ ପଛ ।"
ଶ୍ରୀକୃଷ୍ଣ କହିଲେ, "ନିଅ ନିଅ ଆସ
ବସନଗୁଡ଼ିକ ଦେଉଛି ଛାଡ଼ି,
ଲଜ ସରମ ତ ପୋଡ଼ ଖାଇଲଣି
ଆସୁ ନାହଁ କିଆଁ ପାଣିକି ଛାଡ଼ି ?"
ଆସିବେ କି ସବୁ ନେବେ ଯେଝା ଲୁଗା ?
ଶ୍ରୀକୃଷ୍ଣ ଟିକିଏ ଦେଲେଟି ହସି,
ସେଇ ହସଟିକ ଗୋପୀମାନଙ୍କର
ମରମ ଭିତରେ ଦେଲା ତ ଦଂଶି ।
ମନକୁ ମନକୁ କୁହାକୋହି ହେଲେ
ଆଜଯାଏଁ ଟୋକାର ଏତିକି ଗୁଣ,
ବଡ଼ଟିଏ ହେଲେ କଅଣ ନ କରିବ ?
କଟା ଘାଆରେ ତ ବୋଳିଲା ଲୁଣ ।
"ଯାଆ ରେ ଯାଆ ରେ କହିବାଇ ତୁ ଏଠୁଁ
ସୁନାପୁଅ ମୁହଁ ବୁଲାଅ ଦେଖି,
ତୁ ଅନାଇଲେ କି ଲୁଗା ଆଣିବୁ ରେ
କହ ତୁ ହାତ କି ପାରିବୁ ଟେକି ?"
ଶ୍ରୀକୃଷ୍ଣ କହିଲେ, "ରହ,କେତେ ବେଳ
ରହିବ ଗୋ ତୁମେ ପାଣିରେ ଯେଠି,
ଲୁଗା କାଢ଼ି ଦେଲ ବୋଲି କରି କ'ଣ
କରୁଥିବ ଖାଲି ତୁମରି ବେଠି ।
ଶୀତେଇ ଶୀତେଇ ମରୁଛ ପାଣିରେ
ନେଉ ନାହଁ କିଆଁ ଉପରେ ଆସି ?
ଏଇନା ଆସିବେ "କିଏ କେତେ ଆଉ
କାହାର ମହତ ଯିବଟି ଭସି ?"

ଉଠିଲେ ସମସ୍ତେ ଲାଜ ହସ ହସି
ଗୁପତ ଆନକୁ ଘୋଡ଼ାଇ କରେ,
କହିଲେ ବଚନ ଦେଏ ରେ ପକାଇ
ଶରଣ ପଶୁଛୁଁ ତୋ ଚରଣରେ ।"
ଶ୍ରୀକୃଷ୍ଣ କହିଲେ, "ସେ କଥା ହେବନି
ନଅ ସେଝା ବାସ ହାତ ବଢ଼ାଇ,
ମୁଁ ତ ଆଣି ନାହିଁ ଯାଚ ଦେବ କିଆଁ ?
ପବନ ଆଣିଲା ସିନା ଉଡ଼ାଇ ।"
ଉପାୟ ନ ପାଇ କଲେ ତ ସେଇଟା
ଲାଜ ସରମରେ ପୋତିଲେ ମଥା,
କହିଲେ, "ରେ କୃଷ୍ଣ ! ଆଜଠାରୁ ଆଉ
କେବେହେଁ କହିବୁ ନାହିଁ ତୁ କଥା ।
ଲାଜର ବାଜ ତୁ ବୁଝିବୁ ରେ କାହୁଁ
ଲାଜକୁଳୀ ସିନା ଡେଇଁ ନଇଁ,
ଅଣ୍ଡିରା ଟୋକାର କି ଲାଜ ସରମ
ଭୁଣ୍ଡରେ ସେ ସିନା ବଅଇ କହି ।
ଆଜି ଯାହା କଲୁ କାଳକାଳକୁ ରେ
ମନରେ ଆମର ରହିଲୁ ଲେଖି,
ଆଉ କୋଉଦିନ ଭଲରେ ମନ୍ଦରେ
ଆମର ସିଆଡ଼େ ଯିବୁଟି ଦେଖି ।
ଯିବୁ ଯେବେ ଶୁଣ କହୁଛୁଁ ରେ ତୋତେ
ଗାଲରେ ତୋହର ଦେବୁରେ ଚଆଁ,
ଆଜନ୍ମ ଟୋକାର ଏଡ଼କ ବହପ
ଲାଜ ମାଡୁ ନାହିଁ ମୁହଁକୁ ଛୁଆ ।"
ସେ ଯୁଗରେ କ'ଣ ଫଟୋଉଠା ଯନ୍ତ୍ର
କୃଷ୍ଣ ନେଇଥିଲେ ହାତରେ ଧରି ।
ନ ହେଲେ କିଏ ସେ ବହିର ପୃଷ୍ଠାରେ
ସେ ଛବି ଥୁଆନ୍ତା ସୁନ୍ଦର କରି ।

କିବା ଆଜ କଥ ଭୁଲିଛି ଏ ଧରା
ବଣରେ ବୁଦାରେ ଥିଲ କି ବସି,
ଗୋପୀମାନଙ୍କର ଇଂଗଲା ଛବିଟି
ଆଂକି ଥୋଇଗଲ ସରମେ ହସି ।
କାଲେ ଗୋପୀମାନେ ପରେ କେତେବେଳେ
ସତ କଥାଟାକୁ ଦେବେଟି ଫାଙ୍କି,
ସେଥିପାଇଁ କ'ଣ ଚିତ୍ରକର କୃଷ୍ଣ
ନିଜେ:ସେ ଛବିଟି ରଖିଲେ ଆଂକି ।
ହେ କୃଷ୍ଣ ତା ପଛେ ତୁମ ଛବିଟିକୁ
କେତେ ଚିତ୍ରକର କଲେଣି ଚିତ୍ର,
ଲେଖକ କେ ସତେ ଦେଖି ଦେଖି କରି
କରି ନାହାନ୍ତି ତାର ନେତ୍ର ଚିତ୍ର ?

———

# ରାସ

ପ୍ରକୃତି ରଖିଛି ବହୁତ ଦରବ
ମଣିଷର ସୁନ୍ଦର ଭୁଞ୍ଜିବା ପାଇଁ,
କେଉଁ ଜୀବଟା ବା ଅଛି କି ସଂସାରେ
ଆକୁଳ ହୁଏନା ଭୁଞ୍ଜଇ ନାହିଁ ?
ଇନ୍ଦ୍ରିୟଗୁଡ଼ିକ ସରଜନା କରି
ସାଇତି ଦେଇଛି ପ୍ରତି ଦେହରେ,
ବିଶ୍ୱଚରାଚର ଇନ୍ଦ୍ରିୟବିମୁଗ୍ଧ
ଇନ୍ଦ୍ରିୟ ବୁଡ଼ିଛି ଖାଲି ସ୍ନେହରେ ।
ଏହି ଇନ୍ଦ୍ରିୟର ପରିତୃପ୍ତି ପାଇଁ
ଆକୁଳତାଟିଏ ଦେଇଛି ଥୋଇ,
ଇଚ୍ଛା ଓ ଆଗ୍ରହ ନ ଥିଲେ ମନରେ
ଆପଣାର କେହି ପାରେନା ହୋଇ ।
ଏହି ଆକୁଳତା ବଢ଼ିଯାଏ ଯେବେ
ଖୋଜି ଆଉ ଟିଏ କରଇ ସାଥୀ,
ହୃଦ ଦିଆନିଆ ହୋଇଯାଏ ଗୁଏଁ
ପ୍ରେମରେ ପୁଲକି ଉଠଇ ଗାତ୍ର ।
ଅତି ଆପଣାର ନୋହିଲେ ହୁଏନା
ହୃଦୟ ବିକିବା କିଣିବା କାମ,
ସେଇଠିକ ହେଲେ କଳୁଷିତ କେବେ
ହୁଏନା କୋଉଠି ପ୍ରେମ ତା ନାମ ।

ପାଣି ସଙ୍ଗେ ପାଣି ଦୁଧ ସଙ୍ଗେ ଦୁଧ
ମିଶିଗଲେ ଯେସନ୍ତେ ହୁଏନା ବାଛ,
ସେହ୍ନପରି କାହ୍ନିଁ ଜଣାପଡ଼େ ନାହିଁ
ପ୍ରେମେ କେ ଉଶ୍ୱାସ କଏ ବା ଶ୍ୱାସ ।
ଗଙ୍ଗା ଯମୁନାର ବାରିଧାର ପରି
ଦିଶେନା ଆଖିକୁ ଅଲଗା ହୋଇ,
ଧଳା କଳା ସବୁ ଏକା ହୋଇଯାଏ
ମଝିରେ ଦିଏନା ବାଡ଼ କେ ଥୋଇ ।
କୃଷ୍ଣ ଗୋପୀଙ୍କର ପ୍ରେମ ଭିତରେ କି
କୋଉଠି ନ ଥିଲା ଗୋଟିଏ ରେଖା,
ଚିହ୍ନାଇ ଦେବାକୁ ଏକା ନୁହେଁ ବୋଲି
ଏ କଥା କି କାହିଁ ନ ଥିଲା ଲେଖା ?
କୃଷ୍ଣ ପରା କହି— ଥିଲେ ସେମାନଙ୍କୁ
"କାହିଁକି ଆସିଲ ଅଧ ରାତିରେ,
ଗିରସ୍ତ ଶାଶୁଙ୍କୁ ଲୁଚି ଲୁଚି କରି
ଆସିଲ ଡର କି ନାହିଁ ଚିତ୍ତରେ ?
ଫେରି ଯା ଫେରି ଯା ଚଞ୍ଚଳ ଘରକୁ
ଶାଶୁ ନଣନ୍ଦ ତ ଥିବେ ଗୋ ଶୁଇଁ,
ପଚାରିବେ ଯେବେ କାହିଁ ଯାଇଥିଲ
କଅଣ କହିବ ତାଙ୍କୁ ବୁଝାଇ ?
ସ୍ୱାମୀ ଅନ୍ଧ ହେଉ କିବା ହେଉ ଖଞ୍ଜ
ନାରୀର ସେ ପରା ପରମେଶ୍ୱର,
ଫେରି ଯା ଫେରି ଯା ବହନ ଘରକୁ
ଘରେ ସେମାନଙ୍କ ଯତନ କର ।"
ମନ ବଢ଼ିବାକୁ କହିଦେଲେ ସିନା
ମନର ଭାବ ତ ଭିନ୍ନ ପ୍ରକାର,
ସେ ମନଟିକୁ ତ ବ୍ରହ୍ମା ବୁଝିନ୍ତିନି
କି ଅବା ବୁଝନ୍ତେ ଗୋପିନୀ ଛାର !

ପରୀକ୍ଷାରେ ଗୋପୀ          କନ୍ଦଗଲେ ଯହୁଁ
ପଡ଼ିଲେ ଗଡ଼ିଲେ ଚରଣ ତଳେ,
ଲୋଚନରୁ ତାଙ୍କ          ଧାର ଧାର ହୋଇ
ପ୍ରେମର ପ୍ରବାହ ମନକୁ ଗଲେ ।
କେତେ କଉଣଲେ          ବିଧାତା ଗଢ଼ିଛନ୍ତି
ଦୁଇ ଗୋଟି ଜାତ ପୁରୁଷ ନାରୀ,
ରୂପରେ ଗୁଣରେ          କାମରେ ବଳରେ
କେହି କେବେ ସମ ନୁହେ କାହାରି ।
ଯୋଡ଼ଏ ଅସମ          ମିଶାଇ ଦେବାକୁ
ବାନ୍ଧି ଦେଇଅଛି ବୟସ ବେଳ,
ସେହି ଯୋଡ଼କୁ ତ          ଅନାଇ ବସନ୍ତ
ଦୁହେଁ ଖେଳିବାକୁ ପ୍ରେମର ଖେଳ ।
ବାଲ୍ୟ ଯଉବନ          କୈଶୋର ପ୍ରଭୃତି
ବାରଧକ୍ୟ ଆହି ବୟସ ମାପ,
ସେଇଥି ଭିତରୁ          କାର କା' ସଙ୍ଗରେ
ପ୍ରୀତି ଭୋଗ ପାଇଁ ମିଳଇ ଖାପ ।
ବାଲ୍ୟ ଜାଣେ ନାହିଁ          କୋଉ କଥାଟିକୁ
ଫୁଲଟିଏ ପରି ଥାଏ ନିର୍ଦ୍ଦୋଷ,
ସମାଜେ ସଂସାରେ          କେବେହେଲେ କେହି
ବାଲ୍ୟର ଉପରେ କରେନା ରୋଷ ।
ଶ୍ରୀକୃଷ୍ଣ ପିଲାଟେ          ଦେଖିବାକୁ ସାନ
କିନ୍ତୁ ସବୁ ଶକତିର ଆଧାର,
ପରମାଣୁ ଯେହ୍ନେ          ଅତି ସୂକ୍ଷ୍ମଟିଏ
ଭିତରେ ତାହାର ଶକ୍ତି ଅପାର ।
ଦ୍ରବ୍ୟ ବଡ଼ ହେଉ          ଅବା ହେଉ ସାନ
ଗୁଣ କ୍ରିୟା କର୍ମ ଶକତି ବିନା,
କାହିଁ କଏ କେବେ          କରିଛି କରମ
ସେହି ସମରଥ ଶକତି ବିନା ?

ଶ୍ରୀକୃଷ୍ଣ ବାଳକ କଲୁ ସେ ତ ପୃଣ୍ଣି
ପୃଣ୍ଣିରେ ଶକତ ହୁଏ ଅଭାବ ?
ପଦାର୍ଥରେ ଶକ୍ତି ଲୁଚକର ଥାଏ
କାମେ ଜଣାପଡ଼େ ଶକତ ଭାବ ।
ଘଟଶାଦା ଅଙ୍କୁର ଦୁଇ ଦୁଇ ଥର
ଦେଖିଥିଲେ ଦେଉଁ ବଣ୍ଣମୂରତ,
ସେଥିରେ କ ସତେ ନ ଥିଲା କୋଉଠି
ଲୁଚି କରି ଘୁର ଯୁବା ଶକତ ?
ସବୁ ମଣିଷ କ ସମାନ ସଂସାରେ
କାହା ଶକ୍ତି ଉଣା ଅଧିକ ନୁହେ,
ଶକତହୀନ କ ଶକତିମାନର
ବଳ ମାପି ଦେଲେ ନିର୍ଦ୍ଧଲ ହୁଏ ?
ମଣିଷ ସଭିଙ୍କୁ ମାପି ନିଜ ସଙ୍ଗେ
ବାଛଇ କଏସେ ବଡ଼ କ ସାନ,
ଏ ମାପଟା କ'ଣ ହୁଏ ନାହିଁ ଭୁଲ
ଏଇଟା କ ସତେ ମାପର ମାନ ?
ଏକା ମଣିଷର ଦୁଇଟା ହାତରୁ
କାହା ସଂଗେ କେହ ନୁହେ ତ ସମ,
କାମ କଲବେଳେ ଜଣାପଡ଼ଯାଏ
କଏ କ୍ଷମ କଏ ଅବା ଅକ୍ଷମ ।
ତେବେ କୃଷ୍ଣ କିଆଁ ପିଲାଟିଏ ବୋଲି
ଉଣା କରଦେବା ତାଙ୍କ ଶକତ,
ସର୍ବଶକ୍ତିମାନ ବୋଲି ତ ସଂସାରେ
ସମସ୍ତେ ତାହାଙ୍କୁ ପୂଜା କରନ୍ତି ।
କୃଷ୍ଣ ପିଲାଟିଏ ଦିଶୁଥିଲେ ମଧ୍ୟ
ବାଳକ ନ ଥିଲେ ଥିଲେ ଯୁବକ,
ଗିରି ଯଉବନ ତାଙ୍କ ସହଚର
ଭୋଗୁଥିଲେ ତେଣୁ ଯୌବନ ସୁଖ ।

ସେ ତ ସବୁବେଳେ ସବୁଥିରେ ପୂର୍ଣ୍ଣ
ଅଧା କବା ଅଂଶ ନ ଥିଲେ ସିଏ,
ତାଙ୍କ ରସଲୀଳା ପୂର୍ଣ୍ଣର ସେ ସିନା
ଅଂଶଟାଏ ହୋଇ ବୁଝିବ କିଏ ?
ତାକୁ ବର୍ଣ୍ଣିବାକୁ ଭାଷା ଅଛୁ କା'ର
କାହାର ବା ଅଛୁ ସେପରି ଭାବ,
ଗୁରୁ ମଣିଷର ଅଛୁ କି ଶକତି
ଦେଖାଉ ଯାହାକୁ ମହା ଅଭାବ ।
ଆଉ ପିଲା ଜନ୍ମୁ ନୁହନ୍ତି ସେପରି
ଗୁଣେ କର୍ମେ ଧର୍ମେ ସେ ତ ଅପୂର୍ଣ୍ଣ,
ତେଣୁ ତାର ଭାବ କରମ କ୍ଷେତ୍ରରେ
ଜଣା ପଡ଼ଯାଏ ସବଁଥା କ୍ଷୁଣ୍ଣ ।
କୈଶୋର ହୁଅଇ ଛନ ଛନ ଖାଲି
ଗୋଡ଼ ଟେକି କରି ଆଗକୁ ଗୃହେଁ,
ବାର୍ଦ୍ଧକ୍ୟ ପେଲଇ ଗୋଡ଼ରେ ଦୂରକୁ
ପଛ କଥାଯାକ ମନେ ପକାଏ ।
ଯୁବକ ଯୁବତୀ ପ୍ରଉଢ଼ ପ୍ରଉଢ଼ା
ମିଶିଲେ ଏକାଠି ଖେଳନ୍ତି ଖେଳ,
ସଂସାରେ ସମାଜେ ଅଛୁ ବହୁ ବାଧା
କରଇ ଦାଏନା ସହଜେ ମେଳ ।
ପୁଣି ସେ ବାଧାକୁ ଧ୍ୱଂସଇ ଦଅଇ
ଗଢ଼ି ଦେଇ କରି ବଧିବଧାନ,
ସେଇସ୍ଥାକୁ ମାନି ଚଳୁଛି ସମାଜ
ସବୁଠି ଦେଖିବ ସେ ବଧିମାନ ।
ଅତି କଡ଼ା ଯେବେ ହୁଏ ସେ ବିଧାନ
କିଏ ବା ଭାଂଗଇ କିଏ ବା ମାନେ,
ସେଥିପାଇଁ ଆମ ସମାଜଟା ଖାଲି
ବାଡ଼େଇ ଜଗୁଡ଼ି ହୁଅଇ ତାନେ ।

ଯଉନ ପିପାସା    ବଢ଼ିଯାଏ ସିନା
ନୁହଇ କ ତାହା ବରହ ତାଡ,
ସତ୍ୟ ତା ହୁଏ କ ?    ଲୁଗୁଇ ଦେଖାଇ
ବରହଏ ପରା ଫଟାନ୍ତ ଛାତି,
ସମାଜ ବନ୍ଧନ    ଥିଲା ତ ତାଙ୍କର
ତେଣୁ ତ ଗୋପୀଙ୍କୁ କଲେ ସେ ମନା,
କହିଲେ ସ୍ୱାମୀ ତ    ପରମ ଦେବତା
ପତ୍ନିଲେ ତାଂକର ସେବାକୁ ଅନା ।
ମନ କିନ୍ତୁ ଲୋଡ଼େ—    ଥିଲ ସତ୍ତ୍ୱବାସ
ଭୋଗିବାକୁ ରସ ବ୍ୟସରେ ମାତି,
ସେଥିପାଇଁ ସିନା    ଧନଟା ଭିତରୁ
ବାଛି ନେଇଥିଲେ କେବଳ ରାତି ।
ଖେଳୁଁ ସରଜନା    ହୁଅଇ ସଂସାର
ସମାଜ ବଢ଼ଇ ଧନକୁ ଧନ,
କୋଉ ଗୋଟିକର    ଅଭାବ ହୁଏନା
ଜଗତ ହୁଏନା ସମାଜହୀନ ।
ଏ ଲୀଳାଖେଳାରୁ    ଯେ ସୁଖ ଉପୁଜେ
ସେଇ ଗୋଟିକ ତ ପହିଲି ରସ,
ହେଇଥିରୁ ସିନା    ସବୁ ହୋଇଅଛି
ସଂସାର ସମାଜ ତାହାର ବଶ ।
ରସ ଉପଭୋଗ    କରିବା ପାଇଁ କି
ଲୋଡ଼ା ହୁଏ ଯୋଉସବୁ ଦରବ,
ପ୍ରକୃତି ସରଜି    ରଖିଛି ସେସବୁ
ରତୁରେ ରତୁରେ ବହୁ ଖରବ * ।
ପାଣି ଓ ପବନ    ଅନଳ ସହିତ
ଅଛି ସେ ରସର ଚିର ସଂବନ୍ଧ,
ସେହି ସଂବନ୍ଧଟି    ଏତେ ନିବିଡ଼ ଯେ
ନ ଥାଏ ତହିଁରେ ଭାଂଗିବା ଗନ୍ଧ ।

* ଖରବ—ସଂଖ୍ୟା ବା ପରିମାଣ ।

ସେଥିରୁ ଗୋଟିଏ       ହଜଯାଏ ଯେବେ
    ଆଉ ସବୁତକ ହୁଅଇ ମାଟି,
ପ୍ରକୃତିକୁ ସଦା       'ସୁନ୍ଦର ରଖିବା
    ପାଇଁ କି ଏଣ୍ଡ ତ ଗୋଟିଏ ଧାଟି ।
ଏଇଥି ପାଇଁ କି       କେତେ ଭାବଚନ୍ତି
    ପ୍ରକୃତି ଚଢ଼ିଛି ଦିବସ ରାତି,
ଦିନ ଦିନ କାମ       ରାତି ରାତି କାମ
    ଯେଝାବେଳେ ଯିଏ କରୁଥାଆନ୍ତି ।
ସେ ରାତିଟି ପୁଣି       ହୋଇଥିଲା ସଫା
    ଗଗନ ଭୁବନ ଥିଲା ନିର୍ମଳ,
ଗଛ ପତରରେ       ଝୁଲୁଥିଲା ପଡ଼ି
    ମୁକୁତାର୍ ପରି ଶିଶିର ଜଳ ।
ବଣରେ ବାଡ଼ରେ       ବସି ଯାଇଥିଲା
    ଶୋଭା ସୌରଭର କୁସୁମହାଟ,
ସରସୀ ସଲିଳେ       ହସି ହସି ଫୁଟି
    କରୁଥିଲେ କଇଁ କହ୍ଲାର ନାଟ ।
ଚନ୍ଦ୍ର ବଉଦର       ଲୁଚୁକାଳି ଖେଳ
    ରାତିରେ ରାତିରେ ଥିଲାଟି ଲାଗି,
ନକ୍ଷତ୍ରଗୁଡ଼ିକ       ଆଖି ଠାରିକରି
    ଖୋଜୁଥିଲେ ଚନ୍ଦ୍ର ପୀରତି ମାଗି ।
ଦିନରେ ଦିନରେ       ରବି ଗଗନରେ
    ଶିରେ ନାଇଥିଲେ ଉଜ୍ଜ୍ୱଳ ହୀରା,
ଧରଣୀ ଦେହରୁ       ଲିଭି ନ ଥିଲା ତ
    ବରଷା କାଳର ଫାଟିର ଚିରା ।
କମଳର ଦଳ       ନ ଥିଲା ସବୁରେ
    ବରଷ ତାତିକୁ ଶମିବା ପାଇଁ,
ଗଗନର ମେଘ       କେବେ କେତେବେଳେ
    ଧରଣୀକୁ ଦେଉଥିଲାଟି ଚୁମ୍ବି ।

ଜନ୍ମ ସେ ମେଘଟି    ନୂଆଁ ଦୁଇଟିଏ,
ଧୀର ହୋଇଥିଲା ପବନ ଯାନ,
ବୃନ୍ଦ ସଙ୍ଗେ ଖାଲି    ବାଦ ସାଧିବାକୁ
କରି ଦେଇଥିଲା ସେ ଅଭିଯାନ ।
ନିଶବଦ ରାତି    ପବନ ମନ୍ଥର
ନୂଆ ଶୀତ ଉଷ୍ମ କିବା ଅନ୍ଧାର,
ଯମୁନାର କୂଳେ    କଦମ୍ବର ମୂଳେ
ବାଜି ଯାଉଥିଲା ବଇଁଶୀ କା'ର ।
ସେ ଶବଦ ଯାଇ    ଘରେ ଘରେ ପଶି
ଦେଲାଟି ଖବର ଡାକୁଛି କିଏ,
ଶୁଣିଲେ ଯୋଉନା    ଉଚ୍ଛନ୍ନ ହୋଇଲେ
ଧାଇଁଲେ ଯିବାକୁ ଯୋଉଠି ସିଏ ।
ଏଣୁପରେ ରାତ    ଶ୍ରୀକୃଷ୍ଣ କୋଉଠି
ବଜାଇଲେ ବଂଶୀ ଗୋପୀଙ୍କୁ ଡାକି,
ଧାଇଁଲେ ଗୋଷ୍ଠଏ    ଅସମ୍ଭାଳ ହୋଇ
କେହି ହେଲେ ଜଣେ ନ ଥିଲେ ବାକି ।
ଏତେ ଛନ୍ଦରମ    କରି ଦେଇକରି
କହୁଛନ୍ତି ତାଙ୍କୁ ଯିବାକୁ ଫେରି,
ଫେରନ୍ତେ କି ସତେ !    ଫେରିଲେ ନାହିଁ ତ
ସକଳେ କୃଷ୍ଣଙ୍କୁ ଗଲେ ତ ଘେରି ।
କାହାକୁ ଛାତିରେ    ଦେଲେ ଆଲିଙ୍ଗନ
କାହାକୁ ଚୁମ୍ବିଲେ ଅଧର ଧରି,
କାହାକୁ ବିବଶ    କଲେ ପ୍ରେମ ଦେଇ
କିଏ ବା ରହିଲା ମୂର୍ଚ୍ଛିତା ପରି ।
ରାତି ପାହିଗଲା    ସମସ୍ତେ ବିବଶ
ଆଖି ଢୁଳୁ ଢୁଳୁ ଗୁଞ୍ଜନ ନିଶା,
କାହାର ବଦନେ    ଦିଶି ଯାଉଅଛି
ବିରହ ମିଳନ ଦୁଇଟି ମିଶା ।

କଏ ପିନ୍ଧିଅଛି କୃଷ୍ଣଙ୍କ ବସନ
କୃଷ୍ଣ ପିନ୍ଧିଛନ୍ତି ତାହାର ବାସ,
ଦେଖି ଠରଠରି ହସନ୍ତି ସକଳେ
ଦେଖାଇ ଦେଖାଇ ହସନ୍ତି ହସ ।

କୃଷ୍ଣଙ୍କ ସୀମନ୍ତେ ଲଗିଛି ସିନ୍ଦୂର
ରାଧାଙ୍କ ଗଣ୍ଡରେ ତାମ୍ବୂଳ ବୋଳ,
କଏ ସେ ଦେଖିଛି ଏତେ କଥା ବୁଝି
ଯେ ଯାର ପ୍ରେମରେ ଯିଏ ତ ଭୋଳ ।

ଏହିପରି କେତେ ଲୀଳା କରିଗଲେ
କଏ ସେ କରିବ ତାହାର ଅନ୍ତ,
କୃଷ୍ଣ ତ ଅନନ୍ତ ତାଙ୍କ ଲୀଳାଖେଳା
ସୀମାରେ କ ରହେ ସେ ବ ଅନନ୍ତ ।

ଅପ୍ରାକୃତ ପ୍ରେମ ପ୍ରକୃତି ଦୁର୍ଲ୍ଲଭ
ରାଧା ଆରାଧନେ ଭୋଗିଲେ ସିନା,
ପୁରୁଷ ପ୍ରକୃତି ଯିଏ ହେଉ ପଛେ
ସେ ପ୍ରେମ ପାଏ କ ଭକତି ବନା ?

ଭକ୍ତେର ଉପର ଭକ୍ତର ଅଧୀନ
କାହାର ମିଳନେ ହୁଏନି ଭୋଗୀ,
ସେଥିପାଇଁ ପରା କେତେ ନରନାରୀ
ସଂସାର ବରନ୍ତି ଯୋଗିନୀ ଯୋଗୀ ।

ଆଉ ଥରେ ପୁଣି ବସନ୍ତ ନିଶିରେ
ଶ୍ରୀକୃଷ୍ଣ ରଚିଲେ ରାସ ସୁନ୍ଦର,
ନାର ନାରୀ ସବୁ ଏକାଠି ମିଶିଣ
ଅମ୍ବର ପାଣିରେ କଲେ ସୁନ୍ଦର ।

# ରେଡ ରସ

ପ୍ରକୃତିରେ ଅଛି ବହୁତ ପଦାର୍ଥ
ମଧୁର ସୁନ୍ଦର ଭୋଗିବା ପାଇଁ,
କେଉଁ ଜୀବଟି ବା ଅଛି ଏ ସଂସାରେ
ଆକୁଳ ହୁଏ ନା ଭୋଗଇ ନାହିଁ ?
ଇନ୍ଦ୍ରିୟଗୁଡ଼ିଏ ସରଜନା କରି
ସାଇନ୍ତି ଦେଇଚି ପ୍ରତି ଦେହରେ,
ବିଶ୍ୱଚରାଚର ଇନ୍ଦ୍ରିୟ-ବିମୁଗ୍ଧ
ଇନ୍ଦ୍ରିୟର ସୁଖ ଖାଲି ସ୍ନେହରେ ।
ଏଇ ଇନ୍ଦ୍ରିୟର ପରିତୃପ୍ତି ପାଇଁ
ଆକୁଳତା ଟିଏ ଦେଇଚି ଥୋଇ,
ଇଚ୍ଛା ଓ ଆଗ୍ରହ ନ ଥିଲେ ମନରେ
ଆପଣାର କେହି ପାରେନା ହୋଇ ।
ଏଇ ଆକୁଳତା ବଢ଼ିଯାଏ ଯେବେ
ଖୋଜି ଆଣିଟିଏ କରଇ ସାଥୀ,
ହୃଦ ବିଆନିଆ ହୋଇଯାଏ ଧୀରେ
ପ୍ରେମରେ ପୁଲକ ଉଠଇ ମାତି ।
ଅତି ଆପଣାର ନୋହିଲେ ହୁଏନା
ହୃଦୟ ବଦଳା କରିବା କାମ,
ସେଇତକ ହେଲେ କଳୁଷିତ କେବେ
ହୁଏନା କେଉଁଠି ପ୍ରେମ ତା ନାମ ।
ନୀର ସଙ୍ଗେ ନୀର କ୍ଷୀର ସଙ୍ଗେ କ୍ଷୀର
ମିଶିଗଲେ ଯେସନେ ହୁଏନା ବାରି,
ସେଇପରି କାହିଁ ଜଣାପଡ଼େ ନାହିଁ
ପ୍ରେମେ କେ ଉଶ୍ୱାସ କଏ ବା ଭାସି ।
ଗଙ୍ଗା ଯମୁନାର ବାରିଧାର ପରି
ଦିଶେ ନା ଆଖିକୁ ଅଲଗା ହୋଇ,
ଧଳା କଳା ସବୁ ଏକ ହୋଇଯାଏ
ମଝିରେ ଦିଏନା ବାଡ଼ କେ ଥୋଇ ।

କୃଷ୍ଣ ଗୋପୀଙ୍କର ପ୍ରେମ ଭିତରେ କି
କୋଉଠି ନ ଥିଲା ଗୋଟିଏ ରେଖା,
ଚହ୍ଲାଇ ଦେବାକୁ ଏକ ନୁହେ ବୋଲି
ଭିନ୍ନ ଭିନ୍ନ ବୋଲି ନ ଥିଲା ଲେଖା ?
କେତେ କଉଶଳେ ବିଧାତା ଗଢ଼ିଚି
ଦୁଇ ଗୋଟି ଜାତି ପୁରୁଷ ନାରୀ,
ରୂପରେ, ଗୁଣରେ, କାମରେ, ବଳରେ
କେହି କେବେ ସମ ନୁହେ କାହାରି ।
ଯୋଡ଼ିଏ ଅସମ ମିଶାଇ ଦେବାକୁ
ବାନ୍ଧି ଦେଇଅଛି ବୟସ ବେଳ,
ସେଇ ଯୋଡ଼ିକୁ ତ ଅନାଇଁ ବସନ୍ତି
ଖେଳିବା ପାଇଁକି ପ୍ରେମର ଖେଳ ।
ବାଲ୍ୟ, କଇଶୋର, ଯୌବନ, ପ୍ରଉଢ଼
ବାରଧକ୍ୟ ଆଦି ବୟସ ମାପ,
ସେଇଥି ଭିତରୁ କାର କା' ସଙ୍ଗରେ
ପ୍ରୀତି ବିନିମୟେ ମିଳଇ ଖାପ ।
ବାଲ୍ୟ ଜାଣେ ନାହିଁ କୋଉ କଥାଟିକୁ
ଫୁଲଟିଏ ପରି ଥାଏ ନିର୍ଦ୍ଦୋଷ,
ସଂସାରେ ସମାଜେ କେହି ହେଲେ କେବେ
ବାଲ୍ୟର ଉପରେ କରେନା ରୋଷ ।
ବଢ଼ିଥିଲେ ପରି ସମାଜ ବନ୍ଧନ
ଗୋପୀଙ୍କୁ ଡରାଇ ପାରେ କି ନାହିଁ,
ଯୁବତୀସୁଲଭ ଯଉବନ ଲାଳସା
ଭୋଗିବାକୁ ଅବା ଅଛନ୍ତି ଧାଇଁ ।
ତାଙ୍କ ପ୍ରେମ ପରି ନୁହେ ସଂସାରର
ନୁହେ ସମାଜର ଅତୁଳନୀୟ,
ସେଥିରେ ତ ନାହିଁ ଦେହ ଆପଣାର
ଖାଲି ଅପ୍ରାକୃତ ଖାଣ୍ଟି ସ୍ୱକୀୟ ।

ତହିଁରେ କୋଉଠୁ ରହିବ ଲାଳସା ?
ନିଷ୍କାମ ଭକ୍ତି ସେ ବିମଳ ଅତି,
କୃଷ୍ଣ-ପାଗଳମ କୃଷ୍ଣଗତ ପ୍ରାଣ
କୃଷ୍ଣ ବିନା ଅନ୍ୟେ ନାହିଁ ତ ମତି ।
ଜାତି, କୁଳ, ମାନ, ସମାଜ, ସଂସାର
ସବୁ ତ ତାଙ୍କର ଶ୍ରୀକୃଷ୍ଣ ଏକା,
କୃଷ୍ଣ ପ୍ରେମ ପାଇଁ ସମାଜର ଡର
ତାଙ୍କଠାରେ କାହୁଁ ଦେବଟି ଦେଖା !
ସକଳ ଇନ୍ଦ୍ରିୟ ବାହାରେ ଯେ ପ୍ରେମ
ଦେଖି ଶୁଣି କହି ହୁଏ କି ଯାହା,
ବିଷେ ରସ ରୂପେ ବିଶ୍ୱଚରାଚରେ
ଅମୃତର ସ୍ୱାଦ ବାଂଟଇ ତାହା ।
କୃଷ୍ଣ ପ୍ରେମ ବୁଝେ ନାରୀ ପୁରୁଷର
ପୁରୁଷେ ପୁରୁଷେ ହୁଅଇ ମଧ୍ୟ,
ବ୍ରହ୍ମା ମହେଶ୍ୱର ତପସ୍ୟା ଆଚରି
ପାଇ ପାରନ୍ତି ନ ସେ ପ୍ରେମ ଗନ୍ଧ ।
ସେ ପ୍ରେମ ବିଶ୍ୱର, ବୁଝେ ଜଣକର,
କହିଁ ବ୍ରହ୍ମଯାଏ ପାରନ୍ତି ଭୋଗି,
ଆମକୁ ଦୁର୍ଲ୍ଲଭ କଳୁ ଯୁଗେ ଯୁଗେ
ଭୋଗନ୍ତି ଭକ୍ତରେ ଯୋଗିନ୍ଦ୍ର ଯୋଗୀ ।
ସେ ପ୍ରେମ ବୁଝଇ ଦେହର ମିଳନ
ଦେହ ମନପ୍ରାଣ ହୋଇବେ ଏକା,
ଭକ୍ତି ସ୍ନେହ ଶ୍ରଦ୍ଧା ଏକାଠି ହୋଇଲେ
ସେ ପ୍ରେମର ମିଳ ପାରଇ ଦେଖା ।
ଦେହକୁ ମିଳାଇ ଯେ ଖେଳ ଖେଳନ୍ତି
ସେ ଖେଳ କେବଳ ଇନ୍ଦ୍ରିୟ ପାଇଁ,
ସେଥିରେ ନ ଥାଏ ହୃଦ ବିକାଶ
ପ୍ରେମ ବୋଲି ତାକୁ କହନ୍ତି ନାହିଁ ।

ଯେ ଖେଳ କେବଳ  ସରଜେ ଜନମ
  ସମାଜ ବଢ଼ାଇ ଧନକୁ ଧନ,
କିନ୍ତୁ ପ୍ରେମ ବିନା  ହୁଏ ନାରଖାର
  ମଣିଷ ପଶୁରୁ ହୁଅଇ ହୀନ ।
କିନ୍ତୁ ଏ ମିଳନୁଁ  ଯେ ସୁଖ ଉପୁଜେ
  ସେଇ ତ ଖୋଏ ପଦ୍ମଲ ରସ,
ଯେଉଁଥିରୁ ସିନା  ପ୍ରେମର ସଂଭବ
  ସଂସାର ସମାଜ ତାହାରି ବଶ ।
ଏଇ ରସରୁ ତ  ରସର ଉତ୍ପତ୍ତି
  ଭକ୍ତି ସ୍ନେହ ମିଶି କରେ ମଧୁର,
ଯେତେ ଭୋଗ କଲେ  ବଢ଼ି ଯାଉଥାଏ
  ବାଂଟିବୁଂଟି ଦେଲେ ହୁଏନା ଦୂର ।
ପାଣି ଓ ପବନ  ଅନଳ ସହିତ
  ଅଛି ଏ ରସର ଚିର ସଂବନ୍ଧ,
ସେହି ସଂବନ୍ଧଟି  ଯେଡ଼େ ନିବିଡ଼ ଯେ
  ନ ଥାଏ ତହିଁରେ ଭାଙ୍ଗିବା ଗନ୍ଧ ।
ସେଥିରୁ ଗୋଟିଏ  ହଜିଯାଏ ଯେବେ
  ଆଉ ସବୁତକ ହୁଅଇ ମାରା,
ପ୍ରକୃତିକୁ ସଦା  ସୁଷମ ରଖିବା
  ପାଇଁକି ଏଇ ତ ଗୋଟିଏ ଧାରା ।
ଏଥି ପାଇଁକି  କେତେ ଗ୍ରାବଟନ୍ତ
  ପ୍ରକୃତି ଗଢ଼ିଚି ରଜ୍ଜୁଗୁଡ଼ାଏ,
ପ୍ରେମରେ ବିଚ୍ଛେଦ  ଗଢ଼ିଦିଏ କିଏ
  କିଏ ବା ତହିଁରେ ମତାଇ ଦିଏ ।
କୃଷ୍ଣ ଲୋଡ଼ୁଥିଲେ  ଗୋପୀଙ୍କ ପ୍ରଣୟ
  ଭୋଗିବାକୁ ରସ ରାସରେ ମାତି,
ସେଥିପାଇଁ ସିନା  ବାଛି ନେଇଥିଲେ
  ଶରତ ବସନ୍ତ ଜ୍ୟୋତ୍ସ୍ନା ରାତି ।

ଦେହରେ ଦେହକୁ    ମିଳାଇ ଦେବାକୁ
    ଲୋଡ଼ୁଥିଲ ବେଳେ ଶୁଦ୍ଧ କୁମୁଦ,
ମେଘ ବ୍ୟବଧାନ    ରଚିଲା ମଝିରେ
    କନ୍ଦାଇ କନ୍ଦାଇ ଦୁଇଟି ହୃଦ ।
ଦିନେ ନିଶୀଥରେ    ବେଣୁ ବଜାଇଲେ
    କୃଷ୍ଣ ବସି ବସି କଦମ୍ବ ତଳେ,
ଜଣ ଜଣ କରି    ସବୁ ନାଆଁ ଧରି
    ଗୋପିଏ ଉଛନ୍ନ ହୋଇଲେ ଘରେ ।
ଯେ ଯାହାର ଧନ୍ଦା    ଛାଡ଼ି ଠିଆହୋଇ
    ଡେରିଲେ ଶ୍ରବଣ ଶୁଣିବା ପାଇଁ,
ବାଜିଲା ବଂଶୀ    କରୁଣ ରାଗରେ
    ଗୋପିଏ ଆସିଲେ ଆକୁଳେ ଧାଇଁ ।
ଆଗୁଳିଲେ ଆସି    ପୁଅ, ପତି, ଶାଶୁ
    "କୁଆଡ଼େ ଧାଇଁଛ ଏତେ ରାତିରେ,
କୁଳ ମାନ ଥିଲ    ଇଜ୍ଜତ ମହତ
    କେଉଁଥିକି ଡର ନାହିଁ ତ ଚିତ୍ତେ !"
ଗୋପିଏ କହିଲେ    "ଶୁଣ ଶୁଣ ସବୁ
    କପରି ଶୁଭୁଛି ମୁରଲୀ ସ୍ୱର,
ଶ୍ରୀକୃଷ୍ଣ ଗାଉଛି    ନଈକୂଳେ ବସି
    ଦେଖି କରି ଟିକେ ଫେରିବୁଁ ଘର ।"
ଶ୍ରୀକୃଷ୍ଣ ଜାଣିଲେ    ଗୋପୀଙ୍କର ମନ
    ମାୟା ଭିଆଇଲେ ସେଇଠି ବସି,
ଗୋପାଳେ ଏଥର    ବାଟ ଛାଡ଼ିଦେଲେ
    ସବୁ ଗୋପୀସାଙ୍ଗ ଧାଇଁଲେ ହସି ।
ଜହ୍ନିଫୁଲ ପରି    ପଡ଼ିଛି ଜ୍ୟୋଛନା
    ଯୋରିଷଠିଏ ବ ଗୋଠାଇ ଦେବ,
ବାଟରେ ଫୁଟିଛି    ଯୋଉସବୁ ଫୁଲ
    ଧରଗ ଶିଖାକୁ ହଠାଇ ଦେବ ।

ପବନ ବନ୍ଧୁର    ଥିର ଥିର ହୋଇ
    ଦେହର ଝାଳକୁ ଶୁଖାଇ ଦେଇ,
ମେଘ ଆଢ଼ୁଆଳେ    ଧାଇଁଣ ଚନ୍ଦ୍ରମା
    ଶରତର ସବୁ ସୁଷମା ନେଇ ।
ମାଆ ଭାବେ କଏ    ଧାଇଁଲି ଉଚ୍ଛାଟେ
    ହୃଦୟେ ବାତ୍ସଲ୍ୟ ମମତା ବୋଳି,
ଦଉଡ଼ି ଯାଇଣ    ଦେବ କ୍ଷୀର ପାନ
    ଧରିବ ସ୍ନେହରେ ବକ୍ଷରେ ଟେକି ।
କଏ ସଖୀଭାବେ    ଧାଏଁ ତରତରେ
    ଗୃହିଣୀ ଆଖିକୁ ମିଳାଇ ଦେବ,
ହୃଦୟର କଥା    କାନରେ ପକାଇ
    କୃଷ୍ଣ ମନକଥା କାଢ଼ିଣ ନେବ ।
କଏ ଦାସୀ ଭାବେ    ସେବା କରିବାକୁ
    ଫୁଲ ଫଳ ନେଇ ଚଳେ ଚଞ୍ଚଳ,
ଦଉଡ଼ୁ ଦଉଡ଼ୁ    ଫିଟେ କେଶ ବାସ
    ଖସଇ ଓଢ଼ଣା ଉଡ଼େ ଅଂଚଳ ।
କଏ ଶାନ୍ତ ଭାବେ    ଯାଏ ଚାଲି ଚାଲି
    ହୃଦୟଟି ତାର ବଡ଼ ପ୍ରଶାନ୍ତ,
ଶ୍ରୀକୃଷ୍ଣ ସଂଗରେ    ବସି ଏକାନ୍ତରେ
    ମନର ଅଶାନ୍ତ କରିବ ଶାନ୍ତ ।
କଏ ଧାଏଁ ବେଗେ    ଗାଇବ ସଂଗୀତ
    କୃଷ୍ଣ ବଂଶୀ ସଙ୍ଗେ ମିଶାଇ ସ୍ୱର,
ପ୍ରୀତି ସଂଭାଷଣ    କରିବ ସେଇଠି
    ଗୀତ ବାଦ୍ୟ କରି ମଧୁରତର ।
ପହଞ୍ଚିଲେ ସବୁ    କଦମ୍ବ ମୂଳରେ
    ଦେଖିଲେ ଶ୍ରୀକୃଷ୍ଣ ବଇଁଶୀ ଧରି,
ତ୍ରିଭଙ୍ଗୀ ଠାଣିରେ    ଠିଆ ହୋଇ କରି
    ଡାକୁଛନ୍ତି ତାଙ୍କୁ ଆଦର କରି ।

ଦେଖି କରି ତାଙ୍କୁ କହିଲେ ଶ୍ରୀକୃଷ୍ଣ
"କୁଆଡ଼େ ଆସିଲ ଅଧ ରାତିରେ ?
ଗିରସ୍ତ ଶାଶୂଙ୍କୁ ଲୁଚି ଲୁଚି କରି
ଧାଇଁଚ ଡର କି ନାହିଁ ଛାତିରେ ?
ଫେରି ଯା ଫେରି ଯା ଚଞ୍ଚଳ ଘରକୁ
ଶାଶୁ ନଣନ୍ଦ ତ ଥିବେ ଗୋ ଶୁଇଁ,
ପଚାରିବେ ଯେବେ କାହିଁ ଯାଇଥିଲ
କଅଣ କହିବ ତାଙ୍କୁ ବୁଝାଇ ?
ସ୍ୱାମୀ ଅନ୍ଧ ହେଉ କବା ଖଞ୍ଜା ହେଉ
ନାରୀର ସେ ପରା ପରାଣେଶ୍ୱର,
ଫେରି ଯା ଫେରି ଯା ଚଞ୍ଚଳ ଘରକୁ
ଘରେ ସେମାନଙ୍କ ଯତନ କର ।"
କୃଷ୍ଣ ପ୍ରେମ ଲୋଭେ ଧାଇଁ ଆସିଥିଲେ
ନ ଛୁଟୁଁ ପିପାସା ଭୁଟିଲା ମୁଦ,
ବିରହ-ବ୍ୟଥାରେ ବ୍ୟଥିତ ହୋଇଲେ
ଫାଟିଗଲା ନାରୀ କଅଁଳ ହୃଦ ।
ବିଚ୍ଛେଦରେ ପ୍ରେମ ହୋଇଲା ଚରମ
ମିଳନେ ବିଚ୍ଛେଦ ଦେବାରୁ ଆଜି,
ଏକା କୃଷ୍ଣ କାନ୍ତ ସବୁ ଗୋପୀ କାନ୍ତ
ତାଙ୍କ ପ୍ରେମ କିଏ ପାରିବ ବୁଝି !
କହିଲେ ଶ୍ରୀକୃଷ୍ଣ "ଆସ ଆସ ସବୁ
ମୁଁ ତୁମ ଶରୀର, ତୁମେ ମୋ ପ୍ରାଣ,
ତୁମକୁ ଛାଡ଼ି କି କୃଷ୍ଣ ରହିପାରେ
କୃଷ୍ଣଠାରେ ଆଉ କରନା ମାନ ।"
ଏହି ପଦକରେ ହସିଲେ ଗୋପିଏ
ଚାଖିକୁ ଆସିଣ ହୋଇଲେ ରୁଣ୍ଡ,
କେ ଛୁଇଁ ଚରଣ କେ ଶୁଂଘି ବସନ
ଆଉଁସଇ ଦେହ ଆଉଁସେ ମୁଣ୍ଡ ।

କଏ ଥିର ହୋଇ ପାଖେ ଠିଆହୋଇ
ଆଖିରୁ ବୁହାଏ ଲୋଚକ ଜଳ,
ଅଭିମାନ କା'ର ତୁଟି ତୁଟି ନାହିଁ
କଥା କହୁ ନାହିଁ କରି କଅଁଳ ।
କାହାକୁ ଶ୍ରୀକୃଷ୍ଣ କଲେ ଆଲିଙ୍ଗନ
ଗୁଣ୍ଡଟରେ, ଚୁମ୍ବିଲେ ଅଧର ଧରି,
କାହାକୁ ବିବଶ କଲେ ପ୍ରେମ ଦେଇ
କଏ ବା ହୋଇଲା ମୂର୍ଚ୍ଛିତା ପରି ।
ରମଣୀମାନଙ୍କ ପାଖରୁ ଅନ୍ତର
ହୋଇଲେ ଅଲକ୍ଷ୍ୟେ ଶ୍ରୀକୃଷ୍ଣ କାହିଁ !
ଗୋପିଏ ସେଇଠି ତନ୍ମୟ ହୋଇ
ମୁହଁକୁ ତାଙ୍କର ଥିଲେଟି ଚାହିଁ ।
ପୁଣି ସେଇନାଏ ହେଲେ ବହୁମୂର୍ତ୍ତି
ଗୋପୀ ଗୋଟିକରେ ଗୋଟିଏ କୃଷ୍ଣ,
କାହାକୁ ଘାରବେ ଅନାଇଁ ରହନ୍ତି
ଲୋଚନ ଦୁଇଟି ହେଲେ ସତୃଷ୍ଣ ।
ବିରହେ କାହାକୁ କରନ୍ତି ଆରତ
କାହାକୁ କୋଳରେ ହସାନ୍ତି ବସି,
କାହା ସଙ୍ଗେ କରି ମଧୁର ଆଳାପ
ହସ କଉତୁକେ ରହନ୍ତି ରସି ।
ପୁଣି ଲୁଚିଯାନ୍ତି କୁଞ୍ଜେ କୁଞ୍ଜେ ପଶି
ଖୋଜନ୍ତି ଗୋପିଏ ଆକୁଳେ କାନ୍ଦି,
କେତେବେଳେ କାହ୍ନୁ ଆସନ୍ତି ବାହାରି
ବାହୁପାଶେ କା'କୁ ପକାନ୍ତି ବାନ୍ଧି ।
ଏଇ ବନ୍ଧନରେ ପ୍ରେମର ଉତ୍କର୍ଷ
ସବୁ ଆପଣାର ଏକାନ୍ତ ପ୍ରିୟ,
ଏଥିରେ କୋଉଠି ନାହିଁ କିଛି ଦୋଷ
ଖୋଜିଲେ ତ କାହିଁ ମିଳେନା ଖିଅ ।

ରାଡ ଯାହାଗଲା ସକଳେ ଅବଶ
ଆଖିରେ ଆଖିରେ ରସର ନିଶା,
ବଦନେ ବଦନେ ବଣି ଯାଉଅଛି
ବରହ ମିଳନ ଯୋଡ଼ିକ ମିଶା ।
କଏ ପିନ୍ଧିଅଛି କୃଷ୍ଣଙ୍କ ବସନ
କୃଷ୍ଣ ପିନ୍ଧିଛନ୍ତି ତାହାର ନେଇ,
ଦେଖି ଠାଠାର ହସନ୍ତି କେତେକ
ହସି ହସି କର ଦେଖାଇ ଦେଇ ।
କୃଷ୍ଣଙ୍କ ସୀମନ୍ତେ ସିନ୍ଦୂରର ଦାଗ
ରାଧାଙ୍କ ଗଣ୍ଡରେ ତାମ୍ବୂଳ ବୋଳ
କଏ ବା ଦେଖନ୍ତି ଏ ବେଶ ବଦଳ
ସକଳେ ତ କୃଷ୍ଣ ପ୍ରେମରେ ଭୋଳ ।
ଏଇପରି କେତେ ଲୀଳା ଆଚରିଲେ
କଏ ବା କରିବ ତାହାର ଅନ୍ତ,
କୃଷ୍ଣ ତ ଅନନ୍ତ ତାଙ୍କ ଲୀଳାଖେଳା
ସୀମାରେ କି ରହେ ? ସେ ବି ଅନନ୍ତ ।
ଅପ୍ରାକୃତ ପ୍ରେମ ପ୍ରକୃତି ଦୁର୍ଲଭ
ଗୋପିଏ ଭକ୍ତିରେ ଭୋଗିଲେ ସିନା,
ପୁରୁଷ ପ୍ରକୃତି ଯିଏ ହେଉ ନାହିଁ
ସେ ପ୍ରେମ ପାଏ କି ଭକତି ବିନା ?
ଭକ୍ତିରେ ମୁଗଧ ଭକ୍ତର ଅଧୀନ
ଦୈହିକ ମିଳନେ ହୁଏନି ଭୋଗି,
ସେଇଥି ପାଇଁ ତ କେତେକ ସଂସାରେ
ଘରଦ୍ୱାର ଛାଡ଼ି ଯୋଗିନୀ ଯୋଗୀ ।
ଅବ୍ୟକ୍ତ ପ୍ରେମକୁ ବ୍ୟକ୍ତ କେ କରିବ
ଯାହାର ସେ ଶକ୍ତି ଥିବଟି ସିନା !
ଆଉ କଏ ସେହି ପ୍ରେମର ମାଧୁରୀ
ବୁଝିବ ଶ୍ରୀକୃଷ୍ଣ-ପ୍ରେମୀର ବିନା ?

ଲେଖକ ଚରଣେ                    ପଶିଛି ଶରଣ
କୃଷ୍ଣ କ'ଣ ଥରେ ଦେବେନି ଗୁହାଁ ?
ତାଙ୍କ ଦୟା ବିନା                    ନରକେ ପଡ଼ିଲେ
ନିନ୍ଦା କି ତାଙ୍କର ହୋଇବ ନାହିଁ ?
ହେ ଶ୍ରୀକୃଷ୍ଣ ! ତୁମେ                    ସର୍ବ ମୋକ୍ଷକର୍ତ୍ତା
ସବୁ ତ କରୁଛ ସବୁଠି ରହି,
ଲେଖକର ଦୋଷ                    ଯେତେ ଯହିଁ ଅଛି
ଅତ୍ରୁଟିଏ କରି ଦେବ ତା ଦହି ।
ଦନ୍ତେ ତୃଣ ଧରି                    ମାଗୁଛି ଏତିକି
ଛନ୍ଦାଚରଣରେ ଦିଅ ହେ ଥାନ,
କୃଷ୍ଣ ଭକ୍ତ ବୋଲି                    ମରଣ ସେପାରେ
ରହୁ ଲେଖକର କଞ୍ଚିତ ଜ୍ଞାନ ।

---

# ପ୍ରେମ ଉପରେ ଋତୁ ପ୍ରଭାବ

ଗ୍ରୀଷ୍ମ କାଳଟା          ବଡ଼ ଯେ ଦୁଃସହ
କିନ୍ତୁ ପରିଣାମ ମଙ୍ଗଳମୟ,
ଗରଜଇ ମେଘ          ବରଷାଏ ପାଣି
ଧରାରୁ ହଟାଏ ଦହନ ଭୟ ।
ମରମରୁ କିନ୍ତୁ          ଲୁଚି ଲୁଚିଯାଏ
ମିଳନ ସୁଖର ମଧୁର ଆଶା,
ଜଳ ତୃଷା ପରି          କାହାର ମନରେ
ଜାଗଇ ନାହିଁ ଟି ପ୍ରେମ-ପିପାସା ।
ଦେହରେ ଦେହକୁ          ଲଗାଇ ଦେବାକୁ
ଖୋଜେ ନାହିଁ କା'ର ଆକୁଳ ମନ,
ଖୋଜେ ବ୍ୟବଧାନ          ମଝିରେ ସନ୍ତତ
ଶୀତଳ ସଲିଳ ଥଣ୍ଡା ପବନ ।
ଫୁଙ୍ଗୁଳା ଦେହରେ          ଧରଣୀ ଶୟନ
ଲଗେ ଅଂଗେ ଅଂଗେ ଘଷା ଚନ୍ଦନ,
ଝାଳ ସୁଡ଼ୁ ବୁଡ଼ୁ          ହୋଇଗଲେ ଦେହ
ବୁଲଇ ଝରଣା ଖୋଜେ ପବନ ।
ରକତରୁ ପାଣି          ଶୁଖି ଶୁଖିଯାଏ
ତଂଟି ଶୁଖିଯାଏ ହୁଅଇ ଶୋଷ,
ଦହି ତୋରାଣି ବା          ମିଠା ସରବତ
କୋଉଥିରେ ମନ ହୁଏନି ତୋଷ ।

ବୁଜ ହୁଏ ଆଖି ହୁଏ ନାହିଁ ନିଦ
ଝାଳ ନିଗିଡ଼ଇ ଭିଜଇ ଶେଯ,
କାହାର ଆଖିକୁ ନିଦ ଆସିବ ଟି
ଦେହରେ ବାଜିଲେ ଅନଳ ତେଜ ?
କିଏ କୁମ୍ଭକର୍ଣ୍ଣ ପରି ବା ହୋଇଚି
ଶୋଇବ ଛ'ମାସ ଉଠିବ ଦିନେ,
ଶୋଇବାକୁ ବର ମିଳଇ କେବଳ
କୁମ୍ଭକର୍ଣ୍ଣ ସମ କରମହୀନେ ।
ଉଠିବ, ଖାଇବ ମରିବ ସେଇନା
ବଂଶ ବୁଡ଼ାଇବ ଅଳପ ଋତେ,
ସଂସାର ଭିତରେ ଅଛି କି କୋଉଠି
ଏଡ଼େ ଅଲଘୁଆ ଶରୀରକେ ଜଣେ ?
ବଣେ ଗଚ୍ଛ ଗଛ ଘଷି ହୋଇ ଜଳେ
ଅରଣ୍ୟଦାବାକ ଲଗିଣ ନିଆଁ,
ଦେହେ ଦେହ ଲଗି ଜଳେ ନା ଅନଳ
ନ ହେଲେ ଶରୀର ତାତନ୍ତା କିଆଁ ?
ମେଘରେ ମେଘ ତ ଘଷି ହୋଇକରି
ଚପଳ ଚପଳା ଉଠଇ ଜଳି,
ବାତବାହ ବାଟ କୋଉଆଡ଼େ ଯାଏ
ନିଆଁକୁ ତ କାହିଁ ପାରେନା ଦଳି ?
ପବନ ଦେହରେ ଜଳି ଜଳି କରି
କାହିଁ ହଜିଯାଏ ଜଳଦା କରି,
ସେତେବେଳେ କ'ଣ ବିରହ-ବେଦନା
ମେଘ ଭୋଗେ ନାହିଁ ତା ବା କପରି ?
ତେଣୁ ହୁସିଆର କରି ଦେଇଯାଏ
ଘଡ଼ଘଡ଼ ନାଦ ଶୁଣାଇ କରି,
ମିଳନ ମନ୍ଦିରୁ ବାହାରଇ ତାଡି
ଚପଳା କାହାକୁ ବକ୍ଷରେ ଧରି !

ପ୍ରେମ ମିଳନରେ ମଦନ ଅନଳ
ଜଳନ୍ତି ବାଜଲେ ଅନ୍ତର ଦହେ,
ଉହୁଃ ଉହୁଃ କ'ଣ ସେ ଦାହ ନିବାରେ
ବିରହୀ ବକଲେ କାହିଁକି କହେ ?
ଗ୍ରୀଷମ କାଳର ଉତ୍ତପ୍ତ ପବନ
ବଢ଼ାଇଣ ଦିଏ ଅନ୍ତର ଦାହା,
ତେଣୁ ଦେହେ ଦେହ ଲଗିଯାଏ ଯେବେ
ସକଳେ କହନ୍ତି ବକଲେ ଆହା !
ବରଷା କାଳକୁ ଦୁର୍ଦ୍ଦିନ କହନ୍ତି
କିନ୍ତୁ ତାର ସମ ସୁଦିନ ନାହିଁ,
ବରଷ ଭିତରେ ସୁଖକର ହୋଇ
ଋତୁଙ୍କ ଭିତରେ ଅଛି କି କାହିଁ ?
ଅରଣ୍ୟ ଲଭଏ ଦାବ ଦହନକୁ
ଧରଣୀ ଶରୀର କରେ ଶୀତଳ,
ଶୋଷ ଆତୁରର ପିପାସା ନିବାରେ
ମୂଷଳ ଧାରରେ ବରଷି ଜଳ ।
ସୁଜଳା ସୁଫଳା ହୁଅଇ ଧରଣୀ
ମୁହଁରେ ଫୁଟାଇ ମଧୁର ହସ,
ସବୁଜ ଶାଢ଼ୀଟି ପିନ୍ଧଇ ଉଲ୍ଲାସେ
ଗଛ ଲତା ସବୁ ଦିଶେ ସରସ ।
ଏହି ସରସତା ଉପଭୋଗ କରେ
ବେଙ୍ଗ ପାଣି କୂଳେ ସଂଗୀତେ ରସି,
ବେଙ୍ଗୁଲି ଆଗ୍ରହେ ଶୁଣେ କାନ ଡେରି
ଡେଇଁ ଡେଇଁ ଆସି ପାଖରେ ବସି ।
ମୟୂର ଭୋଗଇ ପେଟ ପୂରା କରି
ଶିଖଣ୍ଡି ଶିଖରେ ବାଦଲ ଦେଖି,
କେକା କେକା ଗାଇ ନାଚଇ ତାଣ୍ଡବ
ଚଂଦ୍ରିକା ପୁଚ୍ଛକୁ ଉପରେ ଟେକି ।

ବନ ଅନ୍ତରାଳୁ   ଦଉଡ଼ି କେକିନୀ
    ପ୍ରେମ ଉପଭୋଗ କରିବା ପାଇଁ,
ଗଗନେ ତପନ   ପବନରେ ଘନ
    ପାଶରେ ଅରଣ୍ୟ ଥାଆନ୍ତି ରୁନ୍ଧି ।
ମେଘରେ ମହ୍ଲାର   ବାଜଇ ଗଂଭୀର
    ବିଜୁଳି ଚମକେ ଦେଖାଇ ହସ,
ଝମି ଝମି ନିଆଁ   ଜଳଇ ଲିଭଇ
    ସେ ହସରେ କ'ଣ ନ ଥାଏ ରସ ?
କାହାକୁ ଡାକଇ   ଆଗ୍ରହରେ ମେଘ
    କିଏ ବା ତାହାର ପ୍ରେମର ସାଥୀ ?
କି ବା ସେ ଅନ୍ୟର   ରାସଲୀଳା ଦେଖି
    ବାଇଦ ବଜାଏ ଭୁଲିକେ ମାତି ?
ଏ ଗୀତ ବାଇଦ   ନୁହେ ନିମନ୍ତ୍ରଣ
    ପ୍ରେମ ଉତ୍ସବରେ ଖେଳିବା ପାଇଁ ?
ପୁରୁଷର ମଧୁ   ପ୍ରେମ-ଆବାହନ
    ପାଇଲେ କି ନାରୀ ଆସେନା ଧାଇଁ ?
ନଈ ମାଡ଼ିଯାଏ   କୂଳ ଡେଇଁ କରି
    କୁଳୁକୁଳୁ କରି କି ଗୀତ ଗାଇ,
ଦିବସ ରଜନୀ   ବସେନା କୋଉଠି
    ସାଗର ବକ୍ଷକୁ ଥାଏନ ଧାଇଁ ?
ସାଗର ସଂଗରେ   କି ସଂପର୍କ ତାର
    ତହିଁରେ କି ନାହିଁ ମିଳନ-ସୁଖ,
ସେ ମିଳନରେ କି   ସରିଯାଏ ନାହିଁ
    ଦୂର ବାଟଚଲା ଶରମ ଦୁଃଖ ?
ସାଗର କି ତାକୁ   ଠେଲିନିଏ ନାହିଁ
    ଗୁଚ୍ଛ କି ପୁଲକି ଉଠେନା ତାର,
ତେବେ କିଆଁ ଏବା   ଜୁଆରଭଟ୍ଟାର
    ଦିବସ ରଜନୀ ଏ କାରବାର !

କୋଦଳ ସଂଗରେ ଗୃନ୍ଦର କି ସତେ
ମନ ମିଳେ ନାହିଁ, ସହଲ ନାହିଁ ?
ଘରେ ବରହୁଣୀ କୁମୁଦଗାଛିକୁ
ମନ ପୂର୍ଣ୍ଣ କରି ପାରେନି ଗୃହିଁ ?
କିବା ବରଷାର ମେଘ ଅନ୍ଧାରରେ
ଲୁଚି ତାରି ସଂଗେ କରଇ ପ୍ରୀତି,
ଛଅ ବଗପାକ ସାତ ସ୍ୱରେ ବାନ୍ଧି
ଦୂକୃତ ଗାଏନି ଦୂଣୟ ଗୀତ ?
ଘଡ଼ ଘଡ଼କରେ ଦୁହେଁ ଦୁହିଁଙ୍କଠୁଁ
ଅନ୍ଧାରେ ଅନ୍ଧାରେ ଲୁଚଲେ କାହିଁ,
ଖୋଜାଖୋଜି ହୋଇ ଲେତକ ଅଜାଡ଼
ଦେ ଘ ଆତୁଆଳେ ନ ଥାନ୍ତି ଧାଇଁ ?
ଆକୁଳ ବଳଳ ଏଇ ଧାଉଁଡ଼ରେ
ଜଳ ନ ଥାଏ କି ବରହାନଳ ?
ନ ହେଲେ କାହିଁକି ମାରବେ ମାରବେ
ଗଡ଼ନ୍ତା ବା ଏତେ ଶିଶିର ଜଳ ?
ବରହୁଣୀ ନଖେ ଚରେନା ଧରଣୀ
ସେ ଚରେ କ'ଣ ନ ଥାଏ ଭାଷା ?
ସେ ଭାଷାଟି କ'ଣ ଘତରେ ମାରବ
ପ୍ରକାଶ କରେନା ପ୍ରଣୟ ଆଶା ?
ଆଶା ମରଗଲେ ରହେ କା ଆଗ୍ରହ
ତାହାର ଅଭାବେ ରହେ କ ସୁଖ ?
ସୁଖ ହଜଗଲେ ସଂସାର ପୋଡ଼ନା
ଜୀବନ ହଏନା ଦୁଃସହ ଦୁଃଖ ?
ଆଶାଟିଏ ରଖି ଚହନ୍ତି ସକଳେ
ଫେରନ୍ତି ମିଳନ ବାଟକୁ ଗୃହିଁ,
କୋଉ ମାଦକତା ଥାଏ ସେ ଆଶାରେ
କେହୁ ତ କୋଉଠି ଗ୍ଣ୍ଡଇ ନାହିଁ ।

ସେଥି ପାଇଁ ପରା ମେଘକୁ ଦୂତଟେ
କରି କେ ପଠାଏ ବହୁତ ଦୂରେ,
ମେଘ ସଙ୍ଗେ ସଙ୍ଗେ ପଠିଆଏ ମନ
ସରଗେ ମରତେ ସବୁଠି ବୁଲେ ।
ଖୋଜି ଖୋଜି କାହିଁ ଭେଟିଲେ ସାଥୀକୁ
ଗଠାଇ ଦିଏନା ଗଂଠିରୁ କାଢ଼ି,
ଚଠାଉଟି ପଢ଼ି ଫେରନ୍ତା ଖବର
ଦୂତ ହାତେ ଦିଏ ନାହିଁ ସଜାଡ଼ି ?
ଏଥିରେ କି କିଛି ନାହିଁ ସେ ଦୋଷର
ମଧୁର ହୋଇଣ ସଂଧାନଟିଏ,
ଏ ରସ-ମାଧୁରୀ ଦହେ ନୋହିଲେ
କାହାର ଗରଜ ବୁଝିବ କିଏ ?
ମିଳନେ ବିଚ୍ଛେଦ କରେ ଦରଶି
ପ୍ରେମର ସ୍ମରଣ ପୋଡ଼ଇ ମନ,
ବିଚ୍ଛେଦ ମିଳନ ଶୀତ ଉପଚାର
ପ୍ରେମ ଆଲିଂଗନ ମଧୁ ଚୁମ୍ବନ ।
ଶରତ ନିଶିରେ ଉଜ୍ଜ୍ୱଳ ଶିଶିରେ
ଯୋଉ ଶିରୀ ଧରିଥାଏ ଧରଣୀ,
ତାକୁ ଦେଖି କ'ଣ ଆକୁଳ ନୁହନ୍ତ
ମିଳନର ପାଇଁ ନର ରମଣୀ ?
ଶରତ ରାତିର ନିର୍ମଳ ଜ୍ୟୋଛନା
ଭେଦୁଆ ଖରାର ବଢ଼ ଉତ୍ତାପ,
ଶେଫାଳୀ ଫୁଲର ନାଲି ଧଳା ରୂପ
ଫୁଟାମାଳତୀର ମଧୁ ମଦକ ।
ଏଗୁଡ଼ିକ କ'ଣ ପ୍ରକୃତି ଗଢ଼ିଛି
ନାରୀ ପୁରୁଷର ମିଳନ ପାଇଁ,
ଜଣେ ଯଦି ଗାଏ ବଇଁଶୀ ବଜାଇ
ଆଉ ଜଣେ କ'ଣ ଶୁଣଇ ନାହିଁ ?

ମିଳନ ସଂକେତ ବାଡ଼ି ଦେଇ କରି
ଜଣେ ଆଗେ ଗଲେ ପାରନ୍ତି ପାଇଁ,
ଆଉ ଜଣକ କି ଆକୁଳ ହୁଏନା
ପଛେ ପଛେ ତାର ଯାଏନା ଧାଇଁ ?
ଶରତ ଗଗନେ ଉଜ୍ଜ୍ୱଳ ତାରା କି
ଆଖିଠାରେ ନାହିଁ ପ୍ରଣୟ ପାଇଁ,
ମେଘ ତଳେ ତଳେ ଅମଳ ଚନ୍ଦ୍ରମା
ତାହାର ପାଖକୁ ଥାଏ କି ଧାଇଁ ?
ଛାୟାପଥ କିଏ ଗଢ଼ଇ ଗଗନେ
ପ୍ରଣୟ ସଂଗିନୀ ଖୋଜିବା ପାଇଁ,
ସେଇ ବାଟରେ କି ରୋହିଣୀ ଶଶାଙ୍କ
ଆଗ ପଛ ହୋଇ ଯାଆନ୍ତି ନାହିଁ ?
ନିଶାଚରେ କ'ଣ ଗାଆନ୍ତି ନାହିଁ କି
ତାଙ୍କ ସହଚରୀ ଖୋଜନ୍ତି ନାହିଁ,
ଜୁଳୁଜୁଳିଆ ପୋକ ଲତା କୁଂଜେ କୁଂଜେ
ମଶାଲ ଜାଳଇ କଅଣ ପାଇଁ ?
ଜନ୍ତୁ ଜନ୍ତୁ କିଆଁ ଲିଭି ଜଳି ଯାଏ
କାହାକୁ ଦିଅଇ ସଂଧାନ କା'ରି,
ଅନ୍ଧାରେ ଅନ୍ଧାରେ ଦିହୁଡ଼ି ଜଳାଇ
ଖୋଜଇନି ପ୍ରଣୟିନୀକୁ ତା'ରି ?
ହେମନ୍ତ ଶିଶିର ପ୍ରେମ ପ୍ରୀତିକର
ପ୍ରଣୟ ପରଶ ଉଷ୍ମ ଲାଗେ,
ଦେହରେ ଦେହକୁ ଲଗାଇ ଦେବାକୁ
ଆକୁଳତା କିଆଁ ମନରେ ଜାଗେ ?
ପ୍ରୀତି ହେବିବାକୁ ବଢ଼ିଯାଏ କି ବା
କୁଆଁଥୁଆ ଶୀତଳ ରାତି ?
ପ୍ରଣୟୀ ଦୁଇଟି ଆକୁଳ ହୁଅନ୍ତି
ମିଶାଇ ଦେବାକୁ ଛାତିରେ ଛାତି ?

ପ୍ରେମ ଚମ୍ପୁଡାରୁ ଚପୁଡ଼ି ହୋଇ କ
ନଟିଡ଼ ଆସେନ କୁହୁଡ଼ି ରସ,
ପବନେ ପହଁର ଖେଳେନା ଧରାରେ
ଅନ୍ଧାରିଆ କରି ଦେଇ ଦିବସ ?
ଏଥିରେ ନ ଥାଏ ମିଳନ ଲାଳସା
ପ୍ରଣୟ ସୁଖର ମଧୁ ଆସ୍ୱାଦ ?
ନ ଥାଏ ତହିଁରେ ମନମତାଣିଆ
ନାରୀ ପୁରୁଷର ହୃଦ ଆହ୍ଲାଦ ?
ବସନ୍ତ କାଳର ନବୀନ ସୁଷମା
ଘଡ଼ିକେ ଘଡ଼ିକେ ବଦଳେ ବେଶ,
କୋଉଠୁ ଆଣେ ସେ ଏତେ ବେଶଭୂଷା
କୋଉ ଶୋଭା ରାଜ୍ୟେ ତାହାର ଦେଶ ?
ରବି ପରି ଆସେ ଲୋହିତ ବରଟ
ରଞ୍ଜିଦିଏ ଧରା ରଙ୍ଗିମା ରଙ୍ଗେ,
ସଙ୍ଗେ ଆଣିଥାଏ ଶତ ବୈଚିତ୍ର୍ୟ
ଧରାରେ ବରାଜେ ରଜାର ଢଙ୍ଗେ ।
ଫଗୁଆ ସକାଳ ଗୁଣ୍ଡି ଗୁଣ୍ଡି ପା
ପାଉଁଶିଆ ଖରା ଲାଗେନା ସୁଖ ?
ଲୁଚି ଲୁଚି କରି କଅଁଳିଆ ଖରା
କୁହୁଡ଼ି ଭିତରୁ ଟେକେନା ମୁଖ ?
ଗଛଲତା ସବୁ ପୁଲକି ଯାଏନା
ବସନ୍ତ ପରଶ ଦେହରେ ବାଜି,
ନାନା ଜାତି ଫଳ ସୁମନ ସମ୍ଭାରେ
ଦିଏ ନାହିଁ ରଙ୍ଗା ଶରୀର ସାଜ ?
ଆମ୍ବ ବଉଳର ମହୁଆ ମହକ
ଖରାବେଳଟାର ଅଧା ଉହକ,
ଦେହକୁ ଛୁଇଁଦିଏ କି ଅବା କାହିଁକି ?
ତହିଁରେ ତ ଲୁଚିଥାଏ ପାବକ ।

ସରମ ସଙ୍କୋଚ ଫୋଡ଼ିଦିଏ ନାହିଁ
ଶୂନ୍ୟରୁ ଶୁଭେନା ମୁରଲୀ ସ୍ୱନ,
ଫୋଡ଼େନା ହୃଦୟ କରେନା ଉଚାଟ
ପ୍ରେମ କରିବାକୁ ଖୋଜେନା ମନ ?
ଦକ୍ଷିଣୁଁ ବହଇ ସୁଲୁ ସୁଲୁ ବାଆ
ସୁରଭି ସୌରଭ ଦେହରେ ବୋଳି,
ଧରଣୀ ଦେହରେ ଛୁଞ୍ଚି ଦେଇଯାଏ
ସୁବାସ ଚନ୍ଦନ ଅତର ବୋଳି ।
ଧରା ସଙ୍ଗେ ତାର ଅଛି କି ପ୍ରଣୟ
ସୁବାସ ଦ୍ରବ୍ୟରେ ସଜାଇ ଦିଏ ?
ଧରଣୀ ଗଣ୍ଡରେ ଚୁମ୍ବନ ଲହି କି
ଅଧରୁ ଅମୃତ ପିଆଇଦିଏ ?
କୋଇଲି ଡାକଇ କୋଉ କୁଞ୍ଜେ ଲୁଚି
ମନ ଧଉଡ଼େନା ଖୋଜିବା ପାଇଁ,
ସେଥିରେ କି ସତେ ପ୍ରଣୟ ଲାଳସା
ମିଳନ ମାଧୁରୀ ଟିକିଏ ନାହିଁ ?
ପଞ୍ଚମ ସ୍ୱରର ଗୀତ ଶୁଣିକରି
ଚଞ୍ଚଳରେ ହୋଇ ମନକୁ ବନ୍ଧ,
ଆସେନା ପାଖକୁ କୋକିଳ ଘରଣୀ
ପାଉଁଶିଆ ଛିଟ ଶାଢ଼ୀଟି ପିନ୍ଧ ?
କୋଇଲି କି ଜାଣେ ବସନ୍ତର ବେଶ
ଚହ୍ଲାଇ ଦେବାକୁ ଆସେ କି ସତେ,
କୁହୁ ବୋଲି କହେ ପୁଣି ଲୁଚିଯାଏ
ଗୁପତ ଆନ ସେ ହୁଅଇ ପ୍ରତେ ।
ଗୋଲିଆ ମେଘରୁ ମହଳ ଜ୍ୟୋଛନା
କାହିଁକି ଆସଇ ଧରଣୀ ପରେ ?
ପ୍ରେମ-ରାଇଜରେ କାହିଁକି ତା ଲୋଡ଼ା
ବିରହୀ କି ତାକୁ ଆଦର କରେ ?

ବଢ଼ି ବଢ଼ି ଗଲେ ନରମ ଦନ୍ତା
ଚରମ ଲାଗଇ ତାହାଙ୍କ ସଂଙ୍ଗ,
ବିରହାନଳର କଅଁଳ ଧାସ କି
ତଡାଇ ବେଦନା ଥାଣ୍ଡା ରକତେ ?
ପବନରେ ପାଣି ଗଗନେ ଚନ୍ଦ୍ରମା
ଜ୍ୟୋଛନାରେ ସୁଧା ଏଇ ତ ରସ,
ଏଇ ରସରୁ ତ ରସଇ ସମ୍ଭବ
ଧରାରେ ସବୁଠି ଫୁଟାଏ ହସ ।
ଏଗୁଡ଼ିକ ସବୁ ଛୁଇଁବାର ପାଇଁ
ବାଜିଲେ ଦେହରେ ଲାଗଇ ସୁଖ,
ବିରହୀକୁ କାଟେ ଉହୁଃ ଉହୁଃ କହେ
ଛୁଉଁ ଛୁଉଁ ମାଡ଼ ବସଇ ଦୁଃଖ ।
କୋକିଳର କଣ୍ଠ ବଇଁଶୀର ସ୍ୱନ
ଭଅଁର ଗୁଞ୍ଜନ ଡେଣ୍ଢୋଇ ଡାକ,
ମୟୂରର କେକା ଡାହୁକ ଡମ୍ବିମ
ମେଘ ଗରଜନ ବେଙ୍ଗ ଟମକ ।
ଏଗୁଡ଼ିକ ସବୁ ଶୁଣିବାର ପାଇଁ
ଶୁଣିଲେ ମନରେ ଲାଗଇ ନିଆଁ,
ପ୍ରକୃତିଟା ପୁଣି ବେଳକାଳ ଜାଣି
ଡେଙ୍ଗିଦିଏ ଏଇମାନଙ୍କ ଶିଆଁ ।
କେକୀ କଣ୍ଠ ସଙ୍ଗେ ଚନ୍ଦ୍ରିକା ସୁଷମା
ଘନଶ୍ୟାମ ମେଘ ବିଜୁଳି କାନ୍ତି,
ଶରତ ଗଗନ ସୁନ୍ଦର ବଦନ
ମନ୍ଥର ଗମନ ଗୃହିଣୀ ଚାଲି ।
ମୂକୁତା ଦଶନ ଚକ୍‌କଣ ଚିକୁର
ବନ୍ଧୂଳି ଅଧର ଅଳପ ହସ,
ଢଳ ଢଳ ଆଖି ତିଳଫୁଲ ନାକ
ଶଙ୍ଖକଣ୍ଠ କଟି ଅଳପ କୃଶ ।

ଏଗୁଡ଼ିକ ସବୁ  ଦେଖିବାର ପାଇ
  ଦେଖିଲେ ମନରୁ ଛାଡ଼ଇ ନାହିଁ,
ଗଢ଼ିଛି ବିଧାତା  ଅତି ସାବଧାନେ
  ପ୍ରେମେ ସବୁଟିବଲେ ଦଏ ମତାଇ ।
ପିତା, କଷା, ମିଠା,  ଆମ୍ବିଳା, ଲୁଣିଆ,
  ରାଗ ଆଦି ରସ ରସନା ପାଇଁ,
କିନ୍ତୁ ପ୍ରେମ ସଙ୍ଗେ  ତାଙ୍କର ସମ୍ପର୍କ
  ଥିଲା ପରି ସଫା ଦିଶଇ ନାହିଁ ।
ଚୁଆ ଚନ୍ଦନର  ମଧୁର ମହକ
  ମନ ମୁଗ୍‌ଧକର କୁସୁମ ବାସ,
ଶୁଙ୍ଘିଲେ ମିଳନ  ମହୁରୀ ବାଜଇ
  ରସ ଭୋଗିବାକୁ ରଚଇ ରାସ ।
ସଖ୍ୟ, ଦାସ୍ୟ, କାନ୍ତ,  ମଧୁର, ବାତ୍ସଲ୍ୟ,
  ଶାନ୍ତ ଆଦି ରସ ମନର ପାଇଁ,
କିଏ କେଉଁ ଭାବେ  ଉପଭୋଗ କରେ
  ସେକଥା ବା କିଏ ଜାଣଇ ନାହିଁ ?
ପ୍ରେମ ଲୁଚକାଳି  ଖେଳେ ସବୁଥିରେ
  କିନ୍ତୁ ସବୁବେଳେ ଭିନ୍ନ ପ୍ରକାର,
ସବୁ ରସ ମିଶି  କୃଷ୍ଣ ରାସଲୀଳା
  ରସରେ ପ୍ରେମର ସୁଖ ପ୍ରଚୁର ।
ଏତେ ଏତେ ଯୋଡ଼ି  ରସର ସାମଗ୍ରୀ
  ତା ଭିତରେ କ'ଣ ଲେଖକ ନାହିଁ,
ହେ ରାସ-ରସିକ !  କହ ଥରୁଟିଏ
  ଲେଖକ ଦଶାକୁ ଦେଖୁଛ ଚାହିଁ ?

---

# ସୁଦର୍ଶନ ମୋକ୍ଷ

ହର ପାରବଣ	ପୂଜିବା ପାଇଁକି
ଗୋପଗୋପୀ ସହ ଯଶୋଦା ନନ୍ଦ,
ବାହାରିଲେ ସବୁ	ସଜବାଜ ହୋଇ
ସବୁରି ମନରେ ମହା ଆନନ୍ଦ ।
କୃଷ୍ଣ ବଳରାମ	ଆଉ ସବୁ ପିଲା
ଗଲେ ତାଙ୍କ ସଙ୍ଗେ ଦେଖିବେ ଯାତ୍ରା,
ପୂଜିବେ ଦେବତା	ଦେବେ ଭୋଗରାଗ
ମଙ୍ଗଳ କରିବେ ଗଉରୀକାନ୍ତ ।
ହିମାଳୟ ତଳେ	ସରସ୍ୱତୀ ନଦୀ
ଶିଖରୀ ଶିଖରେ ହରଗଉରୀ,
ତାଙ୍କୁ ହିଁ ପୂଜିବେ	ବୋଲି ଗୋପପୁର
ଆଗରୁ ତ ପଡ଼ିଯାଇଚି ହୁରି ।
ବହୁ ଦୂର ବାଟ	ଯିବାକୁ ତ ହେବ
ସବୁ ସରଞ୍ଜାମ ବାନ୍ଧିଲେ ସଙ୍ଗେ,
ଶଗଡ଼ ସୁଅଣି	ଚଢ଼ି କରି ସବୁ
ବାହାରି ପଡ଼ିଲେ ଯାତ୍ରୀଙ୍କ ଢଙ୍ଗେ ।
କେତେ ଗାଆଁ ଟଣ୍ଡା	କେତେ ନଈନାଳ
ପଡ଼ିଲା ବାଟରେ କିଏ କହିବ,
ଅଚିହ୍ନା ରାଜ୍ୟକୁ	ବହୁ ଦୂର ବାଟ
ଚାଲିବାକୁ କାହା ଧୈର୍ଯ୍ୟ ରହିବ ?

ଗଛମୂଳ ପାଣି- କୂଳ ଦେଖି କରି
ଖରାବେଳଟାରେ ରହୁଥାଆନ୍ତି,
ଶୀତୁଳ ପଡ଼ିଲେ ପୁଣି ପଡ଼ିଉଠି
ଗଣ୍ଡି ଶ ଗୋଟାଇ ଧରି ଧାଆଁନ୍ତି ।
କିଏ ଶୋଇପଡ଼େ ଶଗଡ଼ ଉପରେ
କିଏ ବା ଢୁଳେଇ ଚଢ଼ିଇ ବସି,
କିଏ ଗୁଲ୍‌ଥାଏ ଗୀତ ଟାଇ ଗାଇ
ଅମନ୍ତ୍ରା ବାଟରେ ଭୁଲ୍କାରେ ହସି ।
ଦୂର ବାଟକୁ ତ ଶଗଡ଼ିଆ ଗୀତ
ବଳଦ ଙ୍କ ତାକୁ କାନେଇ ଥାନ୍ତି,
ଲାଙ୍ଗୁଡ଼ରେ ହାତ ମାରିଦେଲେ କାଆଁ
ଚଞ୍ଚଳ ଚଞ୍ଚଳ ଦଉଡ଼ି ଯାନ୍ତି ?
ଶଗଡ଼ିଆ ଗାଏ "ରାମ ଲକ୍ଷ୍ମଣ
ଦୁଇ ଗୋଟି ଭାଇ ପଶିଲେ ବଣେ,
ସୀତାପ୍ରା କାହିଁକ ଘରେ ରହିଲେନି
ସେ ବି ବନେ ଗଲେ ତାଙ୍କ ଗହଣେ ?
ପିନ୍ଧିଲେ ବକଳ ବାନ୍ଧିଦେଲେ ଜଟା
ଖାଇଲେ କଅଣ ବଣରେ ରହି,
ଦୁଧ ଦହି ଘିଅ ରୁଚୁ ଥ ନ ଥିଲା
କପରି ଜଇଲେ କଷଣ ସହି ?"
ଆଉ ଜଣେ ଥାଇ ଗାଇଲା ଉଚ୍ଚରେ
"ଡାହାଣ ଅଙ୍ଗଦ ବାଆଁରେ ହନୁ,
ପଛରେ ଶ୍ରୀରାମ ସୁମିତ୍ରା ନନ୍ଦନ
ଦୁହିଁଙ୍କର କରେ କୋଦଣ୍ଡ ଧନୁ ।"
ବାଟରେ ଗାଧୁଆ ଗଛମୂଳେ ରନ୍ଧା
ପଥେ ଜଳଖିଆ ଗ୍ରାଇରେ ଶୁଆ,
ଗୋପୀଙ୍କ କୋଳରେ ଶୋଇ ଯାଇଛନ୍ତି
କେତେ ଯେ କେଜାଣି କଅଁଳ ଛୁଆ ।

ଦୁହାଁଳିଆ ଗାଈ ଅଛନ୍ତି ସଙ୍ଗରେ
ଶିବଙ୍କ ଶିରରେ ଢାଳିବେ କ୍ଷୀର,
ମନାଇ ହରଙ୍କୁ ବର ମାଗିନେବେ
ଭକତରେ କନ୍ଧ ବନସ୍ଥ ଗିର ।
ପୁଅଝିଅ ସବୁ ହୋଇବେ ଗୁଣର
ବହୁତ ବରଷ ଜୀଇବେ ଭବେ,
ଖୁସିରେ ବଢ଼ିବେ ସୁଖରେ ରହିବେ
ଅମଙ୍ଗଳ କେବେ ହେବନି ଲବେ ।
ବାଟ ଗୁଳୁ ଗୁଳୁ ଦଶିଲା ଦୂରରୁ
ହିମାଳୟ ଗିରି ରଜତ ଦଶ,
ରବିକର ପଡ଼ି ଗିରି ଶୃଙ୍ଗ ଶୃଙ୍ଗେ
ବିଛୁଇ ଦେଇଚି ସୁନାର ଜରି ।
ପାହାଡ଼ ଶିଖ ତ ଗଗନ ଦେହରେ
ପଶିଯାଇ ମିଶିଯାଇଚି କାହିଁ,
ଗୋପ ଗୋପୀସବୁ କାବା ହୋଇଗଲେ
ଶିଖରି ସୁନ୍ଦର ଶିରୀକୁ ଚାହିଁ ।
ପାହାଡ଼ ଅଧରେ କେତେ ବଣବୁଦା
ଲଗ ଲଗି ହୋଇ ଅଛନ୍ତି ପଡ଼ି,
ଅପୂରବ ଶ୍ୟାମ ବସନ ପିନ୍ଧି କି
ଦୂରରୁ ଦଶୁଚି ଏପରି ଭଙ୍ଗି ?
କେତେ ପଶୁପକ୍ଷୀ ଖେଳନ୍ତି ବୁଲନ୍ତି
ମୁଖରିତ କରି ବଣ ପର୍ବତ,
ସରୁ ସରୁ ହୋଇ ଗିରି ନିର୍ଝରଣୀ
ବହି ଆସୁଛନ୍ତି ତଳକୁ ଶତ ।
ମିଳି ମିଶିକରି ଓଗାଳିଆ ହୋଇ
ସରସ୍ୱତୀ ବୋଲି ହୋଇଲା ଜଣା,
ଯେ ଯାହା ମନାସି ବୁଡ଼ ପକାଇଲେ
ପୂର୍ଣ୍ଣ ହୋଇଯାଏ ସବୁ କାମନା

ସକଳେ ନନ୍ଦରେ ଗାଧୋଇ ପାଧୋଇ
ଦରଶନ କଲେ ଗଉରୀ ହର,
ଯେ ଯାହାର ପୂଜା ଦରବ ଦେଇଣ
ମୁଣ୍ଡିଆ ମାରଲେ ମାଗିଲେ ବର ।
ଶିବ ଖୁସି ହୋଇ କହିଲେ ଶୁଣାଇ
"ତୁମର ପୂଜାରେ ତୃପତ ହେଲି,
ଯାଅ ଯାଅ ଘରେ ରହ ହେ ସୁଖରେ
ଯେଝା ମନମତେ ବର ମୁଁ ଦେଲି ।
କୃଷ୍ଣ ବଳରାମ ପୁଅ ଦୁଇ ଗୋଟି
ତୁମର ତ ସବୁ କରିବେ ଭଲ,
ସଂସାରୁ ହଟାଇ ଦେବେ ଯେତେ ଛନ୍ଦ
ଅନ୍ୟାୟୀ ଅସୁର ଆସୁର ଖଳ ।
ଧନ୍ୟ ଗୋପଗୋପୀ ଜଗତନାଥଙ୍କୁ
ପାଇଲ ପାଖରେ ସୁଲଭ କରି,
ଏଇ କୃଷ୍ଣ ପରା ବିଶ୍ୱ ଚରାଚର
ଲୁଚାଇ ରଖିଛି ଦେହରେ ଧରି !
ତୁମରି ପାଇଁକି ଆଜ ମୁଁ ଦେଖିଲି
ଯା ପାଇଁ ତପସ୍ୟା ଥିଲି ଆଚରି,
ସାଧନା ମୋହର ହେଲା ସାରଥକ
ଦେଖିଲି ମୁଁ ଆଖି ପୂରାଇ କରି ।
ମିଟିଗଲା ଆଶା ତୁଟିଲା ପିପାସା
ଧୁଇଁଗଲା କଳୁଷ ଥିଲା ମୋ ଯାହା,
ତୁମକୁ କି ବର ଦେବି ମୁଁ ମାଗୁଛ
ହେଲଟି ତ ତୁମେ ମୋହର ସାହା ।"
ପୂଜା ସାରୁ ସାରୁ ବୁଡ଼ିଗଲା ବେଳ
ରଜନୀ ଆସିଲା କାଳିଆ ବେଶେ,
କିପରି ଆସିବେ ବାଟ ବାରି ବାରି
ଅପନ୍ତରା ବାଟେ ଦୂର ବିଦେଶେ ?

ରହିଲେ ସେଇଠି ସ୍ତଭଟାର ପାଇଁ
ସକାଳ ହୋଇଲେ ଆସିବେ ଫେରି,
ବାନ୍ଧବାଡ଼ି ଖିଆ- ଦିଆ କରୁ କରୁ
ବଡ଼ ହୋଇଗଲା ଟିକିଏ ଡେରି ।
ପିଲପିଠକାଏ ଶୋଇଗଲେ ସବୁ
ଅଖିଆଅପିଆ ମାଆଙ୍କ କୋଳେ,
ସୁଲୁସୁଲୁ ବାଆ ଥିରି ଥିରି ବହି
ଶୀତଳ ଶୀତକୁ ଶରୀରେ ବୋଳେ ।
ଅଜଗରଟାଏ ସ୍ଥଇ ପରି ଯାଇ-
ଥିଲା ତାଙ୍କ ସଂଗେ ବୃନ୍ଦାବନରୁ,
ଋଷିପୁଅଙ୍କର ଅଭିଶାପ କଥା
ଭୁଲି ନ ଥିଲା ତ ଜମା ମନରୁ ।
ଇନ୍ଦ୍ର ଭବନର ସବୁ ସୁଖଭୋଗ
ପଡ଼ଇ ମନରେ ଆକୁଳ କରି,
କେପରି ସେ ବେଗେ ଫେରିଯିବ ସେଠି
ଶ୍ରୀକୃଷ୍ଣଙ୍କ ହାତେ ତୀର୍ଥରେ ମରି ।
ରହିଁ ବସିଥିଲା ସୁବିଧା ସୁଯୋଗ
ନନ୍ଦଙ୍କୁ ଦେଖିଲା ସୁଖେ ନିଦ୍ରିତ,
କୃଷ୍ଣ ଦରଶନେ ତରି ପବିତ୍ରିତ
ନୟନ ଦୁଇଟି ପୂର୍ଣ୍ଣ ମୁଦ୍ରିତ ।
ଗୋଡ଼ଆଡ଼ୁ ଯାଇ ଗିଳିଲା ନନ୍ଦଙ୍କୁ
ଥିରି ଥିରି କରି ଓଟାରି ଆଣି,
ନନ୍ଦ ଭାଙ୍ଗିଗଲା, ଦେଖିଲେ ସାପଟା
ଗିଳି ଦେଉଅଛି-ପାରିଲେ ଜାଣି ।
ଅନାଉଁ ଅନାଉଁ ଅଂଟାପାଏ ବୋଲି
ଟାଉଟାଉ କରି ଦେଲା ତ ଗିଳି,
ନନ୍ଦ ବିକଳରେ ଡାକ ପକାଇଲେ
ଦଉଡ଼ିଲେ ସବୁ ଦେଖିଲେ ମିଳି ।

ଡାକଲେ କୃଷ୍ଣଙ୍କୁ ସକଳେ କାତରେ
ଧାଇଁଗଲେ କୃଷ୍ଣ ନିଦରୁ ଉଠି,
ନିଦ ଘୁଙ୍ଗ ନାହିଁ ଦେଖିଲେ ଯେଉଁଠି
ସାପଟାକୁ ପାଦେ ଦେଲେ ଚ କୁଟି ।
ମୁଣ୍ଡ ଫାଟିଗଲା ସାପ ଗଲା ମରି
ବାହାର ହୋଇଲା ଦିବ୍ୟ ମଣିଷ,
କି ସୁନ୍ଦର ରୂପ କି ସୁନ୍ଦର ହସ
କି ମଧୁର କଥା ବର୍ଣ୍ଣିବ କିସ !
ହାତଯୋଡ଼ି ଶୋଇ ଶ୍ରୀକୃଷ୍ଣ ଚରଣେ
ପଶିଲା ଶରଣ କହିଲା କାନ୍ଦି,
"ଋଷିପୁଅ ଶାପ ଏତେ କାଳ ମୋତେ
ଅଜଗର ଦେହେ ରଖିଲା ବାନ୍ଧି !
ଆଜ ତୁମ ହାତେ ପାଇଲି ମୁକତି
ଋଷି ଅଭିଶାପ ସରିଲା ଆଜି,
ଯାଉଚି ସରଗେ ଝାଡ଼ିଝୁଡ଼ି ହୋଇ
ଦେହେ ଅଛୁ ତୁମ ଚରଣ ବାଜି ।"
କୃଷ୍ଣ ପଚାରିଲେ, "କିଏସେ ହେ ତୁମେ
କିଆଁ ହୋଇଥିଲ ଗୋଟାଏ ସାପ ?
କାହିଁକି ବା ତୁମେ ମୁକତ ହୋଇଲ
କିପରି ତୁମର ଫଳିଲା ଶାପ ?"
କହେ ସୁଦର୍ଶନ ବିନମ୍ର ବଚନ
"ଶୁଣ ହେ ଦେବତା ମୋହର କଥା,
କିପରି ମୁଁ ଦିନେ ଗରବ କାରଣ
ପୋଡ଼ି ଖାଇଥିଲି ନିଜର ମଥା ।
ବାଦବ ପୁଅ ମୁଁ ନାମ ସୁଦର୍ଶନ
ସବୁ ପୁଅଙ୍କଠୁଁ ସୁନ୍ଦର ବେଶୀ,
ତେଣୁ ସୁଦର୍ଶନ ନାମ ଦେଇଥିଲେ
ବାପ ମାଆ ମୋର ସୁରୂପ ଦେଖି ।

ରୂପ ଗରବରେ ଫାଟି ପଡ଼ୁଥିଲି
ଦେଖାଇ ହେବାକୁ ବୁଲଇ ଖାଲି,
ଦିନକରେ ରଥ— ଟିଏ ସାଜକରି
ମରନ୍ତ ପଥରେ ଆସୁଚି ଚୁଲି ।
ଦେଖିଲି ବାଟରେ ଅଙ୍ଗିରାଙ୍କ ପୁଏ
ଜପ କରିସାରି ଆସନ୍ତି ଫେରି,
ଉପହାସ କରି କେଡ଼େ ଅସୁନ୍ଦର
ବୋଲି ମୁଁ ଶୁଣାଇଁ କହି ତ ଦେଲି ।
ଋଷିପୁଏ ଶୁଣି— କରି ହସିଦେଲେ
କହିଲେ, "ସୁନ୍ଦର ବୋଲି ତୁ ଗର୍ବ—
କରି ଘୃଣା କଲୁ, ଅଭିଶାପ ଦେଲୁଁ
ତୋ ସୁନ୍ଦରପଣ ହୋଇବ ଖର୍ବ ।
ମରତେ ଜନ୍ମିବୁ ସାପଟାଏ ହୋଇ
ତୋତେ ଯେ ଦେଖିବ କରିବ ଘୃଣା,
ଭଗ୍ୱାନ୍‌ଙ୍କର ଅଙ୍ଗ— ଗରଟାଏ ହେଲେ
ତୋର ଏ ଗରବ ହୋଇବ ଊଣା ।"
ଉଡ଼ିଗଲି ପ୍ରଭୁ ! କରି ଅନୁତାପ,
କହିଲି କାତରେ ଚରଣ ଧରି,
ହିଅ ଋଷିସୁତେ ଅଜ୍ଞାନ ଅଧମେ
ଦୁରୂହ ଶାପରୁ ମୁକତ କରି ।
କହିଲେ ସେ ହସି ଆଉ ଅଳ୍ପ ଦିନେ
ଜନମିବେ ବିଷ୍ଣୁ ମଥୁରା ପୁରେ,
ମାରିବେ ଅସୁର ରଖିବେ ସଂସାର
ବୃନ୍ଦାବନେ ଯାଇ ଜଗିଥା ତୁ ରେ ।
ମଥୁରାରୁ ଆସି ବଢ଼ିବେ ଗୋପରେ
ଖେଳିବେ ରେ କେତେ ବୃନ୍ଦାବନରେ,
ସଂସାର ରଖିବା ପାଇଁ କ ସନ୍ତତ
ଚିନ୍ତା ଖାଲି କରୁଥିବେ ମନରେ ।

ଗୋପଗୋପୀ ସଙ୍ଗେ ଦିନେ ଯିବେ କୃଷ୍ଣ
ସରସ୍ୱତୀ କୂଳେ ପୂଜିବେ ହର,
ତୁମ୍ଭ ସେହି ଦିନ ଯିବୁ ସେଇଠିକି
ମନେ ରଖି ତାଙ୍କ ପିଣ୍ଡ ତୁ ଧର ।
ମିଳିବୁ ନନ୍ଦଙ୍କୁ ସେଦିନ କାଶୀଏ
ଆସିବେ ଶ୍ରୀକୃଷ୍ଣ ବେଗରେ ଧାଇଁ ,
ମାରିବେ ଗୋଇଠା ମରିବୁ ତୁ ସେଠି
ମୁକତ ହୋଇବୁ ତାଙ୍କୁ ହିଁ ଛୁହିଁ ।
ସେଇ ଦିନଠାରୁ ଜଗିବସିଥିଲି
ବୃନ୍ଦାବନ ବନେ ତୁମକୁ ହରି,
ଦେଖିଚି ବହୁତ କାନ୍ଦିଚି ବହୁତ
ଶାପ ତ ମୋହର ନ ଥିଲା ହରି ।
ଏବେ ମୁଁ ଯାଉଚି ସରଗକୁ ଚଳି
ବାପ, ମାଆ, ଭାଇ ଅଛନ୍ତି ଯହିଁ,
ତୁମରି ମହିମା ତୁମ ଅନୁଗ୍ରହ
ଜୀବନରେ କେବେ ଭୁଲିବି ନାହିଁ ।
କେତେ ପାପୀ ତାପୀ ତରିବେ ଜଗତେ
ତୁମରି ପାଇଁକ ଆହେ ଶ୍ରୀହରି !
ସେଇଥି ପାଇଁ ତ ଆସିଚ ମର୍ତ୍ତ୍ୟକୁ
ନର ମାନବର ଶରୀର ଧରି ।
ଦେବତା ରୂପକୁ ଲୁଚାଇଲେ କି'ଣ
ଲୁଚିଚି କି କାହିଁ ଦିଶୁଚି ଫୁଟି,
ଚରଣ ଯୋଡ଼ିକ କୁଣ୍ଢାଇ ପକାଇ
ପୂଜିବାକୁ ମନ ଯାଉଚି ଛୁଟି ।
ମରତେ ଜନମି ସ୍ୱର୍ଗ କରିଯାଅ
ବାଳଗୋଡ଼ର ଏ ଧରାତଳକୁ,
ଏଇଠି ମାନବ ଅମରତ୍ୱ ପାଉ
କଥା ରହିଥାଉ କାଳକାଳକୁ ।"

ସରଗ ମରତ ମିଶାଇ ଦେବାକୁ
ତୁମେ ତ କେବଳ ଗୋଟିଏ ଚିହ୍ନ,
ସ୍ଥୂଳ, ସୂକ୍ଷ୍ମ, ଶୂନ୍ୟ ସବୁ ତ ହେ ତୁମେ
ତୁମ ଛଡ଼ା ଆଉ ଅଛି କି ଭିନ୍ନ ?
ଲେଖକକୁ ଦୂର କରି କି ରଖିବ
ଚରଦ୍ୱନ୍ଦ ପାଇଁ ନେବନି କୋଳେ ?
କେତେ କାନ୍ଦି କାନ୍ଦି ଡାକଇ ବିକଳେ
ରଂଗାଚରଣକୁ ଭଜେ ତ ହେଳେ ।
କାହା ଅଭିଶାପେ ଜନ୍ମିଲି ଅଥଳେ
ସାଧୁ ସହବାସ ମିଳଇ ନାହିଁ,
କୁତ୍ସିତ ରୂପରେ କେତେ କାଳ ଆଉ
ଅନାଇଁ ବସିବି ତୁମରି ପାଇଁ !
ନିଅ କୋଳେ ତୋଳି କର ହେ ମୁକତି
ଅଭିଶାପଗ୍ରସ୍ତ ଅତି ଅଧମ,
କରି ନାହିଁ କେବେ ଜୀବନରେ ତାର
ତୁମକୁ ସନ୍ତୁଷ୍ଟ କରିବା କର୍ମ ।

———

# ଶଂଖଚୂଡ଼ ମୋକ୍ଷ

ବସନ୍ତ ସମୟ ବଡ଼ ରମଣୀୟ
ରମିବା ପାଇଁକ ସମୟ ଟିଏ,
ବସନ୍ତକୁ କିଏ ପ୍ରଶଂସା କରିନ
ଉପଭୋଗ କରି ନାହିଁ ବା କିଏ ?
ଋତୁଙ୍କ ଭିତରେ ସାରଧାର ସେ ତ
ଗଢ଼ିଛି ପ୍ରକୃତି କରି ସୁଷମ,
କିଏ ଫୁଲ କେଉଁ ସୁନ୍ଦର ଦିଶେନା
ଗଛ ଜୀବଜନ୍ତୁ ଧରି ଜୀବନ ?
ସୁଷମାରାଶିକୁ ଚୋଳଦେଇ କରି
ବୋଳି ଦିଅଇ କି ସବୁରି ଅଂଗେ ?
କୁହୁଡ଼ି ପାଣିରେ ଧୋଇଧାଇ ହୋଇ
ଦେଖାଇ ଦିଏନି ଲୋହିତ ରଂଗେ ?
ସବୁରି କଂଠ କି ଫିଟେ ବସନ୍ତରେ
ପବନେ ଗଗନେ ସଂଗୀତ ଭାସେ ?
କିଏ ବା କାହାକୁ ସଂକେତ ସ୍ଥଳକୁ
ଡାକଇ, ସେ ଶୁଣି ଦଉଡ଼ି ଆସେ ?
ଧରଣୀ ଦେହରେ ଯେତେକ ମହକ
ସମସ୍ତେ କି ଏକା ସଂଗରେ ମିଶି,
ନାକରେ ନାକରେ ବାଜି ଉଡ଼ିଯାଏ
ଫଗୁଣ ପବନେ ଦିବସ ନିଶି ?

ସଜର କରଣୁଁ    ରଂଗର ସଂପଦ
ଗୋଟି ଗୋଟି ହୋଇ ପଡ଼ କ ଝଡ଼ି,
ସାଜ ଦେଇଛନ୍ତ    ଫୁଟାକୁସୁମର
ସଂଗେ ବନେ ବନେ ଯେତେକ କଡ଼ି ?
କଅଁଳ ପତ୍ରରେ    ଲାଗିଗଲା ଖାଲି
ଲୋହିତ ରଂଗର ଅଳପ ଗୁଞ୍ଜ,
ସୁନ୍ଦରୀ ରମଣୀ    କର କୋକନଦେ
ହସଇ ଦେବାକୁ କଲା କ ପାଞ୍ଚ ?
ଏଇ ସୁଷମାକୁ    ଉପଭୋଗିବାକୁ
ଗୋପୀଙ୍କ ସଂଗରେ ଶ୍ରୀକୃଷ୍ଣ ଥରେ,
ଗଲେ ବୃନ୍ଦାବନେ    ନଶୀଥରେ ଧନେ
ବଳରାମ ମଧ୍ୟ ଥିଲେ ସଂଗରେ ।
ଗଗନ ଗୋଲଆ    ଅଚ୍ଛୁ ମେଘ ଗୁଞ୍ଜ
ଜ୍ୟୋଛନା ଦଶୁକ ବେଶୀ ଉଜ୍ଜ୍ୱଳ,
ଯମୁନା ସଳଳେ    ଭାସୁଚ ସୁଷମା
ଦକ୍ଷିଣା ପବନେ ଉଠେ ହିଲ୍ଲୋଳ ।
କୃଷ୍ଣ ଗାଇଦେଲେ    ଗୀତଟିଏ ଉଚ୍ଚେ
ମଧୁର କଂଠରେ କଅଁଳ କର,
ଶଶାଂକ ଦେହରୁ    ବହ୍ନ ପଡ଼ଲା କ
ସୁଧା ଧାର ଧାର ତରଳ କର !
ଗୋପିଏ ଶୁଣନ୍ତ    କାନ ଡେଇର ଦେଇ
କେତେ ବା ଗାଆନ୍ତ ଏକାଠି ମିଶି,
ଖେଳ କଉତୁକେ    ମାତଥାନ୍ତ ସବୁ
ପରେନା ଆମୋଦ ପାହେନା ନଶି ।
ଗୀତ ପରେ ଗୀତ    ଗାଆନ୍ତି ଯେବେ
ବଇଁଶୀ ବଜାଇ ନାନା ବାଗରେ,
ଗୋପୀଙ୍କ ସହତ    ବଣ ପଶୁପକ୍ଷୀ
ଶୁଣନ୍ତ ଉତ୍କର୍ଣ୍ଣେ ଅନୁରାଗରେ ।

ଶୁଣୁ ଶୁଣୁ କଏ ହୁଅଇ ତନ୍ମୟ
କଏ ବା ମୋହିତ ହୁଅଇ ଚହିଁ,
ଧୂଲକ ପୂଲକ ପୁଲକ ଉଠଇ
ଗୋପୀ ଙ୍କେ ମଦନେ ହୁଅଇ ଦହି ।
ସରଗେ ଦେବତା ଶୁଣି ଶୁଣି କରି
କରନ୍ତି ଉପରୁ କୁସୁମ ବୃଷ୍ଟି,
କୃଷ୍ଣ ସୁଷମାକୁ ଅପଲକ ହୋଇ
ଦେଖୁଥାନ୍ତି ବସି ପକାଇ ଦୃଷ୍ଟି ।
ଗୀତ ବାଇଦରେ ମୁଗ୍‌ଧ କେ ହୁଏନା
ଶୁଣେ ଯେତେବେଳେ ହୋଇ ମଧୁର,
ବଣ ପଶୁପକ୍ଷୀ ଧାଇଁ ତ ଆସନ୍ତି
ମନୁଁ ସବୁ ଭୟ କରଣ ଦୂର ।
ଦେଦୁତୋଳା ଶୁଣି ସାପ ମୁଗ୍‌ଧ ହୋଇ
ଗାତ ଭିତରୁ ତ ଆସଇ ଧାଇଁ,
ନାଗେଶ୍ୱରଟିର ବାଜଣା ମଧୁର
ଶୁଣେ ଫଣାଟେକ ଦୂରରୁ ରହିଁ ।
ଶଂଖଚୂଡ଼ ସାପ ଥିଲା ନସ ବଣରେ
ପଶିଲା ତା କାନେ ମଧୁର ଗୀତ,
ଆସିଲା ସେ ଧାଇଁ ପାଖକୁ ବୋଲଣ
ଗୋପିଏ ଦେଖିଲେ, ହୋଇଲେ ଭିତ !
ସାପ ଗରଜଇ ଫଅଁ ଫଅଁ କରି
ଟେଖଲଇ ଫଣାକୁ ହଲାଇ କତ,
ଗୋପିଏ ଭୟରେ ଏଣେତେଣେ ଧାଇଁ
କାନ୍ଦନ୍ତି ସତେ କେ ମାନୁଚ ଧତ !
ଡାକନ୍ତି, "ଶ୍ରୀକୃଷ୍ଣ ! ଆହେ ହଳଧର !
ଦଉଡ଼ି ଆସିଣ ଆମକୁ ରଖ,
ନୋହିଲେ ଆମକୁ ହାପ ଖାଇଗଲା
ତୁମେ ଥାଉ ଥାଉ ହେଲୁ ଅରକ୍ଷ ।"

ଦୁଇ ଭାଇଯାକ ଧାଇଁଲେ ଚଂଚଳ
କହିଲେ, "ଡରନା ଡରନା କେହି,
ରହ ଦମ୍ଭଧରି ଯାଉଛୁ ଯାଉଛୁ
କଂଠାବୁଦା ଲଟାଗୁଡ଼ାକ ଡେଇଁ ।"
ଦେଖି ପକାଇଲା ସାପ ଶ୍ରୀକୃଷ୍ଣଙ୍କୁ
ଦଉଡ଼ିଲା ଡରେ ବଦେ ଗଣି,
ଦେଖିଲେ ଶ୍ରୀକୃଷ୍ଣ ଅହିର ମୁଣ୍ଡରେ
ଦାଉ ଦାଉ ହୋଇ ଜଳୁଚି ମଣି ।
ଶାଳ ଗଛ ଦୁଇ ଓପାଡ଼ି ଧଇଲେ
ସାପ ପଛେ ପଛେ ଗଲେଟି ଧାଇଁ,
ଶ୍ରୀବନବିହାରୀ ଅତି ତରତରେ
ଶଂଖଚୂଡ଼ ଧାଏଁ ଚଳିଲୁ ଗୁହିଁ ।
ବଲରାମ ରହି ଗୋପୀଙ୍କ ପାଖରେ
ତାଂକ ମନୁଁ କଲେ ଆତଂକ ଦୂର,
ଶ୍ରୀକୃଷ୍ଣ ସାପକୁ ମୁଥଟାଏ ମାରି
ତାହାର ମୁଣ୍ଡକୁ କରିଲେ ଚୂର ।
ମଣିଟିକୁ ଆଣି ଦେଲେ ରାମ କରେ
ଦଣ୍ଡବତ ହେଲେ ଚରଣ ତଳେ,
ସାପ ମଲାଟେଲା ଦେଖିଲେ ଯୋଉନା
ଗୋପୀଙ୍କ ଆନନ୍ଦ କିଏ ସେ କଳେ !
ଶଙ୍ଖଚୂଡ଼ ଥିଲା କୁବେର ତନୟ
ସାପ ହୋଇଥିଲା ପାଇଣ ଶାପ,
ଏତେ ଦିନକରେ ମୁକତ ହୋଇଲା
ତା ଆନନ୍ଦ କିଏ କରିବ ମାପ !
ମୁକତି ପାଇଣ ଗଲା ଅଳକାକୁ
କହିଲା ଭକ୍ତିରେ କୃଷ୍ଣଙ୍କୁ ଗୁହିଁ,
"ଆହେ ଭଗବାନ ! ତୁମରି କୃପାରୁ
ସାପ ଜନମରୁ ପାଇଲି ଖାହି ।

ଯାଉଛ ଘରକୁ ଛୁଟିଗଲା ଶଂକା
ତୁମକୁ ହୃଦୟେ ଥିବି ମୁଁ ଧରି,
ଏଇ ଅନୁଗ୍ରହ କର ଏ ଦାସକୁ
ଯୋଡ଼ିଦେଇ ଥିଲେ ମୁଁ ତ ତୁମରି ।
ଯୁଗ ବଦଳିବା ନିକଟ ହେଲାକି
ତେଣୁ କି ଆସିଲ ବୈକୁଣ୍ଠ ଛାଡ଼ି,
କାହାକୁ ଅମର କରିଦେଇ ଯିବ
କାହା ପାଇଁ ଦେବ ମରଣ ବାଡ଼ି ?
ତୁମ ହାତେ ମରି ମରଣ ତ ନୁହେ
ତୁମ ହାତ ବଧ ଅମରଲଡ଼ୁ,
ଯୁଗେ ଯୁଗେ ତୁମେ ହୁଅ ଅବତୀର୍ଣ୍ଣ
ଧୁଆଁଯାଉ ପାପ ଧରମ ବଢ଼ୁ ।
କୋଉଥି ପାଇଁକି ବଢ଼ିଲା ଅନ୍ୟାୟ
କାହିଁକି ଆସିଲ ତୁମେ ଏ ଧରା,
କିଏ ଏତେ ପାପୀ ଅଛି ଏ ସଂସାରେ
ଆସିଛ ତାହାକୁ ତାରିବ ପରା !
ତୁମରି ତାରିବା ମରଣରେ କିବା
ଆରାଧନାଦ୍ୱାରା ହୁଅଇ ଭବେ,
ମାରିବା ତାରିବା ଦୁଇଟିଯାକ ତ
ସମାନ, ପ୍ରଭେଦ ନାହିଁ ତ ଲବେ ।'
ତୁମେ ଯେତେବେଳେ ଯୋଉଠି ବିରାଜ
ସେହି ତ ଅଟଇ ସ୍ୱର୍ଗ ପରମ,
ପାପ ପୁଣ୍ୟ ସବୁ ଏକା ହୋଇଯାଏ
ଯାହାରୁ ବଳି କି ଅଛି ଧରମ ?"
ଲେଖକ ପାଖରେ ନାହିଁ କି ସତରେ
ତାର ସଂସାରଟା ନରକ କିଆଁ,
ଖାଲି ହିଂସା ଦ୍ୱେଷ ପୂରିଛି ସର୍ବଦା
କରିବନି ସ୍ୱର୍ଗ ଥିବ ସେଇଠା ?

ତୁମକୁ ସୁମରି ତୁମ ଗୁଣ ଝୁରି
ବିତିଯାଉ ତାର ଦୁଃଖୀ ଜୀବନ,
ଚରଣ ତଳରୁ ଅନ୍ତର କରନ
ଗଙ୍ଗାଚରଣ ତ ତାର ଶରଣ ।
ମରଣ ତାହାର ହେବ କି ଉତ୍ତର
ଦୁର୍ବହ ଜୀବନ ସହିବ ନାହିଁ ?
କଲବଲ ଖାଲି ହେଉଥିବ ପଣ୍ଡ
ସହିବ କି ତୁମେ ତା ଦୁଃଖ ଚାହିଁ ?

———

# ଷଣ୍ଢାସୁର ଓ କେଶୀଦୈତ୍ୟମାନଙ୍କ ନିଧନ

କୃଷ୍ଣ ବଳରାମ ବଢ଼ିଲେ ଗୋପରେ
କଂସର ମନରେ ପଶିଲା ଧକା,
ସବୁବେଳେ ଖାଲି ମଲି ମଲି ବୋଲି
ଭାବି ଭାବି କରି କରଇ ଶଙ୍କା ।
ଦଇବୀ ବାଣୀ କି ସତ ହୋଇଯିବ
କେହି ତ କୃଷ୍ଣଙ୍କୁ ମାରିଲେ ନାହିଁ,
ଯିଏ ଗଲା ସିଏ ମଲା ତ ସିଆଡ଼େ
ପଠାଇଥିଲି ମୁଁ କଅଣ ପାଇଁ !
ଶିଶୁ ଗୋଟାକୁ ତ ମାରି ପାରିଲେନି
ବଢ଼ିଗଲେ ଆଜ ପାରିବେ ଠିକ ?
ଏତିକି ବେଳରୁ ମାରି ନ ପାରିଲେ
ମୁହିଁ ତା ହାତରେ ମରିବି ନିକ !
ଶୋଇ ଶୋଇ କରି ଦେଖଇ ସପନ
ମାଇଲା ମାଇଲା ଶ୍ରୀକୃଷ୍ଣ ଆସି,
ବସି ବସି କରି ଭାଳଇ ମନରେ
କୃଷ୍ଣ ଆସି ତାକୁ ଯିବ ତ ନାଶି ।
ସବୁବେଳେ ଖାଲି ଆଗରେ ଦେଖିଲା
ମରଣରେ ସେଇ କରାଳ ରୂପ,
ମଲି ମଲି ବୋଲି ଚିନ୍ତା କରି କରି
କେତେ କେତେବେଳେ ହୁଅଇ ମୂକ ।

ଆଉରି ଡାକିଲା ଜଣ ଜଣ କରି
ରାକ୍ଷସ ଯେତକ ଥିଲେଟି ଯାଇ,
କହିଲା ରାଗରେ "ଶୋଇଥିବ କ'ଣ
ଦିନ ରାତି ଖାଇ ମଦିରା ପିଇ ?
ଦେଖୁଚ ତ ସବୁ ଘର ପିଲାଟାଏ
ମାଇଲାଣି ତୁମ ବନ୍ଧୁ ଓ ଭାଇ,
ଡରିଲ କି ସବୁ ଅସୁର ରକତ
ତୁମ ଦେହେ କ'ଣ ଟୋପାଏ ନାହିଁ ?
କିଏ ଅଛ କଣେ ଯାଅ ରେ ଏକ୍ଷଣି
ଗୋପକୁ, କୃଷ୍ଣକୁ ପକାଅ ମାରି,
ତୁମକୁ ତ ସବୁ ଇଚ୍ଛାରେ ପୋଷିଲି
ଖାଇପିଇ ସବୁ ଯାଉଚ ହାରି ।
ତୁମଠାରୁ କ'ଣ ଗଉଡ଼ ଟୁଆଟା
ଖାଉଚି ବହୁତ ଭଲ ଦରବ,
କାହିଁକି ତାହାର ବଢ଼ିଯାଉଚି ରେ
ଅସୁର ମାରିବା ବଳ ଗରବ ?
ମୁଁ ତ ଯିବି ନାହିଁ ଯାଅନ୍ତୁ ରେ ସେବେ
କୃଷ୍ଣ କି ଉବୁରି ଯାଆନ୍ତା ମତେ ?
ଗୋପକୁ ଯିବାକୁ ଅଭିଶାପ ସିନା
ଡରାଇ ରଖିଚି ଏଠେଇ ମତେ ।
କଂସ ବାହା ତଳେ ବଢ଼ିଲ ସମସ୍ତେ
ସରଗେ ପଶିଲ ଜିଣିଲ ବଳେ,
ଏଇନା କାହିଁକି ଡରିଗଲ ସବୁ
ଟୁଆଟା ପାଖକୁ ଯାଉନ ଡରେ ?"
ଷଣ୍ଢାସୁର ଶୁଣି କହିଲା ଗରବେ
"ସବା ଆଗୁଁ ମତେ କହିଲ ନାହିଁ,
କହିଥାନ୍ତ ଯେବେ କୃଷ୍ଣ କି ଥାଆନ୍ତା
ତୁମେ ବା ଡରନ୍ତ କଅଣ ପାଇଁ ?

ଯୋଉଗୁଡ଼ାଙ୍କୁ ତ ପଠାଇଲ ଆଗେ
ସେଗୁଡ଼ାକ କେବେ ଥିଲେ କି ବୀର ?
ମିଛଟାରେ ଖାଲି କହି ହେଉଥିଲେ
ଠକିବା ପାଇଁକି ଭଣ୍ଡିବା ଫିର ।
ପ୍ରଥମରୁ ପରା ଭୁଲ କରିଦେଲ
ମାଇପୀ ଗୋଟାକୁ ଦେଲ ପଠାଇ,
ତୁଆ କି କାହାର ମଲାଣି କୋଉଠି
ଧାଙ୍ଗଡ଼ା ଥନରୁ କ୍ଷୀରକୁ ଖାଇ ?
ଶଗଡ଼ ଗୋଟାଏ ପୁଣି ପଠାଇଲ
ସେହାର କୋଉଠି ଥିଲା ବା ପ୍ରାଣ ?
ଆଉ ଜଣେ କିଏ ତାକୁ ନ ପେଲିଲେ
ଚଳପାରେ ନାହିଁ ତୁମେ ତ ଜାଣ ।
ଘୋଡ଼ା ଛ ଟଂକାର ଦାନା ନ ଟଂକାର
କାହାର ଗରଜ କିଏ କରିବ,
ଆଉ ଜଣେ ଯିବ କିଏ ପେଲିବାକୁ
ତେବେ ଯିନା ଯାଇ ଶତ୍ରୁ ମରିବ !
ପବନ ତୁଆଟା ପଠାଇ ତ ଦେଲ
ସେଟାର କି ଥିଲା ଗୋଡ଼ ନା ହାତ,
ଧରନ୍ତା, ମାରନ୍ତା କପରି ବା ଭଲା
ଚେପାଇ ଦେବାକୁ ଥିଲା କି ଦାନ୍ତ ?
ଚକାଭଉଁରି ତ ଖେଳନ୍ତା ପରସ୍ତେ
ମୁଣ୍ଡ ବୁଲାଇଲା ଟେଙ୍ଗଲା ଚଲେ,
କୃଷ୍ଣକୁ ସେ ସତେ ବନ୍ଧିପାରନ୍ତା କି
ଗୋମୁଁ ମଥୁରାକୁ ଅଳପ ବଳେ ?
ବାଛୁରି ଗୋଟାଏ ଦୁଧ ଖାଉଥିଲା
ତାକୁ ବରଗିଲା ଗଲା ସେ ଧାଇଁ,
କୃଷ୍ଣ ମାରିବାକୁ ଛାର ତୁଆଟାର
ଦେହରେ ଶକତି ଥିଲା ବା କାହିଁ !

ଘୁବୁଥିଲ ପଗ ଛୁଆଙ୍କୁ ଛୁଆଁରେ
ମାରଦେବ ବୋଲି ଏଡ଼େ ସହଜେ ?
ଶ୍ରୀକୃଷ୍ଣ ତ ଆଜ ଯେ ସେ ଛୁଆ ନୁହନ୍ତି
ବଡ଼ଙ୍କର ବାପ ତୁମକୁ ଗଂଜେ ।
ବଗଟାଏ ପୁଣି ବାଛୁ ପଠାଇଲ
ସେଇଟା କି କେବେ ମଣିଷ ଖାଏ ?
ବେଙ୍ଗ ମାଛ ଧରି ଖାଇବାକୁ ସିନା
ପାଣି କୂଳେ ଜଗି ବସିଣ ଥାଏ ।
ଧଣ୍ଡଟାକୁ ପୁଣି ଡାକି ପଠାଇଲ
ନାହିଁ ହାତ ଗୋଡ଼ ନା ଅଛି ବଳ,
ଡାଙ୍ଗ ଖଣ୍ଡିକୁ ତ ତା ପ୍ରାଣ ନଅଣ୍ଟ
ସେଇଟା ଯାଇ ବା କରନ୍ତା କିସ ?
ବୁଢ଼ୀ ଗାଈଟାଏ ପଠାଇ ତ ଦେଲ
ମାଛି କି ମାରଇ ଅଣ୍ଡିରୀ କାହିଁ ?
ମାରିବା ପାଇଁ ତ ଯାଇ ନ ଥିଲା ସେ
ଯାଇଥିଲା ତାକୁ ଚୁଟିବା ପାଇଁ ।
ପ୍ରଲମ୍ବାଟା କେବେ ବରଟାଏ ହେଲା
ପଠାଇ ତ ଦେଲ ବଳ ନ ମାପି,
ଗଲା ଯୋଉନାଏଁ ମଲା ସେଇନାଏଁ
କାମ କଲା ବାକି ମନର ମାପେ ।
ଗଉଡ଼ ପିଲାର ରୂପଟାଏ ଧରି
ଖେଳିଲା ତାଙ୍କର ମେଳରେ ପଶି,
ତା ବାରମଣିଆ ଦେଖିକରି କୃଷ୍ଣ
ଠିକଏ ନାଆଁକୁ ଦେଲେଣି ହସି ।
ବଳରମକୁ ସେ କାଅଣ କହିଲା
ଖେଳୁ ଖେଳୁ ତାକୁ ମାଇଲା ମୋଡ଼ି,
କୃଷ୍ଣ ବଳରାମ ସଙ୍ଗେ ଲଢ଼ିବାକୁ
କେବେ କି ସେ ହୋଇ ପାରନ୍ତା ଯୋଡ଼ି ?

କହୁଲଣି ଯେବେ   ଯାଉଚ ଏଇନା
ଦେଖିବ କିପରି ଟୋକାଟା ମରେ,
କାହିଁକି ହତାଶ   ହେଉଚ ହେ ରଜା !
ଷଣ୍ଢ କ'ଣ କେବେ ଯୁଦ୍ଧକୁ ଡରେ ?
ଷଣ୍ଢର ବେଉପା   ଲଢ଼ାଇ କରିବା
ଯୋଦ୍ଧାଙ୍କ ନାଆଁରେ ଲଗଇ ଷଣ୍ଢ,'
ଅ.ଉ କାହା ପରି   ସଂସାରେ କୋଉଠି
ଷଣ୍ଢ ତ ନୁହଇ କପଟ ଭଣ୍ଡ !
ଷଣ୍ଢ ଲଢ଼ୁଥିଲେ   କିଏ ବା ନ ଡରେ
ତାହାର କେବଳ ସିଂହକୁ ଭୟ,
ସିଂହ ପରି ଆଉ   ନାହିଁ ମରତରେ
ଦେଖ ମୋ ଲଢ଼ାଇ ଧର ହେ ଥୟ ।
ଯାଉଚ ଶିଂଗରେ   ଫୋଡ଼ ଆଣିଦେବ
ଛଟଛଟ ହେଉଥିବେ ସେ ଖାଲ,
ମେଂଚଡ଼ ଟୋକାକୁ   ଯେଠେଇ ନ ମାରି
ଜୀଅନ୍ତାରେ ଧରି ଆସିବ ଗୃଲ ।
ତୁମ ଇଚ୍ଛା ଯାହା   କରିବ ସ୍ୟାଡ଼କୁ
ମାର ଅବା ରଖ କି ଅବା ବନ୍ଧ—
କରି ରଖିଦଅ   ଜୀବନଟାଯାକ
ହାତେ ଗୋଡ଼େ ତାର ଶିକୁଳ ଛନ୍ଦ ।
ଶୁଣିଲ ଗୋପରେ   ସବୁ ଷଣ୍ଢ ଗାଈ
ବାଛୁରି ସହିତ ଚାଆନ୍ତି ସୁଖ,
ଆଗେ ଯାଇକରି   ମୋ ଜାତିଭାଇଙ୍କୁ
ଜଣାଏ ଅସୁର କୁଳର ଦୁଃଖ ।
ମୁକତ ସେମାନେ   ମିଳିବେ ମୋ ସଙ୍ଗେ
ଆଉ କାହାକୁ ତ ନ ଥିବ ଡର,
ତୁମର ଟୋକାଟାଏ   ଏଡ଼କି ଗରବ,
ସେଟା କି ମୋହର ସରସା ପର !

କିନ୍ତୁ କୃଷ୍ଣ ଯେବେ ପୁରୁଷଙ୍କ ଷଣ୍ଢ
ଲଢ଼ିବ ପଞ୍ଝାଏ ସରିବ ଭାର,
କିନ୍ତୁ ମୁଁ କହୁଚ ଲଢ଼ି ଲଢ଼ି ଶେଷେ
ମୋହର ସମରେ ଯିବ ସେ ହାରି ।
ନାହିଁ ଯଦି ସେହି ପୁରୁଷଙ୍କ ସିଂହ
ହଜିଯିବ ମୋର ସକଳ କାର୍ଯ୍ୟ,
ମୋର ବଳ କଳ କହି ଦେଉଚି ମୁଁ
କାହିଁକି ମିଛରେ ଭଣ୍ଡିବ ବାବୁ !
ଅନ୍ୟ ପର ଜମ୍ମା ନୁହଇ ତ ମୁହିଁ
ଯାହା କହିଦେବ ମୁହିଁ ଉପରେ,
ମରେ ଅବା ମାରେ ମୋର ଭଲ ମନ୍ଦ
ରହିଯିବ ସବୁ ସେଇ ଗୋପରେ ।"
କଂସ ଷଣ୍ଢ କଥା ଶୁଣି ଖୁସି ହେଲା
ମୁଣ୍ଡରେ ବାନ୍ଧିଲା ସେଇନା ଶାଢ଼ୀ,
ଖାଇବାକୁ ଦେଲା ବର, କୁଣ୍ଡା, ଘାସ
କୁଣ୍ଡଟିରେ ଭରି ଯତନେ ବାଢ଼ି ।
ଖାଇ ସାରି ଯେବେ ଚଳିଲା ଗୋପକୁ
କିନ୍ତୁ ଅଛି ଚିତ୍ତ ଭିତରେ ଭୟ,
ଥରାଏ କଳିଜା ମଝିରେ ମଝିରେ
ମରଣ ଉପରେ ଲଗାଏ ଲୟ !
ଚଳିଲା ପହିଲେ ଗୋଠ ଭିତରକୁ
କହିଲା ଗୋରୁଙ୍କୁ ସବୁ ଦୁର୍ଯୋଗ,
କିନ୍ତୁ ସେ ସମସ୍ତେ ରାଜି ହେଲେ ନାହିଁ
ଓଲଟି କରିଲେ ଅସହଯୋଗ ।
ତେଣୁ ରାଗିକରି ଡରାଇଲା ତାଙ୍କୁ
ସମସ୍ତେ ଧାଇଁଲେ ଷଣ୍ଢର ଡରେ,
ଦଉଡ଼ ପଳାଇ ଆସ ଗୋରୁ ଗାଈ
ଲୁକିଲେ ପଶିଲେ ସେ ଯାହା ଘରେ ।

ଷଣ୍ଢ ହେଂଟାଳିଲା ମହାବଳ ପରି
ପୃଥିବୀ ଥରିଲା ଥରକୁ ଥର,
ଗୋପପୁରେ ନାହିଁ ଏପରି କେ ଜଣେ
ଯାହାର ଛାତିରେ ପଶିନ ଡର !
ଭୂଇଁ ଖୋଳିଦିଏ ଖୁରରେ ଆମ୍ଭୁଡ଼ି
ଧୂଳି ଉଡ଼ିଯାଏ ବାଦଲ ପରି,
ହୁଙ୍କା ଛାଡ଼ିଦିଏ ରଗି ଶିଂଗ ମାରି
ଭଡ଼ା ଭଡ଼ା ମାଟି ପଡ଼ଇ ଝଡ଼ି ।
ଫଅଁ ଫଅଁ କରି ନିଶ୍ୱାସ ମାରଇ
କିଏ ତା ଆଖିକୁ ଚାହିଁବ ଭରସି !
ଲାଂଜ ଟେକି କରି ଦଉଡ଼ିଲା ବେଳେ
ମେଦିନୀ ଯାଏ ତା ପାଦରେ ଲସି ।,
ପଡ଼ିଗଲା ସବୁ ଦୁଆର କବାଟ
ଗୋପଗୋପୀ ସବୁ ଥରିଲେ ପଡ଼ି,
ଥର ଥର କରି ଷଣ୍ଢଟା ତ ଖାଲି
ଧଡ଼ଧଡ଼ ପରି ଦଅଇ ରଡ଼ି ।
ସକଳେ କହିଲେ, "କାହିଁ ଗଲା କୃଷ୍ଣ
କାହିଁ ଗଲା ରାମ କରିବା କ'ଣ ?
ପଳାଇ ଯିବାକୁ ବାଟ ତ ଦିଶୁନି
ସମସ୍ତଙ୍କର କି ହେବ ମରଣ ?"
କୃଷ୍ଣ ଶୁଣିକରି ଆସିଲେ ଦାଣ୍ଡକୁ
ତାଳି ମାରିଦେଲେ ଶୁଣାଇ କରି,
ଷଣ୍ଢ ଚମକିଲା ଚହିଲେ ପହିଲେ
ଆସିଲା ସଂହାର ମୂରତି ଧରି ।
ମୁଣ୍ଡକୁ ନୁଆଇଁ ଶିଂଗକୁ ଦେଖାଇ
ଆଖି ବୁଜି କରି ଅଇଲା ଧାଇଁ,
ଶ୍ରୀକୃଷ୍ଣ ଧଇଲେ ଶିଂଗ ଦୁଇଟାକୁ
ଅଳପ ଟିକିଏ ଆଗେଇ ଯାଇ ।

ପେଲାଦେଲେ ଧରି ପଛକୁ ଭଡ଼ାଏ
ପଡ଼ିଲା କଚୁଆଡ଼ ହଜାଇ ଜ୍ଞାନ,
ପୁଣି ସଙ୍ଗେ ସଙ୍ଗେ ଚେତନା ପାଇଲା
ଆଉଟି ଧାଇଁଲା ହଲାଇ କାନ।
ଏଥର ଶ୍ରୀକୃଷ୍ଣ ଧଇଲେ ଶିଙ୍ଗକୁ
ମୋଡ଼ିଲେ ଗାମୁଣ୍ଡିଟାଏର ଧମ,
ଭଡ଼ଭଡ଼ ହୋଇ ଉବୁଡ଼ି ଆସିଲା
ଦେଖିଲା ଆଗରେ ଶ୍ରୀକୃଷ୍ଣ ଯମ ।
ପଛ ଦୁଇ ଗୋଡ଼ ପାଦେ ମାଡ଼ିବସି
ମୋଡ଼ିଲେ ବେକକୁ ଦୋରସ୍ତ କରି,
ଏକା ମୋଡ଼ାକରେ ଚୁପୁଡ଼ିଲେ ରକ୍ତ
ଘଣ୍ଟା ପଡ଼ିଲା ସେଇଠି ମରି ।
ସରଗେ ଦେବତା ବସି ଦେଖୁଥିଲେ
ଖୁସିରେ ସମସ୍ତେ ମାରିଲେ ତାଳି,
ସରଗ ଉଦ୍ୟାନେ ଯେତେ ଫୁଲ ଥିଲା
ସବୁ ତୋଳି ଆଣି ଦେଲେ ଅଜାଡ଼ି ।
ନାରଦ ସେଇଠୁଁ ଢେଙ୍କିଟି ସଜାଡ଼ି
ବସିଲେ ତହିଁରେ ଅଇଲେ ମର୍ତ୍ତ୍ୟ,
ମଥୁରାକୁ ଯାଇ କଂସକୁ ଭେଟିଲେ
ସବୁ କଥା କହିଦେଲେ ଗୁପତେ ।
ଆଉରି କହିଲେ, "ମାରି ପାରିବୁନି
ଶତ୍ରୁକୁ ତ ଏବେ ମରିବୁ ଆପେ,
ଗୋପରେ ବଢ଼ିଲା ଦୁଧ ଘିଅ ଖାଇ
ଖଇବୁଟିକି ତୁ ତାହାର ଦାପେ ?
ସର ଲହୁଣୀରେ ଅଛି ଯୋଉ ବଳ
ମଦ ମାଉଁସରେ ଅଛି କି ତାହା ?
ସେଥିରେ ତ ଆଉ ପାରିବୁ ନାହିଁ ତୁ
ଦଇବ ତ ତୋର ହେଉନି ସାହା ।

ଭୁଣୋଇ ତ ତୋର ହେଲା ରେ ଉଗାର
ଯୋଡ଼ାଏ ପୁଅଙ୍କୁ ଲୁଚାଇ କରି,
ରଖିଲା ଗୋପରେ ଆଠଟା ବରଷ
ମାରି ତ ପାରିଲୁ ନାହିଁ ତୁ ଧରି ।
ଆଜ ପୁରି ଦିନେ ମାରିବ ସେ ତୋତେ
ଏଥିକ ଉପାୟ କରୁନୁଁ କାଁ,
ବେଳ ଥାଉ ଥାଉ ପାଣି ଗାଳୁ ନାହୁଁ
ଲଭିବ କି ଆଉ ଜଳଲେ ନିଆଁ ?
ତୋତେ ମୁଁ ସେନେହ କରଇ ଅଧିକ
ତେଣୁ ସିନା ମନ ହେଉନ ଥୟ,
ଅକାରଣଟାରେ ମରିଯିବୁ ବୋଲି
ମନରେ ତ ମୋର ହେଲାଣି ଭୟ ।
ସବୁ ସତ କଥା! କହିଦିଏ ବୋଲି
ଦେବତାଙ୍କର ତ ମୋଠାରେ ରାଗ,
ତୋତେ ଭଲ ପାଏ ତେଣୁ ଧାଇଁଆସେ
ଜଣାଇ ଦିଅଇ ତୋ କଥା ଆଗ ।
ଭୁଛାକୁ କକହା ବୋଲି ଗାଳି ଦ୍ୟନ୍ତ
ବାପାଙ୍କ ଆଗରେ ଚୁଗୁଲି କରି,
କହନ୍ତ ଲଗାଇ- ଜଟାଇ ବହୁତ
ଯିଏ ତ ନିଆଁକୁ ବାରୁଦ ଦରି ।
ଇନ୍ଦ୍ର ଧମକାଏ ମୋତେ ଧରିନେଇ
କହଇ ସରଗୁଁ ଦେବ ମୁଁ ତଡ଼ି,
ଯାଆ ମଥୁରାକୁ ରହ ସେଇଠାରେ
ଖାଉଥା କଂସର ତୃଣ୍ଡଳ ପଡ଼ି ।
ଉଗ୍ରସେନ ତୋର ନିଜର ବାପଟା
ତୋଠାରେ ଥାଇ ତ କପଟ ଭରି,
ନ ହେଲେ କି ତାକୁ ଜନମ ସ୍ୱତରେ
ଗୋପକୁ ଯିବାକୁ ଦିଅନ୍ତା ଛାଡ଼ି ?

ବାସୁକୀଟାକୁ ତ କଲୁ ହରବର
ସିଏ ବ ହୋଇଲା ତାହାର ସାହା ?
ମଣିଷ ଯେ କାମ କରି ପାରନ୍ତାନି
ସେଇଟା ବ ସତେ କରିଲାଂତାହା !
ବରଷା ବତାସେ ଫଣା ଟେକକଣ
ଧଇଲା ତା ଶିରେ ଛତାଟା ପରି,
ମଣିଷ କେ ହେଲେ ତେଟଡ଼ ପବନରେ
ପାରନ୍ତା କି କେବେ ସେ କାମ କରି ?
ଯମୁନାକୁ କ'ଣ ଓଣା ବଗୃରୁଚ
ଯମର ପରି ସେ ନିଜ ଭଉଣୀ,
ବଢ଼ି ଥିଲା ବେଶୀ ଶୁଖିଗଲା କିଆଁ ?
ବାଟ ଗୁଡ଼ଦେଲା, କି ଚଣ୍ଡାଳୁଣୀ !
ମେଘଟା ବା ସତେ କଅଣ କରନ
ବରଷୁ ଥିଲା ତ ଅନ୍ଧାର କରି,
ବାଟଘାଟ କଚ୍ଛୁ ଦିଶୁ ତ ନ ଥିଲା
ବିଜୁଳି ଜାଳିଲା ମଶାଲ ପରି ।
ଆଖି ଆଗରେ ତ ଦେଖିଲୁ ତୁ ସବୁ
କପରି କାଳୀକୁ ଦଳିଲା ଧରି,
ପୁଣି ତଡ଼ିଦେଲା କାଳିନ୍ଦୀ ହ୍ରଦରୁ
ଘୁସୁଲାଇ ତୋର ବଇରି କରି ।
ଦେବତା ପ୍ରକୃତ ସବୁ ତ ତୋ ବଇରି
କପରି ତୁ ଜୀଇଁ ରହିବୁ କହ ?
ସବୁ ସହିବାକୁ ପଡ଼ିଲାଣି ଏବେ
ପଥର ପରି ତ ସହିକୁ ସହ ।
ଯାଉଚ ମୁଁ ଏବେ ପୂରାଉକୁ ତୋ ଇଚ୍ଛା
ଦେବତାଗୁଡ଼ାଙ୍କୁ ମାଡ଼ଇ ଡରି,
ମିଛରେ କାହିଁକ ସରଗ ଟିଇକେ
ତୋର ଲାଗି ହେବ ମୁଁ ହରବର !"

ଏଇତକ କହି ଚଳିଲେ ନାରଦ
କଂସକୁ ଚିହ୍ନାଇ ଗଲେଟି ସିନା,
ତାହା ନ କଲେ କି ଅନ୍ୟାୟ ପାଆନ୍ତା
କଂସ କି ମରନ୍ତା ଏ ଚିହ୍ନା ବିନା !
କଂସର ମନରେ ପଡ଼ିଲା ଭାଳେଣି
କପରି ମାରିବ ଶତ୍ରୁକୁ ତାର,
କାହାକୁ କହିବ କା'କୁ ପଠାଇବ
କିଏ ବା ଏପରି ତା ଆପଣାର ?
କେଶୀ କଥା ତାର ପଡ଼ିଗଲା ମନେ
ଡକାଇ ଆଣିଲା ପଠାଇ ଦୂତ,
କେଶୀ ତ ଅସୁର— ଟାଏ ନୁହେ ଖାଲି
ରାକ୍ଷସ ଭିତରେ ଗୋଟାଏ ଭୂତ ।
ଦେହସାକ ବାଳ ଭାଲୁଟାଏ ପରି
ତେଣୁ ତାର ନାଆଁ ହୋଇଛି କେଶୀ,
ଭାଲୁ ବାଳଠାରୁ ତାର ବାଳ ବଡ଼
ସେଗୁଡ଼ାକ ପୁଣି ବହଳ ବେଶୀ ।
କହିଲା ତାହାକୁ ବଡ଼ ପାମ୍ଲାଇ
"ତୁ ମୋ ମାଆପେଟ ଭାଇର ସମ,
ଯାଆ ରେ ଗୋପକୁ ଏଇନା ଏଇଠୁଁ
ତୁହି ଏକା ଅଟୁ କୃଷ୍ଣର ସମ ।
ତୁ ଯେବେ ନ ମାରୁ ଭାଇ ଦୁଇଟାଙ୍କୁ
ମୋର ମରିବାଟା ହୋଇଲା ସତ,
ମୋର ମରଣରେ ଅସୁରକୁଳର
ସରିଯିବ ନାହିଁ ସବୁ ମହତ ?"
କଂସ ବୋଲ ମାନି କେଶୀ ଗଲା ଚଳି
ସେଇଠୁଁ ଚାଣୁର ମୁଷ୍ଟିକ ଭଳି,
ଯେତେ ବୀର ଥିଲେ ସମସ୍ତଙ୍କୁ ଡାକି
ଆଣିଲା ଦୂତକୁ ପଠାଇକରି ।

ଜଣ ଜଣ କରି ହାତ ଯୋଡ଼ି ଧରି
କହିଲା ମୁହିଁକୁ ଶୁଖାଇ କରି,
"ଶୁଣିଲନି ସବୁ ନାରଦଙ୍କ କଥା
ଦେବତାମାନଙ୍କ କୂଟ କପଟ ?
ବସୁଦେବ ତାର ଦୁଇ ପୁଅ ନେଇ
ଗୋପରେ ଲୁଚାଇ ଅଛନ୍ତି ଫେଲି,
ସେଇ ମୁଏ ଏବେ ବଢ଼ିଲେ ସେଠାରେ
ସେ ମୋତେ ମାରିବେ ନାହିଁ ତ ଡେରି !
ତାଙ୍କୁ ମାରିବାକୁ ଯେତେ ଅସୁରଙ୍କୁ
ପଠାଇଦେଲି ମୁଁ ଗୋପପୁରକୁ,
ସମସ୍ତେ ମଲେ କେହି ଜଣେ ହେଲେ
ଫେରି ତ ଆସିଲେ ନାହିଁ ଘରକୁ ।
ଏବେ କି ଉପାୟ କରିବା କହ ତ
ମାରି ପାରିବ କି ତୋକାଙ୍କୁ ଯାଇ ?
ପାରିବ ତ କହ ନ ହେଲେ କାହିଁକି
ଦଉଡ଼ିବ ଖାଲି ମରିବା ପାଇଁ ?
ସେଥିଲାଗି ବୁଦ୍ଧି ଗୋଟିଏ ପାଂଚଚି
ରଙ୍ଗସଭାଟିଏ କରିବ ଏଠି,
ମଞ୍ଚାରୁ ଗୁଡ଼ିଏ ଉଚ ଉଚ କରି
କରିବ, ସମସ୍ତେ ବସିବେ ସେଠି ।
ଦେବକୀ ଯଶୋଦା ନନ୍ଦ ବସୁଦେବ
ବସାଇବ ତୁମେ ଜଗି ବସିବ,
କୃଷ୍ଣ ବଳରାମେ ଧରିଇ ଆଣିବ
ତାଙ୍କ ସଙ୍ଗେ ସବୁ ଯୁଦ୍ଧ କରିବ ।
ମାହୁନ୍ତ ତାହାର କୁବଳୟା ପରେ
ବସି ଜଗିଥିବ ସଭା ଦୁଆର,
ତୁମେ ନ ପାରିଲେ ମାହୁନ୍ତକୁ କହି
ହାତୀ ଥୋଗେ ତାଙ୍କୁ ଦେବ ପାହାର ।

ନ ହେଲେ ତାହାଙ୍କୁ    ହାଣ୍ଡିର ହାନ୍ତରେ
ଗୁହ୍ଲାଇ ଦେଇଣ ମାରିବ ସେଠି,
ତୁମମାନଙ୍କୁ ବି    ଆଜ୍ଞା ପଡ଼ିବନି
ମୋ ପାଇଁ କରିବା ପାଇଁକି ବେଠି ।
ଭଉଣୀ ଭଣୋଇ    ହାଣିବ ଖଣ୍ଡାରେ
ନନ୍ଦ ଯଶୋଦାଙ୍କୁ ଦ୍ୟାଇବ ଶୂଳ,
ତେବେ ଯାଇକରି    ସରଗେ ପଶିବ
ଦେବତାଙ୍କ ବଳ ଦେବ ମୁଁ ଚୂରି ।
ଶଶୁର ମୋହର    ଜରାସନ୍ଧ ଖର
ବଡ଼ ସହୋଦର ବାଣ ଅସୁର,
ନାରକ ଅସୁର    ଆଦ ମୋ ସପକ୍ଷ
ସରଗ ସଇଜ କରିବ ଜୂର ।"
ଏତେକ କହି    ଗଲା ଭିତରକୁ
ଅକ୍ରୂରଙ୍କୁ ଡାକି କହିଲା ତାକୁ,
"କାଲି ସକାଳରୁ    ରଥଟାଏ ନେଇ
ନନ୍ଦ ଭବନକୁ ନିଜେ ଯାଅ ତୁ ।
ତାକୁ ମୁଦ ଦେଇ    ପଢ଼ି ଶୁଣାଇବୁ
କହିବୁ ତାହାକୁ ଆକଟ କରି,
ଆସିବ ଯେପରି    ଧନୁଭଙ୍ଗା ଦେଖି
ପୁଅ ମାଇପଙ୍କୁ ସଂଗରେ ଧରି ।"
"ନନ୍ଦ ମହାକୁଡ଼    ତୁଟା ତ ଗଉଡ଼
ପଢ଼ି ପାରିବ କି ଚିଟାଉ ମୋର ?
ମୁଦ ଫିଟାଇବା    ଆଗୁ ମୁଁ କହୁଚି
ପଢ଼ିଲେ ମୁଣ୍ଡରେ ଲଗାଅ ଚୋର ।
କାହିଁକି ତ ଏବେ    ହେଲୁଣି ବଡ଼ିଆ
ଦେଖା ଦରଶନ ଦେଉ ତ ନାହୁଁ,
ମୁଁ ତ ଜାଣି ରଜା    ତୁ ବି ଜଣେ ସେସ୍ଥା
ଏଇଟା ଭବ କି ମୁଁ ବୁଝେ ଆଉ !

ଜାଣି ତ ଗଉଡ଼ ଧରୁ ତ ଲଉଡ଼ି
ଗାଈଗୋରୁ ପଛେ ପଛେ ଦଉଡ଼ୁ,
କାହିଁକି ରେ ତୋତେ ଯେତେ ଡରାଇଲେ
ବୁଦ୍ଧିରେ ପଶେନା ବଡବଡ ହୁଡ଼ୁ ?
ହଳଦୀ ମଡ଼ାଇ ଗାମୁଛା ତ ପିନ୍ଧୁ
ବଣଗୀତ ଗାଇ ଖେମଟା ନାଚୁ,
ଏଇଥି ପାଇଁ କି ଏଡ଼େ ଦମାକରେ
କଂସ ଅଛି ବୋଲି ଜାଣେ ନ ପାଞ୍ଚୁ !
ବଣର କାଳିଆ ଅଛଇ ନାହିଁ ତ
ମୟୂର ପକ୍ଷୀ ତ ରହିଲ ନାହିଁ,
ଯେତେ ଖୋଜାଇଲେ ଗୋଟାଏ ମିଳୁନି
ସବୁଟିକ ନେଇ ଥୋଇଲ କାହିଁ ?
ଗଛ କେନ୍ଦୁ ଯାକ ସବୁ ଉଜାଡ଼ିଲ
ପାଞ୍ଚଣ କଟାରେ ସବୁ ସାରିଲ,
ବୃନ୍ଦାବନ ବଣେ ଯେତେ ଫଳମୂଳ
ଲୁଚାଇ ଚୋରାଇ ସବୁ ଖାଇଲ ।
ରଜା ବୋଲି ଜାଣେ ପଚାରିଲୁ ନାହିଁ
ଏତଡ଼ ବଦମାସ ହୋଇଛ ତୋର,
ପୁଅ ମାଇପଙ୍କ ସଂଗରେ ଆସିବୁ
ନିଶ୍ଚୟ ହୁକୁମ ପାଳିବୁ ମୋର ।
ଦୁଧ ଦହି ଘର ଆଣିବୁ ସଙ୍ଗରେ
ମିଶାଇ ନ ଥିବୁ ଟୋପାଏ ପାଣି,
ବୁଝି ଖବର୍ଦ୍ଦାର ପାଣି ମିଶାଇଲେ
ହାଣି ପକାଇବ ଧରାଇ ଆଣି ।
ପୁଅ ଦୁହେଁ ତୋର କେଡ଼େ ହୋଇଲେଣି ?
ଆଣିବୁ ସଙ୍ଗରେ ଦେଖିବ ଥରେ,
କଳା ଗୋରା ଦୁହେଁ ଘରି ତ ସୁନ୍ଦର
ସକଳେ କହନ୍ତି ଏକମୁଖରେ ।

ଦୁଧ ଘିଅ ଖାଇ     ବେଶୀ ବଳୁଆ ତ
ହୋଇଛନ୍ତି ସବୁ ପିଲଙ୍କଠାରୁ,
ଏ କଥା ତ କାହିଁ     କୋଉ ଦିନ ହେଲେ
ଜଣାଇ ନାହୁଁ ତ ମୋତେ ଜମାରୁ ।
ମୋହର ଆଜ୍ଞାଟି     ମୋର ଏ ସନ୍ତକ
ମୋହର ତରଫ ଭୁଲିବୁ ନାହିଁ,
ଅକ୍ରୂର ଯାଉଛି     ଏଇ ମୁଦ ନେଇ
ତୁମକୁ ସବୁରେ ଆଣିବା ପାଇଁ ।"
କଂସ ବୋଲି ମାନି     ଚାଲିଗଲା କେଶୀ
ଘୋଡାଟାଏ ହୋଇ ବୃନ୍ଦାବନେ,
ବେକ, ମୁଣ୍ଡ, ଲାଞ୍ଜ,     ବାଳ ବଢ଼ାଇଲା
କେଜାଣି କି ଭଲ ତାହାର ମନେ ।
ଦେବତା ସରଗୁଁ     ଦେଖି ତାର ରୂପ
ଡରିଗଲେ ସବୁ ଥରିଲେ ପଡ଼ି,
ଏତେ ଥରିଲେ ଯେ     ସମ୍ଭାଳି ହେଲେନି
ସତେ କି ଉପରୁ ପଡ଼ିବେ ଝଡ଼ି !
ପବନୁଁ ଚଞ୍ଚଳ     ହୋଇ ସେ ଧାଇଁଲା
ଖୁରା ମାରି ମହୀ ଦିଅଇ ଖୋଳି,
ଧାଇଁ ଧାଇଁ କରି     ଦେହରେ ମୁହଁରେ
ଝାଳ ଲାଳ ଫେଣ ହୋଇଚି ବୋଳି ।
କାନ୍ଧ ଝାଡ଼ିଦିଏ     ଯୋଡ଼ ନାତ ମାରେ
ଲାଞ୍ଜ ବଂଚିଦିଏ ପବନ ଗୁଳି,
ଗଗନରେ ଥାଇ     କି ବୁଦ୍ଧି କରିବେ
ଦେବତାଏ ବସି ଭାଳନ୍ତି ଖାଲି ।
ଗୋରୁ, ଗାଈ ସବୁ     ଛିନ୍ନଛତ୍ର ହୋଇ
ଧାଇଁଲେ ଘରକୁ ବନସ୍ତ ଛାଡ଼ି,
ସତେ କି ପଛରେ     ବାଘ ଗୋଡ଼ାଇଛି
ଡେଇଁ ପିଠିପରେ ପଡ଼ୁଚି ମାଡ଼ି !

କେଶୀର ନିଶ୍ୱାସ       ପବନ ବାଜିଣ
ଗଛ ବୃକ୍ଷ ଘର ଶୂନ୍ୟେ ଉଡ଼ିଲେ,
ଛୁଆ ପିଲା ସବୁ       ଭୟରେ ଥରନ୍ତି
ମାଆ କୋଳେ କୋଳେ ପଶି ରହିଲେ ।
ଲେଉଟି କୃଷ୍ଣଙ୍କୁ       ଗୃହଆଡ଼େ ଧାଇଁ
ଦେଖିଲା ମାତ୍ରକେ ଯଅନ୍ତା ମିଳି,
ଗୋପପିଲା ସବୁ       ତ୍ରସ୍ତ ହୋଇଣ
ଝୁଣ୍ଡ ହୋଇଗଲେ ଏକାଠି ମିଳି ।
କରି ଦେଉଥାଏ       ବଡ଼ ଆଁ ଆଁ ଠାଏ
ଗଗନକୁ ଛୁଇଁ ତାହାର ପାଟି,
ହାବୁଡ଼େ ପଡ଼ିଲେ       କୃଷ୍ଣ ବଳରାମ
ଦାନ୍ତରେ ଚୋବାଇ ଦିଅନ୍ତା ବାଟି ।
ଗୋପ ପିଲାଟିର       କାନ୍ଧେ ହାତ ରଖି
ଶ୍ରୀକୃଷ୍ଣ ଆଗେଇ ଗଲେ ଟିକିଏ,
ଶିଂଗାଟାକୁ ଧରି       ପବନ ଟୋଳିଲେ
ବଜାଇଣ ଦେଲେ ଟିକେ ବଡ଼ାହେଁ ।
କେଶୀ କାନେ ଯାଇ       ପଶିଲା ଶବଦ
ଭୟ ପାଇ କରି ଗଲା ତ ଦବି,
ନୀରବ ରହିଲା       ଦଣ୍ଡେଟାଏ ମାତ୍ର
ଦେଖିଲା କୃଷ୍ଣଙ୍କ ସୁନ୍ଦର ଛବି ।
ଭାବିଲା ମନରେ       "ଏ ରୂପ କି ସତେ
ମଣିଷର କାହିଁ ହୋଇଣ·ପାରେ,
ଦେବତା ନ ହେଲେ       ଛୁଆ ବକଟକ
ରାକ୍ଷସଗୁଡ଼ାଙ୍କୁ ସହଜେ ମାରେ !
ନାରଦ କହିବା-       କଥା ସତ ହେଲା
କଂସ ତ ମରିବ ଏହାରି ହାତେ,
ମୁଁ କିଆଁ ଜୀଇବି ?       ମରିଇ ଏଇଠି
ମଲେ ତ ଚଳିବ ସରଗ ବାଟେ ।"

ଧାଇଁଲା ଝଡ଼ରୁ ଅଧିକ ବେଗରେ
ମାରଦେଲା ନାତ କୃଷ୍ଣଙ୍କୁ ଗୃହିଁ,
କୃଷ୍ଣ ଆଡ଼ ହେଲେ ନାତ ଉଡ଼ିଗଲା
କୃଷ୍ଣଙ୍କ ଦେହରେ ବାଜଲା ନାହିଁ ।
କୃଷ୍ଣ ଧରନେଲେ ଗୋଡ ଦୁଇଟାକୁ
ବୁଲାଇ ଫିଙ୍ଗିଲେ ବହୁତ ଦୂରେ,
ଏକା ଫୋପଡ଼ାକେ ଜ୍ଞାନ ହଜଗଲା
ମୁଣ୍ଡଟା ଚକର ପରକା ଧୂରେ ।
ଚେତା ପାଇକର ଆଉର ଧାଇଁଲା
ମେଲାଇ ଦେଇଣ ବଶାଳ ତୁଣ୍ଡ,
ଗରଜନ କରି ଓଁ ଓଁ ଓଁ
ଉପରକୁ ଟେକି ଧଇଲା ମୁଣ୍ଡ ।
କୃଷ୍ଣ ହାତ ଭରି- ଦେଲେ ତା ତୁଣ୍ଡରେ
ହାତ ସାପ ପରି ଗଲା ତ ପଶି;
କେଶୀ ଚୋବାଇଲା ରଡ଼ମଡ଼ କରି
ଦାନ୍ତଯାକ ସବୁ ପଡ଼ିଲା ଖସି ।
କୃଷ୍ଣ ମାୟା କରି ହାତ ତତାଇଲେ
ପାଟିଲା ଲୁହାରୁ ବଳିଲା ତାତି,
ଅସୁର ତ ଖାଲି କଲବଲ ହେଲା
ପକାଇ ପାରିଲା ନାହିଁ ତା ପାଟି ।
ହାତକୁ ଲମ୍ବାଇ ମୁଠା ଟାଣ କରି
ଭିତରକୁ ଗେଞ୍ଜି ଦେଲେ ପୂରାଇ,
ବଢାଇଲେ ପୁଣି ପାହାଡ଼ଟା ପରି
ମଚ୍ଛିଦେଲେ ପେଟ ହାତ ହଲାଇ ।
ଗୁରିକାତ ମେଲ ମଲା ସେ ହେଇନା
ଆଖି ଦୁଇଟାକୁ ଦେଲା ତରାଟି,
ମରିବା ବେଳରେ ଘୁଟିପିଟି ହୋଇ
ଶୋଇଲା ସେଇଠି କାମୁଡ଼ ମାଟି ।

ଦେବତାଏ ବସି ଦେଖୁଥିଲେ ସ୍ୱର୍ଗେ
କୃଷ୍ଣଙ୍କ ଦେହରେ ହୋଇଲା ଲୀନ,
ବରଷା କାଳର ଉଆଁସ ରାତିରେ
ମିଶିଯାଏ ଯେସନେ ସଂଜୁଆ ଘନ ।
ପିଲାଏ ଦେଖିଲେ ହୋଇଲେ ଆନନ୍ଦ
ଦେବେ ବରଷିଲେ କୁସୁମରାଶି,
ଗଗନେ ଭୁବନେ 'କୃଷ୍ଣଙ୍କର ଜୟ'
ଏଇ କଥା ଖାଲି ବୁଲିଲା ଭାସି ।
ନାରଦ ଆସିଲେ ହସି ହସି କରି
ବନ୍ଦିଲେ ଶ୍ରୀକୃଷ୍ଣ ଚରଣେ ବସି,
କହିଲେ, "ହେ ପ୍ରଭୁ ! ଧରଣୀ କାନ୍ଦିଲା
ଚଞ୍ଚଳ କଂସକୁ ଦିଅ ହେ ଧ୍ୱଂସି ।
ଆଜି ଯକୁ ଦେବେ କହିଦେବେ ସିନା
କାହାରି ହାତରେ ହେବ କି କାମ ?
ତୁଚ୍ଛାଟାରେ ସିନା ପଢ଼ାଜ କରନ୍ତି
ବୃଥା ସେମାନଙ୍କ ଦେବତା ନାମ !
ତୁମେ ଯେତେବେଳେ ଲାଗୁଥାଅ ଏଠି
ଇନ୍ଦ୍ର କଂପୁଥାଏ ଡରରେ ଖାଲି,
ଟିକଏ ବସଇ ସେଇନା ଉଠଇ
ଥିର ହୁଏ ନାହିଁ ଯାଏଟି ଚାଲି ।
ଆଉରି ଆସଇ ବସଇ ଦେଖଇ
କାହିଁକି କେଜାଣି କୋଏ କାନ୍ଦି,
ସତେ କି କେ ତାକୁ ପିଟି କୋଉଠି
ହାତ ଗୋଡ଼ ଲୁହା ଜଞ୍ଜିରେ ବାନ୍ଧି !
ହର ପାରବତୀ ଦୁହେଁ ବସିଥିଲେ
କେତେବେଳେ ଶିବ ଦେଲେଟି ଟାଣ,
ଘ୍ୱାଡ଼େ ସ୍ୟାଡ଼େ ଗୁହିଁ ଗଉରୀ ଉଠିଲେ
ବାଆଁ ହେଇ ହୋଇ ଗଲେ ବାହାର ।

ବାପା ଖାଲି ବସି          କୃଷ୍ଣ କୃଷ୍ଣ ଘୋଷି
　　ଆଖିରୁ ଅଜାଡ଼ ଦେଲେ ତ ଲୁହ,
ପଚାରିଲି ବାପା !          କାହିଁକି କାନ୍ଦୁଚ ?
　　କଅଣ ହେଉଚି ମୋ ଆଗେ କହ ।
କିଛି କହିବେନି          କେବଳ କାନ୍ଦିବେ
　　କାହାକୁ ଏଥିରେ ନ ମାରେ ଚଢ଼ ?
ମନ ହେଉଥିଲା          ପକାଇ ଦିଅନ୍ତି
　　ଝୁଲା ମୁଣିଟାକୁ ହାତରୁ ଭିଡ଼ ।
ମୁହେଁ କୃଷ୍ଣ କୃଷ୍ଣ          ଆଖିରେ ଲୋତକ
　　କିଏ ଭଲ କରି ପାରିବ କହ,
କହିଲି ବିନୟେ          'ଦେଖ, ଶୁଣ, ବସ
　　କାହିଁକି କାନ୍ଦୁଚ, ଢାଳୁଚ ଲୁହ' !
କାନ୍ଦି କାନ୍ଦି କରି          କହିଲେ ଏତିକି
　　'ସବୁ ଦୋଷଯାକ ମୋହରି ପିନା,
ଅସୁର କି କେବେ          ହୁଅନ୍ତେ ବଳୁଆ
　　ମୋହରି ସର୍ଜନା, ମୋ ବର ବିନା !
ଭଗବାନଙ୍କୁ ମୁଁ          କି ଦୁଃଖ ଦେଉଚି
　　ଥର ଥର କରି ମଣିଷ କରି,
ଦେଖିଥି ପାଇଁକି          ଆଖିରୁ ବୁରେ ପୁଅ
　　ଲୁହ ତ ମନକୁ ପଡ଼ୁଚି ଝରି ।'
ମୁହିଁ ଟାଳି ପ୍ରଭୁ !          ଅଛି ନଟପେଷ
　　ଅସୁର ଦେବତା ସକଳେ ମୋତେ,
ବଡ଼ ସୁଖ ପାନ୍ତି          ବିଶ୍ୱାସ କରନ୍ତି
　　ଅସଲ ସତଟି କହିଲି ତୋତେ ।
ତୁମେ କ'ଣ ସତେ          ଜାଣ ନା ମୋ ମନ
　　ଅନ୍ତର୍ଯ୍ୟାମୀ ନାଆଁ କେବଳ ମିଛ ?
କହ ଭଲା ତୁମେ          କାହିଁକି ଏସବୁ
　　ଗଣ୍ଡଗୋଳେ ପଶ, କା ପାଇଁ ଇଛ ?

ସବୁ ଦେବେ ମିଶି ଖାଇବେ ପଣସ
ତୁମର ମୁଣ୍ଡରେ ବୋଲିବେ ଅଠା,
ରାବଣକୁ ମାରି ବ୍ରହ୍ମଘାତୀ ହେଲ
କିପରି ଭୁଲିଲ ସତେ ସେ କଥା !
ଗୋଟାଏ ଜନମ କି ଦୁଃଖ ସହିନା
ବଣେ ବଣେ ବୁଲି ସାରିଲ ଦିନ,
ପୁରସ୍କାର ପର ପାଇ ଯାଇଥିଲ
ଧରଣୀ ହୋଇଲେ ଧରାରେ ଲୀନ !
ସେଇ ଧରଣୀ ତ ଅଟ୍ଟି ସେ ଏଇନା
ତା ଅପକାର କି ମନରେ ନାହିଁ ?
ସେତେବେଳେ କ'ଣ ତୁମର ଦୁଃଖକୁ
ଥରୁଟିଏ କ'ଣ ଥିଲ କି ଚାହିଁ ?
ଗୁଡ଼ିଦିଅ ତାକୁ କାନ୍ଦୁଥାଉ ପଡ଼ି
ତାର ପାଇଁ କିଆଁ ଏ ହରବର,
ଯାଉ ସେ କାହିଁଣ କା ଆଗେ କହିବ ?
ଅସୁରଙ୍କୁ କରୁଥାଉ ସେ ଡର ?
ତୁମେ କ'ଣ ନୁହଁ ବ୍ରାହ୍ମଣ ସଂସାରେ
ଆଉ କିଏ ଭଲ କହ ତ ଦେଖି ?
ଭୁଲି ମନ ମୋର ଭୁଲିଯାଏ ସବୁ
ଏ:ତାର ବହିରେ ରଖଇ ଲେଖି ।
ବ୍ରହ୍ମକୁ ଜାଣଇ ବ୍ରହ୍ମକୁ ପୂଜଇ
ଯିଏ, ସିଏ ପରା ଏକା ବ୍ରାହ୍ମଣ
ବ୍ରହ୍ମ କିଏ ? ତୁମେ କ'ଣ ସତେ ନୁହ ?
ତୁମେ ପରା ଏକା ପରମ ବ୍ରହ୍ମ !
ତୁମେ ତେବେ କ'ଣ କେବଳ କ୍ଷତ୍ରିୟ ?
ମାରିବା ମରିବା ତୁମର ଧର୍ମ ?
ଏହା ଛଡ଼ା କ'ଣ କ୍ଷତ୍ରିର କୋଉଠି
କରିବାକୁ ନାହିଁ ଦୋସରା କର୍ମ ?

ଛି ଛି ! ମାର ହାତ ! ନୁହଇ ତ ଭଲ
ତେଣୁ ତ ତୁମକୁ କ୍ଷତ୍ରିୟ କହ୍ନ,
ଓଟା କରିଦେଲେ ଧରଣୀ ଉପରେ
ତୁମେ ତ ରହ୍ନଲ ଲାଞ୍ଛନା ସହ୍ନ ।
ଶ୍ରୀବଳ୍ପ ମାଇଲ୍ ଗ୍ରୁଡରେ ଗୋଇଠ:
କାହିଁକି କହ ତ ବ୍ରାହ୍ମଣ ବୋଲି ?
ସହ୍ନଲ ମାରବେ ହସିଲ କେବଳ
ଏବେ ବ ସେ ଚହ୍ନ ଧରିଚ ତୋଳ ।
ଜାତ ପାଇଁ କ'ଣ କର୍ମ ଦାୟୀ ନୁହେ
ତାହା ପାଇଁ କ'ଣ କରମହୀନ,
ହୋଇବ ସମାଜ ସଂସାର ହେ ପ୍ରଭୁ !
ବଡ ସାନ ଭେଦ ହେବନ ଲୀନ !"
କହ୍ନଲେ ଶ୍ରୀକୃଷ୍ଣ ହସି ହସି କରି
"କର୍ମଠାରୁ ବଳ ନାହିଁ ତ ଧର୍ମ,
ଏ ସବୁ କଥା ତ ଖୋଲ ହୋଇଯିବ
ଖ୍ରାଷ୍ଟ ଓ ଅର୍ଜ୍ଜୁନ କରିଲେ କର୍ମ ।
ତୁମେ ତ ଦେବର୍ଷି ମଣିଷ ସମାଜୁ
ରହ୍ନଚ ଉଚ୍ଚରେ ତେଣୁ ତ ଭିନ୍ନ,
ଏଇନା ତ ମୁହିଁ ମଣିଷ ଏଠେଇ
ପାର୍ଥିବ ସଂପର୍କୁ ନୁହଇ ଛିନ୍ନ ।
ମଣିଷ ହୁଅଇ କର୍ମ କରି ଦେବ
ଦେବତା ହୁଅଇ ମାନବ ଭବେ,
ସରଗେ ମରତେ କାହିଁ ନାହିଁ କର୍ମ
କୋଉଠି ହେଉନ କହ ତ ଲବେ ?
କର୍ମ ପାଇଁ ଜାତ ଜାତ ପାଇଁ କର୍ମ
କର୍ମ ପାଇଁ ଧର୍ମ ନିଶ୍ଚୟ ଦାୟୀ,
କିନ୍ତୁ ଜାତ ଧର୍ମ କର୍ମ ସବୁଯାକ
ହୁଅନ୍ତ କେବଳ ଗୁଣର ପାଇଁ ।

ଗୁଣ ତ ତିନିଟି ସତ୍ତ୍ୱ ରଜ ତମ
ତିନିହେଁ ରହିବେ ଏକାଠି ପଡ଼ି,
କିନ୍ତୁ କେହି କାହା କରମେ ଧରମେ
କେତେବେଳେ କାହିଁ ଯିବେନି ଜଡ଼ି ।
ତିନିଙ୍କର କାମ ଅଲଗା ଅଲଗା
ତହୁଁ ଭିନ୍ନ ଧର୍ମ ହୁଏ ଜନମ,
ତାକୁ ହିଁ ପାଳିବା ତାକୁ ହିଁ ରଖିବା
ହେଲା ତିଗୁଣର ପରମ କର୍ମ ।
କିଏ ସର୍ଜ୍ଜନାରେ କିଏ ପାଳନରେ
କିଏ ବା ସଂହାରେ ପାଳଇ ଧର୍ମ,
ତେଣୁ ଏକ ବ୍ରହ୍ମ ହେଲା ତିନି ଶକ୍ତି
ବ୍ରହ୍ମା ମହେଶ୍ୱର ବିଷ୍ଣୁ ତ ନାମ ।"
ନାରଦ—କରମରେ କ'ଣ ନ୍ୟାୟ ଓ ଅନ୍ୟାୟ
ବାଛିବାକୁ କିଛି ନାହିଁ କି କାହିଁ,
ଜାତି ଅନୁସାରେ କରମ କରିଲେ
ସେଥିରେ କି ଦୋଷ ଲାଗଇ ନାହିଁ ?
ଶ୍ରୀକୃଷ୍ଣ—ନ୍ୟାୟ ଓ ଅନ୍ୟାୟ ନିଶ୍ଚୟ ରହିବ
ଥିଲା ସବୁବେଳେ ଏଇନା ଅଛି,
ସଂସାର ସମାଜ ନିରପେକ୍ଷ ହୋଇ
ଭଲ ମନ୍ଦ ସବୁ ଭୁଲିବ କିଛି ।
ନିଆଁର ଧରମ ପୋଡ଼ି ଜାଳିଦେବା
ଦହିବା କାମ ତ କରିବ ସିଏ,
ଏଥିପାଇଁ କ'ଣ ଧର୍ମ ନାଶ ଗଲା
ଏ କଥା ସଂସାରେ କହିବ କିଏ ?
ନାରଦ—କହ ପ୍ରଭୁ ! ମୋତେ ଅନ୍ୟାୟୀ ଅସୁରେ
କିପରି ପଶିଲା ତୁମର ଦେହେ ?
ପାପ ପରିଣାମ ଏଇୟା କି ତେବେ
ଦେହେ ତୋଳି ନେଲ ତାହାକୁ ସ୍ନେହେ ?

କହିଲେ ଶ୍ରୀକୃଷ୍ଣ, "ରହନ୍ତା କୋଉଠି ?
ବସ୍ତୁଟିଏ ହେଲେ ଆଧାରଟିଏ,
ଲୋଡ଼ା ହୁଏ ପଛ ବିନା ଥାନଟିରେ
କୋଉଠି କହେ ରହିବ କିଏ ?
ବଶ୍ୱ ଛଡ଼ା କାହିଁ ଅଛି କ ହେ ଥାନ
ମୋର ଛଡ଼ା କାହିଁ ଅଛି କ ତାହା,
ଦେଖ ଭଲ କରି ବଶ୍ୱ ଆଉ ମୁହିଁ
ଏକ ଭନ୍ନ . ନୁହେ ମୋ ଆଡ଼େ ଚୁହାଁ ।"
କେଶୀ ମରଣରେ ଡରିଗଲା କଂସ
ବ୍ୟୋମାସୁରେ ଡାକ କହଲା କାନ୍ଦ,
"ଯିବୁ କ ରେ ତୁହି ଗଲୁ ଦେଖି ଥରେ
କୃଷ୍ଣ ବଳରାମେ ଆଣିଲୁ ବାନ୍ଧି !
ସବୁ ଆଶା ମୋର ମରି ତ ଗଲଣି
ଆଉ କ ଜୀଇବ ସଂସାରେ ସତେ !
ବସୁଧାଟା କ'ଣ ଆଉ କେତେ ଦନେ
ତୃପତ ହୋଇବ ମୋର ରକତେ !
ମୁହିଁ କ'ଣ ତାକୁ ହେଲ ଏଡ଼େ ଘସି
ସବଂସହା ବାନା ଗଲା କୁଆଡ଼େ,
ଖାଲି ଉହୁଃ ଉହୁଃ ବାପ ଲୋ, ମାଆ ଲୋ,
ହେଲା ସବୁବେଳେ ଗଲା ଯୁଆଡ଼େ !
କେତେ ଡରି ଡରି ପାଦ ମୁଁ ପକାଏ
ତଥାପି କାଟିଲୁ କାଟିଲୁ ବୋଲି,
ରଡ ଛାଡ଼େ ଖାଲି ଥରଇ ବକଳେ
ଗୋଡ଼ ବା କୋଉଠି ଥୋଇବ ତୋଳ ?
ଶୂନ୍ୟରେ କୋଉଠି ଗୁଳଇ ମଣିଷ,
ଶୂନ୍ୟରେ ଶୁଅଇ ଶୂନ୍ୟ ତା ସହେ,
ଶୋଳରେ ତୂଳାରେ ଗଢ଼େ କେ ଶରୀର ?
ଶୋଳର ମଣିଷ କୋଉଠି ରହେ !"

ବ୍ୟୋମାସୁରକୁ ତ    ସଙ୍କଟ ପଡ଼ିଲା
କଂସକୁ ତ ଡରି ହଅଁଟା କଲା,
ମନଟିକୁ ମାରି    ଆଖି ମଳ ମଳ
କୁନ୍ଥୁ କୁନ୍ଥୁ ହୋଇ ଘରକୁ ଗଲା ।
ମାଆ ମାଇପଙ୍କୁ    କଂସର ହୁକୁମ
ବୋଧଶୋଧ କରି ସବୁ କହିଲା,
ଆଉରି କହିଲା,    "ଆଜଠଉ ମୋର
ସଂସାର ସମାଜ ସବୁ ସଇଲା ।
କୃଷ୍ଣ ହାତରୁ କି    ଉବୁରିବ ଆଉ
କେହି ତ ଗୋଟିଏ ପାରିଲେ ନାହିଁ,
ରଜା ହୁକୁମ ତ    ପିବାକୁ ହିଁ ହେବ
ଯାଏ ଏବେ ଥରେ ଦେଖିଲ ଯାଇଁ ।"
ଏଇତକ କହି    ଭଡାଭଡ଼ି ହୋଇ
ବାହାରି ପଡ଼ିଲା ରାଜଦାଣ୍ଡରେ,
ପିଲା ଛୁଆସବୁ    ବାହୁନି କାନ୍ଦିଲେ
ବଜ୍ର କି ପଡ଼ିଲା ତାଙ୍କ ମୁଣ୍ଡରେ !
ବଢ଼ାଇ ଦେଲା ତା    ଶରୀର ଗୋଟାକୁ
ଗଗନ ଭୁବନ କଲା ତ ଏକା,
ଚୁରିଆଡ଼େ ଆଉ—    ସବୁ ଲୁଚିଗଲା
ଖାଲି ବ୍ୟୋମାସୁର ଗଲାଟି ଦେଖା ।
କିଏ ବ୍ୟୋମ କିଏ    ଅସୁର ବୋଲି ତ
ବାରି ହେଲା ନାହିଁ ଆଖିରେ କା'ର,
ସବୁ ତ ନେଳିଆ    ସବୁ ମହାଶୂନ୍ୟ
ମହା ମାଳମାତର ଆକାର ତାର ।
ମଥୁରାକୁ ଗୋପ    କେତେ ଅବା ଦୂର
ପହଣ୍ଡ ବଢ଼ାଇ ଗଲା ତ ଚୂଲି,
ଏକା ଖେପାକରେ    ଡେଇଁଲା ଯମୁନା
ଗୋଡ଼ ତା ଛୁଇଁନି ଯମୁନା ବାଲି ।

ବୃନ୍ଦାବନ ବନେ ପଶିଲା ସେଇନା,
ଦେଖିଲା ପିଲାଏ ଗୋରୁଙ୍କୁ ଛାଡ଼ି,
ଲଉଡ଼ି ଖେଳନ୍ତି ଦୁଇ ଦୁଇ ହୋଇ,
ନାନା ଭଂଗୀ କରି ବୁଲାଇ ବାଡ଼ି ।
ତାହା ଦେଖି ବ୍ୟୋମା ରୂପ ବଦଳାଇ
ହୋଇଲା ଗୋଟିଏ ଗଉଡ଼ ପିଲା,
ହସି ହସି ଆସି ଲୁଚି ଲୁଚି କରି
ବାଡ଼ି ଖଣ୍ଡେ ବାଛି ହାତେ ଧଇଲା ।
ଜାଣିଲେ ଶ୍ରୀକୃଷ୍ଣ ଅସୁରର ମାୟା
ମନକୁ ମନକୁ ହସିଲେ ଖାଲି,
କହିଲେ ପିଲାଙ୍କୁ "ବାଡ଼ି ଥୋଇଦିଅ
ଖେଳିବା ଏ ଖେଳ ଆଉରି କାଲି ।
ଆସ ଆଉ ଏକ ନୂଆଁ ଖେଳ ଆଜ
ଖେଳିବା ଏଇନା ବଡ଼ ବଢ଼ିଆ,
କିଏ ହିଁଅ ଚୋର, କିଏ ସେ ଘରୁଆ
କିଏ ହେଲ ଗାଈ କୋଳିଚଉକିଆ ।
ଚୋର ତ ଆସିବ ଚୋରି କରିବାକୁ
ଚଉକିଆ ତାକୁ ଜଗି ଧରିବ,
ହାତେ ବେଡ଼ି ଦେଇ ଚୋରମାଲ ସହ
ହାକିମଙ୍କ ଆଗେ ଠିଆ କରିବ ।"
ସବୁ ପିଲାଯାକ ରାଜି ହୋଇଗଲେ
କିଏ ହେଲା ଚୋର କିଏ ବା ଗାଈ,
ଶ୍ରୀକୃଷ୍ଣ କହିଲେ, "ଚଉକିଆ ମୁହିଁ
ହାକିମ ହୋଇଲେ ଆମର ଭାଇ ।"
ବ୍ୟୋମା ବିଚାରିଲା ଭଲ ଖେଳ ବାଛ
ମୋର ତ ସୁବିଧା ହୋଇଲା ବେଶୀ,
ସବୁ ପିଲାଙ୍କ ଚୋରାଇ ମୁଁ ନେବି
ଶ୍ରୀକୃଷ୍ଣ କପରି ରହିବ ଦେଖି !

ସବୁଜନ ନେଇ ପାହାଡ଼ ଗୁହାରେ
ପୂରାଇ ରଖିବ ପଥର ଦେଇ,
ସବା ଶେଷରେ ମୁଁ ମଥୁରାକୁ ଯିବ
କୃଷ୍ଣ ବଳରାମେ ମୁଣ୍ଡାଇ ନେଇ ।
ଜାଣିଲେ ଶ୍ରୀକୃଷ୍ଣ ବ୍ୟୋମା ମତଲବ
ହୁସିଆର ହୋଇ ରହିଲେ ସୁହିଁ,
ଯେତେ ମିଳି ଗଲେ ଲୁଆଡ଼େ ରହିଲେ
କେହି ତ ଗୋଟିଏ ଫେରିଲେ ନାହିଁ !
ଶ୍ରୀକୃଷ୍ଣ ଏଥର ଗଲେ ପଛେ ପଛେ
ଦେଖିଲେ ଅସୁର ଗୁହାରେ ଭରି,
ରଖି ଦେଇଅଛି ସବୁ ପିଲାଙ୍କ
ପଛରେ ତାହାଙ୍କୁ ମାରନ୍ତା ଧରି ।
ଧାଇଁଗଲେ ସେଠି କାଢିଲେ ପଥର
କୃଷ୍ଣ ଦେଖି ବ୍ୟୋମା ଗଲା ତ ଡରି,
ନିଜ ରୂପ ଧରି ପଳାଇ ପଶିଲା
କୃଷ୍ଣ ପକାଇଲେ ତାହାକୁ ଧରି ।
ମୁଣ୍ଡ ମୋଡ଼ିକରି ମାରିଲେ ସେଇଠି
ସରଗେ ଦେବତା ହେଲେଟି ହସି,
କାହିଁ କେତେ ଫୁଲ ଢୋଳ ଆଣିଥିଲେ
ସବୁଜନ ଦେଲେ ଶିରେ ବରଷି ।
ଗୋପ ବାଳକଙ୍କୁ କହିଲେ ଶ୍ରୀକୃଷ୍ଣ,
"ନଇଁ କରି ସୁହିଁ ଗୁହା ଦୁଆରେ,
ସବୁ ଏକା ସଙ୍ଗେ ହସି କହିଥିଲେ,
"ଭଲ ଚଉକିଆ ବାହା ବାହାରେ ।"
ଅସୁରର ସାହା ପଶିଲା କୃଷ୍ଣରେ
ଅସୁର ଜନ୍ମରୁ ହେଲା ମୁକତ,
କଂସର ମନରେ ଶଙ୍କା ଥୋଇଗଲା
ଅଳପ ଦିନରେ ହୋଇବ ଅନ୍ତ ।

ଅସୁର ପରି ତ ବେଢ଼ି ରହିଅଛି
ଲେଖକକୁ ତାର ପାତକରାଶି,
ଶ୍ରୀକୃଷ୍ଣ କି ସତେ ସଂହାରିବେ ନାହିଁ
ପାପ କ'ଣ ତାର ଦେବେନି ନାଶି !
କରିଥିଲା କି ସେ ପୂର୍ବ ଜନମରେ
କେଉଁ ପାପ ଭୋଗେ ତା ପରିଣାମ ?
ଧୋଇଦେବ ନାହିଁ ସେ କଳୁଷରାଶି
ସତେ କି ଶ୍ରୀକୃଷ୍ଣ ପବିତ୍ର ନାମ ?
କଳିଯୁଗେ ନାମ ପରା ମୋକ୍ଷମନ୍ତ୍ର
ସେ ନାମ ମହିମା ଘୋଷୁଛି ପରା,
ଶ୍ରୀକୃଷ୍ଣ ପାଶକୁ ଯିବ ନାହିଁ ସେହି
ବାନ୍ଧିପାରିବ କି ଏ ପାପଧରା ?

---

# ଅକ୍ରୂରର ଗୋପ-ଗମନ

କଂସର ଆଦେଶ        ସୁହାଇଲା ତାକୁ
ମଣ୍ଡିଦେଲା ରଥ ସୁନ୍ଦର କରି,
ବାଛିଦେଲା ଘୋଡ଼ା        ସବୁଠୁଁ ଚଞ୍ଚଳ
ଉଡ଼ନ୍ତି ଯେ ପକ୍ଷିରାଜର ପରି ।
ପଢ଼ିଲେ କୁଆଡ଼େ        ଘୋଡ଼ାଙ୍କର ଥିଲା
ପକ୍ଷୀ ଯୋଡ଼ା ଯୋଡ଼ା ଚଢ଼େଇ ପରି,
ପକ୍ଷୀ କାଟିଦେଲେ        ପଛରେ ବାସବ
ରାଗରେ କାହିଁକି ଘୋଡ଼ାଙ୍କୁ ଧରି !
ସୂର୍ଯ୍ୟଙ୍କ ଘୋଡ଼ା କି        ଛଡ଼ାଇ ଆଣିଣ
କଂସ ପୋଷିଥିଲା ଏତେ ଯତନେ ?
ସେମାନେ ତ ସବୁ        ଦିନଯାକ ବୁଲି
ଉଡ଼ନ୍ତି ପବନେ ଆଉ ଗଗନେ ।
ସାତ ଜାତି ରଙ୍ଗ        ସବୁ ତ ଉଜ୍ଜ୍ୱଳ
ମିଶି ଇନ୍ଦ୍ରଧନୁ ପ୍ରାୟ ଦିଶନ୍ତି,
ରଥରେ ଯୋଡ଼ିଲେ        ନିମିଷକେ ଉଡ଼ି
ଅଦୃଶ୍ୟ ହୁଅନ୍ତି କାହିଁ ପଶନ୍ତି
ରାତିରେ ଅକ୍ରୂର        ନିଦ ଶୋଇ ନାହିଁ
ସପନ ଦେଖୁଛି କୃଷ୍ଣଙ୍କୁ ଖାଲି,
ସପନରେ ଉଠେ        କୋଳାଇ ନେବାକୁ
ସପନରେ ସେ ତ ବୁଲଇ ଚାଲି ।

କୃଷ୍ଣଙ୍କୁ ତ କେବେ ଆଖିରେ ଦେଖିନ
ଶୁଣଇ କେବଳ ରୂପର କଥା,
ସେଇଥିରୁ ଯାହା ଅନୁମାନ କରେ
ଦେଖିବା ପାଇଁକି ପାଗଳ ମଥା ।
ମନୋହର କଳା ଶ୍ୟାମଘନ ପରି
ମୁଣ୍ଡରେ ଚନ୍ଦ୍ରିକା କାଇଁଚମାଳ,
କଟିରେ କିଙ୍କିଣି ପାଦରେ ନୂପୁର
ମତ୍ତ ମାତଙ୍ଗର ପରାୟେ ଗୃଳ ।
ନାଲ ଅଧରରେ ମୋହନ ବଇଁଶୀ
ତ୍ରିଭଙ୍ଗ ଠାଣିକୁ ବଙ୍କା ଚ୍ଛାଣୀ,
ହଳଦିଆ ଲୁଗା ତ୍ରିକଚ୍ଛ ପିନ୍ଧିବା
କଣ୍ଠେ ବନମାଳ! ଆରକ୍ତ ପାଣି ।
ବରତୁଲ ମୁହଁ ମଧୁରିଆ ହସ
କହଁଳିଆ କଥା ମୁକୁତା ଦାନ୍ତ,
ସବୁ ଶିରୀଯାକ ଏକାଠି ହୋଇଛି
ଅଶାନ୍ତ ଆଖିକୁ କରଇ ଶାନ୍ତ ।
ଶୁଣିବା କଥାକୁ ମନରେ ଦେଖଇ
ହୃଦୟରେ ଲେଖି ପକାଏ ଛବି,
ଘଟରେ ବହ୍ନିଳ ଅନ୍ତ୍ରୂରଟା କ'ଣ
ସତେ ଚଷକର ଆଉଟି କବି !
କଳପନାକୁ ଯେ ଆକାର ଦିଅଇ
ତାହାର କି କାହିଁ ନ ଥାଏ ଭଲ ?
ଆଗରେ ପକାଇ ମିଳାଇ ଦେଖିଲେ
ଛବି କଳପନା ହୁଏ କି ଭୁଲ ?
ଏଇ କଳ୍ପନାକୁ ଦର୍ଶନ କହନ୍ତି
ସେ ଦରଶନର ଥାଏ ଆକାର,
କିବା ନସକାର ବିଶ୍ୱ ବ୍ରହ୍ମାଣ୍ଡରେ
ହମ୍ଭାଏ କି କେବେ ରୂପ ତାହାର ?

ତାଙ୍କୁ କଏ କେଉଁ ଆଖିରେ ଦେଖଇ ?
ଦୃଷ୍ଟିର ସୀମା କ ଅଣ୍ଟଇ ତାଙ୍କୁ ?
ଯୁଗ ଯୁଗ ଧର ଏକଲୟ ହୋଇ
କଳ୍ପନା କଳପେ ବସି ଯାହାଙ୍କୁ ।
କଂସ ସହଚର ଅଜ୍ଞାନ ଅକ୍ରୂର
କେଉଁଠୁ ପାଇଲା ଏଡ଼େ ଶକତି ?
କଳ୍ପନା ଗୋଷ୍ଠାକୁ ସତ କରିଦେଲା
କଳ୍ପନା, ବାସ୍ତବ ଏକା ମୂରତି ।
ସ୍ନେହ ବାହାଦୁଗ୍ଧ ଏଠି ଚରିତାର୍ଥ
କୋଉଥିରେ ରଖି ଦଏନା ବାଡ଼,
ସବୁ ପାରଥକ୍ୟ ଭଙ୍ଗି ଚୂରିହୁଏ
ଭକତି ରସକୁ କରଇ ଗାଢ଼ ।
ଭାବନା ଓ ଛବି ଏକ ହୋଇଗଲା
ଭକତି ମିଶାଇ ଦେଲାଟି ମିନା,
ଭକତି ଓ ସ୍ନେହ ମିଶି ହୁଏ ପ୍ରେମ
ସଂସାର ଅଛି କ ପ୍ରେମର ବିନା !
ଯୋଉଠେଇ ପ୍ରେମ ସେଇଠି ହିଁ ସତ୍ୟ
ସତ୍ୟର କି ଅଛି ପରିବର୍ତ୍ତନ ?
ଅକ୍ରୂର କଳ୍ପନା ସତ୍ୟ ସନାତନ
ତେଣୁ ସତ୍ୟ ତାର ଚିହ୍ନ ଅଙ୍କନ ।
କଳ୍ପନାରେ ତାର ଆକାର ସୁନ୍ଦର
କଳ୍ପନାରେ ଗୀତ ବାଦ୍ୟ ମଧୁର,
କଳ୍ପନାରେ ବସି ପଲ୍କରେ ମନକୁ
ମଥୁରାକୁ ଗୋପ କେତେ ଯା ଦୂର ?
ଗୋପ ବୃନ୍ଦାବନ- ମଥୁରା ତ ସବୁ
ଏକ ହୋଇଗଲା ନୁହେ ତ ଦୂର,
କାହିଁ କୃଷ୍ଣ କାହିଁ ନନ୍ଦର ମନ୍ଦିର
କାହିଁ କି ମୋ ହୃଦ କରୁନ ଜୂର ?

ଏତେ କି ନିର୍ଦ୍ଦୟ ହୋଇଲୁ ରେ ସତେ
ଦେଖା ଦେଉ ନାହୁଁ ପାଖରେ ବସି ?
ନିକଟକୁ ଦୂର କରି ଦେବୁ କିରେ
ଦୂର ତ ପାଖରେ ଗଲଣି ପଶି ।
ଅସୁରକୁ ମାରି ମାରଣା ହେଲୁ କି
ମାରିବୁ ତୁ ଯେବେ ରଖିବ କିଏ ?
ମାରଣ, ତାରଣ ସବୁ ତ ତୋହରି
ମରେ ଯେ ତୋ ହାତେ ତରଇ ସିଏ !
ଯାଉଚି ଯାଉଚି ମନଯାନ ଚଢ଼ି
ଘୋଡ଼ାର ତ ଆଉ ହେବନି ଲୋଡ଼ା,
ମନର ସଙ୍ଗରେ ଘୋଡ଼ା କି ଧାଇଁବ
ଆଲୁଅ ଶବଦ ନୁହନ୍ତି ଯୋଡ଼ା !
ବସିଥିବୁ ତୁହି, ପଡ଼ିବି ଚରଣେ
ଉଠାଇବୁ ଧରି ଆଦର କରି,
ଠିଆ ହୋଇଥିବୁ ଯିବି ମୁଁ ପାଖକୁ
ବସାଇବୁ ନେଇ ହାତକୁ ଧରି ।
କାନ୍ଦୁଥିବି ଦେଖି ଲୁହ ପୋଛିଦେଇ
ପୀତବାସ କାନି ବୁଲାଇ ଦେବୁ,
ରୁଷି କରି ହଟି ପଛକୁ ଆସିଲେ
ଧାଇଁ ଧାଇଁ ଆସି ଫେରାଇ ନେବୁ ।
ଗୋଡ଼ ଧୋଇଦେବୁ ? ନା ନା ! ମୁଁ ଧୋଇବି
ଅଜାଡ଼ିବୁ ପାଣି ? ପୋଛିବୁ ପାଦ ?
ନାହିଁ ନାହିଁ ! ପ୍ରଭୁ କରାଇ ଦେବନି
କଲେ ହେବ ପରା ମୋ ଅପରାଧ !
ଯମୁନା ଜଳ ମୋ ପାଦରେ ଢାଳିବୁ
ତୋର ଦେହ ଲାଗି ବଡ଼ ପବିତ୍ର,
କହ ତ ତୁ ଦେଖି ମୋର ସେବାକରା
ତୋହର କି କେବେ ହେବ ଉଚିତ ?

ଯମୁନା ବାଲିରେ  ରଖିବୁ ପଦାଙ୍କ
ପଡ଼ିଲେ ବୋଳିବ ତୋ ପଦଧୂଳି,
ତୋ ପଦ ଲାଞ୍ଛନା  କରନା ଦୁର୍ଲ୍ଲଭ
ଆଙ୍କିଦେ ବକ୍ଷରେ ଧରିଣ ତୁଳୀ ।
ରଙ୍ଗଠାରୁ ଧୂଳି  ବେଶୀ ତ ସୁନ୍ଦର
ସଭିଙ୍କୁ ମିଶାଇ ଦିଅଇ ଅଙ୍ଗେ,
କୋଉ ରଙ୍ଗ ଟା ବା  ସମାନ ହୋଇବ
ସଂସାରରେ ଧୂଳିକଣାର ସଙ୍ଗେ ?
ସବୁ ରଙ୍ଗଯାକ  ଠାଆ ଠାଆ କରି
ଚକିଟିରେ ବୋଳି ବୁଲିଇ ଦେଲେ,
କେବଳ ଧୋବଲା  ଦିଶିଯାଏ ପରା
ସବୁ ଭଲ ହୁଏ ଶୁକଳ ହେଲେ ?
ଚୂଆଇ ତୁ ଦେବୁ  ସର ଲହୁଣୀ କି
ଯାହାକୁ ତୁ ଖାଉ ଆଦରେ ମାତ,
ହେବୁ କି ଯଶୋଦା  ଜନମୀ ମୋର ତୁ
କୋଳରେ ପଶିବ ଗୁଡ଼ିବ ଖାତି ?
ତୁ ମୋ ନନ୍ଦ ବାପ  ହେବୁ କି ରେ ସତେ
ଝାଡ଼ିଦେବୁ ଧୂଳି ଦେହୁଁ ମୋହର,
ମୋତେ ଦେଖି କ’ଣ  ସ୍ନେହ କରିବୁନି
ଅଜାଡ଼ି ଦେବୁନି କଲ୍ୟାଣ ତୋର ?
ତୁ ପରା କୁଆଡ଼େ  ଜଗତର ପିତା
ମୋର ବାପ କ’ଣ ହୋଇବୁ ନାହିଁ,
ବାପର ଆଖିରେ  ମୋର ଏ ରୂପକୁ
ଥରୁଟିଏ କ’ଣ ଦେବୁନି ଚାହିଁ ?
ରାତିଯାକ ଉଠି  ଝରକା ପାଖରେ
ଠିଆହୋଇ ଚାହେଁ ପୂର୍ବ ଦିଗକୁ,
ଉଷା ଆସି ନଭେ  ସିନ୍ଦୂର ଫାଟିଲେ
ନିଉଛାଇ ନେବ ଆଗେ ଦିନକୁ ।

ରାତ୍ର ଗୋଟାକ ତ          ସାତ ରାତ୍ର ହେଲା
ଶକ୍ତିବଦ୍ଧ ହେଲା କୋଉ ଲକ୍ଷ୍ମଣ,
ହିମାଳୟେ ଗଲା          କୋଉ ହନୁମାନ
ଆଣିବ କି ଆଉ ଗନ୍ଧମାଦନ ?
ଆଖିରୁ ଗଡ଼ଇ          ମନକୁ ଲୋତକ
ହୃଦୟେ ତ ନାହିଁ କାନ୍ଦଣା ଚିହ୍ନ,
ହସି ଉଠଇ ତ          ମନଟି ତାହାର
ପୁଲକ ପୁଲକ ଉଠଇ ଅଙ୍ଗ ।
ଆଖି ଯୋଡ଼ାକର          ଏ କୋଉ ଲକ୍ଷଣ
ତୁଚ୍ଛାକୁ ଖସୁଚି ଲୋତକ ଜଳେ,
ଅତି ସ୍ନେହ କିବା          ଅତି ପ୍ରେମ ହେଲେ
ହଟେ କି ଲୋତକ ଏପରି ଝରେ !
ରଜନୀ ସରିଲା          ଉଷା ଦେଖାଦେଲା
ତାରାଏ ଲୁଚିଲେ କୋଉଠି ଯାଇ,
ଉଷାର ସୁନ୍ଦର          ରକତଆ ରୂପ
ଏବେ ମଧ୍ୟ ଦେଖା ଦେଇ ତ ନାହିଁ ।
ଉଦୟ ଅଚଳ          ରହିଁ ବସିଅଛି
ଉଷାକୁ ଧରିବ ବକ୍ଷରେ ଯାକି,
ଉଷା ଆସିକରି          ଆସଇ ନାହିଁ ତ
ଆଜ କ'ଣ ଆଉ ଦେବ କି ଫାଙ୍କି !
ଦିଗବଳୟରେ          ଆଦିତ୍ୟ ଉଇଁଲା
ସୁନା ଥାଳଟିରୁ ଦିଶିଲା ଅଧେ,
ଆଉ ଅଧିକ ତ          ଲୁଚିଲା କୋଉଠି
ରହିଲା କି ଆଉ ଗଗନ ମଧ୍ୟେ !
ପର୍ବତ ଶିର          ହେଲା ଜକ ଜକ
ସୁନା ଜରି କିଏ ଦେଲା ତ ପାରି,
କିଏ ଗିରିଶୃଙ୍ଗ          କିଏ ଦିଗ୍‌ବଳୟ
ଚାହିଁଲେ ତ କିଆଁ ହେଉନି ବାରି !

ଚଢ଼େଇଗୁଡ଼ାଏ କୋଉଠେଇ ଥିଲେ
ଆସିଲେ, ଏକାଠି ଗାଇଲେ ଗୀତ,
ଗଗନର ରଙ୍ଗ ବଦଳି ଗଲା ତ
ଢଳିଲା ସୁନ୍ଦର ଲୋହିତ ପୀତ ।
ନିଶାଗନ୍ଧୀ କେତେ ଗଛଲତା ମିଳି
ଫିଟାଇ ଦେଲେ ନ୍ୟକର ପତର,
ସଉର କରକୁ ନିଜସ୍ୱ ନେବେ
ହସ୍ତ ମୁଦ୍ରା କରି ପରା ଏଥର !
ନିର୍ଲ୍ଲଜ୍ଜ କୁସୁମେ ଫୁଟିଲେ ଗଛରେ
ଲଙ୍ଗଳା ରୂପକୁ ଦେଖାଇ ଦେଇ,
ଲଜ୍ଜାବତୀ ସବୁ ମୁହଁ ପୋତିଦେଲେ
ସରମେ ରହିଲେ ଭୂଇଁରେ ଶୋଇ ।
ଫୁଲ-ସମାଜରେ ଚଳିଲା ଚହଳ
କିଏ ଗାଏ କିଏ ବାହୁନେ ବସି,
କିଏ ବା ଖେଳଇ ପବନ ସଙ୍ଗରେ
କେ ଗୃହିଁ ସଉର କିରଣେ ହସ ।
କେ ଗାଏ କୋଇଲି ସଙ୍ଗେ ମିଶିକରି
କେ ବାଏ ମଧୁପ ସଙ୍ଗ ସୀତାର,
ଆକୁଳେ ହରଷେ ନାଚ, ଖେଳ, ଗୀତ
ସହିତ ବାଜଣା ବାଜଇ କାର !
ଅକ୍ରୂର ମନକୁ ଏସବୁ ରୁଚୁନି
ତା ଭୁଲି ଓ କାଳ ଯାଇଚି ହଜି,
କେବା ସେ ଦେଖୁଚି ନିରାକାର ଖାଲି
ସାକାର ସେବାକୁ ଦେଇଚି ବର୍ଜି ।
ଆଜ ସେ ଦେଖିବ ଆକାର ଗୋଟିଏ
ନିରାକାରର ସେ ପୂର୍ଣ୍ଣ ପ୍ରତିମା,
ରଖିଦେବ ପରା ତାର ପାପ ପୁଣ୍ୟ
ସୁଖ ଦୁଃଖ ସବୁ ତାହାର ଜମା !

ଦେଖିବାର ଯୋଗ୍ୟ    ଆଜି ଅଛି ତାର
    ଦେଖିବ ମୁକର ଭକତ ବଳେ,
ସେଇ ଭରସାରେ    ଆଗ୍ରହଟେ ନେଇ
    ଅଚଳ ଆସ୍ଥାରେ ଗୋପକୁ ଚଳେ ।
କଅଣ ଦେଖିବ    ନିରାକାର ଦେହେ
    ରଚିତ ସାକାର, ସୂକ୍ଷ୍ମରେ ସ୍ଥୂଳ,
ଶୂନ୍ୟରେ ପୂର୍ଣ୍ଣକୁ    ଦେଖିବାକୁ ଗଲେ
    ଭକ୍ତି, କର୍ମ, ଜ୍ଞାନ ତିନେହେଁ ମୂଳ ।
ଲେଖକର କ'ଣ    ନାହିଁ କିଛି ପୁଣ୍ୟ
    ଶ୍ରୀକୃଷ୍ଣ ଚରଣ ଦେଖିବ ନାହିଁ,
କେତେ ନିଶିରେ ତ    ଦେଖିଚି ସପନେ
    ଆଉ ସେ ବିକଳ କଅଣ ପାଇଁ ?
ଜୀବନେ କିଏ ବା    ଅର୍ଜିଚି ଏ ଭାଗ୍ୟ
    ଦେଖିବ ତାହାଙ୍କୁ ଶରୀର ଧରି,
ଅଛି ତା ବିଶ୍ୱାସ    ଦେଖିବ ନିଶ୍ଚୟ
    ଯେବେ ସେ ସଂସାରୁ ଯିବଟି ମରି ।

---

# ବୃନ୍ଦାବନେ ପ୍ରବେଶ

ସାଜଦେଲା ରଥ          ଯୋଡ଼ଦେଲା ଘୋଡ଼ା
    ଛିଡ଼ା କଟଦେଲା ପାଖେଇ କରି,
ଚଢ଼ିଗଲା ରଥେ          ବସିଗଲା ଆପେ
    ଗୃହିଲା ଲଗାମ ଚାବୁକ ଧରି ।
ଦଉଡ଼ିଲେ ଘୋଡ଼ା          ଲମ୍ଫି ଝମ୍ପି ଝମ୍ପି
    ଘରର୍ ଘରର୍ ଶବଦ କରି,
ମଥୁରା ନଗର          ଡେଇଁଗଲା ରଥ
    ଧାଇଁଲେ ଘୋଡ଼ାଏ ପବନ ପରି ।
ପୁଷ୍ପକ ବିମାନ          ଉଡ଼େ କି ଗଗନେ
    କି ଅବା ମରାଳ ଉଡ଼ଇ ଭାସି !
ରଥ ଧାଉଁଅଛି          ଧୁଉଁ ଧୁଉଁ କରି
    ପଛକୁ ଧାଆଁନ୍ତି ପାଦପରାଶି ।
ଗଛ ଧାଉଁଛି କି          ରଥ ଧାଉଁଅଛି
    ଅନ୍ତର ପାରୁନି କଳି ତ ବାରି,
ମନ ତ ତାହାର          ବହୁତ ଆଗରୁ
    ଯାଇଛି ଶରୀର ଛାଡ଼ି ବାହାରି ।
ପବନ ବହୁଛି          ଅନୁକୂଳ ହୋଇ
    ପଛରୁ ରଥକୁ ଦେଉଛି ଠେଲି,
ଶୁଣାଇ ଶୁଣାଇ          କହୁଛି କି ଆଉ
    ଧାଆଁ ଧାଆଁ ବେଗେ କରନା ଡେରି !

ଯମୁନା ନଈରେ ପହଞ୍ଚିଲା ରଥ
ଓହ୍ଲାଇ ପଡ଼ିଲା ରଥକୁ ରଖି,
ବାଲିକୁଦଟାଏ ଧୋବଲି ଦିଶୁଚି
ଅକ୍ରୂର ଚାହିଁଲା ଶିର ସଳଖି ।
ଧାଇଁଗଲା ପାଖେ ମିଳାଇଲା ଖୋଜ
କୋଉଠି ପଡ଼ିଚି ଶ୍ରୀକୃଷ୍ଣ ପଦ,
ଦେଖିଲା ଠାଆଏ ଧ୍ୱଜ ବଜ୍ରାଙ୍କୁଶ
କାନ୍ଦିଲା ହୋଇଣ ପ୍ରେମଗଦ୍‌ଗଦ ।
ଯମୁନା ପାଣିକ ଚାହିଁଦେଲା ପୁଣି
ଦିଶୁଚି ସୁନୀଳ କୃଷ୍ଣଙ୍କ ପରି,
ଧାଇଁଗଲା ତାକୁ କୋଳ କରିବାକୁ
କିଏ ବା ଦେଇଚି ପାଗଳ କରି !
କୂଳରେ ଦେଖିଲା କଦମ୍ବ ଗଛଟା
ଡାଳଟିରେ କୃଷ୍ଣ ଅଛନ୍ତି ଚଢ଼ି,
ଗୋବର୍ଦ୍ଧନ ଦୂରେ ଦିଶୁଚି ସୁନୀଳ
ଶ୍ୟାମମୟ ହୋଇଗଲା କି ଧରା !
ଉଠିଲା କୂଳକୁ ଚାହିଁଲା ନିରେଖି
କେହି କୋଉଠେଇ ଦିଶୁ ତ ନାହିଁ,
ଘରଆଡ଼େ ଖାଲି ଗହଳିଆ ବଣ
ନୀଳ ଗଗନକୁ ରହିଚି ଚାହିଁ ।
ଅରଣ୍ୟ ନୀଳିମା ଗଗନ ନୀଳିମା
ମିଶିଯାଇ ନାହିଁ ହୋଇନି ଏକା,
ମଝି ବ୍ୟବଧାନ ଦିନର ଆଲୁଅ
ଉଜ୍ଜ୍ୱଳ ହୋଇଣ ଯାଉଚି ଦେଖା ।
ଏଇ ଫାଙ୍କଟା କି ଲୁଚିଯିବ ନାହିଁ
ଲୁଚିଲେ ଆସିବ ଅନ୍ଧାର ଘୋର,
ସେତେବେଳେ ଆଉ ବାଛି ହେବ ନାହିଁ
କିଏ ବା ପ୍ରଦୋଷ କିଏ ବା ଭୋର ।

ଚାଲି ଚାଲି ଗଲା ଟିକିଏ ଆଗକୁ
କାନ ଡେରି କରି ରହିଲା ଖାଲି,
ଶୁଣିଲା ଅଳପ ଭୃଙ୍ଗୁରୁଘଣ୍ଟେରେ
ଦୂରରୁ ପବନେ ଆସୁଚି ଚାଲି ।
ଆଉ ଟିକେ ଗଲେ ଆଗେଇ ଆଗେଇ
ଦିଶିଲେ ଗୋରୁଏ ଦିଶିଲେ ପିଲା,
ଆକୁଳ ଆଗ୍ରହେ ଅନ୍ତରେ ପିଆଡେ
ଗଦଗଦେ କାନ୍ଦି କାନ୍ଦି ଧାଇଁଲା ।
ଦେଖେ କି ସୁନ୍ଦର ନୀଳ ଓ ଧବଳ
ଦୁଇ ଭାଇଧନ ଦୁହିଁନ୍ତି ଗାଈ,
ସୁନ୍ଦରପଣରେ କେହି ଊଣା ନୁହେଁ
କେଉଁଠି କାହାର ଖୁଣ ତ ନାହିଁ ।
କେଉଁଠି ଥିଲେ ଏ କୁମୁଦ କମଳ
ଗୋଟିଏ ଧବଳ ଅନ୍ୟଟି ନୀଳ,
ଏକା ସରକରେ ଏକା ବେଳକରେ
ଫୁଟିଲେ ସରସୀ କରି ରୁଚିର ।
ଗଂଗା ଯମୁନା ତ ଏଇ ଦୁଇ ଭାଇ
ମିଶୁ ମିଶୁ ମିଶି ଯାଆନ୍ତି ନାହିଁ,
ସଂସାରର ପାପ— ତାପ ସବୁ ଯେତେ
ପଡ଼ରେ କି ଦେବେ ନାହିଁ ଏ ଧୋଇ !
ଧବଳ ଦେହରେ ସୁନୀଳ ଦୁକୂଳ
ନୀଳ କଳେବର ପୀତ ବସନ,
କିଏ ବା ପଡ଼ରେ ବାଛି ପିନ୍ଧାଇଲା
ସୁଷମାକୁ କଲା ବେଶୀ ସୁଷମ ?
ଶ୍ରୀକୃଷ୍ଣଙ୍କ ଦେହେ କ୍ଷୀର ଛିଟା ପଡ଼ି
ନୀଳ ଗଗନରେ ନକ୍ଷତ୍ର ପରି,
ଦିଶେ ନିରମଳ ଅଧିକ ସୁନ୍ଦର
କଅଁଳ ଖଦିରେ ଜଳୁଚି ପଡ଼ି ।

ବଇକୁଣ୍ଠ ଛାଡ଼ି ଧରାକୁ ଆସିଲୁ
ଏଇ ଖେଳ କ'ଣ ଖେଳିବା ପାଇଁ,
କିବା ସୁଖ ପାଉ କରୁ ତୁ ଏସବୁ
ବଣେ ବଣେ ବୁଲୁ ଗୋରୁ ଚରାଇ !
ଗୋରୁ ଗାଈଙ୍କର କେତେ ଭାଗ୍ୟ ସତେ
ତୋର ଅଂଗସଂଗ ଭୋଗନ୍ତି ନିତି,
ଏତେ ଭାଗ୍ୟ ନେଇ ମଣିଷ କି କାହିଁ
ଜନମି ଅଛି ଏ ମାଟିର କ୍ଷିତି ?
ମାଟିର ମଣିଷ ଖାଟି ଖାଇବାକୁ
ପାଉନି କରମ ପାଉନି ବେଳ,
କିଏ ବା କୋଉଠି ଚିନ୍ତା ଦକ ଛାଡ଼ି
ତୋ ସଂଗେ ଏପରି ଖେଳୁଛି ଖେଳ ?
ମନରେ ପଶିଛି ନାନା କଳମଷ
ପେଟରେ ଜଳୁଛି ଅଳକ୍ଷ ଚିତା,
ଏ ଗୋରୁ ଗାଈ ତ କେତେ ହସ ହସ
କାଟି ତୁ ନେଉନୁ ତାଙ୍କର ଚିନ୍ତା ?
ଦେବତା ଯାହାକୁ ପାଆନ୍ତି ନାହିଁ ରେ
ଗୋରୁ ଗାଈଙ୍କୁ ସେ ଏତେ ସୁଲଭ,
ବଡ଼ପଣ କ'ଣ ଊଣା ହେଲା ନାହିଁ
ସରଗ ବରଜ ଭଜିଲୁ ଭବ ?
ଗୋରୁ ଚରାଇବା ନୁହେ ତ ତୋ କାମ
ମଣିଷକୁ ଚରାଇବୁ ତ ପରା,
ତୋର ଗୋପପୁର ତୋର ବୃନ୍ଦାବନ
ନୁହେ କି ସାଗର ସହିତ ଧରା !
ଅକ୍ରୂର ଭକତ ଗୋରୁ ସ୍ନେହଠାରୁ
ଊଣା ହେଲା କିବା ରହିଲା ଦୂରେ,
ଏତେ ଆପଣାର ହୋଇ ବା କିପରି
ଗୋଡ଼ରେ ଆଡେଇ ଫିଙ୍ଗି ଦେଲୁ ରେ !

ଶରୁଚ କଲଜା ଦେଖ ଭୁ ଥନ୍ତୁଟେ
କୋଉଠି ଭିତରେ ଅଛୁ କି ଦୋଷ,
ଦୋଷ ଦେଖି ସିନା କ୍ଷମା କରିଦେବୁ
ସେଇଟି ନ କରି କରୁଚୁ ରୋଷ ?
ଏଇତକ କହି କାନ୍ଦି କାନ୍ଦି କରି
ଶୋଇଲେ ଧୂଳିରେ ଚରଣେ ପଡ଼ି,
କୃଷ୍ଣ ବଳରାମ ଗାଈ ଦୁହୁଁ ଥିଲେ
ଗୃହିଁଲେ ତାହାକୁ ଲେଉଟି କରି ।
ଦୁଧଦୁହାଁ ଠେକି ତଳେ ଥୋଇଦେଇ
ଉଠାଇଲେ ବେଗେ ହାତରେ ଟୋଳି,
ଅକ୍ରୂର ଚରଣୁଁ ଧୂଳି ନେଇକରି
ନିଜ ହୃଦୟରେ ଦେଲେ ତା ବୋଳି ।
ଭଲ ମନ୍ଦ ସବୁ ପଚାରିଲେ ହସି
ବାପ ମାଆଙ୍କର କୁଶଳ କଥା,
କହିଲା ଅକ୍ରୂର ଗୋଟି ଗୋଟି କରି
ଶୁଣିଲେ ଶ୍ରୀକୃଷ୍ଣ ନୁଆଇଁ ମଥା ।
ହସିଲେ ଟିକିଏ କହିଲେନି କିଛୁ
ଗୋଡ଼ରେ ଆଡ଼େଇ ଆଡ଼େଇ ବାଲି,
କଅଣ ଭାବନ୍ତି ଠିଆହୋଇ କରି
ଆଜିର ତଳକୁ ଚାହାନ୍ତି ଖାଲି ।
ଗଗନେ ନିରେଖି ହସନ୍ତି ଟିକିଏ
ମଝିନରେ ମୁହଁ ମହଳ ଯାଏ,
ଛାତିକୁ ଫୁଲାଇ ନିଶ୍ୱାସ ମାରନ୍ତି
କି ଚିନ୍ତାରେ ମନ ପଶୁଁରୁଥାଏ !
ଅକ୍ରୂରକୁ ନେଇ ଗଲେ ଚାଲି ଚାଲି
ଦୁଇ ଭାଇଯାକ ଯମୁନା ତଟେ,
ଘୋଡ଼ା ଯୋଡ଼ା ହୋଇ ସୁନ୍ଦର ରଥଟେ
ରହିଚ ଦେଖିଲେ ତଟ ନିକଟେ ।

ଯମୁନାରେ ପଶି ଗାଧୋଇପାଧୋଇ
ତତକ୍ଷଣେ ଆସିଲେ ବସିଲେ ରଥେ,
ଧୀର ଧୀର କରି ରଥ ଚଳାଇଲେ
କଥାଭାଷା ହୋଇ ଗୋପର ପଥେ ।
କିଏ ବା ଜାଣିବ କେଉଁ ଭାବ ଜାତ
ହୋଇଥିଲା ତେବେ ତାଙ୍କ ମନରେ,
କେଉଁ ସରଗର ଦଇବୀ ନିର୍ଦ୍ଦେଶ
ବାଜ ବାଜ ଯାଉଥିଲା କାନରେ ।
ଅକ୍ରୂର ଭାବଇ କଂସ ଭାବଅଛି
ଏହାଙ୍କୁ ନେଇଣ କରିବ ଧ୍ୱଂସ,
କେବେ ହେବ ନାହିଁ ବରଂ ଏହାଙ୍କ ହାତେ
ମୂଳପୋଛ ହେବ ଅସୁରବଂଶ ।
ଶ୍ରୀକୃଷ୍ଣ ଭାବନ୍ତି କଂସ ମରିବାର
ବେଳ ହୋଇଗଲା ପେଶିଲା ଦୂତ,
ଜାଣେନା କେତେ ଦେଖି ଦେଖି ମୋତେ
ତରିଯିବ ପୁଣି ହୋଇବ ମୁକ୍ତ ।
ତାର ଅତ୍ୟାଚାରେ କାନ୍ଦିଲା ପୃଥିବୀ
ଥରିଲା ସରଗ କାନ୍ଦିଲେ ମାଆ,
ଆସିଲା ଅକ୍ରୂର ଯିବ ମଥୁରାକୁ
ଖୋଜିଲାଣି ଯେବେ ଅସୁର-ନାହା ।
ଶତ୍ରୁଦନ ମୋତେ ବଇରି ଭାବରେ
ଖୋଜିଛ, ଅବଶ୍ୟ ପାଇବ ତାହା,
ମରଣରୁ ପରା ପାଇବ ଅମୃତ
ତା ପାଇଁ ତା ପ୍ରାଣ ଆକୁଳ ଆହା !
ଦେବ ନାହିଁ ତାକୁ ? ନେବ ସେ ଛଡ଼ାଇ
ତାର ପରାକ୍ରମ ନୁହେ ତ ଊଣା,
ସଂସାରେ ତ ତାର ମୋର ଆରାଧନା
ପାଇବ ନାହିଁ ସେ ମୋର କରୁଣା ?

ଗୋପବାସ ମୋର ସରିଲା ଆଜଠୁଁ
ଗୋପ ଗୋପୀ ସଂଗେ ଖେଳିବି ନାହିଁ,
ମୋର ଖେଳାଖେଳି ବୟସ ସରିଲା
ଆଠ ବର୍ଷେ କାର ସରିବ କାହିଁ ?
ଅତୀତ ମୋର ତ ଅନ୍ତ ହୋଇଗଲା
ଭୂତ ତ କାଳିକା ନ ଥିବ ଆଜ,
ବାକି ରହିଗଲା ଭବିଷ୍ୟତ ଖାଲି
କିଏ ଜାଣି ରହିଛି ଅଦୃଷ୍ଟ ଆଜ ?
ଅଦୃଷ୍ଟଟା କ'ଣ ରହିଯିବ ଲୁଚି ?
ସେଥିରେ କି କ'ଣ ଯିବନି ଦେଖା ?
ଆଗରେ ପଡ଼ିଛି ସ୍ଥାନ ବଡ଼ ହୋଇ
ମୋର ପାଇଁ କେତେ କରମ ରେଖା !
ସେହି ରେଖା କ'ଣ ହେବନି ଅକ୍ଷର ?
ଅକ୍ଷରୁଁ ମିଳିବ ନାହିଁ କି ଭାଷା,
ସେ ଭାଷାରୁ କ'ଣ ମିଳିବନି ଭାବ
ଭାବ ଲୁଚିଗଲେ ହେବ ତ ଖାସା !
ହେବ ନାହିଁ ତାହା କରିଦେବି ନାହିଁ
ନିଶ୍ଚୟ କରିବି ଭାବ ପ୍ରକାଶ,
ଅଦୃଷ୍ଟକୁ ନିଶ୍ଚେ ଦେଖାଇ ଦେବି ମୁଁ
ସେଇଥିରେ ହେବ ଅନ୍ୟାୟ ନାଶ ।
କେ କହିବ ତାହା ? ପାରିବି କି ଏକା ?
ରାକ୍ଷସ କ୍ଷତ୍ରିୟ ସବୁ ସମାନ,
ବ୍ରାହ୍ମଣ ତ ଊଣା ନୁହେ ଏ ଆହବେ
ଏଇଥିପାଇଁ ତ ଧରମ ମ୍ଳାନ ।
କରମ କରି ମୁଁ ଧରମ ମାନବ
କଳଙ୍କ ତହିଁରୁ ଛଡ଼ାଇ ଦେବି,
ସଂସାର-ସାଗରେ ଦେବି ଡଙ୍ଗାକୁ
ଧରମ ବଳରେ ଭସାଇ ନେବି ।

କିଏ ସେହି ଧର୍ମୀ କରିବ କରମ
ରଖିବ ସଂସାର କୃଷ୍ଣ ଏକାକୀ ?
ନା ନା ଆଉ ଦୁଇ— କୃଷ୍ଣ ମିଳିଯିବେ
ସେ କାମ କି ଆଉ ରହିବ ବାକୀ ?
ସେ ହେବେ କମିଟି କରିବ ମୁଁ ସବୁ
ମଣ୍ଡିବ ପାପକୁ କାଢ଼ିବ ପୁଣ୍ୟ,
ନ ହେଲେ ତ ଆଉ ସଂସାର ହେବନି
ପାପ ତ ପୁଣ୍ୟକୁ କରିବ ଶୂନ୍ୟ ।
ଲେଖକକୁ ଥରେ ଦେଖାଅ ଅଦୃଷ୍ଟ
କଅଣ ରହିଛି ତାହାଁରେ ଲେଖା,
ହେ କୃଷ୍ଣ ଥରୁଟେ ଅନୁଗ୍ରହ କର
ତୁମର ସେ ସୂକ୍ଷ୍ମ ରୂପଟି ଦେଖା ।
ବିଶ୍ୱରୂପକୁ ସେ ଦେଖି ପାରିବନି
ତା ଆଖି ପରିଧି ବଡ଼ ସେ ସାନ,
ସୂକ୍ଷ୍ମରେ ବିରାଟ ଶକ୍ତିମାନ ତୁମେ
ଏଇତକ ଜାଣି କରୁଛି ଧ୍ୟାନ ।

———

# ଅକ୍ରୂରର କୃଷ୍ଣ-ବଳରାମଙ୍କ ସହ ଗୋପ ପ୍ରବେଶ

ଧୀରେ ଧୀରେ ରଥ    ବାହିଲା ଅକ୍ରୂର
ପହଞ୍ଚିଲେ ସବୁ ଗାଆଁ ଦାଣ୍ଡରେ,
କାହାର ରଥ ଏ    କାହିଁକି ଆସିଲା
ବୋଲ ଶୁଣାଗଲା ସବୁ ତୁଣ୍ଡରେ ।
ଗୋପ ତ ନୁହଇ    ସହର ବଜାର
ମଫସଲ ଗାଆଁ ଗୋଟିଏ ସିନା,
ନାହିଁ କୋଠାବାଡ଼ି    ନାହିଁ ବଣ୍ଟାଖୁଣ୍ଟ
କିଛି ନାହିଁ ଗୋରୁଗାଈଙ୍କ ବିନା ।
ଦାଣ୍ଡରେ ଦାଣ୍ଡରେ    ପଡ଼ିଛି ଗୋବର
ବାଡ଼ରେ ବାଡ଼ରେ ଗୋବରଗଦା,
ଘରଗୁଡ଼ାକ ତ    ଲଗାଲଗି ନୁହେ
ମଝିରେ ମଝିରେ ବହୁତ ପଦା ।
ଧାଡ଼ି ଧାଡ଼ି ହୋଇ    ଘର ହୋଇ ନାହିଁ
ଗାଆଁ ଦାଣ୍ଡେ କାହିଁ ସଡ଼କ ନାହିଁ,
ଖପରର ଘର    ସବୁ ନାଆଗୁଳ
ମୁଣ୍ଡ ଟେକି ସବୁ ଅଛନ୍ତି ଗୃହିଁ ।
ମଝିରେ ମଝିରେ    ଗୋଟି ଗୋଟି ଗଛ
ଠିଆହୋଇଛନ୍ତି ସବୁଜ ହୋଇ,
ଗାଆଁ ଧୋଅରା ତ    ଜମା ହୁଏ ମୂଳ
ବରଷାପାଣିରେ ହୋଇଣ ଧୋଇ ।

ଦାଣ୍ଡରେ ଦାଣ୍ଡରେ ବନ୍ଧା ହୋଇଛନ୍ତି
ହଲ ହଲ ହୋଇ ବୁଢ଼ା ବଳଦ,
ସତେ କି ତାଙ୍କର ହଲ କରି କରି
ପରସ ହୋଇଚି କାନ୍ଧ ଓ ପଦ ।
ଆଗରେ ଆଗରେ ପଡ଼ିଚି ତାଙ୍କର
ଗୋଷ୍ଠ ଗୋଷ୍ଠ ହୋଇ ଅଡ଼ୁଆ କୁଟା,
କିଏ ତା ସବଳ ଖାଇପିଇ କରି
କିଏ ବା ହସୁଚି ବଢ଼ ଶୁକୁଟା ।
ଗୋପୀମାନେ କାହିଁ ପାଞ୍ଚ ସାତ ବସି
ଦାଣ୍ଡରେ ଖରାରେ ପାରନ୍ତି ଘଷି,
କିଏ ଘରୁ ଆସି ପାଖେ ଠିଆହୋଇ
କହୁଚି କଅଣ ଦେଉଛି ହସି ।
କିଏ ଯାଇଅଛି ଗାଧୋଇବା ପାଇଁ
ମୁହେଁ ଦାନ୍ତକାଠି କାଖରେ ଗରା,
ଗାଧୋଇ ଯାଧୋଇ ଯମୁନା ନଈରୁ
ପାଣି ଗରାଟାଏ ଆଣିବ ଭରା !
କିଏ ବା ଫେରୁଚି ଗାଧୋଇ ଦାଧୋଇ
ଦେହରେ ଯାଇଚି ବସନ ଜଡ଼ି,
କାଳିଆ କୁନ୍ତଳ ମେଲାଇ ଦେଇଚି
ଟିଠିପାକ ପିଠି ଯାଇଚି ପଡ଼ି ।
କିଏ ଦାଣ୍ଡପିଣ୍ଡା କାନ୍ଥରେ କାନ୍ଥରେ
ଗୋବର ଚକଟି ଦେଇଚି ଗୁଡ଼ି,
କିଏ ବା କୋଉଠି ଗୁଣ୍ଡ ଘଷିଗୁଡ଼ା
ଗୋଡ଼ ପୂରାଇଣ ଦେଉଚି ପାଂଚି ।
କିଏ ଜଗିଜାଗି ବାଛୁରୀକୁ ଆଣି
ଗୁହାଳେ ପୂରାଇ ଦେଉଛି ତାଟି,
କିଏ ଡାକୁଅଛି କାହାର ପୁଅକୁ
ନାଆଁ ଧରି କରି ବଡ଼ାହେଁ ପାଟି ।

କଅଁଳା ବାଛୁରି ଲାଂଜ ଟେକି କରି
ଦାଣ୍ଡ ଏ ମୁଣ୍ଡରୁ ସେ ମୁଣ୍ଡ ଯାଏ,"
ଧାଏଁ ମାଆ ତାରି ହମାଳି ହମାଳି
ଖଲେଇ ଖଲେଇ ପଛରେ ଧାଏଁ ।
ଗାଆଁ ଦାଣ୍ଡ ବଡ଼ ବରଗଛ ତଳେ
ଯୋଉଠି ପଡ଼ିଛୁ ବହଳା ଛାଇ,
ଧୀରେ ଧୀରେ ରଥ ଚଳାଇ ନେଇଣ
ଛିଡ଼ା କରିଦେଲା ସେଇଠି ଯାଇ ।
ରଥଟାଏ ଦେଖି ଧାଇଁଗଲେ ସବୁ
ଦେଖିଲେ ଭିତରେ ରାମ କହ୍ନାଇ,
ଆଉ ଜଣେ କିଏ ବସିଛି ପାଖରେ
କିଏ ସେ ତାକୁ କେ ଜାଣଇ ନାହିଁ ।
ଉଣିଗଲେ ସବୁ ହେଲେ କୁହାକୁହି
କିଏ ସେ ଗୋ ସିଏ ଆସିଲା କାହୁଁ ?
କଂସ କି କାହାକୁ ପୁଣି ପଠାଇଛି
ରାମ-କୃଷ୍ଣ ଧରି ନେବ କି ଆଉ !
ନନ୍ଦ ଘରକୁ ତ ଯାଉଛି ସଳଖେ
କାହାଁକ ଆସିଛି କହିବ କିଏ,
ଯାଅ ତ ରେ ପିଲା ଦେଖିଆସ ଟିକେ
କୁଆଡ଼େ ଆସିଛି କିଏ ସେ ସିଏ ?
ଦଉଡ଼ିଲେ ପିଲା ପଛରେ ପଛରେ
ଦେଖିଲେ ନନ୍ଦର ଘରକୁ ଯାଇ,
କଂସର ଚିଟାଉ ବଢ଼ାଇଣ ଦେଲା
ପୁଣି ଆଣି ପଢ଼ିଦେଲା ଶୁଣାଇ ।
ପିଲାଏ ଫେରିଲେ ଦେଖି ଶୁଣିକରି
କହିଲେ ସମସ୍ତ ବୁଝାଇ ରି ,
ଗୋପିଏ ଶୁଣିଲେ କଅଣ ଭାବିଲେ
ଭିତ୍ରରେ ଭିତରେ ଗଲେ ତ ଡରି ।

ପଶିଲା ଖବର ଘରେ ଘରେ ଯାଇ
ଜାଣିଲେ ଅକ୍ରୂର କଂସର ଦୂତ,
ଆସିଚ କୃଷ୍ଣଙ୍କୁ ନେବ ମଥୁରାକୁ
ନେବ ପୁଣି ଧରି ରୋହିଣୀସୁତ ।
ଗୋପୀମାନେ ସବୁ ଏକଜୁଟ ହୋଇ
କରିଲେ ବଗୁର କରିବା କଥ,
"କଂସଟାର କ'ଣ ଦୟା ଧର୍ମ ନାହିଁ
ସେଇଟା କ ସତେ ନୁହେ ମଣିଷ !
ଆଠ ବରଷର ପିଲାଟାକୁ କଥାଁ
ନେଉଚ ଧରାଇ ମାଡ଼ଇ ଡର,
ଛାଡ଼ିଦେବା ନାହିଁ ଛାଡ଼ ତାଂରାଇଜ
ଏଠିଇ ପଡ଼ିକେ ନୋହିବ ଘର ।
ବାପ ଅମଳରେ ଥିଲେଇଁ ଲୋ ଭଲ
ରଜା ଥିଲା ପରି ନ ଥିଲେ ଜାଣି,
ବାପକୁ ନିକାଲ ନିଜେ ରଜା ହେଲା
ଏଇଟା ତ ଉଚ୍ଛୁଙ୍କଳ ହେଲାଣି ।
ଉଠିଆଣି ଦନ୍ତୁଁ କୃଷ୍ଣର ଉପରେ
ପଡ଼ିଚ ଲୋ ତାର ଡାଆଣୀ ଆଖି,
କୃଷ୍ଣ କ'ଣ ତାର ବାପର ଖାଇଲା
ଆଖି କାନ ତାର ଫୁଟି ଗଲା କ !
ଥର ଥର କରି ପଠାଇ ଦେଉଚି
ଗୋଟା ଗୋଟା କରି ଖାଲି ରାକ୍ଷସ,
କଏ ବିଷ ଦେଇ କଏ ଅବା ଗିଳି
କୃଷ୍ଣକୁ କରିବା ପାଇଁକି ଧ୍ୱଂସ ।
କରମବନ୍ତିଆ ବୋଲି ସିନା ନନ୍ଦ
ଉବୁରି ଯାଉଚି,ଥରକୁ ଥର,
ଯିଏ ତ ଆସୁଚି ସିଏ ତ ମରୁଚି
ଗୋଟାଏ ହେଲେ କି ଫେରୁଚି ଘର !

ମାଇକିନିଆଟା ଆସିଲା ଲୋ ସତେ
ବେଶଭୂଷା ପିନ୍ଧି ମାଆଟା ପରି,
କିଏ ଜାଣିଥିଲା ଥନରେ ଯେ ତାର
ଲୁଚାଇ ରଖିଚି ଜହର ଭରି !
ଯଶୋଦା ବିଚାରୀ ବଡ଼ ତ ସରଳ
ସେ ତ ଜାଣେ ନାହିଁ ଛନ୍ଦକପଟ,
ପୁଅଟାକୁ ସତେ ବଢ଼ାଇ ଦେଲା ଲୋ
ପୁଅ ହୋଇଥାନ୍ତା ଭଲା ଅଝଟ ।
ଯେମିତି ଥନଟା ଦେଇଚି ତୁଣ୍ଡରେ
କାହିଁକି ଲୋ କଲା କଂସାଏ ବାନ୍ତ,
ତାତଗଲା ଦେହ ଟେଇ ଫୁଟିଯିବ
ଭଲା ଲୋ ସେ ଧାଇ ମାଙ୍କୁଡ଼ୀ ଘୃତ ।
ପୋଚୁପାଚୁ ଦେଇ ପୁଣି ଥନ ଦେଲା
ତେବେ ବି ଯଶୋଦା ଜାଣିଲା କଚୁ !
ଭଲା ଲୋ ଭଉଣୀ ଦୁଧ ନଅଣ୍ଟିଆ
ହେଲା କିଲୋ ତୋତେ ମଲୁ ଲୋ ଛୁ ଛୁ !
ଦଇବ ବଳରୁ କଅଣ ହେଲା ଲୋ
ମାଇପିଟା ହେଠି ପଡ଼ିଲା ମରି,
ଦେଖିଲା ବେଳକୁ ଅସୁରୁଣୀଟାଏ
ଶୋଇଚି ଖଣ୍ଡିଆ ଉଦର ପରି ।
ଆଜ ଲୋ ଗୋଟାଏ ଆଉ ଆସିଲାଣି
କିଏ ଜାଣେ ସେଟା ଅସୁର ନୁହେ !
ସେଇଥି ପାଇଁ ତ ସାବଧାନ ହେବା-
ପାଇଁକି ମୁଁ ଏତେ ତଆରି କହେ ।
କହିଦିଅ ତାକୁ ସଫା ସଫା କରି
ରଥ ନେଇ ତାର ଯାଉ ସେ ଫେରି,
ନ ହେଲେ ଗୁଲ ଲୋ ସବୁ ଗୋପୀଯାକ
ମିଶିକରି ତାକୁ ପିଟିବା ଘେରି ।

ଦେଖିଲୁ ଦେଖିଲୁ ମୋ ଖଡ଼ୁବାହୁକୁ
ଆଗରେ କିପରି ଲୁହା କରୁଛ,
ଏକା ବାଡ଼ିକରେ ମୁଣ୍ଡରୁ ଲୋ ତାର
ସବୁ ଚିତ୍ରପାକ ଯିବ ଉଭୁରି ।
କଂସ କ'ଣ ସତ କୃଷ୍ଣକୁ ନେବ ଲୋ
ଗୋପପୁରକୁ ତ ଆସିବ ନାହିଁ,
ଆସିଲେ ଆସୁ ବା କଅଣ କରିବ
ସେ ମାଇଲେ ଆମେ ଥିବା କି ଶୁହିଁ !
ମଲା ମୋର ଝରି ବନ୍ଧୁଆ ହୋଇଛ
ନିଆଁ ଲଗା ପୁଣି ହୋଇଛି ରଜା,
ସବୁବେଳେ ଖାଲି ହନ୍ତଧନ୍ତ କରି
ଜଳାଇ ପୋଡ଼ାଇ ମାରୁଛି ପ୍ରଜା ।
ସମ୍ଭାଳ ଲୋ ସବୁ ଦେଖିବୁ ଏଇଠି
ଆଉ ବେଶୀ ଦିନ ଜୀଇବ ନାହିଁ,
ଏତେ ଅନ୍ୟାୟ କି ଦଇବ ସହିବ
ବାପଟାକୁ ଦେଉ ନାହିଁ ଲୋ ଠାଇଁ ।"
ଏଟାଉ ଶୁଣିଣ ନନ୍ଦର ପିଲେହି
ଫାଟିକରି ହୋଇଗଲେ ତ ପାଣି,
କଏ ସେ ଆସିଛି କଅଣ ପଡ଼ୁଛି
ଝାଇଁମରି ହୋଇ ପାରୁନି ଜାଣି ।
କେତେବେଳକରେ ଝାଇଁ ଗୁଡ଼ଗଲେ
ଦେଖିଲେ ବସିଛି ଅକ୍ରୂର ଆଗେ,
କହିପାରେ ନାହିଁ ଭିତରେ ଭିତରେ
କୁହୁଳିଲେ ଖାଲି ପ୍ରଚଣ୍ଡ ରାଗେ ।
କଅଣ କରିବ ରଜାର ମନ୍ତ୍ରୀଟା
ସେବା ସତ୍କାର ସବୁ ତ କଲେ,
କିନ୍ତୁ ତା ମନରୁ ସବୁ ସୁଖ ଆଶା
ଅକ୍ରୂରକୁ ଦେଖି କୁଆଡ଼େ ଗଲେ !

କଂସର ହୁକୁମ ଅବଜ୍ଞା କରିବ
ଏଡ଼େବଡ଼ ସାହସ ଅଛି କି ତାର ?
ହଁଅଁ କରିଦେଲ ଯିବ ମଥୁରାକୁ
ବହିଲା ଆଖିରୁ ଲୋତକଧାର ।
ଗୋପପୁରଯାକ ସମସ୍ତେ କାନ୍ଦିଲେ
କଅଣ କରିବେ ନାହିଁ ତ ଗତି,
ଅମାନ୍ୟ କରିଲେ ଏକା ଦିନକରେ
ଗୋପଗୋପୀ ସବୁ ପଡ଼ିବେ ମାରି ।
ଧାଇଁଲେ ସକଳେ ଦଳ ଦଳ ହୋଇ
ନନ୍ଦ ଯଶୋଦାଙ୍କୁ କରିବେ ମନା,
ନନ୍ଦ ଉଆସରେ ଢେଉ ଚହଲ
ଶୁଣିଲା ଅକ୍ରୂର ଖାଲି କାନ୍ଦଣା ।
ଶ୍ରୀକୃଷ୍ଣ କହିଲେ ବୁଝାଇ ସୁଝାଇ
"ମାମୁଘର ଯାଇ ଦେଖିବା ଯାତ,
ତୁମେ ସବୁ କିଆଁ କାନ୍ଦୁଛ ମିଛରେ
କନ୍ଦାଉଚ ମୋର ଜନନୀ ତାତ ।
ଦୁଇ ଦିନ ରହି ମାମୁଁ ଭାତ ଖାଇ
ଆସିବା ତ ପୁଣି ଘରକୁ ଫେରି,
ଏଥିପାଇଁ କିଆଁ ଏତାହେଁ ବିକଳ
ଦୁଇ ଦିନୁ ବେଶୀ ହେବନି ଡେରି ।
ରଜାର ମନ୍ତ୍ରୀକୁ ରଜାର ଭଣଜା
ରଜା ରଥେ ବସି ଯିବ ନଅରେ,
ଦେଖୁନା କେମିତି ସୁନ୍ଦର ଘୋଡ଼ା ହେ
ଆଗରୁ କି କେବେ ଦେଖିଚ ଥରେ ?
ରଥର ଉପରେ କନକ କଳସ
ଘୋଡ଼ାଙ୍କ ପିଠିରେ ଚନ୍ଦୁଆ ପରି,
ରଥ ଘୋଡ଼ା ଯୋଗୁଁ ଗୋପପୁର ଦାଣ୍ଡ
ଦେଖୁନା କିପରି ଦିଶୁଚି ଭରି ।

ଘୋଡ଼ାଚଢ଼ାଠାରୁ        ଅଛି କି ସମ୍ପଦ ?
ଘରପୋଡ଼ଠାରୁ ବିପଦ ନାହିଁ,
ଘୋଡ଼ା ରଥ ଚଢ଼ି        ଯିବି ମୁଁ ମଥୁରା
ତୁମେ ସବୁ ଭଲ କାନ୍ଦ କିପାଇଁ ?
ବାପ ମାଆ ଗୋପ        ଯିବ ତ ସମସ୍ତେ
ମୁହିଁ କ'ଣ ଖାଲି ଯାଉଚି ଏକା ?
କାହିଁକି ବା ଏତେ        ହାଉ ହାଉ ହୋଇ
କାନ୍ଦୁଚ ତାହାର କାରଣ ଦେଖା ।”
କୃଷ୍ଣ ପ୍ରବୋଧନା        ଶୁଣିଲେ ନୀରବେ
ମନକୁ ମନକୁ ହୋଇଲେ ଶାନ୍ତ,
କହିଲେ, “ସତେ ତ        ଯାଉଛନ୍ତି ସବୁ
ଯାଉଛନ୍ତି କୃଷ୍ଣ ରୋହିଣୀସୁତ,
ଯାହା ହେବ ନା        ସକଳଙ୍କୁ ହେବ
ଏକା ତ ଜଣକୁ ହେବନି କିଛି,
ଆମେ ସବୁ ସତେ        ଡରୁଥାଏ କିଆଁ
କାହିଁକି କାନ୍ଦୁଛେ ମିଛରେ ଛି ଛି !
ଦୁଇ ଦିନ ରହି        ଆସିବେ ତ ଫେରି
ନୋହିଲେ ଆମେ ବି ଯିବା ଗୋ ଚାଲି,
ସମସ୍ତେ ଆସିବା        ପୁଣି ସଙ୍ଗ ହୋଇ
ଏଠି କିଆଁ ଥିବା ଧରିଣ ଗାଲି !
ମଥୁରା ଏମିତ        କେତେ ଯା ବାଟ କି
ନିତି ଦହି ବିକି ଯାଉଛେ ପରା,
ସକାଳୁ ଗଲେ ତ        ଦୁଧ ଦହି ବିକି
ଫେରିଆସେ ଠାଣ ନୋହୁଣୁ ଖରା ।
ଆମ ଯିବା ପାଇଁ        ମନା ଅଛି କି ଗୋ
ହାଟ ବାଟ କରୁ ହାଟୁଆ ଜାତି,
ଯାତ ତୀର୍ଥ ଦେଖି        ବାହାରିଲେବେଳେ
ଆମ ସଙ୍ଗେ କ'ଣ ମିଶିପେ ଥାନ୍ତି ?

କଂସ କ'ଣ ସତେ ମାରିବ କୃଷ୍ଣଙ୍କୁ
ତାଙ୍କୁ କି ପାରିବ ସତରେ କଂସ !
ପେଟର ଭଣଜା ଅନ୍ୟାୟ କରିଲେ
ଓଲଟି ବୁଡ଼ିବ ତାହାର ବଂଶ ।"
କିଏ କହେ, "ତାଙ୍କୁ କୋଉ ବିଶ୍ୱାସ ଲୋ
ବାପ ଭଉଣୀକୁ କୟଦ କରି,'
ରଖିଚି ଲୋ ସତେ ବେଡ଼ି ପିନ୍ଧାଇଣ
କେଡ଼େ ହନସନ କରୁନି ଧରି !
ଆଗରୁ କୋଉଠି ମାରି ପକାଇଛି
ଛଅଟା ପୁଅଙ୍କୁ ଛଡ଼ାଇ ନେଇ,
ହେଇ କଂସ ପରି କିପରି ରହିବା
କୃଷ୍ଣ ବଳରାମେ ପଠାଇ ଦେଇ ?
ଯେବେ ମାରିବ ସେ ମାରୁ ସମସ୍ତଙ୍କୁ
କାହିଁ ଲୋ କୃଷ୍ଣକୁ ମାରିବ ଏକା,
ପାରିବ କି ସତେ ? ପାରିବ ନାହିଁ ମ
କୃଷ୍ଣ ଯେ ଆମର ପାହାଡ଼ଟେକା ।
ମନା କଲେ କ'ଣ ମାନୁଛି ସେ ପିଲା
ଯିବ ତ ମୁକର ଗଲଣି ଜଣା,
ଯାଉ ସେ ବାହାରି ଶୁଭ ବେଳଟିରେ
ଅନୁକୂଳ ତାର ଆଉ ଗଂଗନା ।
ଦୁଆରେ ଥୁଅ ଲୋ ପୂର୍ଣ୍ଣକୁମ୍ଭ ସବୁ
ଉପରେ ନଡ଼ିଆ ତଳରେ ଧାନ,
ପୋତ ରମ୍ଭା ତରୁ ଫୁଙ୍କିଦିଅ ଶଂଖ
ଚଢ଼ାଇ ଦିଅ ଲୋ ତାହାକୁ ଯାନ ।"
ହେ କୃଷ୍ଣ ! ଯିବ ତ ମଥୁରା ନଗର
କଂସଙ୍କୁ କରିବ ପଟ୍ଟଣେ କ୍ଷୟ,
ଗୋପୀ ମନ ସଙ୍ଗେ ନିଅ ଲେଖକକୁ
ଛୁଟୁ ତା ମନରୁ ପାପର ଭୟ ।

ଗଡ଼ ପାହ୍ୱଗଲା ଅକ୍ରୂର କହିଲା
"ଚଞ୍ଚଳ ବାହାର ହୋଇବ ଝଟ,
କଂସ ବସିଥିବ ବାଟ ଚାହିଁ କରି
ଉଛୁର ହୋଇଲେ ଲଗିବ ପଟ !
ଆସ ଆସ ବେଗେ ମନ୍ଦ କର ନାହିଁ
ଜାଣ ତ କଂସକୁ ପ୍ରତାପ ତାର,
ଟିକିଏ ଲଗିଲେ ସବୁ କରିଦିଏ
ନ ଥାଏ ତାହାର ବାଛବିଚାର ।"
ଏତିକ କହି ନାଳି, ନେଳୀ, କଳା
ଧଳା ବନାଉଛେ ମଣ୍ଡଇ ରଥ,
ଠିଆ କରିଦେଲା ନନ୍ଦର ଦୁଆରେ
ରୁନ୍ଧ କରି ଯିବାଆସିବା ପଥ ।
ଅଗାଧୂଆ ସବୁ ବାହାରି ପଡ଼ିଲେ
ବାଟରେ ଗାଧୂଆ ପାଧୂଆ କରି,
ଯିବେ ମଥୁରାକୁ ଭେଟିବେ ରଜାଙ୍କୁ
ଯେଝା ହାତେ ଭେଟି ଦରବ ଧରି ।
ଦାଣ୍ଡରେ ଶୁଭିଲା ଶଙ୍ଖ ହୁଳହୁଳି
ବାହାରିଲେ କୃଷ୍ଣ ବସିଲେ ରଥେ,
ମାଇପେ ମିଣିପେ ରୁଣ୍ଡ ହୋଇଗଲେ
ଯନ୍ତାଯନ୍ତ ହୋଇ ନଗର ପଥେ ।
ଥାଳ ମାଡ଼ିଦେଲେ ଥାଳ ଚୁକିଯିବ
ଗହଳି ଏପାଖୁ ସେପାଖ ଯାଏ,
ସୋରିଷ ମୁଠାଏ ବାଞ୍ଛ ଫିଙ୍ଗିଦେଲେ
ତଳେ ପଡ଼ିବନି କାହିଁ ଗୋଟାଏ ।
କୃଷ୍ଣ କରେ ବେଣୁ ରାମ କରେ ଶିଙ୍ଗା
ହାତହତିଆର ନାହିଁ ତ କରେ,
ନାଲି ହଳଦିଆ ପିନ୍ଧା ଓ ଦୋପଟ୍ଟା
ଦେହରେ ତ ଶୋଭା ଉଛୁଳି ପଡ଼େ ।

ହରହରସା ମୂର୍ତ୍ତି ଆହୁରି ସୁନ୍ଦର
ମୟୂରର ଝୁଲକୁ ପଗ୍ଗରେ କଥ,
ଯିଏ ତ ସୁନ୍ଦର ମନକୁ ସୁନ୍ଦର
ସଜାଇଲେ ବେଶୀ ହୁଏ କି ପିଏ ?
ଯିଏ ଯୋଉଥିରେ ସୁନ୍ଦର ଦିଶିବ
ପ୍ରକୃତି ଦିଅଇ ସେସବୁ ଯାଚି,
ଆଉ ସୁଷମାକୁ ମଣିଷ କିଏ ବା
ପ୍ରକୃତିରୁ ବେଶୀ ପାରିବ ବାଛି ?
ମୟୂର ପୁଚ୍ଛରେ ଖଞ୍ଜିଲା ଚନ୍ଦ୍ରିକା,
ବୃଷଭକୁ ଦେଲା ଚୂଳ କମଳ,
କୋକିଳକୁ କଲା ରୂପ ସଙ୍ଗେ ଗଳା,
ଗଜେ ଦନ୍ତ, ସିଂହେ ଲମ୍ବା କେଶର ।
କୁକୁଡ଼ାକୁ ଦେଲା ମୁକୁଟ ଓ ଲାଞ୍ଜ,
ନାୟିକ ଶୁଆକୁ କଣ୍ଠରେ ଗାର,
ଏମନ୍ତ ଜୀବଙ୍କ ନାରୀ ସମାଜରେ
ଏପରି ଭୂଷଣ ଅଛି କି କା'ର ?
ପୁରୁଷକୁ କଲା ବଳୁଆ ଟାଣୁଆ
ନାରୀକୁ ଦୁର୍ବଳ ପୁଣି କଅଁଳ,
ନିଦାଘେ ତପତ ଶୀତକୁ କାଲୁଆ
ବସନ୍ତକୁ କଲା ଉଷ୍ମ ଶୀତଳ ।
ବରଷା କାଳଟା ପାଣି ବୁଡ଼ବୁଡ଼ୁ
ଶରତ ସୁଷମା ଓଦା ନିର୍ମଳ,
କମଳ ଅଳପ ନାଳି ଓ ଧବଳ
କୁମୁଦ ନେଳିଆ ନାଲି ଶୁକଳ ।
ସାଗର ଖିଷରି, ନଈ ମନୋହର,
ଆଦିତ୍ୟ ପ୍ରଖର, ଚନ୍ଦ୍ର ଶୀତଳ;
ପ୍ରକୃତି ଗଢ଼ିଛି ତାକୁ ବଳକରି
ଆଉ କେ ସାଜିବ କାହାର ବଳ !

ଶେଫାଳୀକୁ କଲା ନାଲି ଧଳା ମିଶା
ଅପରାଜିତାକୁ ଖାଲି ନେଳିଆ,
ଛଣପଟ ଫୁଲ ଗାଢ଼ ହଳଦିଆ
ଗଢ଼ଣରେ ପ୍ରଜାପତି ଭଳିଆ ।
ସାଧବଝିଅର ବୋହୂଟିକୁ କଲା
ନାଲି ପାଟ ପରି ମଖମଲିଆ,
ପ୍ରଜାପତିଟିକୁ କମକୁଟ କରି
ଛିଟ ପରି କଲା ରଙ୍ଗଡ଼ଙ୍ଗିଆ ।
ଭଅଁରକୁ କଲା ଘନ ନୀଳବର୍ଣ୍ଣ
ସ୍ୱରଟିଏ ଦେଲା ସୀତାର ପରି,
ଫୁଲରୁ ଫୁଲକୁ ଉଡ଼ି ବୁଲୁଥାଏ
ଗୀତ ଗାଇ ମଧୁ ଚୁମ୍ବନ କରି ।
ବଂଶୀଟି କୃଷ୍ଣ ଥରେ ଫୁଙ୍କିଦେଲେ
ସେଇଥରକ କି ଶେଷ ବାଜଣା,
ସେଇଠିକରେ ତ ଉଚ୍ଛୁଳି ପଡ଼ିଲା
ଫଟାଇ ଗୋପୀଙ୍କ ହୃଦ-କାନ୍ଦଣା !
ରଥଟି ସାଜିଚି ବଡ଼ ଚମତ୍କାର
ଫୁଲ ଫୁଟିଚି କି ଦେହଟାଯାକ,
ଉପରେ ଉଡ଼ୁଚି ଶୁକଳ କେତନ
ଗୃହଲେ ଘର୍ ଘର୍ ଦେଇଣ ଡାକ ।
ଖୁଣ୍ଟଯାକ ସବୁ ଚନ୍ଦନ ଜଡ଼ିତ
ଖରାକୁ ଦେଉଚି ଉଜ୍ଜ୍ୱଳ କରି,
ଭିତରେ ସୁନ୍ଦର କୃଷ୍ଣ ବଳରାମ
ଅକ୍ରୂର ବସିଚି ଲଗାମ ଧରି ।
ଉଆଡ଼ିଚ ଗୁଡ଼ ପିଟି ଦେଉ ନାହିଁ
କାଳେ ଘୋଡ଼ା ଯିବେ ଉଡ଼ି ଗଗନେ,
ଅଳପ ବାଟକୁ ଉଡ଼ାଇ ନେବାକୁ
ଅକ୍ରୂର ତ କେବେ ପାଞ୍ଚୁନି ମନେ ।

ଅକ୍ରୂର ମନ ତ ଏଇନା ଶୀତଳ
ପାଖରେ ପାଇଚ କୃଷ୍ଣ ପରଶ,
ଧୀର ଧୀର କରି ଚଳାଉଚ ରଥ
ମନରେ ତାହାର ନୂଆ ହରଷ ।
ପଛେ ପଛେ ଗୋପୀ ପେଲ୍‌ପେଲ ହୋଇ
ଧାଆଁନ୍ତ ଦେଖନ୍ତ ଦଳକୁ ଦଳ,
କେ ଆସି ନ ପାରି ତା ଦାଣ୍ଡଦୁଆରୁ
ଅନାଉଚ ଖାଲି ଥରକୁ ଥର ।
କଣ ଭୁଆସୁଣୀ ଲୁଚଇ ଅନାଏଁ
ଓଢ଼ଣା ଆଡ଼େଇ ରଥକୁ ଖାଲି,
ରଥ ପଛ ଛଡ଼ା କିଛି ଦିଶେ ନାହିଁ
ଚାହିଁ ଚାହିଁ ରଥ ଯାଉଛି ଚାଲି ।
ଆଖିରୁ ନିଗିଡ଼ି ଲୁହ ଧାର ଧାର
କଜ୍ଜ୍ୱଳ ଗାରକୁ ଦେଉଚ ଧୋଇ,
ଲୁହ ପୋଛୁ ପୋଛୁ କୋହ ଉଠୁଅଛି
ଥପୁ ଧରୁ ନାହିଁ ତରୁଣୀ ଗୋଷ୍ଠ ।
ପୁଅ ଝିଅ ସବୁ ରଥ ପଛେ ପଛେ
ଧାଉଁଥାନ୍ତି ଖାଲି ହୋଇଣ ମୂକ,
ସତେ କ'ଣ ତାଙ୍କ ସରଳ ମନରେ
କୃଷ୍ଣ ପାଇଁ ନାହିଁ ଟିକିଏ ଦୁଃଖ !
ସବୁ ଦୁଃଖ କ'ଣ ଲୁଚି ଯାଇଚ କି
ନାହିଁ, ନାହିଁ, ହଁ କହିବ କିଏ ?
ମହଲ ମୁହଁ ତ ହସ ଘୋଡ଼ାଇଚ,
ଦେଖାଇ ଦେଉଚ ଦୁଃଖ ତ ସିଏ !
ଗୋରୁଗାଈ ସବୁ କେଜାଣି କାହିଁକି
ଚାହିଁଥାନ୍ତି ଖାଲି ତନ୍ମାଇ ଆଖି,
ଭାବନ୍ତି କି ଆଉ କୃଷ୍ଣ କ'ଣ ସତେ
ଛାଡ଼ି ଚାଲିଯିବେ, ଦେବେ କି ଫାଙ୍କି !

ବାତ୍ସଗରୁଡ଼ ଏ ଚଗମାର କର
ଦଉଡ଼ଯାଆନ୍ତି ରଥର ଆଗେ,
ଯାଇପାରେ ନାହିଁ ଠିଆ ହୁଏ ରଥ
ଅକ୍ରୂର ତା ଦେଖି ଜଳେ କ ରାଗେ ?
ଘୋଷା ମୟୂରଟା ବସିଥିଲା ଗଛେ
ଅଧିନରେ କଆଁ ବୋବାଇ ଦେଲା,
କହିଲା କ ଆଉ ଅକ୍ରୂର କାହିଁକି
କୃଷ୍ଣଙ୍କୁ ରଥରେ ମଥୁରା ନେଲା ?
ଖୁଣ୍ଟା ଗଛଟାରେ କୋଇଲଟା ବସି
କହିଲା କ କଆଁ ବଜାଉ ବଂଶୀ,
ସବୁଦିନକୁ ତ ପ୍ରାଣ୍ଡଯାଉଚ୍ଛରେ
ଗଲାବେଳେ ବାଉ କାହିଁକି ବଂଶୀ ?
ମୁଁ ତ ଆଉ ବସି ଗାଇବ ନାହିଁ ରେ
ଗଳା ତ ମୋହର ଫିଟିବ ନାହିଁ,
ଧଉଣ୍ଡି ବୁଲିବ ବୃନ୍ଦାବନେ ସିନା
କ ଗୀତ ବୋଲିବ କାହାର ପାଇଁ !
ବରଷକେ ଥରେ ଆସୁଥିବ ଯେବେ
ଦେଖିବା ପାଇଁକି ତୋହର ହସ,
କୁଞ୍ଜେ କୁଞ୍ଜେ ପଶି ଯେବେ ମୁଁ ଖୋଜିବ
ଦେଖିବେ ଜନମା ହେବେ ବରସ ।
ବସନ୍ତର ଦୂତ ବୋଲି ମୁଁ କହିବେ
କନ୍ତୁ ମୁଁ ତ ନୁହେ କଦାପି ତାହା,
ବରଷେ ବରଷେ ଚେତାଇ ଦେବ ମୁଁ
ତୋହର ମୁରଲୀ ବାଇଲୁ ଯାହା ।
ସେ ଗୀତେ ବରହ- ବେଦନା ଭରିବ
କାନେ କାନେ ପଶି ପୋଡ଼ିବ ମନ,
ଉଚାଟ କରିବ ଗୋପ ବୃନ୍ଦାବନ
ତୋତେ ଝୁରି ସବୁ ହେବେ ବଷଣ୍ଣ ।

କୋଇଲି ମନରୁ ଛୁଟିଗଲା ଡର
ଆଜ୍ଞ ତ ସେ ଆଉ ଲୁଚିଲା ନାହିଁ,
ଗୋପର ସେ କ'ଣ ଚିହ୍ନା କୋଇଲି କି
ଧାଇଁଲା ସେ କ'ଣ ଦେଖିବା ପାଇଁ ?
ମଳୟ-ନିବାସ ଛାଡ଼ିଲା କି ଆଜ
ଗୋପଦାଣ୍ଡେ ବସି ମୋହିଲା ମନ,
କୋଉ ରାଇଜରେ ବସନ୍ତର ଘର
ସେ ରାଜ୍ୟ ନାହିଁ କି ମନ ଦହନ ?
କୁହୁ କୁହୁ କରି କଅଣ କହୁଛି
ତାହାର ଭାବ ବା ବୁଝିବ କିଏ ?
ଦୁଃଖରେ କାନ୍ଦେ କି ସୁଖରେ ହସଇ
ତାର ମନକଥା ଜାଣଇ ସିଏ ।
କାହାକୁ ଚେତାଇ ଦେବ ସେ କହୁଛି
କଅଣ ବା ମନେ ପକାଇ ଦେବ ?
କିବା କୃଷ୍ଣ ସଙ୍ଗେ ଗୋପୀଙ୍କ ମନକୁ
ଶୂନ୍ୟ ଯାନଟିରେ ମଥୁରା ନେବ ।
କିବା ସେ ବସନ୍ତ କୋଇଲିଟି ବେଶେ
କାହୁଁ ଉଡ଼ିଆସି କହୁଛି ବସି,
ଗୋପପୁର ନୁହେ ଗଉଡ଼ ଗାଆଁ ତ
ବଇକୁଣ୍ଠ ଏଠି ପଡ଼ିଛି ଖସି ।
ଏଥିପାଇଁ ତାର ଡର ଛାଡ଼ିଗଲା
ସ୍ନେହରେ ତ ବାଡ଼ ପଡ଼ଇ ନାହିଁ,
ଏଇ ସ୍ନେହସୁଧା ଚାଖିବା ପାଇଁକି
କିଏ ବାଇ ହୋଇ ଯାଏନା ଧାଇଁ !
ସ୍ନେହେ ବ୍ୟବଧାନ ବଡ଼ ଜପ ଦୁର୍ବହ
କେହି କାହାଁ ଲଭେ ପାରେନା ସହି,
ସହିବା ପାଇଁ କି ଧୈର୍ଯ୍ୟ ଧଇଲେ
କଳିଜା ଭିତର ହୁଅଇ ଦହି ।

ଅକ୍ରୂର ମଝିରେ ବାଡ଼ ପକାଉଚ
ସେହି କଥା କ'ଣ କହୁଚ କାନ୍ଦି,
କହୁଚ କି ଆଉ କୃଷ୍ଣ-ସୋହାଗିନି !
କୃଷ୍ଣଙ୍କୁ ରଚ୍ନୋ କାନରେ ବାନ୍ଧି !
ଯାଉଛି ସେ ଚାଲି ଫେରିବ ନାହିଁ ଗୋ
କିପରି ସହିବ ଚିର ବିଚ୍ଛେଦ ?
ଏଇନାଏ ତ ସେ ପାଖରୁ ଯାଇନି
ଦେଖୁ ଦେଖୁ ଏତେ କରୁଚ ଖେଦ ।
ପୋଷା ଶୁଆଟା ତ ଅଡ଼ାରୁ ମୁକୁଳି
କେତେବେଳେ ଅଛି ରଥରେ ବସି,
ଟୋଡ଼ରେ ଶିକୁଳି ଏବେ ବି ରହିଚି
ବାଟରେ କୋଉଠି ପଡ଼ିବ ଖସି ।
ମୁଣ୍ଡ ଫୁଲଇଣ ଅକ୍ରୂରକୁ ଖାଲି
ଅନାଉଚ ଘେଗ ଟିକିଏ ନଇଁ,
ସେଇ ସଙ୍କଟରେ ପେଟର କଥା କି
ଗଡ଼ମଡ଼ କରି ଦେଉଚି କହି ?
କାହିଁକି ହେ କୃଷ୍ଣ ! ଯାଉଚ କୁଆଡ଼େ
କାହାକୁ ଡାକିବି ସକାଳୁ ନିତି,
କାହା ମୁହଁ ଚାହିଁ କାହା ବଂଶୀ ଶୁଣି
ଅଧୀନ ଜୀବନ ଯିବ ମୋ ବିତି !
ଖାଲି କୃଷ୍ଣ କୃଷ୍ଣ ଘୋଷୁଥିବି ତୁଣ୍ଡେ
ଆଖିରେ ରୂପକୁ ଦେଖିଲି ନାହିଁ,
ତେଣୁ ତ ଧାଇଁଲି ଅଡ଼ା ଛୁଡ଼ିକରି
ତୁମରି ମୁହଁକୁ ଦେଖିବା ପାଇଁ ।
ନେବ ନାହିଁ ସଙ୍ଗେ ମୋ ଗୋଡ଼ ଶିକୁଳି
ସେ ପରା ତୁମରି ସ୍ନେହ-ବନ୍ଧନ,
ଛିଣ୍ଡାଇ ନାହିଁ ମୁଁ ଛିଣ୍ଡାଇ ହୁଅନା
ତୁମ ପାଖେ ବନ୍ଧା ମୋର ଜୀବନ ।

ଭଅଁରଗୁଡ଼ାଏ ଉଡ଼ି ବୁଲୁଥିଲେ
ଆହାର ଆଦର ଛୁଆଙ୍କ ପାଇଁ,
ସେଠି ତଳେ ଯାକ ପୋକ ଟିଏ ଟିଏ
ଗୁଣୁ ଗୁଣୁ କହି ଆସିଲେ ଧାଇଁ ।
ଖସାଇ ପକାଇ ଛୁଆଙ୍କ ଆହାର
ରଥ ଗୁଡ଼ପାଖେ ଉଡ଼ିଲେ ଖାଲି,
କହିଲେ କ "କୃଷ୍ଣ ବୃନ୍ଦାବନ ଛାଡ଼ି
ମଥୁରାକୁ କଅଁ ଯାଉଚ ଚାଲି ?
ତୁମେ ଯେତେବେଳେ ଫୁଲ ତୋଳି ଆଣି
ବନମାଳା ଗୁଂଥି ଗଳାରେ ନାଅ,
ବଇଁଶୀ ରନ୍ଧ୍ରରେ ଆଂଗୁଳି ଚଳାଇ
ଆମର ଗୀତକୁ ଛଡ଼ାଇ ଗାଅ ।
ରାଗୁ ନାହୁଁ ଆମେ ବରଂ ଖୁସି ହେଉ
ତୁମର ସୁନ୍ଦର ରୂପକୁ ଦେଖି,
ବଣର କୁସୁମ ଆମ ନିଜ ସୁଖ
ତୁମ ପାଇଁ ପରା ଦେଉଁ ଉପେକ୍ଷି ।
ତୁମ ଗୀତ ଶୁଣେ ଅଧିକ ମଧୁର
ଆମ ଗୀତ ଯାଏ ତା ପାଖେ ହାରି,
ସେ ଗୀତ କି ଆଉ ଶୁଣାଇବ ନାହିଁ
ଅକ୍ରୂର ସଙ୍ଗରେ ଯିବ ବାହାରି ?
ଆମର ବରଣ ଆମର ସଙ୍ଗୀତ
କୋଉ ଆଡ଼େ ନେଇ ଯାଉଚ ଚାଲି ?
ବୃନ୍ଦାବନ ବନ ନନ୍ଦ ରଜାଘର
ଆଜଠାରୁ ସିନା ହେବ ଖାଲି ?
ଜନନୀ ନୟନ ଶୁଖିବ ତ ନାହିଁ
ଗୋପୀଙ୍କ ଲୁହରେ ଏ ଗୋପଦାଣ୍ଡ,
କାନ୍ଦୁଅ ହୋଇବ ଗୋରୁଗାଈ ସବୁ
ତୁମକୁ ଝୁରିବେ କର କି କାଣ୍ଡ !

ପ୍ରଜାପତି ସବୁ ଚୁମ୍ବୁଥିଲେ ମଧୁ
ଫୁଲ ଛାଡ଼ି ଆସି ବସିଲେ ରଥେ,
କୃଷ୍ଣଙ୍କ ସଙ୍ଗରେ ସେଗୁଡ଼ିକ କ'ଣ
ମିଳିମିଶି ଯିବେ ମଥୁରା ପଥେ !
ପକ୍ଷୀକୁ ହଲାଇ ମାରନ୍ତି କି ତାଳି
କୃଷ୍ଣଙ୍କ ବିଜୟ କାମନା କରି,
ନୀରବ ଭାଷାରେ କହନ୍ତି କି ଆଜି
କଂସକୁ ନାଶ ହେ ଅସ୍ତ୍ର ନ ଧରି ।
କଂସ ନାଶ ଗଲେ ପୃଥ୍ୱୀ ହେବ ସ୍ଥିର
ସଂସାରେ ପୂରିବ ସବୁଠି ସୁଖ,
ଦୁଃଖ ଶୋକ ସବୁ ଧ୍ୱଂସଧ୍ୱାଂସ ହେବ
ହସିବ ସନ୍ତତ ସବୁରି ମୁଖ ।
ସେ ହସ କି ତୁମେ ଆଣି ଦେବ ନାହିଁ
ମଥୁରା ପଥରେ ଯାଉଛ ଧାଇଁ,
ଧରାଇ ନେଉଛି ବଧିବା ପାଇଁକି
ତୁମେ କ'ଣ ତାକୁ ବଧିବ ନାହିଁ ?
ଗଛରୁ ଗଛରୁ କୁସୁମ ଝଡ଼ିଲେ
ରଥର ଉପରେ କୃଷ୍ଣଙ୍କ ପାଇଁ,
ଗଛ-ସମାଜ କି ପୁଷ୍ପାକ୍ଷତ ଦେଇ
କୃଷ୍ଣଙ୍କୁ ଆଦରେ ଦେଲେ ବଧାଇ !
ଶ୍ୟାମଳ ପତର ପବନରେ ହଲି
କହିଲେ କି "ଯାଅ ଯାଅ ଚଞ୍ଚଳ,
ସ୍ୱାଟଡ଼ ବନ୍ଧଘରେ ବାପ ମାଆ ଦୁହେଁ
ତୁମର ପାଇଁକି ବଡ଼ ବିକଳ ।
ନୀରବେ ଅକ୍ରୂର ରଥ ପରେ ବସି
ଦେଖୁଛ କେବଳ ଏସବୁ ଢଙ୍ଗ,
କୃଷ୍ଣ ପରଶରେ ଥର ଥର ଥର
ପୁଲକ ଉଠୁଛି ତାହାର ଅଙ୍ଗ ।

ଗୋପ ଗୋପୀଙ୍କର ଭାଗ୍ୟକୁ ସ୍ମରି
ଅକ୍ରୂର ମନରେ ଜାଗେ କି ଭାବ,
ପ୍ରେମରେ ଭକ୍ତିରେ ତନମୟ ହୋଇ
ବଢ଼ି ନ ଥିଲା କି ତା ଅନୁରାଗ ?
ସକଳେ ତ ଖାଲି ଭାବରେ ବିହ୍ୱଳ
କେହି ତ କୁଆଡ଼େ ଯାଆନ୍ତି ନାହିଁ,
ରଥ ତ ମନକୁ ଠିଆ ହୋଇଗଲା
କୃଷ୍ଣକୁ ସକଳେ ରହିଲେ ଚାହିଁ ।
କେତେ ବେଳକରେ ଅକ୍ରୂର ଦେଖିଲା,
ରଥ ତ ପାରୁନି ଆଗକୁ ଯାଇ,
ମିଛ ରାଗ ଧରି ନନ୍ଦଙ୍କୁ କହିଲା
"ଏସବୁ ସୁଆଙ୍ଗ କଅଣ ପାଇଁ ?
ଜାଣିଚ ତ ସବୁ କଂସର ପ୍ରତାପ
ବାହୁଡ଼ଗଲେ ମୁଁ ସମ୍ଭାଳିବୁଟି !
ଆଉ ଜଣେ କିଏ ଆସିବ ସେଇଠୁଁ
ହୋଷାରଣ ନେବ ଧରଣି ଚୂଟି ।"
ଗୋପିଏ ଏଥର ବାଟ ଛାଡ଼ିଦେଲେ
ରଥ ଧାଇଁଗଲା ଯମୁନା କୂଳେ,
ଛିଡ଼ା ହେଲା ସେଠି ଓହ୍ଲାଇଲେ ସବୁ
ଛାଇ ଦେଖିକରି କଦମ୍ବମୂଳେ ।
ଆଜି ତ କାହିଁକି କଦମ୍ବ ଗଛଟା
ଝାଉଁଳିପଡ଼ିଲା ପରି ଦିଶୁଚି,
କୃଷ୍ଣ ଛାଡ଼ି ଯାଉ- ଅଛନ୍ତି ବୋଲି କି
ଅଭିମାନେ ଦୁଃଖ କରି ରୁଷୁଚି ।
କାଚକେନ୍ଦୁ ପରି ଯମୁନାର ପାଣି
ତଳିଁରେ ପଡ଼ୁଚି କଦମ୍ବ ଛାଇ,
ମେଘୁଆ ସକାଳ ଖରାତେଜ ନାହିଁ
ପବନ ବହୁନି ତଳିଁ କି ଚାହିଁ ।

ପାଣି ଦଶୁଅଛୁ  ନିପଟ କାଳିଆ
ଛୁଇଁ ଦେଲ କ୍ଷଣି ମାଡ଼ୁଛି ଡର,
ଯମ ଦେବତା କି  ପ୍ରେତପୁର ଛାଡ଼ି
ଯମୁନା ଗର୍ଭରେ କଲାଣି ଘର !
କିବା କାଳୀ ତାର  ରଙ୍ଗ ରଖିଦେଇ
ଯାଇଛି ସାଗରେ ରହିବା ବୋଲି,
କିବା ତା ଜହର  ଜ୍ୱଳନର ଧାସ
ଦେଇଛି ଜଳରେ କାଳିମା ବୋଳି ।
କହ'ତ ଯମୁନା  ଦ୍ୱିଜପଦ୍ମ ପରି
ଅଛି କି ତୋହର ଶୋଭା-ସଂପଦ,
ଏଡ଼େ କାଳୀଟାଏ  ପତି ଘରକୁ ଗୋ
କରିପାରିବୁ କି ସୁଖ ଆସ୍ପଦ ?
ପତି ଆଦରଣୀ  ହୋଇପାରିବୁ କି
କାଳିଆ କୋଚରି ରୂପଟା ନେଇ,
ତୋହର ବା ଆଉ  କେଉଁ ଗୁଣ ଅଛି
ପତିକି ତୋଷିବୁ ସେଇଟି ଦେଇ ?
ତୋର ପାଇଁ ଲଖ  ରଚିଥିଲ କଏ
କଏ ସେ ବା ତାକୁ ବନ୍ଧିଛି ସତେ,
ସାଗର କି କେବେ  ଅରଜୁନ ସମ
ହେବ ସମରଥ ହେଉନ ପ୍ରତେ !
ଗଂଗା ଆଉ ତୁହି  ଦୁଇ ଜଣଯାକ
ଗୋଟିଏ ବାପର ଯୋଡ଼ିଏ କନ୍ୟା,
ତୁ କାଳୀକୋଚରି  ସେ ତ ଧବଳାଂଗୀ
ଶରୀରେ ବୁହାଏ ରୂପର ବନ୍ୟା ।
ଢାଳଦେ ଜାହ୍ନବୀ  ଗହୀର ଗର୍ଭରେ
ତୋର ଏ କାଳିଆ ସଲିଲରାଶି,
ତା ଶୀତଳ ଶୁଭ୍ର  ବାରି ପରଶରେ
ଯାଉ ତୋ କଳୁଷ କାଳିମା ଭାସି ।

କେଉଁ ପାପ ଫଳେ          ହେଲୁ ଲୋ ତୁ କାଳୀ
    କିବା କୃଷ୍ଣରଂଗ ବୋଳିଲୁ ଅଂଗେ,
ଜାହ୍ନବୀ ଶୁକଳ          ସୁନ୍ଦର ହେଲେ ବ
    ପୁଣ୍ୟରେ ସମାନ ନୁହେଁ କି ସଂଗେ ?
ଦୁଇ ପୁଣ୍ୟବତୀ          ଯାଅ ମିଳି ମିଶି
    ସରଜି ଦିଅ ଗୋ ପ୍ରୟାଗ କ୍ଷେତ୍ର,
ପାପ ତାପ ସବୁ          ଧୋଇଯାଇ ଦିଅ
    ସରଗ ଦେଖୁ ଏ ନରକ ନେତ୍ର ।
କୃଷ୍ଣ କାନୁ ଛାଡ଼ି          ଯିବେ ଯୋଉ ଦିନ
    ମଥୁରାର ସୀମା ଦ୍ୱାରକାପୁର,
ସାଗର ସଂଗମେ          ରହିବ ଜାହ୍ନବୀ
    ତୋର ନାଆଁ ଗାଆଁ ହୋଇବ ଦୂର ।
ରଥରୁ ଓହ୍ଲାଇ          ଅକ୍ରୂର ପଶିଲା
    ଯମୁନା ପାଣିରେ ଗାଧୋଇବାକୁ,
କୃଷ୍ଣ ବଳରାମ          ସଂଗରେ ନେଇଛି
    ସରଗ ବାଟ ତ ଦିଶୁଛି ତାକୁ ।
'କୃଷ୍ଣ କୃଷ୍ଣ' କହି          ବୁଡ଼ିଲା ପାଣିରେ
    ଦେଖିଲା କୃଷ୍ଣଙ୍କ ସୁନ୍ଦର ମୂର୍ତ୍ତି,
ପାଣି ଭିତରକୁ          କେଉଁଠୁ ଆସିଲା
    ଭାବି ବିସ୍ମୟରେ ହାରିଲା ଧୃତି ।
ଶିରେ ଶିଖୀ ପୁଚ୍ଛ          କଂଠେ ବନମାଳ
    ମୁହଁରେ ମୁରଲୀ ମଧୁର ହାସ,
ନୀଳ ତନୁଟିକୁ          ଘୋଡ଼ାଇ ରଖିଛି
    ସୁନ୍ଦର ସୁକ୍ଷ୍ମ ପୀନ ବସନ୍ତ ବାସ ।
ବକ୍ଷରେ ବିରାଜେ          ଶ୍ରୀବତ୍ସର ପାଦ
    ତହିଁରେ ଝଳୁଛି କୌସ୍ତୁଭ ମଣି,
ସେ ତ ଦେହ ନୁହେଁ          ସରଗ ରାଇଜ
    ଶିଳ୍ପସଂପଦର ଅମୂଲ୍ୟ ଖଣି ।

ଶ୍ରୀବତ୍ସ ଚିହ୍ନ ହତେ କେଉଁ ଅବତାର
କାହିଁକି ତାହାର ହେଲା ବା ଭାଗ ?
ମାଇଲା ଛାତିରେ କେଉଁ ଘୋଡ଼ା
ଗଲା କାଳକୁ ତ ରହିଲା ଦାଗ !
ଲକ୍ଷ୍ମୀଙ୍କୁ ତୁମେ ଗୁଡ଼ି କି କହିଁ
ଶ୍ରୀବତ୍ସର ପଦ ବସିଲା ତହିଁ ?
କବା ଭକତକୁ କଲ ତୁମେ ବଡ଼
ଟାଣୁଆ ଛାତିରେ ଗଲା ତା ଚିହ୍ନ !
ଭାବିଲା ମନରେ କୃଷ୍ଣ କ'ଣ ଆଉ
ପାଣିରେ ପଶିଲେ କଂସକୁ ଡରି,
ସିଏ ପଳାଇଲେ ମୁଁ କ'ଣ ପଛରେ
ଗୋଡ଼ାଇଲେ ତାଂକୁ ପାରିବି ଧରି !
ତରବର ହୋଇ ଉଠିଲା ପାଣିରୁ
ଦେଖିଲା ରଥରେ ଶ୍ରୀକୃଷ୍ଣ ରାମ,
ଯୋଉଠେଇ ଥିଲେ ସେଇଠି ଅଛନ୍ତି
ହସୁଛନ୍ତି ଯେହ୍ନେ ଶିବ ଓ କାମ ।
ପୁଣି ଚାହିଁଲା ପାଣିର ଭିତରେ
ଦେଖିଲା ମୁଁ ସତେ ଆଉ କାହାକୁ,
ବୁଡ଼ିଲି ପାଣିରେ ଆଉ ଥରେ ଦେଖି
ଦେଖିବି କି ନାହିଁ ପୁଣି ତାହାଙ୍କୁ !
ଏଥର ଦେଖିଲା ମଣିମୟ ପୁରେ
ସୁନାର ଭମାନେ ଯୋଡ଼ିକି ଭାଇ,
କୃଷ୍ଣ ବଳରାମ ଆଉ କେହି ନୁହ
ଚକିତ ହୋଇଲା ଦୁହିଁଙ୍କୁ ଚାହିଁ ।
ଅନନ୍ତ ରୂପରେ ବିଜେ ହଳଧର
ସୁନ୍ଦରପଣର ଉପମା ନାହିଁ,
କୋଟି ରବି ଶଶୀ ସମାନ ନୁହନ୍ତି
ଆଉ କଏ ଅବା ହୋଇବ କାହିଁ ?

ତୁରଂଗ ରତନ ସିଂହାସନେ ବସି
ହସନ୍ତ ପରମ ଦେବତା ପରି,
କାଂଚନ ଶିଖରେ ଶୁଭ୍ର ନିହାର କି
ରହିଛି ସ୍ୱର୍ଗୀୟ ବିଗ୍ରହ ଧରି !
ଶଂଖମଲମଲ ଥିର ପ୍ରତିମାର
ଅଧରେ ଖେଳଇ ମଧୁର ହସ,
ମୁଖମଣ୍ଡଳରେ ସୁଗୋଲ ନୟନ
ଧବଳ ସଲିଳେ କି ତାମରସ !
ସହସ୍ର ଫଣାରେ ମଣି ଝଟକଇ
ମଣିର କିରଣେ ଶିର ଉଜ୍ଜ୍ୱଳ,
ଅମଳ ଧବଳ ବରଣ ଶରୀର
କେଶରୀ କଟିରେ ନୀଳ ଅମ୍ବର !
କାନେ ମନୋହର ବେଶ ଚମତ୍କାର
ମଣି ବନମାଳ ସୁନା କଂକଣ,
ସୁନ୍ଦର ଅଳକା ସୁଠାମ କପୋଳ
ନୀଳକଇଁ ଆଖି ଚନ୍ଦବଦନ ।
ହାର ରତନର ମେଖଳା କଟିରେ
ଝଟକେ କେୟୂର ଉଜ୍ଜ୍ୱଳ ହୋଇ,
ହାରଟିଏ ଗୁନ୍ଥି କେ ଯତନ କରି
ନକ୍ଷତ୍ରଗୁଡ଼ିକୁ ଦେଇଛି ଥୋଇ !
ରାମ କୋଳେ କୃଷ୍ଣ ନୀଳ ମେଘ ସମ
ତରଳ ରଜତେ କି ନୀଳମଣି,
ପୀତ ବସନକୁ ଶୁଭ୍ର ବନମାଳ
କଟିରେ ସୁନ୍ଦର ସୁନା କଷଣୀ !
ମସ୍ତକେ ମୁକୁଟ ହୃଦୟରେ ହାର
କାନ୍ଧରେ ପଇତା ଶୁଦ୍ଧ ଶୁକଳ,
ଲଲାଟରେ ଚିତା ଗଣ୍ଡରେ ଚନ୍ଦନ
ନୟନେ ଅଂଜନ ଶୀତଳ କର ।

କାନରେ ମକର- କୁଣ୍ଡଳ ଯୋଡ଼ିଏ
ହଲୁଚି ଖେଳୁଚି ଗଣ୍ଡରେ ପଡ଼ି,
ମାଳ କୁନ୍ତଳରେ କନକର ଅଳି
ଯାଉଛି କି ଆଜି ଏକାଠି ଜଡ଼ି !
ବୃତ୍ତ ଭୁଜଯାକ ଜାନୁ ଛୁଇଁଅଛି
ତହିଁ ଶଂଖ ଚକ୍ର ଗଦା କମଳ,
ସତ ଶତଦଳ ବୋଲି ଭ୍ରମକରି
ଚୁମ୍ବନ୍ତି ତାହାକୁ ଭ୍ରମର ଦଳ ।
ଫୁଟିଲା କମଳ- ଲୋଚନ ଯୋଡ଼ିକ
କେତେବେଳେ ସ୍ଥିର କେବେ ଚଂଚଳ,
ଦରହସା ମୁହଁ ସୁସଂଚ ଗଢ଼ଣ
ଅଧର ପଲ୍ଲବ ରଂଗ ଟାଟଳ ।
ବାଉଁଶ ନଳର ଆଢ଼ି ବଇଁଶୀଟି
ଅଧରରେ ଲଗି ଉଠିଲା ବାଜି,
ପୁଲକାଇ ଦେଲା ଅନ୍ତର ଅନ୍ତର
କନ୍ଦାଇଲା ଗୋପୀମାନଙ୍କୁ ଆଜି ।
ରନ୍ଧ୍ରେ ରନ୍ଧ୍ରେ ଆଂଗୁଠି ଚଳାଇ
କି ମନ୍ତ୍ର ଉଚ୍ଚାରି ଦେଲେଟି ବାଇ,
କୋଉ ଭାବ ଥିଲା ସେଇ ବାଜଣାରେ
ହସିଲା ଅନ୍ତର କାନ୍ଦିଲେ ଗୋଇ ।
ଦକ୍ଷିଣ ଆବର୍ତ୍ତ କମ୍ବୁ ପରି ଗ୍ରୀବା
ପେଟରେ ତ୍ରିବଳୀ ନାଭି ଗମ୍ଭୀର,
ଡମ୍ବରୁଟି ପରି କଟି ଦେଶ କ୍ଷୀଣ
ବକ୍ଷ ସୁବିଶାଳ ନାସା ରୁଚିର ।
ନିତମ୍ବ ଯୋଡ଼ିକ କଣ୍ଟା କୁମ୍ଭ ପରି
ପୀତ କାଛେଣୀରେ କି ମନୋହର,
ଉଲଟ କଦଳୀ- ଗଛ ସମ ଜାନୁ
ଖଟଖଟ୍ଟା ପରି ପେଣ୍ଡା ସୁନ୍ଦର ।

ପାଦ ଦୁଇଗୋଟି ସୁଚଂଚ ମାଂସଳ
ତଳପା ନାଲିଆ କଅଁଳ ପତ୍ର,
ଧ୍ୱଜ ବଜ୍ରାଙ୍କୁଶ ଦିଶେ ମନୋହର
ଦେଖିଲେ ଫେରଇ ନାହିଁ କା ନେତ୍ର ।
ଧାନ ବଢ଼ ହୋଇ ଅଂଗୁଠିଗୁଡ଼ିକ
ତାହାର ଅଗରେ ମାଣିକ୍ୟ ନଖ,
କୋଉ ଗୋଟିକ ତ ନୁହେ ବଂକା ଲୁଚା
ସବୁ ତ ସମାନ ସିଧାସଳଖ ।
ହାତର ଆଂଗୁଠି ଚଂପାକଢ଼ି ପରି
ବର୍ଣ୍ଣରେ ସୁନ୍ଦର କୁମୁଦ କଳି,
ହାତ ପାପୁଲିକୁ ମଣ୍ଡି ଦେଇଅଛି
କୋଉ ଚିତ୍ରକର ଯତନ କରି !!
କମଳା, ଭାରତୀ ଆଦି ଅଷ୍ଟଦେବୀ
ଶ୍ରୀଚରଣ ସେବା କରନ୍ତି ବସି,
ବ୍ରହ୍ମା ଶିବ ଇନ୍ଦ୍ର ସ୍ୱର୍ଗ ଦେବତାଏ
ସ୍ତୁତି ଗାଉଛନ୍ତି ଭକ୍ତିରେ ରସି !
ଗନ୍ଧର୍ବ କିନ୍ନର ନାରଦ ମିଶିଣ
ଗାଆନ୍ତି ସଂଗୀତ ବାଜା ବଜାଇ,
ସନକ ସନନ୍ଦ ଆଦି ବ୍ରହ୍ମ-ସୁତ
ସ୍ତବ କରୁଛନ୍ତି ମନ ମଜାଇ ।
ଭକ୍ତ ପ୍ରହଲାଦ ଧ୍ରୁବ ଆଦିକରି
ସ୍ତୁତି ଗାଉଛନ୍ତି ମଧୁର ସ୍ୱରେ,
ଏସନ ରୂପକୁ ଦେଖି ଦେଇକରି
ଅକ୍ରୂର ନୟନୁଁ ଲୋତକ ଝରେ ।
ଭକ୍ତି ଗଦଗଦେ କହେ କାନ୍ଦି କରି
"ଅନନ୍ତଶୟନ ଆସିଣ ଗୁଡ଼ା,
ମଥୁରାରେ ଜନ୍ମି ଗୋପପୁରେ ବଢ଼ି
ନିଜ ପାଇଁ ଦୁଃଖ ଦେଲୁ ତ ବାଡ଼ି ।

ଜାଣି ନାହୁଁ କିରେ          କଂସ ଅତ୍ୟାଚାର
ତୋହର ଉପରେ ଖାଲି ତ ରାଗ,
କେବଳ ତୋତେ ସେ          ଖୋଜି ତ ବୁଲୁଛି
ପାଇଲା ମାତ୍ରକେ ମାରିବ ଆଗ ।
ଅନ୍ତରଯ୍ୟାମୀ ତୁ          ଜାଣୁ ନାହୁଁ କିଆଁ
କଂସ ସଂକଳ୍ପ ତା ପାପ ମନ,
ଯାଉଚୁ ତୁ ସିନା          ହସି ଖୁସି ହୋଇ
କାଲି ରହିବ କି ତୋର ଜୀବନ ?
ସେ ଦୋଷରେ ମୋର          ବଡ଼ ଭାଗ ସିନା
କି କରିବ ତାର ଅଧୀନ ମୁଁ ତ,
ମୋର ମନକଥା          ଜାଣୁ ନାହୁଁ କିରେ
ତୋ ସଂଗେ ସମ୍ବନ୍ଧ ଜାଣିଚୁ ତୁ ତ ।
କଅଁଳ ବୟସ          ସୁକୁମାର ଦେହ
ଏଥିରେ କି କସ ପାରିବୁ ମାରି ?
ଯାହାର ବଳକୁ          ତିନି ଭୁବନରେ
ସକଳେ ଥାଆନ୍ତି ସର୍ବଦା ଡରି ।
କହ ମୋତେ ଥରେ          ସେଇ କି ତୁ ସତେ
ଯୁଗେ ଯୁଗେ କରୁ ଅସୁର ନାଶ,
ପାପତାପ ଧ୍ୱଂସି          ରଖୁ ତୁ ସଂସାର
ସେଥିପାଇଁ କ'ଣ ମରତ ବାସ ?
ଦ୍ୱାପର ଯୁଗ କି          ଶେଷ ହୋଇଗଲା
କିବା କଂସ ପାପୁଁ ହୋଇଲା କ୍ଷୟ,
ଯୁଗ ଅବତାର          ହେଲୁ କି ଉଦୟ
ସଂସାରୁ ଘୁଂଚିବ ଅନ୍ୟାୟ ଭୟ !
ଆଉ କେତେ ଦିନ          ଥାଆନ୍ତୁ ରେ ଲୁଚି
ହୋଇଥାନ୍ତୁ ହେଲେ ଟିକେ ପାକଳ,
ବଳୁଆ କଂସକୁ          ଅଂଟିବ କି ସତେ
ଆଠ ବରଷର ଚିଲାଠା ବଳ !

ଅନୁହ୍ରିଶାଳରେ ମାରିଚୁ ପୂତନା
ଅଳପ ଆଗରୁ ନାଶିଚୁ କେଶୀ,
ସେଥିପାଇଁ କ'ଣ ବଢ଼ିଗଲା କରେ
ତୋ ପରି ପିଲାର ସାହସ ବେଶୀ ?
ତୋତେ ନେଇ କ'ଣ ଲୁଚାଇ ପାରିବ
ମୋର କି ଏପରି ଅଛି ରେ ବଳ,
ଚରଣଏ ମୁଣ୍ଡ ପଶି ଯା ଭିତରେ
ଥରେ ତୋର ସୂକ୍ଷ୍ମ ମୂର୍ତ୍ତିଟି ଧର ।
ଦେବକୀ ଅଷ୍ଟମ ଗରଭ ପିଲା କି
ଦୈବ ବାଣୀ କି ହୋଇବ ସତ ?
ତୋହରି ହାତରେ ପରାକ୍ରମୀ କଂସ
ସତେ କରେ ବାଧ ହୋଇବ ହତ ?”
ଅକ୍ରୂର ମରମ ଜାଣିଲେ ଶ୍ରୀକୃଷ୍ଣ
ହସିଲେ ଟିକଏ ଲୁଚାଇ କରି,
କହିଲେ, “ମୋ ପ୍ରାଣ ତୁ ପରା ଅକ୍ରୂର
କାହିଁକି ତୁ ଡର ଯାଉଚୁ ଥରି ?
କଂସ କିବା ଛାର ବିଶ୍ୱ ଚରାଚର
ରଖିବା ମାରିବା ମୋହର କାମ,
ଯୁଗେ ଯୁଗେ ମୁହିଁ କରେ ତ ଏଇୟା
ତେଣୁ ଜଗନ୍ନାଥ ମୋହର ନାମ ।
ଅକ୍ରୂର ତୁ ମୋର ପ୍ରାଣରୁ ଅଧିକ
ମଥୁରା ତ ନୁହେଁ ତୋ ଯୋଗ୍ୟ ସ୍ଥାନ,
ତୋହର ଆସନ ମୋହର ହୃଦରେ
ସମ ନୁହେ ତାର ଗୋଲକ ଧାମ ।
ଦ୍ୱାପରେ ମୁଁ ଯେତେ କରମ କରିବି
ତୁ ବି ଜଣେ ହେବୁ ତହିଁରେ ସାଥି,
ମାନବ ମାୟାରେ ମୁଗ୍ଧ ହୋଇ କରି
କାହିଁକି ମିଛରେ ଥରାଉ ଛାତି ?

ଯାଦବ ବିନା କି        ହେବ ମୋର କାମ
        କିଏ ସେ କରିବ ? କୃଷ୍ଣ ତ ଏକା !
ପାଣ୍ଡବ ଯାଦବ        ନୋହିଲେ ଏକାଠି
        ଧରମ ରୂପ କି ଦେବ ରେ ଦେଖା ?
ଆସ ଆସ ବେଗେ        ବାହିନିଅ ରଥ
        ଧରମ ବେଳ ତ ହୋଇଲା ଆସି,
କାମ କରିବାର        ବେଳ ଗଡ଼ିଯିବ
        କରମ ପକାଇ ରଖନା ବାସି ।
ମଥୁରାରେ ମୋର        ଅଛି କେତେ କାମ
        କରିବି ମୁଁ ତାହା ଚଞ୍ଚଳ ଯାଇ,
କିଏ କଇଦରେ        କିଏ ଘରକଣେ
        ଅନାଇ ବସିଛନ୍ତି ମୋହର ପାଇଁ ?
କଂସ ତ ମନକୁ        ମରିଯିବ ଦେଖି
        ତାର ପାଇଁ ମୋର ନାହିଁ ରେ ଚିନ୍ତା,
ଆଉ କେତେ ଜଣ        ଅଛନ୍ତି ସେଠାରେ
        ମନେ ପଡ଼ିଲେଣି ଜନମ-ପିତା ।
ଯଶମାର ବୋଲ        'କାହିଁକି କାନ୍ଦୁଛୁ
        ଜଗତ-ଜଞ୍ଜାଳ ବନ୍ଧେ ମୁଁ ମୁଣ୍ଡେ
ବଡ଼ ଯେ ନିଠୁର        ବଜ୍ରହୁଁ କଠିନ
        କଅଁଳ କେବଳ ତୋହର ତୁଣ୍ଡେ ।
ଦେଖିବୁ କି ଥରେ        ନିଜ ରୂପ ମୋର
        ନାହିଁ ! ନାହିଁ ! ! ସହିପାରିବୁ ନାହିଁ,
ଖାଲି ଅନୁମାନ        କରିନିଅ ଥରେ
        ସାଗର ଗଗନ ସୀମାକୁ ଛୁଇଁ !
ତାହାରି ଭିତରେ        କଂସ କଣ ନାହିଁ,
        ନାହାନ୍ତି ସକଳେ, ନାହୁଁ କି ତୁହି ?
ସୀମାର ଭିତରେ        ଅସୀମର ଚିହ୍ନ
        ଦେଖ ତୁ ଅନ୍ତରେ ଗୋଟିଏ ମୁହିଁ

ସସୀମ ଭିତରେ ଏକା ମୁଁ ଅସୀମ
ଅନନ୍ତ ଭିତରେ ଏକା ତ ଅନ୍ତ,
ତାର ପରିଚୟ ଏତେ କି ସହଜ
ପାଇପିବୁ ତୁହି ଏତେ ତୁରନ୍ତ ?
ପାଇବୁ ପାଇବୁ କର ତୁ କରମ
କରମ ବିନା କି ହେବ ସୁଲଭ ?
ମୋତେ ପାଇବାଟା ଯେତିକି ସହଜ
ସେତିକି କଠିନ ଆଉ ଦୁର୍ଲ୍ଲଭ ।
ଅଣୁ ଆକାରର ଆକାର ମୁଁ ପିନା
ସେ ରୂପ ତ ମୋର ମହା ପ୍ରକାଣ୍ଡ,
ମୋ ତୁଣ୍ଡ ଭିତରେ ଯଶୋଦା ଜନନୀ
ଦେଖିଥିଲେ ପରା ବିଶ୍ୱବ୍ରହ୍ମାଣ୍ଡ !
ପଦଟିଏ କଥା ଶ୍ରେଷ୍ଠ କାମଟିଏ
କରିଦିଏ ମୋତେ ସଦା ତୃପତ,
କିନ୍ତୁ ସେ କଥାଟି ଆଉ ସେ କାମଟି
ମନ ମନାଇବ ହେବ ମହତ ।
ମିତ୍ର ହୋଇ କରେ ସଂସାରକୁ ମୁଗ୍ଧ
ଶତ୍ରୁକୁ କରଇ ସମରେ ତୁଷ୍ଟ,
କିନ୍ତୁ କେତେବେଳେ କାହାରି ଉପରେ
ହୁଏ ନାହିଁ ମୁହିଁ କେବଳ ରୁଷ୍ଟ ।
କ୍ରୋଧ ପରିଣାମ ହେଲା ବା ମରଣ
କିନ୍ତୁ ସେ ମରଣ ଅମୃତମୟ,
ଅମୃତ ଚାଖିବା ପାଇଁ କି ଅକ୍ରୂର
କାହିଁକି କାହିଁକି ଏତେ ଭୟ ?
ବାରମ୍ବାର ମୁହିଁ ପାଏ ନିମନ୍ତ୍ରଣ
ଆସଇ ମର୍ତ୍ତ୍ୟକୁ ସ୍ନେହର ପାଇଁ,
ପ୍ରେମ ଦୟା ଭକ୍ତି ନ ଥିଲେ କାହିଁକି
ମରିବାକୁ ଛୁଏଁ ଆସନ୍ତ ଧାଇଁ ?

ଅମରେ ଖୋଜନ୍ତି ମରଣକୁ ସିନା
ମର୍ତ୍ତ୍ୟକୁ ଆସନ୍ତି ଅମୃତ ଖାଇ,
ମରଣ ନ ଥିଲେ ସଂସାରେ କି କେବେ
ଅମରତ୍ୱ ସ୍ୱାଦ ମିଳନ୍ତା କାହିଁ ?
ଅମର ପୁରରେ ମରଣ ଅଭାବ
ତେଣୁ ତ ଅମରେ ଖୋଜନ୍ତି ବେଶୀ,
ମରତ ଲୋକରେ ସେ ତ ହାଉଯାଉ
ସବୁଠି ସବୁରେ ହୋଇଚ ଲେସି ।
କଂସ ଜରାସନ୍ଧେ ଦେବ ମୁଁ ମରଣ
ଅମର ହେବେ ସେ ମୋହର ଚର,
ଦେଖିବୁ ଅଦ୍ଭୁତ, ଦେବ ଦିବ୍ୟ ଚକ୍ଷୁ,
କପରି ରଖିବ ଦେହରେ ଧରି ?
ମୋର ଦେହ ଛଡ଼ା ଅଛି କି ଆଧାର
କୋଉଠି ବା କିଏ ରହିବ ଯାଇ,
ବିଶ୍ୱ ଚରାଚର ମୋହର ଶରୀର
ମୋହର ବାହାରେ କେ ଅଛି କାହିଁ ?
ଦେଖିବୁ ପ୍ରଶାନ୍ତ କରି ମୋତେ ରଣେ
ଦେଖିବୁ ଅଶାନ୍ତ କୋମଳାସନେ,
ଦୁଃଖ ସୁଖ ସବୁ ଦେଖିବୁ ଏକାଠି
ଭିନ୍ନ କରି ଦେଖିବୁନି ନୟନେ ।
ଦୁଃଖ ସୁଖ ସବୁ ମନର ବିକାର
କରମ କରଣ ଦେଖ ତ ଥରେ,
ସୃଷ୍ଟିଆ ରୂପରେ କର୍ମ ଟିଆହେବ
କେହି ପଶିବେନି ହୃଦରେ ଡରେ ।
କରମହୀନର କାହିଁରେ ଶଙ୍କଟ
ଶୀତ ଉଷ୍ମ କିଛି ବାଧିବ ନାହିଁ,
ଦିନରାତ ପାପ- ପୁଣ୍ୟ ଭଲମନ୍ଦ
ସଂସାରେ ବା ଅଛି କାହାର ପାଇଁ ?

ହୁଅ ଚମ୍ପୂସ୍ଥାନ ଦେଖି ଦିନରାତି
ଧଳା କଳା ସବୁ ସମାନ କରି,
କଳା କଳା କାମ ଧଳା ଧଳା କାମ
କରିଯାଉଛନ୍ତି ଦିବା ଶର୍ବରୀ ।
କରମ ନ କରି କେ ଅଛି ସଂସାରେ ?
କରମ ପାଇଁ ତ ସଂସାର ସୃଷ୍ଟି,
ଦୂରେ ରବି ଚନ୍ଦ୍ର ଗ୍ରହ ଉପଗ୍ରହ
କର୍ମ ପାଇଁ ମେଘ କରଇ ବୃଷ୍ଟି ।
କରମ ମୋହର ନିତ୍ୟ ସହଚର
କରମ ସୂତାରେ ମୁହିଁ ତ ବନ୍ଧା,
ନ ହେଲେ କାହିଁକି ଥର ଥର କରି
ଲାଗନ୍ତା ବା ମୋତେ ସଂସାର ଧନ୍ଦା ?
କରମ କରି ମୁଁ ହୋଇଅଛି ବଡ଼
କାଳେ କାଳେ କରୁଅଛି ମୁଁ ତାହା,
ମରଣ ବରୁଛେ ଲଢ଼ିବା ପାଇଁକି
କରମ କେବଳ ମୋହର ସାହା ।
କାମ କରିବୁନି ବଡ଼ ହେବୁ କାହିଁ
ତୁମ୍ଭ କ'ଣ ଏକା ରହିବୁ ଯାନ,
କୋଉଠି ରହିବ ତୋର, ମାନବର
ତୁମ ସଙ୍ଗେ ମୋର ମର୍ଯ୍ୟାଦା ମାନ ?
ଆସ ଆସ ବେଗେ ଡେରି କର ନାହିଁ
କଂସ ଯେ ଆକୁଳ ମରଣ ପାଇଁ,
ଦେବୁ ନାହିଁ ତାକୁ ଦେବି ନାହିଁ ମୁହିଁ
ପାଇବାକୁ ଭକ୍ତ ବଞ୍ଚିତ ରହିଁ ।
କଂସକୁ ଅକ୍ରୂର କହିଦେଇ ଦେହିଁ
ନିଜେ ହୋଇଗଲା ଶକ୍ତିହୀନ,
ମୋ ସାର ଅଙ୍ଗ ସେ ତାକୁ ଛେଦି ଦେଇ
ହେଲି ମୁଁ କେଡ଼ାହେଁ ହୋଇଚି ଦୀନ

ଦେଖିବା କି ଥରେ ? ଗୁହାଁ ଆଖି ମେଲି
ଦେହରେ ମୋହର ଝଣ୍ଡିଆଛିଏ,
କାହା ପାଇଁ ମୋର ଦେହେ ଧାଆ ନହେଲା ?
କଂସ କ'ଣ ସତେ ଲୁହଇ ପିଏ !
ତେଣୁ ତ ଅମର ଦେହ ପରହରି
ମର ଦେହ ଧରି ହୋଇଚ ସାନ,
ଆସିଚ ଦଉଡ଼ି ଆକୁଳ ଆଗ୍ରହେ
କଂସକୁ ପାଇ ମୁଁ ରଖିବ ମାନ ।
ପାଣିରେ ମିଶାଇ ଦେଏ ବନ୍ଦୁଟିକୁ
ଯୋଉଡକ ଅଛୁ ପାସରୁ ଖାଲି,
ପୂରେଯାଇ କରି ଉଛୁଳପଡ଼ୁ ସେ
ଧାରି ଧାରି ବହିଯାଉ ସେ ଗୃଲି ।
ମୃତ୍ୟୁ ସଂଜୀବନୀ ସେଇ ଧାରି ପିନା
ପିଇବ ଅମୃତ ଜୀଇବ ମୃତ,
ଜୀଇବନି କଂସ ଜୀଇବନି ମୁହିଁ
ନିଜକୁ ନିଜେ ତୁ ମାରିଦେବୁ ତ ?
କଂସ ଆଜ୍ଞ ତୁହି ଯମାନ ମୋହର
ତୁହି ତା ସାରଥି ମୁହିଁ ତା ରଥ,
ସଂସାରେ ପଡ଼ିଚ ସାନ ବଡ଼ ହୋଇ
କୁଟିଳ ସରଳ ବହୁତ ପଥ ।
ଯାଅରେ ଆଗେଇ ଦେଖ ସେଇଠି
ଯୋଉଠି ସକଳେ ଅଛନ୍ତି ଯାଇ,
କର୍ତ୍ତବ୍ୟକୁ ଆଖି ଆଗରେ ନରେଖି
ମି ାନ ସେଇଠି ଆଗ୍ରହେ ଧାଇଁ ?
ଜୀବନ-ଯାତ୍ରାର ସରିବନି ବାଟ
ଅସର ହୋଇ କି ରହିବ ତାହା !
ଚିର ଲକ୍ଷ୍ୟସ୍ଥଳ ରହିବ ଦୂରରେ
ମାନବ ଖୋଜଇ ସତତ ଯାହା ।

କୃଷ୍ଣର ଉଦ୍ଦେଶ୍ୟ କରିବ ସୁଲଭ
 ସାରଦେବ ବାଟ କରମ କରି,
ମାଟିରେ ମାଟିରେ ନର ଦେବତାଙ୍କୁ
 ରଖିଦେବ ଏକ ଆସନେ ଧରି ।
ପୁଣି ଯୁଗେ ଯିବ ବଢ଼ିବ ଅଧର୍ମ
 ଆହୁରି ଆସିବ ମାରିବା ପାଇଁ,
ଥର ଥର କରି ମର୍ତ୍ତ୍ୟେ ଜନମି
 ମରଣ-ଅମୃତ ପିବ ମୁଁ ଖାଇ ।
ସରଗ କେବଳ ଅମରଙ୍କ ଘର
 ମର୍ତ୍ତ୍ୟ ତ ଦେବଙ୍କ ସେଠୁଁ ଭି ଘର,
ଏଇଠି ତିଆରି ହୁଏ ଭଲ ମନ୍ଦ
 ଏଇଠି ଅମୃତ ରାନ୍ଧନ୍ତି ନର ।"
ଲେଖକ ଭାଗ୍ୟକୁ ଅମୃତ ଜହର
 କୃଷ୍ଣ କ'ଣ ଜାଣୁ ନାହାନ୍ତି ତାହା !
କୃଷ୍ଣ ଗୁଣ ଗୁଣି କୃଷ୍ଣ ଭାବ ଭାବି
 କୃଷ୍ଣଙ୍କୁ କରିଛି ଜୀବନ ସାହା ।
ଅକ୍ରୂର ରଥ ତ କାଠ ଓ ଲୁହାର
 ଲେଖକର ଦେହ ହାଡ଼ରକତ,
ଦାନ୍ତେ ତୃଣ ଧରି କରେ ନିବେଦନ
 ଥରେ ତା ଦେହକୁ କର ହେ ରଥ ।



# ଅକ୍ରୂର ସ୍ତବ

ନାହିଁ ତୁମ ଆଦି            ନାହିଁ ମଧ୍ୟ ଅନ୍ତ
ଅଙ୍ଗେ ଅଙ୍ଗେ ତୁମ ଜଳଇ ଜ୍ୟୋତି,
ଅତଳ ସାଗରେ            ଅନନ୍ତ ଶୟନେ
ଶୋଇଥାଅ ପଗ ଯେସନ ମୋତି ।
ଜଳେ ବାସ ବୋଲି            ନାମ ନାରାୟଣ
ନିରାକାର ବ୍ରହ୍ମ ଅଭୟଦାତା,
ପଦ୍ମନାଭ ତୁମ            ନାଭିକମଳରୁ
ଜନମିଲେ ଚାରିମୁଖ ବିଧାତା ।
ସତ୍ତ୍ୱ ରଜ ତମେ,            ସରଜିଲ ତାକୁ
ସିଏ ତ ତୁମକୁ ଜାଣଇ ନାହିଁ,
ଆଉ କେ ଜାଣିବ            ତୁମର ଶକତି
ଏପରି ଜଣେ କେ ସଂସାରେ କାହିଁ ?
ତ୍ରିଭୁବନ ତୁମେ            ତୁମେ ତ ତ୍ରିନାଥ
ତ୍ରିଗୁଣ ତ୍ରିଦୋଷ ତୁମରି ଠାରେ,
ସୃଜନ ପାଳନ            ସଂହାର ତ କର
ତୁମ ଛଡ଼ା ଆଉ କିଏ ବା ପାରେ ?
ତିନି ଦଶା ଭୋଗ            ତିନି କାଳ ଜାଣ
ତେଣୁ ତ ତ୍ରିଦଶ ମଧ୍ୟରେ ସାର,
ସମସ୍ତେ ଦେଖନ୍ତି            କେହି ଦେଖନ୍ତିନି
ସୂକ୍ଷ୍ମ ଅତି ସୂକ୍ଷ୍ମ ଗୁଣ ଅପାର ।

ତୁମର ଶରୀରେ ଅଶେଷ ବ୍ରହ୍ମାଣ୍ଡ
ତଥାପି ସେ ରୂପ ଜାଣେନା କେହି,
ସବୁ କର ତୁମେ ସବୁ ରଖ ତୁମେ
ରଖେ ମାରେ ଯିଏ ତୁମେ ତ ସେଇ ।
ଦୁଃଖ ସୁଖ ମୋହ ସବୁ ତୁମେ କର
ସକଳ ତୁମର ଅଧୀନ ସିନା,
କିଏ ବା ଏହାକୁ ସହିବଟି ସତେ
ତୁମର କରୁଣା-କଣାଟି ବିନା !
ତ୍ରିତାପକୁ ଭବେ ସାଇତ ଦେଇଚ
ତୁମ ପାଇଁ ସିନା ହୁଅଇ ସହି,
ସହିବା ଶକତ ଦେଇ ନ ଥିଲେ କି
ବିଶ୍ୱ ବ୍ରହ୍ମାଣ୍ଡଟା ନୁହନ୍ତା ଦହି ?
ତିନ ଦୋଷଯାକ ରଖି ଦେଇଅଛ
ଜୀବ ଦେହେ ଦେହେ ସୃଜନ କରି,
କେହି ଊଣା କେହି ଅଧିକ ହୋଇଲେ
କିଏ ବା ପାରନ୍ତ ଜୀବନ ଧରି ?
ଜଳ ଓ ଅନଳ ଧରଣୀ ଅନିଳ
ଆକାଶ ସହିତ ତୁମର ସବୁ,
ଏଇ ପାଞ୍ଚଟିରୁ ସବୁ ତ ହୋଇଚି
ତୁମେ ସିନା ଏକା ସବୁର ପ୍ରଭୁ ।
ରୂପ ତୁମ ଶୂନ୍ୟ ସବୁବେଳେ ପୂର୍ଣ୍ଣ
ସବୁ ତ ସାଇତା ତୁମର ଦେହେ,
ଶୂନ୍ୟକୁ ପୂର୍ଣ୍ଣକୁ କିଏ ଦେଖିପାରେ
ଯାହାକୁ ଶକତ ଦିଅନା ସ୍ନେହେ !
କରମରେ ରତ କରମଯୋଗିଏ
ଦେଖନ୍ତି କେବଳ କରମ ଯୋଗେ,
କାମନା ବରଜି କରମ ଯେ କରେ
ସିଏଇ ଏକା ତୁମ ବିଭୂତି ଭୋଗେ ।

ତେଣୁ ତ ତୁମକୁ ନାନା ଭାବେ ପୂଜି
ସାଧନ୍ତି କରମ ଶରୀର ଧରି,
ତୁମର ଦେହରେ ଲୀନ ହୋଇଯାନ୍ତି
ତୁମର ଗୁଣକୁ ମାରନବ ସ୍ମରି ।
ଶଙ୍କର ପୂଜନ୍ତି ଅଷ୍ଟାଙ୍ଗ ଯୋଗରେ
କିଆଁ ବା କହିବ ଆଉ କା କଥା !
ତୁମ ଛଡ଼ା ଆଉ ବଡ଼ କିଏ ଅଛି
ତୁମର ଚରଣେ ସଭିଙ୍କ ମଥା ।
ନାନା ଦେବାଦେବୀ କଲପନା କରି
ତୁମକୁ ହିଁ ସିନା ପୂଜନ୍ତି ମୂନ,
ସେ ପୂଜା କି ତୁମେ ଗ୍ରହଣ କରନା
ଦେଖୁଥା କେବଳ ହୋଇଣି ତୁନି ?
ଶୁକ ସନକାଦି ଯେତେକ ପୂଜାରୀ
ପୂଜି କାଳେ କାଳେ ଚରଣ ତଳେ,
ଜାଣିପାରନ୍ତି ନ ଆଉ କେ ଜାଣିବ
କାହାର ଶକତି ମର୍ତ୍ତ୍ୟମଣ୍ଡଳେ ?
ବଙ୍କାଟଙ୍କା ବାଟେ ଗଲନ୍ତି ତ କେତେ
ସଳଖ ବାଟକୁ ଦିଅନ୍ତି ଛାଡ଼ି,
ଭୁଆଁ ବୁଲି ବୁଲି ଗୋଡ଼ ଘୋଳା ହେଲେ
କରୁଣା କି ତୁମେ ଦିଅନା ବାଢ଼ି ?
ଯିଏ ଯୋଉ ବାଟେ ଗଲୁଥାଉ ପଛେ
ସଭିଏଁ ଯାଆନ୍ତି ତୁମର ଠାଇଁ,
ନଦୀ ଯୋଉ ପରି ଶତେ ଧାର ହୋଇ
ଶେଷରେ ପଶଇ ସାଗରେ ଯାଇ ।
ଦେବତା ମାନବ ଯିଏ ଯେଉଁମାନେ
ପୂଜନ୍ତି ତୁମର ରାଙ୍ଗାଚରଣ,
ସ୍ୱର୍ଗ ମର୍ତ୍ତ୍ୟ ଆଦି ଚଉଦ ଭୁବନେ
ତୁମେ ଏକା ସିନା ତାଙ୍କ ଶରଣ ।

ଦଶ ଇନ୍ଦ୍ରିୟର    ମାୟାରେ ଜଡ଼ାଇ
କରି ଦେଇଅଛ ମୋହିତ ସିନା,
ଇନ୍ଦ୍ରିୟ ଗ୍ରାମର    କେତେ ବା ଶକତି
ଭୁଲନ୍ତେ ତୁମର ପ୍ରଭାବ ବିନା !
ତୁମ ମୁଖୁଁ ଜାତ    ତପତ ଅନଳ
ପାଦରୁ ଅବନୀ ପରା ଜନମ,
ଆଦିତ୍ୟ ତୁମର    ନୟନଯୋଡ଼ିକ
ନାସିକା ବିବରୁଁ ଜାତ ପବନ !
ଦଶ ଦିଗପାଳ    ଶ୍ରବଣ ତୁମର
ଶିର ଗୋଟିକ ତ ଅଟଇ ସ୍ୱର୍ଗ,
ଦଶ ଦିଗପାଳ    ତୁମ ବାହୁଯୁଗ
ବାଡ଼ବ ଅନଳ ଅଟଇ ଗର୍ଭ ।
ଅପାନ ସମାନ    ପ୍ରାଣ ଓ ଉଦାନ
ବ୍ୟାନ ଆଦି କରି ପାଞ୍ଚ ପବନ,
ସକଳ ଏକାଠି    ମିଳି ମିଶିକରି
ହୋଇଅଛି ପରା ତୁମ ଜୀବନ !
ଲୋମ ଯେତେ ତୁମ    ଶରୀରରେ ଅଛି
ସେଗୁଡ଼ିକ ସବୁ ଗଛ ଓ ଘାସ,
ଦେହରେ ଯେତେକ    ରୋଗ ବଇରାଗ
ସେସବୁକୁ ପରା କରନ୍ତି ନାଶ ।
ମେଘରାଶି ତୁମ    କାଳିଆ କୁନ୍ତଳ
ନୀଳ ଗଗନରେ ଥାଏ ପ୍ରକାଶି,
ହାଡ଼ପାଙ୍କ ସବୁ    ଶିଖରୀ ଶିଖର
ଜାହ୍ନବୀ ତହିଁରୁ ଓହ୍ଲାଇ ଆସି ।
ତୁମ ନଖକଣେ    ଉଜ୍ଜ୍ୱଳ ନୀରବ
ବିଷ୍ଣୁପଦୀ ବୋଲି ପାଇଲା ନାମ,
ପାପ ତାପ ନାଶି    କରଇ ପବିତ୍ର
ମୁକତି ବାଢ଼ିବା ତାହାର କାମ ।

ସଗର ତନୟେ ଯଜ୍ଞଘୋଡ଼ା ଖୋଜ
ଖୋଜିଲେ ପୃଥିବୀ ଖାଇଲେ ମାଟି,
କପିଳ ଆଶ୍ରମେ ତପ କରୁଥିଲେ
ରାଗରେ ଅନାଇଁଦେଲେ ତସ୍ୱୀଠି ।
ଜଳିଗଲେ ସବୁ ହୋଇଲେ ପାଉଁଶ
ଅମୋକ୍ଷ ହୋଇଣ ପଡ଼ିଲେ ସେଠି,
କିଏ ସେ ଅଛି ଯେ ତୁମ ନଖକୋଣୁଁ
ଆଣିବ ଗଙ୍ଗାଙ୍କୁ ତରିବେ ସେଠି !
କେତେ ଯୁଗ ଅନ୍ତେ ଭଗରୁ ଜନମ—
ହେଲେ ଭଗୀରଥ ସଗର କୁଳେ,
ଶୁଣିଲେ ଯୋଜନା ଅଣବାପୁଆ ସେ
କାନ୍ଦିଲେ ବହୁତ ତୋ ପାଦ ମୂଳେ ।
ବଡ଼ଟିଏ ହୋଇ ଆତୁର ଶୁଣିଲେ
ପିତୃପୁରୁଷଙ୍କ ଶାପର କଥା,
କିପରି ତାହାଙ୍କୁ ମୁକତି କରିବେ
ଚିନ୍ତା କରୁ କରୁ ଘୂରିଲା ମଥା ।
ତପସ୍ୟାରେ ବସି ପାଇଲେ ହୁକୁମ
ଗଙ୍ଗାଙ୍କୁ ସେ ଯେବେ ପାରିବେ ଆଣି,
ପାଉଁଶକୁଢ଼କୁ ଋଷି ଅଭିଶାପୁଁ
ତାରିବେ ଛୁଇଁଲେ ଜାହ୍ନବୀ ପାଣି ।
ଖୋଜିଲେ ଗଙ୍ଗାଙ୍କୁ ଆଣିଲେ ତୁମଠୁଁ
ବହୁ ଦୁଃଖ ସହି ଧରଣୀ ପରେ,
କପିଳ ଆଶ୍ରମୁଁ ଧୋଇଲା ପାଉଁଶ
ଭଗୀରଥୀ ନାମେ ଗଙ୍ଗାସାଗରେ ।
ଦିନ ରାତି ତୁମ ନିଶ୍ୱାସ ପବନୁ
ହୋଇଅଛି ପର ଏଇ ସଂସାରେ,
ପ୍ରଜାପତି ପରି ରଖିନ୍ତ ତୁମକୁ
କଂସ କିବା ଛୁର ତୁମକୁ ମାରେ !

ତୁମ ତେଜବଳି ସରଗରେ ଇନ୍ଦ୍ର
ତୁମ ବୀର୍ଯ୍ୟ ପରା ଏ ବୃଷ୍ଣି ବଂଶ,
ଅକ୍ଷୟ ଅବ୍ୟୟ ନିରଞ୍ଜନ ତୁମେ
ତୁମକୁ କିଏ ବା କରିବ ଧ୍ୱଂସ !
ଚଉଦ ଭୁବନ ତୁମେ ତ ଶ୍ରୀକୃଷ୍ଣ
ତୁମ ଛଡ଼ା କିଏ ଅଛି କ କାହିଁ ?
ଦେବତା କିନ୍ନର ଯକ୍ଷ ରକ୍ଷ ନର
ତୁମ କରୁଣାକୁ ଥାଆନ୍ତି ଚାହିଁ ।
ଅଶେଷ ବ୍ରହ୍ମାଣ୍ଡ ତୁମରି ଦେହରେ
ବ୍ରହ୍ମାଣ୍ଡ ଭିତରେ ଅଛ ତ ନିଜେ,
ମାୟାରେ କେବଳ ପିଲାଟିଏ ପରି
ମୋ ସଙ୍ଗେ ମଥୁରା କରୁଚ ବିଜେ !
ଯାଉଚ କାହିଁକି ଖାଲି ହାତଟାରେ
କୋଉଠି ଥୋଇଲ ବୃଷ୍ଣି ଆୟୁଧ ?
ଜାଣିଛ ପରା ହେ ମଥୁରାକୁ ଗଲେ
କେତେ କାହା ସଙ୍ଗେ କରିବ ଯୁଦ୍ଧ ।
ଥୋଇଦିଅ ବଂଶୀ ବଜା ଥରେ ଶଙ୍ଖ
ଥରୁ କଂସ ଛାତି ତାହାରି ଘରେ,
ଧର ସୁଦର୍ଶନ - ଚକ୍ରଟିକୁ କାଢ଼ି
ତପନ ମଣ୍ଡନ ହେଉ ତା କରେ ।
ଧର କୌମୋଦକୀ ଗଦା ଟାଣକରି
ଅସୁର ଯେତେକ କର ନିପାତ,
ମୁଖ ପଦ୍ମଟିକୁ ଧରି ଦେଖି ଥରେ
ଅକ୍ରୂର ଦେଖୁ ସେ ଚତୁର ହାତ ।
ଦିଶି ଦିଶି ଯାଏ ପୁଣି ଲୁଚିଯାଏ
ତୁମରି ସୁନ୍ଦର ଦେବ ମୂରତି,
ଦେଖା ଦେଉ ଦେଉ ଲୁଚିଯାଅ କିଆଁ
ଅକ୍ରୂରକୁ କ'ଣ ଦେବନି ଗତି ?

ନିଦ ଭଙ୍ଗିଗଲେ    ସପନର ସୁଖ
    ମନକୁ ଯେସନ ଲାଗଇ ପିତା,
ସେଇପରି କାହିଁ    ଦେଖାଦେଇ ଲୁଚ
    ଅନ୍ତର ଅନ୍ତରେ ଜଳାଇ ଚିନ୍ତା !
ସଂସାର ଲୀଳାରେ    ଦେହଟିଏ ଧରି
    ଅବତରି ଅଛ ଧରଣୀ ତଳେ,
ନର ଦେହ ଧରି    ଅମର କରମ
    ତୁମ ଛଡ଼ା ଆଉ କିଏ ବା କରେ !
ମାଛଟିଏ ହୋଇ    ସାଗରେ ପଶିଲ
    ହାତ ଗୋଡ଼ କଚ୍ଛ ଥିଲା କି କାହିଁ ?
ମାଛର ରୂପରେ    ଶଂଖାସୁର ମାରି
    ବେଦ ଉଦ୍ଧାରିଲ ଧରମ ପାଇଁ !
କିବା ମୀନ ରୂପେ    ହେଲ ଡଙ୍ଗାଟିଏ
    ବୁଡ଼ି ଥିଲା ବେଦ ରଖିଲ ଟେକି,
କିଏ ଅଉ ଜଣେ    ପାଣିଟା ଭିତରେ
    କରିଥାନ୍ତା ଭଲି କହ ତ ଦେଖି !
ମୁଣ୍ଡଠାରୁ ଗ୍ରୀବା    ହେଲ ଘୋଡ଼ାଟିଏ
    ଆଉ ସବୁଆଡ଼ ମଣିଷ ପରି,
ଏହି ରୂପଟିରେ    ମାରିଥିଲ ପରା
    ମଧୁ କଇଟଭ ସମର କରି !
ତାହାରି ମେଦରେ    ଗଢ଼ିଲ ଧରଣୀ
    ତେଣୁ ପୃଥ୍ୱୀ ନାମ ହେଲା ମେଦିନୀ,
ତୁମ ଛଡ଼ା ଆଉ    କିଏ ବା ସତରେ
    ଏତେ ରାକ୍ଷସଟା ପାରନ୍ତା ଜିଣି !
ପ୍ରଳୟ ଜଳରେ    ପୃଥ୍ୱୀ ବୁଡ଼ୁଥିଲା
    ରଖିଲ ପିଠିରେ କଇଁଚ ହୋଇ,
କିଏ କ'ଣ ସତେ    ଧରି ବାନ୍ଧିକରି
    ନାହିଁ କରୁଥିଲ ଦେଲ କି ଥୋଇ !

ନାହିଁ, ନାହିଁ, ତୁମେ ନିଜେ ଇଚ୍ଛାକରି
ରଖିଲ ପିଠିରେ ହେଲ ବଣଚ,
କାହିଁକି ଧରଣୀ ରଖିବା ପାଇଁକି
ଦେହରୁ ତୁମର ବ୍ୟାଧିଲ ରକ୍ତ ।
ନିଜ ଦୁଃଖକୁ ତ ଖାତିର ନ କରି
ପର ସୁଖ ଲାଗି ହୁଅ ପାଗଳ,
ଅକ୍ରୂର ଦୁଃଖ କି ବାଧୁନି ତୁମକୁ
ମନ ତୁମ ହେଉ ନାହିଁ ବିକଳ ?
ଧରଣୀକୁ ପୁଣି ଧରିଲ ଦାନ୍ତରେ
ଚନ୍ଦ୍ରମା ଦେହରେ କଳଙ୍କ ପରି,
ତୁମ ଛଡ଼ା ଆଉ କିଏ ବା କାହିଁକି
ଆସନ୍ତା ବରାହ ରୂପଟା ଧରି !
ହର ବର ପାଇ ହେଲା ମହାବଳୀ
ହିରଣ୍ୟ କାହାକୁ ମାନିଲା ନାହିଁ,
ପୁଅ ତା ତୁମକୁ ପୂଜୁଥିଲା ବୋଲି
ତାହାର ମୁହଁକୁ ରାଗରେ ଗୁହିଁ ।
ମନା କଲା ତାକୁ କିନ୍ତୁ ସେ ନୁଝିଲା
ତୁମକୁ ଲାଗୁଇ ଭକତି କରି,
ଜାଣିଲା ଯୋଉନା ସହି ପାରିଲାନି
ହାଣୁଥିଲା ରାଗେ ଖଡ଼ଗ ଧରି ।
ଶୁଣିଲା ମାତକେ ପ୍ରହ୍ଲାଦ ବଚନ
ଆସିଥିଲ ପରା ବୈକୁଣ୍ଠ ଗୁଡ଼ି ?
କୋଉ ବାଟେ କାଠ- ଖମ୍ଭରେ ପଶିଲ
କିଏ ବା ତହିଁରୁ ଥିଲାଟି କାଢ଼ି ?
ଅଧେ ନର ଅଧେ କେଶରୀ ଶରୀର
ଧରିଲ ଭକ୍ତକୁ ରଖିବା ପାଇଁ,
ହିରଣ୍ୟର ବକ୍ଷ ବିଦାରିଲ ନଖେ
ମଲା ସେ ସେଇଠି ତୁମକୁ ଗୁହିଁ ।

ପକାଇ ଦେଲ କି ? ନେଇଥିଲ ପରା
କୋଳକୁ ଉଠାଇ ଆଦର କରି,
ତୁମର ବଇରି ହୋଇ ସେ ଅସୁର
ତୁମକୁ ପାଇଲା ଭଲା କପଟି !
ପଣ୍ଟ୍ ଘର ଛାଡ଼ି ଆସିଲ ଆତୁର
ଟିକି ମଣିଷର ରୂପଟି ଧରି,
ସାମବେଦ ଗାଇ ଭୂଇଁ ଦାନ ନେଲ
ପାଦଭରେ ଦଳିଥିଲ ତ ବଳି !
ପାତାଳେ ତ ତାକୁ ରଖିଲ ସୁଖରେ
ରାଜପଦ ତାର ଦେଲ ତ ଛଞ୍ଚି,
ଶତ୍ରୁ ବୋଲି କରି ରାଗରେ ତ ସେଠି
ତାହାକୁ କେବେହେଁ ଦେଇନା ଗଞ୍ଜି !
ତାହାର ଗରବ ଖର୍ବ କଲ ସିନା
ମହତ ତାହାର ଦେଲ ବଢ଼ାଇ,
ମର୍ତ୍ତ୍ୟରୁ ପଠାଇ ପାତାଳପୁରକୁ
କେଉଁ ସୁଖ ତାର ନେଲ ଛଡ଼ାଇ ?
କାର୍ତ୍ତବୀର୍ଯ୍ୟ ରଜା ବଧି ଯମଦଗ୍ନି
ନେଇଥିଲେ ବୋଲି ଗାଈ ଛଡ଼ାଇ,
କରିଲ ପ୍ରତିଜ୍ଞା କ୍ଷତ୍ରିୟ ମାରିବ
ରଖିଦେବ ନାହିଁ ରଜା ବଢ଼ାଇ ।
ଜନନୀ କ୍ଷତ୍ରିୟା ଜନକ ବ୍ରାହ୍ମଣ
ଦୁଇ ଗୁଣ ମିଶି ହୋଇଲ ଜନ୍ମ,
ବ୍ରାହ୍ମଣ ଧରମ ବରଜନ କରି
କରିଥିଲ ପରା କ୍ଷତ୍ରିୟ କର୍ମ !
ଶ୍ରୁବ ଶ୍ରୁଚ ଛାଡ଼ି ଧରିଲ ପରଶୁ
ରକ୍ତରେ ରଞ୍ଜିଲ ତାହାର ଧାରି,
ଏକୋଇଶ ଥର କ୍ଷତ୍ରିୟ ନାଶିଲ
ଅପଯଶ ହୋଇଲା ବା କାହାର ?

ପହିଲେ ମାଇଲ କ୍ଷତ୍ରିୟା ଜନନୀ
ମାତୃହତ୍ୟା ଦୋଷ ଲଗିଲା ନାହିଁ,
ସେତେବେଳେ କ'ଣ ଦେବତା ଶକତ
ଲୁଚି ନ ଥିଲା କି ତୁମଠି କାହିଁ ?
ଥର ଥର କରି ପରଶୁରେ ହାଣି
କ୍ଷତ୍ରିବଂଶକୁ କି ପାରିଲ ସାରି,
ଜାନକୀ ବିବାହ ବାହୁଡ଼ା ବେଳରେ
କ୍ଷତ୍ରିୟ ହାତରେ ଗଲ ତ ହାରି !
ହଂସାବୃତ୍ତି ପାଇଁ ହୋଇ ନ ଥିଲ କି
ନିନ୍ଦିତ ସଂସାରେ ସିନେକ ପାଇଁ,
ଏଇ ନିନ୍ଦାଟାକୁ ଧୋଇଦେବ ବୋଲି
ରାମ ରୂପେ ଆସି ନ ଥିଲ ଧାଇଁ ?
ତୁମ ଗର୍ବ ତୁମେ ଗଞ୍ଜି ନ ଥିଲ କି
ନିଜକୁ କି ତୁମେ ଦେଇନା ଲଜ୍ଜା ?
କିଏ ପର୍ଶୁରାମ କିଏ ଅବା ତୁମେ
କାହା ପାଇଁ କା'ର ଥରିଲା ମଜ୍ଜା ?
ବିଶ୍ରବା ନୈକେଶୀ ବ୍ରାହ୍ମଣ, ରାକ୍ଷସୀ
ବାହା ହୋଇଥିଲେ କଅଣ ପାଇଁ ?
ସ୍ପୃଷ୍ଟରଚି ପିଲାରୁ ଗୋଟିଏ ଧାର୍ମିକ
ତିନିଟି ଅସୁର ଜାଣ କି ନାହିଁ !
କଲେ ଅତ୍ୟାଚାର ଥରିଲା ବସୁଧା
ଆହୁରି ଆସିଲ ଧରାକୁ ଧାଇଁ,
ଚତୁର୍ଭୁଜ ମୂରତି ହୋଇଥିଲ ପରା
ସେ କଥା କି ତୁମ ମନରେ ନାହିଁ !
କଳା ଧଳା ରୂପ ଏଇନା ଯୋଡ଼ିଏ
ସେତେବେଳେ ହୋଇଥିଲ ତ ଗୃହୀ,
ରାକ୍ଷସ ରାକ୍ଷସୀ ମାରି ନାହିଁ:କେତେ
କେବେ କି କା ସଙ୍ଗେ ଯାଇଚ ହାରି ?

ସତ୍ୟକୁ ମଣିଲ          ପରମ ଧରମ
ହୋଇ ଭାର୍ଯ୍ୟା ନେଇ ପଶିଲ ବଣେ,
ପିତାଙ୍କର ସତ୍ୟ          ପାଳିବା ପାଇଁକି
ତୁମ ପରି ପୁଅ ଥିଲା କି ଜଣେ ?
ଋଷିବେଶ ଧରି          ମାରି ନ ଥିଲ କି
ଲଙ୍କାର ନୃପତି ଦୁଷ୍ଟ ରାବଣ,
ରାବଣ ବିଜୟୀ          କିଷ୍କିନ୍ଧ୍ୟା ଈଶ୍ୱର
ତୁମ ହାତୁଁ ପାଇ ନାହିଁ ମରଣ ?
ତାରା ମନ୍ଦୋଦରୀ          ଯୋଡ଼ିଏ ବିଧବା
ରଖିଥିଲ ପରା ବିବାହ ଦେଇ,
ସମାଜ ସଂସ୍କାର          ବାଟ ଥିଲା କି ହେ
ସେ ଦୁଇ ନାରୀଙ୍କ ସଙ୍ଗତି ନେଇ ?
ବିଭୀଷଣଙ୍କୁ          କିଏ କରିଥିଲା
ଲଙ୍କା ରାଇଜର ଚିର ରାଜନ ?
ଅଥଳ ସାଗରେ          କିଏ କରିଥିଲା
ପଥର ପାହାଡ଼େ ସେତୁ ବନ୍ଧନ ?
ପାଷାଣ-ନାରୀକୁ          ଜୀଆଇ ନ ଥିଲ କି
ପାଦଧୂଳି ଦେଇ ଶିରରେ ତା'ର ?
ଅନ୍ତର କି ସତେ          ତୁମରି ବୁହାଇ
ତୁମେ ନ ଗୃହିଁଲେ ହେବ ସେ କାର ?
ଦେହୀ ବିରହ କି          ସହି ନ ଥିଲ ହେ
ପଥର ପରାୟ କଠିଣ ଚିତ୍ତ,
ସୀତା ଯେତେବେଳେ          ନିଆଁରେ ପଶିଲେ
ବାଧି ନ ଥିଲା କି ସନ୍ତତି ସେ ତାଡ଼ି ?
ଲବକୁଶ ଯେବେ          ତୁମ ଗୁଣ ଗାଇ
ଅଶ୍ୱମେଧ ଯଜ୍ଞ ଦେଖିବା ପାଇଁ,
ଆସିଥିଲେ ତୁମ          ଚରଣ ତଳକୁ
କାନ୍ଦି ନ ଥିଲ କି ତାହାଙ୍କୁ ଗୃହିଁ ?

ଆଣି ନ ଥିଲ କି ଜାନକୀଙ୍କୁ ତୁମେ
ଘେନି ନେବ ବୋଲି ଆଶ୍ୱାସ ଦେଇ,
ଭୂଇଁ ଫାଟିଗଲା ଜାନକୀ ପଶିଲେ
ତୁମ୍ଭ କି ରହିଲ ପୁଅଙ୍କୁ ନେଇ ?
କଳା ରୂପ ଧରି ଆସି ନାହିଁ ତୁମେ
କଂସକୁ କି ସତେ ନାଶିବ ନାହିଁ,
ବଳରାମ କ'ଣ ନୁହନ୍ତି ଅନନ୍ତ ?
ଆଗରୁ ଆସିଲେ ସେଇଥିପାଇଁ !
କଳା ଗୋରା ମୂର୍ତ୍ତି କେଡ଼େ ମନୋହର
ଏଇ ରୂପ ମୋତେ ଦେଖାଉଥାଅ,
ରୁଦ୍ର ରୂପ କ'ଣ ପାରିବ ମୁଁ ସହି
ମୋ ଆଖି ଆଗରୁ ତାକୁ ଲୁଚାଅ ।
ସବୁ କରାମତି ଏଇ ରୂପଟିରେ
ଅଘଟ ଘଟଣ କରିବ ପରା !
ପାଖେ ଥାଉ ଥାଉ ଲୁଚି ପାରିବ କି
ଅକ୍ରୂରକୁ ଯେବେ ଦେଲଣି ଧରା ?
ତୁମେ ତ ପ୍ରକୃତି ତୁମେ ହିଁ ବିକୃତି
ରୂପଟିଏ ଧରି ଦେଲଣି ଦେଖା,
ତୁମ ନିରାକାର ସାକାର ହୋଇଣ
ମୋର ମରମରେ ହେଲଣି ଲେଖା ।
ଏଇ ବିଚିତ୍ରତା ଦେଖାଇବା ପାଇଁ
ସଂସାରରେ ସବୁ ତୁମ ସର୍ଜନା,
ଅନ୍ଧ ନର ତାହା ଦେଖି ଦେଖୁ ନାହିଁ
ଭାବୁଛି ଏସବୁ ତୁଚ୍ଛ କଳ୍ପନା ।
କଳ୍ପନାକୁ ତୁମେ ଦେଇନା ଆକାର
ସଂସାରଟା କ'ଣ କେବଳ ଶୂନ୍ୟ,
ତୁମକୁ ଧରିବା ପାଇଁକି ଧରଣୀ
କେଉଁବେଳେ କଲା ଏସନ ପୁଣ୍ୟ !

ସାକାର ପୂଜିବା ହୋଇଛି ଧରମ
ନିରାକାରରେ କିଛି ନାହିଁ କି ମୂଲ",
ନିରାକାର କ'ଣ ହେବନି କୋଉଠି
ସାକାର ସଙ୍ଗରେ କାହିଁରେ ତୁଲ୍ୟ ?
ବିଜ୍ଞାନ ଦେଖୁଛି ଘାଣ୍ଟିଘୁଣ୍ଟି କରି
ଦୁଇଟି ଉତ୍ତରୁ କୋଉଟି ସତ,
ତାର ବୁଦ୍ଧିବଳ ଯହିଁ ଯେତେ ଅଛି
ଖୋଜି ଦିନରାତି ହେଲାଣି ହତ ।
ପରମାଣୁଟିରେ ସାଇତି ଦେଲା ତ
ଲୁଚିଲା ରୂପକୁ ଦେଖିଲା କରି,
ବଡ଼ ସନ୍ଦେହରେ ପକାଇ ଦେଲା ତ
ମନରୁ ଏ ଦ୍ୱନ୍ଦ୍ୱ ଯିବ କପରି ?
ପରମାଣୁଟାକୁ ଭାଙ୍ଗି ତ ଦେଲାଣି
ଆକାର ଗୋଟିଏ ଦେଇ ଦେଖାଇ,
ଭାଙ୍ଗିଗଲେ ପରା ପ୍ରଳୟ ଆସିଲା
କିଏ ବା କୋଉଠି ରହିଲା ଯାଇ ?
ପୁଣି ନିରାକାର ଆସିଲା ମନକୁ
ଆକାଶଶୂନର ଅସୀମ ମୂଳ,
ସେଇଥିରୁ ଗଢ଼େ ସସୀମ ସଂସାର
କଳ୍ପନା ବାସ୍ତବ କେ ନୁହେଁ ଭୁଲ ।
ବଳରାମ କ'ଣ ହଳଟିଏ ଧରି
ଗାଈଚରା ସଙ୍ଗେ କରିବେ ଚାଷ,
ମାନବ-ସମାଜ ବଣ ବର୍ଜିବ
କୃଷକର ସୁଖେ କରିବ ବାସ ?
ବଣ ଜଙ୍ଗଲ ତ ସଫା ସାରି ଗଲା
ଧରଣୀ ଦେହ ତ ଦିଶିବ ସଦା,
ଖାଇବା ପିଇବା ପାଇଁକି ଏଥର
କୃଷକରାକୁ କି କରିବ ଫନ୍ଦା ?

ଆଦିମ ଅସଭ୍ୟ          ଯିବେ ସତ୍ରୁ କାହିଁ ?
ତାଙ୍କର ଜୀବିକା କଅଣ ହେବ ?
ବେଦାବେଦ ଭୁଲି          ଶିକ୍ଷା ଓ ସଂସ୍କାର
ସେମାନଙ୍କୁ ଯାଚି କିଏ ସେ ଦେବ ?
ପ୍ରଗୃଶବ ନାହିଁ          ନୂଆ ଧର୍ମଟିଏ
ଆର୍ଯ୍ୟ ଅନାର୍ଯ୍ୟଙ୍କୁ ମିଶାଇ କରି,
ଆର୍ଯ୍ୟର ଧରମ          ଆର୍ଯ୍ୟର ଗୌରବ
ସଂସାରେ ସମାଜେ ଦେବନି ଭରି ?
ଯଜ୍ଞେ ପଶୁବଧ          ଦେଖି କରି ତୁମେ
ଛାଡ଼ିଥିଲ ପରା ରଜାର ସୁଖ,
ପୁଅ ଭାର୍ଯ୍ୟା ବର୍ଜି          ପଶିଲ ଯୋଗାରେ
କପରି ଭୁଲିଲ ତାଙ୍କର ମୁଖ ?
ହିଂସା ଜଳୁଥିଲ          ଦାଉ ଦାଉ ହୋଇ
ଯଜ୍ଞର ଭିତରେ ଟେକଣ ଶିଖା,
ଅହିଂସା ମନ୍ତ୍ରର          ଫୁଙ୍କିଲ କାନରେ
ସମାଜ ଧରିଲା ନୂତନ ଦୀକ୍ଷା ।
ସିଂହଳ, ଜାପାନ,          ତିବ୍ବତ, ସୁମାତ୍ରା,
ଚୀନ, ଯବ, ବାଲି ସୁଦୂର ଦେଶେ,
ତୁମ ନୂଆ ଧର୍ମ          ପଶିଲା ଘରେ ବ
ଶିଖାଇଲା ମାତ୍ର ଭିକ୍ଷୁର ବେଶେ ।
ସାଗରବେଳାରେ          ନୀଳାଚଳ ଶିରେ
ମଣିକାଞ୍ଚନର ସଂଯୋଗ ପରି,
ଆର୍ଯ୍ୟ ଓ ଅନାର୍ଯ୍ୟ          ଦୁଇ ଧର୍ମ ମିଶି
ଉଡ଼ାଏ କେତନ ଗରବ କରି ।
ଏଇ ଧର୍ମ କ'ଣ          ନୁହେ ସାର ଧର୍ମ
ସବୁରି ଦେହରେ ଅଛ ତ ତୁମେ,
ତୁମ ଛଡ଼ା ଆଉ          କିଏ ସର୍ବମୟ
ବିଶ୍ୱରୂପ କିଏ ମରତ ଭୂମେ !

ଚଣ୍ଡାଶୋକେ କିଏ କଲା ଧର୍ମାଶୋକ
'ବିଜୟଗଡ଼' କିଏ ଦେଲା ଛଡ଼ାଇ,
ଅହିଂସା ପ୍ରଚାର ଭାରତେ ବିଦେଶେ
କୀରତିବାଣୀ କେ ଦେଲା ଉଡ଼ାଇ ?
ମ୍ଳେଚ୍ଛ ସଂହାରିବା ପାଇଁ କି ଖଡ଼ଗ
ଧରିଣ କେ କରେ ଧାଇଁଲା ବେଗେ,
କଳା ଧଳା ଘୋଡ଼ା ଚଢ଼ି ଥିଲା ବେଳେ
କେହ୍ନ କି ଗୋଟିଏ ରହିଲେ ଆଗେ ?
ହାତମୁଦି ଦେଇ ମାଣିକା ଗୁଆଲୀ
ହାତରୁ ଖାଇଲ ବସିଲ ଦହି,
ସେଇ ଦିନଠାରୁ ମାଣିକାପାଟଣା
ବୋଲି ଗାଆଁଟିଏ ଗଲା ତ ରହି ।
ବଡ଼ ଦେଉଳକୁ କରିଅଛ ଘର
ଭାଇ ଭଉଣୀଙ୍କୁ ସଂଗରେ ନେଇ,
କେତେ ପାପୀ ତାପୀ ତାରୁ ନାହିଁ ତୁମେ
ଯୁଗ ଯୁଗ ଧରି ମୁକତି ଦେଇ !
ଜଡ଼ ଦେହ ଧରି ବିନାଶକୁ ବରି
କୋଉ ଅମରତ୍ୱ କଲ ପ୍ରଚାର,
ବ୍ରାହ୍ମଣ ଚଣ୍ଡାଳ ଭେଦ ବାଛିବାକୁ
ରଖିଲ ନାହିଁ ତ କିଛି ବିଚାର !
ପାଣିରେ ଦେଖିଲ ଦେଖୁଁ ତ ହୃଦରୁ
ତୁମରି ରୂପକୁ ନୟନ ଭରି,
ଅକ୍ରୂର ଜୀବନ ଧନ୍ୟ ହେଲା ଆଜ
କଂସ ପରମାୟୁ ଯିବ ତ ସରି ।
ପୃଥିବୀ କାନ୍ଦଣା ବାଜଇ କାନରେ
ବାପ ମାଆ ଖେଦ ପଶିଛି ମନେ,
ଆଉ କି ଜୀଇବେ କଂସ, ଜରାସନ୍ଧ
ଏତେ ଅତ୍ୟାଚାର କରି ଜୀବନେ ?

ଅକ୍ରୂର ଭାବନା ଜାଣିଲେ ଶ୍ରୀକୃଷ୍ଣ
କହିଲେ, "ଅକ୍ରୂର ଟେକାଅ ରଥ,
ଟିକେଟେ ଗାଧୋଇବ ଖରା ବଢ଼ି ଲାଣି
ଚାଲିବା ପରେ ହେ ଗୁଡ଼ାଏ ପଥ ।"
ଶ୍ରୀକୃଷ୍ଣ ବଚନ ଶୁଣିଲା ଯୋଜନା
ବସିଲା ରଥରେ ଚାଲିଲା ଘୋଡ଼ା,
ଘରମୁହାଁ ହୋଇ ଧାଇଁଲେ ଚଞ୍ଚଳ
ଗୋଠ ପିଠିବାକୁ ହେଲାନ ଲୋଡ଼ା ।
ମଥୁରା ସୀମାରେ ପହଞ୍ଚିଲେ ସବୁ
ଦେଖିଲେ ପାଖରେ ଆମ୍ବ ତୋଟାଟି,
ଫୁଲ ଫଳେ ଭରା ପକ୍ଷୀ କଳରବେ
ଭଅଁର ଗୁଞ୍ଜନେ ପଡ଼ୁଛି ଫାଟି ।
ପତ୍ର ଫାଙ୍କେ ଫାଙ୍କେ ପଡ଼ିଅଛି ଖରା
ଶ୍ୟାମଳ ଗଗନେ ସତେ କି ତାରା !
ପବନ ବହୁଛି ଧୀର ଧୀର ହୋଇ
କାହ୍ନ ଦେହକୁ ଛତନ୍ତ୍ରୀ ଟେରେ ।
ବଉଳ ମହକ ଚହଟି ଆସୁଛି
ପତର ମର୍ମର ଶୁଭୁଛି ମିଠା,
ଠାଏ ଠାଏ ସଜ କୁସୁମ ଝଡ଼ିଛି
ଦିଶୁଛି କି ସତେ ଚନ୍ଦନ ଛିଟା ।
କହିଲେ ଶ୍ରୀକୃଷ୍ଣ, "ରଖ ଟିକେ ରଥ
ଆମେ ସବୁ ଏଠି ଆଜକ ରହିବା,
କାଲି ଯାଇ ରଜା ଦର୍ଶନ କରିବୁ
ତୁମେ ରଜା ଆଗେ ହେଅ ଯା କହ ।
ଆସନ୍ତୁ ଗୋପାଳେ ଭେଟିଦ୍ରବ୍ୟ ଘେନ
ସମସ୍ତେ ହୁଅନ୍ତୁ ଏକାଠି ଆସି,
ଶୀତଳାନ୍ତୁ ଦେହ ଛାଇରେ ଟିକିଏ
ଭୋଗନ୍ତୁ ତୋଟାର ମାଧୁରୀରାଶି ।"

ଅକ୍ରୂର ଯେଉଁଠି ଥିଆକଲା ରଥ
ପିତା ମାତା ସହ ଶ୍ରୀକୃଷ୍ଣ ରାମ,
ଓହ୍ଲାଇଲେ ରଥୁଁ ବସିଲେ ତୋଟାରେ
ସତେ କଲା ଗୋରା ଯୋଡ଼ଏ କାମ ।
ଅକ୍ରୂର ହାତକୁ ଧରି ପକାଇଲେ
କହିଲେ ଆଶ୍ୱାସି ଧୀର ବଚନ,
"ରଥ ଘେନ କରି ଯାଅ ହେ ଏଥର
ବୁଝ ଯାଇ ଥରେ କଂସର ମନ ।
କହିବ ଆଣିଲ ଦୁଇ ଭାଇ ଧରି
ତୋଟାରେ ତାହାଙ୍କୁ ଅଛିତ ଛାଡ଼ି,
କାଲି ପ୍ରଭାତରେ ଦର୍ଶନ କରିବେ
ଖେଳିବେ ଲଉଡ଼ି ଧରିଣ ବାଡ଼ି ।
ଗୋପାଳେ ଆସିବେ ଭେଟି କରିବେ
ଦୁଧ ଦହି ଥୋଇ ଚରଣେ ପଡ଼ି,
ନନ୍ଦ ଓ ଯଶୋଦା ଥିବେ ତାଙ୍କ ସଙ୍ଗେ
କୃଷ୍ଣ ବଳରାମ ଦୁହିଁଙ୍କୁ ଧରି ।
ଏତେତକ କହି ଯାଅ ନିଜ ଘରେ
ଆମେ ଦେଖୁଁ ଟିକେ ମଥୁରା ପୁରୀ,
କପଟ ସାଜିତ କଂସ ତା କରିକି
ସରଗ ସଂପଦ ଆଣିଣ ଜୁରି ।"
ଅକ୍ରୂର କୃଷ୍ଣଙ୍କ ମୁହଁକୁ ଅନାଇଁ
କହିଲା ମୁଣ୍ଡରେ ଲଗାଇ କର,
"ତୁମକୁ ଛାଡ଼ି ମୁଁ କାଇଁ ପାରିବ କି ?
ତୁମେ ମୋର ସବୁ ତୁମେ ମୋ ଘର ।
କେତେ ଯୁଗ ଅନ୍ତେ ଅକ୍ରୂର ପାଇଛି
ଶନା ସାଧନାରେ ତୁମ କରୁଣା,
ଏବନା କାହିଁକି ପାଖେ ପାଖେ ରଖି
ଦୂରକୁ ଫେଲୁନ କରୁଛ ଊଣା ?

ଦୟା କରି ଥରେ ଆସ ମୋ ଘରକୁ
ଗୋଡ଼ଧୂଳି ଦେଇ କର ହେ ଧନ୍ୟ,
ଅଧମ ଅକ୍ରୂର ସଂସାର ଭିତରେ
ତୁମ ଭକ୍ତ ବୋଲି ହେଉଛି ଗଣ୍ୟ ।
ବଳରାମ ସଙ୍ଗ ଜନକଜନନୀ
ଆହୁରି ଯେତେକ ଗୋପାଳ ପିଲା,
ସମସ୍ତେ ଗଲେ ହେ ମୋର କୁଡ଼ିଆକୁ
ସମସ୍ତେ ତ ହେବେ ଦାଣ ଶୁଖିଲା ।
ଏଇ ଅନୁରୋଧ କର ବଂଶୀଧର !
ତୁମକୁ ସେବିବ ଅତିଥି କରି,
ମର ଜଗତରୁ ମୁକତ ହୋଇବ
ତୁମରି ଚରଣଧୂଳିକୁ ଧରି ।”
ଅକ୍ରୂର କହିବା ଶୁଣି ଶୁଣି କୃଷ୍ଣ
କହିଲେ ତାହାର କାନ୍ଧକୁ ଧରି,
“ଭାବିଲ କି ମନେ ଆଉ କୋଉ କଥା
ତୁମେ ମୋଠୁଁ ଭିନ୍ନ ହେବ କପରି ?
କଂସ ଗର୍ବ ଧ୍ୱଂସି ପିତାମାତା ତୋଷି
ଯିବି ତୁମ ଘରେ ରାମଙ୍କ ସହ,
କଂସର ମରଣ ନିଶ୍ଚେ ହେବ କାଲି
ଦିନଟିଏ ଧୈର୍ଯ୍ୟ ଧରିଣ ରହ ।”
ଶୁଣିଲା ଶ୍ରୀକୃଷ୍ଣ କଅଁଳ ବଚନ
ଅକ୍ରୂର ଚଳିଲା ରଥକୁ ଘେନ,
କହିଲା କଂସକୁ ହାତ ଯୋଡ଼ି କରି
“କୃଷ୍ଣ ବଳରାମ ଆସିଲେ ବେନି ।
ନନ୍ଦ ଓ ଯଶୋଦା ଗୋପାଳଙ୍କ ସହ
ଆସିଛନ୍ତି ଭେଟି ଦରବ ନେଇ,
କାଲି ସବୁ ଆସି ଦର୍ଶନ କରିବେ
ଯେ ଯାର ଦେଏଣା ଭକ୍ତିରେ ଦେଇ ।

ଗଡ଼ଦ୍ୱାରେ ସବୁ ରୁଣ୍ଡ ହୋଇଛନ୍ତି
ରହିବେ ଏଇନା ମଧୁବନରେ,
ହସ କଉତୁକ ଲାଗିଚି ତାଙ୍କର
କାହାରି ସନ୍ଦେହ ନାହିଁ ମନରେ ।”
ଅକ୍ରୂର ମୁହଁରୁ ଏଇତକ ଶୁଣି
ମନେ ମନେ ଖୁସି ହୋଇଲା କଂସ,
ଭାବି ଚାହିଁଗଲେ ଭେଟିବ କାଇଲି
ମାରିବ ସମୂଳେ ତାହାର ବଂଶ ।
ସଙ୍ଗେ ସଙ୍ଗେ ପୁଣି ପଶିଲା ଚେତନା
ଦଇବ ବାଣୀ କି ହେବନି ସତ ?
ଦେବକୀ ଅଷ୍ଟମ ଗରଭ ପୁଅ ତ
ତା ହାତେ ମୁଁ କ'ଣ ହେବନି ହତ !
ପୁଣି ଭାବେ ମନେ ଏଇନା ତ କୃଷ୍ଣ
ନେଅଁଟ ପିଲାଟା କରିବ କସ,
ଛୁଆ ବିଷଧର ଦାନ୍ତରେ କୋଉଠି
ରହି ନ ଥାଏ କି ମାରଣା ବିଷ ?
ଶତ୍ରୁ ବଡ଼ ହେଉ ଅବା ହେଉ ସାନ
ମଣିବ ଦୁହିଁଙ୍କୁ ସମାନ କରି,
ଆଗରୁ ତାହାଙ୍କୁ ସାବଧାନ ହୋଇ
ଜଗି ବସିଥିବ ଖଡ଼ଗ ଧରି ।
କୃଷ୍ଣଙ୍କୁ ନିଶ୍ଚୟ ମାଲଙ୍କୁ ଲଗାଇ
ମରାଇବ କମ୍ପା ମାରିବ ଧରି,
କିବା ଦୈବ ବାଣୀ ହୋଇଯିବ ସତ
ତା କରେ ମୁଁ ନିଜେ ପଡ଼ିବ ମରି ।
କେହି ନ ପାରିଲେ ଅଛି କୁବଳୟା
ହାତିଟାଏ କ'ଣ ପାରିବ ନାହିଁ ?
ହାତିର ଦାନ୍ତରେ। ଗୁଞ୍ଜାଇଣ ଦେବ
ତା କରୁ ବରତିଯିବ ବା କାହିଁ ?

ପୁଣି ଭାବେ ମନେ ଅଦ୍ଭୁତମୟ ସେ
ତା ହାତୁଁ ତ କେହ୍ନ ଉବୁର ନାହିଁ,
ଅନ୍ତୁଡ଼ଶାଳରେ । ପୂତନା ବଧିଲ
କୋଉ ଉପାୟରେ ତା ଥନ ଖାଇ !
ପାରିଲାର ସବୁ ବୀରଙ୍କୁ ପେଷିଲ
ସକଳେ ତ ମଲେ ତାହାରି କରେ,
କୃଷ୍ଣ ଯେବେ ନଷ୍ଟେ ବସ୍ତୁ ସନାତନ
କେବେ କି କାହାରି ହାତେ ସେ ମରେ !
ନାରଦ ତ କେବେ କହନ୍ତୁ ନ ମିଛ
ସେ କିଆଁ କହନ୍ତେ ମରିବା କଥା ?
ଦେବଙ୍କ ଭିତରେ ବଗୃର ହୋଇଛି
ମରିବ ମୃକର ନାହିଁ ଅନ୍ୟଥା ।
ନାନା ବିଭୀଷିକା ଦେଖିଲ ଆଗରେ
ମନରୁ ଛୁଟିଲ ସବୁ ସାହସ,
ଥୟ ହୋଇ କାହିଁ ରହିପାରେ ନାହିଁ
ଛୁଟିଲ ଧଇର୍ଯ୍ୟ ଲୁଚିଲ ହସ ।
ଆଣ୍ଠୁଏ ଉଚ୍ଚର କଅଁଳ ଶେଯରେ
ନିଦ ମାଡ଼େ ନାହିଁ ଶୁଅଇ ନାହିଁ,
ଚୁହିଁ ଚୁହିଁ କେତେ ସପନ ଦେଖଇ
କୃଷ୍ଣ ସତେ ଆସୁଛନ୍ତି ଗୋଡ଼ାଇ ।
ଜଳକା ହୁଅଇ କିଛି ଦେଖେ ନାହିଁ
ମଣଇ କୃଷ୍ଣଙ୍କୁ ଶମନ ସମ,
କୋଉ ଭଇଜରେ ଅମଡ଼ା ମାଡ଼ଇ
କେବେ ଥିର ହୁଏ ନାହିଁ ତା ମନ ।
ଗବାକ୍ଷ ପାଖରେ ଠିଆ ହୋଇ କେବେ
ଅନାଏଁ ଗଗନ ନିରେଖି କତି,
ତାରଗୁଡ଼ାକ ତ ଆଖିକୁ ଲାଗନ୍ତି
ଜଳନ୍ତା ନିଆଁର ଚବଡ ପରି ।

କେତେବେଳେ ତାକୁ କିଛି ଦିଶେ ନାହିଁ
ବୃକ୍ଷଆଡ଼େ ଖାଲି ଘୋର ଅନ୍ଧାର,
ସେଇଥି ଭିତରେ ଦିଶିଯାଏ କେବେ
ଶ୍ରୀକୃଷ୍ଣ ମୂରତି ଭୀଷଣାକାର ।
ମେଘ ନାହିଁ କାହିଁ ଦେଖଇ ବିଜୁଳି
ଶୁଣେ ଘଡ଼ଘଡ଼ ଥରଇ ଛାତି,
ଖଦ୍ୟୋତିକା ଦେଖି ଡରି ଡରି କରି
ଟାରେ ନାହିଁ ଆଖି ପିଛୁଳା ପାତ ।
ଜୁଳୁଜୁଳା ପୋକ ଉଡ଼ନ୍ତି ଆଗରେ
ନିଆଁ ହୁଳା ଭଳି ବୁଜଇ ଆଖି,
ପବନ ଟିକିଏ ବଢ଼ାଦେଁ ବହିଲେ
ଖିକଲେ ଧରଇ ଶୂନ୍ୟକୁ ଯାକି ।
ପାଖ ଘରୁ କା'ର ଘୁଂଗୁଡ଼ି ଶୁଣିଲେ
ମଣଇ ଚଡ଼କ ପଡ଼ିଲା ପରି !
ରାତି ଥାଉଁ ଥାଉଁ ଦେଖଇ ଆଗରେ
ଭେଦୁଅ ମାସର ପ୍ରଖର ଖରା ।
ତଳପ ଉପର ସୁଗନ୍ଧ କୁସୁମ
ଗନ୍ଧାଏ ପୋଚରା ନଡ଼ାଟା ପରି,
ଶେଯକୁ ରାଗରେ ଗୋଟାଇ ପୋଟାଇ
ଫିଙ୍ଗିଦେଇ ଚଲେ ଦିଅଇ ଦଳି ।
ବିଲେଇଟା ଆସି ଅନ୍ଧକାର ଘରେ
ପଶିଲେ ତା ଆଖି ଉଠଇ ଜଳି,
ମହାବଳ ବାଘ କୋଉଠୁ ଆସିଲା
ବୋଲି ଡରିଯାଇ ଉଠଇ ଥରି ।
ଝଳଇ ଆଟିରେ ଜଳଇ ମଶାଲ
ଦାଉ ଦାଉ ହୋଇ ଦେଖିଲେ ତାହା,
ଭୟରେ ତାହାର ହଂଜା ଉଡ଼ିଯାଏ
ହୁଅଇ କେବଳ ଅନ୍ତରଦାହା ।

କୁକୁର ଶୃଗାଳ ଅକ୍ଟୋପଲ ମସ୍କର
ସାଗର କି ଆଜ ଆସିଲା ମାଡ଼ି !
ମୁଣ୍ଡ ବୁଲିଯାଏ ଚନ୍ଦ୍ରବାଣ ଚାରି
ବସୁଧାରୁ ଯାଏ ଚରଣ ଛାଡ଼ି ।
ଶୂନ୍ୟରେ ଭାସଇ ପଡ଼ିଲ ପଡ଼ିଲ
ବୋଲି କରି ଉଚ୍ଚେ ପାଡ଼ରେ ବୋବାଳି,
ପୁଣି ଚେତା ପଶେ ଦେଖେ ସବୁ ମିଛ
ଖଟରେ ବଞ୍ଚିଛି ଶରୀର ଢାଳି ।
ଜମ୍ବୁଳ୍ପୃଷ୍ଠ ନିତ ଦେଖଇ ସପନେ
କୃଷ୍ଣ ଆସୁଛନ୍ତି ପାଖକୁ ଧାଇଁ,
ଶ୍ରୀତ ଭୁଜଯାକ ପ୍ରସାରି ଅଛନ୍ତି
ଅଧମକୁ କୋଳ କରିବା ପାଇଁ ।
ଚରଣ ପ୍ରାନ୍ତରେ ଦୀନ ଲେଖକକୁ
ଠାଇଁଟିଏ କ'ଣ ସେ ଦେବେ ନାହିଁ ?
ସବୁ ଛାଡ଼ଛୁଡ଼ି ଜୀବନଟାଯାକ
ଛନ୍ଦାଚରଣକୁ ବସିଚ ଗୃହି ।

———

# ମଥୁରା ପ୍ରବେଶ

ଗୋପାଳ ପିଲଙ୍କୁ ଶ୍ରୀକୃଷ୍ଣ କହିଲେ
"ଚାଲ ହେ ମଥୁରା ଦେଖି ଆସିବା,
ଆମ ବଇଜର ରାଜଧାନୀ ପରା
ଏଠା ହାଟରେ କାହିଁ ଖାଲି ବସିବା ?"
ରାମ ବାହାରିଲେ ଆଗଭୁରା ହୋଇ
ଆଉ ସବୁ ଗଲେ ତାଙ୍କ ପଛରେ,
ଖଞ୍ଜଣଲାଟିଏ କୋଉଠେଇ ଥିଲା
ଉଡ଼ିଆସି ବସିଗଲା ଗଛରେ ।
ଭଦଭଦଳିଆ ଚଢ଼େଇ ଯୋଡ଼ାଏ
ବୋବାଇ ବୋବାଇ ଆସିଲେ ଉଡ଼ି,
ଅସ୍ତ ଟିକେ ଖସ ଶୀତୁଳ ପଡ଼ିଲା
ପଶ୍ଚିମରେ ରବି ଯାଇନ ବୁଡ଼ି ।
କୋଇଲି ଗୋଟିଏ ଗାଇଲା କୋଉଠି
ସ୍ୱରଟିକୁ ତାର ଲମ୍ବାଇ ଦେଇ,
ହରିଣ ଗୁଡ଼ାଏ ଧାଇଁଲେ ତାହାରି
ସାନ ବଡ଼ ଛୁଆ ସଙ୍ଗରେ ନେଇ ।
ଶ୍ରୀକୃଷ୍ଣଙ୍କ କରେ ବାଉଁଶ ବଇଁଶୀ
ରାମଙ୍କ ହାତରେ ଶିଙ୍ଗା ଗୋଟିଏ,
ଅଉ ସବୁ ପିଲା ଧରିଛନ୍ତି ବାଡ଼ି
ଶୋଭାରେ ଜିଣୁଛି କାହାକୁ କିଏ !

କୃଷ୍ଣ ପିନ୍ଧିଛନ୍ତି ହଳଦିଆ ଲୁଗା
ରାମଙ୍କ ଦେହରେ ନୀଳ ବସନ,
କଳା ଧଳା ଦେହେ ମାନୁଛି ସୁନ୍ଦର
ମୁହଁ ହସ ହସ ପ୍ରଫୁଲ୍ଲ ମନ ।
କାଳିଆ ଦେହକୁ ସୁନା ଜରିଫୁଲ
ମାନୁଛି ସୁନ୍ଦର ଦିଶୁଛି ଭଲ,
କଳା ଶାଢ଼ୀ ଦେହେ ସୁନା ଅଳଙ୍କାର
ଯତନରେ ବୁଣାହୋଇଛି ପରା !
ଶିର ଶିଖୀପୁଚ୍ଛେ ନାଲି ଆଉ ଖରା
ପଡ଼ି ଛିଡ଼କଇ ଆଲୋକରାଶି,
ରହୁଁଲ ବେଳକୁ ଆଖି ଝଲସଇ
ସରଗ ସୁଷମା ଉଠଇ ଭାସି ।
ବଳରାମଙ୍କର ଶଙ୍ଖ ସମ ଦେହେ
ଜଡ଼ିଛି ଯତନେ ନୀଳ ବସନ,
ନେଳିଆ ଦୋସଡ଼ା କାନ୍ଧରେ ପଡ଼ିଛି
ହସ ହସ ମୁହେଁ ଦିଶେ ଦଶନ ।
ଆଉ ସବୁ ପିଲା କାଛୁ ପିନ୍ଧିଛନ୍ତି
ହଳଦୀ ମଡ଼ାଇ ପଖାଳକରା,
ଠାଏ ଠାଏ ରଙ୍ଗ ଉଡ଼ି ଯାଇଅଛି
ବାଜି ବାଜି କରି ଉଜ୍ଜ୍ୱଳ ଖରା ।
ସବୁରି ଗଳାରେ ମୋଟା ଫୁଲହାର
ମଉଳିଯାଇଛି ଖର ଆତପେ,
ଝାଉଁଳା ମୁହଁରେ ମହ୍ଳ ସୁଷମା
ଲୁଚି ଲୁଚୁ ନାହିଁ ଦିଶୁଛି ଅଳ୍ପେ ।
ସମସ୍ତଙ୍କ କରେ ଶୋଭେ ରୂପା ଖଡ଼ୁ
କହୁଣୀ ଉପରେ ରୂପା କଙ୍କଣ,
ଅଣ୍ଟାରେ ଅଣ୍ଟାରେ କଂସାର ଘାଗୁଡ଼
ହଲି ବାଜି କରେ ମୃଦୁ ନିକ୍ୱଣ ।

ବାବ୍‌ରି କୁନ୍ତଳ ଆଲୁବାଲୁ ହୋଇ
ପଡ଼ଚି କାନ୍ଧରେ ଘୋଡ଼ାଇ କାନ,
ବାଟ ଚାଲୁ ଚାଲୁ ଗାଇ ଦେଉଛନ୍ତି
ମିଳାଉ ଲଳିତ ମଧୁର ଗାନ ।
ମଝିରେ ମଝିରେ ବାଇ ଦେଉଛନ୍ତି
ଶ୍ରୀକୃଷ୍ଣ ବଇଁଶୀ କଅଳ କରି,
ମଥୁରା ପଥରେ ଗନ୍ଧର୍ବ ରାଇଜ
ଆସିଲା କି ଆଉ ସ୍ୱରୂପ ଧରି !
ରାମ ଯେତେବେଳେ ବଜାଇ ଦିଅନ୍ତି
ଶିଙ୍ଗାଟାକୁ ଫୁଙ୍କି ଉର୍ଦ୍ଧ୍ୱକୁ ଧରି,
ବସୁଧା ସହିତ ସ୍ଥାବର ଜଙ୍ଗମ
ଥର ଥର ଥରେ ଉଠନ୍ତି ଥରି ।
ଆଗ ପଛ ହୋଇ ଚାଲିଗଲେ ସବୁ
ପହଞ୍ଚିଲେ ଗଡ଼ ଦୁଆରେ ଯାଇ,
ଦେଖିଲେ ପାଚେରୀ ଗଗନ ଛୁଇଁଚି
ବେକ ଭାଙ୍ଗିଲେ ବି ହେଉନି ଚାହିଁ ।
ଦୁଆରେ ଲାଗିଚି ଭାରି ମଜଭୁତ
ଓସାରିଆ କଂସା କବାଟ ଯୋଡ଼ା,
ତାହାର ଭିତରେ ଯାଆନ୍ତି ଆସନ୍ତି
ଯୋଡ଼ା ଯୋଡ଼ା ହୋଇ ରଥ ଓ ଘୋଡ଼ା ।
ପାଚେରୀକୁ ବେଢ଼ି- ଅଛି ଗଡ଼ଖାଇ
ଓସାର ଗଭୀର କାହାକ ଯିବ,
ମାଳ ମାଳ ହୋଇ ପହଁରୁ ଅଛନ୍ତି
କମ୍ଭୀର ମଗରେ ହିଂସୁକ ଜୀବ ।
ପାଣି ନିର୍ମଳ ଦରପଣ ପରି
ତହିଁରେ ଦିଶୁଚି ସବୁରି ଛାଇ,
ବଡ଼ ବଡ଼ ଗଛ କୂଳରେ ଅଛନ୍ତି
ଗଡ଼ଖାଇ ଗଭୀର ପାଣିକୁ ଚାହିଁ ।

ପବନ ବହୁଚି ସନସନ ହୋଇ
ଲହରୀ ଖେଳୁଚି ତହିଁକ ଚାହିଁ,
ପାଣି ତଳେ ତଳେ ନାଚୁଚି ଭାସୁଚି
ଡାଳେ ଡାଳେ ଡାଳେ ଗଛର ଛାଇ ।
ପାଣିକୁ ଚାହିଁଲେ ଗଗନ ଦିଶଇ
କେଉଁ ଗଭୀରର ଅତଳ ତଳେ,
ତହିଁରେ ତପନ ମଲ୍ଲଜହ୍ନ ମେଘ
ନାଚନ୍ତି ଖେଳନ୍ତି ଯେ ଯାର ଥଳେ ।
ତଳେ ଅନ୍ତରୀକ୍ଷ ଉପରେ ଗଗନ
ଯୋଡ଼ାଏ ଆକାଶ କଏ ବା କଲା,
ଊର୍ଦ୍ଧ୍ୱେ ଅଧେ ଶୂନ୍ୟ ଖାଲି ମହାଶୂନ୍ୟ
ମଝିରେ ଧରଣୀ ବଚସ ଭଲ !
ହଂସ ହଂସବଳୀ ପହଁରୁ ଅଛନ୍ତି
ପିଲାଙ୍କ କାଗଜ ବୋଇତ ପରି,
ତାଙ୍କ ପ୍ରତିରୂପ ଦିଶୁଚି ପାଣିରେ
ତରଳ ହିଲ୍ଲୋଳେ ଶୁକଳ କରି ।
ମାଛ ଓ କଇଁଛ ଯେ ଯାହା ସୁଖରେ
ଖେଳନ୍ତି ବୁଲନ୍ତି ଉପରେ ଭାସି,
କୂଳରେ କୂଳରେ ମେଞ୍ଚା ମେଞ୍ଚା ହୋଇ
ଗଡ଼ୁଚି ଭାଂଗୁଚି ଫୋଟକାରାଶି ।
ପାଣି ପାଖେ ପାଖେ ବୁଦବୁଦକିଆ
ଜଙ୍ଗଲ ଦିଶୁଚି ଶାଗୁଆ ହୋଇ,
ଫୁଲେ ଫଳେ ଗଛ ନଇଁ ପଡ଼ିଅଛି
ଶୋଭା ପସରାକୁ ମେଲାଇ ଥୋଇ ।
ମିରଗ ସମ୍ବର ଦଳ ଦଳ ହୋଇ
ବୁଲୁଛନ୍ତି ସୁଖେ ପାକୁଳ କରି,
କଏ କେତେବେଳେ ପଳାଇଯାଉଚି
ମଣିଷ ଛାଇକୁ ଚମକି ଡରି ।

ଗଡ଼ର ଭିତରେ          ପଶିଲେ ଦେଖିଲେ
    ପଶାପାଲି ପରି ପଡ଼ିଛି ଛକ,
ଗଳିଆଡ଼ପାକ          ପଡ଼ିଛି ସଡ଼କ
    ସବୁ ଓସାରିଆ ସିଧାସଳଖ ।
ସଡ଼କର କଡ଼େ          ଅଣଓସାରିଆ
    ହସୁଛି ସୁନ୍ଦର କୁସୁମ-ବନ,
ମଉସୁମୀ ଫୁଲ-          ଗଣି ଫୁଟିଅଛି
    ହାଉଯାଉ ହୋଇ ମୋହୁଛି ମନ ।
କେତୁ କଂବଚନ          ଭଅଁର ଗୋଟିଏ
    କବା ପାରିବଣ୍ଣ ଉଡ଼ୁନ କାହିଁ !
ଦିଶେ ମନୋହର          ସିନା ନୟନକୁ
    ତହିଁରେ ତ ମହୁ ସୁଗନ୍ଧ ନାହିଁ ।
ବଗିଚାକୁ ଲାଗି          ଖୁଣ୍ଟେ ଖୁଣ୍ଟେ ଜଳେ
    ନାନା ବରଣର ଆଲୋକରାଶି,
ମନମତାଣିଆ          କୁସୁମ-ସୁଷମା
    ନୟନେ ନୟନେ ଉଠଇ ଭାସି ।
ଦୁଆରେ ଦୁଆରେ          ମଞ୍ଚାଟିଏ ଟିଏ
    ତହିଁରେ ମାଡ଼ିଛି କୁସମ-ଲତା,
ଫୁଲ ସଂଭାରରେ          ଫାଟି ପଡ଼ୁଅଛି
    ନନ୍ଦନ ବନର ସୁଷମ ସତ୍ତା ।
ମଝିରେ ମଝିରେ          ଠିଆ ହୋଇଛନ୍ତି
    ଲଣ୍ଡାଛଡ଼ ହୋଇ ଚକା ପାଦପ,
ସବୁଜ ସତେଜ          ଆଉ ଗହଳିଆ
    ଭେଦ ପାରୁ ନାହିଁ ତାକୁ ଆତପ ।
ଠାଏ ଠାଏ ଅଛି          ପ୍ରଶସ୍ତ ଉଦ୍ୟାନ
    ଶ୍ରୀରାମ ସଂତାପ ନାଶିବା ପାଇଁ,
ସଂଜ ବୁଡ଼ୁ ବୁଡ଼ୁ          ନଗରବାସିଏ
    ଦଳ ଦଳ ହୋଇ ବୁଲନ୍ତି ଯାଇ ।

ବଗିଚା ମନ୍ଦିରେ ସରଟିଏ ଟିଏ
ମର୍ମର ପଥରେ ପାହାଚ ବନ୍ଧା,
ସେଠିକି ଯିବାକୁ ବାଟରେ ବାଟରେ
ନାନାବିଧ ପ୍ରକାର ଗୋଲକଧନ୍ଦା ।
ଛକରେ ଛକରେ କୂଅଟିଏ ଟିଏ
ତହିଁରେ ନିର୍ମଳ ଶୀତଳ ଜଳ,
ସବୁବେଳେ ତହୁଁ ପାଣି ନେଉଛନ୍ତି
ମଥୁରା ରମଣୀ ଦଳକୁ ଦଳ ।
କାହାରି ମୁଣ୍ଡରେ ନାହିଁ ତ ଓଢ଼ଣା
ଦିଶୁଛି ବଦନ ଶଶାଙ୍କ ପରି,
ଚିକ୍କଣ ଚିକୁର ଶୋଭେ ମନୋହର
ମୁକୁଳା ପିଠିରେ ପଡ଼ିଛି ଝୁଲି ।
ସମସ୍ତେ ଦିହାଳ ସୁନା ପରି ଗୋରା
ବସନେ ଭୂଷଣେ ଅଧିକ ଓଜରା,
ମଣି କାଞ୍ଚନର ଅଳଙ୍କାର ପିନ୍ଧି
ଜଣନ୍ତି ସରଗପୁର ଅପ୍ସରା ।
ଯାଦବ କି ଆଉ ମାନବ ନୁହନ୍ତି
ଆସିଲେ କି ଆଉ ସରଗ ଛାଡ଼ି,
ସାର ସୁଷମାକୁ ଉଜାଡ଼ି ଆଣି କି
ମଥୁରାପୁରକୁ ବସିଲେ ମାଡ଼ି !
ମୁହଁରେ ମୁହଁରେ ଫୁଟି ପଡ଼ୁଅଛି
କ୍ଷତ୍ରିୟ ତେଜର ଉଜ୍ଜ୍ୱଳ ବୀର୍ଯ୍ୟ,
ପ୍ରଖର ଚାହାଣି ଗମ୍ଭୀର ବଚନ
ଆଖିରେ ଆଖିରେ ଧୀର ଗାମ୍ଭୀର୍ଯ୍ୟ ।
ଚାଲି ଯାଉ ଯାଉ ଗାଇ ଦେଉଛନ୍ତି
ଟାହୁଲି ଟାପରା ଡଗଡ଼ମାଳ,
କିଏ ସେ ପ୍ରଉଢ଼ା କିଏ ସେ ଯୁବତୀ
କିଏ ବା ସୁନ୍ଦରୀ କୁଆଁରୀ ବାଳୀ ।

ସବୁରି ମୁହଁରେ ଉଦାସ ହରଷ-
ନୟନ-କଣରେ ଆତ୍ମଗୃହାଣୀ,
କଥାରେ କଥାରେ ଉଛୁଳି ପଡ଼ଇ
ଧନୁର୍ଘୋଷ ରଙ୍ଗସଭା କାହାଣୀ ।
ଯାହା କରିବାକୁ ଦେଖିଲେ କପଟ
ସାଜିଛ ନଗର ବରଷ କରି,
ମଥୁରା ତ ଆଜ ହସି ଉଠିଚ ଲୋ
ଅମରାବତୀର ଶିରୀକୁ ଧରି ।
ସ୍ୱର୍ଗ ବନ୍ଧାଣୀକୁ ଖଟାଇ ଦେଲୁ କି
ନଗରୀ ଗୋଟିକ ସାଜିବା ପାଇଁ ?
କିବା ମୟଦୈତ୍ୟେ ମଜାଇଣ ଦେଲୁ
କୋଉଠି ଟିକିଏ ଖୁଣ ତ ନାହିଁ ।
କୃଷ୍ଣ ବଳରାମେ ଦେଖିଲେ ଯାଦବେ
ଲଖାଇ ଦେଲେ ତ ତାଙ୍କଠି ଆଖି,
ଇଚ୍ଛାକଲେ ସବୁ ନିଜ ସର୍ମ ଗୁଡ଼
ଧରନ୍ତେ ଦୁହିଁଙ୍କୁ ଗୁଡରେ ଯାକି ।
କୁମାରୀ ମନରେ ପ୍ରଣୟ ପିପାସା
ଲୁଚକାଳି ଖେଳ ଖେଳିଲା ହସି,
ଯୁବତୀ ଯେତେକ ଭାଳିଲେ ମନରେ
ହୁଅନ୍ତେଇ ହେଲେ ସମବୟସୀ ।
ଆଖିରେ କାହାର ପଡ଼ୁନି ପିଛୁଳା
ନ ଆସିବା ଯାଏ ଲୋତକ ଝରି,
କେବେ କେତେବେଳେ ଅଜାଣତରେ କା
ଯାଉଥାଏ ପଟା ମନକୁ ଚଢ଼ି ।
କିଏ କହିଦେଲୁ ବଡ଼ ପାଟି କରି
"ଆସ ଗୋ ଦେଖିବ ସୁନ୍ଦର ପୁଅ",
ଶୁଣିଲେ ଯୋଉନା ଧାଇଁଲେ ଆଗହେ
ଦାଣ୍ଡରେ ବହିଲା ରମଣୀ-ସୁଅ ।

କଏ ବସିଥିଲା ଜୁଡ଼ା ବାନ୍ଧିବାକୁ
ଚଇଳ ପାନିଆ ଧରିଣ କରେ,
ଧାଇଁଲା ଉତ୍ସନ୍ନେ ଦେଖିବା ପାଇଁକି
କେଶ ପଡ଼ିଅଛି ପିଠି ଉପରେ ।
କଏ ବସିଥିଲା ଦୋଅଡ଼ା ଖାଇବ
ଶୁଣିଲା କାନରେ ଉଠିଲା ଛାଡ଼ି,
କଂସାଟି ଭିତରେ ହାତ ବୁଡ଼ାଇଣ
ଚଞ୍ଚଳ ତହିଁରୁ ନେଲା ତ କାଢ଼ି ।
ଧାଇଁଲା ସଂଖୁଡ଼ି ହାତଟାକୁ ଟେକି
ଦେଖିଲା ବାଟରେ ଯୁଗଳ ଭାଇ,
ଭୁଲିଗଲା ତାର ଆଉ ସବୁ କଥା
ତାଙ୍କୁ ହିଁ କେବଳ ରହିଲା ଚାହିଁ ।
କଏ ତା ପୁଅକୁ ଦେଉଥିଲା ଥନ
ଆସିଲା ତାହାକୁ ପକାଇ କରି,
ଦେଖିଲା ଯାଆନ୍ତି ରାମ କୃଷ୍ଣ ଦୁହେଁ
ଭାଳିଲା ଅଧର-ଚୁମ୍ବନ ଧରି ।
ଶୋଭା-ସଂପଦର ପରଶଂସା କରି
ମଥୁରା ଚୋଟାକ ପଡ଼ିଲା ହରି,
ସକଳେ କହିଲେ "ପୁଅ ଯୋଡ଼ିକ ତ
ତନି ପୁର ଶିରୀ ଅଛନ୍ତି ଜୁରି ।
କଏ ହେଉଥିଲା ବସି ବେଶଭୂଷା
ଫିଙ୍ଗିଲା ଭୂଷଣ ଧାଇଁଲା ଖରେ,
ଗୋଟିଏ ଆଖିରେ କଜଳ ଦେଇଚି
କଜଳପାତିଟିକୁ ଧରିଣ କରେ ।
ବସନ କେ କୁଞ୍ଚି ପିନ୍ଧୁଥିଲା ଘରେ
ଧାଇଁଲା ବାଟକୁ ଦେଖିବା ପାଇଁ,
ଦେହରେ ବସନ ନାହିଁ ଅଣ୍ଟାଯାଏ
ସିଆଡ଼େ ତାହାର ନଜର ନାହିଁ ।

ଯାଦବ ରମଣୀ ମୁକୁଳା ସୁଷମା
ଦେଖି କାହା ଆଖି ହେବନ ମୁଗ୍ଧ ?
ଫୁଟି ସେ ସୌନ୍ଦର୍ଯ୍ୟ ଲୁଚିଲାଚି ଗଲେ,
କାହାର ହୃଦୟ ହେବନ କ୍ଷୁବ୍ଧ ?
ସରଗର ଚାନ୍ଦ ଓହ୍ଲାଇ ଆସି କ
ଖେଳାଇ ମଥୁରା ଦାଣ୍ଡରେ ହସି !
କବା ଅସ୍ତଗାମୀ ତପନ ଲାଜରେ
ବାଟ ଭୁଲିଭୁଲି ପଡ଼ିଲେ ଖସି !
ଶହେ ଇନ୍ଦ୍ରଧନୁ କୋଉଠୁଁ ଆସିଲେ
ହସି ହସି ସବୁ ହେଲେ ଏକାଠି,
କଏ ସୌଦାମିନୀ ଚଂଚଳ କାନ୍ତିକୁ
ଯାଦବଙ୍କ ମଧ୍ୟେ ଦେଲାଛି ବାଂଟି !
ସବୁ ନୀଳ ବାସେ ସୁନା ଗୋରା ଦେହ
ଅଳପ ଅଳପ ଦିଶୁଛ ଫୁଟି,
ବସନଟାଯାକ ଦିଶେ ଝଲମଲ
କେକୀ କଂଠ ରଂଗ ଉପରେ ଉଠି ।
ଅରୁଣ ଅଧରେ ମଲ୍ଲୀ ଫୁଲ ପରି
ଫୁଟିଚି ଅମଳ ଧବଳ ହାସ,
ଆଖି କଣୁଁ କଣୁଁ ବହି ପଡ଼ୁଅଛୁ
ପ୍ରଣୟ ମଧୁର କରୁଣ ରସ ।
ଅପରାଜିତାର ସ୍ନିଗ୍ଧ ନୀଳ ରଂଗ
ବୋଳି ହୋଇଅଛୁ କାହାର ଆଖି,
ପାଚିଲା ଆ ଦୁଇ ଅଧର ପ୍ରାନ୍ତରେ
ରକ୍ତିମା ଦାଗ ରହିଚି ଲାଖି ।
ଗଣ୍ଡରେ ଗଣ୍ଡରେ ଦିଶିଯାଉଅଛୁ
ଅଳପ ଅଳପ ଟୋଲାପୀ ରଂଗ,
ନୁହଇ ଚଂଚଳ ନୁହେ ଅତି ସ୍ଥିର
ଗେଡ଼ା ଡେଂଗା ମିଶି ହୋଇଛି ଅଂଗ ।

ନିଶ୍ୱାସ ପବନେ ପଡ଼ୁଛି ଉଡ଼ୁଛି
ଅଳପ ଅଳପ ମୁକୁଳା ଗୁନ୍ତ,
ତାହା ସଂଗେ ସଂଗେ ଚାଲେ ତାଳେ କୁଚ
ଯୁଗଳ ଅନ୍ତନ୍ତ ନାଚରେ ମାତ ।
ଆଗକୁ ଆଗକୁ ଚାଲିଗଲେ କୃଷ୍ଣ
ସଂଗରେ ଗୋପାଳ ପିଲା ଓ ଭାଇ,
ମାଇପେ ମିଣିପେ ଧାଇଁଲେ ପଛରେ
ପେଲାପେଲି ହୋଇ ଦେଖିବା ପାଇଁ ।
କେ କା'କୁ ପଚାରେ ଏଇ କଲେ ସତେ
ଦେବକୀର ପୁଅ ଥିଲାଟି ଗୋପେ !
ବସୁଦେବ ନେଇ ଗୁପ୍ତେ ଆସିଥିଲା
ଡରି ମରି କରି କଂସର କୋପେ ?
ଆହା ଦେବକୀର କୋଉ ଭାଗ୍ୟ ସତେ
ପାଇଥିଲା ତାକୁ ତନୟ କରି,
ଜନ୍ମୁଟିଏ ହେଲେ ଥନ ଦେଇ ନାହିଁ
ଗେଲ କରି ନାହିଁ କୋଳରେ ଧରି !
ମାଆ ଗୁନ୍ତ ତାର କପରି ସହିଲା
ପୁଅ ବିରହରେ ଗଲାନି ଫାଟି ?
କିଏ ଜାଣେ ତାର କଲିଜା ଭିତର
କେଡ଼ାହେଁ ବା ହେଉ ନ ଥିବ ଘାଂଟି !
କଂସଟା ଲେ ସତେ କେଡ଼େ ନିରଦୟ
କପରି ମାରିବ ଏ ପରି ପୁଅ,
ମଣିଷଟି ସିଏ ଗୁନ୍ତ କ'ଣ ନାହିଁ
ଆଖିରେ କପରି ନାହିଁ କି ଲୁହ !
ଆଗରେ ଶ୍ରୀକୃଷ୍ଣ ଦେଖିଲେ ରଜକ
ପିଠିରେ ପଡ଼ିଛି ଗଣ୍ଠିଲିଟାଏ,
ପଚାରିଲେ ତାକୁ ହସି ହସି କରି
"କଅଣ ନେଉଛୁ ଦେଖା ଟିକିଏ ।"

ଧୋବା ଉତ୍ତରିଲା, "ରାଜା ରଜକ ମୁଁ
ନେଉଛି ଉଆସେ ବସନ କାଚି",
କହିଲେ ଶ୍ରୀକୃଷ୍ଣ, "ରଜା ଭଣଜା ମୁଁ
ଦେବୁ କି ହ'ଯୋଡ଼ା ଲୁଗା ତୁ ବାଛି ?
ଆମକୁ ଅନାଇଁ ଲୁଗା ବାଛି ଦେବୁ
ମାନିବ ସେଥିରେ ଦୁଇ ଭାଇଙ୍କୁ,
ନ ହେଲେ ଦେଖା ତୁ ଆମେ ବାଛିନେଉ
ଏ କଥା ରାଜାକୁ କହିଯାଇ ତୁ ।"
ରଜକ ରାଗରେ କହିଲା ଗରଜି
"କେଡ଼େ ଗରବରେ ଗଉଡ଼ ଟୋକା !
ରାଜାର ଭଣଜା ବୋଲି ତୁ କହୁଚୁ
ମଣିଲୁ କି ଆଉ ମୋତେ ତୁ ବୋକା !
ଜାଣି ନାହୁଁ ପରା ରଜା ଅଣାଇଛି
ତୋତେ ରେ ଏଠେଇ ମାରିବା ପାଇଁ,
କେଉଁ ମୁହାଁସରେ କହିଲୁ କଥାଟା
ଲୁଗା ବାଛିନେବ ଆସିଚି ଧାଇଁ ।
ଛାଡ଼ିଦେ ରେ ବାଟ ଯାଏ ମୁଁ ଚଂଚଳ
ନ ହେଲେ ଏଇନା ଦେବି ସେ କଷି,
ଫାଟିଗଲେ ଗାଲ ସଂଭାଳିବୁଟି କି
କାହିଁକି ବକିଲେ କାନ୍ଦିବୁ ବସି ?
କାଲିଯାଏ ଟିକେ ରହିଥା ବରଞ୍ଚ
ରଜା ମାଲ ହାତେ ଦେବ ମରାଇ,
ଆଉ କି ଏଠୁ ଖସିପାରିବୁ ରେ
ଗୋପପୁର ଯାଏ ଯିବୁ ପଳାଇ ?"
ଧୋବା କଥା ଶୁଣି ରାଗିଗଲେ କୃଷ୍ଣ
ମାଇଲେ ଜାବଡ଼ା ଛିଡ଼ିଲା ମୁଣ୍ଡ,
ସେ ଥିଲେ ବାଟରେ ଦଉଡ଼ି ଆସିଲେ
କୃଷ୍ଣ ସଖାପାଖେ ହୋଇଲେ ରୁଣ୍ଡ ।

ବଳରାମ ହସି ଗଣ୍ଡି ରା ଫିଟାଇ
ବାଛିନେଲେ ନୀଳ ପୀତ ବସନ,
ଆଉ ଯେତେ ଥିଲା ବାଂଟିଦେଲେ ସବୁ
ପିନ୍ଧିଲେ ଗୋପାଳେ କରି ଯତନ ।
ରଜା ବେଶକାରୀ ଯାଉଥିଲା ବାଟେ
ଆସିଲା ପାଖକୁ ଭକତ କରି,
କହିଲା ବଡଯେ୍ୟ ଗୋଡ଼ ତଳେ ବସି
ବେନି କରେ ତାଙ୍କ ଚରଣ ଧରି ।
"ଦିଅ ଅଜ୍ଞା ପ୍ରଭୁ ! ପିନ୍ଧାଇବି ଲୁଗା
ମନକୁ ମନାଇ ସୁନ୍ଦର କରି,
ରଜା ବେଶକାରୀ ରଜାକୁ ମୁଁ ନିତି
ପିନ୍ଧାଇ ଦିଅଇ ବାସ ଯେତେକ ।"
କୃଷ୍ଣ ବଳରାମ ହସିଲେ ଟିକଏ
ବସନ ବଢ଼ାଇ ଦେଲେ ତା ହାତେ,
ତାଙ୍କ ଅନୁଗ୍ରହ ପାଇ ବେଶକାରୀ
ଲଗାଇଲା ବାସ ପନ୍ଧଲେ ମାଥେ ।
କୁଂଚି ସାଉଁଳିଲା ମାଟିମୁଠି କରି
ପିନ୍ଧାଇଲା ବାସ କରି ସୁଷମ,
କୃଷ୍ଣେ ପୀତ ରାମେ ପିନ୍ଧାଇଲା ନୀଳ
ଦିଶିଲେ ଦୁଇଟି ମଦନ ସମ ।
ପଇତାର ପରି ଦୋସଡ଼ା ପାତଳା
କାନ୍ଧ ପରେ ଅଧେ ମେଲାଇ କରି,
କୃଷ୍ଣ ନଦଦେହେ ପୀତ ବସନ ଦିଶିଲା
କଳା ମେଘେ ଇନ୍ଦ୍ରଧନୁଟି ପରି ।
ଧବଳ ଦେହରେ ନୀଳ ଉତ୍ତରୀୟ
ଜାହ୍ନବୀ ସ୍ରୋତରେ ଯମୁନା ସତେ,
ଶିବ କଣ୍ଠେ କଳା ନାଗ କବା ଦେଖିଲେ
ମନରେ ଏସନ ହୁଅଇ ପ୍ରତେ ।

ଚକ୍‌କଣ କାନ୍ତକୁ           କୁଞ୍ଜକର ବାସ
ଆଉ ଖର ପଡ଼ ଢଗିଲ ଝଳ,
ଶତ ରବ ଚନ୍ଦ୍ର           ସହସ୍ର ତାରକା
ଏକାବେଳକରେ ଉଠିଲେ ଜଳ ।
ମଥୁରାବାସିଏ           ଦେଖିଲେ ସୁଷମା
ରହିଲେ ମଉନ କଂସକୁ ଡର,
ଭିତରେ କଲଜା           ଦହଗଂଜ ହୋଇ
ଭାବଇ କଂସଟା ମରୁ କପର !
ଜଣକୁ କଲ୍ୟାଣ           ଆଉ ଜଣକୁ ତ
ଅଭିଶାପ ହୁଏ ସଂସାର ରୀତ,
ଜାଣି ଶୁଣି ଦୋଷ           କର ଯେ ଯାଆନ୍ତି
ବିଡ଼ମ୍ବନା କ'ଣ ନୁହେ ଏ ରୀତ ?
ସଂସାରେ କଲ୍ୟାଣ           ଫଳଇ କ ଖାଲ
ଅଭିଶାପ କ'ଣ ଫଳଇ ନାହିଁ ?
ଶହେ ମୁହେଁ ଶହେ           ଅକଲ୍ୟାଣ ଶୁଣି
କଂସର କ କଷ୍ଟ ହେଉଚି କାହିଁ !
କୃଷ୍ଣ ବେଶକାରୀ           ମୁହଁକୁ ଅନାଇଁ
ଖୁସି ହୋଇକର କଲ୍ୟାଣ କଲେ,
"ପୁଅଝିଅ ଧନ           ଦଉଲତ ପାଆ
ନୀରୋଗ ହୋଇ ତୁ ରହ ରେ ଭଲେ ।
ହସି ଖେଳି କର           ରହ ରେ ସଂସାରେ
ସୁଖେ କଟିଯାଉ ତୋହର ଦନ,
ମୋହଠାରେ ତୋର           ରହୁ ସ୍ନେହ ଭକ୍ତ
ଅନ୍ତେ ମୋ ଦେହରେ ହୁଅ ରେ ଲୀନ ।"
ଏଇତକ କହ           ରାମକୃଷ୍ଣ ଦୁହେଁ
ଚଳଗଲେ ଆଗେ ଗୋପାଳେ ପଛେ,
ସବୁଗୁଡ଼ିଙ୍କର           ସମାନ ବୟସ
ଯାଉଁ ଯାଉଁ କଏ କା ବଳ କଚ୍ଛି ।

ମୁଣ୍ଡେଁ ଗାଲଭୁଷା        ଅଂଠାରେ ଘାଗୁଡ଼ି
    ପାଦରେ ନୂପୁର ଗଉଡ଼ ପିଲା,
ହାତେ ବାଡ଼ି ଧରି        ମାଲକଚ୍ଛ ମାରି
    ଲଉଡ଼ି ବୁଲାଇ ମାରନ୍ତି ଚିରା ।
ଭଦଭଦାଳିଆ        ଚଢ଼େଇର ପକ୍ଷୀ
    କାନେ ଖୋସିଛନ୍ତି ଯୋଡ଼ାକୁ ଯୋଡ଼ା,
ଅଂଠା ଡୋରେ ଖିଲି-        କାଣ୍ଡ ବାନ୍ଧିଛନ୍ତି
    ଆଉ ଅଳଂକାର ହେଉନ ଲୋଡ଼ା ।
ପ୍ରକୃତର ପିଲା        ପ୍ରକୃତରେ ବଢ଼ି
    ଗଜା ଶାଳ ପରି ସକଳେ ସିଧା,
ଦୁଧ ଦହି ଖାଇ        ବଳୁଆ ସମସ୍ତେ
    ପଥର ଭାଂଗିବେ ମାରିଲେ ବିଧା ।
ଆହେ ରାମକୃଷ୍ଣ !        ବଉଳ ଆମର
    ବୋଲି ଦୋହରାଇ ଗୀତଟି ଗାଇ,
ନାଚ ଯାଉଥାନ୍ତି        ତାଳ ଧରି କରି
    କଚ୍ଛଣୀ ହଲାଇ ଘେର ପକାଇ ।
ମୁଣ୍ଡେ ଢିଲ୍ଲ ଜୁଡ଼ା        ବେଢ଼ା କାଇଁଚରେ
    କାନେ ଜକଜକ ଯାଉଁଳି ନୋଳି,
ବେକେ ଚମ୍ପାକଢ଼ି        ସୁନା ରସୁଣିଆ
    ମଝି ପାନପତ୍ର ଝୋଲଇ ଦୋଳି ।
ଘାଗୁଡ଼ି ନୂପୁର        ବାଜଇ ମଧୁର
    କାଠ କରତାଳ କାଂସ ଝାଞ୍ଜରି,
ବାଜେ ମିଳିମିଶି        ଦାଣ୍ଡ ଉଚ୍ଛୁଳାଇ
    ସଙ୍ଗୀତ ଶବଦ ଉଠେ ଗୁଞ୍ଜରି ।
ଗୀତବାଦ୍ୟ ସଙ୍ଗେ        ଝେମଟା ନାଚନ୍ତି
    ନାଚରେ ନାଚରେ ଚକାଭଉଁରି,
କାଳିଆ ଶରୀର        ଝାଳେ ଜରଜର
    ଆପୁଟ ଝେଲେ ଯାଆନ୍ତି ଦୂର ।

ସୁଦାମା ମାଳୀର ଘର ପାଖେ ଯାଇ
ମିଳିଲେ ଶ୍ରୀକୃଷ୍ଣ ଡାକିଲେ ଦ୍ୱାରେ,
ଅଜଣା ସ୍ୱର ତ ଶୁଣିଲା ସୁଦାମା
କିଏ ଡାକେ କାନ ପତାଇ ବାରେ ।
ଆଉଥରେ ଶୁଣିଲା ସୁଦାମା ବୋଲିଣ
ବଡ଼ ତ ମଧୁର ଗମ୍ଭୀର ଧୀର,
ବୃଷଭ କଣ୍ଠରେ ଉଚାରିଲା କିଏ
ସ୍ନେହର ଆହ୍ୱାନ କଅଁଳ ଗିର !
ତରତର ହୋଇ ବାହାରେ ଆସିଲା
ଦେଖିଲା ଦୁଆରେ ରାମ ଓ କୃଷ୍ଣ,
ଭକତି କରିଣ ଛୋଇଲା ଚରଣେ
ନୟନୁଁ ବହିଲା ଲୋତକ ଉଷ୍ଣ ।
ଘରଣୀ ତାହାର ସୁନା ଝରିରେ
ଗଙ୍ଗାପାଣି ନେଇ ଧୋଇଲା ପାଦ,
ପଣତ କାନିରେ ଗୋଡ଼ ପୋଛିଦେଲା
ଦେଖିଲା ନିରେଖି ବଦନ-ଚାନ୍ଦ ।
ଅନ୍ତରେ ଭକତି ବଦନରେ ହସ
ହୃଦୟରେ ପ୍ରେମ ଆଖିରେ ଲୁହ,
ଦୁଆଡ଼େ ଚାହିଁଲେ ଆଗରେ ଦିଶଇ
ରାମ କୃଷ୍ଣଙ୍କର ସୁନ୍ଦର ମୁହଁ ।
ମାଳୀ ଘର ବୋହୂ ଏଭଳି ସୁନ୍ଦର
କେଉଁଠି ତ ନାହିଁ ଗୋଟିଏ ଖୁଣ,
ଫୁଲ କାରବାରୁ ଲୁଟି ନେଇଚି କି
ଫୁଲର ସୁନ୍ଦର ରୂପ ଓ ଗୁଣ ?
ନନ୍ଦନ ବନର ପାରିଜାତ କିବା
ଗଡ଼ୁଁ ଗଡ଼ୁଁ ବହି ହେଲା କି ନାରୀ,
ନାଳିଆ ମନ୍ଦାର ବସରା ଗୋଲାପ
ଯିବ ତ ମାଳୁଣୀ ପାଖରେ ହାରି ।

ଆଖି ତଳ ତଳ ସରମ ଜଡ଼ିତ
ଧୀର ନିରମଳ କମଳ ପରି,
କଣେ କଣେ କଳା ଅଞ୍ଜନର ଗାର
ଚକାଡ଼ୋଳା ଯୋଡ଼ା ଥାଏ ପହଁରି ।
ନାକଟି ସୁନ୍ଦର ଘଣିଫୁଲ ପରି
ଆଗଆଡ଼ ଟିକେ ଦିଶଇ ଉଚ୍ଚ,
ବଦର ସରୁଆ ଧୀର ନିଶୁଆସ
ସୁନ୍ଦରପଣ ତା କାହିଁକି ପୁଚ୍ଛ ?
କଣ୍ଠର ବଙ୍କିମା ଶଙ୍ଖଟିଏ ପରି
ଘଣ୍ଟିକା ତଳକୁ ତିନୋଟି ରେଖା,
ସୁନା ଶଙ୍ଖ କାହିଁ ଅଛି କି କୋଉଠି ?
ତାହାର ପରି ତ ଯାଉଚି ଦେଖା ।
ପାନ ଖାଇ ପିକ ଢୋକିଦେଲାବେଳେ
ଦିଶିଯାଏ ଟିକେ ନାଳିଆ ହୋଇ,
ସୁନା-ପ୍ରତିମା କି ମାଜିମୁଜି କରି
ଅଳତା ପାଣିରେ ଦେଇଛି ଧୋଇ !
କଥା କହିଦିଏ କଅଁଳାଇ କରି
ସତେ କି ବାଜଇ ସୀତାରଟିଏ,
ସରସ୍ୱତୀ ହାତ- ବୀଣାଟିକୁ ଧରି
ତା କଂଠ ଭିତରେ ବଜାଏ କିଏ !
କାନ ଯୋଡ଼ିକର ଗଢ଼ଣ ସୁନ୍ଦର
ଅପରାଜିତାର ଫୁଲ ଆକାର,
ତହିଁରେ ସାଜିଛି ସୁନା କାନଫୁଲ
ଗଣ୍ଡେ ଗଣ୍ଡେ ଶୋଭେ ଛୁଇଁ ତାହାର ।
ଦାନ୍ତଗୁଡ଼ିକ ତ ଅଳପ ନାଳିଆ
ଧଳା ରଙ୍ଗ ସଙ୍ଗେ କଜିଆ କରି,
ଜିଣିଚି ତାହାକୁ ହସୁଚି ଗରବେ
ଗୁଗ ରକତିଆ ରୂପକୁ ଧରି ।

ଅଧର ଯୋଡ଼କ ମିଶିଗଲା ବେଳେ
ମଝିରେ ରହୁନ କୋଉଠି ଚିହ୍ନ,
ଦୁଇ ଗୋଟିଯାକ ଗୋଟିଏ କ ସତେ
କେହ୍ନ କ କାହାଠୁଁ ନୁହଇ ଭିନ୍ନ ?
ସରୁ ବାଲ ପରି ଗାରଟିଏ ଖାଲି
ନଖାଇ ଗୃହଁଲେ ଦିଶଇ ଟିକେ,
ଅଧର ଯୋଡ଼ଏ କହୁବ ବୋଲଣି
ଏଇ ଚିହ୍ନଟିକୁ ଦେଇଚି କ କେ ?
ଗିରସ୍ତ ଦୁଇଜା ପାଇଲେ ପାଦୁକ
ଭକତ କରଣ ସେଇଠି ବସି,
କେତେକ ଚୁମ୍ବିଲେ ଘରଦ୍ୱାରେ ନେଇ
ମନେ ମନେ କୃଷ୍ଣ ଗୁଣ ପ୍ରଶଂସି ।
ଧୂପ ଦୀପ ଗନ୍ଧ ଚନ୍ଦନ କର୍ପୂର
ଦେଇ ପୂଜା କଲେ ରାମ କହ୍ନାଇ,
ସବୁ ଉପଚାର ଥୋଇଲେ ଆଗରେ
ଦୁଇ ଭାଇଙ୍କର ମନ ମନାଇ ।
ସୁଗନ୍ଧ କୁସୁମ ବାଛି ବାଛି କରି
ଯତନେ ସଜାଡ଼ି ଯୋଡ଼ଏ ଗଭା,
ରାମ କୃଷ୍ଣ ଶିରେ ନାଇକରି ଦେଲେ
କଥାରେ କେ କହ୍ନ ପାରିବ ପ୍ରଭା !
ଢଳିଲେ ଚରଣେ ହାତ ଯୋଡ଼ିକରି
କହିଲେ, "ଦେଖିଲୁଁ ଜଗତପତି,
ଆଖି ତ ଲୋଡ଼ୁଚି ଆଉରି ଦେଖିବ
ମନଟରେ ତ ହେଉ ନାହିଁ ତୃପତି ।
କୋଉଠା ତୁମର ଦେଖିବୁଁ ଆଖିରେ
ଥିବୁ ତ ଦିଶୁଚି ଅନନ୍ତ ହୋଇ,
କୋଉ କଉଶଳେ ଅନନ୍ତ ରୂପକୁ
ଅନ୍ତର ଭିତରେ ଦେଲ ତ ଥୋଇ ?

ତୁମ ଲାଗି ଆଜ ପବିତ୍ର ହୋଇଲୁ
ସାର୍ଥକ ହୋଇଲା ଆମର ଜନ୍ମ,
ଆହେ ଆଦିମୂଳ ! ପାଇଲୁ ଦର୍ଶନ
ଛୁଇଁଲୁ ଶରୀର ଧନ୍ୟ କରମ ।
କେତେବେଳେ କାଏ କେଉଁ ଜନମରେ
ଏତେ ସଉଭାଗ୍ୟ ଅର୍ଜିଲୁ କାହିଁ,
ଯାହା ପାଇଁ ଆଜ ପବିତ୍ର ହୋଇଲୁ
ତୁମ ଅନୁଗ୍ରହ ମାଗଣା ପାଇ !
ମୋ ପିତୃ ପୁରୁଷେ ଖୁସି ହୋଇଥିବେ
ତୁମର ଆଉକୁ ଗୃହାନ୍ତ ବସି,
ଝରୁଛନ୍ତି ପରା ସରଗ ଗୁଡ଼ଣ
ତୁମ ପଦପ୍ରାନ୍ତେ ପଡ଼ନ୍ତେ ଖସି ।
ତାଙ୍କ ଜୀବନରେ ପାଇ କି ନ ଥିଲେ
ଆମ ପୁଣ୍ୟକୁ କି ଥିଲେ ସେ ଗୃହିଁ ?
କେତେବେଳେ କାହିଁ ପୁଣ୍ୟ ଅରଜିବୁଁ
ସେକଥା ତ ଆମ ମନରେ ନାହିଁ ।"
ସୁଦାମା ଭକ୍ତିରେ ହୋଇଲେ ତୃପତ
କହିଲେ, "ସୁଦାମ ! ମାଗ ହେ ବର,
ଦେବି ମୁଁ ତୁମକୁ କହୁଅଛୁ ସତ
ମାଗିନଅ ଯାହା ଇଚ୍ଛା ତୁମର ।"
କହିଲା ସୁଦାମା, "ଆଉ କେଉଁ ବରେ
ନାହିଁ ମୋର ଆଶା ସେହିବି ଖାଲି,
ଦେଖୁଥିବି ବସି ସବୁଠି ସର୍ବଦା
ଅନ୍ତରୁ, ବାହାରୁ ମିଳନ ଗୃଲି ।
ଆଉ ଏକ ବର ଦିଅ ଯେବେ ବା ଇଚ୍ଛା
ଜୀବେ ଦୟା କରୁଥିବି ମୁଁ ନିତ,
ଯେତେ ଦିନ ଯହିଁ ଯୋଉ ମରି ଥିବି
ତୁମଠାରେ ରହିଥିବ ମୋ ପ୍ରୀତି ।"

କହିଲେ ଶ୍ରୀକୃଷ୍ଣ ହସି ହସି କରି
"ତୁମ ମନକଥା ହେଉ ସୁଦାମ,
ଜଗତ ଭିତରେ ତୁମ ଦୁହିଁଙ୍କର
ଭକ୍ତ ବୋଲି କରି ରହୁ ସୁନାମ ।"
ଏତିକ କହି ଚାଲିଗଲେ ଆଗେ
ସୁନ୍ଦର ଦିଶିଲା ମଥୁରା-ପଥ,
ଯେତେ ସବୁ ତାଙ୍କୁ ଆଖିରେ ଦେଖିଲେ
ମନୋରଥ ସବୁ କଲେ ତୃପତ ।
ଏଥରକ କଂସ ହୋଇବ ନିହତ
ପୁଅ ଭାଇ ତାର ହୋଇବେ ନାଶ,
ଏତେ ଦିନକରେ ମଥୁରା ନଗର
ପ୍ରଜାଏ ସୁଖରେ କରିବେ ବାସ ।
ମହୀ ହେବ ସ୍ଥିର ରକ୍ଷା ହେବ ଧର୍ମ
ମରିଯିବେ ଆଉ ଯେତେ ଅସୁର,
ରାମକୃଷ୍ଣ ବେନି କୋଳରେ ଧରଣୀ
ସରଗ ହୋଇବ ମରତପୁର ।
ଆହେ ଭକ୍ତଜନେ ଶୁଣ ମନ ଦେଇ
ଶ୍ରୀକୃଷ୍ଣ ମଥୁରା ବିଜୟ କଥା,
ଜଡ଼ ମାୟା ଛାଡ଼ି ଲଭିବ ମୁକତି
ଭୁଲିବ ସଂସାର-ଜଞ୍ଜାଳ ବ୍ୟଥା ।
ଲେଖକ ଜୀବନ ସରି ଆସିଲାଣି
କୃଷ୍ଣ ଦର୍ଶନକୁ ରହିଚି ଚାହିଁ,
ମରଣ ସେପାରେ ପାଇବ ମୁକତି
ଏ ପାରେ ଯେବେ ବା ନ ପାରେ ପାଇ ।

---

# କୁବୁଜା ଉଦ୍ଧାର

ଚାଲି ଯାଉ ଯାଉ ଦେଖିଲେ ଆଗରେ
କୁଜାଟିଏ କାଖେ ପେଡ଼ିଟେ ଧରି,
ଅତି ଯତନରେ ସୁଗନ୍ଧ କୁସୁମ
ସୁବାସ ଚନ୍ଦନ ରଖିଛି ଭରି ।
କୁଜ ଯୋଗୁ ଚାଲି- ପାରୁନି ସଳଖେ
ଯାଉଛି ବଙ୍କାଇ ବଙ୍କାଇ କରି,
ଗୋଡ଼ ଟେକି ଆଗେ ପକାଇଲାବେଳେ
ଟଳ ଟଳ ହୋଇ ପଡୁଛି ତଳି ।
ଗୋଡ଼ ହାତ ମୁହଁ ନୁହେ ଅସୁନ୍ଦର
ସବୁବେଳେ ହସ ରହୁଛି ଲାଗି,
ମଧୁର କଟାକ୍ଷ କିନ୍ତୁ ଦେଉଅଛି
ଜାଗିଛି ପୀରତି ପାଇନି ଛୁଟି ।
କାଣୀ, କୁଜା, ଚେଣ୍ଠୀ ଯାହା ହେଉ ପଛେ
ବୟସ ଛୁଇଁଛି କାଉଁଶ କାଟି,
ମନରେ ସୋହାଗ ବଳି ପଡୁଅଛି
ଲୋଡ଼ୁଛି ପୀରତି ଦେବାକୁ ବାଂଟି ।
ନିଖୁଣ ମନରେ ପିଠି ତନି କୁଜ
ଯଦି ପୀରତିକୁ କଲା କି ପିଠା,
ସେଥିପାଇଁ କ'ଣ କୋଉ ତରୁଣର
ମନରେ ଜାଗୁନି କରୁଣ ଚିନ୍ତା !

ମନଠାରୁ କ'ଣ ରୂପର ମାଧୁରୀ
ଏତେ ମନୋହର ଏତେ ସରସ ?,
ବପୁପର କ'ଣ ନାହିଁ କଣମନ୍ତ
କାହାକୁ ପ୍ରୀତିରେ କରେନା ବଶ ?
ଯୌବନେ ମାଂକୁଡ଼ୀ ପର ରୂପବତୀ
ସଭିଙ୍କ ଆଖିକୁ ଦିଶରେ ଶୋଭି,
କୁଜା ଯଉବନ ନୁହେ ଯା ସେପରି
ସେଥିପାଇଁ କ'ଣ ହୋଇନ ଲୋଭି ?
ମନଟି ତ ତାର ଲହୁଣୀର ପରି
ଟିକିଏ ତାତିଲେ ଯିବ ତରଳି,
କୁଜାଟା ପାଇଁକି କାହାର କି କାହିଁ
ପୀରତି-ମଶାଲ ଉଠୁନି ଜଳି ?
ନଅାଁ ପଶ ଯା'ର ପୀରତି ହୋଇବ
ସେ ଯିନା ଆଧରେ ପତଙ୍ଗ ଧରି,
ଦେହରେ ଦେହକୁ ମିଶାଇଣ ଦେବ
ପୋଡ଼ି ଜାଳି ଦେଇ ପାଉଁଶ କରି ।
ଛଟକ ଗୃହାଣୀ ମୃଦୁ ମୃଦୁ ହସ
ନୀରବ ବଚନ ସଂକେତ ଦିଏ,
ଚିର ବିରହିଣୀ ପ୍ରେମ କାଂଗାଳିନୀ
ସୁଖ ସୌଭାଗିନୀ ସତେ ତ ସିଏ !
କୃଷ୍ଣଙ୍କୁ ଆଖିରେ ଦେଖିଲା ଯୋଉନା
ବାଟ ଭାଙ୍ଗିଗଲା ଆଡ଼େଇ ହୋଇ,
ଦେହଟିକୁ ଯିନା ଦୂରେଇ ଦେଲା ସେ
ମନଟିକୁ ଥାଏ ପାଖରେ ଥୋଇ ।
ଏଇ ଟିକକରେ ଅଟକିଲା କୃଷ୍ଣ
ଆପଣାର କରି ଧରିଲା ହୃଦେ,
ତା ମନ ଭିତର ବୁଝିଲେ ଶ୍ରୀକୃଷ୍ଣ
ପାଖକୁ ଡାହାର ଚଳିଲେ ମୃଦେ ।

ଶ୍ରୀକୃଷ୍ଣଙ୍କ ମୁହଁ ଦଣ୍ଡେ ଆଡ଼ ହୋଇ
ଠିଆହୋଇଗଲା ପଥର ପରି,
କୃଷ୍ଣ ଯାଇ ପାଖେ “କସ ତୋର କାଖେ ?”
ବୋଲି ପଚାରିଲେ ପେଡ଼ିକ ଧରି ।
“ବାସେ ମହ ମହ ଚନ୍ଦନର ପରି
ନେଉଚୁ ଲୁଚାଇ କାହାର ପାଇଁ ?
ପଛେ ପଛେ ତୋର ମହକ ପବନ
ଦେଖୁନୁ ଆକୁଳେ ଯାଉଚି ଧାଇଁ ।
କାହାର ଘରଣୀ ଯାଉଚୁ କୁଆଡ଼େ
କାହିଁକି ଏପରି ହୋଇଚୁ ସତେ ?
କହ ସବୁ କଥା ସତ ସତ କରି
ଯେପରି ମୋହର ହେବ ପରତେ ।”
କୃଷ୍ଣ କଥା ଶୁଣି କହିଲା କୁବୁଜା
ଏ ଜନମେ ଗତି ପାଇବି କାହିଁ !
କେହି ହେଲେ ମୋତେ ବାହା ହେଲେ ନାହିଁ
ଓଟ ଭଳି କୁଜ ପିଠିରେ ମୁହିଁ ।
ପୂରୁବ ଅର୍ଜିତ କରମ ଫଳ ଏ
କାହାକୁ କାହିଁକି ଦେବି ମୁଁ ଦୋଷ,
କାହାର କୋଉଠି ଭଲ ବା ହୋଇଚି
ବିଧାତା ଯାହାଠି କରିଚି ରୋଷ ?
ଜାଡରେ ହାଟୁଆ କୁସୁମ ଚନ୍ଦନ
ଦେଇ ତୋଷ କରେ ରଜାର ମନ ।
ସେଥିପାଇଁ ରଜା ଖୁସି ହୋଇ କରି
ଦେଲା ତିନି ଗାଆଁ ବହୁତ ଧନ ।
କିନ୍ତୁ ଧନ ଥିଲେ କଅଣ ହୋଇବ
ଅସାର ହୋଇଲା ମୋର ଜୀବନ,
ସଂସାର ଖେଳ ମୁଁ ଖେଳିଲିନି କେବେ
ଭୋଗିନି ତ କେବେ ପୀରତି ଧନ !

ନାରୀ ଜନ୍ମ ପାଇ          କୁଜୀ କେଂପୀ ହେଲେ
କେହ୍ୱ କି ତାହାକୁ କରେ ଆଦର ?
ବାପ ମାଆ ପର          ଆଡେ଼ଇ ଦିଅନ୍ତି
ଆଉ କିଏ ଅବା ହେବନି ପର ?
ସୁନ୍ଦରପଣିଆ          ଆଖି ପାଇଁ ସିନା
ମନଟା କାହିଁକି ଆଖିର ବଶ,
ଏଇ ଆଖି ପାଇଁ          ମନ କେତେ କାହିଁ
ଶୁଣୁ ନାହିଁ ଅବା ନନ୍ଦା ଅପଶ ?
ଇନ୍ଦ୍ରିୟଗୁଡ଼ାକ          ମନକୁ କାହିଁକି
ଘାନୁମଣି ପର ପକାନ୍ତି ବାନ୍ଧି,
ବିବେକର ବେକ          ମୋଡ଼ିଲେ ଇନ୍ଦ୍ରିୟ
ଚଥିହସ କ'ଣ ମରେନା କାନ୍ଦ ?
ଆଖି ନାକ କାନ          ତିନହେଁ ମିଳିଲେ
ପ୍ରଳୟ ପାଇଁକି ଲଗାନ୍ତି ନାଟ,
ତାଙ୍କର ପାଇଁକି          ସମାଜେ ସଂସାରେ
ମାଡ଼ନ୍ତିନ କେତେ ଅମଡ଼ା ବାଟ !
ମୋର ପାଇଁ ସବୁ          ବାଟଯାକ ବନ୍ଦ
ମୋ ଲାଗି କା' ମନ ନୁହେ ଉଚାଟ,
ମୋହର ବେଳକୁ          ସବୁର ଇନ୍ଦ୍ରିୟ
ସଭିଙ୍କ ମନକୁ ପିଠିଚ ଗ୍ରାଠ !"
ଅନ୍ତର୍ଯାମୀ କୃଷ୍ଣ          ଜାଣିଲେ ଅନ୍ତର
ହସିଲେ ଟିକିଏ ମନକୁ ମନ,
ତାଳୁରୁ ତଳପା-          ଯାଏ ଗୃହିଁଗଲେ
ଅଂଗେ ଅଂଗେ ଫୁଟିଅଛି ଯୌବନ ।
"ସୁନ୍ଦର ରୂପକୁ          କୁଜ ଅସୁନ୍ଦର
କରି ପକାଇଚି ଦାରୁଣ ହୋଇ,
ଏ କୁଜକୁ କ'ଣ          ଯତନ କଲେ ମୁଁ
ଦୂରକୁ ଘୁଞ୍ଚାଇ ଦେବିନି ଥୋଇ ?"

କୁଜା ପାଦ ପରେ    ନିଜ ପାଦ ରଖି
ଓଠକୁ ଧରିଣ ଦେଲେଟି ଟେକ,
କୁଜ କେଣେ ଗଲା    ସୁନ୍ଦର ଦିଶିଲା
ସକଳେ ଅବାକ ହୋଇଲେ ଦେଖି ।
ଆହା ମରି ମରି    ବିଶ୍ୱବିମୋହିନୀ
କୋଉଠୁଁ ଆସିଲା ମଥୁରା ପଥେ !
କିବା ଅପସରି    ସରଗ ରାଇଜୁ
ଓହ୍ଲାଇ ପଡ଼ିଲା ଆଖି ପଲକେ !
କୃଷ୍ଣ କର ଅବା    ପରଶ ପଥର
ବାଜିଗଲା କାଚ ହୋଇଲା ହୀରା,
କୋଉଠେଇ ଥିଲା    ଏ ଉଜ୍ଜ୍ୱଳ ପ୍ରଭା
ଝଲସାଇ ଦେଲା ଶିରା ପ୍ରଶିରା !
କୋଉ ଶିବ ଅବା    ଯୋଗ ଭଂଗିବନି
ଏ ରୂପକୁ ଦେଖିଦେଲେ ନୟନେ,
କିବା ଏ ଅନଳ    ଶିଖା ଜଳୁଅଛି
ଯୁବା ମନ ଷଟପଦ ଡାହନେ !
ଏ ଯୁବତୀ ଯେବେ    ସ୍ୱୟଂବରା ହେବ
ଏହା ପାଇଁ କସ ରହିବ ହୁଡ଼,
ଫୁଲଶର ଫୁଲ-    କମାଣ ପକାଇ
ଏରୂପ ଦେଖି ତ ହୋଇବ ମୂଢ଼ !
ରୂପର ମାଧୁରୀ    ମୁଗ୍ଧ କରିଦିଏ
ସବୁ ଇନ୍ଦ୍ରିୟଙ୍କୁ ଏକାଠି କରି,
ରମଣୀ ସମାଜ    ସୀମନ୍ତମଣି ତ
କୋଉଠେଇ ଥିଲା ଏ ଶୋଭା ଧରି !
କିଏ ଏତେ ଭାଗ୍ୟ    ଅରଜିଛି ସତେ
ଧରିବ ଏହାର କମଳ କର,
କିଏ କେତେ ଥର    ଗଙ୍ଗାରେ ଝାଂପିଛି
ଭାଗ୍ୟ କରିଅଛି ଉଜ୍ଜ୍ୱଳତର ।

## ଶ୍ରୀକୃଷ୍ଣ

ଜୋଉ ଅଭିଶାପୁଁ     କୁଜା ହୋଇଥିଲି
    ପୁଣି କେଉଁ ପୁଣ୍ୟ ହେଲି ସୁନ୍ଦରୀ,
ଏତେ ରେ କେ ଯୁବା     ଅଛି ଏ ସଂସାରେ
    ଧାଇଁବନି ପଛେ ପାଗଳ ପରି !
ଫୁଟିଲି ଫୁଲଟି     କୋଉଠେଇ ଥିଲି
    ଟିକଏ ତ ହେଲେ ହୋଇନି ବାସି,
ଦେହଟାଯାକରେ     ହସୁଚି ତ ଖାଲି
    ସଜ ସୁମନର ମାଧୁରୀରାଶି ।
ଦେହ ହୋହଲାଇ     ଲହରୀ ଖେଳାଇ
    ଭସାଇ ଦେଉଛି ଧୀର ପବନେ,
ତରଣୀ କୁସୁମ-     ମାଳା ମନୋହରୀ
    ଶୁକ୍ଳ ସ୍ୱହସ ଖେଳେ ବଦନେ ।
ରାତିଯାକ କ'ଣ     ଶୋଇ ନାହିଁ ସତେ
    କାହାର ପ୍ରେମକୁ କରିଛି ମନ,
ଆଖି ଦୁଇଟିରୁ     ନିଦ କି ଭାଙ୍ଗିନି
    ଧୀରେ ଧୀରେ ବହେ ଶ୍ୱାସ ପବନ ।
ଛୁଉ ତ କାହିଁକି     ଉଠୁଛି ପଡ଼ୁଚି
    ସରୁ ବସନକୁ ଅଟକାଇ ଦେଇ,
ଠିଆରେ ଠିଆରେ     ଭାବୁଚି କି ଆଜି
    କାହାକୁ ପ୍ରଣୟୀ କରିବ ନେଇ ?
କୋଉ ସୁଖ ସ୍ୱପ୍ନ     ଦେଖୁଚି ଠିଆରେ
    ସପନ କି ତାର ଯାଉନି ଭାଙ୍ଗି,
କାହାକୁ ଓଢ଼ଣା     ଆଡ଼େଇ ଚାହିଁଚି
    ପଲକ ପଡ଼ୁନି କାହାର ଲାଗି ?
ମଉନ ମୁହିଁ ତ     ଅନ୍ତରର କଥା
    କହି ଦେଉଅଛି କରିଣ ଭଙ୍ଗୀ,
କାହାର କୋଳକୁ     ଆଉଜି ପଡ଼ିବ,
    କାହାକୁ କରିବ ଜୀବନସଙ୍ଗୀ !

ପାଷାଣ ଦେହରେ ପରାଣ ପଶି କି
ମଥାଟିକୁ ତାର ନୁଆଁଇ ଦେଲା,
ଜାହ୍ନବୀ ତଟରେ ରାମ ଗୋଡ଼ ଲାଗି
ଅହଲ୍ୟା କି ଆଉ ଜୀବନ୍ତ ହେଲା ?
କିଆଁ ଅଭିମାନ କଲୁ ତୁ ମାନିନି !
ପଛକୁ କାହିଁକି ଘୁଞ୍ଚୁଚୁ ଏତେ,
କୃଷ୍ଣରୂପ କ'ଣ ପାଟଳୀ କଲା କି
ଭଜ ଭଲ କର ପାରୁଚୁ ସେତେ ।
ଗତ ଜନମର ଅଭିଶାପ ତୋର
ପାଲଟି ଗଲା ତ ହୋଇଲା ବର,
ଗୋଳାଚନ୍ଦନକୁ ଶ୍ରୀକୃଷ୍ଣ ଦେହରେ
ବୋଳିଲୁଣି ଯେବେ ହେବୁ କି ପର ?
ମରମର କଥା କହିଦେ ମିଠାଇ
ଆପଣାର କରି ଏଥର ନେବେ,
ରମଣୀ-ସୁଲଭ ସରମ ସଙ୍କୋଚ
ଦେଖାଇ ହେବା କି ଉଚିତ ଏବେ ?
ଆଗ ଜନମରେ କଅଣ ଥିଲୁ ତୁ
ସେ କଥା କି ତୋର ନାହିଁ ଗୋ ମନେ ?
ଶ୍ରୀକୃଷ୍ଣଙ୍କୁ ପତି କରି ପାଇବାକୁ
ତପସ୍ୟା କି କରି ନ ଥିଲୁ ବନେ ?
ଗଙ୍ଗାସାଗରରେ ଝାସି ନାହୁଁ କେବେ
ପତି କରିବାକୁ ନାହୁଁ ମନାସି,
ଜଳନ୍ତା ନିଆଁରେ ଜୀଅନ୍ତାରେ ପଶି
ସୁକୁମାର ତନୁ ଦେଇନୁଁ ନାଶି ?
ବିଧବା ହୋଇ ତୁ କେବେ କି କୋଉଠି
ବ୍ରହ୍ମଚର୍ଯ୍ୟ ପାଳି ହବିଷ କରି,
ବୃନ୍ଦାବଣ ମୂଳେ ଘିଅ ସଞ୍ଜ ଜାଳି
ମନେ ମନେ କୃଷ୍ଣ ନାହୁଁ ତୁ ବରି ?

କାର୍ତ୍ତିକେ ଆକାଶ- ଧୂପଟିଏ ଜାଳି
ଦେଇ ନାହୁଁ କେବେ ଗଗନେ ଟେକି ?
ବିଧବା ରମଣୀ ଅନ୍ତର କାହାଣୀ
ଭଗବାନ ବକ୍ଷେ ଦେଇନୁଁ ଲେଖି ?
କୋଉ କୁଆଁ ଘର ପ୍ରଣୟ ଖେଳରେ
ଦେଇଥିଲୁ କି ଗୋ ବିଚ୍ଛେଦ ଦୁଃଖ ?
ସେଥିପାଇଁ କ'ଣ ଯୁବା ବୟସରେ
ଭୋଗି ପାରୁ ନାହୁଁ ପୀରତି ସୁଖ ?
ଏତେ ଦିନେ ଚୋର କେଉଁଣ ଦୁଆରେ
ଖୋଜୁଥିଲୁ ଯା'କୁ ପାଇଲୁ ଏବେ,
ସାବଧାନ ହୋଇ ଭଜଥା କୃଷ୍ଣଙ୍କୁ
ଭୁଲରେ ହେଲେ ବି ଛାଡ଼ ନା କେବେ ।
କେତେ ଜନ୍ମ ପରେ ପାଇଚୁ ହାତରେ
ଛାଡ଼ିଦେଲେ ଆଉ ପାଇବୁ ନାହିଁ,
ଆଗରେ ତ ଚୋର ଠିଆ ହୋଇଅଛି
କୋଳକୁ ନେଉନୁଁ କଅଣ ପାଇଁ ?
କିଏ ଏତେ କଥା କହିଲା କୁଜାକୁ
ନିୟତି କି ଥିଲା କୋଉଠି ସେଠି ?
କାହା ବୋଲ ମାନି କୁଜାଟା ପାଇଁକି
ଲେଖିଲି କିଏ ବି ଖାଟିଲା ବେଠି ।
ନିୟତିର ବୋଲ କାହାର ବିବେକ
କୋଉଠି କି କେବେ ଭାଙ୍ଗିଛି ଭବେ ?
ତାହାର ଆଦେଶ ବଡ଼ ସେ କଠୋର
ତାହାର ଅନ୍ୟଥା ହୁଏନା ଲବେ ।
ନିୟତି ହୁଡ଼ିଲେ ନ ହୁଏ ଅନ୍ଧାର
ଭଲ ମନ୍ଦ କିଛି ପାରେନା ଜାଣି,
ଦାଢ଼ୁଆ ଖଡ଼ଗ ନିଜ ହାତେ ଧରି
ନିଜର ଶିରକୁ ପକାଏ ହାଣି ।

ଭଗବାନଙ୍କର ଅଛି ବି ନିୟତି
ମାନନ୍ତି ସେ ତାକୁ ଦେବତା ପରି,
ନିୟତିର କଥା ନ ମାନନ୍ତେ ଯେବେ
ପାରନ୍ତେ କି କେବେ ଜଗତ ଧରି !
ଜଗନ୍ନାଥଙ୍କର ଶକତି ନିୟତି
ତଥାପି ତ ତାଂକୁ ଡରାଇ ଦିଏ,
ନିୟତିକୁ ଏଡ଼ି ସଂସାର ଭିତରେ
ଆଜି ଦେହ ଧରି ରହିବ କିଏ ?
ତାହାରି ଆଦେଶ ପାଳିଲି କୁବୁଜୀ
ବରଜିଲି ସବୁ ଲାଜ ସରମ,
ତରୁଣୀ ହୃଦୟ ପ୍ରେମର ପାଇଁକି
ଲହୁଣୀରୁ ବେଶୀ କଲା ନରମ ।
ଶ୍ରୀକୃଷ୍ଣଙ୍କୁ ଚାହିଁ କହିଲା, "ହେ ନାଥ !
କୁଜାକୁ ସୁନ୍ଦରୀ କଲଣି ଯେବେ,
ବଳିଲାଣି ମନ ଜୀବନ-ଯୌବନ
ମୋ ଘରକୁ ଆସି ଭୋଗ ହେ ଏବେ ।"
ବଳରାମ ସେଠି ଠିଆହୋଇଥିଲେ
କୃଷ୍ଣଙ୍କୁ ଟିକିଏ ମାଡ଼ିଲା ଲାଜ,
କହିଲେ ଅଳପ ହସି କରି ଧୀରେ
"ରାଜ ଦରଶନ ସାରେ ମୁଁ ଆଗ ।"
ସେ କାମଟି ସାରି ଯିବି ତୋର ଘରେ
ଏଇନାଏ ଯାଇପାରିବି ନାହିଁ,
ଦେଖୁନୁଁ ସଂଗରେ କେତେ ଗୋପପୁଅ
ଆହୁରି ଏଠେଇ ଅଛନ୍ତି ରହି ।"
କୁବୁଜୀ କହିଲା ମୁହଁଟି ଶୁଖାଇ
"ମଣୁଚି ମୁଁ ଘର ଦୁଆର ଯାଇ,
କାଲି ନିଶ୍ଚେ ମୋର ପୁରକୁ ଆସିବ
ଦାସୀଟାକୁ ପରି କରିବ ନାହିଁ ।

କାଲି ଯେବେ ତୁମେ ନ ଯିବ ହେ ନାଥ
ଆଖି ଦୁଇ ମୋର ଦେବ ଉପାଡ଼ି,
ତୁମର ପାଇଁକି ଦେଖିବ ମୁକର
ଦାସୀ ଦେହୁଁ ପ୍ରାଣ ଯାଇଚ ଗୁଡ଼ି ।"
ଏଇତକ କହି ଗୁହାଁଲା କୃଷ୍ଣଙ୍କୁ
ଆଖିରୁ ଲୋତକ ପଡ଼ିଲା ଝରି,
ଛୁଏଁ କେତେବେଳେ ମୁଠାରୁ ତାହାର
ଖସିଗଲା ଧରିଥିବା ଉତରୀ ।
ଶ୍ରୀକୃଷ୍ଣ କହିଲେ, "ଯାଅ ଏବେ ଘରେ
ଯିବ ତ ମୁଁ କାଲି କହୁଚି ସତ,"
ବୋଧ ହୋଇ କୁଜୀ ଚଳିଲା ସୁଖରେ
ରହିଗଲା ଦୁହିଁଙ୍କର ମହତ ।
ଲେଖକର କାଲି ଆଜି କେତେ ଯୁଗ
ତାର ଆଜ କ'ଣ ଯାଇନି ସରି ?
ଆପଣା କାଲିଟି କେଡ଼େ ଯେ ମଧୁର
ତାକୁ ଗୃଖିବ କି ଗଲେ ସେ ମରି ?

———

## କଂସ ମୁକଥ

ରାମ କୃଷ୍ଣ ଦୁହେଁ      ପଛଟେ ଗୋପାଳେ
ଚଳିଗଲେ ଆଗ ପଛକୁ ଚାହିଁ,
ତାଙ୍କୁ ଦେଖି ଦେଖି      ପଛରେ ପଛରେ
କେତେ ନରନାରୀ ଚଳିଲେ ଧାଇଁ ।
କୃଷ୍ଣଙ୍କ ଦେହରେ      ତେରଛେଇ ହୋଇ
ଖରା ପଡ଼ୁଅଛି ଆଲୁଅ କରି,
ନେଳୀ କାଚରେ କି      ବିଜୁଳି ଆଲୁଅ
ଜକଜକ ଜଳି ଯାଉଛି ଥରି ।
ରାମ କଳେବରେ      ଦିଶୁଅଛି ଖରା
ଜଳନ୍ତା ଅନଳ ଶିଖାର ପରି,
ଛୁଡ଼ିକରି ତେଜ      ଝଲସଇ ଦିଗ
ଆଖିକୁ ଦିଅଇ ଜଳକା କରି ।
ଦୁହିଁଙ୍କର ମୁହଁ      ଖରା ବାଜି କରି
ମହଳି ଯାଇଛି ଅଳପ ହୋଇ,
ବିନ୍ଦୁ ବିନ୍ଦୁ ଝାଳ      ଏକାଠେଇ ହୋଇ
ଦେଇଛି ଟିକିଏ ଟିକିଏ ଧୋଇ ।
ଏସନ ରୂପକୁ      ଦେଖିଦେଲେ ଥରେ
ତୃପତ ହେବନି କାହାର ମନ,
ଫେରି ଆସିବ କି      ସେ ସୁନ୍ଦର ରୂପୁଁ
ଚାହିଁଦେଲେ ଥରେ କା'ର ନୟନ !

ବାଟେ ବସିଥିଲେ ପସରା ମେଲାଇ
ବ୍ୟବସାୟୀମାନେ ଡାକବେ ବୋଲି,
ଦେଖିଲେ ଯୋଜନା ଧାଇଁଲେ ପଛରେ
ଯେ ଯା'ର ଦରବ ବୋଝରେ ତୋଳି ।
ଗନ୍ଧ ପୁଷ୍ପସାର ତାମ୍ବୂଳ ସହିତ
କେତେ ଉପହାର ସଜାଇ ନେଇ,
ଯୁଗଳ ଭାଇଙ୍କୁ ପୂଜିଲେ ଦାଣ୍ଡରେ
ଭେଟି ଦ୍ରବ୍ୟମାନ ଭକ୍ତିରେ ଦେଇ ।
ମଥୁରା କାମିନୀ ଦେଖି ଦେଇ କରି
ମଦନ ଦାଉରେ ହୋଇଲେ ଘାରି,
ପୁଅ ପତି ସବୁ ତୁଚ୍ଛ କରିଦେଲେ
ଦଉଡ଼ିଲେ ଦାଣ୍ଡେ ଘରୁ ବାହାରି ।
ନୟନପଥରେ ପିଇ ରୂପସୁଧା
ମେଂଟାଇଣ ଦେଲେ ଯେତିକି ପିପାସା,
ଜଳିଲା ଆଗରେ ଦାଉ ଦାଉ ହୋଇ
ନୂଆ ଜୀବନର ଉଜ୍ଜ୍ୱଳ ଆଶା ।
ନଗର ଗୋଟାକ ବୁଲିବୁଲି ଦେଖି
ମଥୁରାବାସୀଙ୍କ ଆଡ଼କୁ ଚାହିଁ,
ପଚାରିଲେ ହସି ହସି ଦୁଇ ଭାଇ
"ରଜା ଧନୁଘର କୋଉଠି କାହିଁ ?"
କୃଷ୍ଣଙ୍କ ମନରେ କି ଚିନ୍ତା ପଶିଛି
ବେଳେ ବେଳେ ମୁହଁ ହେଉଛି କୁଂଚି,
ମୁହଁରୁ କାହ୍ନାଙ୍କ ପିଲାଳିଆ ହସ
ମଝିରେ ମଝିରେ ଯାଉଛି ଲୁଚି ।
ହରଷ ବିଷାଦ ଚିନ୍ତା ଓ ଅଚିନ୍ତା
ସବୁଯାକ ମିଶି ଏକାଠି ହୋଇ,
ଶ୍ରୀକୃଷ୍ଣ ମନରେ ହିମାଳୟ ପରି
କଅଣ ଗୋଟାଏ ଦେଲେ ଟ ଥୋଇ ।

ସେଥିରୁ ତ କାହ୍ନ   ହସ ତରଳନ
ଆଖି ଦୁଇଟି ତ ଅଛି ଶୁଖିଲ,
ସେ ମନ କଥା ତ   ଗମ ବୁଝନ୍ତନ
କି ଅବା ଜାଣିବେ ଗଉଡ଼ ପିଲ୍ଲ !
କଳା ମେଘ ପରି   ଚିନ୍ତା ଘୋଡ଼ାଇଛି
ମଝିରେ ମଝିରେ ବିଜୁଳି ହସ,
ଚମକି ଚମକି   ଚଂଚଳ କରୁଛି
ମନ ତ ଜମାରୁ ମାନୁନି ବଶ ।
କୋଉ କରମର   ଗନ୍ତୁ ବୋଝଟାଏ
ଲଦା ହୋଇଛି କି କୃଷ୍ଣଙ୍କ ଶିରେ ?
ମରମର କୋଉ   ଲୁଚିଛପା କଥା
ସତେ କେ କହୁଛି ନୀରବ ଗିରେ !
ଅତୀତର କୋଉ   କରୁଣ କାହାଣୀ
ବର୍ତ୍ତମାନର କି କରମ ରେଖା,
ବୃନ୍ଦା ଯାଉ ପାଉ   ଆଗରେ ଦାଣ୍ଡରେ
ଗୋଟି ଗୋଟି ହୋଇ ଦେଲେ କି ଦେଖା ?
ଭବିଷ୍ୟତର କି   ଉଜ୍ଜ୍ୱଳ ସଙ୍କେତ
ଲଲାଟେ ଆଖିରେ ରହିଛି ଲେଖା,
ଅନ୍ଧାର ଭିତରେ   ଦଗଣ୍ଡି ଫିଙ୍ଗିଲେ
ଲକ୍ଷରେ କି କା'ର ବାଜଇ ଠେକା ?
ଭବିଷ୍ୟତଟା କି   କେବଳ ଅନ୍ଧାର
ଅତୀତଟା କ'ଣ ଜଳକା କାଚ ?
ବର୍ତ୍ତମାନ କ'ଣ   ଖାଲି ଜକଜକ
କରମ ମାରଗେ ବେଦନା ଆଂଚ ?
ଭବିଷ୍ୟତକୁ କି   କହନ୍ତି ଅଦୃଷ୍ଟ
କେହି କି କେବେହେଁ ଦେଖଇ ନାହିଁ,
ଭ୍ରାନ୍ତ ନର ତେବେ   ମିଛରେ କାହିଁକି
ତାହାର ପାଇଁ କି ବସଇ ଚିହ୍ନି !

ଭାଗ୍ୟ ଭବିଷ୍ୟତ ତେବେ କ'ଣ ଏକା
ତାହିଁରେ କି କିଛି ପ୍ରଭେଦ ନାହିଁ,
ବର୍ତ୍ତମାନ କ'ଣ ପଛକୁ ଲେଉଟି
ମଝିରେ ମଝିରେ ଦିଏନା ଗୁହାଁ ?
ଆହୁରି କି ସତେ ଆଖି ପରେ ହାତ
ଥୋଇଣ ଆଗକୁ ଅନାଏ ନାହିଁ ?
ଭବିଷ୍ୟତ କ'ଣ ଅନନ୍ତ ଅନ୍ଧାର
ତାର ଚକ୍ରବାଳ ଗଳି ବା କାହିଁ ?
ଦିଗବଳୟର ସୀମା ସରହଦ
ସକଳଙ୍କର କି ସମାନ ସତେ ?
ଦୂରକୁ ଦେଖିବା ଶକତି କାହାର
ଊଣା ବା ଅଧିକ ନୁହେଁ ଜଗତେ ?
ଭବିଷ୍ୟତଟା କି କେବଳ ସୁଦୂର
ପାଖରେ କି ତାର ମିଳେନା ଚିହ୍ନ ?
ଗତ କାଲଠାରୁ ଆସନ୍ତା କାଲିର
ଦୂରତ୍ୱ କି କ'ଣ ସତରେ ଭିନ୍ନ ?
ଗୋଟିଏ ଦିନରେ ସ୍ମରଣ ପଥରେ
ଅନ୍ୟଦିନର କାହିଁ ମିଳେନା ପତା !
କଳ୍ପନା, ଦର୍ଶନ ବିଜ୍ଞାନ ଧଇର୍ଯ୍ୟ
ପାଇ ପାରିବନି ତାହାର ସତ୍ତା ।
ଶ୍ରୀକୃଷ୍ଣଙ୍କ ପରି ସମ କ'ଣ ସତେ
ଭାଗ୍ୟ ଭବିଷ୍ୟତ ପାରନ୍ତି ଦେଖି,
ମାନବ ଜୀବନ- ଚକ୍ରର ଗତିକୁ
ଘଣ୍ଟା ସେକେଣ୍ଡରେ ପାରନ୍ତି ଲେଖି ?
ଅନନ୍ତ କେବଳ ଆସନ ଗୋଟିଏ
ଖଟୁଲିର କାହିଁ ଦେବ ଶକତି ?
ଦେବତାଙ୍କ ପାଇଁ ଖଟୁଲିର ପୂଜା
ସଂସାରେ ସମାଜେ ଅଛି ପଦ୍ଧତି ।

ଶିବ ଦରଶନ କରିବା ପାଇଁକି
ବାସୂଆ ବଳଦ ଦେଖନ୍ତି ଆଗେ,
ଜଗନ୍ନାଥଙ୍କର ଦରଶନ ଖୋଜି
ଯାଆନ୍ତି ଗରୁଡ଼ ଖମ୍ବର ଲଗେ ।
ବିଶ୍ୱ ବ୍ରହ୍ମାଣ୍ଡକୁ ଦେଖିବା ଆଗରୁ
ବାଳ ଦବାକରେ ପକାଅ ଲକ୍ଷ୍ୟ,
ପ୍ରକାଣ୍ଡ କପରି ଯାନଟିଏ ହୁଏ
ସେଥିରୁ ମିଳିପାରିବ ଅପ୍ଷ ।
ଯାନଟିଏ ନେଇ ଭାବଚନ୍ତି ଦେଖ
ବଡ଼ଟିଏ ହେଲେ ହେବ କପରି,
ପରମାଣୁଟାରୁ ଗଢ଼ିଲି ସଂସାର
କଏ ବା କପରି ହାତରେ ଧରି ?
ଅରୂପ ଭିତରେ ରୂପର ସଂଧାନ
କଳ୍ପନା କେବଳ ପାରଇ କରି,
ଯେଉଁମାନଙ୍କର ନାହିଁ ସେ ଟିକକ
ଗୁଡ଼ାଏ ବୃଥାରେ ଯାଆନ୍ତି ଜଳି ।
କିନ୍ତୁ କଳ୍ପନାରେ ଯେଉଁ ସତ ଅଛି
କଳ୍ପନାରେ ମଧ୍ଯ ଥାଏ ସେ ଲୁଚି,
କେବଳ ସେଇଟି ଜାଣି ନ ପାରିଲେ
ଆହୁରି ଦୂରକୁ ଯାଏ ସେ ଘୁଂଚି ।
ଏଇ କଳ୍ପନା ତ ସବା ପଛଲୁ
ସତର ଗୋଟିଏ ପକାଏ ଗୁଳ,
କଳ୍ପନା ସେଇଠୁଁ ସଜବାଜ ହୋଇ
ଖୁଂଟଟିଏ ଧରି ଆସଇ ଧାଇଁ ।
ଦାଉଁ ଗଢ଼ ଗଢ଼ କେତେ ଯେ ବାନର
ଗଢ଼ିଛି କଳ୍ପନା ଭାଂଗିଛି କେତେ,
ଯୁଗ ଯୁଗ ଧରି ଜ୍ଞାନ ଜ୍ଞାନ ଚକ୍ଷୁ
ଦର୍ଶନ ବଳରେ ଫିଙ୍ଗିଛି ସେତେ ?

ଅରୂପ ପାଖରେ ରୂପର ବଇଭବ
କେଡ଼େ ସାନ ଅଉ କେଡ଼େ ଯେ ତୁଚ୍ଛ,
ବଜ୍ଞାନ ଶୂନ୍ୟରେ ଦର୍ଶନକୁ ମଚ୍ଛି
ପୂର୍ଣ୍ଣ କାହିଁ ବୋଲି ଶୂନ୍ୟକୁ ପୃଚ୍ଛ ।
ଶୂନ୍ୟେ ଯେତେ କଥା ସହ୍ଜାଇ ପାରିବ
ପୂର୍ଣ୍ଣରେ କି କେବେ ସଂଭବ ହେବ ?
ପୂର୍ଣ୍ଣର ବା କାହିଁ ଖାଲି ଥାଏନିଏ
ଆହୁରି ଗୋଟିଏ କୋଳକୁ ନେବ ?
ପୂର୍ଣ୍ଣ ସବୁବେଳେ ପୂର୍ଣ୍ଣ ସିନା ଖାଲି
ପୂର୍ଣ୍ଣତାରେ ପରା ଚଢ଼ଇ ଫାଟି,
ଶୂନ୍ୟର ସନ୍ଧାନ ମିଳିବନି ତହୁଁ
ବୃଥାରେ କାହିଁକି ମରିବା ଘାଂଟି !
ଅକ୍ରୂରର ଦୃଷ୍ଟି ଅଛି କି ଆମର
ଅଛି କି ମଥୁରାବାସୀ କାହାର ?
କଂସ ସବୁବେଳେ ଚନ୍ତୁଛି ମନରେ
ଦେଖୁଛି ପାଖରେ ଥିବ ବା ତାର ।
କଂସ ହରଳରେ ଦେଖୁଛି କୃଷ୍ଣଙ୍କୁ
କେବଳ ନେଳଆ ଗଗନ ପରି,
ତହିଁରେ ଦେଖୁଛି କୋଟି ରବି ଶଶୀ
ମନକୁ ମନକୁ ଯାଉଛି ଡରି ।
ଆକାଶ ଧରଣୀ ସବୁ ତ ଗୋଟିଏ
ସେହି ଗୋଟିକ ତ ଶ୍ରୀକୃଷ୍ଣ ଏକା,
ଏଡ଼ାହେଁ କରିଲି ! ନା ! ନା ! ମନୋହର
ବେଶଟିଏ ପିନ୍ଧି ଦଅନ୍ତି ଦେଖା ।
ହସିଂ ହସି କରି ଡାକନ୍ତି କୋଳକୁ
ନା ! ନା ! ଦାନ୍ତ ଭିଡ଼ି ଉଠନ୍ତି ପରା,
ସେହି ଉରଣରେ ଡରିଯାଏ କଂସ
ଥରଇ ଆକାଶ ଥରଇ ଧରା ।

ମାଳମଣିମୟ ରୂପ କି ସୁନ୍ଦର
ନରସିଂହ ପରି କି ଭୟଂକର !
ଆହା କି ସୁନ୍ଦର ବାମନ ରୂପଟି
ସାମ ବେଦ ଗାଏ ମଧୁରତର ।
ଦେଖୁଁ ଦେଖୁଁ ଦେଖୁଁ ଛୁଆ ପାଦଟିଏ
ମାଡ଼ି ତ ବସିଲା ତିନି ଭୁବନ
ତିନି ଭୁବନର ବାହାରେ କୋଉଠି
ଲୁଚାଇ ରଖିବ ମୋର ଜୀବନ !
ଆୟୁଧ ତ କିଛି ଧରିନି ହାତରେ
ଖାଲି ହାତଟାରେ କରିବ କିସ ?
ଏଇ କ'ଣ ସେଇ ଅସୁର-ମର୍ଦ୍ଦନା
ଆସିଚି ବଧିବ ଦେଇଣ କି ବିଷ ?
ହାତ ଗୋଡ଼ କାହିଁ ଝିମି ଝିମି ହୁଏ
ମୁଣ୍ଡଟା କାହିଁକି ଯାଉଛି ଘୂରି,
ବିଶ୍ୱ ବ୍ରହ୍ମାଣ୍ଡଟା କାହିଁକି କେଜାଣି
କେବଳ କୃଷ୍ଣରେ ଗଲା ତ ପୂରି !
ବଂଶୀଟି କାହିଁ ଯାଇଛି କାଖରେ
ମଧୁଆ କରି ବଜାଉ ନାହିଁ,
ଏତେ ଯେ ରମଣୀ ଧାଇଁଛନ୍ତି ସଂଗେ
ତାଙ୍କୁ ତ ଅନାଇ ନାହିଁ ବଙ୍କାଇ ।
ନରମ ଗୁହାଣୀ ବଦଳାଇ ଦେଇ
କାହିଁକି ବା କଲା ଏଡ଼ାହେଁ କ୍ରୂର,
ଦୟା କ'ଣ ତାର ଟିକିଏ ନାହିଁ କି
କେବଳ ସେ କ'ଣ କଂସ କଠୋର ?
ଦୟାନିଧି ନାଆଁ ବଦଳାଇ ଦେଲା
କି ଅବା ଅଧିକ କଲା କରୁଣା,
କଂସଠାରୁ କ'ଣ ତା ପ୍ରଚଣ୍ଡ ବେଗ
କରିଦେଲା ଏକାବେଳକେ ଦୁଣା ?

ରାଗ ତ' ତୋର ରେ ନୁହେ ସହଚର
ଖାଲି ଅନୁରାଗ ବେଶୀ ତୋହର,
ମାରପକା ମୋତେ କି ଅବା ରଖିଦେ
ଦୁଇଟିଯାକ ତ କାମ୍ୟ ମୋହର ।
ମୋ କାମନା କ'ଣ ପୂର୍ଣ୍ଣ ହେବ ନାହିଁ
ଦୟାରୁ କଣିକେ ତୁ ଦେବୁ ନାହିଁ,
ବଳେ ପଶି କରି ଛଡ଼ାଇ ନେବି ମୁଁ
ଦେଖିବି ନ ଦେଇ ଯିବୁ ତୁ କାହିଁ ?
ତୋର ଦେବାଠାରୁ ମୋ ନେବାଟା ହେବ
ସଂସାର ଭିତରେ ବହୁତ ବଡ଼,
ରଣଗୋଲ କରି ଧରନା ଆୟୁଧ
କଂସ ତ ଟଲୁଚ୍ଛେନା ତୋ କରୁ ଶର ।
ଦେଖିବି କେବଳ ତୋ ମାରଣା ରୂପ
ନା ନା ! କରୁଣାର କଅଁଳ ଛବି,
ତରଳାଇ ଦେବ ଲହୁଣୀର ପରି
ରାକ୍ଷସ ହୃଦୟ ଦାରୁଣ ପବି ।
ଧରିବନି ଧନୁ ଧରାଇ ଦେବନି
ମାଲଙ୍କ ହାତରେ ମରାଇ ଦେବ,
ବସ୍ତ୍ର ପରାକ୍ରମ ଦେବତା ପୌରୁଷ
ବସି ବସି କରି ଛଡ଼ାଇ ନେବ ।
ନ ହେଲେ ମାଗିବ ଦେଏ ଦେଏ ବୋଲି
କି ଅବା ମରିବ ମୁଁ ଦେଖି କରି,
ପଶିବ ସରଗେ ବସିବ ହୃଦୟେ
ଦେଖିବ ସେଥିରୁ ତହୁଁ କପରି ?
ସରଗ ତ ଆସି ନିକଟ ହେଲାଣି
ଆଜ ଚକାଏ କି ଯିବନ ପରି ?
ଶରଦ୍ଧନ ପାଇଁ କଂସକୁ ହୃଦୟେ
ଯେଣେ ଯିବୁ ତେଣେ ଥିବୁ ରେ ଧରି ।

ଗୋପ ବୃନ୍ଦାବନ ବାସ ସାରିଦେଇ
ଆଜି ତୁ ବଂଶୀ ବାଇବୁ ନାହିଁ,
କଂସ ପରି ଦୋଷୀ ବନ୍ଧୁକରି ଶିରେ
ଏତେ ବଳୁଆ ତୁ ଯିବୁ ବା କାହିଁ ?
ବେଳ ବୁଡ଼ିଗଲେ ଆସଇ ଅନ୍ଧାର
ଆସନ୍ତା କାଲିକି ଲୁଚାଇ ଦେଇ,
ସେ ଅନ୍ଧାର କ'ଣ ଲୁଚାଇ ପାରିବ
କଂସ ଦେଖିବ ତୋ ଆଲୁଅ ନେଇ ?
ଦଶଦିଗପାଳ ଦେଖି ଆସିଲେଣି
ଠିକଏ ଠିକଏ ପରଶୁ ହୋଇ,
ଫସର ଫାଟିବ ହିନାଳ ଦିଶିବ
କଂସର କାଳିମା ଯିବ ତ ଧୋଇ ।
କି ମନ୍ତ୍ରରେ ତୁ ବା ଏଡ଼ାହେଁ ମନେ
ତହିଁରୁ କି କିଛି ମିଳୁନ ଅନ୍ତ,
କଂସକୁ ତାରିବା ପାଇଁ କି ତୁ କ'ଣ
ମନକୁ ମନକୁ ଏତେ ସଂତପ୍ତ !
ଆଠ ବର୍ଷ ଆଗେ ଜନମ ଅନ୍ଧାରେ
କିଏ କଢ଼ାଇଲା ତୋତେ ରେ ବାଟ,
କଂସ ଜୀବନ କି ବଜ୍ରଳ ହୋଇନ
ଆଲୋକ ଦେଇନ ଯମୁନା ଘାଟ !
ଆଠଟା ବରଷେ ଭୁଲିଗଲୁଣି ତୁ
କଂସ ଅଭିଳାଷ କଂସ ମାରଣ,
ସେଥିପାଇଁ ପରି ଅକ୍ରୂରକୁ ପେଷି
ଆଣିଛୁ ଏଠିକି କରି ବରଣ !
ଦେବକୀ ଅଷ୍ଟମ ଗରଭ ପୁଅ ତ
ମୋତେ ମାରିବାକୁ ଏତିକି ଚିନ୍ତା,
ତୁ କ'ଣ ଭେଟିବେ ରେ ନନ୍ଦ ସେ ପୁଅଟି
ନୋହୁ ତୁ ସତରେ ଜଗତ ପିତା !

ବାପ ହୋଇ କଏ ମାରଇ କି ପୁଅ
ସେଥିପାଇଁ କ'ଣ ତୋର ଭାବନା,
ବାପ ଯେତେବେଳେ ପୁଅ ମାରୁଥିଲା
ତାକୁ ପରା ନଜେ କରନ୍ତୁ ମନା ?
ମାନଲନି ବୋଲ ତୁ ପରା ରଖିଲୁ
ପୁଅକୁ ମରଣୁଁ ବାପକୁ ମାର,
ଆଜ ତୋର ମୋର ସେଇ କଥାକଥି
ଦେଖିବ କେ ଯିବ କାହାକୁ ହାର !
ତୋର ଛଡ଼ା କ'ଣ ଆଉ କଏ ସତେ
କାଠ ଖୁଣ୍ଟାରୁ ହେବ ବାହାର !
ଏତେ ଅସମ୍ଭବ ସମ୍ଭବ କରିବା
ଏ ପାଗଲପଣ ଅଛି ବା କାର ?
କଂସ ମନକଥା ମନେ ଗୁଣି କୃଷ୍ଣ
ଧନୁଧର ପାଶେ ମିଳଲେ ଯାଇ,
ପ୍ରହରୀ ଏ ହାତ ହାତିଆର ଧରି
ଦୁଆରେ ଅଛନ୍ତି ତାଙ୍କୁ ହିଁ ଗୁହିଁ ।
ଯମର ଦୂତ କି ଭୂତ ପରି ହୋଇ
ଡରାଇ ଅଛନ୍ତି ଦେଖାଇ ରୂପ,
ଗୁହଁଛନ୍ତି କିବା ଖୁଣ୍ଟା ଗଛଗୁଡ଼ା
କି ଅବା ମୁଗୁନି ପଥର ସ୍ତୂପ !
ପ୍ରକାଣ୍ଡ ଗୃହଟା ଝଣା ହୋଇଅଛି
ସୁନୀଳ ଆକାଶ ଶିରକୁ ଧରି,
ସୁନା ଜରି ଫୁଲ ଚହିଁରେ ଫୁଟିଛି
ଶତ ଚନ୍ଦ୍ରମା ନକ୍ଷତ୍ର ପରି ।
ପ୍ରହରୀଙ୍କ ଗୁହିଁ କହିଲେ ଗମ୍ଭୀରେ
ଠିଇକ ଇଜାର ଭଣଜା ପରି,
"ଭିତରକୁ ଯାଇଁ ଦେଖିବୁ ଧନୁକୁ
ବେଗେ ବାଟ ଛାଡ଼ିଦିଅ ପ୍ରହରୀ !"

ପ୍ରହରୀ ଦେଖି— ତିର କରି ହସି
କହିଲେ, "କହୁଛି ନବାବ ପରି,
ରଜାର ହୁକୁମ ନାହିଁ ଛାଡ଼ିବାକୁ
ଫେରିଯା ନ ହେଲେ କାନକୁ ଧରି ।
ଗୋଡ଼ ପୂରାଇଣ ରଗଡ଼ି ରଗଡ଼ି
ବାହାରେ ଛାଡ଼ିବୁଁ ଚଣ୍ଡିଆ ମାଡ଼ି,
କେତେ ମୁହାଁସରେ କହିଲୁ କଥାଟା
ବେଇଗି ଏଠୁଁ ଯାଆ ବାହାରି ।"
ଶ୍ରୀକୃଷ୍ଣ କହିଲେ, "ଆମେ ଦୁଇ ଭାଇ
ରଜାର ଭଣଜା ଆଣିଛି ରଜା,
ଅକ୍ରୂର ସଙ୍ଗରେ ରଥଟେ ପଠାଇ
ଦେଖିବୁ ଉତ୍ସବ ଦେଖିବୁ ମଜା ।
ଆମରି ପାଇଁ ତ ଧନୁର୍ଯୋଷ ଯାତ
ତୁମେ କି ସେକଥା ନାହିଁରେ ଜାଣି ?
ଦେଖିବ ଟିକଏ ସତାର କରିଥା
କୁଆଡ଼େ ବହିବ କୁଆଡ଼ ପାଣି !"
ପ୍ରହରୀ ଜଗିଲେ ବାଟ ଛାଡ଼ିଲେନି
ମୁରିଟ ଦେଖାଇ ଡରାଇ କରି,
ବଳରାମ ରାଗି ଆଗ ହୋଇଗଲେ
ଝିଙ୍କିଦେଇ ବାହା ଟାଣରେ ଧରି ।
ଭଡ଼ ଭଡ଼ ହୋଇ ଉପୁଡ଼ିଗଲା ତା
ମାଆ ଲୋ ବାପ ଲୋ ରଡ଼ି ଛାଡ଼ିଲେ,
ଛଟଛଟ ହୋଇ ପଡ଼ିଲା ସେଇଠି
ମୁହଁ ମାଡ଼ି କରି ଧରଣୀ ତଳେ ।
ଏହା ଦେଖି କରି ଆଉ ଯେତେ ଥିଲେ
ପଳାଇ ପଶିଲେ କିଏ କୁଆଡ଼େ,
ଓପଡ଼ା ହାତକୁ ଉଂଚାଇଣ ରାମ
ଗୋଡ଼ାଇଲେ ସବୁ ଗଲେ ଯୁଆଡ଼େ ।

ଗୋପ ଧୃଏ ସବୁ ଧାଇଁଲେ ବାହୁଡ଼ି
ମିଳିଲେ ମଥୁରା ତୋଟାରେ ଯାଇ,
ଯଶୋଦା ଜନନୀ ବାହୁଡ଼ା ବାଟକୁ
ଗୋଡ଼ ଟେକିକରି ଥିଲେ ଅନାଇଁ ।
କହିଲେ ପିଲାଏ, "ରାମ କୃଷ୍ଣ ମେଳେ
ଦେଖିଲୁ ମଥୁରା କଟକ ବୁଲି,
ଶୋଭା ସଂପଦରେ ସରଗ ସଙ୍ଗରେ
ହୋଇଲେ ବା ହୋଇପାରିବ ତୁଳି ।
କୋଉ ସମ୍ପଦ ବା ଅଭାବ ହୋଇଛି
ସବୁଠି ପଡ଼ିଛି ମଣି ମୁକୁତା,
ଗଗନେ ଝୁଲୁଛି ଉଜ୍ଜ୍ୱଳ ଚନ୍ଦୁଆ
ସୁନାର ସୂତାରେ ହୀରକ ଗୁନ୍ଥା ।
ଏତେ ଦିନଯାଏ ଗୋପପୁରଟାରେ
ଗୋରୁଙ୍କ ମେଳରେ ପଶୁଙ୍କ ପରି,
ବଢ଼ିଥିଲୁ ଖାଲି ବଣରେ ବୁଦାରେ
ଦେଖି ନ ଥିଲୁ ତ ପକ୍କା କପରି ।
ଯୋଉ ଆଡ଼େ ଯିବ ଖାଲି ତ ଦେଖିବ
ଧାଡ଼ ଧାଡ଼ ହୋଇ ଧୋବଳା ପକ୍କା,
ଜନଗହଳରେ ବାଟ ମିଳୁ ନାହିଁ
ଦେହରେ ଦେହରେ ବାଜୁଛି ଧକ୍କା ।
ଧନ୍ୟ ତୋର ପୁଅ ରଜା ରଜକକୁ
ଚାପୁଡ଼ାଏ ମାରି ଆଣିଲା ବାସ,
ଏହା ଦେଖି କରି ସଭିଙ୍କ ମନରେ
ମନକୁ ପଶିଲା ମରଣ-ତ୍ରାସ ।
କୁଚ୍ଛା କୁଜାଟାର କୁଜକୁ ସଳଖି
ସେଇନା କଲା ଲେ ସାର ସୁନ୍ଦରୀ,
ତିନ ଭୁବନରେ କୋଉଠି ହେଲେ ହି
ଗୋଟିଏ ନାରୀ କ ଅଛି ତା ପରି !

ସୁଦାମା ମାଳୀକ ଫଳେ ଗୋ କଲ୍ୟାଣ
ସୁଖ ସଉଭାଗ୍ୟ ମିଳିବ ତାକୁ,'
କଂସ ଘରଗୁର- ଗୁଣ୍ଡାଙ୍କୁ ମାଇଲେ
ଯେପରି ଦେଖିଲେ ଯୋଉଠି ଯାକୁ ।
ପ୍ରହରୀଗୁଣ୍ଡାଙ୍କ ହାତ ଉପାଡ଼ିଲେ
ଟାଣୁଆ ଗୁଣ୍ଡକୁ ଭଣିଲେ ଛାଡ଼,
ସେଗୁଣ୍ଡାକ ସବୁ ଯିଏ ଯହିଁ ଥିଲେ
ପଡ଼ିଲେ ଯେଉଁଠି ମୁହଁକୁ ମାଡ଼ ।
ଭଙ୍ଗା ହାତ ଧରି ଆଉ ସମସ୍ତଙ୍କୁ
ଛଡ଼ାଦେଲେ ଘରେ ଗଲେ ସେ ଡରି,
ଆଉ କେତେକଙ୍କୁ ନସୁକ ଚିପିଲେ
ସେଇଠି ସେଗୁଣ୍ଡା ପଡ଼ିଲେ ମରି ।"
ପିଲାଙ୍କ ମୁହଁରୁ ଶୁଣିଲେ ଯୋଉନା
ନନ୍ଦ ଓ ଯଶୋଦା ହେଲେ କାତର,
କଂସ ରାଜ୍ୟ ପଶି ଏତେ କଥା କଲେ
କଂସ ରାଗକୁ କି ପିଲା ମାତର !
ହସି ହସି ଆସି ରାମ କୃଷ୍ଣ ଦୁହେଁ
ମାଆଙ୍କ ପାଖରେ ବସିଲେ ଯାଇଁ,
ମାଆ ଆଦରରେ ଅଉଁସି ପାଉଁସି
କହିଲେ ପୁଅଙ୍କ ମୁହଁକୁ ଚାହିଁ ।
"ରଜାର ରାଜ୍ୟରେ ହୁରୁଡ଼ୁ ରୁ କଲ
କଂସ ରଜା ତାହା ସହିବ ଠିକ ?
ତୋତେ ନେଇ କରି କେଣିକ ଯିବି ରେ
ତୋ ଲାଗି ଜୀବନ ହରାଇବି କି ?"
ଯୋଉ ଆଡ଼େ ଗଲ କଲ ଦୁରୁଖୁରୁ
ଯେତେ ମନାକଲେ ମାନିଲ ନାହିଁ,
ରଜା ରାଗ କଲେ କଅଣ କରିବ
କୋଉ ଗାତରେ ବା ପଶିବ ଯାଇଁ ?"

ଏତକ କହି କାଢ଼ ପକାଇଲେ
ପୁଅଙ୍କୁ ନେଇଣ ଦେଲେ ଗାଧୋଇ,
ପୋଛିପାଛି ଦେଇ ପାଟପଟନିରେ
ବସିଲେ ପାଖରେ ଖାଇବା ଥୋଇ ।
ଖିରି ସର ପୁରି ଯାହା ନେଇଥିଲେ
ପରଷିଦେଲେ ତା ପିଲାଙ୍କ ମେଳେ,
ସବୁ ପିଲତକ ବସି ଏକାଠେଇଁ
ଗପସପ ହୋଇ ଖାଇଲେ ଗେଲେ ।
ରାମ ବନମାଳୀ ବସିଲେ ଆରାମେ
ମାଆ ବୋଳିଦେଲେ ଚୂଆଚନ୍ଦନ,
ଗୋପଝିଏ କେତେ ବିଚଣା ବୁଲାଇ
ଧୀରେ ଧୀରେ କରି କଲେ ପବନ ।
କଏ ଫୁଲ ଆଣି ଭୂଷିଦେଲେ ଅଙ୍ଗେ
ଶେଯରେ କେ ଫୁଲ ଦେଲା ଶେଯାଇ,
କୃଷ୍ଣ ବଳରାମ କ୍ଳାନ୍ତ ହୋଇଥିଲେ
ଶୋଇଲେ ଶେଯରେ ଆରାମ ପାଇ ।
ଏତେ କଥା ସବୁ ଶୁଣିଲା ଯୋଉ ନା
ଚଉସ୍ତ ହୋଇଲା କଂସର ମନ,
କହିଲା, "ସତରେ ଭଗବାନ କ'ଣ
ନନ୍ଦଘରେ ଆସି ହେଲା ଜନମ !
ବାଳୁତ ଟିଲଟା ଏହାହିଁ ବଳୁଆ
ପୂତନା ମାଇଲା ସ୍ତନକୁ ଶୋଷି,
ଆଉ ଯେତେ ସବୁ ବୀରଙ୍କୁ ମାଇଲା
ଖୋଇ ଦେଇ ଯତ୍ନେ ଥିଲି ମୁଁ ପୋଷି !
ଧୋବାକୁ ମାଇଲା ଲୁଗା କାଢ଼ିନେଲା
କୁବୁଜାଠୁଁ ନେଲା ଫୁଲ ଚନ୍ଦନ,
ସୁଦାମା ମାଳୀକୁ କଇଲଣ କରି
ଅଜାଡ଼ି ଦେଲା ତ ଧନ ରତନ ।

ଏଠି ପଶି ଏବେ    କଥା କହିଗଲ
ଦେବତା ଯେ କଥା ପାରନ୍ତେ ନାହିଁ,
କୃଷ୍ଣ କ'ଣ ହେବେ    ଦେବତାଠୁଁ ବଡ଼
ଉଚ୍ଛଳନ ମୋତେ ସେଇଥିପାଇଁ ?
ଏଣିକି କଅଣ    କହିବି ବୋଲିଣ
ବୁଦ୍ଧି ବାଟ ମୋତେ ଦିଶୁ ତ ନାହିଁ,
ମାଲ ଓ ମାହୁନ୍ତ    ହାତୀ କୁବଳୟା
ମରାଇବାକୁ କି ଦେବ ଲଗାଇ ?
ସତରେ ସେ କ'ଣ    ବଳିଯିବ ତାଙ୍କୁ
ବରତିବ ଏଠୁଁ ଜୀବନ ଧରି ?"
ଏଇତକ ସିନା    ଭାଳଇ ମନରେ
ଛନ ଛନ ହୋଇ ଉଠଇ ଥରି ।
ଶୁଏ ମୁହିଁ ମାଡ଼ି    ଆହୁରି ଛାତିରେ
ନିଦ ତ ଆଖିକୁ ଆସଇ ନାହିଁ,
ନାନା ଅମଙ୍ଗଳ    ଦେଖଇ ଆଗରେ
ସେଇ ଆତଡ଼ି ଖାଲି ବସଇ ରୁହିଁ ।
ଅଧା ରାତିଟାରେ    ଦର୍ପଣ ଦେହରେ
ଦେଖଇ ଉଜ୍ଜ୍ୱଳ ଆଦିତ୍ୟ ଛାଇ,
ଏକ ଦୀପଶିଖା    ଦିଶଇ ଦୁଇଟା
ଦିଶଇ ସେପରି ରଜନୀ-ସାଇଁ ।
ସୁନାର କାନ୍ଥରେ    ଦେଖେ ଦେହ ଛାଇ
ସେଥିରେ ଦିଶଇ ନାହିଁ ତ ମୁଣ୍ଡ,
ଛାଇ ଦେହପାଇ    ସବୁଠି ଖଣ୍ଡିଆ
ଧୀଆ ଧାଉଡ଼ି ତ ହୋଇଛି ରୁଣ୍ଡ ।
ନିଶ୍ୱାସ ପବନ    ଶୁଭେ ଶଙ୍ଖ ପରି
କରୁଣ କ୍ରନ୍ଦନ ଶୁଣଇ ଦୁଃଖେ,
ଗଛ ଡାଳେ ଡାଳେ    ଗୋରୁ ଗାଈ ଚଢ଼ି
ଖେଳନ୍ତି ବୁଲନ୍ତି ଯେ ଯାର ସୁଖେ ।

ବାଲୁଆ କୁକୁର          ମଡ଼ା କୁଡ଼ କୁଡ଼
ଆନନ୍ଦେ ଆଟବୋରି ଯେ ଯାଉ କୋଟଳ,
ଆନନ୍ଦ ଉତ୍ସବ          କଂଠମ୍ଭ ଏକାଠି
ଚଞ୍ଚକାର କରି କରାଲ ଗୋଟେଲ ।
ଗଧ ଚଢ଼ିକରି          ଲୁହାପାନ ଧରି
ବାଟ ପିଇ ପିଇ କଏ ବା ଯାଏ,
ଲଙ୍ଗଳା ଦେହଟା          ତେଲ ସୁଡ଼ୁବୁଡ଼ୁ
ରଙ୍ଗ ଫୁଲମାଳ ବେକରେ ଥାଏ ।
ସବୁ କୁଲକ୍ଷଣ          ଦେଖିଲେ ଆଗରେ
ମନକୁ ମନକୁ ହରାଏ ଚେତା,
ଭାବଇ ପିଲାଟା          ମାରିପିବ ଯେବେ
କେ କହିବ ମୋତେ ତ୍ରିପୁର-ଜେତା ?
ଆତୁରି ଭାବଇ          ଜନମେ ଜନମେ
କେତେ ଥର ମରି ହୋଇଛି ଜନ୍ମ,
ଜନମି ମରିବା          ହେଲା ସିନା ସାର
ଯାଉ ନାହିଁ ମୋର ଅସୁର ନାମ ।
ଏଥରକ ନଷ୍ଟେ          ଫଣିଶ ସରଗେ
ନାହିଁ ! ନାହିଁ ! ଦେହେ ଆସିବ ନାହିଁ !
ବସ୍ତୁର ଦେହରେ          ଥାଳୁଟିଏ ରଙ୍ଗ
ମୁକତ ତ ମୋତେ ବସିଛୁ ଗୃହିଁ ।
ରାତ ପାହିଲେ ତ          ହେବ ଧନୁଭଙ୍ଗ
ଆସିବ ତ ପୁଣି ମାରଣା ହୋଇ,
କଂସର ମନରୁ          ସବୁ ରାଗଦ୍ୱେଷ
ମାରି ସଫା କରି ଦେବନି ଧୋଇ ?
ଏତେ ଲୋକଙ୍କୁ ଯେ          ଲୋଡ଼ ଆଣିଛୁ ମୁଁ
କେହି ହେଲେ ଜଣେ ହେବନି ସାହା,
ଅଦୃଷ୍ଟକୁ କ'ଣ          ଆଦରି ନେବି ମୁଁ ?
ଯାହା ଲେଖାଥିବ ହୋଇବ ତାହା ?

କଂସ ଆଖି କ'ଣ ଫୁଟି ଅନ୍ଧ ହେଲା
ଦେଖି ପାରୁ ନାହିଁ କଅଣ ଅଛି ?
ତ୍ରିନପୁରପାଳ ଜିଣିବାକୁ ଗଲା
କଏ କାହିଁ ସବୁ ଲଟଲେ ଛି ଛି ! !
ସେହି ସଙ୍ଗେ କ'ଣ ଅଦୃଷ୍ଟ ଲୁଚିଲା
ତାକୁ କ'ଣ ଖୋଜ ପାଇବ ନାହିଁ ?
ସେହି କୃଷ୍ଣ କ'ଣ ଦୃଷ୍ଟ ଓ ଅଦୃଷ୍ଟ
ତାହା ଛଡ଼ା କିଛି ନାହିଁ କି କାହିଁ ?
ତେବେ ମୁଁ ଖୋଜିବ କିଆ କୋଉଠେଇଁ
ମନକୁ ତ ଆସେ ଦେବ ସେ ଧରା,
ସେହି କି ଗଗନ ସେହି କି ତପନ
ସେହି କି ସାଗର ଧରଣୀ ତରା ?
ମୋର ହର୍ବଳପୁ ତାହାର ଦେହଟି
ସେଇଥିରେ ଅଛି ମୋର ଅଦୃଷ୍ଟ ?
ଆଜ ସମସ୍ତଙ୍କୁ ଫାଙ୍କି ଦେବ ବୋଲି
ମୋତେ ଠକିଦେବ ଭାବିଛି ଦୁଷ୍ଟ ।
ଭାଂଗିବ ସେ ଦେହ ଖୋଜିବ ନିରେଖି
କୋଉଠି ଲୁଚାଇ ରହିବ ଦେଖି,
କୋଉ ଭଲ ମନ୍ଦ ଲୁଚାଇ ଛପାଇ
ବହି ରଖିଛି ମୋ ଅଦୃଷ୍ଟେ ଲେଖି !
ଗତ ପାହିଯାଉ ମୁଲକତ ହେବ
ଗୃହରେ ବସି ମୁଁ ଶପିବ ସଂଖି,
ଦେଖିବ କପର ଉବୁଶପିବ ସେ
କୋଉ ବାଟ ତାର ପାଶବ ରଖି !
ଆସିଲା ଆସିଲା ! କେତେ ଧୀରେ ଧୀରେ
ବଢ଼ାଇଲା ହାତ ଧରିବ ପରା,
ଦେଖ ଦେଖ ସବୁ ମନୋହର ବେଶେ
କେମନ୍ତ ଆସି ସେ ଦେଇଛି ଧରା !

ନା, ନା ! ମନୋହର ନୁହେ ତ ଏ ରୂପ
ବଂଶୀ ଥୋଇ ଦେଇ ଧରିଲ ଚକ୍ର,
ହସ ହସ ମୁହଁ ଫୁଲାଇ ଦେଲ୍‌ ତ
ଆଖି ଯୋଡ଼ାକ ତ କଲଣି ବକ୍ର !
କାହିଁ କେଣେ ଗଲା ଦିଶୁ ନାହିଁ ଆଜ
ମୋତେ ଦେଖି କ'ଣ ମାଡ଼ିଲା ଡର,
ଜାଣିଶୁଣି କରି ତ୍ରିପୁର-ବିଜୟୀ
କଂସର କାହିଁକି ହେଲୁ ରେ ପର ?
ଆସୁ ଆସୁ କଆଁ ଲୁଚୁ ରେ ଖୁରୁଣ୍ଟା
ହୁଅ ଶୂର ହାତ ଧର ଆୟୁଧ,
କଂସ ତ ଡାକୁଛି ମାଲକଚ୍ଛା ମାରି
ଥରଟିଏ କର ତା ସଙ୍ଗେ ଯୁଦ୍ଧ ।
ଗଉଡ଼ ଛୁଆଟା କି ଯୁଦ୍ଧ କରିବୁ
ଖାଇଛୁ କି କେବେ ମାଉଁସ ରକ୍ତ ?
ଦହି ଦୁଧ ଖାଇ କି ବଳ ଅର୍ଜିଚୁ
ବାହା ଘୃତ ଚୋରି କରିଛୁ ଶକ୍ତ !
କଉଣ ଗୁଣରେ ଲୁଚାଇ ପାରିବୁ
ଅଦୃଷ୍ଟକୁ ମୋର ବଳରେ ଧରି ?
ଏଇନା ତ ଗୁଣ ବଦାଗ କାଢ଼ିବ
ଅଦୃଷ୍ଟ ହେବନ ଦୃଷ୍ଟ କପରି ?
ଆକାଶ ଧରଣୀ ଏକା ହୋଇଗଲା
ସବୁ ତ ଦିଶିଲା ସମାନ ହୋଇ,
କାହାକୁ ଧରିବ କାହାକୁ ମାରିବ
କାହିଁ ମୋ ଅଦୃଷ୍ଟ ଦେଲା ତ ଧୋଇ !
ପଡ଼ିଲା ଚମକ ଭାଙ୍ଗିଗଲା ନିଦ
ତା ସଂଗେ ଭାଙ୍ଗିଲା ତାର ସ୍ୱପନ,
ଦେଖିଲା ଫଟରୁ ଦିଲେଣି ଦିଗ
ଗଗନରେ ଉଇଁଲେଣି ତପନ ।

କାଉ କୋଇଲ ଏ ଗଢ଼ିଲେଣି ସବୁ
ଗଛରେ ଗୁଳରେ ଯେ ଯାର ସୁଖେ,
କେହି ତ କାହିଁକି ମଉଳା ପାଇନି
କଂସ ଯେତେବେଳେ ସଢ଼ୁଛି ଦୁଃଖେ ।
ସଂସାରଟା କ'ଣ ଏଡ଼େ ଆପସ୍ୱାର୍ଥୀ
କେ କା ଦୁଃଖେ ସୁଖେ ହୁଏନା ଭାଗୀ,
ସବୁ ଏକା ଏକା ଲାଗିପଡ଼ିଥାନ୍ତି
ଯେ ଯାର ଜୀବନ ରଖିବା ଲାଗି !
ଏକା କଂସ କ'ଣ ଓଲୁ ଏ ସଂସାରେ
ପରେ ପରେ କଲା ଏଡ଼େ ବିଶ୍ୱାସ,
କୃଷ୍ଣଙ୍କୁ ମାରିବା ପାଇଁ ପଠାଇଲା
କିଏ ତାକୁ ଦେଲା ମିଛ ଆଶ୍ୱାସ !
ନା ନା, ପର ହାତେ ଆଉ ଦେବି ନାହିଁ
କଦାପି ଏ ଗୁରୁ କାମର ଭାର,
ନିଜ ହାତେ ନିଜେ କରିବି ମୁଁ ସବୁ
ଆଜି ମୁଁ ମାରିବି ଶ୍ରୀକୃଷ୍ଣ ଚୋର ।
ପାରିବି ମୁଁ ସତେ ? ନା ନା ପାରିବିନି !
ଯୁଗେ ଯୁଗେ କେହି ପାରି ତ ନାହିଁ,
ହିରଣ୍ୟ ରାବଣ ବାଣାସୁର ଆଦି
ସଭିଏ ମଲେ ତ ତାହାରି ପାଇଁ !
ଭଲା ହଟହଟା ହେଲା ତ ଏଇନା
କାହିଁ କି ଡାକିଲା ଏଡ଼େ ସହଳ,
ଆଉ କେତେ ଦିନ ଜୀଇଥାନ୍ତି ହେଲେ
ଏଇନା ତ ମୋର ଖଟୁନି ବଳ !
ଯାହା ହେବାର ତ ହୋଇ ସାରିଲାଣି
ଆଉ ବା ଭାବିଲେ କି ଅଛି ଲାଭ !
ଆସିଲାଣି ଯେବେ ଫେରି ତ ଯିବିନି
କେ ଜାଣିବ ଅବା ମୋର ଅଭାବ ?

ଚରଚର ହୋଇ  ଯାରେ ନିତ୍ୟକର୍ମୀ
  କୃଷ୍ଣଙ୍କ ମରଣ ଦେଖିବା ପାଇଁ,
ହତାଶା ଭିତରେ  ଆଶା ଲୁଚି ଲୁଚି
  ମଣିବା ପାଇଁକି ହଏ ମତାଇ ।
ଡଗରକୁ ଡାକି  କହିଲା ଆକଟି
  "ଜନ ସମସ୍ତଙ୍କୁ ଟେଅଲ ଯାଇ,
କାମଦାମ ସାରି  ଆସନ୍ତୁ ସଭାକୁ
  ଗୃହୁଁ ଗୃହୁଁ ବେଳ ଯାଉଛୁ ଧାଇଁ ।
ମାହୁନ୍ତକୁ କହ  ହାତୀ ସଜ କରି
  ଠିଆ କରିଥିବ ସିଂହ ଦୁଆରେ,
ଚାଣୁର ମୁଷ୍ଟିକ  ଆଦି ଯେତେ ମାଲ
  ଭଡ଼ାଭଡ଼ ହୋଇ ଥିବେ ସେଠାରେ ।
କୃଷ୍ଣ ବଳରାମ  ମରିବେ ଯେପରି
  ସେ କାମଟି କେବେ ହେବନି ବାକି,
ଦେଖୁଛ ତ ସବୁ  ପିଲା ଦୁଇଟା
  କେତେ ଉପଦ୍ରବ କଲେଣି ଆସି !
ରଙ୍ଗସଭା ଦ୍ୱାର  ମୁକୁଳାଇ ଦେବୁ
  ଆଉମାନେ ସବୁ ବସିବେ ଯାଇ,
ଆଣିବୁ ଦେବକୀ  ବସୁଦେବ ଧରି
  ପୁଅ ମରଣକୁ ବସନ୍ତୁ ଚାହିଁ ।
ନନ୍ଦ ଯଶୋଦାଙ୍କୁ  ଧରଇ ଆଣିବୁ
  ପୁଅଙ୍କ ମରଣ ଦେଖନ୍ତୁ ବସି,
ମୋତେ ମାରିବାକୁ  ପୁଅଙ୍କୁ ଲୁଚାଇ
  ଆଜଯାଏ ଦେଖୁଥିଲେ ତ ହସି ।
ମୋର ଅଧୀନରେ  ପ୍ରଜାଟାଏ ହୋଇ
  ମୋହଠାରେ ତାର ଏଡ଼େ କପଟ !
ଜଉଡ଼ ଗୋଟାଏ  ଏଡ଼କ ବପଦ
  ନଦାଘ ମୂର୍ଖଟା ହେଲୁ ନପଟ ।

ଉଗ୍ରସେନଙ୍କୁ ତୁ କହ ନେଜେ ଯାଇ
ଆସୁ ସେ ସଭାକୁ ବସୁ ହେଉଛି,
ଝିଅ-ଜ୍ୱାଇଁ ସଙ୍ଗେ ସଲ ହୋଇଥିଲା
ଆଜି ସାରଦେବ ତାର ଟାଇଛି ।
କହ ବସୁଦେବେ ତାହାର ସତ୍ୟ ତ
କରଥିଲା ଯାହା ପାଳିଲା ନାହିଁ,
ପନ୍ଦର ପିଲାକୁ ଦେଇଥିଲା ଆଣି
ଏ ପୁଅକୁ ଦେଲା ନାହିଁ କପାଇଁ ?
ଲୁଚାଇ ଲୁଚାଇ ବଢ଼ାଉଣ ଥିଲା
ମୋତେ ସିନା ଖାଲି ମାରବ ବୋଲି,
ଜାଣି ନ ଥିଲା କ ମୋହର ପ୍ରତାପ
ଆଜ ଫାଶିଖୁଣ୍ଟେ ଖେଳବ ଦୋଳି !
ଝିଅଟାଏ କାହୁଁ ଆଣିଲା କୋଳକୁ
ସେଇଟାକୁ ପୁଣି ଦେଉ ନ ଥିଲା,
କେତେ ସେ କାନ୍ଦିଲା କମ୍ପିଲା କାନ୍ଦଣା
ଭାବଥିଲା ପରା କଂସଟା ପିଲା !
ସେହି ଝିଅ ପୁଣି କହିଲା କପରା
"ତୋହର ବଇରି ବଢ଼ୁଚି ଲୁଚି,
ଅଛି ତୋ ମରଣ ବପଦ ଏଲନା
ଯାଇନ ତୋ ପାଖୁଁ ଦୂରକୁ ଘୁଞ୍ଚି ।"
ଦେବତାଙ୍କ କୂଟ ବଡ଼ ଭୟଙ୍କର
ଦେବୀଟାଏ ମଧ ବାମ୍ଭୁଣୀ ସମ,
ମହିଷାକୁ ପରା ଦେବୀ ମାରଥିଲା
ଦେବ ଦେବୀ କେହି ନୁହେ ଉତ୍ତମ !
ଭଉଣୀର ମୋର ଏଡ଼କ କପଟ
ବସୁଦେବ ହେଲେ କହିଲା ସତ,
ମନେ ମନେ ଭାରି ଖୁସି ହୋଇଥିଲେ
ପୁଅ ହାତେ ମୋତେ କରନ୍ତେ ହତ !

ମଥୁରା ନଗରେ ହୁରି ପଡ଼ିଗଲା
କୃଷ୍ଣ ବଳରାମ ଆସିଲେ ବୋଲି,
ଶୁଣିଲା ଯୋଜନା ହରଷ ବିଷାଦେ
କଂସର ମଗଜ ଖେଳିଲା ଦୋଳି ।
ଆଶା ଆଶଂକାରେ ହୋଇଲା ଅସ୍ଥିର
ଆଲୁଅ ସଙ୍ଗରେ ଦେଖେ ଅନ୍ଧାର,
ଶୁଣଇ ଏକାଠି ହରଷେ ମିଶିଣ
କରୁଣ କାନ୍ଦଣା ଶବଦ କାର ।
କିଏ ବା କାନ୍ଦଇ କିଏ ସେ ହସଇ
କିଏ ଜାଣିଲା ତା' ମରମ କଥା,
ମନ୍ଦନେ ମଉନେ ଘାରୁଁ ଘାରୁଁ ତାହା
ମନକୁ ତ ନଇଁ ପଡ଼ିଲା ମଥା ।
ବାରିପାରେ ନାହିଁ କିଛି ତ କୋଉଠି
ଅଦୃଷ୍ଟ ଲୁଚିଇ ଖେଳୁଛି ଖେଳ,
କହୁଛି କି ଆଜ ରେ ନିର୍ବୋଧ କଂସ
ଧାଇବ ସଙ୍ଗରେ ଖେଳନା ଗେଲ !
ଖେଳିଲୁ ତ ଖୁବ ଆଜ ତୁ ଖେଳନା
ଅନା ଥରେ ତୋର ପଛକୁ ଚାହିଁ,
ଦେଖ ଭଲକରି ଘାବ ଆଜ୍ଞା କରି
ପଛରେ ତୋର କେ ଅଛି କି ନାହିଁ ।
ଅଛି ଖାଲି ପାପ ଆଜ ତାର ଚାପ
ସେ ଦୁଃଖ ତୁ କ'ଣ ସହିବୁ ନାହିଁ,
ବାପ ମାଆ ତୋର ନାହାନ୍ତି ପଛରେ
ଆଜ କେ ଧାଇଁବ ତୋହର ପାଇଁ ?
ବସିପାରେ ନାହିଁ ହସିପାରେ ନାହିଁ
ଚାଲିପାରେ ନାହିଁ ଥରେଇ ଗୋଡ,
ଚିନ୍ତା-ଜ୍ୱର ତାକୁ ମାଡ଼ିବସେ ଆସି
ଦେହ ଓ ପରାଣ ଉଠଇ ତାଡ ।

ଲୁଗା ପିନ୍ଧୁ ପିନ୍ଧୁ ଖସଇ ଖୋସଣୀ
ଥର ଥର କର ମାରଇ ଭିଡ଼,
ଜାଣିପାରେ ନାହିଁ ବସନର ଧଡ଼
ଭିଡ଼ ପାଇକର ଯାଉଛି ଛିଡ଼ ।
ସଜବାଜ ହୋଇ ବାହାରିଲି ଘରୁ
ଆଗରେ ଆଗରେ ବାଜଇ ବାଜା,
ଆଜ ତ ମନଷ୍ଟା ମଉଳ ଯାଇଛି
ସବୁ ଧନ ପର ଧଶୁନ ତାଜା ।
ଗୋଡ଼ ତ ତାଳରେ ପଡ଼ୁ ନାହିଁ ଜମା
ସଳଖ ହୋଇଣ ପାରୁନ ଚାଲ,
କଏ ବା ଅନାଇଁ ଦେଖୁଛି ଏସବୁ
ନସ୍ତ୍ରତ ଲୁଚଇ ହସୁଛି ଖାଲ ।
କହୁଛି ମାରବେ ଯାଆନା ଯାଆନା
ଗଲେ ତୁ ତ ଆଉ ଫେରବୁ ନାହିଁ,
ଏଣେ ଯୋଡ଼ା ଯୋଡ଼ା ଚୋହର ଭରସା
ବାହୁଡ଼ା ବାଟକୁ ଥିବେ ରେ ଚାହିଁ ।
ତାଙ୍କ ସୀମନ୍ତରୁ ପୋଛନା ଟିନ୍ଦୂର
ତାଙ୍କର ଆଖିରୁ ପୋଛନା କଳା,
ତୁଅ ତୁସିଆର ଆଗେ ଫାଶିଖୁଣ୍ଟ
ସେ ଫାଶରେ କେବେ ଗଳାନା ଗଳା ।
ନସ୍ତ୍ରତ ମାରବ ବାରଣକୁ କଂସ
ମାନଲାନ, ସେ ବା ମାନନ୍ତା କାହିଁ ?
ମନରେ ନ ଅଛି ଅଦୃଷ୍ଟ ଦେଖିବ
ଜାଣୁଛି ମନରେ ହଂସାର ନାହିଁ ।
ହଂସା ଗୁଡ଼ାଇଲା ନାହିଁ ଲୋଭାଇଲା
ଉଡ଼ଲା, ମରବ ପତଙ୍ଗ ପର,
କଏ ବା ରଖିବ କାହାର ଦେହକୁ
ମୃତ୍ୟୁ ଯେବେ ନେବ ଚୁଟିକୁ ଧର !

ଏଇ ତ ଅଦୃଷ୍ଟ    ଦେଖିଲନି କଂସ
ଦେଖା ଦେଉ ଦେଉ ଲୁଚି ତ ଗଲା,
କିପରି ଦେଖନ୍ତା ?    କିଆଁ ବା ଦେଖନ୍ତା ?
କଂସ ତ ଏଇନା ନୁହେ ଚଗଲା ।
ତା ଅଦୃଷ୍ଟ ଦେଖି    ଅଛି ମୁକତରେ
ବନ୍ଧନ ଭିତରେ ରହନ୍ତା ସେ କି,
ତାହାର ପାଇଁ ତ    କୃଷ୍ଣ ଅବତୀର୍ଣ୍ଣ
କୋଳକୁ କଂସକୁ ନେବେନି ଟେକି ?
କଂସ କ'ଣ ଏତେ    ପ୍ରିୟ କୃଷ୍ଣଙ୍କର
ମାରିବା ପାଇଁ ସେ ଖୋଜଇ ନିତି,
ତାକୁ ବା କାହିଁକି    ଏଡ଼ାଇବେ ଆଦରି
କିଏ କି ଏକଥା ପାରିବ ଚିନ୍ତି ?
ବଇରି ରୂପରେ    ସାର ଭକତ ସେ
ଭଗବାନଙ୍କୁ କି ପାରଇ ଛାଡ଼ି ?
ତେଣୁ ସବୁବେଳେ    ରାଗେ ଅନୁରାଗେ
ଖେଳ ରୂପେ ଧଏ ନିଜକୁ ବାଡ଼ି ।
ଦେହଟା କେବଳ    ଏଇନା କଂସର
ଜୀବନ ତ ଆଉ ନୁହେ ତାହାର,
ଦେହ ଭଙ୍ଗିଲେ    ଜୀବନ ତାହାର
ଯିଏ ଦେଇଅଛି, ନୁହେ ତ କାର ।
ଜୀବନଟା ପାଇଁ    ଶରୀରରେ ମାୟା
କିଏବା ଜୀବନ ପାଉଛି ଦେଖି ?
ଅଦେଖା କଥାକୁ    ଝୁରି ଝୁରି କରି
ମିଛ କଳ୍ପନାରେ ରଖନ୍ତି ଲେଖି ।
ମରିବା ପାଇଁକି    ସେ ଡରଇ ବେଶୀ
ନିତି ପାଞ୍ଚ ଥର ମରଇ ସିଏ,
ମରଣ ବାହାରେ    ଅଛି କି ଜୀବନ
ମରଣକୁ ଏଡ଼ପାରେ କି କିଏ ?

ମରଣ ଯାତ୍ରୀଙ୍କୁ ସଂସାର ପଛରୁ
ଟିଣି ବାକୁ ଯାଏ ବିଳାପ କରି,
କିନ୍ତୁ ସେ କାନ୍ଦଣା ଶୁଣି ଶୁଣି କହ
ଆସେ କି ସେ କେବେ ପଛକୁ ଫେରି ?
ସେତେବେଳେ ଯାତ୍ରୀ ନାଚୁଥାଏ ଖାଲି
ତା ଆଖି ଆଗରେ ସରଗ ଶିଖା,
ଚଢ଼ଇ ପାହାଡ଼ ଲଙ୍ଘଇ ସାଗର
ପଶଇ ସରଗେ ଗଗନ ଚିରି ।
ଅମର ପଥର ମହାଯାତ୍ରୀ ସେ ତ
ହସି ହସି ଗାଏ ସ୍ୱର୍ଗୀୟ ଗାନ,
କହି ଦେଇଯାଏ "ଅଣବାହୁଡ଼ା ମୁଁ
ଦେଖ ଅଣାକାର ମୋହର ଯାନ ।
ଅମର ହେବାର ପାଇଚ୍ଛି ସନ୍ଧାନ
ଅମୃତ ପିଇବି ସରଗେ ପଶି,
ଲୋଭ ମୋହ ମାୟା ମୋତେ ପରଶିଲେ
ତୁମକୁ ଅନାଇଁ ଥିବି କି ବସି ?
ଶୁଣ ଶୁଣ ସବୁ ଭରଣି ବାପଣୀ
କପରି ଡାକୁଛି କଅଁଳ କରି !
ଉର୍ବଶୀଙ୍କଠାରୁ ଗୀତ ଭାସି ଆସେ
ଗଗନୁ ପବନେ ଲହରି ଧରି ।
ପାରିଜାତ ଫୁଟି ସୌରଭ ବାଣ୍ଟୁଛି
ଅମୃତ ରଖିଛି ମୋ ପାଇଁ ସେଠି,
ପିବି ନାହିଁ ତେଣେ ଶୁଖିବ ନାହିଁ ମୁଁ
ତୁମକୁ ଅନାଇଁ ଥିବି କି ଏଠି ?
ଜଂଜାଳ ସାରିଛି ବାକି ନାହିଁ କିଛି
ତେଣୁ ତ ଛାଡ଼ୁଛି ଧରଣୀ ଧାତ୍ରୀ,
ପାଇଛି ଆହ୍ୱାନ ଯାଉଛି ଆଗେଇ
ଅମରି ପଥର ମୁଁ ମହାଯାତ୍ରୀ ।

ପାହ୍ହି ତ ଯାଇଛି　　　ମୋ ଦୁଃଖ-ରଜନୀ
　　ଆଉ ମୁଁ ତ ନୁହେଁ ସଂସାରେ ଧନ୍ଦ,
ଫିଟିଅଛି ବେଡ଼ି　　　ମୁକୁଳିଛି ଫାଶ
　　ଆଉ କିଁ ରହିବ ହୋଇ ମୁଁ ବନ୍ଦୀ ?
ଦେଖ ଦେଖ ସବୁ　　　ଧରଣୀ ଦେହରୁ
　　ସରଣୀ ପଡ଼ିଛି କେଡ଼େ ସରଳ,
ନାହିଁ ଖାଲ ଢିପ　　　ନାହିଁ କଣ୍ଟା ଲଟା
　　ତୋରଣ ଦୁଆର ଦିଶେ ଉଜ୍ଜ୍ୱଳ ।
ହରି ମନ୍ଦିରରେ　　　କେତନ ଉଡ଼ୁଛି
　　ଚଢ଼ି ସାରିଲିଣି ମୁଁ ମହାଯାନ,
ପଛରୁ ଡାକିଲେ　　　ପଛରେ କାନ୍ଦିଲେ
　　ଆଉ କି ଶୁଣିବ ତା ମୋର କାନ ?
ବଙ୍କାଟଙ୍କା ବାଟେ　　　ଗୁଳୁ ଗୁଳୁ ସିନା
　　ଖସି ପଡ଼ିଥିଲି ଧରଣୀ ତଳେ,!
ଏଇନା ମୋ ବାଟ　　　ସଳଖ ସୁନ୍ଦର
　　ଦେଖ ଯାନ ମୋର ଖୁସିରେ ଚଳେ ।
ସ୍ୱଜନ ମୋହର　　　ସରଳ ପଥିକି
　　ତଥାପି ଲୋଡ଼େନା ମୁଁ ସାଙ୍ଗସାଥୀ,
ମୋର ରଥଟିରେ　　　ଏକା ମୁଁ ସାରଥି
　　ମୋ ହରିହରଙ୍କୁ ମୁହିଁ ତ ରଥୀ ।
ସରଗ ନିଶାଣେ　　　ପଡ଼ିଛି ମୋ ଆଖି
　　ସହି ପାରିବନି ତଳେହେଁ ଡେରି,
ମୁଁ ଅଣବାହୁଡ଼ା　　　ବାଟର ବାଟୋଇ
　　କେବେହେଁ ଚାହେଁନା ପଛକୁ ଫେରି ।
ମରଣକୁ ଜିଣି　　　ଯାଉଛି ମୁଁ ଚାଲି
　　ପାଇଛି ଯିବାକୁ ମୁଁ ନିମନ୍ତ୍ରଣ,
ପଛୁଁ ଡାକ ଦେଇ　　　ଅନୁକୂଳ ମୋର
　　ଭାଙ୍ଗିଦିଅ ନାହିଁ କେ ଅକାରଣ ।

ମୁକତ ଖୋଜ ମୁଁ ପାଇଛୁ ଏଇନା
ପଶିଯିବ ପରା ମୁକତ ଧାମେ,
ଗୁଡ଼ିଛୁ ସଂସାର ମିଛ ମୋହ ମାୟା
ଆଜ ସୁଦିନର ମଧୁର ଯାମେ ।"
ମଥୁରା ଦାଣ୍ଡରେ ରୁଣ୍ଡ ହେଲେ ସବୁ
କୃଷ୍ଣ ବଳରାମେ ଦେଖିବା ପାଇଁ,
କୁହାକୁହି ହେଲେ ହସି କାନ୍ଦ କରି
କଳା ଧଳା ରୂପ ଯୋଡ଼କ ଚୁହିଁ ।
"ଏହି ପରା ଆମ ଦେବକୀ ଦେଈର
ଅଂଚଳର ନିଧି ସୁନ୍ଦର ପୁଅ,
ଦେଖ ଦେଖ ସବୁ କେଡ଼େ ସୁନ୍ଦର ଲୋ
ଗଙ୍ଗା ଯମୁନାର ମିଳନ ସୁଅ ।
ଯାଙ୍କୁ ହିଁ ମାରିବ ବୋଲି କରି କଂସ
ଆଣିଛି ଲୋ ଧରି ପଠାଇ ରଥ,
କପରି ଲୋ ସତେ ତା ହାତ ବଳିବ
ମାରି କି ପାରିବ ହରି-ମନ୍ମଥ ?
କଂସର ତ ସତେ ଯୋଡ଼ିଏ ପୁଅ ଲୋ
ଯାଙ୍କରି ବୟସ ଯାଙ୍କରି ପରି,
ତାଙ୍କୁ ଦେଖି କ'ଣ ମନ ବଦଳୁନି
ଯାଙ୍କୁ ନେଇଛି ଲୋ ମାରିବ ଧରି !
ମାମୁଁ ପୁଅ ସଂଗେ ପିଉସୀପୁଅ ଲୋ
ଖେଳ ବୁଲି କ'ଣ ରହନ୍ତେ ନାହିଁ,
ଅକାରଣଟାରେ ବାଳୁତ ପିଲାଙ୍କୁ
ମାରିବ ଲୋ ଆଣି କଉଣ ପାଇଁ ?
ରାମ ଲକ୍ଷ୍ମଣ ଭରତ ଶତ୍ରୁଘ୍ନ
ସମ ଗୁରି ଭାଇ ଖେଳନ୍ତେ ହସି,
ଦେଖନ୍ତା ନାହିଁ କି ସେ ଶୋଭା ସମ୍ପଦ
ମନକୁ ଫୁଲାଇ ସୁଖରେ ବସି ।

କଏ ତାଙ୍କୁ ଦେଲା ଏଡ଼େ ପାପ ବୁଦ୍ଧି
ମାରିବା ପାଇଁକି ଆସୁଛୁ ତାକି,
ମାରିବ ତ ନାହିଁ ମରିବ ସିନା ଲେ
ମରଣ ତ ତାଙ୍କୁ ବସିଛୁ ଠାକି ।
ଏ ପୁଅ ମରିବା ପାଇଁକି ଜନମ
ମନରେ ତ କାହିଁ ହେଉନ ପ୍ରତ !
ମାରବ ତାରିବ ଆଜ୍ଞ ସମସ୍ତଙ୍କୁ
ସେଇଥିପାଇଁ ତ ଆସିଛୁ ମର୍ତ୍ତ୍ୟ ।
ମରିବା ଲକ୍ଷଣ କଛୁ ତ ଦଶୁନ
ମୁହଁରେ ତ ହସ ପଡ଼େ ଉଛୁଳା,
କାଲ ଆସି ଏତେ କାଣ୍ଡ କରିଗଲେ
ମନ ତ ଟିକଏ ନାହିଁ ମଉଳା ।
କଂସକୁ ତାଙ୍କର ନାହିଁ କଲେ ଡର
ଦଇବ ବାଣୀ କ ହୋଇବ ସତ,
ଯାଙ୍କର ହାତରେ କଂସ ଆଜ ନଷ୍ଟ
ଦେଖିବା ସକଳେ ହୋଇବ ହତ ।
ଆଜ ଦେବକୀର ଯିବ ସବୁ ଦୁଃଖ
ହସିବ ଟିକଏ ପୁଅକୁ ଦେଖି,
ଏତେ କାଲଯାଏଁ ଦଇବ ତାହାର
କପାଳରେ ଥିଲା କାନ୍ଦଣା ଲେଖି ।"
କାହାର ଆଖିରୁ ବହିପଡ଼େ ଲୁହ
ଦେବକୀ ଦୁଃଖକୁ ମନେ ପକାଇ,
ମାଆ ପରି କଥା କହି ଦେଇ ଯାଏ
କାହାକୁ ହଲାଇ କାନ୍ଦ ସକାଇ ।
ଯାଦବ ଯେତେକ ସମସ୍ତେ ସାଧବ
ଦୋଷୀ ସିନା ଖାଲି ଯେତେ ରାକ୍ଷସ,
ସମସ୍ତେ ମରିବେ ପଦା ହୋଇଯିବ
ସମୂଳେ ସରିବ ଅସୁର ବଂଶ ।

କୁବଳୟା କ'ଣ ଅସୁରଟାଏ ଲୋ
ହାତୀ ରୂପ ଧରି ହୋଇଛୁ ଜନ୍ମ ?'
ରାମ କୃଷ୍ଣ ଦୁଇ- ଭାଇଯାକ ମିଳି
ଭେଟାଇ ପାରିବେ ତାକୁ କି ଯମ ?
ଦେଖ ଦେଖ ସବୁ ଆସୁଛୁ କପରି
ପଳସି କରି ଦେ ମାରିବ ବୋଲି,
ପୁଣି ଦେଖ ସବୁ ବଂକାଇ କରି ଲୋ
ଥୋରଟା ଦେଲାଣି ଉପରେ ତୋଳି ।
ମାହୁନ୍ତଟା ତାକୁ କଅଣ କହିଲା
ଧରିବା ପାଇଁକି ଆସିଲା ଧାଇଁ,
ଏଣେ ରାମ-କୃଷ୍ଣ ଦୁଇ ଭାଇଯାକ
ଅଛନ୍ତି କଟରି ତାହାକୁ ରୁନ୍ଧି ।
ହାତୀ ଧାଇଁଅଛୁ ମାରିବା ପାଇଁକି
କେତେ କଉଶଳେ ମୁଣ୍ଡକୁ ଟେକ,
ତେଣେ ଦୁଇ ଭାଇ ଭଡ଼ାଭଡ଼ି ହୋଇ
କପରି ଖଂଜରେ ରହିଲେ ଛେକ ।
ପରବତ ସମ ହାତୀ ଗୋଟାକୁ କି
ପାରିବେ କଅଁଳ ଦୁଇଟି ଭାଇ,
ଏକା କୃଷ୍ଣ ପରା ଗୋବର୍ଦ୍ଧନ ଟେକି
ଇନ୍ଦ୍ରକୁ ଜିଣିଲା ମନେ କି ନାହିଁ ?
ଧଇଲା ଧଇଲା ! ମାଇଲା ମାଇଲା ! !
ବୋଲି କରି ଉଠେ ଶୁଭିଲା ରଡ଼ି,
କୃଷ୍ଣ ବଳରାମ ଧାଇଁଲେ ଆଗରେ
କେତେବେଳେ ଉଠି କେବେ ବା ପଡ଼ି ।
ଧରୁ ଧରୁ ହାତୀ ଧରିପାରେ ନାହିଁ
ମାଟିରେ ରଗଡ଼ି ଭୁଷଇ ଦାନ୍ତ,
ମାରିବା ପାଇଁକି ଗୋଡ଼ାଇଛୁ ଯେତେ
ରାଗି ତ ତାହାର ହେଉନି ଶାନ୍ତ !

କୃଷ୍ଣ କେତେବେଳେ ହାତୀ ପେଟ ତଳେ
ପଶି ପାହୁ କର ଲୁଚଲେ ଯାଇ,
ହାତୀଟା ତ ତାଙ୍କୁ ଦେଖି ପାରିଲାନି
କେଭଳକା ହେଲ କ କୃଷ୍ଣଙ୍କୁ ଖୁଣ୍ଟି ?
ବଳରାମ ଚଟୁ ଧଇଲେ ଲାଂଜଟା
କେତେବେଳେ ସତେ ପଛକୁ ଗଲେ,
ଆମେ ସବୁ ଏଠି ଖୁଣ୍ଟି ରହିଥାଇଁ
କେହି ଦେଖିଲେନି କ ମନ୍ତ୍ର କଲେ ?
ଲାଂଜ ଟାଣି କର କହିଲେ ବଳକୁ
ହାତୀଟା ତ ଆଗେ ପାରୁନ ଯାଇ,
କୃଷ୍ଣ ଏତେବେଳେ ପେଟତଳୁ ଆସି
ଦାନ୍ତ ଦୁଇଟାକୁ ଧଇଲେ ଧାଇଁ ।
ଦୁଇ ଭାଇ ମିଶି ମାଡ଼ ତ ବସିଲେ
ଓପାଡ଼ିଲେ ଦାନ୍ତ ଓଟାର କର,
ଛଟ ଛଟ ହୋଇ ଡେଇଁଲା ହାତୀଟା
ରଡ଼ିଲା ଆଷାଢ଼ ଚଡ଼କ ପର ।
ଦାନ୍ତ ଧର କର ପିଟିଲେ ମାହୁନ୍ତେ
ସିଏ ସେହିଠାରେ ମଲେ ପଡ଼ି,
ଶୁଣିଲା ଶବଦ କଂସ ମଂଗ୍ଲପରେ
କଲଜା ଚାହାର ଉଠିଲା ଥର ।
ତହୁଁ ଚଳଗଲେ ଦୁଇ ଭାଇଯାକ
ତରକ ଆଗକୁ ପଛକୁ ଖୁଣ୍ଟି,
ସିଏ ଯହିଁ ଥିଲେ ଗୁଡ଼ି ପଳାଇଲେ
କେହି ତ ଗୋଟିଏ ରହିଲେ ନାହିଁ ।
ସଭା ଅଗଣାରେ ପଶିଲେ ଗରବେ
ଦେଖି ଡରଯାଇ କହିଲା କଂସ,
"ରହ ! ରହ ! ଆଗ ମାଲଙ୍କ ସଂଗରେ
ତୁମ ଦୁହିଁଙ୍କର ଶକତ କଷ ।"

ଶ୍ରୀକୃଷ୍ଣ କହିଲେ, "ଘ୍ଟର ବାଳକ କି
ସମକକ୍ଷ ହେବେ ମାଲଙ୍କ ସଂଗେ,
ତୁମ ଦାନା ଖାଇ ମୋଟାସୋଟା ସେ ତ
ବଳ ମୁରିଅଛି ତାଙ୍କର ଅଂଗେ ।"
"ସେ କଥା ମୁଁ କହୁଛି ଶୁଣିବ ନାହିଁ ରେ
କାହିଁକି ମିଛରେ କରୁଛ ଆଳ,
ଏଇନାଏ ତବ ଦାନ୍ତ ଉପାଡ଼ିଲ
ହାଣ୍ଡିଟାର ସାରିଦେଲ ରେ କାଳ !
କେତେ ଛନ୍ଦରମ ନଦେଖାଇ ହେଉଛ
ଚହିଲେ ମାଲଙ୍କ ସହିତ ଲଢ଼,
ମାଲଙ୍କୁ ହରାଇ ଧନୁକୁ ଦେଖାଇ
ଛାତିକୁ ଫୁଲାଇ ମଂଚରେ ଚଢ଼ ।"
କୃଷ୍ଣଙ୍କୁ ଚାଣୁର ଆଗୁଳିଲା ବାଟ
ରାମଙ୍କୁ ମୁଷ୍ଟିକ ଧଇଲା ଯାଇଁ,
ବାଧ ହୋଇ କରି ମାଲଙ୍କ ସଂଗରେ
ଧରାପରା ହେଲେ ଦୁଇଟି ଭାଇ ।
କାଏ କେତେବେଳେ ମାଡ଼ ବସେ କାହୁ
କାଏ ଲେଉଟାଇ ପକାଏ ତଳେ,
କଏବା କାହାକୁ ,ମାରେ ବିଧା ମୁଥ
କାହାର ମୁହଁରୁ ରକତ ଗଳେ ।
ସଭା ମଣ୍ଡପରେ ଦେଖୁଥାନ୍ତି ସବୁ
କଂସ ପ୍ରିୟ ଯେତେ ହସନ୍ତି ବସି,
ନନ୍ଦ ବସୁଦେବ ଦେବକୀ ଯଶୋଦା
ନୟନୁ ଲୋତକ ପଡ଼ଇ ଖସି ।
ମାଲଙ୍କ ଛାତିରେ ବସିଥିଲା ବେଳେ
କଂସ ଡରୁଥାଏ ମଂଚରେ ଥାଇ,
ଦେଖୁଁ ଦେଖୁଁ ଆଖି ବୁଜି ହୋଇଯାଏ
ମୁଣ୍ଡ ବୁଲାଯାଏ ଉଠଇ ହାଇ ।

କାହ୍ନୁ ବାଡ଼ ସବୁ ବୁଲେ ଘର ଘର
ଡଣ୍ଡଗପାକ ଦେଖେ ଅନ୍ଧାର,
ଚମକ ଚମକ ଭାଳଇ ମନରେ
ଆଜ ନଷ୍ଟ ମୋର ପୂରିଲା କାଳ ।
ଦେବତାଙ୍କ କଣ୍ଠ ଜଣ୍ଡା ପଡ଼ିଗଲା
କନ୍ତୁ ମୁଁ ସୁଝି ତ ପାରିନ ଦାଉ,
ହାତରୁ ଯା’ ଖସି ପଡ଼ିଲାଣି ଏବେ
ଖୋଜିଲେ କି ତାହା ମିଳିବ ଆଉ ?
ଅକାରଣଟାରେ କଲି ଶିଶୁହତ୍ୟା
ପାପଭରେ ମୋର ପଡ଼ିଲା ବଳ,
ସତରେ ଶ୍ରୀକୃଷ୍ଣ ତୁହି ଭଗବାନ
ମୋ ସ୍ୱରେ ମୋ ପାପ ଦେବୁ କ ଦଳ ?
କେତେ ତପ କଲେ ମିଳୁ ତ ନାହୁଁ ରେ
ଠିକଲ ସ୍ୱରେ ଆଣିଲ ଟାଣି,
ସେଥିପାଇଁ ସିନା ଢଏ ମୁଁ ପାହାର
ଧରମ ମୁଣ୍ଡରେ ତୋ ମନ ଜାଣି ।
କଏ ଏତେ ଭକ୍ତ ଅଛି ରେ ତୋହର
ଏତେ ସହଜରେ ପାଇବ ତୋତେ,
ଆଉ କ ଦୂରକୁ ପେଲି ପାରିବୁ ରେ
ପାଖରେ ତ ଧରା ଦେଲୁଣି ମୋତେ !
ଶୋଭିବ ତୋ ଦେହେ କଳାଜାଇ ହୋଇ
ଚନ୍ଦ୍ରମା ଦେହରେ କଳଂକ ପରି,
ଏତେ ପାପ କରି କପରି ମିଶିବ
ଶୁକଳ ରୂପ କ ପାରିବ ଧରି ?
ଭକ୍ତ ଭଗବାନେ ଏଇଟିକ ଭେଦ
ରହିଥାଉ ସଦା ଦେଖିବା ଲଗି,
କାଳେ କାଳେ ତୁ ତ ମୋର ଭଗବାନ
କର ମୋତେ ଭକ୍ତ ନେଉଛୁ ମାଗି ।’

ମୋର ପାପ କ'ଣ ତୋର ଦେହଟିକୁ
କରିଦେଲା କଳା ଆସିଛୁ ଯାଗି,
ପାଖେ ପାଖେ ତୋର ଧଳା ରୂପଟି ତ
ଯାଉ ନାହିଁ କଅାଁ ଏକାଠି ଲାଗି ?
କାହିଁ କେତେ ପାପ କରିଥିଲୁ ତୁ ରେ
ଦେହଟାଯାକ ତ ହୋଇଛି କଳା,
ପରକୁ ସୁଧାରି ଦେବାକୁ ବସିଛୁ
କପର କାହାକୁ କରିବୁ ଧଳା ?
ସବୁ ବିଡମ୍ବନା କହିପାରୁ ତୁହି
ପାପ ତୋତେ ଛୁଏଁ ନାହିଁ ଜମାରୁ,
ପୁଣ୍ୟଯାକ ତୋର ପାପ ଦେଇ ପରେ
ଜଳାଇ ପୋଡ଼ାଇ ତାହାକୁ ମାରୁ ।
ତୋ ହାତେ ମରିବା ସାର ପୁଣ୍ୟ କରେ
ମାରି ସାରି କରି କୋଳକୁ ନେଉ,
ପାପୀ ବୋଲି ଖାଲି ତାରିବା ଆଗରୁ
ତୁଚ୍ଛାଟାରେ ଅପବାଦଟା ଦେଉ ।
ଶ୍ରୀବତ୍ସ ପାଦରୁ ମୋର ଦେହଟା କ
ଏତେ ହୀନ ହେଲା ଧରିବୁ ନାହିଁ,
ମାରିଲା 'ଗୋଇଠା ବହିଲୁ ଗୁଡରେ
କାହିଁକ ତ ତାକୁ ପୋଛିଲୁ ନାହିଁ ?
ଦର୍ଶିଲଣି ମୋତେ ଦ୍ୟୁଲୋକ ଭୂଲୋକ
ଆଜ ସବୁଯାକ ଶୁକଳ ହୋଇ,
ମୋତେ କ'ଣ ସତେ ଶୁକ୍ଳ କରିବୁନ
ଦେହରୁ କାଳିମା ଦେବୁନ ଧୋଇ ?
ତୁ ମୋର ଅଲେକ ମୁଁ ତୋ କଳାଛାଇ
ମରଣଶୀଳର ଏ ସିନା ଚିହ୍ନ,
ଦେବତାଙ୍କର ତ ଛାଇ ପଡ଼େ ନାହି
ଏଥିକରେ ପରା ଦେବତା ଭିନ୍ନ ।

ଆଲୁଅ ଯେ ସ୍ୱର୍ଗେ ସେହ୍ୱ ମଧ୍ୟ ଥାଇ
ଯିଏ କଂସ ସେହ୍ୱ ଅଛୁ ତୁ ସିନା,
କଂସର ଅସ୍ତିତ୍ୱ ସଂଭବ କି ହେବ
ତୋହର ପ୍ରଶାନ୍ତ ଛବିଟି ବିନା !
ଚାଣୁର ମୁଷ୍ଟିକ ମଲେ ହେଠି ପଡ଼ି
ସରଗରୁ ହେଲା କୁସୁମ ବୃଷ୍ଟି,
ଦେବତାଏ ସବୁ ଉପରେ ଥାଇଣ
ଦେଇଥିଲେ ମାଲବନ୍ଧାଣେ ଦୃଷ୍ଟି ।
କଂସ କ'ଣ ସତେ ମରି ନ ଥିଲା କି
ମାଲଙ୍କ ମରଣ ଅନାଇଁ କରି,
କିବା ମରିସାରି ବସିଥିଲା ଖାଲି
ମଂଚୁ ବନ୍ଧା କାଠ ଖୁଂଟକୁ ଧରି !
ମାଲଙ୍କୁ ସଂହାରି ଚଳଲେ ଗରବେ
ଦେଖିଲେ ଆଗରେ ବିଶାଳ ଧନୁ,
ଇନ୍ଦ୍ରଧନୁକୁ ତ ବଳିଛୁ ତେଜରେ
ଦେଖିଲେ ତ ଡର ଯିବନି ମନୁ ।
ଧନୁ ଦେଖି ରାମ କହିଦେଲେ ହସି
"ଦେଖ ରେ କହ୍ନାଇ ଧନୁର ଶିରୀ,
କାହିଁ ଏ ବାଉଁଶ ଆଣିକରି କଂସ
ମଝିରୁ ଢ଼'ଫାଳ କରିଛୁ ଚିରି ।
ଗୋଟାଏ ଫାଳରେ କରିଛୁ ଧନୁଟା
ଡେଣ ଦେଇଅଛୁ ଗରବ କରି,
ଦେଖି ଦେଖି ଥରେ ଧରିବୁଟି ଟେକି
କେତେ ବଳ ଅଛୁ ତହିଁରେ ଭରି !
ଯେତେ ଯତନରେ ଗଢ଼ିଥାଉ ପଛେ
ତୋର ବଳକୁ କି ବଳାଇ ଯିବ ?
ନୁଆଁଇ ଆଣି ତୁ ଦେଖିବୁଟି ଥରେ
କେତେ ଯୋ ବା ବଳ ତୋତେ ରୋକିବ !

ଏତେ ଦୁଧ ଦହି ଖାଇଥାଏଁ ପରା
ଆମ ବାହାରେ କି ନାହିଁ ଶକତ,
ଦେଖାଇଦେ ଥରେ ରକତ ମାଉଁସ-
ଖିଆଟାକୁ ଛାର ଧନୁର ଗତ ।
କହନ୍ତି ସମସ୍ତେ ଯେତେ ଖାଦ୍ୟ ଅଛି
ସବୁଠାରୁ ଦୁଧ ବେଶୀ ସୁଷମ,
ଦେହ ଗଢ଼ିହୁଏ ବଳ ଭରିହୁଏ
ଧନୁ ଭାଂଗିବାକୁ ହେବୁନ କ୍ଷମ ?
ଭାଂଗିଯାଉ ଧନୁ କଂପିଯାଉ ଧରା
ଥରୁ ଥର ଥର କଂସର ଛାତି,
ବାଳକ କହ୍ନାଇ ବନ୍ଧୁଆ ବୋଲାଣ
ମଥୁରାରେ ରହିଯାଉ ସୁଖ୍ୟାତି ।"
ଧରିଲେ ଶ୍ରୀକୃଷ୍ଣ ବାଆଁ ହାତେ ଧନୁ
ଠିଆ କରିଦେଲେ ସଳଖ କରି,
ପାଦ ବୁଢ଼ାଙ୍ଗୁଳି ଦେଇ ହୁଳ ଚାପି
ଗୁଣକୁ ଓଟାରି ଦେଲେ ତ ଧରି ।
ଗୁଣର ମଝିରୁ ଧରିଲେ ଟିପରେ
ବାଆଁ ହାତେ ଧରି ଧନୁର ମୁଠା,
କାନଯାଏଁ ବୋଲି ଓଟାରି ଆଣିଲେ
ମଡ଼ମଡ଼ ଡାକ ଦେଲା ଧନୁଟା ।
ଟିକକ ଟଣାରେ ଭାଙ୍ଗିଲା ମଝିରୁ
ମୁଠାଟାରୁ ହେଲା ଯୋଡ଼ାଏ ଗଡ଼,
କମ୍ପିଲା ବସୁଧା କମ୍ପିଲା ଆକାଶ
କଂସକୁ ମାଡ଼ିଲା ବଡ଼ାହେଁ ଡର ।
କୃଷ୍ଣ ବଳରାମ ଚାହିଁଲେ ଲେଉଟି
ଜଳୁଛି ବୀରର ତେଜ ମୁହଁରେ,
ପୂର୍ବ ଗଗନରେ ଉଜ୍ଜ୍ୱଳ ତପନ
ଆଖି ଝଲସାଇ ସତେ କି ଜଳେ !

ଧନୁ ଭାଙ୍ଗିଦେଇ ଦୁଇ ଖଣ୍ଡ କରି
ଖଣ୍ଡେ ଖଣ୍ଡେ ଦୁହେଁ ଧଇଲେ କରେ,
ସିଂହଦୁଆ ପରି ଠାଣିକୁ ଦେଖାଇ
ଧାଇଁଲେ ଚଢ଼ିବେ ମଞ୍ଚା ଉପରେ ।
ମଞ୍ଚାରେ ଚଢ଼ିବା ବେଳେ ଦେଖି କଂସ
ଅନ୍ତରଛ ହେଲା ଭୟରେ ଥରି,
ପଡ଼ିଲା ମଞ୍ଚାରୁ ଶୁଭିଲା ଶବଦ
ମଲା ତୁଣ୍ଡେ କୃଷ୍ଣ ନାମଟି ଧରି ।
କୃଷ୍ଣଙ୍କ କାୟାରେ ଲୀନ ହୋଇଗଲା
କୃଷ୍ଣ ଛଡ଼ା କେହି ଜାଣିଲେ ନାହିଁ,
ସରଗରେ ଜାଣି ଥିବେ ବା ଦେବତା
ଏକ ଲୟେ ଯେଣୁ ଥିଲେଟି ଚାହିଁ ।
ସରିଗଲା ହାଟ ପଡ଼ିଗଲା ବାଟ
ବିକାକିଣା ସବୁ ଗଲା ତ ସରି,
କୋଉ ଯୁଗେ ପୁଣି ଆସିବ ଧରାକୁ
ନୂଆ ହାଟଟିଏ ହେବ କପରି ?
ମଞ୍ଚାରୁ ପଡ଼ିଣ ମାମୁଁ ମରିଗଲା
ବୋଲି କରି କଥାଟିଏ ରହିଲା,
ଶ୍ରୀକୃଷ୍ଣ କହିଲେ, "ମାମୁଁ ସିନା ମଲା
ମୁଁ ତ ମରୁଥିଲି ବିହି ରଖିଲା ।"
ଲେଖକ ମଞ୍ଚାରେ ଚଢ଼ି ନାହିଁ କେବେ
ସବୁବେଳେ ସେ ତ ପଡ଼ିଛି ତଳେ,
ଶ୍ରୀକୃଷ୍ଣ ବା କଂସ କାହାକୁ ଦେଖିନ
ସରଗେ କି ପଶି ପାରିବ ବଳେ ?
କହନ୍ତି ତ ସବୁ କୃଷ୍ଣ ନାମ ଜପି
କୃଷ୍ଣ ନାମ ଶୁଣି ଯାଆନ୍ତି ତରି,
ସେତିକି ମାତର କରିଛି ଭରସା
ତରିବ ମୁକର ନିକଟେ ମରି ।

ଯେତେ ମରିଛନ୍ତି ସବୁ ତରିଛନ୍ତି
କେହି ତ ଗୋଟିଏ ରହିନ ପଡ଼ି,
ଲେଖକ କାହିଁକି ଝୁରି କରି ଭବେ
କୃଷ୍ଣ କୃପା ବିନା ମରୁଛି ସଡ଼ି !

—*—

# ଜରାସନ୍ଧର ମଥୁରା ଆକ୍ରମଣ

ଜ୍ୱାଇଁର ମରଣ     ଝିଅଙ୍କ କନ୍ଦଣ
ସହି ପାରିଲେନି ମଗଧପତି,
ଭାବିଲେ ମନରେ     ମଥୁରାରେ ପଶି
ଧ୍ୱଂସିଦେବ ସେତେ ଯାଦବ ଜାତି ।
ଉଡ଼ାଇବ ତହିଁ     ବିଜୟ-କେତନ
ଧରାଇବ ଶିରେ ଶୁକ୍ଳ ଛତ୍ର,
ଘୋଷାଇବ ଭୁବନେ     ଭୁବନେ ସଂସାରରେ
ସେଇ ଏକା ଜଣେ ସାମ୍ରାଜ୍ୟପତି ।
ଲଙ୍କରୁ ଉଣା     ରଜା ବନ୍ଦୀ କରି
ରଖିଛି ଦେବାକୁ ଦେବାଙ୍କି ବଳି,
ଜଣ ଜଣ କରି     ଲକ୍ଷ ପୂରାଇବ
ଆଗେ ଦେବ ଉଗ୍ରସେନକୁ ଦଳି ।
ମଥୁରା ବେଢ଼ିଲେ     କୃଷ୍ଣ ଆସିଲେ
ମନକୁ ଆସି ସେ ପିନ୍ଧିବ ଫାଶ,
ଜ୍ୱାଇଁକ ମାରିଛି     ସିନା ମୋ ହାତରେ
ଅବଶ୍ୟ ଏଥର ହୋଇବ ନାଶ ।
ଥର ଥର କରି     ଅଠର ଥର ସେ
ବେଢ଼ିଲା ମଥୁରା ନଗର ଆସି,
ରଜା-ପ୍ରଜା ସବୁ     ଗଣିଲେ ପ୍ରମାଦ
ଅଥୟ ହୋଇଲେ ମଥୁରାବାସୀ ।

କୃଷ୍ଣ ବଳରାମ ଆଗେଇ ଆସିଲେ
ମନରେ ତାଙ୍କର ଦୋସରା ପାଞ୍ଚ,
ତାଙ୍କୁ ଦେଖି ଜରା- ସନ୍ଧ ଗୋଡ଼ାଇବ
ମଥୁରା ପାଇବ ନାହିଁ ତା ଆଞ୍ଚ ।
ସତକୁ ସତ ସେ ଦେଖିଲା ଯୋଜନା
ଧାଇଁଲା ପଛରେ ମାରିବ ବୋଲି,
ବଳରାମ ତାଙ୍କୁ ଧଇଲେ ବଳରେ
କରୁଢ଼ ମାରିବେ ଜୀବନେ ତୋଳି ।
ତାଙ୍କ ହାତେ ବଧ ନୁହେଁ ଜରାସନ୍ଧ
ରାମଙ୍କୁ ଶ୍ରୀକୃଷ୍ଣ କହିଲେ ଡାକି,
"ଚାଲ ପଳାଇବା ଖସିଣ ଆଗରୁ
ଲୁଚି କରି ତାକୁ ଦେବା ହେ ଫାଙ୍କି ।
ମଥୁରା ଏଥର ପାଇଗଲା ରକ୍ଷା
ମଥୁରାକୁ ଆଜ ଜୀବନ ଫେରି,
ଦେଖା ଦେଇ ଦେଇ ଧାଇଁବା ଆଗରେ
ଭାଇ ଆଜ କର ନାହିଁଟି ଡେରି ।"

---

# ଶ୍ରୀକୃଷ୍ଣଙ୍କ ଗୁରୁ-ଦକ୍ଷିଣା ଓ
# ଉଦ୍ଧବଙ୍କୁ ଗୋପ ପ୍ରେରଣ

ଧନୁ ଭାଂଗି ଧନୁ- ଘୋଷ ଯାହା ନାଶି
କଂସ କଂସ ମଲ୍ଲେ କରି ନିଧନ,
ଆଶା ଆଶଂକାରେ ହରଷ ବରଷାଦେ
ଦୁଇ ଭାଇଙ୍କର ମନ ମଗନ ।
ସରଗ ଦେହରୁ ଗଂଗା ଯମୁନା କି
ଖସିପଡ଼ିଛନ୍ତି ମର୍ତ୍ତ୍ୟ ଭୁବନେ ?
କଳା ଧଳା ଦୁଇ ସୁର ସୁରଧୁନୀ
ଧାଇଁ ଅଛନ୍ତି କି ସିନ୍ଧୁ ସଂଗମେ ?
ବେନି ତନୁ ବେନି ରଂଗେ ଘୋଡ଼ାଇଛି
ପୀତ ନୀଳାମ୍ବର ସୁନ୍ଦର କରି,
ମୁହେଁ ଟଳଟଳ ବିନ୍ଦୁ ବିନ୍ଦୁ ଝାଳ
ଦିଶେ ଜକଜକ ମୁକୁତା ପରି ।
ଲାବଣ୍ୟ ପ୍ରତିମା ଧୂଳିରେ ଧୂସର
ମାଲବନ୍ଧେ ଭୁଇଁ ଉପରେ ପଡ଼ି,
* ରଜତ କର୍ପୂର ଗୁଣ୍ଡି ଉଡ଼ି ଆସି
ଯାଇଛି କି ଅଂଗ ପ୍ରତ୍ୟଂଗେ ଜଡ଼ି ?
ଶ୍ୟାମଳ ଗଉର ତନୁ ମନୋହର
ସଂସାରେ ଉପମା ତୁଳିବା ପାଇଁ,
ସରଗ ମରତ ପାତାଳ ଭୁବନେ
କୋଉଠି ହେଲେ ତ ଗୋଟିଏ ନାହିଁ ।

---

* ଶୁଭ୍ର

ଗୋପାଳ ବାଳକେ ଧାଇଁଛନ୍ତି ପଛେ
କଣ୍ଠ ପଡ଼ୁଛି କବା କରଭ ଯୂଥ,
ମଥୁରା ନଗର ପଡ଼ୁଛି ଉଠୁଛି
ଯତେ କ ଚକ୍ଷୁଁରେ ପଶିଛି ଭୂତ !
ନନ୍ଦ ଯଶୋବନ୍ତୀ ଏକାନ୍ତରେ ବସି
ଭାବୁଛନ୍ତି ଦୁଃଖେ ପୁଅଙ୍କ କଥା,
ଧାଇଁ ଧାଇଁ ଆସି ଜନକ ଜନନୀ
ପଦ୍ମର ପ୍ରାନ୍ତରେ ନୁଆଇଁ ମଥା ।
କହିଲେ, "ହେ ବାପା ଫେରିଯା ଘରକୁ
ସୁଖରେ ସେଠାରେ କର ରାଜନ୍,
ଦେଖୁଁ ଦେଖୁଁ କଂସ ଗୁଏଁ ମରିଗଲା
କରୁଥିଲା ସିନା ବୃଥା ଚହଜ ।
ଆଉ ଧନା କେତେ ରହି ମଥୁରାରେ
ନଗରବାସୀଙ୍କୁ କରିବୁଁ ସ୍ଥିର,
ଫେରିଯିବୁଁ ଘରେ ଦୁଇ ଭାଇଯାକ
ଗାଈ ଚରାଇବୁଁ ଯମୁନା ତୀର ।"
ଗୋପ ଗୋପୀ ସଂଗେ ନନ୍ଦ ଓ ଯଶୋଦା
ବାହୁଡ଼ା ବଜାଯ୍ଯ କରିଲେ ଦୁଃଖେ,
'ପୁଅ ଛାଡ଼ି ଯାଉ- ଛନ୍ତି ବୋଲି କଥା
ହଙ୍ଗ ଟିକେ ନାହିଁ କାହାରି ମୁଖେ ।
ଗୋପପୁଏ ଓଠ- ଧରି କୃଷ୍ଣଙ୍କର
କହିଲେ, "କହ୍ନାଇ ଯିବୁଟି ଫେରି,
ନୋହିଲେ ସକଳେ ମରିବୁଁ ବରଡ଼େ
କଦାପି କରିବୁ ନାହିଁଟି ଡେରି ।
ଗାଈ ବାଛୁରିଏ ଉଜୁଡ଼ି ଯିବେଟି
କୋଉଠଉ ଆଉ ଖାଇବୁ କ୍ଷୀର ?
ମନେ କରୁଛୁ କ ଦୁଧ ଅଭାବରେ
ଭେଳ ମେଣ୍ଢାଇବ ଯମୁନା ନୀର !

ଦୁଧଖିଆ ପିଲା ସମ୍ଭାଳ ହେବୁ କି
ଖାଲି ପାଣି ପିଇ ପରବାସରେ,
ଚଂଚଳ ଫେଣରୁ ଡେର କରିବୁନି
ଖେଳିବୁ ତୁ ପରା ଗଲେ ରାସରେ !
ବାଇବୁ ନାହିଁ କି ଚୋର ବଂଇଶୀଟି ?
ବୃନ୍ଦାବନ କୁଂଜ ଏଠି ତ ନାହିଁ,
ବଡ଼ ବଡ଼ ଗଛ ବହୁତ ତ ଅଛି
କଦମ୍ବଟିଏ ତ ଦିଶୁନି କାହିଁ !
ଏଠା ଯମୁନାକୁ ସେଠା ଯମୁନାକୁ
ଭଲ କରି ଦେଖି ତଉଲି କହ,
କିଏ ଭଲ ଭଲା ? ସେଠାରେ ବହୁଛି
ଖାଲି କ୍ଷୀର ଧାର ଏଠାରେ ଲୁହ ।
ମଥୁରା ସଂଗରେ ତଉଲୁ ତୁ ଗୋପ:
ଏଠି ରାବିବ କାଉ ସେଠି କୋକିଳ,
ଏଠାରେ ବହୁଛି ଖର ତପ୍ତ ବାଆ
ସେଠି ବହେ ମନ୍ଦ ମଳୟାନିଳ ।
ସେଠା ଗୃହଘର ବନ ଉପବନ
ସବୁ ଶ୍ୟାମଳିଆ ତୋହରି ପରି,
ଆଖିକି ଶୀତଳ ଅଂଜନର ପରି
ଏଠିଠାରେ ସବୁ ଅନଳ ହରି ।
ସେଠା ଗୋପୀସବୁ ସ୍ନେହ-ମନ୍ଦାକିନୀ
ତରଳ ଲହରୀ ପଡ଼ୁଛି ଫାଟି,
ଏଠାର ଯାଦବୀ ମାନବୀ ନୁହନ୍ତି
ଦାନବୀଙ୍କର ଏ ଜନମ ମାଟି ।
କେତେ ପରକାର କମିଆ ଜାଣନ୍ତି
ସମସ୍ତେ ରେ ଜଣେ ଜଣେ ପୂତନା,
ନାନା ବାଗେ ମଣ୍ଡି ନାନା ବାଗେ ଭଣ୍ଡି
ପରିଣେଷେ ଖାଲି ଦେବେ ଯାତନା ।

ପୁରୁଷ ଯେତେକ ଦେଖୁଛୁ ଏଠେଇ
ସବୁ ଛଦ୍ମବେଶୀ ରାକ୍ଷସ ଦଳ,
ନାନା ପ୍ରକାରେ ଛଳିବେ ରେ ତୋତେ
ଶେଷରେ ଖୋଳିବେ ତୋ ପାଇଁ ଖାଲ ।
କଂସ ପିନା ତାଂକୁ ମାଣ ଧରି କରି
ରଖିଥିଲା ବଳେ ଆୟତ୍ତ କରି,
ବାଳୁତ ପୁଅଟା ଖାଲି ହାତଟାରେ
ସମ୍ଭାଳି ପାରିବୁ ଅବା କପରି ?
ତୁ ବା ଭାବୁଥିବୁ କଂସ କଂସ ମାଲି
ହାତୀ ଆଦି ସବୁ କଲୁ ନିଧନ,
ସେ ସବୁ କଂଶରେ ସେ କଥା ବୁଝିବେ
କହିବେ କଂସକୁ ତୁ କି ଭଜନ !
ତ୍ରିପୁର ବଜୟୀ କଂସ ମହାବଳୀ
ଦେବତାଏ ଦେଖି ଡାହି କବାଟ,
ପକାଇ ଖୋଜନ୍ତି ଲୁଚିଯିବା ପାଇଁ
କାହିଁ ଟିକେ ମିଳେ ନାହିଁ ରେ ବାଟ ।
ରହିବୁ ନାହିଁଟି ମଥୁରାରେ ବେଶି
ରହି ଦିନ ଗୁରି ଯିବୁ ବାହାରି,
ଯାଦବଙ୍କ ଦୋଷ ଜାଣୁ ନାହିଁ ପରା
ନ୍ୟାୟ ଧର୍ମ ତଳେ ନାହିଁ କାହାରି ।
ରମଣୀ ନୟନ କଜ୍ଜଳଗାରକୁ
ମଣିବୁ ରେ କାହ୍ନୁ ଭୀଷଣ ଛୁରୀ,
ପିଛଲା ପକାକୁ ଜାଣି ରଖିଥିବ
ପ୍ରେମ-ଫାନ୍ଦେ ତଂଟିକଟା କଟୁରୀ ।
ଭ୍ରୂଲତା ଯୋଡ଼ାକ କଳା ନାଗୁଣୀ ରେ
ମୀନକେତନର କୁସୁମ ଧନୁ,
ରମଣୀ ରମଣ ବାସନା ପୂରଣ
ପାଖୋଳ ପକାଇଥିବୁ ରେ ମନୁ ।

ନୂଢେ ବୃନ୍ଦାବନ ନଶୀଥରେ ଥରେ
'ବାଇଲେ ମୁରଲୀ ଯମୁନା ଘାଟେ,
ଧାଇଁବେ ଗୋପିଏ ପତି-ପୁତ୍ର ଛାଡ଼ି
ତୋତେ ଭେଟିବାକୁ ମନ ଉଚ୍ଚାଟେ ।
କଏ ସେ କହିବ ବାଉଁଶକଣିର
ମହିମା ଇଏ କି ମହିମା ତୋର,
ଆଜି କଏ କ'ଣ ବଜାଏ ତୋ ପରି
ବଂଶୀଠାରୁ ବଳି ତୋ କଂଠ ସ୍ୱର !
କୁଜାଟାକୁ ଧରି କି ମନ୍ତ୍ର କଲୁ ରେ
ସକଳ ସୁନ୍ଦରୀ ହୋଇଲା ସିଏ,
କି ଯାଦୁ ବଳରେ ଯୁବତୀ ଗୋଟାକୁ
କୁଜା କରି ଦେଇଥିଲା ରେ କଏ ?
ତା ଢଙ୍ଗଢାଙ୍ଗରୁ ତା ଭାବଭଙ୍ଗୀରୁ
ଜାଣି ପାରୁଛୁ ରେ କହ୍ନାଇ ଆମେ,
ବଶୀକରଣରେ ବଶ କରି ତୋତେ
ଲଗାଇ ଦେବ ରେ ଗୃହର କାମେ ।
ରଜା ବଗିଚ୍ଚରେ ଫୁଟିଛି ରେ ଫୁଲ
ବହୁତ ଏକାଠି ନାନା ରଙ୍ଗରେ,
କହ ଦେଖି କାହ୍ନୁ ଭୁଲି ବୃନ୍ଦାବନ
କଂଟା ଫିରକର ଗନ୍ଧ ସଂଗରେ ।
ବଣମଲ୍ଲୀ ପିତା— କୋରୁଆଁ ମାଧବୀ
ମାଳତୀ ଶେଫାଳୀ ଯୂଥି ଚଂପକ,
ବୃନ୍ଦାବନ ବନେ ଫୁଟୁଛି ଝଡ଼ୁଛି
କଏ ଶୁଂଘିବରେ ତାଙ୍କ ମହକ !
ଉତ୍ତର ନଦେଲେ ରେ କାନ୍ଦବେ ଜନନୀ
କାନ୍ଦବେ ରୋହିଣୀ କାନ୍ଦବ ରାଧା,
କାନ୍ଦବ ଲଳିତା କାନ୍ଦବ ବିଶାଖା
ଆହୁରି କାନ୍ଦବେ ଚନ୍ଦ୍ରା ଓ ବୃନ୍ଦା ।

ତାଙ୍କୁ ଭୁଲି କ'ଣ          ରହି ପାରିବୁ ରେ
ଶୁଣିଲୁ ଦେବକୀ ତୋହର ମାତା,
ଆଠ ବରଷର          ଝରଧର ପରେ
ମିଳାଇ ଦେଇଛି ଦୁହିଁଙ୍କୁ ଧାତା ।
ସନ୍ଦେହ ହେଉଛି          କାଳେ ଭୁଲିଯିବୁ
ସତେ ହେବୁ କରେ କୋଇଲି ଛୁଆ,
ଖୋଳଟେଇ ପାଳି          ବଡ଼ଟେ କରିବ
ଶେଷେ ଗୁଡ଼ିଯିବ ଜନମ କୁଆ ?
ସେଇଥି ପାଇଁକି          ସନ୍ତପାଟରେ ନାହିଁ
ଗଛ ଗହଳରେ ଗାଇଲେ ପିକ,
ବାଟରେ ଗୋଡ଼ାଏ          ମାରିଦେବ ବୋଲି
ଧିକ ତାର ପୁଅପଣକୁ ଧିକ ! *
ତୋ ରୂପ ତ କଳା          ବଚନ ମଧୁର
ସତେ ହେବୁ କରେ କୋଇଲି ପରି,
କ୍ଷୀର ସର ଖୋଇ          ପାଳିଛି ଯଶୋଦା
ଭୁଲିବୁ ନାହିଁଟି ଅନ୍ୟାୟ କରି !
ଗୋପକୁ ତୁ ଯେବେ          ଫେରିବୁ ନାହିଁ ରେ
ବୃନ୍ଦାବନ ହେବ ମଶାଣି ପରି,
କୁସୁମ ସୁଷମା          ଜଳି ପୋଡ଼ିଯିବ
ଅନଳ ଜଳିବ ଦବା ଶବଶ ।
ଉଇଁବନି ଜୁହା          ଚାହିଁବନି ରାତ
ଖାଲି ଘୋଟିଯିବ ଅଂଧାର ଘୋର,
ଦିଗ ଉଛୁଳାଇ          ଶୁଭିବ ସନ୍ତତ
ବିକଳ କରୁଣ କାନ୍ଦଣା ସ୍ୱର !
ଗାଈ ବାଛୁରିଏ          ଝୁରିବେ ମରିବେ
ନୟନୁଁ ଗଡ଼ାଇ ଲୋତକ ପାଣି,
ଏତକ କହି ରେ          ଯାଉଛୁଁ ବାହୁଡ଼ି
ନ ଗଲେ ମରିବୁଁ ଥାଆରେ ଜାଣି ।"

* ପୁଅ—ଅଣ୍ଡିର କୋକିଲ ଖାଲି ଦୋବାଏ ।

ଗୋପମାନେ ଦୁଃଖେ ଫେରିଗଲେ ଗୋପେ
ଶ୍ରୀକୃଷ୍ଣ ଚଳିଲେ ଦେବକୀ ପାଶେ,
ଜନକ ଜନନୀ ଗୃହେଁ ବସିଥିଲେ
ପୁଅଙ୍କ ବଦନ ଦେଖିବା ଆଶେ ।
ପୁଅଙ୍କୁ କୋଳରେ ପାଇ ବାପ ମାଆ
ଭାଳିଲେ ମନରେ କରି ସଂସ୍କାର,
ଶିଖାଇବେ ତାଙ୍କୁ କୁଳ-ଧର୍ମ ସବୁ
କ୍ଷତ୍ରିୟ ଆଗୃହ କ୍ଷତ୍ରୀ ବଂଶର ।
କୁଳ ପୁରୋହିତ ଡାକିଲେ ଘରକୁ
କଲେ ସମାପନ ଉପନୟନ,
ଦଣ୍ଡ ଭେଦ ସାମ ଆଦି ରାଜଧର୍ମ
ଶିଖାଇବା ପାଇଁ ବଳିଲା ମନ ।
ସେ ଯୁଗରେ ଥିଲା ଅବନ୍ତୀ ନଗରୀ
ଏ ଯୁଗର କାଶୀ ସଙ୍ଗେ ସମାନ,
ତହିଁ ଶାନ୍ଦିପନୀ ନାମେ ଜଣେ ଥିଲେ
ତାଙ୍କଠାରେ ଥିଲା ସକଳ ଜ୍ଞାନ ।
ଆଗରୁ ଶ୍ରୀକୃଷ୍ଣ ଜାଣିଥିଲେ ତାହା
ବାଛିଲେ ତାହାଙ୍କୁ କରିଣ ଗୁରୁ,
ପାଠ ପଢ଼ିବାକୁ ଦୁଇ ଭାଇଯାକ
ଆନନ୍ଦରେ ଗଲେ ବାହାରି ଘରୁ ।
ଶାନ୍ଦିପନୀ ମୁନି ଜାଣିଲେ ଧ୍ୟାନରେ
ନିଜେ ଭଗବାନ ପଢ଼ିବେ ପାଠ,
ଅତି ଆଦରରେ ଅତି ଭକତିରେ
ପୂଜିଲେ ତାହାଙ୍କୁ ମଣିଲେ ଗୃହ ।
ଥରେ ଯା ଶୁଣନ୍ତି ଗୁରୁଙ୍କ ମୁହଁରୁ
ମନେ ରଖନ୍ତି ସେ କାଳ କାଳକୁ,
ଗୁରୁ ଗୁରୁପତ୍ନୀ ଆଉ ସାଥୀ ପିଲା
ମଣନ୍ତି ଆଶ୍ଚର୍ଯ୍ୟ ନନ୍ଦବାଳଙ୍କୁ ।

ଚଉଷଠି ମାସ ବୃତ୍ତ ଦିବସ ଭିତରେ
ପଢ଼ିଲେ ସଂସାରେ ଯେତେକ ପାଠ,
ରାଜନୀତି ଧର୍ମ - ନୀତି ଯୁଦ୍ଧନୀତି
ବେଦ ବେଦାନ୍ତାଦି ବିବିଧ ଗ୍ରନ୍ଥ !
ପାଠ ପଢ଼ି ସାରି ଗୁରୁଙ୍କୁ କହିଲେ,
"ଦିଅନ୍ତୁ ମେଲାଣି ଫେରିବୁ ଘର,
ଦକ୍ଷିଣା ଦେବାକୁ ଲୋଡ଼ୁଛୁଁ ଆଦେଶ
ଅଯୋଗ୍ୟ ଶିଷ୍ୟଙ୍କୁ ଦିଅ ଏ ବର ।"
ଗୁରୁ ମନ୍ଦ ହସି ସଧୀରେ କହିଲେ,
"କୃଷ୍ଣ ବଳରାମ ଅଯୋଗ୍ୟ ଯେବେ,
ଧରଣୀ ବକ୍ଷରେ କରମ କ୍ଷେତ୍ରରେ
କିଏ ଯୋଗ୍ୟ ବୋଲି କହିବ ତେବେ ?
ଧରା ଦେଇ ସାରି ଧରା ଦେଉ ନାହିଁ
ମାୟାଧର ନାଆଁ ଯେଣୁ ତୁମର,
ଚିହ୍ନେ ମୁଁ ତୁମକୁ ତୁମେ ଜଗନ୍ନାଥ
ଅନନ୍ତ ଏ ରାମ ତୁମ ସୋଦର ।
ଛଳନା କରନା ଆଜି କୃଷ୍ଣ ମୋତେ
ପାଖରେ ପାଇଚି ମୁକତିଧାମ,
ମୁକତି-ପାବଚ୍ଛ ଶୁଦ୍ଧ ଶୁକ୍ଳ ବର୍ଣ୍ଣ
ରବି ଶଶୀ ଜଣା ଏ ବଳରାମ ।
ଦୁଷ୍ଟଙ୍କୁ ଦଳିବ ଶିଷ୍ଟଙ୍କୁ ପାଳିବ
ଏଥିପାଇଁ ପରା ମରତଭୂମେ,
ଅମର ହୋଇଣ ମର ହେବା ପାଇଁ
ଓହ୍ଲାଇ ଆସିଛ ଧରାକୁ ତୁମେ ।
ଅମୃତକୁ ପିତା ମଣିଲ କି ତୁମେ
କିବା ପରଷିବ ଅମୃତ ଏଠି,
ସବୁ ଅମିୟ କି ନେଇ ଆସିଅଛ
ଟିକିଏ ରଖିନା ବୈକୁଣ୍ଠେ ସେଠି ?

ବାଜିଲା ବାନରେ ଧରଣୀ କାନନେ
ସହିଲ ନାହିଁ କି ତୁମର ଚିତ୍ତ ?
ସପନବିହୀନ ଅନନ୍ତ ଶୟନ
ବିରଞ୍ଚି ସମରେ ଯିବ କି ମାତ୍ତ ?
କିଏ ତୁମ ଶତ୍ରୁ କିଏ ଅବା ମିତ୍ର
ଏବେ ଜଣେ କି ଅଛି ହେ କାହିଁ ?
ଯିଏ ଶତ୍ରୁ ସିଏ ତୁମ ପ୍ରିୟ ମିତ୍ର
ସବୁ ତ ତୁମଠି ଦେଖୁଛି ଚାହିଁ ।
କିଏ ମିତ୍ର ଭାବେ କିଏ ଶତ୍ରୁ ଭାବେ
ତୁମକୁ ଭଜଇ ଦିବସ ରାତି,
ଶ୍ରୀବତ୍ସ ତୁମର ବଇରି କି ମିତ୍ର
ତା ପାଦକୁ କିଆଁ ବହିଲ ଛାତି ?
କଂସ ତୁମ ଶତ୍ରୁ ତାକୁ ମାରିବାକୁ
ଆସିଥିଲ ପରା ବୈକୁଣ୍ଠ ଛାଡ଼ି,
କୋଉଠି ସେ ଏବେ ଜାଣନା କି ସତେ
ତୁମ ହୃଦକୁ ସେ ବସିନି ମାଡ଼ି ?
ଅଛି କି ଏଇନା ରାଗ ତୁମଠାରେ
ତୁମର କି ଅଛି ରାଗ ତାଠାରେ,
ବଦଳି ଯାଇଚି ସବୁ ଏଇନାଏ
ତୁମ ଛଡ଼ା ଏହା ଆଉ କେ ପାରେ !
ତୁମେ ତ ଅନନ୍ତ ସବୁ ତୁମ ଦେହେ
କାଳେ କାଳେ ପରା ହୁଅଇ ଅନ୍ତ,
କିଆଁ ମାୟାଜାଲେ ବୁଡ଼ିଆଣୀ ପରି
ମୋ ଚକ୍ଷୁ ବଳକୁ କରୁଛ ହତ ?
ତୁମର ଶରୀରେ ଦେଖୁଛି ମୁଁ ମାତ୍ତ
ବିଶ୍ୱବ୍ରହ୍ମାଣ୍ଡର ବିପୁଳ କାୟା,
ଛୋଟ ଦେହଟିଏ ଦେଖାଉଛ ମୋତେ
ତୁମର ଏ କ'ଣ ନୂଆଇ ମାୟା !

ମୋତେ ଗୁରୁ ବୋଲି ଛଳୁଛ କାହିଁକି
ଆଜ ଗୁରୁ ବୋଲି କହନା ପ୍ରଭୁ,
ତୁମେ ମାଆ ବାପ ତୁମେ ପ୍ରିୟବନ୍ଧୁ
ତୁମେ ଗୁରୁ ତୁମେ ଶିଷ୍ୟ ତ ସବୁ ।
କି ଦକ୍ଷିଣା ଦେବ ପଚାରୁଛ ମୋତେ
ତୁମେ ସର୍ବ ଅଟ ଅନ୍ତରଯାମୀ,
କଅଣ ଦୁର୍ଲ୍ଲଭ ତୁମକୁ ଜଗତେ
ଦିଅ ଯାହା ଇଚ୍ଛା ଜଗତସ୍ୱାମି !
ଗୁରୁ ଭାର୍ଯ୍ୟାର ଦକ୍ଷିଣାରେ ଲାଗ
ଅଛି ହେ ଶ୍ରୀକୃଷ୍ଣ ତାଙ୍କୁ ପଚାରେ,
ଯାହା ଇଚ୍ଛା ସିଏ ମାଗନ୍ତୁ ତୁମକୁ
ଦିଅ ଯାହା ଭଲ ତୁମ ବିଚାରେ ।"
ଏହିତକ କହି ଭାର୍ଯ୍ୟାଙ୍କ ପାଶେ
ଗୁରୁ ସାନ୍ଦୀପନୀ ଗଲେ ତକ୍ଷଣ,
ଭାର୍ଯ୍ୟାଙ୍କୁ ଡାକି ଗୋଟି ଗୋଟି କରି
କହିଲେ ଶିଷ୍ୟଙ୍କ ସବୁ ଲକ୍ଷଣ ।
"କୃଷ୍ଣ ବଳରାମ ନୁହନ୍ତି ମାନବ
ନରେ ନାରାୟଣ ଜନ୍ମିଲେ ଭବେ,
କହୁଛି ମୁଁ ସତ ମିଛ କେବେ ନୁହେଁ
ସନ୍ଦେହ ଏଥିରେ କରନା ଲବେ ।
ଦୁଇଟି ମାସରେ ପଢ଼ି ସାରିଦେଲେ
ସଂସାରେ ଯେ ଅଛି ଯେତେକ ପାଠ,
ଶିଖାଇ ଶିଖାଇ ସ୍ଥବିର ମୁଁ ହେଲି
କେବେ ଦେଖି ନାହିଁ ଏପରି ଚାଟ ।
ଯାହା ପଢ଼ିବାକୁ ମୋତେ ଲାଗିଗଲା
ଏକ ଏକ ହୋଇ ବହୁ ବରଷ,
ଏବେ ବି ମୋହର ବହୁ ବାକି ଅଛି
ଜାଣେ ନାହିଁ କେବେ ହୋଇବ ଶେଷ !

ଶିଷ୍ୟଠାରୁ ମୋତେ ଶିଖିବାକୁ ହେବ
ନ ହେଲେ ପୂରିବ ନାହିଁ ମୋ ଶିକ୍ଷା,
ଏତେ ବଡ଼ ଭାଗ୍ୟ କାହାର ଅଛି ଗୋ
ଶିଷ୍ୟ ଦେବ ପୁଣି ଗୁରୁଙ୍କୁ ଦୀକ୍ଷା !
ଦକ୍ଷିଣା ଦେବାକୁ ମାଗନ୍ତି ଆଦେଶ
କି ଦକ୍ଷିଣା ନେବା କହ ଗୋ ଭାବ,
ଦୁଇ ଭାଇଯାକ ଅନାଇଁ ଅଛନ୍ତି
ଯାହା ଇଚ୍ଛା ତାହା ନେବା ଗୋ ମାଗି ।"
ମନେ ପଡ଼ିଗଲା ପୁଅଟିଏ ଥିଲା
ପ୍ରଭାସ ତୀର୍ଥରେ ମରିଚି ବୁଡ଼ି,
"ମାଗ ଏ ଦକ୍ଷିଣା ଯାଅ ବେଗ କରି
ମଲାପୁଅ ମୋର ଆସୁ ବାହୁଡ଼ି ।"
ଭାର୍ଯ୍ୟାଠାରୁ ଶୁଣି ଶାନ୍ତିପନି ମୁନି
କୃଷ୍ଣ ବଳରାମ ପାଖକୁ ଯାଇ,
କହିଲେ, "ମୋ ପୁଅ ବାର ବର୍ଷ ହେଲା
ମରିଚି ସେଟିକୁ ଦିଅ ଆଣି ଦେଇ ।"
କୃଷ୍ଣ ସୁମରିଲେ ସଚଳ ବିମାନ
ଦାରୁକ ଆଣିଲା ମନ୍ତ୍ରଣି କରି,
ଦୁଇ ଭାଇଯାକ ବସିଲେ ତହିଁରେ
ବିଷ୍ଣୁ ଓ ବାସବ ଦେବତା ପରି ।
ଦେବରଥ ଶୂନ୍ୟ- ମାରଗେ ଧାଇଁଲା
ଧୂଳି ଉଡ଼ିଲାନି ଉଡ଼ିଲା ନେଇ,
ଘୋଡ଼ାଏ ଧାଇଁଲେ ପବନ ଗତିରେ
ବାଜୁ ନ ବାଜୁଣୁ ସାରଥି ବେତ ।
ନମିଷେ ଲାଗିଲା ନାହିଁ ସେ ଘୋଡ଼ାଙ୍କୁ
ପହଞ୍ଚିବା ପାଇଁ ବରୁଣ ଘରେ,
ବିମାନରେ ଥାଇ ଦେଖିଲେ ଦି'ଭାଇ
ନୀଳଗଗନ କି ଦିଶୁଛି ତଳେ !

ମାଳ ମାଳ ହୋଇ ଲହରୀ ଧାଇଁଛି
ସତେ ନମିବ କି ତାଙ୍କ ପଦ୍ମରେ,
ଶ୍ୱେତ ପୁଷ୍ପ ସମ ଫେଣ ଭାସୁଅଛି
ତାରକାବଳୀ କି ଗଗନପଥରେ !
କୋଉଠେଇ କାହିଁ ଭାସନ୍ତା ବାଦଲ
ଅଖଣ୍ଡ ନୀଳିମା ରହିଛି ବ୍ୟାପି,
ନୀଳିମା ଭିତରେ ରବି ଶଶୀ ତରା
କିଏ ସେ ଦେଇଛି ଯତନେ ଥାପି ।
ଲହରୀ ତ ତାଳେ ତାଳେ ନାଚୁଅଛି
ତା ସଙ୍ଗେ ନାଚୁଛି ଉଜ୍ଜ୍ୱଳ ରବି,
ତାହାରି ଭିତରେ ଦିଶିଯାଉଅଛି
ମନ୍ଦଜଳ୍ପଟିର ମଧୁର ଛବି ।
ତୋତେ ଏତେ ସରି କିଏ ସେ କଲା ରେ
ସୁନ୍ଦର ଦେହରେ ଲଗିଲା ଦାଗ,
କାହାରି କି ଦୋଷ କଲୁ ରେ ଚନ୍ଦ୍ରମା
କାହାରି ତୋଠାରେ ହେଲା ରେ ରାଗ ?
କୁଆଁରୀ ପୁନିଅଁ ସଫା ରଜନୀରେ
ଉଇଁଲୁ କି ଆଉ ଗୋପ ଗଗନେ,
ବାହାରିଲୁ କରେ ଧରୁ ଗୋଡ଼ କାଡ଼ି
ଅନୁକୂଳ କରି ମନ୍ଦ ଲଗନେ ?
ଦହିଲୁ କି ଆଉ ଗୋପ କାମିନୀଙ୍କୁ
ସେମାନେ ତ ସବୁ ନଳିନୀ ପରି,
କହନ୍ତୁ କୃଷ୍ଣଙ୍କୁ ସମଜାଇ କରି
ଚଞ୍ଚଳ ଯାଆନ୍ତୁ ଗୋପକୁ ଫେରି ।
ତୋର ତ ଅଜଣା ନାହିଁ ରେ କଳଙ୍କ
ଯୁବକ ଯୁବତୀ ମରମ ବ୍ୟଥା,
ଗୁରୁ ଭାରିଯାକୁ ପ୍ରସ୍ତରେ ବାନ୍ଧି
ପୋଡ଼ ଖାଇଥିଲୁ ସରମ ମଥା ।

ଲଳିତା ବିଶାଖା    ରାଧା ଚନ୍ଦ୍ରଲେଖା
ବୃନ୍ଦା ଆଦି କରି ଯେତେକ ନାରୀ,
କୃଷ୍ଣ ବିରହରେ    ଛାଡି ଛାଡି କରି
ଜୀବନକୁ ମଣିବେନି ସେ ଭାରୀ ।
କିଶୋରୀଏ ସବୁ    ଝୁରି ହେଉଥିବେ
କୃଷ୍ଣଙ୍କ ସଙ୍ଗରେ ଖେଳିବା ପାଇଁ,
କୁଆଁରି ପୁନେଇଁ    ପୁଚିଖେଳ ଗୀତ
ସଂଗେ କୃଷ୍ଣ ରୂପ ଦେବାକୁ ଗାଇ ।
ଚୋରିଠାରୁ ତାଙ୍କ    ବଦନ ସୁନ୍ଦର
ଭୁଟି ଯାଇଥିବ ତହିଁରୁ ଶିରୀ,
କଳିଜା ଭିତର    ଦହି ହେଉଥିବ
କାନ୍ଦୁଥିବେ ନିଜେ ବସୁଧା ଚିରି ।
ଯୁବକ କିଶୋର    କୃଷ୍ଣଙ୍କୁ ସୁମରି
ଧନ ସାରୁଥିବେ ତା ଗୁଣ ଗାଇ,
ଯମୁନା କୂଳରେ    ବଣରେ ବୃନ୍ଦାରେ
ଗୋରୁଙ୍କ ପଛରେ ଥିବେ ରେ ଧାଇଁ ।
ରଥ ଓହ୍ଲାଇଲା    ସାଗରବେଳାରେ
ଲହରିଏ ଆସି କଲେ ପ୍ରଣାମ,
ଶ୍ରୀକୃଷ୍ଣ ପଶିଲେ    ବାରିଧି ଗରଭେ
କୂଳରେ ବସିଲେ ଶ୍ରୀ ବଳରାମ ।
ରତ୍ନାକର ନାଆଁ    ସାର୍ଥକ ହୋଇଛି
ଦେଖିଲେ ଜନ୍ମୁଛି ରତନରାଜି,
ବରୁଣ କି ଆଜି    ସାଇତି ଦେଇଛି
ସବୁ ବାଲି ଦେଇ ଯତନେ ମାଜି ।
ଆଗ କଥା ଏବେ    ପଡ଼ିଲା ମନରେ
ବାରିଧି ମନ୍ଥିଲେ ଦେବ ଦାନବ,
ନେଇଥିଲେ ଲୁଟି    ରମା ଐରାବତ
ସୁଧା ଆଦି କରି କେତେ ଦରବ ।

ଅମୃତ ମାଇଁକି ଅମର ଅସୁର
ଭିଡରେ ଲାଗିଲା ତୁମୁଳ କଳି,
ଘଗ ବାଣ୍ଟିଦେଇ କଳି ତୁଟାଇଲ
ଅପୂର୍ବ ମୋହିନୀ ମୂରତି ଧରି ।
ଶିବ ଧାଇଁଥିଲେ ମୋହିନୀ ପଛରେ
ପ୍ରଣୟ-ପିପାସା ମେଣ୍ଟିବା ପାଇଁ,
କେତେ ମତେ ଛଳି ଲୁଚି ଲୁଚି କରି
ଯାଇଥିଲ ପାଖୁଁ ଦୂରକୁ ଧାଇଁ ।
ଶେଷେ ଶିବଙ୍କଠେ ହୋଇଲ ପ୍ରସନ୍ନ
ତାହାଙ୍କୁ ମିଛରେ ଦେଲ ମୁଁ ଧରା,
ଅଧେ ଗୋରା ଅଧେ କଳା ଦେହ ଧରି
ହରିହର ମିଶି ଦିଶିଲୁଁ ଚୋରା ।
ରଜତେ ମର୍କତ ଝଟକି ହୋଇଗଲା
ଆଲୋକେ ଅନ୍ଧାର ମିଶିଲା ପରି,
ଭସ୍ମ ବିଲେପିତ ହର କଳେବର
କସ୍ତୁରି ବରଣ ଥିଲି ମୁଁ ଧରି ।
ଅର୍ଦ୍ଧ ମଉଳିରେ ଶୋଭିଲା କିରୀଟ
ଅର୍ଦ୍ଧେ ଫଣାଧର ହରିଲା ମନ,
ଅର୍ଦ୍ଧେ ଶଶିକଳା ଅଧକେ କସ୍ତୁରି
ତିଳକର ଚିତା କି ମନୋହର !
ଅର୍ଦ୍ଧ ଗଳେ ହାଡ଼ ଅଧେ ବନମାଳ
ନାଭିଯାଏ ବୋଲି ପଡ଼ିଲା ଲମ୍ବି,
ହାଡ଼ମାଳା ଗୁଡ଼ ବନମାଳାଟିରେ
ଭଅଁର ଆନନ୍ଦେ ବସିଲା ଚୁମ୍ବି ।
ଅର୍ଦ୍ଧ ବକ୍ଷେ ଶୋହେ ଶ୍ରୀବତ୍ସ ଲାଞ୍ଛନ
ଅର୍ଦ୍ଧ କରେ କଳା ଗରଳ ଚିହ୍ନ,
ଶୁଭ୍ର ମଳୟଜ ପାଣ୍ଡୁ ଭସ୍ମରଜ
ଧଳାରୁ କଳାକୁ କରୁଛି ଭିନ୍ନ ।

ଅର୍ଦ୍ଧ କଟିଦେଶ ବ୍ୟାଘ୍ର ଚର୍ମ୍ମାବୃତ
ଅଧେ ଆବରଣ ପୀତ ଅମ୍ବର,
ପାଦକରେ ସାପ ଗୁଡ଼େଇ ହୋଇଛ
ଆର ଅର୍ଦ୍ଧକରେ ସୁନା ନୂପୁର ।
ବୃଷ ବୃଷ ଭୁଜ ବଦଳାଇ ଦେଇ
ହୋଇଥିଲୁଁ ଦୁହେଁ ଦ୍ୱିଭୁଜ ଧର,
ଜଣକର କରେ ଡମ୍ବରୁ ତ୍ରିଶୂଳ
ଅନ୍ୟର ହାତରେ ଶଂଖ ଚକର ।
ପାଖକରେ ଲକ୍ଷ୍ମୀ ପାଟେକେ ପାର୍ବତୀ
ଏହିପରି ରୂପ ଥିଲୁ ତ ଧରି,
ଆଜି ମୁଁ ଆସିଛି ବରୁଣ ପୁରକୁ
ଗୁରୁପୁତ୍ର ଏଠୁଁ ନେବ ଉଦ୍ଧାରି ।
ଆଉ ଥରେ ଥିଲି ଜଳନ୍ଧର ଘରେ
କମଳାଙ୍କ ସହ ଭଣୋଇ ପରି,
ମାୟା ଜଳନ୍ଧର ମୂରତି ଧଇଲି
ଥିଲି ତା ରମଣୀ ମହତ ସାରି ।
ହର ଜଳନ୍ଧର ସମର ଭୀଷଣ
ଜିଣି ପାରୁନାହିଁ କାହାକୁ କେହି,
ବୃନ୍ଦାବତୀ ସତୀ ଅସତୀ ହୋଇଲା
ଜଳନ୍ଧର ମଲା ସେଇଥିପାଇଁ ।
କଲି ଚକ୍ରକୁ ପାଞ୍ଚିଲି କପଟ
ସବୁ ଦେବତାଙ୍କ ଶକତି ଆଣି,
ଗଢ଼ାଇଲି ଚକ୍ର ନାମ ସୁଦର୍ଶନ
ଜଳନ୍ଧର ଶିର ଦେଲା ସେ ହାଣି ।
ସେହି ଦିନଠାରୁ ଆଜଯାଏ ବୋଲି
ବୃନ୍ଦାବତୀକୁ ମୁଁ ବହୁଛି ଶିରେ,
ସବୁ ପାପ ତାପ ଧୋଇ ହୋଇଯାଏ
ବୃନ୍ଦାବତୀଛୁଆଁ ପବନ ମାରେ ।

ତୁଳସୀ ପତ୍ରଟେ ନ ପଡ଼ିବା ଯାଏ
ହୋଇପାରେ ନାହିଁ ମୋହର ଭୋଗ,
ଦେଇଛି ମୁଁ ଟେର ଚରଦନ ପାଇଁ
ତା ପରଶେ ଯିବ ବହୁତ ରୋଗ ।
ଜାଣିଲା ବରୁଣ କୃଷ୍ଣ ଆସିଛନ୍ତି
ଉଭାହେଲା ଆସି ଯୋଡ଼ଣ ହାତ,
କହିଲା ଭକ୍ତରେ, "କୋଉ କାମ ପାଇଁ
ମୋ ପୁରେ ଆସିଲ ଜଗନ୍ନାଥ ?
ଆଜ୍ଞା କର ମୋତେ ଏଇନା କରିବି
ସବୁ କାମ ମୋର ପଛକୁ ଥାଉ,
ତୁମକୁ ଦେଖିଲି ବଡ଼ ଭାଗ୍ୟ ମୋର
ମୋ ରାଜ୍ୟରୁ ସବୁ ଅରିଷ୍ଟ ଯାଉ ।"
କହିଲେ ଶ୍ରୀକୃଷ୍ଣ, "ମୋର ଗୁରୁପୁଅ
ଲୁଚାଇ ରଖିଛ କୋଉଠି ଘରେ ?
ଗୁରୁ ଗୁରୁପତ୍ନୀ ଦକ୍ଷିଣା ମାଗିଲେ
ଶୀଘ୍ର ଆଣିଦିଅ ପୁଅ ମୋ କରେ ।"
କହିଲା ବରୁଣ ଭୟେ ଥରି ଥରି
"ସେ ପୁଅ ତ କାହିଁ ମୋ ଘରେ ନାହିଁ,
ସକଳ କରତା ସବୁ ଜାଣ ତୁମେ
ଏଇଟି କପଟ ଜାଣିଲ ନାହିଁ !
ଅସୁର ଗୋଟାଏ ନାଆଁ ଶଂଖାସୁର
ରହିଲା ସାଗରେ ଚୋରାଇ ବେଦ,
ତୁମେ ଦଶି ପରା ମାରିଥିଲ ତାକୁ
ନାଶିଥିଲ ଚତୁରିବଦନ ଖେଦ ?
ତାହାରି ନନ୍ଦନ ନାମ ପାଞ୍ଚଜନ୍ୟ
ବଡ଼ ମାୟାବୀ ସେ ନେଲା କ ଧର !"
ଏତକ ଶୁଣି କୋପେ ନାରାୟଣ
ସାଗରେ ପଶିଲେ ଆୟୁଧ ଧରି ।

ଅଗାଧ ପାଣିରେ ଅସୁରକୁ ଧରି
ଭାଂଗିଲେ ଶଂଖକୁ ଦ୍ୱ'ଫାଳ କରି,
ଖୋଜିଲେ ଉଦର ଚିରି, ଗୁରୁପୁତ୍ର
ନ ପାଇ ତା ନାହି ଆସିଲେ ଧରି ।
ଫୁଙ୍କିଲେ ବାଜିଲା ଘୋର ରବ କରି
ଚରାଚର ସବୁ ଥରିଲା ଡରେ,
ସେହି ଦିନଠାରୁ ଆଜଯାଏ ବୋଲି
ଶଂଖଟାଏ ଛନ୍ତି ଧରି ଶ୍ରୀକରେ ।
ଯେତେବେଳେ ଯୋଉ ଯନ୍ତ୍ର ଲୋଡ଼ା ହୁଏ
ପ୍ରଭୁରନ୍ତି ତାହା ବଜାଇ କରି,
ଚକ୍ର ସରସିଜ ଗଦାର ସଙ୍ଗକୁ
ଶଂଖଟିଏ ହେଲା ଆୟୁଧ ପରି ।
ମାରେନା କାହାକୁ ଡରାଇ ଦେଇଣ
ମିତ୍ର ଓ ଅମିତ୍ର ଚହଲାଇ ଦିଏ,
ଯେତେ ବଡ଼ ଦୁଷ୍ଟ ଦାନବ ହେଲେ ବି
ସମ୍ଭାଳି ପାରେନା ତା ରବ କିଏ ।
ସାଗରୁ ବାହାରି ରାମଙ୍କୁ କହିଲେ
"ଯାଉଛୁ ଏଇନା ଶମନପୁର ।
ଯମକୁ କହିବ ତା ପୁର ଖୋଜିବ
ମୁକୁଳାଇ ଦେବ ଗୁରୁକୁମର ।"
ଏହିତକ କହି ଚଢ଼ିଲେ ରଥରେ
କରେ ପାଞ୍ଚଜନ୍ୟ ଅଛନ୍ତି ଧରି,
ରଥ ଦଉଡ଼ିଲା ଆଗକୁ ଆଗକୁ
ଧରଣୀ ପଛକୁ ରହିଲା ଡରି ।,
ଗଛ ଲତା ସବୁ ହେଲେ କି ସଚଳ
ପଛକୁ ପଛକୁ କରନ୍ତି ଗତି,
ରଥ ଧାଉଁଅଛି ଚଂଚଳ ଚଂଚଳ
କୋଳରେ ଧରିଛି ଜଗତପତି ।

ଯମ ସିଂହଦ୍ୱାରେ ବଜାଇଲେ ଶଂଖ
ଯେତେ ଜୀବ ଥିଲେ ଯମ ନଗରେ,
ପଶିଲା ଶବଦ ସଭିଙ୍କ କାନରେ
ତାଙ୍କ ଦୁଃଖ ଦଶା ଘୁଂଚିଲା ଦୂରେ ।
ଶଂଖ ଚକ୍ର ଗଦା ସରସିଜ ଧରି
ଚାରି ଚାରି ଭୁଜ ହୋଇଲେ ସର୍ବେ,
ଦିବ୍ୟ ଦେବ ବସ୍ତ୍ର ଧରି ହସି ହସି
ସରଗ ମାରଗେ ଚଳିଲେ ଗର୍ବେ ।
ଦୂତେ ଦଉଡ଼ିଲେ ଯମକୁ କହିଲେ
"ଜଗନ୍ନାଥ ପୁରେ ଆସିଲେ ଚାଲି,
ପାପୀ ତାପୀ ସବୁ ମୁକତି ପାଇଲେ
ଭେଟି ଯା ଚରଣେ ଶରଣ ମାଗି ।"
ଯମ ଡରି ମରି ଚିତ୍ରଗୁପ୍ତ ସଙ୍ଗେ
ଭେଟିଲା ଶ୍ରୀକୃଷ୍ଣ ଭକତ ସହ,
କହିଲା ବିନୟେ "କାହିଁ ବିଜେ ପ୍ରଭୁ
କାହିଁକି ଆସିଛ ମୋତେ ତା କହ ।",
ଶ୍ରୀକୃଷ୍ଣ କହିଲେ, "କପଟ ସାଗରେ
ଗୁରୁପୁତ୍ର କାହିଁ ରଖିଛ ଆଣ,
ଗୁରୁ-ପତ୍ନୀଙ୍କୁ ଦକ୍ଷିଣା ମୁଁ ଦେବି
ଏ କଥା କି ତୁମେ ଆଗୁଁ ନ ଜାଣ ?
ତୋର ଦୂତଙ୍କର ଏଡ଼େକ ସାହସ
ଅକାଳେ ଆଣିଲେ ତାହାକୁ ବାନ୍ଧି,
ତେଣେ ଗୁରୁ ଗୁରୁ- ଭାରିଯା ଉଭୟେ
ମନ୍ଦୁଛନ୍ତି ଦିବା ରଜନୀ କାନ୍ଦି ।
ମୋର ବୋଲ ମାନ ଆଣିଦିଅ ବେଗେ
ନୋହିଲେ ଭୋଗିବ ତା ପରିଣାମ",
ଯମ ସନମତି କରି ଆଣି ପୁତ୍ର
ଶ୍ରୀକୃଷ୍ଣଙ୍କୁ ଦେଇ କଲା ପ୍ରଣାମ ।

ଗୁରୁ-ନନ୍ଦନକୁ ବସାଇ କୋଳରେ
ଚଳଲେ ସାଗର କୂଳେ ଦହନ,
ଗ୍ରାମ ଚଉଣେ ବାଟ ଗୃହେଁ ବସିଥିଲେ
ମିଳଲେ ଶ୍ରୀକୃଷ୍ଣ ଗୁରୁନନ୍ଦନ ।
ଗ୍ରାମ କୃଷ୍ଣ ଦୁହେଁ ଗୁରୁପୁତ୍ର ସହ
ପହଞ୍ଚିଲେ ଶୀଘ୍ର ଗୁରୁଙ୍କ ଘରେ,
ଗୁରୁ ଗୁରୁପତ୍ନୀ ଦେଖିଲେ ଯୋଉନା
ପୁଅ କୋଳ କଲେ ଅତି ସ୍ନେହରେ ।
କୃଷ୍ଣ ବଳରାମେ ଆଶୀର୍ବାଦ କରି
ଶିରେ ଓ ଗଣ୍ଡରେ ଦେଲେ ଚୁମ୍ବନ,
ଆନନ୍ଦରେ ଗଦ- ଗଦ କାନ୍ଦକରି
କହିଲେ, "ବାଟରେ ହୋଇଲ ଧନ୍ୟ ।"
ପୁଅକୁ ସମର୍ପି- ଦେଇ ଗୁରୁ କରେ
କହିଲେ, "ମାଗନ୍ତୁ ଆଉ ଦକ୍ଷିଣା,"
ଗୁରୁପତ୍ନୀ ହସି କହିଲେ ସ୍ନେହରେ
"ଲୋଡ଼ା ନାହିଁ ଧନ ମୁଁ ନୁହେ ଦୀନା ।
ପୁଅ ତ ପାଇଲ ଯାହା ଉଣା ଥିଲା
ଆଉ କୋଉଥିରେ ଲୋଭ ମୋ ନାହିଁ,
କର ଅନୁଗ୍ରହ ଅନ୍ତିମ କାଳରେ
ବୁଜିବୁ ନୟନ ତୁମକୁ ଚାହିଁ ।
ଯାଅ ଫେରି ଘରେ ହୁଅ ଚିରଂ ଆୟୁ
ବାପ ମାଆଙ୍କୁ ହେ କର ହରଷ,
ପାଇନ୍ଥନ୍ତ କୋଳେ ବହୁ ଦୁଃଖ ସହି
ଭୋକ ଉପାସରେ ଆଠ ବରଷ ।"
କୃଷ୍ଣଙ୍କ ଦେବତ୍ୱ ଗୁରୁଙ୍କ ମହତ୍ତ୍ୱ
ଏଇଟି ତ ହେଲା ସବୁ ପରୀକ୍ଷା,
ଶ୍ରୀକୃଷ୍ଣଙ୍କ ଦାନ ଗୁରୁଙ୍କ ଗ୍ରହଣ
ଦକ୍ଷିଣା କି ଅବା ସନ୍ତାନ-ଭିକ୍ଷା ?

ଜନକ ଜନନୀ          ମନ କୋଡ଼ପରି
    ଆକୁଳ ହୁଅଇ ସଂତାନ ପାଇଁ,
ଏହ ଦକ୍ଷିଣାରୁ          ଜଣା ପଡ଼ିଗଲା
    ଜନନୀର ସ୍ନେହ କାହାରି ନାହିଁ ।
ରାମ କୃଷ୍ଣ ଦୁହେଁ          ଫେରିଲେ ମଥୁରା
    ବସିଛନ୍ତି କ ତାଙ୍କୁ ଅନାଇଁ କରି,
ଗଛ ଲତା ସବୁ          କୃଷ୍ଣ ପରଶରେ
    ନବ କଶଳୟେ ଗଟଲ କଅଁଳ ।
ମଥୁରା ଦାଣ୍ଡରେ          ହସି ହସି କରି
    ଚାଲିଗଲେ ଧୀରେ କୃଷ୍ଣ ଓ ରାମ,
କି ଶୋଭା ବର୍ଣ୍ଣିବି          ଫୁଲ ଯୋଡ଼ିଏ କି
    ରୂପ ବଳିବାରେ ଶିବ ଓ କାମ ।
ବାଟରେ ଘାଟରେ          ଯିଏ ଯେଉଁଠିରେ
    ଥିଲେ ରୂପ ଦେଖି ହୋଇଲେ ମୋହ,
ରାମଙ୍କୁ ଦେଖିଲେ          ଲୁଚିଯାଏ କାମ
    କୃଷ୍ଣଙ୍କୁ ଦେଖିଲେ ହୁଅଇ ଦହ ।'
ପଛେ ପଛେ ତାଙ୍କ          ଧାଇଁ ଧାଇଁ ଆସେ
    କେଉଁଠେଇ ଥାଏ ମଳୟ ବାଆ,
କୋଇଲକୁ ଡାକ          ଭଅଁର କହଇ
    "ଗାଇରେ ଏଥର ମଧୁରେ ଟାଆ ।
ମୁଁ ବାଏଁ ବୀଣାର          ତୁ ବଜା ମୁରଲୀ
    ମଥୁରାରେ ଖେଳୁ ମାଧୁରୀ ଢେଉ,
କୃଷ୍ଣ ଆସିଲେଣି          ବୋଲି ଘରେ ଘରେ
    ପବନରେ ଭାସି ଖବର ଦେଉ ।
ଫୁଟା ଫୁଲ ଦେଖି          କହଇ ଆକଟି
    ଦେଖାନା ରେ ମୁହଁ ଦେଖାନା ହସ,
କୃଷ୍ଣ ବଳରାମ          ମୁହଁ ଯୋଡ଼କ ତ
    ତୋର ମୁହଁଠାରୁ ବେଶୀ ସରସ ।

ତୋର ଗରଭରେ ଅଛୁ ଯୋଉ ମହୁ
ତାଠୁଁ ବଳି ମିଠା ଏ ମୁଖ-ସୁଧା,
ତାକୁ ଦେଖିଲେ ତ ପେଟ ପୂରଯାଏ
ତୋ ମହୁ ଖାଇବ ଅଛୁ କ କ୍ଷୁଧା ?"
ଫୁଲ କହେ, "ଶୁଣ ଶୁଣ ରେ ଭ୍ରମର
ତୋ ମୁହଁକୁ ଆମେ ଗୃହୁଁ କ ସତେ,
କୃଷ୍ଣ ମୂରତିଟି ଅଧିକ ସୁନ୍ଦର
ଦେଖୁନାହୁଁ ଲଜ ମାଡୁନି ତୋତେ ?
ଗୁଣୁଗୁଣୁ କରି ବଜାଉ ସିତାର
ଶୁଣୁନାହୁଁ ତାର ନୂପୁର ସ୍ୱର,
ଲଜ ମାଡୁ ନାହିଁ କହୁଛୁ ଆମକୁ
ପୁଂଶପା ଆଗରୁ ଲଂପଟ ଗୈର ।
ପୀତ ବସନକୁ ଅନୁକର କରି
ବୋଲ ହୋଇଚୁ ତ ପୁଷ୍ପଚରିଗ,
ଦେଖାଇ ଦେଉଛୁ ଗୈର ଛଳ ରୂପ
ଦେଖି ହାଡ଼ ଜଳେ ହୁଅଇ ରାଗ ।
ତୋର ଦୋଷ ଯେତେ କଏ ବା ଜାଣେନା
ମହୁ ଥିବାଯାକ ଖାଉ ତୁ ବସି,
ମହୁ ସରିଗଲେ ଉଡ଼ିଯାଉ କେଣେ
ତୋର ଢଂଗ ଦେଖି କେ ଯିବ ରସି ?
କୃଷ୍ଣ ସଂଗେ କେବେ ସମାନ ହେବୁ କ
ଧରିଲେହେଁ ମାଳ ଗଗନ ଛୁଇ ?
ପ୍ରଣୟ ବେଷରେ ତୋ ରୂପ ବଭବ
ଗ୍ଲାଏଁ ହଜିଯିବ ଦେଉଛୁ କହି ।
କୋଉ ଗୁଣେ ତାର ସରି ସମାନରେ
ମୁଁ ବସିଥିବ ତୋ ରୂପକୁ ଗୃହିଁ,
ଧାଉଁଥା ପଛକେ ଥର ଥର କରି
ଗୀତ ଗାଇ ଅବା ସିତାର ବାଇ ।

ଲଂପଟ ପଣରେ ପଟ୍ଟିତ ଯାଇଛୁ
କପଟ କରି ତୁ କହୁଛୁ କେତେ,
କଳାଧାଳ ସବୁ ଲଂପଟ କପଟ
ନଟ ଶଠ ଠକ ଅଛନ୍ତି ଯେତେ ।
ପଳା ପଳା ବେଗେ ଆଗରୁ ଲଂପଟ
କୁଂଭକାର ଘାଟ ଲଗାନା କଳ,
ସରୁମୁହାଁ ମାଠି କଳସ ଭିତରେ
ନିଜ ସରମରେ ପଶ ଯା ଗଳ ।"
ଫୁଲ୍ଲ କଣ୍ଠ ବାଣୀ ଶୁଣିଲି ଭଅଁର
କୃଷ୍ଣ ମୁହଁ ପାଖେ ଉଡ଼ଲା ରଙ୍ଗେ,
ଗରଜି ବିପକ୍ଷୀ ସଚେ କି ବାଇଲ
ଶ୍ରୀକୃଷ୍ଣ ଶୁଣିଲେ ତା ଅନୁରାଗେ !
ଶ୍ରୀକୃଷ୍ଣ କହିଲେ, "ଆରେ ମଧୁଲୋଭି
ମଧୁ ଖୋଜୁଥିଲେ ଯାଆ ଚଞ୍ଚଳ,
ଗୋପପୁର ଗୋପୀ- ମାନଙ୍କ ବଦନ
ଗୋଟିଏ ଗୋଟିଏ ପଦ୍ମ କମଳ ।
ଝରୁଛି ତହିଁରୁ ସଦା ମକରନ୍ଦ
ଖାଇବୁ ଯେବେ ରେ ସେଠିକି ଯାଆ,
ତାଙ୍କ କାନେ କାନେ ମୋର କଥା କହି
ଏହିପରି ଧୀରେ ସୀତାର ବାଆ ।
କହିବୁ ତାହାଙ୍କୁ କୃଷ୍ଣ କହିଥିଲା
ଗୃହ ଦିନ ରହି ଆସିବ ଫେରି,
ଆସି ପାରିଲିନି ରହିଗଲି ସେଠି
ଆଉ କିଛି ଦିନ ହୋଇବ ଡେରି ।"
ପଶିଲେ ମଥୁରା ନଗର ଭିତରେ
ଆଲୁଅ ହୋଇଲା ମଥୁରା ଦାଣ୍ଡ,
ଯାଦବ ଯାଦବୀ ଯିଏ ଯହିଁ ଥିଲେ
ଦେଖିବାକୁ ଆସି ହୋଇଲେ ରୁଣ୍ଡ ।

କଏ ଓଠ ଧରି    କଏ ଗଣ୍ଡ ଚୁମ୍ବି
କଏ ଶିର ଶୁଂଘି କଲେ କଲ୍ୟାଣ,
ବୁଢ଼ା ବୁଢ଼ୀ ଯେତେ    ଯାଦବ ଯାଦବୀ
ତାଙ୍କୁ ନମି କୃଷ୍ଣ କଲେ ପ୍ରଣାମ ।
ଯୁବକ ଯୁବତୀ    ଆଖି ଠାରଠାରି
ହୋଇଣ ଚାହିଁଲେ ଶ୍ରୀକୃଷ୍ଣ ରୂପ,
କେଜାଣି କି ଭାବ    ଉଠିଲା ମନରେ
ସତେ କି ପଶିଲା ମନରେ କାମ !
କିଶୋର କିଶୋରୀ    ହସାହସି ହୋଇ
ଧାଇଁଲେ ସବେଗେ ଦେଖିବା ପାଇଁ,
ବାଟରେ ଆଗରେ    ଠିଆ ହୋଇଗଲେ
ଅଂଗୁଳିରେ ସେଠି ହାତ ଦେଖାଇ ।
ବାଳକ ବାଳିକା    ଦଉଡ଼ିଲେ ସବୁ
ଦେବକୀଙ୍କୁ ଦେଲେ ଶୁଭ ଖବର,
"ପାଠ ପଢ଼ିସାରି    ଫେରିଲେ ଘରକୁ
ଦେଖ ଗୋ ଜନନୀ ପୁଅ ତୁମର ।"
ଦେବକୀ ଆନନ୍ଦ    କେ କହି ପାରିବ
ଧାଇଁଲେ ଦାଣ୍ଡକୁ ସଂକୋଚ ଛାଡ଼ି,
କଂସ ମଲାଦିନୁ    ଡର ଛାଡ଼ିଅଛି
ଆଉ କେ ପୁଅକୁ ନେବ ବା କାଢ଼ି !
ଜନନୀ ହୃଦୟୁ    ସ୍ନେହ-ମନ୍ଦାକିନୀ
ଉଛୁଳି ପଡ଼ିଲା କୂଳକୁ ଡେଇଁ,
ଦାଣ୍ଡ ଦୁଆରକୁ    ଦଉଡ଼ି ଆସିଲେ
ପୁଅଙ୍କୁ ଚୁମ୍ବିଲେ କୋଳକୁ ନେଇ ।
ପଣତ କାନିରେ    ମୁହଁ ପୋଛିଦେଲେ
ବସୁଦେବ ପାଶେ ଗଲେ ସେ ଚଳି,
ବାପ ମାଆ ସ୍ନେହ    ମିଳି ମିଶିଗଲା
ପ୍ରୟାଗେ ଜାହ୍ନବୀ ଯମୁନା ଭଳି ।

ଜନକ ଜନନୀ ପଦ୍ମରେ ପ୍ରଣମି
ଆନନ୍ଦେ ରହିଲେ ନିଜ ନବରେ,
ଦାସ ପରଦାସେ ଖେଳିଲେ ବୁଲିଲେ
ସାଂଗସାଥିମାନଙ୍କର ସଂଗରେ ।
ଗୋପଗୋପୀ ସଂଗୀ- ମାନଙ୍କର କଥା
ମନେ ପକାଇଲେ କୃଷ୍ଣ ଏଥର,
ନନ୍ଦଙ୍କ ଉଆସ ଗୋପପୁର ଦାଣ୍ଡ
ବାଡ଼ ପୋଖରୀର ଲୁଠପଥର ।
ବୃନ୍ଦାବନ କୁଞ୍ଜ ଚରଚର ସଞ୍ଜ
ଲୁଚକାଳି ଖେଳ ଯମୁନା ଘାଟ,
ବରଷା କଦମ୍ବ ମୟୂର ନର୍ତ୍ତନ
ଗୋରୁଚରା ବଣ ଉପର ବାଟ ।
ଲଳିତା ବିଶାଖା ରାଧା ଚନ୍ଦ୍ରଲେଖା
ଚନ୍ଦ୍ରାବଳୀ ବୃନ୍ଦା ଯେତେକ ବାଳୀ,
ତାଙ୍କ ସଙ୍ଗେ ସଙ୍ଗେ ଯେତେ ଗାଈଗୋରୁ
ଧବଳୀ ଶ୍ୟାମଳୀ ତାଙ୍କ ବୋବାଳି ।
ଗୋଧୂଳି ଲଗନ ରଂଜିତ ଗଗନ
ଶୀତଳ ପବନ ମଦଳ ଶଶୀ,
ଗୋବର୍ଦ୍ଧନ ଶିର ଅସ୍ତ ରବିକର
ନୂଆ ନାଲି ମାଳ ଶିଖର ସ୍ପର୍ଶୀ ।
ଦିନେ ଉଦ୍ଧବଙ୍କୁ ଡାକିଲେ ପାଖକୁ
କହିଲେ, "ଗୋପକୁ ଯାଅ ଉଦ୍ଧବ,
ବୁଝାଇ ସୁଝାଇ କହିବ ସଭିଙ୍କି
ସେଠି ମୋର ଯେତେ ବନ୍ଧୁବାନ୍ଧବ ।
ପହଞ୍ଚିଲେ ଭେଟିବ ନନ୍ଦ ଯଶୋଦାଙ୍କୁ
ବହୁତ ବୁଝାଇ ତାଙ୍କୁ କହିବ,
ଗୋପଗୋପୀ ପାଶେ ମୋର କଥା କହି
ଦିନାକେତେ ଗୋପପୁରେ ରହିବ ।

ମନୋରଥେ ମୋର ଯେ ବନ ଅକ୍ରୂର
ଯାଇଥିଲା ଗୋପେ ରଥ ସଜାଇ,
କଂସର ଆଦେଶେ ଆଣିବାକୁ ମୋତେ
ଛଳ କରି ଏଣେ ମାରିବା ପାଇଁ ।
ମୋ ଆସିବାବେଳେ ରଥ ଆଗେ ଆଗେ
ଅଟକାଇ କରି ଅକ୍ରୂର ରଥ,
ମନ କୁହୁଳାଇ ଲୋତକ ଗଡ଼ାଇ
ରୋଦ। କରିଥିଲେ ଆସିବା ପଥ ।
ପଚାରି ଥିଲେ ସେ କାନ୍ଦ କାନ୍ଦ କରି
"କେତେ ଦିନ ରହି ଆସିବ ଫେରି ?
ଯାଉଛ ତ ସଂଗେ ଆମ ପ୍ରାଣ ନେଇ
ଚଞ୍ଚଳ ଆସିବ ନ କରି ଡେରି ।"
କହି ଆସିଥିଲି ଯାତ୍ରା ଦେଖିବାକୁ
ରହିବି କେବଳ ଗୁଟିକି ଦିନ,
ତୁମମାନଙ୍କୁ କି ଛାଡ଼ି ରହିପାରେ ?
ସ୍ୱର୍ଗେ ବି ଆକୁଳ ହେବ ମୋ ମନ ।
ଏବେ ବହୁ ଦିନ ବିତିଗଲା ଏଠି
ମୋ ବାଟକୁ ବସିଥିବେଟି ଚାହିଁ,
ଆଶା ତୁଟାଇଣ ନିରାଶ ହେବେଣି
ଯାଇ ସବୁ କଥା କହ ବୁଝାଇ ।
ଗୋପୀମାନେ ପିଣ୍ଡ ମୁଁ ତାଙ୍କ ପରାଣ
ମୋ ଲାଗି ସେମାନେ ସହିବେ ସିନା,
ସେମାନଙ୍କ ମନ ବଡ଼ ନିରମଳ
କହୁ ନାହିଁ ତହିଁ ମୋ ଚିନ୍ତା ବିନା ।
ତାଙ୍କ ସ୍ନେହଭାବ ସଦା ମୁଁ ଝୁରଇ
ତାଙ୍କ ପ୍ରିୟ ହୋଇ ରହିଛି ଦୂରେ,
ମୋ ବିନା ସେମାନେ ଉଚ୍ଚାଟ ହେବେଣି
ଥୟ ହୋଇ ରହି ନ ଥିବେ ଘରେ ।

ବରଷେ ବଧିର ହୋଇ ମୋର ସଂଗ
ଲୋଡ଼ୁଥିବେ ବସି ଦିବସ ରାତି,
ମୋର କଥା ଭଲ ମୋର ରୂପ ଝୁରି
ଫଟାଉଥିବେ ସେ କଅଁଳ ଛାତି ।
ଅତି ଦୁଃଖେ ଦେହ ଧରିଥିବେ ସିନା
କଂଠରେ ପରାଣ ଅଟକି ଥିବ,
ଅଧିକ ଡେରି ହୋଇଲେ ଉଦ୍ଧବ
ନିଶ୍ଚୟ ଏଥର ବାହାରି ଯିବ ।
ନିଶ୍ଚୟ ଆସିବ କୃଷ୍ଣ ଗୋପପୁର
ଏତିକି ମାତର ତାଙ୍କର ଆଶା,
ମୁହିଁ ତାଙ୍କ ପ୍ରାଣ ମୁହିଁ ତାଙ୍କ ଧ୍ୟାନ
ସଂପଦେ ବିପଦେ ମୁହିଁ ଭରସା ।"
କୃଷ୍ଣ କଥା ଶୁଣି ଉଦ୍ଧବ ତକ୍ଷଣି
ଆଣିଲା ସୁନ୍ଦର ରଥକୁ ସାଜି,
ଯୋଚିଲା ତହିଁରେ ବାଛି ବାଛି କରି
ସୁନ୍ଦର ସବଳ ଚଂଚଳ ବାଜୀ ।
ସତେ କି ସେ ଘୋଡ଼ା କଂସ ଆଣିଥିଲା
ସୂର୍ଯ୍ୟଙ୍କ ରଥରୁ ଛଡ଼ାଇ କରି,
କିବା ଉଚ୍ଚୈଃଶ୍ରବା ଇନ୍ଦ୍ର ଦେଇଥିଲେ
କଂସ ପ୍ରତାପକୁ ବଡ଼ାଏଁ ଡରି ।
ଆନନ୍ଦେ ବସିଲା ବିମାନରେ ଯାଇ
ଦଉଡ଼ିଲେ ଘୋଡ଼ା ପବନ ପରି,
ମଥୁରା ଭିତରୁ ବାହାରି ପଡ଼ିଲା
ଚଳିଗଲା ଗୋପ ସରଣୀ ଧରି ।
ବୁଡି ବୁଡ଼ି ଯାଉ- ଥିଲେ ଦିନକର
ଲୋହିତ ରଂଗରେ ଗଗନ ରଂଜି,
ବଉଦେ ବଉଦେ ରଚି ଗଛ ଲତା
ଯତନେ ଦେଇଛି ସୁମନ ଝଂଜି ।

ଗୋବର୍ଦ୍ଧନ ଶିରେ  ସୁବର୍ଣ୍ଣମୁକୁଟ
ପିନ୍ଧାଇ ଦେଇଛି କିଏ କି ପଟେ,
ହେମ ଜରି କବା  ଗୁଡ଼ଣି ହୋଇଛି
ନବଘନ ଶ୍ୟାମ ସମ ମର୍କତେ ।
ସଂଜ ବୁଡ଼ୁଥିଲା  ପକ୍ଷୀ ଫେରୁଥିଲେ
ଗୋରୁ ଆସୁଥିଲେ ଗୋଠୁଁ ବାହୁଡ଼ି,
ପବନେ ଗଗନେ  ଗୋଧୂଳି ପଟଳ
ସୃଜି ଦେଇଥିଲା ମୃଦୁ କୁହୁଡ଼ି ।
ଦୂରେ ଶୁଭୁଥିଲା  ଗୋଧନ ବାହୁଡ଼ା
ଗୋପ ବାଳଙ୍କର ଧୂଡ଼ୁକି ନାଦ,
ଗୋରୁଙ୍କ ପଛରେ  ଗୋପେ ଚଲୁଥିଲେ
ଧୀରେ ଧୀରେ ଧୀରେ ପକାଇ ପାଦ ।
ଗଗନବିହାରୀ  ଦଳ ଦଳ ହୋଇ
ଆସୁଥିଲେ ନଭ ପବନ ଚିରି,
ତଳେ ତଳେ କାର  ପଡ଼ୁ ନ ଥିଲଟି
ଉଡ଼ିଲା ପକ୍ଷର ଚଂଚଳ ଛାଇ ।
ଏତିକିବେଳରେ  ଉଦ୍ଧବ ଗୋପରେ
ପଶିଲା ଆନନ୍ଦେ ହୋଇ ବିହ୍ୱଳ,
ଯୁବତୀ ପ୍ରଉଢ଼ା  ଗୋପାଂଗନା କେତେ
କାଖି କୁମ୍ଭ ଘେନି ଦଳକୁ ଦଳ ।
କୃଷ୍ଣ କଥା କହି  ହସାହସି ହୋଇ
ଦେହ ଦୋହଲାଇ ଯାଆନ୍ତି ଚଳି,
ଭିଜା ଝୀନବାସ  ସୁନା ପ୍ରତିମାକୁ
ଘୋଡ଼ାଇ ଦେଇଛି ଅଳପ କରି ।
ଦିଶୁ ନାହିଁ ଦେହ  ଦିଶୁ ନାହିଁ ବାସ
ପ୍ରତ୍ୟୁଷ ପ୍ରଦୋଷ ସୁଷମା ପରି,
ବାରି ହେଉ ନାହିଁ  ଦୂର ନୟନରେ
କିଏ ସେ ଗଉଡ଼ୀ କିଏ ଶ୍ୟାମଳୀ !

ଯମୁନା ଜଳକୁ     କିଏ ଚହଲାଇ
ସୃଜି ଦେଉଅଛି ସରୁ ଲହରୀ,
କେ ପାଣି ପକାଏ     କିଏ ବୁଡ଼ି ଉଠେ
କିଏ ଟାଣେ କର ବସନ ଧରି ।
ଯମୁନା ଜଳର     ନୀଳ ଦର୍ପଣରେ
ଦିଶୁ ନାହିଁ କାର ବଦନ ଶିରୀ,
ମୁକୁଳା ବେଣୀର     ଚିକ୍କଣ ଚିକୁର
ଭାସେ ଏଣେତେଣେ ଶିଉଳି ପରି ।
କିଏ କହୁଅଛି     "କୃଷ୍ଣ କ'ଣ ଆଉ
ଗୋପକୁ ଲୋ କେବେ ଫେରିବ ସତେ ?
କହି ଯାଇଥିଲା     ଦୁଇ ଦିନ ସିନା
ମୋର ତ କାହିଁକି ହେଉନ ପ୍ରତେ ।
ଆମେ କ'ଣ ତାର     ମନେ ପଡ଼ୁଛୁ ଲୋ
ମଥୁରା ରମଣୀ କଲେ କି ବଶ ?
କିଏ ଲୋଭାଇବ     ନାହିଁ ଲୋ ଜଗତେ
ଦେଖି ପକାଇଲେ ତା ମୁହେଁ ହସ ।
ପିଲାଟିଏ ପରି     ଦିଶଇ ସିନା ଲୋ
କୋଉ ଯୁବତୀ ବା ତା ସଙ୍ଗେ ସରି,
କେତେ ଜାଣେ ପ୍ରେମ     ଜାଣଇ ସିଏ ଲୋ
କୋଉଠୁ ଶିଖିଲା ଏତେ ଚାତୁରୀ !
କୋଉଠେଇ ଥିବ,     କେହି ଦେଖିବନି
ଆମକୁ ଦେଖିଲେ ଜଗିବ ବାଟ,
ବଇଁଶୀ ବଜାଇ     କେତେ ଭଂଗୀ କରି
ଆଖିଠାରି ଖାଲି କରିବ ନାଟ ।
କାଳିଆ ମୁହଁରେ     ଧୂଳି ଲାଗିଗଲେ
କାହିଁକି ଦିଶେ ଲୋ ଏଡ଼େ ସୁନ୍ଦର,
ପଣତ ଓଟାରି     ଗୀତ ଗାଇ କରି
କରିଯାଏ କେତେ ଜାତି ଦୁନ୍ଦର ।

ଗୋ ତ ପାଇଚ          ମାତ କୋକଳର
ତାର ଗୀତ ଶୁଣି ପ୍ରୀତ କଏ ?
କୋଟି କନ୍ଦରପ          ଶ୍ୟାମଳ ତନୁକୁ
ପୀତ ବସନରେ ଘୋଡ଼ାଏ ସିଏ ।
ଗଗନ ଦେହକୁ          ବେଢ଼େ ଇନ୍ଦ୍ରଧନୁ
ଲୁଚିଇ କି ରଖି ପାରଇ କାହିଁ,
ସକଳେ ସେ ଶୋଭା          ଦେଖିବା ପାଇଁକି
ଆଗ୍ରହରେ ସିନା ରହନ୍ତି ଚାହିଁ !
ଝନ ଶେଷେ ଚୁଡ଼ା          ଯାଉଥିଲ ବେଳେ
ଅଟକି ଯାଆନ୍ତି ମନକୁ ରବ,
ମନ ଭରି କରି          ଦେଖିବା ପାଇଁକି
ଜଗତମୋହନ ସୁନ୍ଦର ଛବି ।
ନୀଳ କୁମୁଦର          ମୁହଁକି ସୁନ୍ଦର
ମନ୍ଦ ହସ କରେ ସୁନ୍ଦରତର,
ନାଲି ଠୋଟଲାକୁ          ଜିଣି କରି ଦଶେ
ବଂକା ବିମ୍ବ ପରି ଦୁଇ ଅଧର ।
କେତେ ଚିତ୍ରକର          କେତେ ଚିତ୍ର ଲେଖି
ଭୁଲଇ ଦିଅନ୍ତି ମନ ନୟନ,
କେତେ କବି କେତେ          ଗଦ୍ୟ ଗୀତ ଲେଖି
କୃଷ୍ଣ ରୂପ କରୁଥାନ୍ତି ଗାୟନ ।
ଚିତ୍ର ଗୀତଠାରୁ          କୃଷ୍ଣ ମନୋହର
ଏ କଥା କେ କହି ପାରିବ ନାହିଁ,
ତାର ଗଳା ସମ          ମଧୁରିଆ ଗଳା
ତା ମୋହନ ରୂପ ଅଛି କି କାହିଁ ?
ମନ ନୟନକୁ          ମୋହି ଦେବା ଭଳି
ରୂପ ଗୁଣ ସବୁ ଏକା ତାହାର,
ତାର ଚରି ଅଉ          କେହି ଦଶେ ନାହିଁ
ତାର ପରି ପୁଅ ଅଛି କାହାର ?

କବି ଚିତ୍ରକର    କେହି ଊଣା ନୁହେ
ଜଣେ ମୋହେ ଆଖି ଆରକ କାନ,
ନୀରସ ଜୀବନ    ସରସ କରିବା
ପାଇଁ ଦୁହେଁ ଦୁହିଁଙ୍କର ସମାନ ।”
ଏତିକି ବେଳରେ    ଉଦ୍ଧବର ରଥ
ସେହି ବାଟ ଦେଇ ଗଲାଟି ଧାଇଁ,
ଗୋପାଙ୍ଗନା ସବୁ    ମୁହଁ ଉଠାଇଣ
ଚକିତ ନୟନେ ଦେଖିଲେ ଅନାଇଁ ।
କୃଷ୍ଣର ଆକୃତି    କୃଷ୍ଣ ପରି ଶ୍ୟାମ
କୃଷ୍ଣ ମୁହଁ ପରି ସୁନ୍ଦର ମୁହଁ,
କୃଷ୍ଣ ପରି ବେଶ    କୃଷ୍ଣ ପରି ସବୁ
ଅଭିମାନେ ନେତ୍ର ବହିଲା ଲୁହ ।
ଏହି ବାଟେ ଗଲା    ଆମକୁ ଦେଖିଲା
ଟିକିଏ ହେଲେ ତ ରହିଲା ନାହିଁ,
ଭଲ ମନ୍ଦ କିଛି    ପଚାରିଲା ନାହିଁ
ଆମକୁ ସେ କ'ଣ ନ ଥିଲା ଚିହ୍ନି ?
ଧାଇଁଲେ ଛନ୍ଦରେ    ଦେଖିବା ପାଇଁକି
କଳସୀ ପାଣିରେ ଭିଜିଲା ଅଂଗ,
ଭିଜିଲା ବସନ    ଭିଜିଗଲା ବାଟ
ମରମେ ବନ୍ଧିଲା ଖଳ ଅନଙ୍ଗ ।
ଆଉ କିଛି ତାଙ୍କୁ    ଦିଶିଲା ନାହିଁ ତ
କେବଳ ଦେଖିଲେ କୃଷ୍ଣ ମୂରତି,
ବସନ ଭୂଷଣ    ହୋଇଲା ଶିଥିଳ
ଅବଶ ଅଧୀର ହେଲେ ଯୁବତୀ ।
ପାଖକୁ ଯାଇଣ    ଦେଖିଲେ ଗୋପିଏ
ଆଉ ଜଣେ କିଏ କୃଷ୍ଣଙ୍କ ପରି,
ନାହିଁ ଶିଖିପୁଚ୍ଛ    ନାହିଁ ଗୁଞ୍ଜମାଳ
ହାତରେ ମୁରଲୀ ନାହିଁ ସେ ଧରି ।

କଥା କହୁବାଟା ଶୁଭେ ବୁଢ଼ାଳଆ
ନାହିଁ ସେ କଂଠରେ ମଧୁର ରବ,
ଅଙ୍ଗପ୍ରତ୍ୟଙ୍ଗରୁ ଭସି ଆସୁ ନାହିଁ
କୃଷ୍ଣ ଦେହର ସେ ମୃଦୁ ସୌରଭ ।
ମରମର ହସ ମରମେ ମରଲା
ଗଡପୁଷ୍ଟା ବାସି କୁସୁମ ପରେ,
ଉରସ ଭିଜାଇ ନୟନୁ ନୟନୁ
ଲୋତକ ଟଡ଼ଲା ମନକୁ ଝରେ ।
ଉଦ୍ଧବ ଚଳଲା ନନ୍ଦ ମନ୍ଦିରକୁ
ଗୁଆଳୀ ଫେରଲେ ଦୁଃଖରେ ଘର,
ଉଦ୍ଧବକୁ ଦେଖି କୃଷ୍ଣ ବରହାଗ୍ନି
ଜଳଲା ଜାଳଲା ପ୍ରଖରତର ।
ଖାଇ, ପିଇ ସୁଖେ ଶୋଇଲା ଉଦ୍ଧବ
ସୁନା ପଲଙ୍କରେ କଅଁଳ ଶେଯେ,
ଗତଯାକ କୃଷ୍ଣ ବାଲଲୀଳା ସହ
ଗୋପୀଙ୍କର ପ୍ରେମ ମନରେ ହେଜେ ।
ପଢ଼ଥିଲା ନେତ୍ର ଗୋପୀଙ୍କ ବଦନେ
ଶୁଣିଥିଲା ସେମାନଙ୍କର କଥା,
କୃଷ୍ଣଙ୍କୁ ନ ଦେଖି ଫେରଯିବା ବେଳେ
ଆହୁର ଦେଖିଲା ତାଙ୍କ ଅବସ୍ଥା ।
ଏହାତକରୁ ସେ ଜାଣି ପାରଥିଲା
ଗୋପୀଙ୍କର ପ୍ରେମ ଗୋପୀଙ୍କ ମନ,
ସେ ପ୍ରେମ ସୁମର ତନମୟ ହୋଇ
ଛଳ ଛଳ କରଥିଲା ନୟନ ।
ଭାଳଲା ମନରେ କ ସ୍ୱର୍ଗୀୟ ପ୍ରେମ
ନରମଳ ସ୍ନେହ ଅଚଳା ଭକ୍ତି,
କୃଷ୍ଣ ବାହାରେ ତ ଆଉ କୋଉଥିରେ
ନାହିଁ ଏ ଗୁଆଳୀମାନଙ୍କ ମତ ।

ମାନବେ ମାନବେ          ସମ୍ଭବ କି କେବେ
ଏ ଯେ ଭକ୍ତ ଭଗବାନଙ୍କ ପ୍ରୀତି,
ଧନ୍ୟ ଗୋପପୁର          ଧନ୍ୟ ଏ ଗୋପିଏ
ତୁମ ପାଇଁ ଧନ୍ୟ ହେଲା ଏ କ୍ଷିତି ।
ପ୍ରକୃତି ପୁରୁଷ          ମିଳନ ସୁନ୍ଦର
ପ୍ରସବିବ ନାହିଁ ସ୍ୱର୍ଗୀୟ ସୁଖ,
ଘୁଂଚିଯିବ ନାହିଁ          ଚିରଦିନ ପାଇଁ
ପାପତାପ ଯୁଗ କଳୁଷ ଦୁଃଖ !
ବଡ଼ ଭାଗ୍ୟ ମୋର          କୃଷ୍ଣ ପଠାଇଲେ
ଏମାନଙ୍କ ଲାଗି କରିଣ ଦୂତ,
କେତେ ଜନମର          କଳୁଷ ଘୁଂଚିଲା
ମନ ନୟନ ମୋ ହୋଇଲେ ପୂତ ।
ଏମାନେ ମୋ ଗୁର୍ବୀ          ମୁଁ ତାଙ୍କର ଶିଷ୍ୟ
ନେବି ଯାଙ୍କଠାରୁ ପ୍ରେମର ଦୀକ୍ଷା,
ଗୋପୀ କୃଷ୍ଣ ଗୋପୀ          କୃଷ୍ଣ ନାଆଁ ଭଜି
ଭଗବତ ପ୍ରେମ କରିବି ଶିକ୍ଷା ।
ଭକ୍ତ ଭଗବାନ          ଚରମ ପୀରତି
ଏହିମାନଙ୍କର ଜୀବନେ ଲେଖା,
ଯୁଗେ ଯୁଗେ ଯୋଗ          ସାଧନା କରି ବି
ବ୍ରହ୍ମା ଓ ଶିବଙ୍କୁ ମିଳେନା ଦେଖା ।
ରାତି ଥାଉଁ ଥାଉଁ          ଉଦ୍ଧବ ଉଠିଲା
ଦେଖିଲା ପଡ଼ୁଛି ଗୋଲଆ ଜହ୍ନ,
ଦୂରଦୂରାନ୍ତରୁ          ଭାସି ଆସୁଥିଲା
ତହିଁ ରହି କରି କୁକ୍କୁଟ ସ୍ୱନ ।
ଏବେଟୀ ଗଗନେ          ପାହାନ୍ତିଆ ତାରା
ଉଚ୍ଚକୁ ଉଚ୍ଚକୁ ଆସୁଛି ଚଢ଼ି,
ବୃଂଦର ସିଆଡ଼େ          ନଜର ଯାଇନ
କୁମୁଦ କହ୍ଲାରେ ଯାଇଛି ପଡ଼ି ।

ମଉଳା ଜହ୍ନର ଛାପ ପଡ଼ିଅଛି
ଗଛରେ ପଥରେ ଧରଣୀ ପରେ,
ଫୋପା ଫୋପା ହୋଇ କାକର ଝୁଲୁଛି
ଘନଶ୍ୟାମଳିଆ ଦୁବ ଉପରେ ।
ନିଶାଚର ଆଖି ପରିପ୍ରାୟ ଜଳୁଛି
ଏଠେଇ ସେଠେଇ ଠାଆକୁ ଠାଆ,
ହଲାଇ ଦେଉଛି ମଝିରେ ମଝିରେ
କୋଉଠୁ ଆସି ମୃଦୁଳ ବାଆ ।
ସବୁଜ ଘାସରେ ବିଛାଇ ଦେଇଛି
ସରୁ ଧୋବଲିଆ ମହଲ ଶ୍ରେଣୀ,
ଗଗନରୁ ଖଣ୍ଡେ ଧଳା ବଉଦ କି
ଧରଣୀ ଉପରେ ପଡ଼ିଛି ଖସି !
କାଉ କୋଇଲିଏ ବୋବାଇ ନାହାନ୍ତି
ନିଶି ମାରିବଟା ଉଭେଇ ନାହିଁ,
ଉଷା ଆସି ନାହିଁ ଫରଚ୍ଛ ହୋଇନି
ସବୁଆଡ଼େ ଅଛି ଅନ୍ଧାର ଛାଇ ।
ଶବ୍ଦ ଶବ୍ଦ ହୋଇ ଦହିମୁହାଁ ଖୁଆ
ଗର୍ଜୁଛି ଗମ୍ଭୀରେ ଲହଡ଼ୀ ପରି,
ଡାକୁଛି କି ଆଉ ଆସ ବଳରାମ
ଆସ କଳାଗଣୀ ଚଞ୍ଚଳ କରି !
କୋଉ ଗୋପୀ ଗାଏ ଗୀତ ସୁମଧୁର
ବନମାଳୀ ନାଆଁ ତହିଁରେ ଘୋଷା,
ମୁରଲୀ ବାଜଣା କିଏ ଗାଏ ଧୀରେ
ଶିଂଗା ଅନୁକରି ବାଏ କେ ଘୋଷା ।
କେ ଗାଉଛି ଗୀତ ପାହିଲାଣି କାହ୍ନୁ
ଉଠ ମୁହଁ ଧୁଅ ଦେଖ ରେ ଉଷା,
କେତେ ରାଗ ରଙ୍ଗେ ରଂଜିତ ହୋଇଛି
ପିନ୍ଧିଛି କପରେ କନକ ଭୂଷା !

କୋଇଲି ବୋବାକୁ ଛଡ଼ାଇ ନେଇ କେ
ଯୋଡ଼ି ଦେଉଅଛୁ କୁହୁଃ ଓ କୁହୁଃ,
କୋଉ ଗୋପୀ ଦୁଃଖେ କୃଷ୍ଣଙ୍କୁ ସୁମରି
କହୁଅଛୁ ଖାଲି ଉହୁଃ ଓ ଉହୁଃ ।
କେ କହୁଛୁ ଛନ୍ଦ ଶେଫାଳୀ ଫୁଲକୁ
ଛୁଆ ଲୋ ନିର୍ଲଜ୍ଜୀ ପ୍ରୀତିଚୋରଣି !
କୋଉ ରସିକ ତୋ ପାଖକୁ ଯାଏ ଲୋ
କୋଉ ଅନ୍ଧାରର ଅଟୁ ଧରଣୀ ।
ଭଉଁର ଛନ୍ଦା କି କଏ ଷଟପଦ
ଭେଟଇ କି ତୋତେ ରାତିଅଧରେ,
ଦିନକର କ'ଣ ଭଲ ପାଏନା ଲୋ
ଝଡ଼ିଯାଉ କିଆଁ ତା ପରଶରେ ?
କେ କହେ କମଳେ ସ୍ନେହବୋଳା ସ୍ୱରେ
ସତରେ ! କମଳ ତୋହରି ପରି,
କୃଷ୍ଣ ମୁହଁ ଆଖି କର ଓ ଚରଣ
କେ ଥୋଇଲା ତୋଠି ଗେହ୍ଲାଇ କରି ?
ମେଘ ମାଳ କେତେ ଦେଖାଇ ଦେଉ ରେ
ଲୁଚାଇ କରି ତୁ ସାଇତି ଥୁଅ,
ହାବୁଡ଼େ ପଡ଼ିଲେ ବାନ୍ଧବୁନ୍ଧ କରି
ଧରି ନେଇଯିବ ଗୁଣ୍ଡିଆ ପୁଅ ।
କାଳିଆ ଭଉଁରେ ଯୋଡ଼ାଇ ଦେଉଚୁ
ଦିନଟାକୁ କରିଦେବୁ କି ରାତି ?
ରାତି ପରଶକୁ ପର ପୁରୁଷକୁ
ସହିପାରିବ କି ଯୁବତୀ ଜାତି !
ଚାନ୍ଦକୁ ଛିଗିଡ଼ି କହୁଛୁ କେ ବାଳୀ
ଜଳାଇ ପୋଡ଼ାଇ ମାରୁଛୁ କିଆଁ ?
କେତେ ପାପ କରି ଖଣ୍ଡିଆ ହେଲୁଣି
କଳଙ୍କ ଯାଉନି ମଲା ବେହିଆ !

କଦମ୍ବ ତରୁକୁ କହୁଛୁ କେ ଗୋଣ୍ଡ
କୃଷ୍ଣ ବନା ସିନା ତୁ ଅସୁନ୍ଦର,
କୋଉଠି ଲୁଚିଛୁ ଅନ୍ତଃ ମୁଣ୍ଡ ଟେକି
ଆସୁଛୁ କି ଫେରି ବସନ-ଚୋର ?
ଲହୁଣୀକୁ କଏ ଛଳାଇ କହୁଛୁ
ତୁ ପରା କୁଆଡ଼େ ଘର କଅଁଳ,
କୃଷ୍ଣ ବରଦ କି ବାଜନ ଦେହରେ
ବହି ଯାଉନୁ ତ ହୋଇନୁ ଜଳ ।
ବେଙ୍ଗକୁ ଶୁଣାଇ କହୁଛୁ ରାଗରେ
"କେତେ ତୁ ଟମକ ବଜାଇ ମରୁ,
ପାଣି ଚଳେ ସିନା ତୋହର ଭରସା
ଭୃଙ୍ଗଙ୍କ ନଜର କେତା ପରେ ପଡ଼ୁ ।
କୋଇଲି ଗାଇଲେ ଯଶୋଦା କାନ୍ଦନ୍ତି
ପଚାରନ୍ତି ଧାଇଁ ତା ପଛେ ପଛେ,
"ସତରେ ତୁ କ'ଣ ବସନ୍ତର ଦୂତ
କିବା ମୋ କହ୍ନାଇ ଗାଉଛୁ ଗଛେ !
କହ କହ ମୋତେ କୋଇଲି ରେ ସଙ୍ଗ
କାହା ବୋଲି ମାନ ଗଲି ମୋ ପୂତ,
ମଥୁରାକୁ ଦିନେ ଯାଇଥିବୁ ନଷ୍ଟେ
ମୋର ବାପକୁ ତୁ ଦେଖିଥିବୁ ତ ।
ତୋର ରୂପ ପରି ତା ରୂପ ସୁନ୍ଦର
ତୋର କଣ୍ଠ ପରି ତାହାର କଣ୍ଠ,
ଦେଖିଛୁ କି ତାକୁ କୋଉଠି ଅଛି ସେ
କହ ରେ କୋଇଲି କରନା ମଠ ।
ତୁ ଗାଉ ଗହଳ ଚଛେ ମଥାନରେ
ସେ ଗାଏ ସଙ୍ଗୀତ କଦମ୍ବ ମୂଳେ
ତୋର ଲୁଚକାଳି ପଂଚ କୁଂଜେ କୁଂଜେ
ତାର ଲୀଳାଖେଳା ଯମୁନା କୂଳେ ।

ନନ୍ଦ କୋଳ ଖାଇ ତୋ ଗଳା ମଧୁର
ଗୀତ ଗାଉଥାଉ ଲୁଚୁଇ କଟି,
କ୍ଷୀର ସର ଖାଇ ତା ସ୍ୱର ମଧୁର
ନଣୀଥରେ ଗାଏ ସାଥୀଙ୍କୁ ଧରି ।
ତୋର ତ ଉଗାର ଅଛଇ ରେ କାଉ
ଯେଣୁ ତାକୁ ଠକଗଲୁ ତୁ ଚୁଲି,
ପିଲାଦିନେ ତୋତେ ଖୋଇ ପେଇ କରି
ଅତି ଆଦରରେ ଥିଲି ସେ ପାଳି ।
କୃଷ୍ଣ ତୋର ପରି କଲଣି ରେ ମୋତେ
ହେଉନ ତ କଣ ତାଠାରେ ଘୃଣ,
ତା ଖବର କହ ବୁଝା ମୋ ମନକୁ
କି ବଧାଇ ନେବୁ ଆଗରୁ ମାଗ ।
ଚୁରି ଧନକୁ ସେ କଣ୍ଟ ଦେଇଗଲା
ବରଷ ବରଷ ବିତଲା ଆସି,
କେତେ କ୍ଷୀର ସର ସାଇତି ଥୁଏ ମୁଁ
ନଷ୍ଟ ନଷ୍ଟ ହୋଇଯାଏ ତା ବାସି ।
ଖାଇବାକୁ ମୋର ଘରେ ପୁଅ ନାହିଁ
କୋଳ ତ ମୋର ରେ ପଡ଼ିଛି ଖାଲି,
କୃଷ୍ଣ ପରି ତୋର ରୂପ ଗୁଣ ସବୁ
କୋଉଠି ଲୁଚିଛୁ ଆସୁନୁ ଚାଲି ।
ବୁଲି ବୁଲି ତୋର ଖୋଜ ଟକବଣି
ତେଲ ମାରି ଠିକେ ଦିଏ ମୁଁ ସେକ,
ଧାଇଁ ଧାଇଁ ଆସି ପଡ଼ିଗଲା ବେଳେ
ଆଦରେ କୋଳକୁ ନିଏ ମୁଁ ଟେକ ।
ମା ଆ ମନକଥା ଜାଣିବୁ ରେ କାହୁଁ
ତୁ ତ ଜନମରୁ ଜନମ ଠକ,
ଖାଇ ପିଇ ବଢ଼ି ଦଗା ଦେଇ ଯାଉ
ଧରମକୁ ତୋର ନ ଥାଏ ଦକ ।

ମୁଁ ତ ନୁହେ ତାର          କାକ ଜନମାରେ
ଗୋଡ଼ାଇ ମାରିବ ତା ପଛେ ପଛେ,
ପଳାଇ ଯିବ ସେ          ତୋ ପରି ବକଲେ
ଉଣ୍ଡି ବୁଲୁଥିବ ମୁଁ ଗଛେ ଗଛେ ।
କୃଷ୍ଣ ପରି ମୋର          ପେଟର ଛୁଆରେ
ପାଖରେ ଥାଉ କି ଦୂରରେ ଥାଉ,
ତାକୁ ମୁଁ ମାରିବ ?          ତାକୁ ମୁଁ ରଗିବ ?
ତାର ପାଇଁ ପଛେ ପରାଣ ଯାଉ ।
ମାରିଥିଲ ତାକୁ          ବାନ୍ଧିଥିଲ ତାକୁ
କାନ୍ଦିଛି ବହୁତ କନ୍ଦାଇ ମୋତେ,
କହିବୁ କୋଇଲି          ଏତିକି ରେ ତାକୁ
ହାତ ୯୦ ଧରି କହୁଛି ତୋତେ ।
କେତେ କହୁଛନ୍ତି          "ଦେବକୀର ପୁଅ"
"ମୋର ପୁଅ ନୁହେଁ କୁଆଡ଼େ ସିଏ"
ପୋଡ଼ୁ ତାଙ୍କ ମୁହଁ          ଛୁଡ଼ିପଡ଼ୁ ଜିଭ
ଏକଥା ବହପି କହୁଛି ଯିଏ ।
କିଏ ସେ ଦେବକୀ          ଘର ମଡ଼ଛୀଟା
ଛ ଛଅଟା ପୁଅ ମରିଛି ଯାର,
ଏଇଥିରୁ ସବୁ          ଜାଣୁ ନାହାନ୍ତି କି
କାଳିଆ ସୁନା ମୋ ପୁଅ କାହାର ?
ପୁଅ ମୋର ଗଲା          ବାହୁଡ଼ିଲା ନାହିଁ
କିଏ ମଥୁରାରେ ରଖିଲା ବାନ୍ଧି !
କେତେ ବାପ ମାଆ          ଦଇଟା ଆମେ ରେ
ଦିନ ସାରୁଥିବୁଁ କେବଳ କାନ୍ଦି !
ସେ ତ ନୁହେ ମୋର          କାନ୍ଦୁଣିଆ ଛୁଆ
ହସରେ ଖେଳରେ ଥାଏ ସେ ମାତି,
ବେଳ ବୁଡ଼ିଗଲେ          ଖୋଇ ପେଇ ଦିଏଁ
ଶୁଆଇ ଦିଏଁ ମୋ ଜନମ ଘୁଡି ।

ଛୁଇ କରନ୍ଦାଏ ତୂଳା ତଳପକୁ
ନନ୍ଦ ମାଉଡ଼େ ନାହିଁ ଛନ୍ଦିରେ ତାକୁ,
ଏବେ ସେ କୋଉଠି ଶୋଉଥିବ ଭଲ
କଏ ଅଙ୍ଗୁ ଘୃତ ପାରିଦେବାକୁ ?
ମାଟି ଖାଉଥିଲ ମାରିଥିଲି ଥରେ
କାନ୍ଦିଥିଲୁ ପାଟି ଦେଖାଇ କରି,
ତୁଣ୍ଡରେ ଦେଖିଲି କେତେ ନଯ କଅଣ
ମୁଣ୍ଡ ବୁଲାଇଲା ଗଲି ମୁଁ ଡରି ।
ଆଉ ଏଇନାଏଁ ସେ ବୟସ ନାହିଁ
ଏଇନା ତ ଖାଉ ନ ଥିବ ମାଟି,
ଦେଖନ୍ତୁ ଦେବକୀ କପରି ସହନ୍ତା
ଦେଟିକରି ମୋର ପୁଅର ପାଟି ।
ଦେବକୀ ଥନରୁ ଝରୁଛି କି କ୍ଷୀର
ଏଇନା ପୁଅକୁ ପାଖରେ ରଖି ?
ଦେଖ ରେ କୋଇଲି ଥନ ଦେଖାଉଛି
କ୍ଷୀର ଝରୁ ନାହିଁ, ? ଗୃହାଁ ସଲଖି ।
ଘର ଭୋରବନ ହେଲାଣି ତ ହେବ
ଘରେ ପଣନ୍ତନ ଦଣ୍ଡେହେଁ ନନ୍ଦ,
କି ଯୋଗେ ଅକ୍ରୂର ଧରି ନେଇଗଲା
କପାଳ ଆମର ହେଲା ରେ ମନ୍ଦ ।
ଏହ୍ବ ବୃନ୍ଦାବନ ଥିଲା ସ୍ୱର୍ଗ ସର
ଏଇନା ହେଲାଣି ମଶାଣି ପର,
ପାରିଜାତ ଜଣି ଫୁଲ ଫୁଟୁଥିଲା
ନ ଫୁଟୁଣୁ କଢ଼ ପଡ଼ୁଛି ଝଡ଼ ।
ଯମୁନା କୂଳରେ ବାଜୁନ ବଂଇଶୀ
ଗୋପ ଗୋପ କେହ ଧାଉଁ ନାହାନ୍ତି,
ତା ମଧୁର ଗୀତ ସେ ମଧୁର ଛନ୍ଦ
ଶୁଣିବା ରଜନୀ ହେଲା ପାହାନ୍ତ ।

ଯମୁନା ଜଳରେ ଢେଉ ଖେଳୁଥିଲା
ଏଇନା ହିଲ୍ଲୋଳଟିଏ ବି ନାହିଁ,
କୃଷ୍ଣ ବିରହରେ ଯମୁନା ନୀରବ
ମୂକ ପରି ଖାଲି ରହିଛି ଚାହିଁ ।
ଯମୁନା ଗଣ୍ଡରେ ନାଆ ମେଳି ମେଳି
ଭାସୁଛି ତହିଁରେ ଖେଳୁନି କେହି,
ଯମୁନା କହ୍ଲାଇଁ ଦୁହେଁ ଏକାପରି
ଲଳିତ ସୁନ୍ଦର ସୁନୀଳଦେହୀ ।
ତାର ଶ୍ୟାମତଟ ଅଟଗୀ ନିର୍ଜନ
କେହି ପିଆଡ଼କୁ ଯାଉନି ଚାହିଁ,
ଗଛ ଲତା କୁଞ୍ଜ ପଶୁ ପକ୍ଷୀ ସବୁ
ପଚାରନ୍ତି ଖାଲି "ଶ୍ରୀକୃଷ୍ଣ କାହିଁ ?"
କୃଷ୍ଣ କଥାଟିର କି ଶକ୍ତି ଅଛି ରେ
ଆକର୍ଷେ ସଭିଙ୍କୁ ଚୁମ୍ବକ ପରି,
ମୋ ଦେହଟା ଏଠି ପରାଣଟା ସେଠି
କୃଷ୍ଣ ପଛ ତେଣେ ଟାଣୁଛି ଧରି ।
ଗୋରୁଏ ଗୁହାଳେ ତାହାକୁ ଝୁରନ୍ତି
ନୟନରୁ ସବୁ ବୁହାନ୍ତି ପାଣି,
କିଏ ଖୁଆଇବ କିଏ ଚରାଇବ
ଗୋରୁଗାଈଙ୍କର ମରମ ଜାଣି !
ଦୋଳ ପୁନିଅଁ ଟି ଗୋପାଳ ଜାତିର
ବରଷକେ ଥରେ ପରବ ଦିନ,
ସେ ଉତ୍ସବଟିକୁ ତୁଚ୍ଛ ମଣିଲେଣି
ଦିନୁଦିନୁ ତନୁ କଲେଣି କ୍ଷୀଣ ।
କାନ୍ଦି କାନ୍ଦି ମୁଁ ତ ଜଳକା ହେଲିଣି
ଆଖିରେ ତ ଆଉ ନାହିଁରେ ଲୁହ,
କେବଳ ଶୂନ୍ୟରେ ନୀଳ ଗଗନରେ
ଦିଶିଯାଏ ତାର ଦେହ ଓ ମୁହଁ ।

କୋଇଲି ଫେରିବୁ ଯେବେ ମଥୁରାକୁ
ଏହିତକ ତାକୁ କହିବୁ ଖାଲି,
ମୋ ସୁନା କୋଇଲି ମୋର ବୋଲ ମାନି
ଏଇନା ମଥୁରା ଯା'ଆ ତୁ ଚାଲି ।
ବାହୁଡ଼ା ଖବର ଶୁଣିବା ପାଇଁକି
ଏଇଠି ମୁଁ ଠିଆ ହୋଇଛି ରହି,
ମୋର ରାଣ ତୋତେ ମୋ ବାପଟି ପରା
ମଥୁରାରେ ଡେରି କରିବୁ ନାହିଁ ।"
ହଳଦିବସନ୍ତ ଚଢ଼େଇ ଦେହଟି
କୃଷ୍ଣ ବସନ୍ତର କି ମିଶାମିଶି,
ମଧୁରେ ବୋବାଇ ପୋକ ଜୋକ ଖୋଜି
ଗଛେ ଗଛେ ପଶି ଖାଉଛି ବସି ।
ଦେଖି ତା ସୁନ୍ଦର ରୂପଟି ଯଶୋଦା
ପଚାରନ୍ତି ସ୍ନେହେ, "କୋଉଠି ଥିଲୁ ?
ମୋ କଳାକାହ୍ନୁର ବର୍ଣ୍ଣ ବାସ ହରି
ମଥୁରା ନଗରୁ କିବା ଆଇଲୁ ?
ସିଏ ତୋର ପରି କାଳିଆ ଦେହଟି
ଢାଂକି ଦେଇଥାଏ ପୀତ ବାସରେ,
ସିଏ ତୋର ରୂପ କି ତୁ ତାର ରୂପ
ନେଇଗଲି ଖେଳୁଛ ପରିହାସରେ ?
କାହିଁ ତା ମୁରଲୀ କାହିଁ ଶିଖୀପୁଚ୍ଛ
କାହିଁ ଗୁଞ୍ଜମାଳ କାହିଁ ତା ନାଟ,
କାହାନ୍ତି ଗୋପିଏ ତାର ସାଙ୍ଗସାଥୀ
ପାରିବୁ କି କରି ଯମୁନା ଘାଟ ?
କାହିଁକି ଆସିଛୁ ମୋତେ ଛଳିବାକୁ
ତା ରୂପ ଦେଖାଇ ପୋଡ଼ିବୁ ବୋଲି,"
ପାରି ନାହୁଁ ବୋଲି ସୁନ୍ଦର କରି ରେ
ତା ଘନ ଶ୍ୟାମଳ କାନ୍ତିକି ଗୋଳି ।

କହିବୁ କୃଷ୍ଣଙ୍କୁ    ଦେଖି ତ ଯାଉଛୁ
ଯାହା ଯାହା ସବୁ ଘଟିଛି ଗୋପେ,
ଆହୁରି କହିବୁ    ଉତ୍ତର କଲେ ସେ
ତାର ବିରହରେ ମରିବେ ଥୋକେ ।"
ମଥୁରା ନଗରୁ    ଉଦ୍ଧବ ଆସିଛି
ରାମକୃଷ୍ଣଙ୍କର ଖବର ନେଇ,
ଶୁଣିଲା ଚହଳ    ଗୋପପୁରଯାକ
ଗୋପଗୋପୀ ସବୁ ଆସିଲେ ଧାଇଁ ।
ପଚାରିଲେ ସବୁ    ଜଣ ଜଣ କରି
"କପରି ଅଛନ୍ତି ରାମ ମାଧବ,
କାହିଁକି ଆସିନି    କଅଣ ଦେଖିବ
ଗୋପ ଶିରୀ ହତ ଦେଖ ଉଦ୍ଧବ !
ତୁମ ପରି ଦିନେ    ଅକ୍ରୂର ଆସିଲା
ଦୁଇଟି ଭାଇଙ୍କୁ ନେଲା ସେ ଧରି,
ସେହି ଦିନଠାରୁ    ଶିରୀ ଛୁଟିଗଲା
ହସ ଖୁସି ସବୁ ଗଲା ତ ମରି ।
ଅକ୍ରୂର ବୋଲି ତା    ନାଆଁ କିଏ ଦେଲା
ଅଟେ କ୍ରୂରଟାଏ କପଟ ବ୍ୟାଧ,
କୃଷ୍ଣ କାଢ଼ିନେଲା    ଆମକୁ ନାଶିଲା
ତେବେ ଯାଇ ତାର ମେଣ୍ଟିଲା ସାଧ ।
ରାମ କୃଷ୍ଣ ସଙ୍ଗେ    ପରାଣ ଯାଇଛି
ଅକ୍ରୂର ରଥରେ ମଥୁରା ଚଢ଼ି,
ଗୋପ ଦାଣ୍ଡେ ଦାଣ୍ଡେ    ବାଳ ଗୋଡ଼ ପରି
ପିଣ୍ଡଟା ଆମର ରହିଛି ପଡ଼ି ।
ମଲା ଦେହଟା ତ    କଥା କହେ ନାହିଁ
କହୁଛି ଶ୍ରୀକୃଷ୍ଣ ଭିତରେ ରହି,
ଉଦ୍ଧବ ତୁମର    ଅଛି ଯୋଗ୍ୟ ଆଖି
ଦେଖ ଦେଖି ଥରେ ଅଛି କି ନାହିଁ ?

ଅନ୍ତର ଭିତର ତାହାର ପାଇଁକି
ପଡ଼ିଯାଇଛି ତ କଜଳ କଳା,
ସେ କାଳିମା ପୁଣି ଦିବସ ରଜନୀ
ଲାଗୁଛି ଆଖିକୁ ଅଞ୍ଜନ ପରା !
କଳା ବରଣଟା ସଂସାରେ ନ ଥିଲେ
ଆଖି କି ସହନ୍ତା ଏତିକି ତାତି ?
ନବଘନ ଶ୍ୟାମ ଛୁଇଁ ଯାଉନ୍ତି ଯେ
ଦେଖାଇ ଦେଇଛି ଅନ୍ଧାର ରାତି ।
କାଳିଆ ଚକୁର କାଳିଆ କଜ୍ୱଳ
କୃଷ୍ଣଙ୍କୁ ପାଖରେ ଦିଅନ୍ତି ଆଣି,
ତାଙ୍କୁ ସ୍ନେହ କରୁ ତାଙ୍କୁ କୋଳେ ଧରୁ
କୃଷ୍ଣ କି କଅଣ ପାରୁନ ଜାଣି !
ନେଳିଆ ଗଗନ ନେଳିଆ ଯମୁନା
ତହିଁ ଛାୟାପଥ ବାଲୁକା କୁଦ,
ଦେଖିଦେଲି କ୍ଷଣି ଦୂରକୁ ପଳାଏ
ହୃଦୟର ଯେତେ ଆମୋଦ ମୁଦ ।"
କେଉଁ ଗୋପୀ ପୁଣି କହିଲା ଖେଦରେ
"ଓଲଟା କଥା ତୁ କହିଲୁ କିଆଁ ?
କଳା ଦରବକୁ ଦେଖିଲାକ୍ଷଣି ଲୋ
ହୃଦୟରେ ମୋର ଲାଗଇ ଛିଆଁ ।
କଳା ବଉଦରେ ଅଛି ଏତେ ତାତି
ନ ହେଲେ ବଜର ଆସନ୍ତା କାହୁଁ ?
ଦେଖିନାହୁଁ କିଲୋ ବାଦଲ ଘୋଟିଲେ
ବିଜୁଳି ଚମକେ ରହିଆଁ ଉ ରହୁଁ ?
ତୋ ଆଖିକି କଳା ଅଞ୍ଜନ ଶୀତଳ
ମୁଁ ମଣଇ ତାକୁ ଅନଳ ସରି,
ସେହି କଳା ଦେଖି ରାଧିକା ଆମର
ଶୁଖି ହୋଇଲାଣି କୁଟାଟା ପରି ।

ଭଅଁର ଦେଖିଲେ କହେ ଉହୁଃ ଉହୁଃ
କୋଇଲି ଗାଇଲେ କହଇ ବାପ,
ମେଘ ଗରଜିଲେ କାନେ ହାତ ଦିଏ
ଦେହରୁ ତାହାର ବାହାରେ ବାମ୍ଫ ।
ମଝିରେ ମଝିରେ ଚିକୁର ବେଣୀକୁ
ପିଠିପରୁ ଆଣି ଛାତିରେ ଥୁଏ,
ଆଲୁଅ ଦେଖିଲେ ଆଖି ବୁଜିଦିଏ
ବେଣୀଟିକୁ ଚାହିଁ ଟିକଏ ଶୁଏ ।
କଂସ ମରିଅଛି ଭାଙ୍ଗି ଯାଇଅଛି
ମଥୁରା ବଜାର ରଜାର ହାଟ,
ଆଉ ଦହି ବିକି ଯାଉନୁ ଉଦ୍ଧବ
ନାଆ ଲଗୁ ନାହିଁ ଯମୁନା ଘାଟ ।
ମଥୁରା ବାଟରେ କଣ୍ଟା ପଡ଼ିଅଛି
ଯାଉନୁ କୃଷ୍ଣଙ୍କୁ ଦେଖିବୁ କାହୁଁ ?
ନିତି ନିତି ବସି ଝୁରିବେ ବାହୁନି
କେବଳ ମଥୁରା ବାଟକୁ ଚାହୁଁ ।
ଚାରି ଦିନ ପାଇଁ କଂଠ କରି ଗଲ
ଏବେ କେତେ ଯୁଗ ଗଲଣି ବହି,
କହ ହେ ଉଦ୍ଧବ ତୁମକୁ ପେଶିଛି
ଆମ ପାଖକୁ ସେ କଅଣ କହି ?
ଫେରିଯିବ ଯେବେ କହିବ ତାହାକୁ
ଗୋପୀମାନେ ଜଇ ନାହାନ୍ତି କେହି,
ସବୁ ଯାଇଛନ୍ତି ଅବାହୁଡ଼ା ଦେଶେ
ନାରୀହତ୍ୟା ଦୋଷ ତାକୁଇ ଦେଇ ।
ରାଧାକୁ ଯେ ଏତେ ସ୍ନେହ କରୁଥିଲ
ସେ କ'ଣ ମନରେ ପଡ଼ଇ ନାହିଁ,
ଆହା ସେ ଦୁଃଖିନୀ କଳଙ୍କ ପସରା
ମୁଣ୍ଡରେ ଲଦିଲା କାହାର ପାଇଁ ?

ସଜ ସରସିଜ          କଅଁଳ ପତର
    ଶୀତଳ ଚନ୍ଦନ ପୋଡ଼ୁଛି ତାକୁ,
ଶ୍ୟାମଳ ତମାଳ          ଯେତେ ଶ୍ୟାମଳଙ୍କ
    ଧରୁଛି କୁଣ୍ଢାଇ ଦେଖୁଛି ଯାକୁ ।
ଚନ୍ଦ୍ରାବଳୀକି ସେ          ଭଲ ପାଉଥିଲା
    କ୍ଷୀଣ ହେଲଣି ସେ ଗୃନ୍ଦଟି ସମ,
କୃଷ୍ଣ ନ ଆସିଲେ          ଦିନେ ଦୁଇ ଦିନେ
    କୃଷ୍ଣ ବଦଳରେ ଉଦ୍ଧବ ଯମ ।
ଲଳିତାର ଠେକ          ରଙ୍ଗରସ ପାଇଁ
    ହସ କଉତୁକ ଟିକିଏ ନାହିଁ,
ହାସ୍ୟ ପରିହାସ          ଗୁଡ଼ୁଗୁଡ଼ୁ ହେଇ
    ବିଷାଦେ ରହିଛି ଗଗନେ ଗୃହିଁ ।
ରାଧା ସଂଗେ ତାର          ଦେଖା ହେଉ ନାହିଁ
    ଯମୁନାକୁ ଆଉ ଯାଉନି ଜମା,
ମଲଣି କି ଜାଇ          ରହିଛି କୋଉଠି
    ଖୋଜାଖୋଜି କଲେ ପଡ଼ୁନି ଜଣା ।
ବିଶାଖା ଏଇନା          ହୀନଶାଖା ହୋଇ
    ଗଡ଼ ପଡ଼ିଲଣି ଭୂଇଁ ଉପରେ,
ଖାଲି ଉହୁଃ ଉହୁଃ          ଆହା ଆହା କରି
    ନୟନୁ ଲୋତକ ଅଜାଡ଼େ ତଳେ ।
ଚିତ୍ରା ଚିତ୍ରଟିଏ          ପରି ଦିଶୁଥିଲା
    ଚିନ୍ତା କରି କରି ଗଲଣି ଶୁଖି,
କି ବିଚିତ୍ର ରୂପ          ହୋଇଛି ତାର ଯେ
    ଚଞ୍ଚଳଚିତ୍ତ ସେ ଚନ୍ଦ୍ରମାମୁଖୀ ।
ବୃନ୍ଦାବନ ବନ          ଯାଉ ନାହିଁ ଜମା
    ଘରକୁ କଲଣି ସେ ଘୋର ବନ,
ହେଇଠି ସେ ବସି          କୃଷ୍ଣ କୃଷ୍ଣ କହି
    ଭିଜାଇ ଦେଉଛି ରଙ୍ଗ ନୟନ ।

ବୃନ୍ଦାବଣି ବୋଲ ଯାହାକୁ କହନ୍ତି
କୃଷ୍ଣ ବିନା ସେ ତ କିଛି ନ ଜାଣି,
କି ରୋଗ ତାହାର ଦେହରେ ପଶିଛି
ସାର ବଇଦ ତା ପାରୁ ନ ଜାଣି ।
ନିତ ନିତ ଆସି ଦେଖି ଯାଉଅଛି
କ୍ଷୁଆଇ ଦେଉନି ପଥ୍ୟପାଚନ,
ରୋଗ ଉଣା ହେବା ଜଣା ତ ଯାଉନି
ଆଉ କେତେ ଦିନେ ଯିବ ଜୀବନ ।
ସରଗ ସୁମନ ସମ ରୂପ ଥିଲା
ଏଇନା ହୋଇଛି ପୋଡ଼ା ଅଙ୍ଗାର,
କୃଷ୍ଣ ଗୁଣ ଗାନ କୃଷ୍ଣ ରୂପ ଧ୍ୟାନ
କାନ୍ଦଣା ହୋଇଛି କେବଳ ସାର ।
କୃଷ୍ଣ ପରଶକୁ ଝୁରି ଝୁରି କରି
ଜଳୁଛି ପୋଡ଼ୁଛି ତାହାର ଦେହ,
ଘଡ଼ି ଘଡ଼ିକରେ ଚମକି ପଡ଼ୁଛି
ଶେଯେ ଶୋଇ ଶୋଇ ଯାଉଛି ମୋହ ।
ଗୋପ ପିଲା ଯେବେ ବଜାନ୍ତି ବଇଁଶୀ
ବାରି ହୋଇପଡ଼େ ନୁହେ କୃଷ୍ଣର,
ତଥାପି ତ ସବୁ ଗୁଆଳଏ ଝିଅଁ
ଘରୁ ବାହାରନ୍ତି ଦଳକୁ ଦଳ ।
ଶୁଣି ଶୁଣି କରି ଦୁଆର ପକାଇ
କାନରେ ଆଙ୍ଗୁଠି ଦିଅନ୍ତି ଝିଅଁ,
ମୁରଲୀ ଶୁଣିଲେ କୃଷ୍ଣର ବିରହ
ହୃଦୟେ ତାଙ୍କର ଜାଳଇ ନିଆଁ ।
ମଧୁ ବସନ୍ତରେ ଧୀର ଧୀର ହୋଇ
ଦକ୍ଷିଣ ବହିଲେ ଚଇତି ବାଆ,
ଉହୁଃ ଆହାଃ କରି ସବୁ ଗୋପୀଯାକ
ଜପନ୍ତି କେବଳ କୃଷ୍ଣର ନାଆଁ ।

ଚଇତ୍ର ସଞ୍ଚାର ସଜପୁଷ୍ପୀ ମଲ୍ଲୀ
ସୁଷମାର ସମ ଯୁବତୀ ହସ,
ଶୁଙ୍ଘି ଶୁଙ୍ଘି ଯାଏ ଲୁଚି ଲୁଚି ଯାଏ
କାହାର ମୁହଁରେ ଦଶନା ରସ ।
ଗିହ୍ମଷମକୁ ସେ ଗିରି ସମ ମଣି
ଦେହରୁ ନଗାଡ଼ ଦଅନ୍ତି ଝାଳ,
କହନ୍ତି ଗ୍ରୀଷମ ଏତିକ ତୋ ଛାନ୍ତି
ଆହୁରି ଅଧିକ କରି ତୁ ଜାଳ ।
ବରଷା ଆସିଲେ ଶୀତଳେ ଧରଣୀ
କନ୍ତୁ ତା ଶରୀର ଭିତର ତାପ,
ଚତାଇ ମାରଇ ଗୋପ କାମିନୀଙ୍କୁ
କହୁଥାନ୍ତି ଖାଲ ମାଆ ଓ ବାପ ।
କାଉଁରୀ କାମାକ୍ଷୀ ଦେଶେ ମେଘ ଘରି
ସେଠି କ ବାଜେନା ଶରଦ ଛାନ୍ତି ?
ବଶୀକରଣରେ କାହିଁକି ବାମାଏ
ମତାଇ ଦଅନ୍ତି ଯୁବକ ଗୁନ୍ତି ?
ଶିଖାଇ ମଣାଇ ଜଡ଼ବୁଟି କରି
ଆୟତ୍ତେ ରଖନ୍ତି ସୁନ୍ଦର ଭେଣ୍ଡା,
ନୋହିଲ ବେଳକୁ ଜ୍ଞାନଦା ମାଲୁଣୀ
ପୁରୁଷକୁ କରି ପକାଏ ମେଣ୍ଢା ।
ଶରତ ଗଗନେ ଲୁଚକାଳି ଖେଳେ
ମେଘ ତଳେ ତଳେ ନିର୍ମଳ ଜହ୍ନ,
ଉଡ଼ିଯାଏ ମନେ ଲୁଚିବା ଖୋଜିବା
ସଂଚ ଘଂଚ କୁଞ୍ଜ ମାଧବୀ ବନ ।
ହେମନ୍ତ ଆସିଲେ ହିମ ବାଆ ନେଇ
ଘୋଡ଼େଇ ଘାଡ଼େଇ ନୁହନ୍ତି କେହ୍ନି ।
କୃଷ୍ଣ ବିରହରେ ଗ୍ରୁଡିକ ଚତାଇ
ଗୋପିଏ ହୁଅନ୍ତି ଅନଳଦେହୀ ।

ଶିଶିର ଆସିଲେ     ଥର ଥର କରି
    ଗଗନେ ପବନେ ଭସାଇ ବାରି,
କେହି କାହାକୁ ତ     ବାରି ପାରନ୍ତିନ
    ବରଦେ ଅଥିର ହୁଅନ୍ତି ଘର ।
କହିବ ଉଦ୍ଧବ     ଏହିତକ ତାକୁ
    ବୁଝିବ ସେ ଯେବେ ମରମ ବ୍ୟଥା,
କହିବ ଆତୁର     କୋଉ ଅଭାବରୁ
    ଏଡ଼େ ଭାବ କରି ଖାଇଲି ମଥା ?
କହିବ ଉଦ୍ଧବ     ହାତ ଓଠ ଧରି
    ଦିନଟିଏ ପାଇଁ ଗୋପକୁ ଆସୁ,
ଗୋପ ଗୋପବାଳୀ     ଯମୁନା କଦମ୍ବ
    ଗୋରୁ ଗାଈ ମିଶି ସଭିଏଁ ହସୁ ।
ତା ହସ ଏ ହସ     ମିଳି ମିଶିଯାଉ
    ଗୋପେ ବସିଯାଉ ସୁଖର ହାଟ,
ଗୋପ ଓ ମଥୁରା     ଏକ ହୋଇଯାଉ
    ମଥୁରାକୁ ଗୋପ କେତେ ବା ବାଟ !
ନିତି ନିତି ଯିବୁ     ଦହି ବିକିବାକୁ
    ନିତି ସେ ଆଗୁଳି ଜଗିବ ବାଟ,
ନିତି ନିତି ପ୍ରେମ     କଉଡ଼ିଟି ଦେଇ
    ପାରି ହେଉଥିବୁଁ ଯମୁନା ଘାଟ ।
ଯମୁନା ଜଳରୁ     ନେଳୀ ଗୁଡ଼ଗଲା
    ପୀତବସନରୁ ଉଡ଼ିଲା ରଙ୍ଗ,
କହିବଟି ତାକୁ     ଆଉ କିଏ ଦେଇ
    ଧୋଡ଼ାଇ ରଖିବ ତା ଶ୍ୟାମ ଅଙ୍ଗ ?
ମୟୂର ଚନ୍ଦ୍ରିକା     ଉଇ ଚରିଗଲା
    ରଙ୍ଗ ଗୁଞ୍ଜିଫଳ ଖାଇଲା ମାଟି,
ବାଉଁଶ କଣିରେ     ତିଆରି ବଂଶୀଟି
    ଖରା କାକରରେ ଗଲାଣି ଫାଟି !"

ଶୁଣି ଶୁଣି କଥ  ଉଦ୍ଧବ ଆଖିରୁ
ବହିଲା ଆନନ୍ଦ ଅଶ୍ରୁ ପ୍ରବାହ ।
ଭାବିଲା ଗୋପିଏ  କେତେ ଭାଗ୍ୟବନ୍ତି
କୃଷ୍ଣଠାରେ ସତେ କେଡ଼େ ଆଗ୍ରହ !
କୋଉ ମୂଲ ଦେଇ  କିଣିଲେ କୃଷ୍ଣଙ୍କୁ
କୃଷ୍ଣ ହୋଇଗଲେ ସ୍ନେହରେ କଣା,
କୃଷ୍ଣ ଗୋପୀ ପ୍ରେମ  କ୍ଷୀର ନୀର ସମ
କେହି ରହିବନି କାହାର ବିନା ।
କୃଷ୍ଣ ମଥୁରାରେ  ଗୋପିଏ ଗୋପରେ
ମଝିରେ ତ କାହିଁ ଦେଖୁନି ଫାଙ୍କ,
ବାଟ ବ୍ୟବଧାନ  ଆଖିକି କେବଳ
ମନ-ନୟନରେ ସବୁ ତ ଏକ ।
କିଏ ସେ କହିବ  ଅକ୍ରୂର ନେଇଛି
କୃଷ୍ଣ ତ ଏଇଠି ଅଛନ୍ତି ରମି,
ବ୍ରହ୍ମା ଶିବ ଯୋଗୀ  ଋଷିଏ କାହିଁକି
ବୃଥାରେ ଖୋଜନ୍ତି ଅନ୍ୟଠି ଭ୍ରମି ?
ଏମାନଙ୍କ ପାଇଁ  ବୈକୁଣ୍ଠ ସିଆଡ଼େ
ଶିଖି ହରାଇଣ ପଡ଼ିଛି ଖାଲି,
କିଏ କହୁଅଛି  ଗୋପକୁ ବରଜି
ମଥୁରାକୁ କୃଷ୍ଣ ଗଲେଣି ଚାଲି ।
ଗୋପୀଙ୍କର ମନ  ନିତ୍ୟ ବଇକୁଣ୍ଠ
ଏଇଠି ତ କୃଷ୍ଣ କରନ୍ତି କେଳି ।
ଏଇଠି ତ କୃଷ୍ଣ  ଗୋପୀଙ୍କ ହୃଦରେ
ନାଚନ୍ତି ଗାଆନ୍ତି ବୁଲନ୍ତି ଖେଳି ।
ଗୋପୀଙ୍କୁ ଏଥର  କହିଲେ ଉଦ୍ଧବ
"କାହିଁକି ବିକଳ ହେଉଛ ମାଆ ?
କୃଷ୍ଣ ତ କେବଳ  ନୁହନ୍ତି ତୁମର
ସେ ପରା ଜଗତଯାକର ନାହା ।

ତୁମେମାନେ ସବୁ ବଡ଼ ଭାଗ୍ୟବନ୍ତ
କୃଷ୍ଣଙ୍କୁ ତୁମର ଅଚଳା ଭକ୍ତି,
କୃଷ୍ଣ ତୁମ ପ୍ରାଣ କୃଷ୍ଣ ତୁମ ଧ୍ୟାନ
କୃଷ୍ଣ ତୁମ ଗତି କୃଷ୍ଣ ମୁକତି ।
ଯହିଁ ତହିଁ କୃଷ୍ଣ ଥାଆନ୍ତୁ ପଛକେ
ତୁମ ମନରୁ ତ ନାହାନ୍ତି ହଜି,
ଆଉ କୋଉଠେଇ ଖୋଜୁଛ କାହିଁକି
ଯେତେବେଳେ ଯେତେ ସେଠେ ଅଛ ତ ଭଜି ।
ହାତୀ ବନସ୍ତରେ ଥିଲେ ରଜାଙ୍କର
କୃଷ୍ଣ ତ ସେପରି ତୁମର ଜଣା,
କୃଷ୍ଣ କ'ଣ କାହିଁ ଦଣ୍ଡେ ରହିବେ ଗୋ
ଗୋପ କାମିନୀଙ୍କ ପ୍ରଣୟ ବିନା ।,
ତୁମ କଥା ଭଲ ସେ ବ ସେହିପରି
ତୁମକୁ ମଣନ୍ତି ଅତି ପାଖରେ,
ତଥାପି ତ ବାରେ ବାରେ କହୁଛନ୍ତି
ତୁମ ବିନା ସେଠି ଛନ୍ତି ଦୁଃଖରେ ।
ଦୁଃଖ ସୁଖ ଦୁହେଁ ଚିର ସହଚର
ଅନ୍ଧାର ଆଲୁଅ ପରସ୍ପ ବିନା,
କେହି କାହା ପଛ ଛାଡ଼ି ପାରନ୍ତିନି
କେହି ଦଣେ ନାହିଁ କାହାରି ବିନା ।
ବିରହ ସରହ ସେହିପରି ସବୁ
ବିରହ ବିନା କି ମିଳନ ସୁଖ,
ମିଳଇ କୋଉଠି ସଂସାର ଭିତରେ
ମିଳନ କି କେବେ ବାଧନା ଦୁଃଖ ?
ଭାବ ଦେଖ ଥରେ ଅତି ପରଚସ୍ତେ
ଯୌରବ କପରି ହୁଅଇ ନଷ୍ଟ,
ମିଳନ ଟେପରେ ଅତି ବେଶୀ ହେଲେ
କେବେ କେତେବେଳେ ହୁଅଇ କଷ୍ଟ ।

ଅଗ୍ରେବେ ମଧୁର ପ୍ରଚୁରେ ଗରଳ
କେତେ କଥା ଅବା ହେଉଛି ଭବେ,
ବରହ ବରହ ଘୋଷି ଘୋଷି କିଆଁ
ଗୁଡ ଫଟାଉଛ କରୁଣ ରବେ ?
ବରହର ପରେ ମିଳନ ଆସିବ
ଭୁଞ୍ଜିବ ଜପର ଲଗିବ ମିଠା,
ବହୁତ ଚପୁଡ଼ ଲେମ୍ବୁକୁ ଖାଇଲେ
ହୋଇଯାଏ ପର ନିପଟ ପିତା ।
ଦେଖିବ ସେ ମୁଖ ପାଶୋରବ ଦୁଃଖ
ଶ୍ରୀକୃଷ୍ଣ ଫେରବେ ଅଳପ ରହ,
ତୁମେମାନେ ସବୁ ଝୁରୁଥିବ ବୋଲ
ବୁଝାଇ ସୁଝାଇ ଅଛନ୍ତି କହ ।
କଏ ତୁମଠାରୁ ବେଶୀ ଭାଗ୍ୟବଣ୍ଟ
କୃଷ୍ଣଙ୍କର ଚିନ୍ତା ଯାହାଙ୍କ ପାଇଁ,
ଗୋପୀ ଗୋପୀ ବୋଲ ଦିବସ ଶର୍ବରୀ
ତୁମମାନଙ୍କୁ ସେ ଥାଆନ୍ତି ଗାହିଁ ।
ମଥୁରାରେ କେତେ ନାହାନ୍ତି ଯାଦବୀ
ଅଧିକ ସୁନ୍ଦରୀ ଯୁବତୀ ନାରୀ,
ଆଜ଼ ଆଖିରେ ତ ବୃନ୍ଦାବନ କୃଷ୍ଣ
ଯେଣୁ ତୁମ ମନ ନାହିଁ କାହାର ।
ଯାହା ମନ ଯାକୁ ରସି ଯାଇଥାଏ
ରୁଚଇ ତାହାକୁ କଖାରୁଫୁଲ,
କମଳ କହ୍ଲାର ଛୁଇ କରହାଏ
ଭାବଇ କ କେବେ କଲା ସେ ଭଲ !
ସଂସାରର ସୁଖ ସନ୍ତୋଷ ପାଇଁକ
ଅବତୀର୍ଣ୍ଣ ହୋଇଅଛନ୍ତି ଭବେ,
ପାପ ସଂହାରବେ ଧର୍ମ ପ୍ରଚାରବେ
ଦୁଃଖ ରଖିବେନ ସଂସାରେ ଲବେ ।

ମୁରଲୀ ବରଜ ଧରିଲେଣି ଶଙ୍ଖ
ଧରିବେ ଚକର ମାରିବେ ପାପୀ,
ବରଦେ ସରଦେ କୃଷ୍ଣଙ୍କୁ ଭକ୍ତରେ
ମରମ ଭିତରେ ରଖିଥା ଥାପି ।
ଯାଉଛୁ ମୁଁ ଏବେ ମଥୁରା ବାହୁଡ଼ି
କଅଣ କହିବ କହିବ ତାଙ୍କୁ,
କହିବ କି ଖାଲି ଗୋପିଏ ଝୁରନ୍ତି
ଯାଅ ଶୀଘ୍ର ଫେର ତାଙ୍କ ପାଖକୁ ?”
ଫେରିଲି ମଥୁରା କହିଲି କୃଷ୍ଣଙ୍କୁ
ଗୋପପୁର ହାଲଚାଲ ସକଳ,
ଶୁଣି ଶୁଣି କୃଷ୍ଣ ଟିକିଏ ହସିଲେ
ମନ କଣ ହେଲା ନାହିଁ ବିକଳ ?.
କାହା ଦୁଃଖ ସୁଖେ ବନ୍ଧା ସେ ନୁହନ୍ତି
ବାନ୍ଧନ୍ତି ସଭିଙ୍କୁ ତାଙ୍କରି ପାଶେ,
ସଂସାରଟାଯାକ ଅନାଇଁ ବସିଛି
କେବଳ ତାଙ୍କରି ଚରଣ ଆଶେ ।
ଲେଖକର ଭାଗ୍ୟ ବଡ଼ ବିପରୀତ
କୃଷ୍ଣଙ୍କ ପାଖରେ ଗୁହାରି କରି,
ଥକି ପଡ଼ିଲଣି ଜୀବନଟାଯାକ
ଶ୍ରୀକୃଷ୍ଣ ଦର୍ଶନେ କରିନି ପାରି ।
ଜୀବନ କାଳ ତ ଶେଷ ହୋଇଲାଣି
ତାଙ୍କ ଚରଣରେ ଏତିକି ଭିକ୍ଷା,
ପର ଜନମଟା ସତ ହୋଇଥିଲେ
ସରଗେ ପାଖରେ ଦେବେ ସେ ଦେଖା ।

---

# ମଥୁରା ଲୀଳା

କୁଜାଟିକୁ କୃଷ୍ଣ ସଲଖ ସୁନ୍ଦରୀ
କରିଥିଲେ ଯେବେ ମଥୁରା ହାଟେ,
ମଦନ କୋଡ଼ଠି ଲୁଚି ବସିଥିଲା
ବାନ୍ଧିଥିଲା ଫୁଲ ଧନୁରୁ କାଣ୍ଡେ ।
ଲାଜ ସରମରେ ମୁହଁ ପୋତି କୁଜୀ
ଧରି ପକାଇଲା କୃଷ୍ଣଙ୍କ ହାତ,
ମାରବେ ପୁଚ୍ଛିଲା, "ହେ ଦିବ୍ୟ ପୁରୁଷ
ହେବ କି ଥରେ ମୋ ପରାଣକାନ୍ତ ?
ଜୀବନ ଯୌବନ ଯାହା ଅଛି ମୋର
ଦେଉଛି ମୁଁ ସଂପି ଚରଣତଳେ,
ପାଇଛି ତୁମକୁ ବିନା ତପସ୍ୟାରେ
କେଉଁ ଜନମର କରମ ଫଳେ ।
ଡାକି ତ ନ ଥିଲି ହେତନ ମୁଁ ତୁମକୁ
ବଳେ ଆସି ଯେବେ ଦେଲଣି ଧରା,
ପେଲି ଦିଅ ନାହିଁ ଚରଣୁ ଦୂରକୁ
ଜୀବନେ ମରଣେ ଦାସୀ ମୁଁ ତବ ।
ତୁମେ ପତି ମୋର ପରାଣ ଈଶ୍ୱର
ପରାଣେ ପରାଣ ମିଶାଇ ଦିଅ,
ତୁମ ପ୍ରେମ-ସ୍ରୋତେ ମୋ ତୃଷିତ ପ୍ରାଣ
ଚିରଦିନ ପାଇଁ ଭସାଇ ନିଅ ।"

ଆଖି ଠାରି କୃଷ୍ଣ     କହି ଦେଇଥିଲେ
"ସଙ୍ଗେ ହଳଧର ଭାଇଙ୍କୁ ଅନା,
ବେଳ କାଳ ହେଲେ     ଆସିବି ମନକୁ
ପୂରାଇବି ତୋର ମନକାମନା ।
ଭାଙ୍ଗି ନାହିଁ ଧନୁ     ମାରି ନାହିଁ କଂସ
ମାରି ନାହିଁ ତାର ମାଲ ଓ ହାତୀ,
ଜାଣୁ ନାହିଁ କି ତୁ     କଂସର ପ୍ରତାପ
ଯାର ଡରେ ଦେବେ ଥରନ୍ତି ଛାତି ।"
ସେହି ଦିନଠାରୁ     କୁଜୀ ଦିନ ରାତି
କୃଷ୍ଣଙ୍କୁ ଝୁରିଲା ନୀରବେ ବସି,
କୃଷ୍ଣ ପାଇଁ ତାର     ନୟନ ଯୁଗଳୁଁ
ପ୍ରେମ ଅଶ୍ରୁ ଧାର ପଡ଼ନ୍ତି ଖସି ।
କୃଷ୍ଣ ଚିନ୍ତା ଛଡ଼ା     ନାହିଁ ମନେ କିଛି
ଶୟନେ ସପନେ କୃଷ୍ଣ ତା ପତି,
ଶ୍ୟାମସୁନ୍ଦରଙ୍କ     ଚରଣ କମଳେ
ଖଟାଇ ଦେଇଛି ତାହାର ମତି ।
ଉଦ୍ଧବ ଗୋପରୁ     ବାହୁଡ଼ି ଆସିଲା
କୃଷ୍ଣଙ୍କୁ କହିଲା ଶୁଭ ଖବର,
ତାହାର କରକୁ     ଧରି ନିଜ କରେ
ଚାଲିଗଲେ କୃଷ୍ଣ କୁବୁଜା ଘର ।
କୃଷ୍ଣ ଆସିବାକୁ     ଚାହିଁ ବସିଥିଲା
ଘର ଦୁଆରକୁ ସଜାଇ କରି,
ଦେହଳିକୁ ଧରି     ଠିଆ ହୋଇଥିଲା
ସୁନା ଗଡ଼ୁଟିରେ ସଲିଳ ଧରି ।
କୃଷ୍ଣ ପହଞ୍ଚିଲେ     ହସ ହସ ହୋଇ
କୋଟିନିଧି କୁଜୀ ପାଇଲା ସତେ,
ତା ମନ କାମନା     ପୂର୍ଣ୍ଣ ହୋଇବ କି ?
କାହିଁକି ତ ତାର ହେଉନି ପ୍ରତେ !

ସୁନା ପିଢ଼ାଟିଏ ତରତର କରି
ପକାଇ ଦେଲା ସେ ଦୁଆରେ ଆଣି,
ସୁନା ଗଡ଼ୁନ୍ଥିକୁ ଧଇଲା ହାତରେ
ପୂରାଇ ତହିଁରେ ସୁବାସ ପାଣି ।
ପାଦ ଧୋଇଦେଇ ମୋଡ଼ୁପାଛୁ ଦେଲା
ପାଟ ବସନରେ ଯତନ କରି,
ପାଏଡ଼ା ପକାଇ ଘର ଭିତରକୁ
ନେଲା ଯେ ମଣାଇ ଶ୍ରୀକର ଧରି ।
ଘରେ ଜଳୁଅଛି ମାଣିକ୍ୟ ପ୍ରଦୀପ
ରତନ ଖଟରେ ତୂଳୀ ତଳପ,
ଉପରେ ଝୁଲୁଛି ଶୁଭ୍ର ଚନ୍ଦ୍ରାତପ
ପବନରେ ହଲୁଅଛି ଅଳପ ।
ଖଟରେ ବସାଇ ଦେଲା ଶ୍ରୀକୃଷ୍ଣଙ୍କୁ
ତରତରେ ଗଲା ସ୍ନାହାନ କରି,
କୁଙ୍କୁମ ଚନ୍ଦନେ ନିଜେ ରଂଜିହେଲା
ଆସିଲା କସ୍ତୂରୀ ଚନ୍ଦନ ଧରି ।
କର୍ପୂର ମିଶାଇ ବୋଳିଦେଲା ଅଙ୍ଗେ
ରହିଲା ସରମେ ତଳକୁ ଚାହିଁ,
କୃଷ୍ଣ ଆଲିଙ୍ଗନ କଲେ ସୁନ୍ଦରୀକୁ
ବକ୍ଷେ ଆଉଜାଇ, କଲିନି ନାହିଁ ।
କାମର କାମନା ହେଲା ଚରିତାର୍ଥ
ଗଣ୍ଡେ ଗଣ୍ଡ ଦିଆଦେଇ ଚୁମ୍ବନ,
ଅଙ୍ଗେ ଅଙ୍କ ଦେଇ ବକ୍ଷେ ବକ୍ଷ ଭିଡ଼ି
ଦୁହେଁ ଦୁହିଁଙ୍କର ହେଲେ ବନ୍ଧନ ।
ପ୍ରଣୟ ଲୁଟିଲା ବନ୍ଧନ ଫିଟିଲା
ମଦନ ବଶିଖ ଥୋଇଲା ତଳେ,
କୁବୁଜା କହିଲା ହାତ ଓଠ ଧରି
ଆଜ ହୁନାକେତେ ରହ ମୋ ଘରେ ।

ପିପାସା ମେଣ୍ଟିନ ଆଶା ନାହିଁ ମର
　　ଦେହରେ ଦେହରେ ରଚନା ଫାଙ୍କ,
ଶୁଣ କାନ ଡେରି ଅନଙ୍ଗ କେଉଁଠି
　　ଲୁଚି ଭୁମ ଭୁମ ଦେଉଛି ଡାକ ।
ହର ନେହାନଳେ ଜଳଥିଲା ଯିଏ
　　ଏଇନା ଜଳଉଛି ତୁମକୁ ପାଇ,
ତା ତୂଣୀରୁ ଶର ହରି ଯାଇ ନାହିଁ
　　ବାନ୍ଧିଦେବ ବୋଲି ବସିଛି ଗୁହାଁ ।"
କୃଷ୍ଣ ସନମତ କରି କିଛି ଦିନ
　　ରହିଲେ ଆନନ୍ଦେ କୁବୁଜା ଘରେ,
କୁଜଁର କାମନା ଖୋଜିଥିଲା ଯାହା
　　ପୂରଣ ହୋଇଲା ଏତେ ଦିନରେ ।
କରମ ଜଂଜାଳ ନୁହଇ ସହଜ
　　କୃଷ୍ଣଙ୍କୁ ହେଲନ ଟିକିଏ ଡର,
କରମ ପାଖରେ ଆଉ ସବୁ ମିଛ
　　ସବୁ ଛାଡ଼ିଛୁଡ଼ି କରମ କର ।
କୃଷ୍ଣଙ୍କ ଜୀବନୀ ଖାଲି ଶିକ୍ଷାମୟ
　　କରମେ କରମେ ଦିଅଇ ଶିକ୍ଷା,
କୃଷ୍ଣ ପାଇବାକୁ ମନେ ମନାସିଲେ
　　ପହିଲରୁ ନିଅ କରମ ଦୀକ୍ଷା ।
କରମ କରିଲେ ଧରମ ହୁଅଇ
　　ଏ କଥାଟି କେବେ ନୁହଇ ମିଛ,
ମର ଜଗତରେ ଧରମ କରମ
　　ସରଗ ନିଶ୍ରେଣୀ ମୁକ୍ତି ପାବଚ୍ଛ ।
କୃଷ୍ଣ ସେଥିପାଇଁ କରି ଯାଇଛନ୍ତି
　　କରମଯୋଗର ନିତ୍ୟ ପ୍ରଚାର,
କରମ ସଙ୍ଗରେ ତୁଳନା କରିଦେଲେ
　　ଆଉ ସବୁ କଥା ତୁଚ୍ଛା ଅସାର ।

ଏହି ମଣିଷ ତ  କରମ ସଂପାଦି
ହୋଇ ଯାଉଅଛୁ ମହାମାନବ,
ସେହି ନର ପୁଣି  କରମକୁ ହୁଡ଼ି
ପାଲଟି ଯାଉଛୁ ଦୁଷ୍ଟ ଦାନବ ।
ମାନବ ଦାନବ  ମଧ୍ୟେ ବ୍ୟବଧାନ
ଦେଖାଇ ଦେଉଛୁ ସଦା ବିବେକ,
ଜାଣିଶୁଣି କରି  କରମ ନ କରି
ମୋଡ଼ ଦିଅ ନାହିଁ ବିବେକ ବେକ ।
ଶ୍ରୀକୃଷ୍ଣ ମାନବ  ନୁହନ୍ତି କଦାପି
ଭଗବାନଙ୍କର ସେ ଅବତାର,
ମାନବ ରୂପରେ  ମରତ ଭୁବନେ
କରିଥିଲେ ମାନବର ଆଗ୍ରହ ।
ଶ୍ରୀକୃଷ୍ଣଙ୍କୁ ଯିଏ  ମାନବ କହିବ
ଅଂଗେ ଅଂଗେ ତାର ପଶିବ ପାପ,
କାଲକାଲକୁ ତ  ହେବନି ମୁକତି
ଜୀବନେ ଭୋଗିବ ଅଶେଷ ତାପ ।
ରେ ମୂଢ଼ ମାନବ  ଭ୍ରମି ଯାଅ ନାହିଁ
ଶ୍ରୀକୃଷ୍ଣ କେବଳ ସାର ଦେବତା,
ଶ୍ରୀକୃଷ୍ଣଙ୍କୁ ଭଜ  ଶ୍ରୀକୃଷ୍ଣଙ୍କୁ ପୂଜ
ସେହି ତ ବିଧାତା ସେହି କରତା ।
କୃଷ୍ଣଙ୍କ ମନରେ  କି ଚିନ୍ତା ପଶିଲା
ମୁହଁଟି ତ କିଆଁ ହେଲା କୁଞ୍ଚିତ !
କିଏ କି କୋଉଠି  ଡାକିଲା ମାରିବେ
କିଏ ବା କୋଉଠି ହେଲା ଦୁଃଖିତ ।
କାହାର କରୁଣ  କ୍ରନ୍ଦନ ଶବଦ
ବାଜିଲା କି ଆଉ ତାଙ୍କର କାନେ,
ହସି ହସି କରି  ଚାଲି ଯାଉ ଯାଉ
କାହିଁକି ରହିଲେ ବିଷଣ୍ଣ ମନେ ?

ଡାକଲା କ ଆଉ କୁନ୍ତୀ ବିକଳରେ
ହସ୍ତିନାରେ ଚେତେଣ ପୁଅଙ୍କ ପାଇଁ ?
ସଭାରେ ସେ କ'ଣ ପଡ଼ିଛୁ ବିପଦେ
ଧୃତରାଷ୍ଟ୍ର କ'ଣ ତା ଜାଣୁ ନାହିଁ ?
ଭକତର ମନ ଜାଣନ୍ତି ସେ ପରା
ଭକତର ଲାଗି ସଦା ବିକଳ,
ଭକ୍ତର ଦୁଃଖ ତ ସହି ପାରନ୍ତିନ
ଭକ୍ତ ପାଇଁ ନେତ୍ରୁ ଢାଳନ୍ତି ଜଳ ।
ଅନ୍ତରଯାମୀ ସେ ଜାଣନ୍ତି ଅନ୍ତର
ବୁଝନ୍ତି ସବୁରି ମରମ କଥା,
ଭକ୍ତର ଚିନ୍ତାରେ ହୁଅନ୍ତି ଚିନ୍ତିତ
ଭକତର ପାଇଁ ବୁଲନ୍ତି ମଥା ।
କରୁଣାର ସେ ତ ଅନନ୍ତ ସାଗର
ଯେତେ ଦେଉଥିଲେ ସରଇ ନାହିଁ,
କାରୁଣ୍ୟ ଶୁଣିଲେ ସହି ପାରନ୍ତିନ
କରୁଣା ଦେବାକୁ ଆସନ୍ତି ଧାଇଁ ।
ବିପଦର ବନ୍ଧୁ ସମ୍ପଦର ସଖା
ମିତ୍ର ଓ ଅମିତ୍ର ବିଗ୍ରହ କର,
ଯେତେବେଳେ ଯୋଉ କଥା ଲୋଡ଼ା ହୁଏ
ସାଧନ୍ତି ସମସ୍ତ ଅସ୍ତ୍ରକୁ ଧର ।
ଚକ୍ରରେ ସଂହାର ଗଦାରେ ପ୍ରହାର
ଶଙ୍ଖରେ ପ୍ରକୃତି ପାଳନ୍ତି ମିତ୍ର,
ମୁଖକମଳରେ ବାଣ୍ଟି ଦେଇ ସୁଧା
ସରଗ କରନ୍ତି ମାଟିର କ୍ଷେତ୍ର ।
ସମର କ୍ଷେତ୍ରରେ ସାରଥି ହୁଅନ୍ତି
ନିଜେ ଯେତେବେଳେ ସମର୍ଥ ରଥୀ,
ଶିଖାଇ ମଣାଇ କରମ କରାଇ
ଅଧର୍ମ ସଂହାର ଧର୍ମ ପାଳନ୍ତି ।

କାହିଁ ବହୁ ଦୂରେ ଅଛନ୍ତି ଡାକଲେ
ଜାଣନ୍ତି ନିମିଷେ ଶ୍ରୀକୃଷ୍ଣ ତାହା,
ସେହିନାଏଁ ଆସି ହାଜର ହୁଅନ୍ତି
ଆପଦେ ବିପଦେ ହୁଅନ୍ତି ସାହା ।
କେତେ ତାର ଯନ୍ତ୍ରଟି ରଖିଥାନ୍ତି କି ସେ
ସେ ଯନ୍ତ୍ରଟି କି'ଣ ଚକ୍ରମାୟୁଧ ?
ସେକଥା କେବଳ ତାହାଙ୍କୁ ହିଁ ଜଣା
କାଳେ କାଳେ ଜାଣି ନାହାନ୍ତି ବୁଦ୍ଧ ।
କୋଉ ଯନ୍ତ୍ରର ବା ଲୋଡ଼ା ତାହାଙ୍କର
ସେହି ତ ସବୁରି ତନ୍ତ୍ର ଓ ଯନ୍ତ୍ର,
ତାଙ୍କୁ ହିଁ ଜାଣିବା ପାଇଁ କି ମାନବ
ଜପୁଥାଏ ବସି ସହସ୍ର ମନ୍ତ୍ର ।
ଏହି ମନ୍ତ୍ରଗଣି ମାନବର ବେଦ
ବେଦପଣ୍ଡିତ ତାଙ୍କୁ ଜାଣନ୍ତି ନାହିଁ,
ମଶାଣିରେ ଶିବ ତପ କରୁଥାନ୍ତି
ଶ୍ରୀକୃଷ୍ଣଙ୍କ ତତ୍ତ୍ୱ ବୁଝିବା ପାଇଁ ।
କିନ୍ତୁ ସେ ସବୁରି ବାହାରେ ଥାଆନ୍ତି
ମନ୍ତ୍ର ତନ୍ତ୍ର ତାଙ୍କୁ ଛୁଇଁ ନା କିଛି,
ଧରମ ପାଟରେ ସବୁବେଳେ ରହି
ପାପକୁ ଦେଖିଲେ କରନ୍ତି ଛିଛି ।
ଚାଲିଗଲେ କୃଷ୍ଣ ଅକ୍ରୂର ମନ୍ଦିରେ
ସଙ୍ଗେ ହଳଧର ଆଉ ଉଦ୍ଧବ,
କହିଲେ ପାଖକୁ ଅକ୍ରୂରଙ୍କୁ ଡାକି
"ତୁମେ କାଲି ପ୍ରାତେ ହସ୍ତୀନା ଯିବ ।
ତୁମେ ମୋର ଜ୍ୟେଷ୍ଠ ପରମ ବିଶ୍ୱାସୀ
କରିବ ଏତିକି କାମ ମୋ ପାଇଁ,
କୁନ୍ତୀ ତାର ପୁଏ ରାଜଉଆସରେ
ଅଛନ୍ତି କିପରି ବୁଝ ତା ଯାଇଁ ।

ପଣ୍ଡୁ ଅକାଳରେ ମଲେ ଅରଣ୍ୟରେ
ପୁଅ ଭାରଯାଙ୍କୁ ଅରକ୍ଷ କରି,
କୁନ୍ତୀ ସବୁବେଳେ ଡାକଇ ବକଳେ
ସଙ୍କଟରୁ ରଖ ମୋତେ ଶ୍ରୀହରି ।
ପାଞ୍ଚ ପୁଅ ସହ ଚଳିଲ ଜନନୀ
ହସ୍ତୀନା ନଗର ରାଜଭବନେ,
ସୁଖ ଲାଗୁ ନାହିଁ କଷ୍ଟ ତାକୁ ସେଠି
ସବୁବେଳେ ପଡ ପଡ଼ିଲେ ମନେ ।
ଦିନେ କଉତୁକେ କୌରବ ପାଣ୍ଡବେ
ଖେଳିଲେ ଗେଲରେ ବାଗୁଡ଼ି ଖେଳ,
ହାରିଲେ କୌରବ ଜିଣିଲେ ପାଣ୍ଡବ
ସବୁଟୁ ବଳିଲ ଭୀମର ବଳ ।
ପବନର ପୁଅ ବଡ଼ ବଳୁଆ ସେ
ଶତହେଁ ଡରେ ତାର ବଳକୁ,
ଅନ୍ଧୁଡ଼ିଶାଳରେ ଗୋଡ଼ କଚାଡ଼ିଲା
ଟିଣ ପଶିଗଲା ରସାତଳକୁ ।
ସେତ୍ତେ ପରାକ୍ରମ କୌରବ ସହିବେ ?
ଭୀମ ପାଖରେ ତ ସେମାନେ ତୃଣ,
ପାଞ୍ଚ ଭାଇଯାକ କେହି ଊଣା ନୁହେଁ
କିଏ ବାଖାଣିବ ତାଙ୍କର ଗୁଣ ?
ପାଠ ପଢ଼ିବାରେ ଅସ୍ତ୍ର ଧରିବାରେ
କୌରବ ନୁହନ୍ତି ପାଣ୍ଡବ ସରି,
ଅର୍ଜୁନର ଧନୁ ପାବନର ଗଦା
କେହି ପାରିବନି କେବେହେଁ ଧରି ।
ଦୁର୍ଯ୍ୟୋଧନ ଦେଖି ଜଳିଲ ହିଂସାରେ
ଭୀମଙ୍କୁ କପରି କରିବ ନାଶ,
ଶୟନେ ସପନେ ଏହି ଚିନ୍ତା ଖାଲି
ଦିନଟାକୁ ମଣେ ଗୋଟାଏ ମାସ ।

ମାତୁଳ, ଭାଇଙ୍କୁ      ନେଇ ବିଚାରିଲା
ସ୍ଥିର କଲେ ସବୁ ବିଷ ନିଆଁ,
ଅଚେତନ କରି      ଜାହ୍ନବୀ ଗର୍ଭରେ
ହାତଗୋଡ଼ ବାନ୍ଧି ଦେବେ ଶୁଆଇ ।
କଲେ ବି ସେଇତା,      ଭୀମ ମଲା ନାହିଁ
ଆଠ ଦିନ ପରେ ଆସିଲା ଫେରି,
ଏହି ଆଠ ଦିନେ      କୁନ୍ତୀ ଲକ୍ଷେ ଥର
ମୋତେ ଡାକ କରିଲଣି ଗୁହାରି ।
ଆଜି କୋଉ ଦଶା      ପଡ଼ିଛି କି ତାର
ତେଣୁ ସେ ଡାକୁଛି ବିକଳ ହୋଇ,
ଯୋଉଥିପାଇଁ କି      ପାଞ୍ଚ ପୁଅ ନେଇ
ପାରୁ ନାହିଁ ଖାଇ ପାରୁନି ଶୋଇ ?
ଦିନାକେତେ ସେଠି      ରହି ପଚାରିବ
ଭଲ ମନ୍ଦ ସବୁ ଗାଙ୍ଗେୟ ଦ୍ରୋଣେ,
ବିଦୁରଙ୍କୁ ଡାକି      କୁନ୍ତୀର ମୁହଁରୁ
ବୁଝି ସବୁ କଥା ଅତି ଗୋପନେ ।
ଦେଖିବ ପାଣ୍ଡବ      ଅଛନ୍ତି କିପରି
ହସ କଉତୁକ ଅଛି କି ନାହିଁ,
କୁନ୍ତୀ କେଉଁପରି      ଅଛି ଉଆସରେ
ମୋତେ ସେ ଡାକୁଛି କଅଣ ପାଇଁ ?
ଅନ୍ଧ ଧୃତରାଷ୍ଟ୍ର      ପୁଅ ପୁତୁରାଙ୍କୁ
ପାତର ଅନ୍ତର କରେ କି ନାହିଁ,
ଶହେ ପାଞ୍ଚ ଭାଇ      ମିଳି ମିଶିକରି
ହସି ଖେଳୁଛନ୍ତି ସମାନ ଖାଇ ।
ଧୃତରାଷ୍ଟ୍ର ପାଶେ      ଯାଇ ଜଣାଇବ
ଆମ ଏଠିକାର ସବୁ ଖବର,
ତାଙ୍କୁ ପଚାରିବ      ସବୁ ଦୁଃଖ ସୁଖ
ପୁଅମାନଙ୍କର ସୁସମାଚାର ।

କୁନ୍ତୀକୁ କହିବ ବୁଝାଇ ସୁଝାଇ
ପୁଅଙ୍କ ପାଇଁ ସେ ଭାବିବ ନାହିଁ,
ତାଙ୍କ ଭଲ ମନ୍ଦ ବୁଝିବା ପାଇଁକି
ଦେବତା ସରଗେ ଅଛନ୍ତି ଯହିଁ ।
କେତେଟା ବରଷ ମୁହଁମାଡ଼ି କରି
ସହି ରହିଥାଉ ରାଜଭବନେ,
ପୁଅମାନେ ତାର ସୁଖରେ ରହିବେ
ଅରଜିବେ ବହୁ ଯଶ ଜୀବନେ ।
ସବୁ ଦୁଃଖ ତାର ବହି ଚାଲିଯିବ
ପାଣି ସୁଅ ପରି କାଳକ କାଳ,
ପୁଅଙ୍କ ପାଇଁକି ଆଉ ନ କାନ୍ଦିବନି
ପୁଅ କଥା ଆଉ ହେବନି ଭଲ ।
ଯାଅ ତୁମେ ଘରେ ସବୁ ଦେଖି ଶୁଣି
ବୁଝାଇ ମଣାଇ କହିବ ତାଙ୍କୁ,
କି ଚିନ୍ତା ବା ତାର କିଏ ବା ମାରିବ
କୃଷ୍ଣ ଥାଉଁ ଥାଉଁ ତାର ପୁଅଙ୍କୁ ?"
ମହାଭାରତର ସମର ସଂକେତ
ପାଇଲେ କି କୃଷ୍ଣ ଆଗରୁ ସତେ,
ତେଣୁ କି ଆଜହୁଁ ପଚ୍ଛର ଉତ୍ତର
ଭଲ ମନ୍ଦ ସବୁ ବୁଝନ୍ତି ଏତେ ?
ଧୀରେ ଗଗନରେ ଥିର ପଦ ଚାଲି
ରଜନୀ ଆସିଲା ଧରଣୀ ବ୍ୟାପି,
ଶାନ୍ତ ଶୟନରେ ସପନ ପଶିଲା
ଅଚେତନ ମନେ ଚେତା ପ୍ରକାଶି ।
ଘନ ବଣୀଥର ସାଇଁ ସାଇଁ ସ୍ୱର
ବଣାଚର ଖାଲି ଶୁଣିଲେ ତ୍ୟାଇଁ,
ହିଂସାକର କର ସଙ୍ଗେ ବନଚର
ଶୋଇଲେ ନିଘୋଡ଼ ନିଦକେ ଯାଇଁ ।

ଧରଣୀ ଧଉଳ ସୁନ୍ଦର କିରଣ
ରୂପାଜରି ଶେଯ ଦେଲା ଶେଯାଇ,
ନୀଳ ଦରପଣ ଜଳ ଆସ୍ତରଣେ
କୁମୁଦ କହ୍ଲାର ଦେଲା ହସାଇ ।
ନିଶୀଗନ୍ଧା ଯେତେ ସୁଷମ ସୁମନ
ଫୁଟିଲେ ବାସିଲେ ପବନେ ଖେଳି,
ଭଅଁର ତ ନାହିଁ କିଏ ନିଶୀଥରେ
ସେମାନଙ୍କ ସଙ୍ଗେ କରଇ କେଳି ?
ସମୀର ସଙ୍ଗରେ .ରଙ୍ଗ କ ତାଙ୍କର
ସେଗୁଡ଼ିକ କ'ଣ ସବୁ ଅଂଜନା,
କିବା କୁନ୍ତିଭୋଜ ରାଜନନ୍ଦିନୀ ସେ
ପାଣ୍ଡବ ଜନନୀ ପଣ୍ଡୁ ଅଙ୍ଗନା ?
ଗଗନ କବାଟେ ଶୁଭ୍ର ତାରାବଳୀ
ଜଳିଲେ ଉଜ୍ଜ୍ୱଳେ ଖେଳିଲେ ଦୋଳି,
ଦିଗଦିଗନ୍ତରେ ଧରଣୀ ବକ୍ଷରେ
କ୍ଷୀଣ ଜ୍ୟୋତିରାଶି ଦେଲେ କ ବୋଳି ?
ଛାୟାପଥେ ଆସି ଅସଂଖ୍ୟ ସିପାଳି
କାହା ଆବାହନୀ କରୁଛନ୍ତି ବ୍ରତ,
ସରଗ ସରଣୀ ଗଢ଼ି ଦେଉଛନ୍ତି କ
ଦୂରରୁ ଦିଶୁଛି ସରଗ ଭିତ !
ଦ୍ୟୁଲୋକ ଭୂଲୋକ ମିଶାଇ ଦେଉଛି
ଚନ୍ଦ୍ର ତାରଙ୍କର ମୟୂଖ ରେଖା,
ମଝିରେ ମଝିରେ ଧଳା କଳା କେତେ
ଖଣ୍ଡ ଖଣ୍ଡ ମେଘ ଦେଉଛି ଦେଖା ।
ଅକ୍ରୂର ମନରେ କୃଷ୍ଣଙ୍କ ଆଦେଶ
ଜଳୁଛି ଲିଭୁଛି ଖଦ୍ୟୋତ ପରି,
ଶୋଉଛି ଉଠୁଛି ଗବାକ୍ଷେ ଚାହୁଁଛି
ପାହିଲା କ ନାହିଁ ଲମ୍ବା ଶର୍ବରୀ ।

ସିନ୍ଧୁର ଫାଟିଲା କୁକୁଡ଼ା ଡାକିଲା—
"ଉଠ ଚକ୍ରଧର ମୋତେ ହେ ରଖ,
ଚଢ଼େଇ ଜୀବନ- ଥାଏ ଦେଇକରି
କାହିଁକି ଏପରି କଲ ଅରକ୍ଷ ?"
କାଉ ଗଉ ଗଉ ଗାବଲେ ଗଛରେ
"ଉଠ ବନମାଳୀ ଖବର ଶୁଣ,
ହସ୍ତୀନାରେ ତେଣେ ତୁମରି ପିଉସୀ
ଡାକୁଛି ବାହୁନ ତୁମରି ଗୁଣ ।
ପୁଅଙ୍କୁ ତାହାର ପଡ଼ୁଛି ପ୍ରମାଦ
ଦୁର୍ଯ୍ୟୋଧନ ସହି ପାରୁନ ଲବେ,
ଉପାସ୍ୟ କରୁଛି ମାଣଦେବ ବୋଲି
ରଖିବ ନାହିଁ କି ତାଙ୍କୁ ଏ ଭବେ !
ଅକ୍ରୂର ଉଠିଲା କଳପ ତଆଗି
ରଥଟିଏ ଆଣି ଥୋଇଲା କାଢ଼ି,
ସକାଳୁ ସକାଳୁ ନିତ୍ୟକର୍ମ ସାରି
ହସ୍ତୀନାପୁରକୁ ଯିବ ବାହାରି ।
କଳା ଧଳା ନାଲି ସାତଗୋଟି ଘୋଡ଼ା
ସାତଟି ରଙ୍ଗର ଯୋଚିଲା ଆଣି,
ସୂର୍ଯ୍ୟଙ୍କ ଘୋଡ଼ା କି ? ଦଉଡ଼ିଲେ ବେଗେ
ପବନ ବେଗରେ ତା ମନ ଜାଣି ।
ନିମିଷେ ଲଗିଲା ନାହିଁ ସେ ଘୋଡ଼ାଙ୍କୁ
ପହଞ୍ଚିଲେ ଯାଇ ହସ୍ତୀନା ପାଶେ,
ଦେଖିଲା ହସ୍ତୀନା ଚନ୍ଦ୍ରଟିଏ ପରି,
ଶୁଭ୍ର ସାରସ କି ମାଳ ଆକାଶେ ?
ଶୋଭା ସଂପଦରେ ଫାଟି ପଡ଼ୁଛି ସେ
ଅମରାବତୀର ଧରିଛି ଛଇ,
୵ ଚନ୍ଦ୍ରକର ଲେଖିବ ସେ ଛବି
କୋଉ କବିଟା ବା ପାରିବ ଗାଇ !

ଇନ୍ଦ୍ର କ'ଣ ସେଠି    କରୁଛି ସଜନୂର୍ତ୍ତି
ଐରାବତ ହାତୀ ଝୁଲୁଛି ଦୁଖେ,
ପାରିଜାତ ଫୁଟି    ବାସଇ କି ସେଠି
ମଧୁପେ ଧାଆନ୍ତି ମୁଖର ମୁଖେ ?
ଇନ୍ଦ୍ର ଗୋବିନ୍ଦର    ବୃନ୍ଦଆର ସମ
ନୀଳ ଗଗନଟା ଅଛି ତ ଝୁଲି,
ସାତ ବରଣର    ସଜର କିରଣ
ହୋଇଛି କି ଆଜ ତହିଁରେ ଫୁଲ !
ସୁଧର୍ମା ସଭା କି    ଇନ୍ଦ୍ରପୁରୀ ଛାଡ଼ି
ଆସିଛି କୌରବ ରାଜ୍ୟକୁ ଚାଲି,
ଅପ୍ସରୀଏ ମିଳି    ଦ୍ୱିତୀୟ ଇନ୍ଦ୍ରଙ୍କୁ
ବନ୍ଦାନ୍ତି କି ଧରି ଅରଘ୍ୟ ଥାଳି !
ଯମୁନା କୂଳରେ    ଗଛ ଧାଡ଼ି ଧାଡ଼ି
ଗଗନ ପରଶି ଯାଇଛି ଶିର,
ଗଗନ ନୀଳିମା    ଗଛ ଶ୍ୟାମଳିମା
ପାଟଳିମା ମିଶି ହଟଣ ଛୁଟିର ।
ରାଜ ପଥେ ପଥେ    ଦୋକାନ ବଜାର
ଲାଗିଛି ସବୁଠି ବିକା ଓ କିଣା,
ଜନକୋହଳରେ    ବାଟ ମିଳୁ ନାହିଁ
ହସ୍ତିନାର ଶିରୀ ସରଗଜିଣା ।
ନରନାରୀ ଯେତେ    ସୁନ୍ଦର ସୁନ୍ଦରୀ
ମଣିଷ ପରି ତ ଦିଶନ୍ତି ନାହିଁ,
ଅଧରେ ଅଧରେ    ହସର ତରଙ୍ଗ
ସଭିଏଁ ନିର୍ମଳ ହାଟକ-ଦେହୀ ।
ଝୀନବାସ ଫୁଟି    ଦେହ ଦିଶୁଅଛି
ବାସ ଥିଲି ଟେରି ପଡ଼ୁନି ଜଣା,
କଥା ଶୁଭୁଅଛି    ଗମ୍ଭୀର ମଧୁର
ସପତ ସ୍ୱରରେ ବାଜେ କି ବୀଣା !

ନାରୀ ପୁରୁଷର                    ମିଳାମିଶା ଶୋଭା
ଦାଣ୍ଡରେ ହାଟରେ ସଦା ସବୁଠି,
ଅପ୍‌ସର ଅପ୍‌ସରୀ                    ଧରାଧରି ହୋଇ
ନାଚ ଗାଉଣା କି କରନ୍ତି ଏଠି ?
ଅଟ୍ଟାଳି ଅଟ୍ଟାଳି                    ସବୁ ଏକା ପରି
କେହି କାହାଠାରୁ ହେଉନି ବାରି,
ହିମାଳୟ ଶିର                    ଅଳକା ନଗରୀ
ଶୋଭାରେ ଶିଳ୍ପରେ ଯିବ କି ହାରି ।
ଯମୁନା ଧାଇଁଛି                    କୁଳୁ କୁଳୁ ଗାଇ
ନୀଳ ଦର୍ପଣ ସେ ନୁହେ କି ନଈ,
ତହିଁରେ ଭାସୁଛି                    ହର୍ମ୍ୟ ପ୍ରତିବିମ୍ବ
ସେ ଶୋଭା କଥାରେ ହେବନି କହି ।
ସରଗ ବିନ୍ଧାଣି                    ଯୁଗ ଯୁଗ ଧରି
ଗଢ଼ିଛି କି ଆଜ ସୁନ୍ଦର କରି,
ମର୍ତ୍ତ୍ୟ କାରିଗର                    ପକ୍ଷେ କି ସମ୍ଭବ
ପାରିବ ଏପରି ନହଣ ଧରି !
ନହଣ ବାରସି                    କାମ ଏ କି ନୁହଁ
ତୁଳୀରେ କାଳିରେ ହୋଇଛି ଲେଖା,
ସରୁ ସରୁ କେତେ                    ଚୂରୁ କମଳୁଟ
ଯୋଡ଼ି ଦେଇଅଛି ରଙ୍ଗୀନ ରେଖା ।
ଅକ୍ରୂରକୁ ଦେଖି                    ପଚାରିଲେ ଚରେ
"କୋଉ ବଇଜର ରଜାର ଦୂତ ?
କାହିଁକି ଆସିଛ                    କାହାକୁ ଖୋଜୁଛ
ମନ ମୁକୁଳାଇ କହିବଟି ସତ ।"
ଅକ୍ରୂର କହିଲା,                    "ମଥୁରା ମୋ ଘର
କୃଷ୍ଣ ପେଶିଛନ୍ତି ରଜାଙ୍କ ପାଶେ,
ଆସିଛି ମୁଁ ତେଣୁ                    ରଜାଙ୍କୁ ଭେଟିବି
ଭେଟିବି କୁନ୍ତୀଙ୍କୁ ରାଜଉଆସେ ।"

ଚର ଆଗେ ଆଗେ ଚଳିଗଲା ବେଗେ
ରାଜସଭା ଚଳେ କହିଲା ପାଇଁ,
"ମଥୁରା ନଗରୁ 'ଅକ୍ରୂର ଆସିଛି
ତୁମ୍ଭଙ୍କୁ ସଂଖୋଜ ଦିବାର ପାଇଁ ।"
କୃଷ୍ଣ ପେଶିଛନ୍ତି ଏଠା ଭଲ ମନ୍ଦ
ସବୁ ବୁଝିସୁଝି ଦିବାର ପାଇଁ,
ଆଜ୍ଞା ନେଉଁ ଅଛି ଦୁଆରେ ରହିଛି
ଭିତରକୁ କ'ଣ ଆଣିବ ପାଇଁ ?"
ଧୃତରାଷ୍ଟ୍ର ଶୁଣି 'ହେଲେ ମହାଖୁସି
ଭୀଷ୍ମ, ଦ୍ରୋଣ, କର୍ଣ୍ଣ ସେ ଥିଲେ ସେଠି,
ସକଳେ କହିଲେ "ଶୀଘ୍ର ଆଣ ଯାଇ
କହୁ ସେ କଅଣ କହିବ ଏଠି ।"
ଚର ଡାକଦେଲା ଅକ୍ରୂର ଆସିଲା
ସମସ୍ତଙ୍କୁ କଲା ସେ ଦଣ୍ଡବତ,
ଭୀଷ୍ମ ଉଠିଯାଇ ହସି ହସି କରି
ସମାଦର କରି ଧଇଲେ ହାତ ।
କହିଲେ ରଜାଙ୍କୁ "ଅକ୍ରୂର ଆସିଛି
ଭଲ ମନ୍ଦ ସବୁ ବୁଝି ପଚାରି,
ତୁମକୁ ପ୍ରଣାମ କରି କହିଛନ୍ତି
ମଥୁରା ନଗରୁ କଂସ-ଅରି ।"
ରଜା ପଚାରିଲେ "ରାମ କୃଷ୍ଣ ଆଉ
ଯାଦବ ଯାଦବୀ ସବୁ ତ ଭଲ,
ରୋଗ ବଇରାଗ ନାହିଁ ତ ସେଠେଇ
ଦେହ ପାଆ ଅଛି ଠିକ କୁଶଳ ?"
କହିଲା ଅକ୍ରୂର ସବୁ ସଂକ୍ଷେପରେ
ମଥୁରା ମଂଗଳ କଂସ-ମରଣ,
ଶୁଣିଲେ ସମସ୍ତେ ଏକମନ ହୋଇ
କହିଲେ ଶ୍ରୀକୃଷ୍ଣ ରାମଙ୍କୁ ଧନ୍ୟ ।

ଶ୍ରୀକୃଷ୍ଣ ତ ଆଜ ମଣିଷ ନୁହନ୍ତି
ବିଷ୍ଣୁ ସନାତନ ଜଗତପତି,
ତାଂକ ସଙ୍ଗେ ଲଢ଼ି କଅଣ କରନ୍ତା
ଘୋର କଂସାସୁର ମଥୁରାପତି ।
ଉଣା-ଅନ୍ୟାୟ ତ କରି ନାହିଁ ସିଏ
ତ ଛତା ଭଣଜା ମାଇଲା ଧରି,
ବାପଟାକୁ ବାନ୍ଧି ନିଜେ ହେଲା ରଜା
ଶେଷରେ ରଖିଲା କଏଦ କରି ।
କୃଷ୍ଣ ଆଣିଥିଲା ମାରିଦେବ ବୋଲି
ଏତିକ ସାହସ ବଢ଼ିଲା ତାର,
କୃଷ୍ଣଙ୍କୁ ମାରନ୍ତା ଯେବେ କଂସାସୁର
ରହନ୍ତା କି ଆଜ ଆମ ସଂସାର ?
ଓଇ ପିମ୍ପୁଡ଼ିଏ ମରିଲାବେଳକୁ
ସେମାନଙ୍କଠାରେ ଲାଗଇ ପକ୍ଷୀ,
କଂସ ସେହିପରି ମରିଲା ବେଳକୁ
କୃଷ୍ଣଙ୍କୁ ଆଣିଲା ମଥୁରା ଡାକି ।
ଗୁରୁ ଗଉରବ ମାନିଲା ତ ନାହିଁ
ଦେବତାଗୁଡ଼ାଙ୍କୁ କଲା ହିନସ୍ତା,
କୃଷ୍ଣଙ୍କୁ ମଣିଲା ଦେଉଡ଼ ଚୁଆଟା
ମରନ୍ତା ନାହିଁ ତ କିଏ ମରନ୍ତା ?
ସିଏ ଯାହା କହୁ, କୃଷ୍ଣ ଭଗବାନ୍,
ନ ହେଲେ ଟେକନ୍ତା ମନ୍ଦର ଧରି,
ଆଠ ବରଷର କଅଁଳା ପିଲାଟା
କଂସକୁ ମାରନ୍ତା ସେ ବା କିପରି ?
କୃଷ୍ଣ କରୁଣାରୁ ଆମେମାନେ ସବୁ
ବଞ୍ଚି ଗଲେଇଁ ରଖନ୍ତା କଂସ ?
ସିଏ ହୋଇଥିଲେ ଥିଲେ ରଜା ହୋଇ
ଗୋଡ଼ାଇ ମାରନ୍ତା ସବୁରି ବଂଶ ।

ଏଇନା ଧରଣୀ ହୋଇଗଲା ସ୍ୱସ୍ଥ
କାନ୍ଦଣା ତାହାର ଯାଇଛି ସରି,'
ଶ୍ରୀକୃଷ୍ଣ ରଖିଲେ ଅକ୍ଷୟ ଭାରତ
ଆଉ କେତେ ଅଛୁ ଅପେକ୍ଷା କରି ।
କଂସ ମଲା ଶୁଣି ଜରାସନ୍ଧ ପୁଣି
କଅଣ କରୁଛି ଶୁଣିଛ କହୁ,
କୃଷ୍ଣ କ'ଣ ତାକୁ ଖାତିର କରିବ
ସେଗୁଡ଼ାଙ୍କ କଥା କହନା ଛୁ ଛୁ !"
ଅକ୍ରୂର କହିଲ, "ଶୁଣ ମହାରାଜା !
କୃଷ୍ଣ କହିଛନ୍ତି ପ୍ରଣାମ କରି,
ଆପଣଙ୍କୁ ପୁଛି ବୁଝିକରି ଯିବ
କୁନ୍ତୀ, ତାଂକ ପୁଏ ଛନ୍ତି କପରି ?
ପଣ୍ଡୁ ମଲାଦିନୁ ଆପଣ ତ ବାପ
ପୁଅ ପୁତୁରାଙ୍କୁ ସମାନ କରି,
ପାଳୁଛନ୍ତିଟିକ ପାଠ ପଢ଼ୁଛନ୍ତି
ଅସ୍ତ୍ର ଧରୁଛନ୍ତି କିଏ କପରି ?
ଶହେ ପାଞ୍ଚ ପୁଅ ଏକାଠେଇ ଖେଳ
ଏକାଠେଇ ବୁଲି ଛନ୍ତିନି ଭଲ,
କେହି କାହା ସଂଗେ କଳି ତ କରୁନି
କେହି ତ କାହାର ପାଞ୍ଚୁନି ସଲ ?
ଶୁଣିଲେ ଶ୍ରୀକୃଷ୍ଣ ଖେଳରେ ଖେଳରେ
ଶହେ ପାଞ୍ଚ ଭାଇ କଜିଆ କଲେ,
ପାଞ୍ଚ ଏକଆଡ଼େ ଶହେ ଅନ୍ୟଆଡ଼େ
ଭୀମକୁ ପାରିଲେ ନାହିଁ କେ ବଳେ ।
ସେହିଦିନଠାରୁ ଦୁର୍ଯ୍ୟୋଧନ ତାକୁ
ମନରେ ମନରେ ରଗିଛି ଘରି,
ଜହର ଖୁଆଇ ପାଣିରେ ବୁଡ଼ାଇ
ବସିଥିଲା ତାକୁ ଦେବାକୁ ମାରି ।

ଏକଥା କି ସତ, ଲୁଠାଇ ଦେଲେ ତ
ଆଜି ତ ସେ ଯୁଗ ନାହିଁ କାହାର ?
ଶତେ ଭାଇ ଯେବେ ମାରିବେ ପାଞ୍ଚଙ୍କୁ
କିଏବା ଶୁଣିବ ତାଙ୍କ ଗୁହାରି !
ଆପଣ ଟିକିଏ ଦୃଷ୍ଟି ଦେଇଥିବେ
ପିଲା ତ ସେକଥା ବୁଝିବେ ନାହିଁ,
ଆପଣଙ୍କ ଦୋଷ ସମସ୍ତେ ବାଛିବେ
ସେଥିକୁ ଉପାୟ କରିବେ ଚାହିଁ ।
କୁନ୍ତୀ ଅନ୍ତଃପୁରେ କାନ୍ଦୁ ନାହାନ୍ତି ତ
ଲାଗୁ ନାହିଁ ତାଙ୍କୁ ପୁଅଙ୍କ ଚିନ୍ତା,
ଆହା ହତଭାଗ୍ୟ ପିଲାଟି ଦିନରୁ
ଜାଣିଲେ ନାହିଁ ସେ କଅଣ ପିତା !"
ଧୃତରାଷ୍ଟ୍ର ଶୁଣି ଟିକେ ଦବିଯାଇ
କହିଲେ "କୁନ୍ତୀଙ୍କୁ ପଚାର ଯାଇଁ,"
ଭଲ ମନ୍ଦ ସବୁ ଯାହା ଜାଣିଛନ୍ତି
କହିବେ ତୁମକୁ ସିଏ ବୁଝାଇ ।
ଯାଅ ଭିତରକୁ ସ୍ନାହାନ ପ୍ରକାର
ଆଦି ନିତ୍ୟକାମ ବଢ଼ାଅ ଆଗେ,
ଖାଇ ପିଇ କରି ସୁସ୍ଥ ହୋଇସାରି
ପଛରେ ଚଳିବ କୁନ୍ତୀଙ୍କ ଲାଗେ ।"
ବିଦୁରଙ୍କୁ କହି ସଂଗେ ପଠାଇଲେ
ବିଦୁର ଅକ୍ରୂର ଗଲେ ଭିତରେ,
ପଣ୍ଡୁ ମଲାଦିନୁ ବିଦୁର ଥାଆନ୍ତି
ସବୁବେଳେ ପାଣ୍ଡବଙ୍କ ହିତରେ ।
ଯାଉଁ ଯାଉଁ ବାଟେ ବିଦୁର କହିଲେ
"ଶ୍ରୀକୃଷ୍ଣ ଜାଣିଲେ କାହୁଁ ଏକଥା,
ସବୁ ସତ," ତୁମେ ଦେଖୁନା ଅନ୍ଧକୁ
ପୋଡିଦେଲା ମୁହଁ ହଲାଇ ମଥା ।

ଜନମ ଅନ୍ଧ ସେ          ସବୁଥିରେ ଅନ୍ଧ
    ଭଲକୁ ମଣଇ ସର୍ବଦା ମନ୍ଦ,
ଦୁର୍ଯ୍ୟୋଧନଟାର          ମୁହଁ ବଢ଼ାଇଛି
    ସବୁବେଳେ ସେଇଟା କରଇ ଦ୍ୱନ୍ଦ୍ୱ ।
ଡର ମାଡ଼ିଲାଣି          ପିଲା ପିଲା କଳି
    ବଢ଼ିବ ପଛକେ ତୁଟିବ ନାହିଁ,
କେଳୂନ ତ ତେଣେ          ଟିହାଇ ଦେଉଛି
    ସବୁ ଗଣ୍ଡଗୋଳ ତାହାର ପାଇଁ ।
ବୁଢ଼ା ବେଳେ ବେଳେ          କହଇ ତଥାର
    ଅନ୍ଧଟା କଥାକୁ ଶୁଣୁଛି କିଏ ?
ଦୁର୍ଯ୍ୟୋଧନ ବୋଲି          ନାଆଁ ତ ପାଇଛି
    ତାର ଦୁଷ୍ଟ ବୁଦ୍ଧି ଛାଡ଼ିବ ସିଏ ?
ସବୁ ପୁଅ ଝିଅ          ନାଆଁର ଆଗରେ
    ଦୁର୍ ଅକ୍ଷରଟା ରହିଛି ଲାଗି,
ଦୁଷ୍ଟ ହେବେ ନାହିଁ          ଦୁଃଖ ଦେବେ ନାହିଁ
    ଦୁର୍ଦ୍ଦାନ୍ତଗୁଡ଼ାକ କିବେକ ରାଗି ?
ଏକା ଯୁଧିଷ୍ଠିର          ଡାକେ ସୁଯୋଧନ
    ଯେତେ ସୁଜ ଦେଲେ ହେବ ବା କଅ ?
ଜନମରୁ ସେ ତ          ବଣ ବାଛୁଆଡ
    ସବୁ ଭାଇଯାକ ଏକା ଖବଣ ।"
କୁହାକୁହି ହୋଇ          କୁନ୍ତୀଙ୍କ ପାଖରେ
    ଗଣୀହଂସପୁରେ ମିଳିଲେ ଯାଇ,
ପାଣ୍ଡବ ଜନନୀ          ଦେଖିଲେ ଯୋଉନା
    ଲୁହ ପୋଛି ବାସ ଦେଲେ ଡିନ୍ତାଇ ।
କହିଲେ, "ଅକ୍ରୂର !          ଏତେ ଦିନକରେ
    ପଡ଼ିଲା କି ମନେ ଆସିଲୁ ଦେଖି ?
କୋଉ ଅଭାଗିନୀ          କପାଳରେ ଭଲା
    ବିଧାତା ଏ ଦୁଃଖ ଦେଇଛି ଲେଖି ?

ବାପ ମାଆ ଥିଲେ ଆଜଯାଏ ବୋଲି
ମୋତେ କି ପାଶୋରି ଥାଆନ୍ତେ ରହି ?
ଭାଇ ଭାଉଜଙ୍କ ଦୁଃଖ ତ ଗଲାଣି
ପଠାଇଛନ୍ତି ସେ କଅଣ କହି ?
କଂସ ତ ମରିଛି ଡର ଗୁଡ଼ିଅଛି
କୃଷ୍ଣ ତ ବାହୁଡ଼ି ଆସିଛି ଘରେ,
ମୁଖରେ ସେ କ'ଣ ନାହାନ୍ତି ଏଇନା
ପକାଉଛନ୍ତି ମୋତେ ମନରେ ?
ପାଞ୍ଚଟା ଛୁଆଙ୍କୁ ରାଣ୍ଡ ମାଇପୀଟା
କପରି ପାଳିବ କହିଲୁ ଭଲ ?
ରାଜଉଆସରେ ଅଛି ମୁଁ ନାଆଁକୁ
ବରଂ ବଣ ବେଶୀ ସୁଖର ଥିଲା ।
ଦେଢ଼ଶୁରଙ୍କର ବୁଝାମଣା ନାହିଁ,
ଗାନ୍ଧାରୀ ରାଗ ତ ନଆଁରୁ ବଳି,
ମୋର ପୁଅଙ୍କର ଶିଷ୍ଟ ଦେଖେ ନାହିଁ
ଭୀମକୁ ଦେଖିଲେ ଉଠଇ ଜଳି ।
ଶକୁନି ଭାଇ ତ କଳି-ମୁଣ୍ଡିଟିଏ
ଦୁର୍ଯ୍ୟୋଧନକୁ ସେ କଅଣ କହେ,
ଭୀମ ସଙ୍ଗେ କଳି ସବୁବେଳେ ତାର
କୋଉ ମାଆ ଦେହ କହିଲୁ ସହେ ?
ପିଲାର ଖେଳରେ ପିଲାଏ ହାରିଲେ
ଜିଣିଲେ ସେଥିରେ ମୋହର ଦୋଷ ?
ଗାନ୍ଧାରୀ କଥା ତ ସହି ହେଉ ନାହିଁ
ଭୁଞ୍ଜାଟାରେ ଖାଲି ମୋଠାରେ ରୋଷ !
ଭୀମେ ଦୁର୍ଯ୍ୟୋଧନ ଖୁଆଇଲା ବିଷ
ବୁଡ଼ାଇଲା ନେଇ ଗଭୀର ଜଳେ,
ପୁଅ ମୋର ଆଠ ଦିନେ ବାହୁଡ଼ିଲା
ମଲା ନାହିଁ ସିନା ଧରମ ବଳେ !

ଅସ୍ତ୍ର ପରୀକ୍ଷାରେ    ଜିଣିଲା ଅର୍ଜୁନ
    କର୍ଣ୍ଣଙ୍କୁ ତା ସଙ୍ଗେ ଦେଲେ ଲଗାଇ,
ବର୍ବର ହୋଇଛନ୍ତି    କଳେ ବଳେ ଛଳେ
    ଅର୍ଜୁନକୁ ମୋର ଦେବେ ମରାଇ ।
ବନସ୍ତରେ ଥିଲି    ସିଂହ ବାଘଙ୍କର
    ମେଳରେ ସୁଖରେ ନ ଥିଲା ଡର,
ରାଜପୁର ସିନା    ଦେଖିବା ପାଇଁକି
    ଭଗାଟିଙ୍କର ଏ ଅନଳ ଘର ।
କହିବୁ କୃଷ୍ଣଙ୍କୁ    ଲାଗିଲେ ମୋ ପୁଏ
    ଲାଗିଲ ମୁଁ ତାକୁ ଭୁଲିବ ନାହିଁ,
ଜୀଇଛି ମୁଁ ଏଠି    ତାହାରି ଆଶାରେ
    ପାଞ୍ଚ ପୁଅଙ୍କର ମୁହଁକୁ ଚାହିଁ ।
କୋଉ ପୁଅରେ ବା    ସୁମାରି ହେଲେଣି
    ଜୀଅନ୍ତୁ ତ ଆଗେ ହିଂସା ହାତରୁ,
ଦୁଃଖିନୀର ଛୁଆ    ବାପଛେଉଣ୍ଡ ତ
    କିଏ ସାହା ଅଛି ତାରିବ ଡରୁଁ ?
କୃଷ୍ଣ କ'ଣ ସତେ    କିଛି କହି ନାହିଁ
    ଅର୍ଜୁନ କି ତାର ପଡ଼ୁନି ମନେ ?
ଦ୍ୱିଷକୃଷ୍ଣ ବୋଲି    ନାଆଁ ଦେଇଥିଲା
    ଗୁଡ଼ିଦେଲା ତାକୁ ହିଂସୁକ ବଣେ ।
ଦେଖିବାକୁ ଦୁହେଁ    ଦୁହିଁଙ୍କର ସମ
    ସତେ କି ଯୋଡ଼ିଏ ଯାଆଁଳା ଭାଇ,
ଆଗ ପଛ ହୋଇ    ଜନମ ହୋଇଲେ
    ସରଗରୁ ଖସି ପଡ଼ିଲେ ମହୀ ।
ଅର୍ଜୁନେ ଦେଖିଲେ    ସିଏ ମନେ ପଡ଼େ
    କୃଷ୍ଣ କୃଷ୍ଣ ବୋଲି ଝୁରଇ ନିତି,
ଦେଖନ୍ତୁ ଅନ୍ତର    ତାହାରି ପାଇଁକି
    ଲୁହରେ ମୋ ଛାତି ଗଲାଣି ତିନ୍ତି ।"

ସବୁ ଶୁଣିସାରି ଅକ୍ରୂର କହିଲେ
"କୃଷ୍ଣ କହିଛନ୍ତି କହୁଛି ଶୁଣ,
ତୁମ ପୁଅ ସବୁ ସଂସାର ଜିଣିବେ
ସବୁ ଗୁଣରେ ସେ ହେବେ ନିପୁଣ ।
ତାଙ୍କୁ କେ ମାରିବ ମହାବଳିଆ ସେ
ବାଘ ସିଂହ ତାଙ୍କୁ ପାରିବେ ନାହିଁ,
ଶ୍ରୀକୃଷ୍ଣ ପାଣ୍ଡବ ଧର୍ମଧରି ହୋଇ
ଆସିଛନ୍ତି ତେବେ କଅଣ ପାଇଁ ?
ଯିଏ କୃଷ୍ଣ ସିଏ ପାଣ୍ଡବ ଧର୍ମରେ
ଜୀବନେ ଦେହରେ ନାହିଁ ଗୋ ଭେଦ,
ଏହିତକ କହି ବୁଝାଇଣ ଦେବ,
ମିଛରେ କରିବ ନାହିଁ ସେ ଖେଦ ।
ଯାଉଛି ମଥୁରା କହିବ କୃଷ୍ଣଙ୍କୁ
ସବୁ କଥା ଯାହା ଯାଉଛି ଜାଣି,
ହୁସିଆର ହୋଇ ଚଳିବ ଏଇନା
ସହାୟ ତୁମର ଚକରପାଣି ।"
ଫେରିଲେ ଅକ୍ରୂର କହିଲେ କୃଷ୍ଣଙ୍କୁ
ଶ୍ରୀକୃଷ୍ଣ ଟିକିଏ ହସିଲେ ଶୁଣି,
ଭବିଷ୍ୟତ ଚିନ୍ତା ପଶିଲା ମନରେ
ଧର୍ମରାଜ୍ୟ କଥା ହୋଇଲେ ଗୁଣି ।
ଶ୍ରୀକୃଷ୍ଣଙ୍କୁ କ'ଣ ଛୁଏଁ ନାହିଁ ଦୁଃଖ
ସବୁବେଳେ ଖାଲି ମୁହଁରେ ହସ ?
ସେଇଥିପାଇଁ କି ସଂସାରଟା କ'ଣ
ସମ୍ପଦେ ବିପଦେ ତାଙ୍କର ବଶ ?
ସେ ମୁହଁରୁ କେବେ ରସ ଶୁଖେ ନାହିଁ
ନୀରସ ମୁହଁକୁ କରେ ସରସ,
ପତି ବିରହିଣୀ ଶୁଖିଲା ଅଧରେ
ଫୁଟାଇ ଦିଅନ୍ତି ସରସ ହସ ।

ପୋଡ଼ା ହୋଇ ହୋଇ ସେ ସୁନା ଉଜ୍ଜ୍ୱଳ
ଆଉ କି ଲାଗିବ ତହିଁରେ ମଳ ?
ଦୁଷ୍ଟ ଦାନବଙ୍କ ସହ ପାପ ତାପ
ଧରଣୀ ବକ୍ଷରୁ ହେବେ ସେ ଦଳ ।
ପାପ ରାଜ୍ୟ ଯିବ ଧର୍ମ ରାଜ୍ୟ ହେବ
ପାଣ୍ଡବଙ୍କ ହାତେ କରିବେ ତାହା,
ତଥାପି ସଂସାର ଗାଇବ ଶାସ୍ତ୍ରରେ
କୃଷ୍ଣ କଲେ ସବୁ ପୋଉଠି ଯାହା ।
ଏ ଭବସାଗରେ କୃଷ୍ଣ ଏକା ନାବ
ତାଙ୍କ ଆଶ୍ରା କର ତରିବ ଯେବେ,
କୃଷ୍ଣଙ୍କୁ ଛାଡ଼ିଲେ ଡଙ୍ଗା ବୁଡ଼ିଯିବ
ପାରି ହେବ ଆଉ କାହିଁରେ ତେବେ ?
ଜପ କୃଷ୍ଣ କୃଷ୍ଣ ଭଜ କୃଷ୍ଣ କୃଷ୍ଣ
କୃଷ୍ଣ କୃଷ୍ଣ କୃଷ୍ଣ ଘୋଷ ସତତ,
ତରିଯିବ ଭବୁଁ ପଶିବ ସରଗେ
ଯମର ଯାତନା ହୋଇବ ଅନ୍ତ ।
କଂସର ମରଣ ଝିଅଙ୍କ କାନ୍ଦଣା
ଜରାସନ୍ଧ କାନେ ପଶିଲା ଯାଇଁ,
କଂସ ପରା ବୀର ମାଇଲା ଛୁଆଟା
ଗ୍ରାବ ତା ମୁଣ୍ଡରେ ଜଟିଲା ଝାଇଁ ।
ଜଳିଲା ରାଗରେ କହିଲା ଗରଜି,
"ତେଇଶ ଅକ୍ଷୌଣୀ ହୁଅରେ ସଜ,
ହାତ ହତିଆର ଧରି ସବୁ ଚାଲ
ଚଢ଼ି ଯେ ଯାହାର ବାଜି ଓ ଗଜ ।
ଚାଲ ଚାଲ ସବୁ ଉଛୁର କରନା
ଯାଅରେ ମଥୁରା ନଗରେ ପଶି,
ଉଗ୍ରସେନ ସହ କୃଷ୍ଣ ବଳରାମେ
ସମର କରିଣ ଦେବାରେ ଧ୍ୱଂସି ।

ଛପ୍ପାଣୋଇ ସସ୍ତ ସଙ୍ଗେ ଆଜ ଏକ
ମିଶାଇଣ ଦେଇ କରବ ବନ୍ଦୀ,
ଉଗ୍ରସେନ ହାତ ଗୋଡ଼ ବାନ୍ଧିକର
ଲୁହା ଶିକୁଳରେ ଦେବ ମୁଁ ଛନ୍ଦ ।
ମଥୁରାରେ ଯେତେ ଯାଦବ ଯାଦବୀ
ଦଳଦେବ ପାଦେ ପିମ୍ପୁଡ଼ି ପରି,
ନ ହେଲେ ତାହାଙ୍କୁ ବାନ୍ଧିବୁଦ୍ଧି କର
ଜଳନ୍ତା ନିଆଁରେ ଦେବ ମୁଁ ଭରି ।
ଜଣ ଜଣ କରି ଲକ୍ଷେ ପୂରାଇବ
ଆଉ ଗ୍ଥର ସସ୍ତ ଆଣିବ ବାନ୍ଧି,
ଆଜ କଂସ ପାଇଁ କାନ୍ଦୁଛୁ ଯେପରି
ମରନ୍ତୁ ସମସ୍ତେ ସେପରି କାନ୍ଦି ।
କରିଛୁ ପ୍ରତିଜ୍ଞା ଲକ୍ଷେ ରଜା ଆଣି
ଶିବଙ୍କ ପାଖରେ ଦେବ ମୁଁ ବଳି,
ଦେଖିବ ଏଇନା ରାମ କୃଷ୍ଣ ସହ
ଯାଦବ କପରି ଦେବ ରେ ଦଳି !
ଏହା ହେବ ମୋର ରାଜସୂୟ ଯଜ୍ଞ
ରାଜରାଜେଶ୍ୱର ହେବ ମୁଁ ଏକା,
ଦେଖିବ କପରି ଅଟକାଇ ଦେବ
କଂସକୁ ସଂହାରି ଗଉଡ଼ ଟୋକା !
ଦେବତାଏ କୂଟ କପଟ ଭିଆଇ
ମରାଇ ଦେଲେ ମୋ ଜୁଆଇଁ କଂସ,
ଦେଖିବ କପରି ମଥୁରାରେ ରହି
ଗରବେ ବଢ଼ିବ ଯାଦବ ବଂଶ !
କେଉଁଠେ ପାଚିଲାରି ଗଉଡ଼ ଛୁଆଏ
ଏଇନାଏ ଯାଇ ମାରିବ ତାଙ୍କୁ,
ଉଗ୍ରସେନ ପୁଣି ବାପ ହୋଇ କରି
ମରାଇଛୁ କଂସ ପରି ପୁଅକୁ ।

ମାରିଅଛୁ ବୋଲି ଚାଣୁର ମୁଷ୍ଟିକ
କୁବଳୟା ହାତୀ ଆବର କେଶୀ,
ଶକଟା ପୂତନା ଅଘା ବକା ବତ୍ସା
ଗରବେ ମୁହାଁସ ବଢ଼ିଛୁ ବେଶୀ ।
ମୋ ହାତେ ମରିବ ଲେଖିଅଛୁ ବିଧି
ମରିବ, ମରିବ କହୁଛୁ ସତ,
ବସିଁ ଦେବତାଏ ଦେଖିପାରିବେନି
ଗୃହଁଥିବେ ସବୁ କରିବି ହତ ।
ଦେବକୀ ଅଷ୍ଟମ ଗରଭ ଛୁଆ ସେ
ନ ହେଲେ କି କଂସ ମାରନ୍ତା ସିଏ ?
ଦଇବ ବାଣୀ ତ ସତ ହୋଇଗଲା
ଚକ୍ରୀ ମାୟାଚକ୍ର ବୁଝିବ କିଏ ?
ସମର କରନି ଖାଲି ଦେଖୁଁ ଦେଖୁଁ
କଂଧ ପର ଖାର ମଲା କିପରି ?
ବିଶ୍ୱବିଜୟରେ ବାହାରିଲାବେଳେ
ଦେବତାଏ ସବୁ ପଳାନ୍ତି ଡରି ।
ସେହି କଂସ ପୁଣି ମଲା କୃଷ୍ଣ ହାତେ
ଏଥିରେ ଦୈବର ନାହିଁ କି ହାତ ?
ଯୋଉ ଦେବତାଏ ଡରନ୍ତି କଂସକୁ ?
ନାହିଁ ନାହିଁ କୃଷ୍ଣ ଜଗତନାଥ !
ତାହା ନ ହେଲେ କି ଫିଟନ୍ତା କିଳଣି
ବସୁଦେବଠାରୁ ଫିଟନ୍ତା ବେଡ଼ି ?
ଜାଣି ପାରନ୍ତେନି ପ୍ରହରିଏ କେହି
କିଏ କେତେବେଳେ ଦେଲା ତା ଫେଡ଼ି !
ଯମୁନା ନଈଟା ଡେଇଁଥିଲା କୂଳ
କାହା ପାଇଁ ତାହା ଗଲା ବା ଗୁଡ଼ି ?
ସୁଖେ ବସୁଦେବ ପୁଅଟାକୁ ଯାକି
କିଛୁ ଜାଣିଲାନି ଗଲା ବାହାରି !

ଶ୍ରେୟ ପଣ ନେଇ ରଖିଲ ଗୋପରେ
ଲୁଚାଇ ଲୁଚାଇ ନନ୍ଦ-ମନ୍ଦରେ,
ପୁଣି ଫେରି ଆସି ଶୋଇଲ ଗର୍ଭରେ
ଯୋଡ଼ପରେ ଥିଲ ସେହି ବନ୍ଦୀରେ ।
ନନ୍ଦ ବସୁଦେବ ସମସ୍ତଙ୍କୁ ଆଜ
ଚଟଣୀ କରିବ ଶିଳାରେ ବାଟି,
ଗୋପ ମଥୁରାରେ ଲୁଚିବେ କୋଉଠି
ହାଡ଼ ମାଂସ ସବୁ ଖାଇବ ମାଟି ।
ଟିକ୍ ଟିକ କରି କାଟିବି ଖଣ୍ଡାରେ
ରକତ ମାଉଁସ ଏକାଠି କରି,
କାଉ ଓ ଶାଗୁଣା ଶିଆଳ କୁକୁର
ଖାଇବେ ସୁଖରେ ଉଦର ଭରି ।
କୃଷ୍ଣ ଯେବେ ସତେ ହୋଇଥିବ ବିଷ୍ଣୁ
ମାରିବ ସେ ମୋତେ ପିନ୍ଧା ସରଗେ,
ଯାଦବଙ୍କୁ ସବୁ ଧ୍ୱଂସ କରିଯିବ
ଫୁଲ ଉଠିଛନ୍ତି ମତ୍ତ ଗରବେ ।
ଜରାସନ୍ଧ ଥାଉଁ ଉଗ୍ରସେନ ରଜା
ଯୋଡ଼ା ଯୋଡ଼ା ନାତି ଯିବେ କୁଆଡ଼େ ?
ଯୋଡ଼ାଏ ମୋ ଝିଅ କଣରେ ବାନ୍ଧିନ
ଶୁଖି ଶୁଖି ମରୁଥିବେ ପିଆଡ଼େ ।
ବଡ଼ ନାତି ମୁଣ୍ଡେ ଟେକାଇବ ଛତ୍ର
ସେହି ହେବ ସିନା ମଥୁରା ରଜା,
ଆଉ ସବୁ ଯେତେ ଯାଦବ ଗଉଡ଼
ସମସ୍ତେ ହୋଇବେ ତାହାର ପ୍ରଜା ।"
ଜରାସନ୍ଧ ସେନା ତେଇଶ ଅକ୍ଷୌଣୀ
ହାତୀ ଘୋଡ଼ା ରଥ କଳନା ନାହିଁ,
ଆସିଲେ ତ ମାଡ଼ ମଥୁରା ବେଢ଼ିବେ
ଯାଦବ ମାରିବେ କଂସର ପାଇଁ ।

ମାଗର କି ଆଜ ଆସିଲା ଗରଜି
ମେଘ କି ଗଗନେ ଆସିଲା ମାଡ଼ି !
ଧୂଳି ପଟଳରେ ଦଶ ଦିଶ ନାହିଁ
ରବି ଲୁଚିଲେ କି ଗଗନ ଛାଡ଼ି !
ବାଟରେ ଘାଟରେ ସମର ବାଇଦ
ଗଜ ବାଜୀଙ୍କର ବୃଂହିତ ହ୍ରେଷା,
ଜୀବନେ ଜୀବନେ ଜୀବନର ଶଙ୍କା
ବୀରଙ୍କ ମୁହଁରେ ଭ୍ରୂକୁଟି ଲେଖା ।
କାହାର ହାତରେ ଢାଲ କରବାଳ
କାହାର ହାତରେ ବିଶାଳ ଗଦା,
ଚାଲିଅଛି କିଏ ପବନ ବେଗରେ
ବଇରିଙ୍କୁ ମାରି କରିବ ଚଦା ।
ଗଗନେ ପବନେ ଉଡ଼ୁଛି ସ୍ୟନ୍ଦନ
ସାଗର ତରଙ୍ଗେ ବୋଇତ ପରି,
ଧରଣୀ ଉପରେ ସେନା ସମାବେଶ
ଖେପଣ ସାଗର ତରଙ୍ଗ ଭଳି ।
ଶ୍ରୀକୃଷ୍ଣ ଜାଣିଲେ ଜରାସନ୍ଧ ରାଗି
ସଇନ ସହିତ ଆସୁଛି ମାଡ଼ି,
ଥରି ଥରି କରି ଅଠର ଥର ସେ
ମଥୁରାପୁରକୁ ଦେବଟି ଧାଡ଼ି।
ବଳରାମଙ୍କୁ ସେ କହିଲେ ଗୋପନେ
"ମଗଧର ରଜା ରାଗିଛି ଭାରି,
ତେଇଶ ଅକ୍ଷୌହିଣୀ ସଇନଙ୍କୁ ଧରି
ଆସୁଛି ଆମକୁ ଦେବାକୁ ମାରି ।"
କୃଷ୍ଣଙ୍କ ସାହସ କୃଷ୍ଣଙ୍କ ଧଇର୍ଯ୍ୟ
ତାଙ୍କର ଶଉର୍ଯ୍ୟ କାହାର ଅଛି ?
ସମର ସାଜଣି ଅସୁର ଆସୁଛି
ତଥାପି ଭାଇଙ୍କୁ କହନ୍ତି ହସି ।

"ମାରିବା ଅସୁର   ସବୁ ସେନାଯାକ
  କେବଳ ରହିବ ରଜା ଜୀବନେ,
ସୈନ୍ୟ ହତ ଦେଖି   ଡରିଯିବ ସ୍ୱୟଂ
  ଫେରିଯିବ ଘରେ ମ୍ଳାନ ମନେ ।"
ଏତେ ଦୂରଦୃଷ୍ଟି   ଏ ଆତ୍ମବିଶ୍ୱାସ
  ସବୁଠି ତାଙ୍କର କରାଏ ଜୟ,
ଆଜି ତାଙ୍କ କଥା   ତାଙ୍କ ଉପଦେଶ
  ତାଙ୍କ ଆଚରଣ ରହସ୍ୟମୟ ।
ଦୁଇ ଭାଇଯାକ   ଧନ୍ଦ ହୋଇଗଲେ
  ଯାଦବ-ସେନାକୁ ସାଜିଲେ ବେଗେ,
ମଥୁରା ନଗରୁଁ   ବାହାରି ପଡ଼ିଲେ
  ଅସୁରେ ଭେଟିବେ ବାଟରେ ଆଗେ ।
ମଥୁରା ସୀମାରେ   ପୂରାଇ ଦେବେନି
  ବାହାରେ ବାହାରେ କରିବେ ରଣ,
ନଗର ଦେହରେ   ଆଞ୍ଚ ଲାଗିବନି
  ଧ୍ୱଂସ ହେଲେ ହେବ ପଡ଼ିଆ ବଣ ।
ବାଜିଲା ଢମକ   ଶୁଭିଲା ଚହଳ
  ଜରାସନ୍ଧ ଆସେ ସଇନ ସାଜି,
କରିବ ସମର   ଧ୍ୱଂସିବ ନଗର
  ଯାଦବ ଯାଦବୀ ମାରିବ ଆଜି ।
ଯାଦବଙ୍କୁ ନେଇ   ଜଗିଲେ ଦୁ'ଭାଇ
  ଜରାସନ୍ଧକୁ ସେ ଦେବେନି ପଥ,
କୃଷ୍ଣ ସୁମରିଲେ   ସରଗୁଁ ଆସିଲା
  ପବନରେ ଭାସି ଯୋଡ଼ାଏ ରଥ ।
ଦୁଇ ଧୂମକେତୁ   ଓହ୍ଲାଇ ଆସେ କି
  ଗଗନ ଭୁବନ ଉଜ୍ଜ୍ୱଳ କରି ?
ଦୁ'ଜଣ ସାରଥି   ଚଳନ୍ତି ଆଗେ ରହି
  ହାତରେ ଘୋଡ଼ାଙ୍କ ଲଗାମ ଧରି ।

ନିମିଷକେ ରଥ     ଠିଆହେଲେ ଆସି
ରାମ କୃଷ୍ଣ ବେନି ଭାଇଙ୍କ ଆଗେ,
କୃଷ୍ଣ ଶାର୍ଙ୍ଗ ଧନୁ     ବଳରାମ ହଳ
ମୂଷଳ ଧଇଲେ ହାତରେ ରାଗେ ।
ବେନି ରଥେ ବେନି     ଜଣ ଆରୋହିଲେ
ଗୋଟିକରେ କଳା ଗୋଟିକେ ଧଳା ।
ମରତ ଭୁବନେ     ଅବତରିଲେ କି
ଇନ୍ଦ୍ର ନାରାୟଣ ଦାନବଦଳା !
ବାଜିଲା ବାଇଦ     ଢୋଲ ବଡ଼କାଠ
ଝମକ ହାଉଣ୍ଡି ତୂରୀ ଓ ଭେରୀ,
ନାଚିଲେ ଯୋଦ୍ଧାଏ     ରଣତାଣ୍ଡବରେ
ଶୁଣିଲେ ବାଜଣା ଶ୍ରବଣ ଡେରି ।
ନାଚିଗଲେ ବାଜୀ     ମାତିଲେ ରାଉତ
ମାତିଲେ ବାରଣ ପାଗଳ ପରି,
ଖଣ୍ଡାୟତ ଦଳ     ସମର ଉନ୍ମାଦେ
ନାଚିଲେ ଖଡ଼ଗ ଉଞ୍ଚାଇ ଧରି ।
ଧାନୁକୀ ଧନୁର     ଗୁଣେ ଚଢ଼ାଇଲେ
ବାଛି ବାଛି କରି ମୁନିଆ ଶର,
ବିପକ୍ଷ ପକ୍ଷର     ବକ୍ଷ ଲକ୍ଷ୍ୟ କରି
ବିନ୍ଧିବା ପାଇଁଟି ଥରକୁ ଥର ।
ଗୁଣରୁ ଓଟାରି     କାନଯାଏ ବୋଲି
ଛାଡ଼ନ୍ତିଏ କଏ ଅଟକ ଲକ୍ଷି,
ଶରର ପଛରେ     ଲାଗି ରହିଥାଏ
ଯୋଡ଼ାଏ ଯୋଡ଼ାଏ ଚଢ଼େଇ ପକ୍ଷୀ ।
ପକ୍ଷୀ ଲାଗିଥିଲେ     ଲକ୍ଷ୍ୟ ହୁଡ଼େ ନାହିଁ
ଗଳିଯାଏ ଯାଇଁ ଯୋଉଠି ଲକ୍ଷ୍ୟ,
ହେଉ ହାତ ଗୋଡ଼     ହେଉ ଆଖି ବେକ
ହେଉ ବାଁ ବିପକ୍ଷ ଉନ୍ନତ ବକ୍ଷ ।

ମାଲ ମାଲ ସବୁ ସଜ ହୋଇଗଲେ
କଏ କାହା ମୋଡ଼ ଆଉଁସେ ନଶ,
ବାହାସ୍ଫୋଟ ମାର ଊର୍ଦ୍ଧ୍ବେ ଚଗ୍ର ମାର
ସତେ ମାରଦେବ ଦଶ କ ଦଂଶ ।
ଜଂଘରେ ଜଂଘରେ ମାରେ କେ ଗୁପୁଡ଼ା
ଆଗକୁ ଆଗକୁ ଯାଉଛି ମାଡ଼,
ବପକ୍ଷ ପଞ୍ଝାରେ ପଞ୍ଝା ମିଶାଇଣ
କମ୍ପୀର ପରପୂ ନଏ ଓଟାର ।
କଏ ପଡ଼େ ତଳେ କଏ ବା ଉପରେ
ଓଲଟ ପାଲଟ ହୁଅନ୍ତି ପଡ଼,
ଉଠି ଠିଆହୋଇ ଭଉଁରୀ ପକାଇ
କଏ କାହା ଗଳା ଚପଇ ଧରି ।
ଧାନୁକା ଧାନୁକା ସମର ଉମୁଳ-
ବାସବ ରୂପକୁ ସତେ କ ଧର,
ତୂଣୀରୁ କାଢ଼ନ୍ତି ଦାଢ଼ୁଆ ମୁନଆ
ଶରସବୁ ବାଛି ଚଞ୍ଚଳ କର ।
ବନ୍ଧନ୍ତି କହନ୍ତି ଦରପ ଦେଖାଇ
“ସମ୍ଭାଳ ସମ୍ଭାଳ ଏଥର ଦେଖି,
ଏତେଡ଼ ସହଜରେ ଦଇବ ଠା କଅଁ
ତୋହର ମରଣ ଦେଇ ରେ ଲେଖି ?”
ଶଙ୍ଖୁ ଆଉ ମିତ୍ର ଯିଏ ଦେଖୁଅଛି
ତରସେ ହରଷେ ହେଉଛି କାବା,
ଅର ଦବସାଏ ମିତ୍ର ହସିଦଏ
ବାଜେ ଯାଠି କହେ “ମଲ ରେ ବାବା !”
ଶରେ ଶର ବାଜି ଜଳଇ ଅନଳ-
ଦେହରୁ ଦେହରୁ ଚଳଇ ରକ୍ତ,
ଯୋଦ୍ଧାଏ କ ଅବା ମଣିଷ ନୁହନ୍ତି
ଦେହ କ ତାଙ୍କର ଲୁହାରୁ ଟକ୍ତ !

ସାରଥିଏ ରଥ ବାହାନ୍ତି ଚଞ୍ଚଳ
ଭାସଇ ଶୂନ୍ୟରେ ବଉଦ ପରି,
ପୁଣି କେତେବେଳେ ଓହ୍ଲାଇ ଆସଇ
ଘୋଡ଼ାଏ ଧାଆଁନ୍ତି ଦଉଡ଼ କରି ।
ଘୋଡ଼ାଏ ଆସନ୍ତି ଚକର ପକାଇ
ପିଠିରେ ପିଠିରେ ପକ୍କା ସବାର,
ଶର ଖଣ୍ଡାଧାରେ ଖଣ୍ଡିଆ ଚଣ୍ଡିଆ
ଦେହରୁ ବହୁଛି ରକତ ଧାର ।
ହାତିରେ ହାତିରେ ସମର ପ୍ରଚଣ୍ଡ
ଥୋରେ ଥୋର ଛନ୍ଦ ଭଡ଼ା ଓହରି,
ଦାନ୍ତରେ ଦାନ୍ତରେ ଭୁଷାଭୁଷି ହୋଇ
ଭୂଇଁରେ ପଡ଼ କେ ହରେ କୋତରି ।
ପାଇକ ପାଇକ ବାଡ଼ଆ ବାଡ଼େଇ
କାହା ହାତେ ଠେଙ୍ଗା କା ହାତେ ବାଡ଼ି,
କିଏ କାହାଠାରୁ ଠେଙ୍ଗା କାଢ଼ିନିଏ
କିଏ ଦେଉଅଛି କା'କୁ କଚୁଡ଼ି ।
କିଏ ପଳାଉଛି ସମର ବରଜି
କେ ଗୋଡ଼ାଏ ପଛେ ରାଗେ ଗରଜି,
ଲେଉଟି କେ ପୁଣି ଛୁଡ଼ା ହେଉଅଛି
ଜଣ ମୋଡ଼ ଦେଇ ବେଣୀ ତରଜି ।
ରାମ ଜରାସନ୍ଧ ହେଲେ ଧରାପରା
ଦୁହେଁ ତ ଯୋଡ଼ାଏ କେଶରୀ ସରି,
ମାଲ ବନ୍ଧାଣରେ ଲଡ଼ାଲଡ଼ି ହୋଇ
ଭୂଇଁରେ ଧୂଳରେ ଯାଆନ୍ତି ଗଡ଼ି ।
ଦୁଇ ମତ୍ତ କରୀ କରନ୍ତି ସମର
କରେ କର ଛନ୍ଦ ଉଠି ଓ ପଡ଼ି,
କିଏ କେତେବେଳେ ଭୂଇଁରେ ପଡ଼ୁଛି
କିଏ ବସୁଛି ତା ଗ୍ରୀବରେ ଚଢ଼ି ।

ବାଘ ପରି ଗର୍ଜି ସମର ବରଜ
ଝାଡ଼ଝୁଡ଼ ହୋଇ ହୁଅନ୍ତ ଛୁଡ଼ା,
ପୁଣି ଧରାଧରି ପେଲାପେଲି ହୋଇ
ଲଗାଇ ଦିଅନ୍ତ ଓଟରାଉଡ଼ା ।
ମୁଣ୍ଡରେ ମୁଣ୍ଡରେ ମରାମରି ହୋଇ
କେହି ହଟୁ ନାହିଁ ଟିକଏ ସୁଦ୍ଧା,
ଦୁଇ ବୃଷଭ କି ଆଡ଼ି ପାତିଛନ୍ତି
ତୁଟି ନାହିଁ ପରା ସମର-କ୍ଷୁଧା !
ଯାଦବ ରାକ୍ଷସ ସେନାଙ୍କ ଭିତରେ
ଲାଗିଅଛି ଖାଲି ଗୋଳ ସମର,
ଯାଦବ କି ସତେ ବର ପାଇଛନ୍ତି
ମରତରେ ହେବେ ଚିର ଅମର ।
ରାକ୍ଷସ ସଇନ ମରୁଛନ୍ତି ଖାଲି
କୁଡ଼ କୁଡ଼ ଯେହ୍ନେ ଜହ୍ନା ପିମ୍ପୁଡ଼ି,
ଦରମରା କେତେ ଗୁଡିପିଡି ହୋଇ
ଶେଷରେ ମରନ୍ତି ମାଟି କାମୁଡ଼ି ।
ଜରାସନ୍ଧ ସେନା ତେଇଶ ଅକ୍ଷୌହିଣୀ
ମଲେ ସବୁ ପଡ଼ି ଗୋଟିଏ ନାହିଁ,
ଯାଦବ ସଇନ ହସିଲେ ଆନନ୍ଦେ
ରାମ ଜରାସନ୍ଧେ ରହିଲେ ବାନ୍ଧି ।
କେହି କାହାଠାରୁ ଊଣା ତ ନୁହଇ
ହାର ଜଣା ଜଣା ପଡ଼ଇ ନାହିଁ,
ଶ୍ରୀକୃଷ୍ଣ ପାଖରେ ଠିଆହୋଇ କରି
ମୁରୁକି ମୁରୁକି ହସନ୍ତି ଚାହିଁ ।
କି ଯୋଗରେ ଜନ୍ମ ସତେ ସେ ଶ୍ରୀକୃଷ୍ଣ
ସବୁବେଳେ ମୁହେଁ ଫୁଟଇ ହସ,
ସେହି ଏକା ସିନା ଜାଣନ୍ତି ଜଗତେ
ମନକୁ ରଖିବା ପାଇଁ ସରସ ।

ଭାଇଙ୍କ ଅବସ୍ଥା ବାଧେନା କ ତାଙ୍କୁ
ସମର ବେଳରେ ମାଡ଼ଲ ହସ,
ଜାଣନ୍ତି ସେ ହରି ରାମ ପରାକ୍ରମ
ଶେଷେ ଜରାସନ୍ଧ ହେବ ଅବଶ ।
ସହସ୍ର କେଶରୀ ସଙ୍ଗେ ରାମ ସରି
ଛାର ଜରାସନ୍ଧ କେତେ ମାତର,
ରାମ ରୋଷ କଲେ ଧରଣୀ ଲସିବ
ଜରାସନ୍ଧ କରିବ କ ସମର ?
କେତେବେଳକରେ ରାମ ମାଡ଼ିବସି
ଜରାସନ୍ଧର ସେ ଚିପିଲେ ଗଳା ।
କୃଷ୍ଣ ଛଡ଼ାଇଲେ ହସି ହସି କରି
କହିଲେ, "ରେ ଖୁରୁ ଚଞ୍ଚଳ ପଳା ।
ନ ହେଲେ ଏଇନା ମରିବୁ ଏଇଠି
ରାମଙ୍କର କ'ଣ ତୁ ସମ ସରି ?
ଜାଣୁନା ରେ ମୂଢ଼ କେତେ ସିଂହ ବଳ
ରାମ ରଖିଛନ୍ତି ଦେହରେ ଧରି ?"
ସେଠି ଯେତେ ଥିଲେ ଦେଖିଲେ ଯୋଦ୍ଧା
କହିଲେ, "ଅସୁର ଏଥର ମଲା,
କେଉଁ ସାହସରେ ମାଡ଼ି ଆସିଥିଲା
ରାମ କୃଷ୍ଣଙ୍କୁ କ ଚହ୍ନି ନ ଥିଲା !
ମଥୁରା ସୀମା ତୁ ମାଡ଼ିବୁ ନାହିଁ ରେ
ଆସିଲେ ନିଶ୍ଚୟ ହେବ ମରଣ,
ଜାଣି ଶୁଣି କରି ଗଲୁ ତ ଏଥର
ମରଣକୁ କର ନାହିଁ ବରଣ ।"
ଭାଇଙ୍କୁ କହିଲେ, "ମାରନା ମାରନା !
ତାହାଠାରେ ଅଛୁ ବହୁତ କାମ,
ତୁମ ମୋର ହାତେ ମରିବ ନାହିଁ ସେ
ବେନ କାଳ ହେଲ ମାରିବ ଭୀମ ।"

ଉଦ୍‌ବେଗିତ କଂଶ ଦେଖନ୍ତି ଶ୍ରୀକୃଷ୍ଣ
ଅଦୃଷ୍ଟ ତାଙ୍କର ହୁଅଇ ଦୃଷ୍ଟ,
ସଭିଙ୍କ ମରଣ .ଜାଣିପାରନ୍ତି ସେ
ଜାଣନ୍ତି କେବେ ମରିବେ ଦୁଷ୍ଟ ?
କିଏ କହେ ତେବେ ଅଦୃଷ୍ଟ ଅନ୍ଧାରେ
ସେ ଅନ୍ଧାରେ ଜଳେ ନାହିଁ ଆଲୁଅ,
ଅଜଣା ଅଦେଖା ଦେଖନ୍ତି ଶ୍ରୀକୃଷ୍ଣ
ଆମ ଅଖି ପରି ତାଙ୍କର ନୁହଁ ।
ତାଙ୍କ ରୂପ ବିଶ୍ୱ ତାଙ୍କ ଆଖି ବିଶ୍ୱ
ଭିତର ବାହାର ସବୁ ତ ବିଶ୍ୱ,
ତୁଣ୍ଡଟା ଭିତରେ ଦେଖିଲେ ଯଶୋଦା
ସମର କ୍ଷେତ୍ରରେ ଦେଖିବେ ଭୀଷ୍ମ ।
ତାଙ୍କ ପ୍ରିୟ ଯେତେ ଦେଖିବେ ସେ ରୂପ
କାହାକୁ ଡରାଇ କରିବେ ବଶ,
କାହାକୁ ମୋହିବେ କାହାକୁ କୋପିବେ
ସବୁଠି ତାଙ୍କର ସର୍ବଦା ଯଶ ।
ସବୁ ଗୋପୀ ପାଶେ ଜଣେ ଜଣେ କୃଷ୍ଣ
କୁଞ୍ଜେ କୁଞ୍ଜେ ପୁଣି ଏକା ସେ ଜଣେ,
କେହି ଜାଣେ ନାହିଁ କେତେ ଜଣ କୃଷ୍ଣ
ସଭିଏଁ ମଣନ୍ତି ଏକା ତା ସନେ ।
ନଭ ମଣ୍ଡଳରେ ତାଙ୍କର ବିକାଶ
ସାଗର ସଲିଳେ ବସନ୍ତି ସିଏ,
ରବି ଶଶୀ ତାରା ଅନଳ ପାଷାଣେ
ନାହାନ୍ତି ବୋଲି ବା କହିବ କିଏ ?
ଜଡ଼େ ଓ ଅଜଡ଼େ ସ୍ଥାବର ଜଙ୍ଗମେ
ଶୂନ୍ୟରେ ପୂର୍ଣ୍ଣରେ ଅଛନ୍ତି ପୂରି,
ତାହା ନ ହୋଇଲେ ଜଡ଼ ପରମାଣୁ *
ସ୍ପନ୍ଦିତ ହୁଅନ୍ତା ଅବା କିପରି ?

---

* ଜଡ଼ ପଦାର୍ଥ ମଧ୍ୟ ପରମାଣୁ ହେଲେ କମ୍ପେ ।

ପରମାଣୁ ବେଗ ସହଜେ ତ କ୍ଷିପ୍ର
ହୁଏ ସମଧିକ ବାଢ଼ଲେ ତାତ,
ଆଲୁଅ ଶବଦ- ଠାରୁ କ୍ଷିପ୍ରତର
କୋଉ ଯନ୍ତ୍ର ତାକୁ ପାରେନା ମାପି ।
ଶ୍ରୀକୃଷ୍ଣ ସେପରି ସତତ ଚଞ୍ଚଳ
ସ୍ପନ୍ଦିତ ସ୍ଫୁରିତ ସବୁଠି ସିଏ,
ଅଦୃଷ୍ଟ ତାଙ୍କର ପାଖେ ଦୂରେ ଅଛୁ
ଏହି କଥାଟିକୁ ଜାଣିଛୁ ପିଏ ।
ଶ୍ରୀକୃଷ୍ଣଙ୍କୁ କ'ଣ କହିବ ମଣିଷ
ତାଙ୍କୁ ଯେ ଭକତ କରିବ ନାହିଁ,
ମାୟାରେ ଭୁଲିବ ଅନ୍ଧ ବିଶ୍ୱାସକୁ
ନାସ୍ତିକ କଥାକୁ ବସିବ ଗୁହିଁ ?
ଅବତାର-ବାଦ କଥାଟା କଅଣ
ବୁଝଇ ତା ବିଶ୍ୱରୂପ ଲକ୍ଷଣ,
ସୂକ୍ଷ୍ମ ପରମାଣୁ କ୍ରମେ ବଢ଼ି ବଢ଼ି
ହୋଇ ନାହିଁ ବ୍ରହ୍ମାଣ୍ଡର ସୃଜନ ?
ପୁଣି ସ୍ଥୂଳ ଦେହ ସଢ଼ି ପଚି ପୋଡ଼ି
ହୁଏ ପରମାଣୁ ବୁଝଇ ଝର,
ଜୀଏ ଭବେ ଚର ସେହି ତ ଅଚର
କେବଳ ବଦଳିଯାଏ ଶରୀର ।
ବେତାର ଯନ୍ତ୍ରରେ କ ଲୋଡ଼ା ତାଙ୍କର
ସତାର ବେତାର ଯନ୍ତ୍ର ତ ନିଜେ,
ଶୂନ୍ୟରେ ପୃଥ୍ୱୀରେ ସୂକ୍ଷ୍ମ ସ୍ଥୂଳରୂପେ
ସବୁଠି ତ କରିଅଛନ୍ତି ବିଜେ ।
କୁନ୍ତୀ ହସ୍ତୀନାରେ ଡାକିବା କଥାଟା
ମଥୁରାରେ କୃଷ୍ଣ ଜାଣିବେ କାହିଁ ?
ଜଗଦଳଟାକୁ ସଂହାରିବ ଭୀମ
ଏହି ଅଦୃଷ୍ଟକୁ ଦେଖିବା ପାଇଁ ।

ତାଙ୍କ ପକ୍ଷେ ହେବ  ଏହା ଅସମ୍ଭବ
    ଆଉ କିଏ ତେବେ କରିବ ପାରି ?
ଦର୍ଶନ ବିଜ୍ଞାନ  କାଳେ କାଳେ ଲାଗି
    ନ ପାରି ଏତିକ ଚଲେଣି ହାରି ।
ଗୁଞ୍ଜିଦେଲେ ରାମ  କୃଷ୍ଣ ଚୁଟି ଧରି
    ଉପହାସ କରି ଦେଲେ ହଲାଇ,
ସେହିତକରେ ତ  କଳନେଲା ବଳ
    ଏକମୁହାଁ ହୋଇ ଗଲା ପଳାଇ ।
ଯାଦବ ଯାଦବୀ  ମଥୁରା ନଗରୀ
    ହସିଲେ ଖୁସିରେ ନାହିଁ ବିଷାଦ,
କଂସ ମରିଥିଲା  ଜରାସନ୍ଧ ଗଲା
    ତୁଟିଗଲା ସବୁ ବାଦବିବାଦ ।
ରଣଗୋଳେ ହାରି  ଜରାସନ୍ଧ ଲାଜେ
    ସରମେ ନୁଆଁଇ ନିଜ ବଦନ,
ଭାବିଲା ମନରେ  ଯିବ ନାହିଁ ଘରେ
    ବଣରେ ବିତାଇ ଦେବ ଜୀବନ ।
ବାଟରେ ଭେଟିଲେ  ବନ୍ଧୁ ପରିଜନ
    ବୁଝାଇ ସୁଝାଇ କହିଲେ ତାକୁ,
"ଯୁଦ୍ଧେ ଜୟ ପରା-  ଜୟ ଅଛି ଦୁଇ
    ବଡ଼ ସାନ ବୋଲି କହିବ କା'କୁ ?
ଫେରିଚାଲ ରାଜ୍ୟ  କର ହେ ରାଜୁତି
    ଆହୁରି ସାଜିବା ନୂତନ ସେନା,
ଦେଖିବା ଯାଦବେ  ଯିବେ କେଉଁ ବାଟେ
    ଆମ ଅନୁରୋଧ କରନ୍ତୁ ଘେନା ।
ରଜା ଥିଲେ ସେନା  ବହୁତ ମିଳିବେ
    ଜୟ ପରାଜୟ ହୁଏ ବଦଳ,
ଥରେ ହାରିଗଲେ  ବୋଲି କିଆଁ ତେବେ
    ବରଜି ବସିବା ମନର ବଳ ?

ବାହୁବଳଠାରୁ ମନବଳ ବେଶୀ
ବଳସ୍ବାର ବୋଲ ଅଛୁ ପ୍ରମାଣ,
ମନ ଭାଙ୍ଗିଗଲେ ବଳ ତୁଟିଯାଏ
ଏ କଥାଟା କ'ଣ ତୁମେ ନ ଜାଣ ?
ମନକୁ ଟାଣୁଆ କରିବା ପାଇଁକ
ବାଜା ବାଜାଦାର ହୁଅଇ ଲୋଡ଼ା,
ସମର ଭୂଇଁରେ ବାଜା ନ ବାଜିଲେ
ମାତିବେ କି ସୈନ୍ୟ ନାଚିବେ ଘୋଡ଼ା !
ମନ ଦମ୍ଭ କରି ଫେରି ନଗରକୁ
ହତାଶା ତୁଟାଇ ସାହସ ଧରି,
କର ଆୟୋଜନ ସମର କରିବା
ମଥୁରାକୁ ଦେବା ପାଉଁଶ କରି ।
କୃଷ୍ଣ ବଳରାମ ରଖିବେ ମଥୁରା
ନିଜକୁ ପହିଲେ ରଖନ୍ତୁ ଦେଖି,
ତାଙ୍କ କପାଳରେ ଅକାଳ ମରଣ
ବିହି ତ ଆଗରୁ ରଖିଛୁ ଲେଖି ।"
ବୁଝିଗଲା ମନ ଫେରିଲା ଘରକୁ
ଆୟୋଜନ କଲା ଯୁଝିବା ଲାଗି,
ଉଗ୍ରସେନ ରାମ ଶ୍ରୀକୃଷ୍ଣ ଯାଦବ
ସଭିଙ୍କ ଉପରେ ଥିଲା ତ ରାଗି ।
କରିଲା ଦୁରୁହ ପ୍ରତିଜ୍ଞା ଏଥର
ନ ଛାଡ଼ିବା ଯାଏ ଶ୍ରୀକୃଷ୍ଣ ରାମ,
ଥର ଥର କରି ଯେତେ ଥର ଲୋଡ଼ା
କରି ଯାଉଥିବ ଭୀମ ସଂଗ୍ରାମ ।
ସମର-ବିଜୟୀ ଦୁଇ ଭାଇଯାକ
ଯାଦବ ଗହଣେ ଫେରିଲେ ଘରେ,
ବାଜିଲା ବାଇଦ ଶଙ୍ଖ ଓ ମହୁରୀ
ଶୁକଳ କେତନ ଉଡ଼ିଲା ଖରେ ।

ବୁଢ଼ ବୁଢ଼ ଆସୁ- ଥିଲା ସଜ ସଂଜ
ଧୂସର ଦଗରେ ଅଞ୍ଜନ ବୋଳି,
ଶୁକ ତାରା ତେଣେ ଉଇଁ ଆସୁଥିଲା
ଆକାଶ ଘପାଳ ଗେନେ ତୋଳି ।
ଅସ୍ତାଚଳ ଚୂଳ ଲୁଚୁଇଛି ମୁହଁ
ଗଗନେ ପଡ଼ୁଛି ପରଦା କଳା,
ସଂଜ ପଛେ ପଛେ କୋଉଠେଇ ଥିଲା
ଅନ୍ଧାର ଆସିଲା ଘେରିଲା ଧରା ।
ଚଞ୍ଚଳ ଚଞ୍ଚଳ ଖୁଲ ରେ ପାଇକେ
ଥକା ଚରଣକୁ ଆସ୍ତେ ରଖି,
ଖାଲ ଢିପ କେତେ ବାଟରେ ଅଛି ରେ
ବାଟ ହୁଡ଼ ନାହିଁ ଅସ ସଳଖି ।
ରଥ ଥିର କର ଚଳା ରେ ସାରଥି
ଘୋଡ଼ା ଥକଛନ୍ତି ନାହାନ୍ତି ଖାଇ,
ରଥୀ ରଥ ପରେ ଢୁଳାଇ ପଡ଼ୁଛି
ହାଲିଆ ହୋଇ ସେ ମାରଇ ହାଇ ।
ଧୋଇଧାଇ ଦିଅ ଦେହରୁ ମଇଳା
ଫିଟାଇ ପକା ରେ ସମର ବେଶ,
ଯୁଦ୍ଧ ଜିଣି କରି ଫେରୁଛ ଘରକୁ
ମାରିଛ ବଇରି ରଖିଛ ଦେଶ ।
ଦେଶ ତ ନୁହଇ ତୁମ ଜନମାରେ
ଜନମମାଟିର ରଖିଥା ଟେକ,
ନିଅ ଶହେ ଥର ଶପଥ ରେ ଏରେ
ଯୁଦ୍ଧ ଜିଣିବାକୁ ନେବ ରେ ଭେକ ।
ଯୁଦ୍ଧ ଅବସାଦ ଧୁଆଇ ଦିଅ ରେ
ହାତହତିଆର ସାଇତି ଦିଅ,
ମଥୁରାବାସିଏ ଆସ ଆସ ସବୁ
କୃଷ୍ଣ ବଳରାମେ ବନ୍ଦାଇ ନିଅ ।

ହସ ଗୋ ମଲ୍ଲିକେ ହସ କୁମୁଦିନୀ
ତୁମର ସରିଛି ଦୁଃଖର ଦିନ,
କୃଷ୍ଣ ଆସିଲେଣି ରାମଙ୍କ ସଙ୍ଗରେ
କର ନାହିଁ ଆଉ ମୁହଁ ମଳିନ ।
ଗାଅ ଆବାହନୀ ନୀରବେ ନୀରବେ
ପବନେ ସୌରଭ ଭସାଇ ଦିଅ,
ରଜନୀକୁ କହ ହସୁ ତୁମ ପରି
ସଭିଙ୍କୁ ହସରେ ମତାଇ ଦିଅ ।
ଦେଖ ଗୋ ଯାଦବୀ ମନ ପୂରା କରି
ଯୋଉ ନୟନରେ ଦେଖିଲେ ଗୋପୀ,
ଗୃଖ ଗୋ ଅଧରୁ ସୁଧାଧାର ସମ
ବଚନ ମାଧୁରୀ ପଡ଼ୁଛି ଥୋପି ।
ଜୟ ଉଲ୍ଲାସରେ ବଦନ ଦିଶୁଛି
ସଜ ସରସିଜ ହସୁଛି ସତେ,
ଏ ସୁନ୍ଦର କାନ୍ତ ମଦନ ମୂରତି
କୋଉଠୁ ଆସିଲ୍ କଆଁ ଏ ମର୍ତ୍ତ୍ୟେ ?
ସମର ଗୋଳରେ ବେଶଭୂଷାସବୁ
ଫିଟିଫାଟି ଯାଇ ପଡ଼ୁଛି ଖସି,
ତଥାପି ଏ ବେଶ ଦେଖିଲେ କାହିଁକି
ମନକୁ ତ ମନ ଯାଉଛି ରସି ।
ଶାନ୍ତ ନିଶୀଥରେ କ୍ଲାନ୍ତ ଦୃଢ ବୀରେ
ସୁନିଦ୍ରା ଭୁଂଜରେ ସୁଖ ତଳପେ,
ସପନକୁ ଆଉ ପୂରାଇ ଦିଅନା
ପାଖକୁ ଆସିଲେ କୋଟି କଳପେ ।
ଅଳପ ଟିକିଏ ଫାଙ୍କ ପାଇଲେ ରେ
ପଶିଯିବ ସିଏ ଭାଙ୍ଗିବ ହୃଟ,
କେତେ ମତେ ଛଳ ଭଳାଇ ଦେଇ ରେ
ଦେଖାଇବ କେତେ ରୂପ ଅ ରୂପ ।

ଚମ୍ପଲେଖା ପରି ଭୂଲଇବ ଚଳେ
ଅଲକ୍ଷ୍ୟେ ମୋହିବ ତୁମର ମନ,
ନଦ ଛୁଟିଗଲେ ଦେଖାଇ ଦେବ ସେ
କିଛି ନାହିଁ କାହିଁ କେବଳ ଶୂନ ।
କେତେବେଳେ ହେଲେ ମଥୁରା ନଗ୍ରିନ୍ତ
ରକ୍ତ ପାରଲ୍ଳନ ଲଗଇ ଯୁଦ୍ଧ,
କଂସ ରମଣୀଙ୍କ କାନ୍ଦ ଶୁଣି ଶୁଣି
ଜରାସନ୍ଧ ସବୁବେଳେ ବକ୍ଷୁବ୍ଧ ।
ତା ସାଙ୍ଗକୁ ପୁଣି ତାର ଦରିଜସ୍ବ
ସମର ଗୋଳରେ ଥରକୁ ଥର,
ଜଳନ୍ତା ନିଆଁରେ କୁଟା ପକାଉଛି
ଜଳାଇବା ପାଇଁ ପ୍ରଖରତର ।
ପ୍ରତିଜ୍ଞା କରଛି ରାମ କୃଷ୍ଣଙ୍କୁ ସେ
ଜିଣିବା ପାଇଁକି ସମର କରି,
ମଥୁରାପୁରକୁ ଯାଦବଙ୍କ ସହ
ପାଉଁଶ କରଣ ଦେବାକୁ ଦଳି ।
ପଶାରେ ହାରଲେ ଯୁଦ୍ଧରେ ହାରଲେ
ବଢ଼ିଯାଏ ଖେଳ ସମର-ନଶା,
ନଶା ନୁହ ସେ ତ ମାରବା ମରିବା
ପାଇଁକି କେବଳ ପ୍ରବଳ ହିଂସା ।
ତେଣୁ ତାର ମନ ଥଣ୍ଡା ପଡ଼ୁ ନାହିଁ
ସବୁବେଳେ ତାର ମନରେ ଚଟ,
ସମର ରଙ୍ଗରେ ଦେଉଁପରି ହେଉ
ରାମ କୃଷ୍ଣଙ୍କୁ ସେ ମାରିବ ଅ.ଗ ।
ଥର ଅର କରି ସତର ଥର ସେ
ମଥୁରାପୁରକୁ ବେଢ଼ିଲା ଆସି,
କୃଷ୍ଣ ତେଜ ପାଇ ଯାଦବ ସଇନ
ତାର ସବୁ ବଳ ଦେଲେଣି ନାଶି ।

ଯେତେ ଥର ଆସେ    ହାରେ ସେତେ ଥର
ବାହୁଡ଼ ପଳାଏ ତାହାର ଦେଶେ,
ପୁଣି ସେନା ସାଜ    ଆସଇ ଗରଜ
ମଥୁରା ଜିଣିବ ସମର ବେଶେ ।
ଅଠର ଥରକୁ    ସଜ ହେଲାବେଳେ
ନାରଦ ସବାରେ ପାଞ୍ଚିଲେ ମନେ,
କାଳ-ଯବନକୁ    ମରାଇ ନ ଦେଲେ
ଶାନ୍ତ ରହିବନି ତିନି ଭୁବନେ ।
ନ୍ୟାୟର ପାଇଁକି    ଧରମ ପାଇଁକି
ଋଷିଏ ବି ସବୁ କରନ୍ତି ହିଂସା,
ଅନ୍ତରେ ସତରେ    ଲୁଚି ନ ଥାଏ କି
ଅନ୍ୟାୟ ବିପକ୍ଷେ ପ୍ରବଳ ଈର୍ଷା ?
ନାରଦଙ୍କ ପରି    ସତ୍ୟପ୍ରିୟ ଋଷି
ତିନି ଭୁବନରେ ଦ୍ୱିତୀୟ କାହିଁ ?
ସବୁ ସତ କହି    ଅପ୍ରିୟ ନୁହନ୍ତି
କୋଉଠି କେହି ତ ବାରେ ନାହିଁ ।
ଦେବତା ରାକ୍ଷସ    ନର ଆଦି କରି
ସବୁ ଏକା ପରି କରନ୍ତି ଭକ୍ତି,
ସତ କହିବା ତ    ଧରମ ତାଙ୍କର
ସତରେ ତାଙ୍କର ଥାଏ ତ ମତି ।
ସତ ସବୁବେଳେ    ପ୍ରିୟ ସଭିଙ୍କର
ସତ ବା କାହିଁକି ହେବ ଅପ୍ରିୟ,
କଳହା ମିଛୁଆ    ଚୁଗୁଲିଆ ଖାଲି
ସତରେ ମିଶାନ୍ତି ମିଛର ଖିଅ ।
ସତକୁ ଅପ୍ରିୟ    ବୋଲି ଯେ କହନ୍ତି
ନିତି କହୁଥାନ୍ତି ଶହେ ଅସତ୍ୟ,
ତାଙ୍କର କଥାରୁ    ସତ କିବା ମିଛ
କୋଉଠି କେବେହେଁ ମିଳେନା ତଥ୍ୟ ।

ସ୍ୱୈରଣୀକୁ ସ୍ୱୈର ବୋଲି କହିଦେଲେ
ଅଭିମାନେ କିଆଁ ହୁଏ କୁପିତ,
ସାଧ୍ୱୀଟିକୁ ସାଧ୍ୱୀ ବୋଲି କହିଲେ ତ
ଭଲେ ହେଲେ ହୁଏ ନାହିଁ ଦୁଃଖିତ ।
ଏଇଥିପାଇଁକି ସତ୍ୟର ଆଗରେ
ଲଗାଇ ଦିଅନ୍ତି ଅପ୍ରିୟ ଶବ୍ଦ,
ସତ କହିବାକୁ ସତ ଶୁଣିବାକୁ
ତେଣୁ କି ମିଛୁଆ ହୁଅଇ କ୍ଷୁବ୍ଧ ?
ମିଛ କହିବାକୁ ଶାସ୍ତ୍ର ପୁରାଣରେ
ସବୁ କାଳେ ପରା ହୋଇଛି ମନା,
ମିଛ କହିବାର ଆଗରୁ ଥରୁଟେ
ଆଗକୁ ପଛକୁ ସମସ୍ତେ ଅନା ।
ଏତିକି ବେଳରେ କହିବ ଯବନେ
ଶ୍ରୀକୃଷ୍ଣଙ୍କ ସଙ୍ଗେ ଲଢ଼ୁ ସେ ଯାଇ,
ସବୁବେଳେ ସେ ତ ବୀର ଖୋଜୁଥାଏ
କୋଉଠି ଗୋଟିଏ ମିଳଇ ନାହିଁ ।
ନାରଦଙ୍କର ଏ ନ୍ୟାୟ ହୋଇଛି କି
ଜରାସନ୍ଧ ଯେବେ ଆସୁଛି ରାଗି,
ସେତିକି ବେଳରେ ପଠାଇ ଦେଲେ ସେ
କାଳ-ଯବନକୁ ଲଢ଼ିବା ଲାଗି ?
ନାରଦ ଜାଣନ୍ତି ଯିଏ ଯେତେବେଳେ
ଯୋଉଠି ଯା' ହାତେ ହୋଇବ ନାଶ,
ବିଶେଷେ ଜାଣନ୍ତି ଶ୍ରୀକୃଷ୍ଣଙ୍କ ବୁଦ୍ଧି
ତାଙ୍କର ଶକତି ତାଙ୍କ ସାହସ ।
ଏଇତକ ପାଇଁ ଢେଙ୍କିଟିଏ ଚଢ଼ି
ଓହ୍ଲାଇ ଆସିଲେ ସରଗପୁରୁ,
ତାର ରାଜଧାନୀ ଯମୁନା କୂଳରେ
ସୁନ୍ଦର ଦିଶୁଛି ଦେଖିଲେ ଦୂରୁ ।

କାଳ-ଯବନର ଲାଗିଅଛି ସଭା
ଯବନ ବସିଛି ସିଂହ ଆସନେ,
ସୁନା ସିଂହ ଦି'ଟା ଏ ପାଖେ ସେ ପାଖେ
ଚାହିଁ ବସିଛନ୍ତି ହିଂସ୍ର ନୟନେ ।
ଆଖି ଗୁଳଟାରେ ଗେଞ୍ଜା ହୋଇଅଛି
ଆରକ୍ତ କାଚର ପିଙ୍ଗଳ ଡୋଳା,
ତହିଁର ଉପରେ ଚକା ଚକା ହୋଇ
ବୋଳା ହୋଇଅଛି ଦି'ଟୋପା କଳା ।
କେତେଗୁଡ଼ାକ କାନ୍ଧର ଉପରୁ
ଓହଳ ପଡ଼ୁଛି ବେକ ଉପରେ,
ସରୁ ଲଞ୍ଜ ଦି'ଟା ଲେଗୁଇ ହୋଇଣ
ଅଛି ପଛ ଗୋଡ଼ ପେଟ ତଳରେ ।
ତାଙ୍କର ପିଠିରେ ଗଡ଼ା ହୋଇଅଛି
ଅଷ୍ଟ ରତନର ଆସନଟିଏ,
ସୁନା ରୂପା ଜରି ଗୁନ୍ଥା ଗାଲିଚାଏ
ପଡ଼ିଛି ଉଜ୍ଜ୍ୱଳ ଦିଶୁଛି ସିଏ ।
ଯବନ ବସିଛି ତାହାର ଉପରେ
ଚକା ଆସନଟେ ପକାଇ ଦେଇ,
ପ୍ରଜାଏ ଭେଟନ୍ତି ଦଳ ଦଳ ହୋଇ
ନାନା ଭେଟିଦ୍ରବ୍ୟ ହାତରେ ନେଇ ।
ବେନ ପାଖେ ବେନ ଖଟଣି ଖଟନ୍ତି
ବଡ଼ ବଡ଼ ପଙ୍ଖା ଧରଣ କରେ,
ଧୀର ଧୀର କରି ଚଳାନ୍ତି ବ୍ୟଜନ
ପବନ ବାଜଇ ରଜା ଦେହରେ ।
ହଲଇ ପୋଷାକ ହଲିଯାଏ ଜରି
ତହିଁରେ ପଡ଼ଇ ଢଙ୍ଗୋର ଛାଇ,
ପଛରେ ଦି'ଜଣ ଶୁକଳ ଚାମର
ରାଜଶିରେ ଦେଉଥାନ୍ତି ହଲାଇ ।

ଆଗରେ ପଛରେ ସ୍ୱଚ୍ଛ ଦରପଣ
ଜାନ୍ଥରେ କାନ୍ଥରେ ହୋଇଛି ଟଙ୍ଗା,
କାଚ ଦରପଣ ନୁହଇ ତ ସିଏ
ଶରତ ସାଗର ଗରବ ଭଙ୍ଗା ।
ସାଗରେ ପଡ଼ଇ ରବି ଶଶୀ ତାରା
ଜ୍ୟୋତିଷ୍କମଣ୍ଡଳୀ ଉଜ୍ଜ୍ୱଳ ଛବି,
ଏଥିରେ ଦିଶୁଛି ମଣିମାଣିକ୍ୟର
ଶଶୀ ତାରା ଆଉ କୃତ୍ରିମ ରବି ।
ପାତ୍ର ମନ୍ତ୍ରୀ ସବୁ ହାତଯୋଡ଼ି କରି
ବସିଅଛନ୍ତି କେଏ କେଏ ବା ଠିଆ,
ସକଳେ ରାକ୍ଷସ ରୂପ ଭୟଙ୍କର
ସକଳେ ରକତ ମାଉଁସଖିଆ ।
ଏତିକି ବେଳରେ ନାରଦ ମିଳିଲେ
ରାକ୍ଷସେ ଉଠିଲେ ଆସନ ଛାଡ଼ି,
ଠିଆ ହୋଇଗଲେ ହାତଯୋଡ଼ି କରି
ନମସ୍କାର କଲେ ଧାଡ଼ିକି ଧାଡ଼ି ।
ଯବନ ଆସନୁ ଆସି ଅବତରି
ବନ୍ଦିଲା ଚରଣ କଲା ବିନୟ,
କହିଲା, "ମୋହର କେଡ଼େ ସଉଭାଗ୍ୟ
ଦେବର୍ଷି ମୋ ପୁରେ ହେଲେ ଉଦୟ ।;
ରାଜ୍ୟ ଘର ମୋର ହୋଇଲା ପବିତ୍ର
ପଡ଼ି ଋଷିଙ୍କର ଚରଣଧୂଳି,
କହ ଆଗେ ପ୍ରଭୁ କେଉଁ ଉଦ୍ଦେଶ୍ୟରେ
କେଉଁ ଆଡ଼ୁ ସବୁ ଆସିଲେ ବୁଲି ?
ଦେବତାଏ ସବୁ କି ପାଞ୍ଚ କରନ୍ତି
ମୋର ସଙ୍ଗେ କ'ଣ କରିବେ କଳି,
କହିବେ ତାହାଙ୍କୁ ହୁସିଆର ଥିବେ
ସମରେ କି ମୋତେ ପାରିବେ ବଳି ?

ଖୋଜୁଛି ମୁଁ ବୀର ଲଢ଼ିବା ପାଇଁକି
ଜଣେ ହେଲେ କାହିଁ ମିଳୁ ତ ନାହିଁ,
ସବୁଠି ଯାଆନ୍ତି ସବୁଠା ଦେଖନ୍ତି
କହିବେ କି ଦେଖି ଅଛନ୍ତି କାହିଁ ?"
ନାରଦ ସ୍ୱଗତେ ହସିଲେ ଟିକିଏ
ଭାବିଲେ ରାକ୍ଷସ ମରିବା ପାଇଁ,
ଖୋଜିଲାଣି ନିଜେ 'ଆସିଛି ତ ଖାଲି
ସେଇଥିପାଇଁ ମୁଁ ଦିଏ ବତାଇ ।
କହିଲେ, "ସ୍ୱର୍ଗେ ଦେବତାଗୁଡ଼ାକ
କି ପାଞ୍ଚ ପାଞ୍ଚିବେ ଡରନ୍ତି ଭାରି,
ତୁମ ବହୁଦ୍ଧରେ ଲଢ଼ିବା ପାଇଁକି
ସାହସ ଶକତି ନାହିଁ କାହାରି ।
ତେବେ ଜଣେ ଅଛି ପାଖେ, ମଥୁରାରେ
ଟଜା ଭେଣ୍ଡିଆ ସେ ସୁନ୍ଦର ଭାରି,
ଲଢ଼ି ଜାଣଇ ସେ କେତେ କେତେ ବୀର
ମଲେଣି ତା ହାତେ ଗଲେଣି ହାରି ।
ଯମୁନା ପାଣିକି ଦେଖ ତ ଅନାଇଁ
ଏହିପରି ତାର ସୁନ୍ଦର ରଙ୍ଗ,
ପୁଣି ଦେଖ ନୀଳ- ଗଗନକୁ ଗୁହାଁ
ସେହିପରି ତାର ସୁନୀଳ ଅଙ୍ଗ ।
ଶିରେ ଶିଖୀପୁଚ୍ଛ, କାଇଁଚର ମାଳ
ବେକେ ଫୁଲହାର ଭାରି ସୁନ୍ଦର,
ଗ୍ରୀବରେ ଶ୍ରୀବତ୍ସ ବ୍ରାହ୍ମଣର ପାଦ
ବକ୍ଷେ କଉସ୍ତୁଭ କାନେ କୁଣ୍ଡଳ ।
ଏଗୁଡ଼ାକ ସବୁ ଶରତ ଗଗନେ
ରବି ଶଶୀ ତାରା ପରାୟେ ଶୋଭେ,
ଯିଏ ଦେଖେ ତାକୁ ସେନେହ କରଇ
କୋଳ କରିବାକୁ ବସଇ ଲୋଭେ ।

ମୟୂର ଚନ୍ଦ୍ରିକା ତା ମାଳ କୁନ୍ତଳେ
ପଡ଼ିଯାଏ ଯେବେ କଅଁଳ ଖରା,
ସତ ଇନ୍ଦ୍ରଧନୁ ଉଦୟ ହୋଇଣ
ତାର ଶିରଦେଶେ ଖେଳଇ ପରା !
ରମଣୀ ଦେଖିଲେ ବାୟାଣୀ ହୁଅନ୍ତି
ଯୁବତୀ ଦେଖିଲେ କରନ୍ତି ଲୋଭ,
ପତି ପୁତ୍ର ଭୁଲି ଖୋଜନ୍ତି ତାହାକୁ
ନ ପାଇଲେ ମନେ କରନ୍ତି କ୍ଷୋଭ ।
ଦେଖୁଛ ମୁଁ ଋଷି ସଂସାର-ବିରାଗୀ
ତାକୁ ଦେଖି ଲୋଭ ହୁଅଇ ମୋର,
ଘଡ଼ିଟାଏ ପାଇଁ ଦିନଟାଏ ପାଇଁ
ତାକୁ ନେଇ ଢ଼େହେଲେ କରନ୍ତି ଘର ।
ଯୋଦ୍ଧାଏ ଦେଖିଲେ ଖୋଜନ୍ତି ସଂଗ୍ରାମ
ପୁଣି କଏ ଇଚ୍ଛେ କରିବ ଗେଲ,
କଏ ଦେଖୁଁ ଦେଖୁଁ ଗୁଏଁ ମରିଯାଏ
କଏ ବା ତା ସଙ୍ଗେ ଖେଳଇ ଖେଳ ।
ଏତିକ ଲକ୍ଷଣ ଅଛି ତାହାଠାରେ
ଲଢ଼ିବାକୁ ଇଚ୍ଛା କରୁଛ ରଜା ?
ଯାଅ ଏଇନାଏଁ ଉଛୁର କରନା
ଥରେ ଲଢ଼ିକରି ବୁଝ ତା ମଜା ।
ସବୁବେଳେ ମୁହେଁ ହସ ଲାଗିଅଛି
କାହାରି ସଙ୍ଗରେ କରେନା କଳି,
ତେବେ ଯିଏ ଡାକେ ଯୁଦ୍ଧ କରିବାକୁ
ଡରିଯାଏ ନାହିଁ ପକାଏ ଧରି ।
ଦୁଧ ଦହି ଖାଇ ହୋଇଛି ବଳୁଆ
ଆହୁରି ସୁନ୍ଦର ସରସ ଭାରି,
କାହାରି ପାଖରେ କାହିଁ କେତେବେଳେ
ବୁଦ୍ଧ ରେ ବଳରେ ଯାଏନା ହାରି ।

ମୁଁ ଜାଣେ ସେ ଏକା    ତିନି ଭୁବନରେ
ଲଢ଼ିବା ପାଇଁକି ଗୋଟାଏ ଭେଣ୍ଡା,
ଆଜି ଯେତେ ସବୁ    ଲଢ଼ୁଆ ଅଛନ୍ତି
ତା ଆଗରେ ଖାଲି ଛେଳି ଓ ମେଣ୍ଢା ।
କଂସ ହେଉ ନାହିଁ    କିଏ ସେ ଜିଣିବ
କିଏ ସେ ହାରିବ ଲଢ଼ାଇ କରି,
ତୁମେ ଯୋଉପରି    ସେ ବି ସେହିପରି
ଦୁହେଁଯାକ ଜଣେ ଜଣେ କେଶରୀ ।
ଆସ ଯିବା ତେବେ    ଚିହ୍ନାଇ ଦେବି ମୁଁ
ସେ ତ ସବୁବେଳେ ସବୁଠି ଥାଏ,
ନଈ କୂଳେ କୂଳେ    ବଣ ଉହାଡ଼ରେ
ବଂଶୀ ବଜାଇ ସଙ୍ଗୀତ ଗାଏ ।
ଏଇନାଏଁ ଆଜି    ଗୀତ ଗାଉ ନାହିଁ
ହସ ଖୁସି ନାହିଁ କେବଳ ଚିନ୍ତା,
ଭବିଷ୍ୟତ ପାଇଁ    କଅଣ ଭାବୁଛି
ଗୀତ ବାଜଣାକୁ କରିଛି ପିଠା ।
ଅଦୃଷ୍ଟକୁ ସିଏ    ଦେଖଇ କି ଆଜି
କାନଠାକୁ ନଖେ ଚିରି ବିଦାରି ?
କାଳ-ବକ୍ଷେ ଯେତେ    ଯାହା ଲେଖା ଅଛି
ଜାଣଇ ସେ ସବୁ ସତେ କିପରି ?
କୋଉ କଥାଟା ବା    ରହିଲା ଅଦେଖା
ସେଥିପାଇଁ ତାର ଏତିକି ଚେଷ୍ଟା,
ଖୋଜୁଛି କି ଆଜି    ଚକିତ ନୟନେ
କୋଉଠି ଲୁଚିଛି ସେହି ଲେଖାଟା ?"
ପବନ ହସିଲା    ଭାବିଲା ମନରେ
ନାରଦ ତ ମିଛ କହନ୍ତି ନାହିଁ,
ଯାଏଁ ତାଙ୍କ ସଙ୍ଗେ    ଦେଖେଁ ଥରେ ତାକୁ
କିଏ ସେହି ବୀର ଅଛି ସେ କାହିଁ ?

ନାରଦେ କହିଲେ, "ମହା ବଳୁଆ ସେ
ହେଉ ସେ ଦେବତା ଯିଏ ବା ହେଉ,
ମୁଁ ଲୋଡ଼େ ସମର, ଲଢ଼ୁଆ ସେ ଯେବେ
ଥରେ ବୀରପଣ ଦେଖାଇ ଦେଉ ।"
ନାରଦ ଚାଲିଲେ ଆଗରେ ଆଗରେ
ଯବନ ପଛରେ ଆୟୁଧ ଧରି,
ଯମୁନା ନଈର କୂଳେ କୂଳେ ଗଲେ
ମଥୁରା ଆଡ଼କୁ ନଜର କରି ।।
ଶ୍ରୀକୃଷ୍ଣ ଜାଣିଲେ ଯବନ ଆସୁଛି
ପୁଣି ସେନା ସାଜ ଆସୁଛି ଜରା,
ବଳରାମଙ୍କୁ ସେ କହିଲେ ଚୁପଚେ
"ଆଉ ରହିବ ପାରିବାନି ମଥୁରା ।
ଯାଉଛି ମୁଁ ନଗ- ପଦ ଥାନଟିଏ
ଖୋଜେଁ ରଖିବାକୁ ଧନ ଜୀବନ,
ଆପଣ ଇଆଡ଼େ ଯାଦବଙ୍କୁ ନେଇ
ଆଗୁଳୁଥାଆନ୍ତୁ ଜରା ସଇନ ।"
ଏତିକି କହି ସେ ଗଲେ ସେଇନାଏ
ବରୁଣ ପାଶକୁ କହିଲେ ତାଙ୍କୁ,
"ସାଗର ବକ୍ଷରେ ଦ୍ୱାଦଶ ଯୋଜନ
ଥାନଟିଏ ଛାଡ଼ିଦିଅ ଆମକୁ ।
ରହିବ ମୁଁ ସେଠି ଘରଦ୍ୱାର କରି
ମଥୁରାରେ ଆଉ ହେବନି ରହି,
ଥରି ଥରି କରି ଜରାସନ୍ଧ ଆସି
ମାରଧର କରେ ହେଉନି ସହି ।"
ବରୁଣ ଖୁସିରେ ସନମତ କଲା
ଜଗତନାଥଙ୍କୁ ଧରିବ ବକ୍ଷେ,
ଏଡ଼େ ସଉଭାଗ୍ୟ ଏଡ଼େ ଅନୁଗ୍ରହ
ଛାଡ଼ିବା ସମ୍ଭବ ହେବ ତା ପକ୍ଷେ ?

ଆରବ ସାଗର କ୍ଷୀର ସାଗର ଯେ
କେବେ ସେ ପ୍ରଶାନ୍ତ କେବେ କରାଳ,
ନାଚୁଥାଏ ତହିଁ ଦିବସ ରଜନୀ
ଲହ ଲହ ନୀଳ ଲହରୀମାଳ ।
ମାପି ହୁଏ ନାହିଁ ତାର ଗମ୍ଭୀରତା
ପାତାଳ ପରଶୀ ତାହାର ଗର୍ଭ,
ଆଗ୍ନେୟ ଭୂଧର ଧରଇ ଗରଭେ
ତେଣୁ ବେଳେ ବେଳେ ହୁଏ ପ୍ରଚଣ୍ଡ ।
ଭୂମିକମ୍ପ ହୁଏ ବାଡ଼ବ ଜଳଇ
ଦ୍ୱୀପକୁ ସରଜ ବୁଡ଼ାଏ କାହିଁ,
ରହସ୍ୟ ଦ୍ୱାରକା ସରଜ ଥିଲା ସେ
ଏଇନାଏଁ ଅଉ ଦ୍ୱାରକା ନାହିଁ ।
ବରୁଣ ଏ ଥାନ କରି ଦେଇଥିଲା
ପୁରାଣେ ଅମର ରହିଛି ଲେଖା,
ଶ୍ରୀକୃଷ୍ଣ ଦେବତା ବରୁଣ ଦେବତା
ଖୋଜଲେ ଲୋଡ଼ଲେ ଦିଅନ୍ତି ଦେଖା ।
ବିଶ୍ୱକରମାକୁ ସୁମରିଲେ କୃଷ୍ଣ
ସରଗ ବିହାଣି ଆସିଲା ତହିଁ,
ଓଲଗି ଶୋଇଲା ଯୁଗଳ ଚରଣେ
କଅଁଳ ବଚନ ବିନୟେ କହି ।
ପଚାରିଲା ପ୍ରଭୁ, "କାହିଁକି ଲୋଡ଼ିଲ
ଆଦେଶ ଦିଅନ୍ତୁ କରିବ ତାହା,
କାଳେ କାଳେ ପ୍ରଭୁ ଦାସକୁ ଖଟାଇ
କରମ କରାଇ ହୁଅନ୍ତି ସାହା ।"
ଶ୍ରୀକୃଷ୍ଣ କହିଲେ, "ଗଢ଼ି ଦିଅ ଏଠି
ଯତନ କରିଣ ନଗରଟିଏ,
ମଥୁରାରୁ ବଳ ସୁନ୍ଦର ହେବ ସେ
ସରଗର ସମ ଦିଶିବ ସିଏ ।

ଯାଦବ ଯାଦବୀ- ମାନଙ୍କର ସହ
ରହିବ ସଂସାର କରିବ ଏଠି,
ମଥୁରା ବରଜ ଆସିବ ମୁଁ ଶୀଘ୍ର
ରହି ହେବ ନାହିଁ କଦାପି ସେଠି ।”
ଏହିଅ ଭିତରେ କରି ଏତେ କାମ
ବାହୁଡ଼ି ଆସିଲେ ମଥୁରାପୁର,
ଦେଖିଲେ ଯବନ ମାଡ଼ି ଆସୁଅଛି
ମଥୁରାରେ ପଶି କରିବ ଜୁର ।
ଯୋଗମାୟାଙ୍କୁ ସେ ଡାକିଲେ ପାଖକୁ
କହିଲେ, “ଯାଦବ ଯାଦବୀ ସହ,
ମଥୁରାର ଯେତେ ଧନ ଦଉଲତ
ଏଇନାଏଁ ନେଇ ଦ୍ୱାରକା ଥୁଅ ।
କେହି ଜାଣିବେନ କରିବ ଏତକ
ଚଞ୍ଚଳ ଚଞ୍ଚଳ ସବୁ ସାରିବ,
ଯବନ ଆସୁଛି ସମର କରିବ
କାଳ ପୂରିଲାଣି ସିଏ ମରିବ ।
ତେଣୁ ଜରାସନ୍ଧ ଆସୁଛି ଗରଜି
ତାର ସେନାଯାକ ସବୁ ମାରିବି,
ଲୁଚି ଲୁଚି କରି ପଳାଇ ପଳାଇ
ରାମଙ୍କ ସହିତ ଦ୍ୱାରକା ଯିବି ।”
କୃଷ୍ଣଙ୍କ ଆଦେଶ ପାଳିଲେ ବରୁଣ
ଯୋଗମାୟା ପୁଣି ସ୍ୱର୍ଗ-ଵହ୍ନାଣି,
ଯେ ଯାହାର କାମ ସାରିଲେ ତୁରନ୍ତ
ରଚିଲେ ଦ୍ୱାରକା ରହସ୍ୟ ଜାଣି ।
ଦ୍ୱାରକା ବୋଲି ଯା ପୁରାଣେ ଲିଖିତ
ଆଜି ଗୁଜୁରାଟ ତାହାର ଅଂଶ,
ଅଧିକ ରହସ୍ୟ ହେଲା ଏହିଠାରେ
ବଢ଼ିଲେ ଯାଦବ ବୁଡ଼ିଲା ବଂଶ ।

ଏହି ଭବିଷ୍ୟତ ଜାଣିଲେ କି କୃଷ୍ଣ
ଏହି ଅଦୃଷ୍ଟକୁ ପାରିଲେ ଦେଖି,'
ତେଣୁ ମୁହଁ ତାଙ୍କ କୁଞ୍ଚିତ ହେଲା କି
କାମ କରି ତାହା ଦେବେ କି ଲେଖି ?
ଇକ୍ଷ୍ୱାକୁ ବଂଶରେ ମାନ୍ଧାତା ନାମରେ
ଥିଲେ ଜଣେ ରଜା ଧାର୍ମିକ ଭାରି,
ତାଙ୍କର ତନୟ ନାମ ମୁଚୁକୁନ୍ଦ
ସିଏ ବି ତାଙ୍କର ବାପଙ୍କ ପରି ।
ଭାରି ସାଧୁ ସନ୍ଥ ପୁଣି ବଳବାନ
ତାଙ୍କ ସମ କେହି ନ ଥିଲେ ବୀର,
ଦେବତାଏ ତେଣେ ଅସୁରଙ୍କ ପାଇଁ
ସରଗରେ ହେଉଥିଲେ ଅସ୍ଥିର ।
ସବୁ ଦେବତାଏ ମିଳାମିଶି କରି
ମୁଚୁକୁନ୍ଦ ପାଖେ କହିଲେ ଆସି,
"ଅସୁରଙ୍କ ଲାଗି ସୁଖରେ ଶାନ୍ତିରେ
ରହି ପାରୁ ନାହୁଁ ସରଗବାସୀ ।
ଦୟା କରି ଥରେ ଆସ ସରଗକୁ
ଅସୁରଙ୍କୁ ସବୁ ଦମନ କରି,
ରଖ ଦେବତାଙ୍କୁ ଟିକିଏ ଶାନ୍ତିରେ
ନ ହେଲେ ସକଳେ ଯିବେ ହେ ମରି ।
ଅମର କଥାଟା ହୋଇଯିବ ମିଛ
ଅମୃତର ଗୁଣ ରହିବ ନାହିଁ,
ସରଗଟା ହେବ ଦାନବ ରାଇଜ
କଏ ବା କାହିଁରେ ରହିବ କାହିଁ ?"
ମୁଚୁକୁନ୍ଦ ଶୁଣି ରହି ପାରିଲେନି
ସରଗବାସୀଙ୍କ ବିକଳ କାନ୍ଦ,
ଚାଲିଲେ ସ୍ୱର୍ଗକୁ ଦେବତାଙ୍କ ସଙ୍ଗେ
ଅସୁରଙ୍କ ସଙ୍ଗେ ହୋଇଲା ଦ୍ୱନ୍ଦ୍ୱ ।

ଯୁଦ୍ଧ କରୁ କରୁ ଗଲା ବହୁ ବର୍ଷ
ଶେଷରେ ଅସୁରେ ହୋଇଲେ ନାଶ,
ପଡ଼ିଲା ଏଥର ରଜାଙ୍କ ମନରେ
ପୁଅ ଭାରିଯା ସହ ଆପଣା ଦେଶ ।
ଚାହିଁଲେ ମନରେ ଫେରି ଆସିବାକୁ
କହିଲେ ବିନୟେ ଦେବଙ୍କୁ ଯାଇଁ,
"ଯାଉଛି ମୁଁ ଫେରି ନିଜ ରାଇଜକୁ
ବହୁ ଦିନ ଏଠି ଗଲାଣି ରହି ।"
ଦେବତାଏ ସବୁ କହିଲେ ଖେଦରେ
"ଏଠି ରହିଗଲ ବହୁତ ବର୍ଷ,
ଏହାର ଭିତରେ ତୁମ ପୁଅ ଭାରିଯା
ସଭିଙ୍କର ହେଲା ଆୟୁଷ ଶେଷ ।
ସେଠି ଆଉ କେହି ନାହାନ୍ତି ତୁମର
ନେଇ ଆମଠାରୁ ଇଚ୍ଛା ଯେ ବର,
ଖାଲି ଆମ ହାତେ ନାହିଁ ମୁକ୍ତି ଦେବା
ବିଷ୍ଣୁଙ୍କର ଏକା ସେ ଅଧିକାର ।"
ଯୁଦ୍ଧ ଶ୍ରମେ ଶ୍ରାନ୍ତ- କ୍ଳାନ୍ତ ମୁଚୁକୁନ୍ଦ
ଶୋଇବା ପାଇଁକି ମାଗିଲେ ବର,
ଆହୁରି ମାଗିଲେ "ଯେ ଭାଙ୍ଗିବ ନିଦ
ଚାହିଁଲେ ପୋଡ଼ିବ ତା କଳେବର ।"
ଦେବତାଏ ସବୁ ଅସ୍ତୁ ବୋଲି କହି
ସରଗେ ରହିଲେ ଯେ ଯାର ଘରେ,
ମୁଚୁକୁନ୍ଦ ମର୍ତ୍ତ୍ୟେ ଆସିଲେ ଓହ୍ଲାଇ
ଶୋଇଲେ ଅନ୍ଧାରେ ଗିରି-ଗହ୍ୱରେ ।
ମଥୁରା ଗଡ଼ର ତୋରଣ ଆଗରେ
ଠିଆ ହୋଇଥିଲେ ଶ୍ରୀକୃଷ୍ଣ ଆସି,
ମୁହଁରୁ ଲାବଣ୍ୟ ବେଶରୁ ମାଧୁରୀ
ଦେହୁଁ ସଉରଭ ଆସୁଛି ଭାସି ।

କାଳ-ଯବନର ତିନି କୋଟି ସେନା
ଘେରିଛନ୍ତି ମଥୁରା ସାଗର ପରି,
ଶ୍ରୀକୃଷ୍ଣ ଏକାକୀ ତୋରଣ ଆଗରେ
ଅଛନ୍ତି ତାହାଙ୍କୁ ଅପେକ୍ଷା କରି ।
ନାରଦ ଅନ୍ତର- ଧାନ ହୋଇଗଲେ
ଯବନ ଦେଖିଲା ଜଳୁଛି ନିଆଁ,
ପତଙ୍ଗ ପରାଏ ଦଉଡ଼ିଲା ତେଣେ
ମରିବ ପରା ସେ ରହିବା କିଆଁ !
ଆହୁରି ଦେଖିଲା ସୁନ୍ଦର ମୂରତି
ନାରଦ ଯେପରି ଥିଲେଟି କହି,
ସେ ରୂପ ଦର୍ଶନେ ହେଲା ମୁଗ୍ଧ ଅତି
ଝୁରି ସ୍ନିଗ୍ଧ ରୂପ ଦେଲା କି ଦହି ?
ଆହୁରି ଦେଖିଲା ଶ୍ରୀକୃଷ୍ଣ ନିରସ୍ତ୍ର
ମନକୁ ମନକୁ ଭାବିଲା କେତେ,
ଅସ୍ତ୍ରହୀନ ସଙ୍ଗେ ସମରେ ଜିଣିଲେ
ଖ୍ୟାତି ଯେତେ ନୁହେ କୁଖ୍ୟାତି ସେତେ ।
ଯବନକୁ ଦେଖି ଶ୍ରୀକୃଷ୍ଣ ବାହାନା
କରିଲେ ପଳାଇ ଯିବାର ପାଇଁ,
ଯବନ ରାଗରେ ଗରଜି କହିଲା,
"ରହନୁ କୁଆଡ଼େ ଯାଉ ପଳାଇ ?"
ଗୋଡ଼ାଇଲା ପଛେ ପଛେ କୃଷ୍ଣଙ୍କର
ଧରୁ ଧରୁ ଧରୁ ପାରେନା ଧରି,
ଛୁଇଁ ଛୁଏଁ ନାହିଁ ଗୋଡ଼େ ଗୋଡ଼ ବାଜେ
କୃଷ୍ଣ ଧାଉଁଥାନ୍ତି ମିରିଗ ପରି ।
ପଞ୍ଚବଟୀ ବନେ ରାମଙ୍କ ଆଗରେ
ମାୟା ମିରିଗଟା ଧାଉଁଛି ପରା,
ଦେଖା ଦେଉ ଦେଉ ଲୁଚି ଯାଉଅଛି
ଧରା ପଡ଼ୁ ପଡ଼ୁ ପଡ଼ୁନି ଧରା ।

ଛଳାଇ ଛଳାଇ କାଳ-ଯବନକୁ
ଗହନ ବନରେ ଦେଲେ ପୂରାଇ,
ନବଡ଼ ଅନ୍ଧାର ହୋଇଛି ସେ ବଣ
ଆଲୁଅ ଲୁଚାଇ ଦେଇଛି ଗଛଇ ।
ଗଛ ଗୁଛ ପଡ଼ ଦଶୁ ନାହିଁ ଚଳ
ମୃଗଚମ କବା ଛୁଟର ପର,
ରବ କ'ଣ ସତେ ଆଡ଼େଇଗଲେ କ
ଯବନ ଭୀଷଣ ରୂପକୁ ଡର !
ଶ୍ରୀକୃଷ୍ଣ କୁଆଡ଼େ ହେଲେ ଅନ୍ତର୍ଦ୍ଧାନ
ଜାଣି ପାରଲାନ ତାହା ଯବନ,
କଏ ସେ ବୁଝିବ ଶ୍ରୀକୃଷ୍ଣଙ୍କ ମାୟା
ତାଙ୍କ କପଟତା ତାଙ୍କର ମନ !
ଯବନ ଅନ୍ଧାରେ ଅନ୍ଧ ହୋଇଗଲା
ଅଣ୍ଡାଳ ହୋଇଲା ବୁଲଲା ଭୂଆଁ,
ଦଉଣ୍ଡ଼ି ଦଉଣ୍ଡ଼ି ପଶିଗଲା ଯାଇଁ
ଘନ ଅନ୍ଧାରିଆ ପର୍ବତ-ଗୁହା ।
କୃଷ୍ଣ ମାୟା କଲେ ଦଶିଲା ପରସ୍ତୁ
ଦେଖିଲା ଯବନ ଶୋଇଛି ଜଣେ,
କହଲା ଗରଜ "ଲୁଚ ଲୁଚ ଆସି
ମୋତେ ଭଣ୍ଡି ଦେଇ ଶୋଇଛୁ ଏଣେ ?"
ମାଇଲା ଗୋଇଠା ଦୁରୁ ଦୁରୁ କର
ଭାଙ୍ଗିଗଲା ନିଦ ଅନାଇଁଦେଲା,
ଦାବାନଳ ଜଣି ନିଆଁ ବାହାରିଲା
ଯବନ ତହିଁରେ ପାଉଁଶ ହେଲା ।
ଦବ୍ୟ ଦେବ ଦେହ ଧଇଲେ ଶ୍ରୀକୃଷ୍ଣ
ଉଭାହେଉଲେ ମୁଚୁକୁନ୍ଦ ସମ୍ମୁଖେ,
ଭୁଟିଲା ଅନ୍ଧାର ଫୁଟିଲା ଆଲୁଅ
ଦୃଷ୍ଟି ଲା ବୋଧ ଦେଖିଲା ସୁଖେ ।

ଗଗନ ଶ୍ୟାମଳ ଚତୁର୍ଭୁଜ ସୁଢ଼ଳ
ନୀଳୋତ୍ପଳ ସମ ବେନି ନୟନ,
ସହସ୍ର କମଳ ଶତ ଶୀତ ଅଂଶୁ
ଜିଣୁଛି ଗଢ଼ଣେ ସ୍ମିତ ବଦନ ।
କଣ୍ଠେ ବନମାଳ ସତେଜ ଅମଳ
ବକ୍ଷେ କଉସ୍ତୁଭ ମଣି ଉଜ୍ଜ୍ୱଳ,
ଚନ୍ଦନ ପ୍ରଲେପ ଶ୍ରୀବତ୍ସର ପାଦ-
ଚିହ୍ନ ବିରାଜିତ କର୍ଣ୍ଣେ କୁଣ୍ଡଳ ।
କଟିରେ ଶୋଭଇ ଝୀନ ପୀତବାସ
ଜିଣେ ଶଣପୁଷ୍ପ ସୁନ୍ଦର କାନ୍ତି,
ନୀଳ ଗଗନରେ ବିଦ୍ୟୁ ଚହଟ କି
ଦେଖିଲେ ମନରେ ହୁଅଇ ଭ୍ରାନ୍ତି ।
ପଚାରିଲି "ପ୍ରଭୁ ! କିଏସେ ଆପଣ
ସବୁ ଦେବତାଙ୍କୁ ଦେଖିଛି ସ୍ୱର୍ଗେ,
ଇନ୍ଦ୍ର, ରୁଦ୍ର ବ୍ରହ୍ମା କେହି ତ ନୁହନ୍ତି
ମଦନ କି ଆଜ ଆସିଲ ଭବେ ?
ସିଏ ତ ଏଇନା ନାହିଁ ଦେହଧରି
ଶ୍ମଶାନେ ପଡ଼ିଛି ପାଉଁଶ ହୋଇ,
ଆସିବ ବା କାହୁଁ ? ତାର ଜନକ କି
ମନ-ନୟନ ମୋ ଦେଉଛି ମୋହି ?
ଏକା ବଇକୁଣ୍ଠେ ଯାଇ ପାରି ନାହିଁ
ସେଠେଇ ନ ଥିଲି ଅସୁର ଗୋଳ,
ଯାଇଥିଲେ ଅବା ଦେଖିଥାନ୍ତି ସେଠି
ସରଗେ ତ ଗଲି ବହୁତ କାଳ ।
କିଏ ସେ ଆପଣ ନାଆଁଟି କଅଣ
କିଏ ଭାଗ୍ୟବାନ ଜନକ ମାତା ?
କାହାର କୋଳକୁ ମଣ୍ଡିଲ ମରତେ
କାହା ଘରେ ଜନ୍ମ ଦେଲେ ବିଧାତା ?

ବିଷ୍ଣୁ ଯେବେ ତୁମେ ଶଙ୍ଖ ଚକ୍ର ଗଦା
ସରସିଜ ସବୁ ଥୋଇଲ କାହିଁ ?
କହୁନା କାହିଁକି ଭ୍ରାନ୍ତ ତୁଟିଯାଉ
କାଳେ କାଳେ ଅଛୁ ତୁମକୁ ଚ୍ୟୁହିଁ ।"
ଜଳଦ ଗମ୍ଭୀର ସ୍ୱରରେ ଶ୍ରୀକୃଷ୍ଣ
କହିଲେ, "ମୋହର ଅଶେଷ ନାମ,
ଯୋଉ ନାଆଁ ଇଚ୍ଛା ଡାକ ସେ ନାଆଁରେ
ସବୁଯାକ ନାଆଁ ମୋହର ଜାଣ ।
ତେଣୁ ମୋତେ ସବୁ କହନ୍ତି ଅନନ୍ତ
ଯେଣୁ କରି ମୋର ନାହିଁ ଟି ଅନ୍ତ,
ଅଣଅକ୍ଷରରେ ନାଆଁଟି ମୋ ଗଢ଼ା
ମୋର ଅନ୍ତ କେବେ ମିଳେ ନାହିଁ ତ !
ଇନ୍ଦ୍ର ରୁଦ୍ର ବ୍ରହ୍ମା ବରୁଣ କୁବେର
ଆଦି ସରଗରେ ଦେବତା ଯେତେ,
ସକଳେ ମୋ ଅଂଶ ମୁଁ ତାଙ୍କ ସମଷ୍ଟି
ମୋର ବିଭୂତି ମୁଁ କହିବି କେତେ ?
ଦାନବେ ଦଳିଲେ ଦେବତାଙ୍କୁ ସ୍ୱର୍ଗେ
ମରତେ ନରଙ୍କୁ ମାଇଲେ ବଳେ,
ସରଗ ସହିତ ଆଜେ ଧରଣୀ
କାନ୍ଦିଲ କରୁଣେ ଚରଣ ତଳେ ।
ଥିଲି ମୁଁ ଅନନ୍ତ ଶୟନେ ନିଶ୍ଚିନ୍ତ
କ୍ଷୀରଜଳଧିର ଗହ୍ୱର ଜଳେ,
ସବୁ ଦେବତାଏ ମିଳି ମିଶି ଆସି
ସେଠେଇ ଡାକିଲେ ବଡ଼ ବିକଳେ ।
ଦେବତାଙ୍କ ଦୁଃଖେ ଧରଣୀ କାନ୍ଦଣା
ସହ୍ୟ ହେଲା ନାହିଁ ଆସିଲି ଭବେ,
ମୋ ଆସିବା ଆଗୁ ଆଉ କେତେ ଦେବେ
ଜନମ ହୋଇଲେ ମରତେ ସବେ ।

ସେସବୁ ଯାଦବ          କୌରବ ପାଣ୍ଡବ
    ତାଙ୍କୁ ହିଁ ନେଇ ମୁଁ ସ୍ଥାପିବି ଧର୍ମ,
ମର୍ତ୍ତ୍ୟ କର୍ମକ୍ଷେତ୍ରେ          ମାନବ ଆବାସେ
    ମାନବ ରୂପେ ମୁଁ କରିବି କର୍ମ ।
ବାସୁଦେବ ବୋଲି          ଡାକନ୍ତି ଏଇନା
    ଯେଣୁ ବସୁଦେବ ମୋର ପିଅର,
କଂସାସୁର ଡରେ          ରଖିଲେ ଗୋପରେ
    ତେଣୁ କଏ କହେ ନନ୍ଦକୁମର ।
କାଳିଆ ବୋଲି ମୁଁ          ଡାକୁଛନ୍ତି କୃଷ୍ଣ
    ମୋ ଦେହେ କି ଶିଷ୍ଟ ଅଛି ବା କାହ୍ନିଁ ?
ତଥାପି ଶ୍ରୀକୃଷ୍ଣ          ବୋଲି କଏ ଡାକେ
    ଭୁଲ୍ଲାଠାରେ ଖାଲି ସୁନ୍ଦର କହ୍ନ ।
ହଳଦୀ ମଣ୍ଡାଇ          ପିନ୍ଧଇ ମୁଁ ଲୁଗା
    ପୀତବାସ କଏ ଡାକଇ ଗେଲେ,
ପୁଣି ଗିରିଧାରୀ          କହନ୍ତି କେତେକ
    ଯେଣୁ ଗୋବର୍ଦ୍ଧନ ଟେକିଲି ବଳେ ।
ବନ ଫୁଲମାଳ          ଗଳାରେ ପିନ୍ଧଇ
    ତେଣୁ ବନମାଳୀ ବୋଲି ଡାକନ୍ତି,
ମୟୂରଚନ୍ଦ୍ରିକା          ଗେଞ୍ଜେ ମୁଁ ମୁଣ୍ଡରେ
    ମୟୂରଚୂଳିଆ ପୁଣି କହନ୍ତି ।
କଦମ୍ବ ମୂଳରେ          ମୁରଲୀ ବାଏ ମୁଁ
    ମୁରଲୀଧର ବି କହଇ କଏ,
କାଇଁଚର ମାଳ          ଚୂଳରେ ବେଢ଼ାଏ
    ଯେ ଗୁଞ୍ଜାରମାଳୀ ମୁହିଁ ତ ସିଏ ।
କଂସକୁ ମାରିଲି          ଡାକଲେ କଂସାରି
    କାଳୀକୁ ଦଳି ମୁଁ କାଳୀୟଦଳା,
ଦେବକୀ ଗରଭୁ          ଜନମ ହେଲି ମୁଁ
    ତେଣୁ ତ ମୋ ନାମ ଦେବକୀବଳା ।

ଗୋପପୁରେ ରହି          ଗୋରୁ ଗାଈ ପାଳି
ଶିଖି ମୁଁ ପାଇଛି ଗୋପାଳ ନାମ,
ଗୋରୁଙ୍କୁ ଚରାଇ          ତାଙ୍କ ସଙ୍ଗେ ମିଶି
ଜାଣିଲି ମୁଁ ଗୋରୁ ଗାଈଙ୍କ ମନ ।
ଗୋବିନ୍ଦ ବୋଲିଣ          ଡାକିଲେ ସେଇଠୁଁ
ସିଏ ଯାହା ଡାକୁ ମୋର ଆନନ୍ଦ,
ପୁଣି ଏ ଆନନ୍ଦ          ବଢ଼ି ବଢ଼ି କରି
ଶେଷେ କଲେ ମୋତେ ପରମାନନ୍ଦ ।
ଜନମ ଦିନରୁ          ଆଜିଯାଏ ବୋଲି
ମାରିଲାଣି କେତେ କେତେ ଅସୁର,
କାଳ ଯବନକୁ          ତୁମ ହାତେ ମାରି
ଯାଉଛି ମୁଁ ଫେରି ମଥୁରା ପୁର ।
ତେଣେ ଜରାସନ୍ଧ          କରୁଛି ସମର
ଯାଦବଙ୍କୁ ମୋତେ ମାରିବା ପାଇଁ,
ବଳରାମ ତେଣେ          ଯୁଦ୍ଧ କରୁ କରୁ
ମୋ ବାଟକୁ ବସିଥିବେ ସେ ଗୃହିଁ ।
ତୁମ ଭକତିରେ          ତୁମ କରମରେ
ସନ୍ତୁଷ୍ଟ ହୋଇଛି ମାଗ ହେ ବର,
ଏ ଜନ୍ମରେ ତୁମେ          ମୁକ୍ତି ପାଇବ ନି
ଅରଣ୍ୟରେ ପଶି ତପସ୍ୟା କର ।
ରଜା ହୋଇ କରି          ରାଜଧର୍ମ କରି
ମୃଗୟାରେ ବଧ କରିଛ ପ୍ରାଣୀ,
ତାର ପ୍ରାୟଶ୍ଚିତ୍ତ          ତାର ପ୍ରତିକାର
ତପସ୍ୟା କେବଳ ଦେବଟି ଆଣି ।
ଆର ଜନମରେ          ହୋଇବ ବ୍ରାହ୍ମଣ
ତପଃ କରିବାକୁ ପାଇବ ବେଳ,
ସେତେବେଳେ ତୁମେ          ହେବ ଜାତିସ୍ମର
ଖେଳିବନି ମାୟା ସଂସାର ଖେଳ ।

ଗଲେ ମୁଚୁକୁନ୍ଦ          ବଦ୍ରିକା ଆଶ୍ରମ
    ନରନାରାୟଣ ତପସ୍ୟା ସ୍ଥଳ,
ସାଧିଲେ ତପସ୍ୟା          ଯୋଗାସନେ ବସି
    ନ ପାଇବା ଯାଏ ତାହାର ଫଳ ।
ଶ୍ରୀକୃଷ୍ଣ ଆସିଲେ          ମଥୁରା ବାହୁଡ଼ି
    ଜରାସନ୍ଧ କରେ ଘୋର ସମର,
ଯାଦବ ସଇନ          ଆଉ ହଳଧର
    କାହାରିକୁ ନାହିଁ ଟିକଏ ଡର ।
କଅଣ କହିଲେ          ଯାଦବ ସଇନ
    ଗୋଟି ଗୋଟି ହୋଇ ଗଲେ ପଳାଇ,
କେବଳ ସମର          କଲେ ସେଠି ରହି
    କୃଷ୍ଣ ବଳରାମ ଦୁଇଟି ଭାଇ ।
ଅଳପ ସମୟୁ          ଲଢ଼ାଇ ସେ କରି
    ସେ ବି କଉଶଳେ ଗଲେ ପଳାଇ,
ଜରାସନ୍ଧ ସେନା          ମାର ମାର କହି
    ତାଙ୍କ ପଛେ ପଛେ ଗଲେ ଗୋଡ଼ାଇ ।
ମିରିଗ ପଛରେ          ଧାଆଁନ୍ତି କି ଆଉ
    ଶିକାର ଧରିବା ପାଇଁ କୁକୁର,
ଧାଆଁନ୍ତି ଦ'ଡ଼ି          ଅଗରେ ଅଗରେ
    ଫିଟାଇ ଚକୁର ପିଠେ ଦୁକୂଳ ।
ଧରୁ ଧରୁ ଧରୁ          ଧରି ପାରନ୍ତିନି
    ଛୁଉଁ ଛୁଉଁ ଛୁଇଁ ପାରନ୍ତି ନାହିଁ,
କେବଳ ପଛରେ          ଧଇଁସଇଁ ହୋଇ
    ଜରାସନ୍ଧ ସେନା ଥାଆନ୍ତି ଧାଇଁ ।
ଦେଖିଲେ ଆଗରେ          ଗିରି ପ୍ରବର୍ଷଣ
    ବୃକ୍ଷଲତା ଗୁଳ୍ମେ ହୋଇଛି ପୂର୍ଣ୍ଣ,
ପଶିଲେ ଦ'ଡ଼ି          ସେହି ବନସ୍ତରେ
    ଲୁଚିଲେ ତହିଁରେ କରିଣ ତୂର୍ଣ୍ଣ ।

ପ୍ରବର୍ଷଣ ଗିରି ମେଘର ଘର କି
ଧରୁବେଳେ ମେଘ ଫେଲଇ ତହିଁ,
ଅସରା ଅସରା ବାରି ବରଷଇ
କୁଳୁ କୁଳୁ ଗାଏ ବହୁଛି ନଈ ।
ବନ ରାଜି ସେଠି ପବନେ ଉଡ଼ଇ
କୁହୁଡ଼ ପରାୟେ ପାଣିର ଧୂଆଁ,
ବାଟ ଘାଟ କିଛି ଦିଶଇ ନାହିଁ ତ
ସେ ଚଟଇ ତହିଁ ବୁଲଇ ଭୂଆଁ ।
ବରଷା ଯୋଗୁ ସେ ଚର ସବୁଜିଆ
ଗଛ ଲତା ସେଠି ଝାଉଁଳେ ନାହିଁ,
ମୁହଁ ପୋଛେ ନାହିଁ ସଳଖ ହୋଇ ସେ
ଦିବାକର ପାନେ ଥାଆନ୍ତି ଚାହିଁ ।
ସତେ କ'ଣ ତାଙ୍କୁ ବାଧଇ କି ଶୀତ
ଥର ଥର ଥରି କମ୍ପେ ପତର,
ସକାଳୁ ସକାଳୁ ପଡ଼ଯାଏ ନଡ଼
ପତରେ ପତରେ କୁଆପଥର ।
ଫୁଲ ଫଳ ସବୁ କୁଡ଼ କୁଡ଼ ହୋଇ
ଝଡ଼ିପଡ଼େ କେହି ଗୋଟାଏ ନାହିଁ,.
କଅଁଳ ପତର ଗଛ ଅଗେ ଅଗେ
ଥାଆନ୍ତି ସଉର କିରଣେ ଚାହିଁ ।
କୃଷ୍ଣ ବଳରାମ ମିଳିଲେ ତ ନାହିଁ
ଗର୍ଜି ଜରାସନ୍ଧ କହିଲା ରାଗେ,
"ଝଡ଼ାପତ୍ର ନେଇ ଗିରି ଚାରିପାଖେ
ଅନଳ ଲଗାଇ ଦିଅ ରେ ଆଗେ ।
ମରନ୍ତୁ ସେ ପୋଡ଼ି ଆଉ ଯିବେ କାହିଁ
ଅନାଇଁ ଥା ସବୁ ଯିବେ କୁଆଡ଼େ",
ଦାଉ ଦାଉ ହୋଇ ଜଳିଲା ଅନଳ
ଜରାସନ୍ଧ ଚାହିଁ ବସିଲା ସ୍ୟାଡ଼େ ।

ଶ୍ରୀକୃଷ୍ଣ ରଚିଲେ କୁହୁଡ଼ି ଗୋଟାଏ
ଡେଇଁଲେ ପାହାଡ଼ୁ ଗଲେ ପଳାଇ ।
କେତେବେଳେ କୋଉ ବାଟେ ପଳାଇଲେ
ଯେତେ ଥିଲେ କେହି ଦେଖିଲେ ନାହିଁ ।
ଜରାସନ୍ଧ ଏଣେ ମହା ଖୁସି ହୋଇ
ତାହାର ସେନାକୁ କହିଲା ଡାକି,
"ନିଆଁ ବେଢ଼ିଲାଣି ଗିରି ପାଖଯାକ
ପୋଡ଼ି ନ ମରି କି ରହିବେ ବାକି !
ଚାଲ ଫେରିଯିବା ରାଜ୍ୟକୁ ରେ ସବୁ
ବଜାଅ ଆନନ୍ଦେ ଜୟ ବାଜଣା,
ମଥୁରା ନଗରେ ଘରେ ଘରେ ଶୁଭୁ
ଝିଅ ବୋହୂମାନଙ୍କର କାନ୍ଦଣା ।
ଚାଲ ରେ ଚଞ୍ଚଳ ପଶି ମଥୁରାରେ
ଧନ ଦଉଲତ ନିଅ ରେ ଲୁଟି,
ଯାହାକୁ ପାଇବ ତାହାକୁ ମାରିବ
କରିବନି କେହି ଏଥିରେ ତ୍ରୁଟି ।"
ପଶିଲେ ମଥୁରା ନଗର ଭିତରେ
ବିଲେଇଟାଏ ବି ଦେଖିଲେ ନାହିଁ,
ଧନ ରତନ ତ ପାଇଲେନି କିଛି
ଯୋଗମାୟା ସବୁ ଯାଇଛି ନେଇ ।
ରାମ କୃଷ୍ଣ ଏଣେ ଦ୍ୱାରକା ବାଟରେ
ଯାଉଁ ଯାଉଁ ଗଲେ ଆବର୍ତ୍ତ ଦେଶେ,
ସେ ଦେଶର ରଜା ନାମ ତା ରେବତ
ରାମ କୃଷ୍ଣେ ଦେଖି ମଲିନ ବେଶେ ।
ବହୁ ସମାଦର କରି ରଖାଇଲା
ବିଶ୍ରାମିଲେ ତହିଁ ଶ୍ରୀକୃଷ୍ଣ ରାମ,
ରେବତର ଝିଅ ପରମା ସୁନ୍ଦରୀ
ରେବତୀ ବୋଲଣ ତାହାର ନାମ ।

ପର୍ବତ-ତନୟା     ପାର୍ବତୀ କି ଅଙ୍ଗ
କିବା ସେ ମଦନ-ବନିତା ରତି,
ଖୋଜି ଖୋଜି ହରି     ରଜା ଏକଥିଲା
କନ୍ୟା ଯୋଗ୍ୟ ମିଳି ନ ଥିଲା ପତି ।
ବଳରାମଙ୍କୁ ସେ     ମଣି କି ଧୂର୍ଜଟି
ସମରପି ଦେଲା କନ୍ୟାକୁ ଆଣି,
କୃଷ୍ଣ ବଳରାମ     ଭାରି ଖୁସି ହେଲେ
ରାମ ବାହା ହେଲେ ଧଇଲେ ପାଣି ।
ରଥରେ ଆରୋହି     ଯଉତୁକ ନେଇ
କନ୍ୟା ସହ ଗଲେ ଦ୍ୱାରକା ସୁଖେ,
ତେଣେ ଯେତେ ସବୁ     ଯାଦବ ଯାଦବୀ
ରହିଁ ବସିଥିଲେ ବଷଣ୍ଟ ମୁଖେ ।
ଦେବକୀ ସହିତ     ଯେତେକ ଯାଦବୀ
ବନ୍ଦାଇଣ ନେଲେ ତନୟ-ବୋହୂ,
ବସୁଦେବ ଘରେ     ଆନନ୍ଦ ଉତ୍ସବ
କଥାରେ କେ କହିପାରିବ କହୁ ।
ମାଇପେ ଯେତେକ     ଦେଖିଲେ ଯୋଡ଼ିନା
କୁହାକୁହି ହେଲେ ଶୁଣାଇ କରି,
"ଯୁଦ୍ଧ କରୁ କରୁ     କାହା ଘରୁ କେଉଁ
ସୁନା ଝିଅଟିକୁ ଆଣିଲେ ଧରି ।
କୋଉଠି ଏ କନ୍ୟା     ଥିଲା ଲୋ ମରତେ
ବଳରାମଙ୍କୁ ଏ ସାଜୁଛି ଏକା,
ଯେପରି ବରକୁ     ସେପରି ଭାରିଯା
ଏଇଠି କେବଳ ଗଲା ଟୋ ଦେଖା ।
ତାଙ୍କଠୁ ତଳକା     ଯାଏ ବୋଲି କରି
କୋଉଠେଇ ନାହିଁ ଗୋଟିଏ ଖୁଣ,
କିଛି ଦିନ ରହି     ବୋହୂପଣ କଲେ
ଜଣା ପଡ଼ିବ ଲୋ ଭିତର ଗୁଣ ।

ରୂପକୁ ଅନାଇଁ    ଗୁଣ ନୋହିବ କି
ମଲ୍ଲୀ ଫୁଲର କି ହେବନି ବାସ,
ପୋଡ଼ା ସୁନାଟାକୁ    ଆମ୍ଭିଲେ ଘଷିଲେ
ଲଗିବ କଳଙ୍କ ହେବ ସେ ନାଶ ?
ତୁଳସୀ ବାସଇ    ଦୁଇ ପତରୁ ଲୋ
ପାରିଜାତ ଫୁଟେ ଇନ୍ଦ୍ର କାନନେ,
ଏ କନ୍ୟା ସୁନା ତ    ଜନମି ଥିବ ଲୋ
କୋଉ ରଜାଘର ସୁଖ ଶୟନେ ।
ମୁହଁଟି ତ ସତେ    କେତେ ସୁନ୍ଦର ଲୋ
ଉପରକୁ ଟିକେ ଗୁହଁ ତ ନାହିଁ,
ଲାଜ ସରମ ତ    ଲାଗି ରହିଅଛି
ଆଖିରେ କି ଖୁଣ ଅଛି ଗୋ କାହିଁ ?
ଆଖି ଯୋଡ଼ିକ ତ    ସଦା ଚଳ ଚଳ
ଛଳ ଛଳ ଦୁଣି ଭଅଁର ପରି,
ପଦ୍ମ ପାଖୁଡ଼ାରୁ    ବଳିଛି ତ ପରା
କୋଉ ଯୁବାଟା ବା ଯିବନି ଭଳି !
ନାକଟି ସୁନ୍ଦର    ସରୁ ସଳଖ ଲୋ
ରଶିଫୁଲ ପରି ଦିଶୁଛି ଅଗ,
ବ୍ରହ୍ମା କେତେ ଯୁଗ    ଲାଗି ; ଗଢ଼ିଛି ଲୋ
ମାନବୀ ପରି ତ ନୁହଇ ଢଙ୍ଗ ।
ମୁନି ଋଷିଙ୍କର    ଧ୍ୟାନ ଭାଙ୍ଗିବାକୁ
କାହୁଁ ଆଣି ରଖିଛି କି ଅନଙ୍ଗ,
ଥରେ ଗଉରୀଙ୍କ    ରଖି ହର ଆଗେ
ଭାଙ୍ଗିଥିଲା ଏ ତ ତାଙ୍କର ଢଙ୍ଗ ।
ଗଉରେ ଗଉର    ତନୁ ଝଲସାଉ
ଆଲୁଏ ଆଲୁଅ ପାଉ ଲୋ ମିଶି,
ଦୁଇଟି ଆଲୁଅ    ଏକାଠି ହୋଇଲେ
ଅନ୍ଧାର କି ଆଉ ପାରିବ ପଶି ?

ବେକଟିକୁ ଦେଖ ଶଙ୍ଖଟିଏ ପରି
ଦକ୍ଷିଣ ଆବର୍ତ୍ତ କଂବୁ ତ ସତେ,
କୃଷ୍ଣଙ୍କ ହାତରୁ ଖସି ପଡ଼ିଛୁ କି
ତାହାର ପରି ତ ହେଉଛୁ ପ୍ରତେ ।
କଥା ତ କହନ କହିଲେ ଶୁଭନ୍ତା
ଘଣ୍ଟେ ବଇଂଶୀ ବାଜଣା ପରି,
ସରସ୍ୱତୀଙ୍କର ଲୋଡ଼ା ହୁଅନ୍ତା କି
ବାଇବାକୁ ବୀଣା ହାତରେ ଧରି ।
ବକ୍ଷଟିକୁ ଦେଖ କପରି ଉନ୍ନତ
କୁଚ କରିଅଛୁ ଉନ୍ନତତର,
ଟଭିଫଳ କବା ଡାଳମ୍ବ ଯୋଡ଼ିଏ
ପାଖକୁ ପାଖକୁ କେଡ଼େ ସୁନ୍ଦର ।
ମଣି ମାଣିକ୍ୟର ହାର ପଡ଼ିଅଛୁ
ତହିଁ ଉପରେ ଦେଲ କି ଶୋଭା ଦେଖ,
ମଣିଷ ମହିଳା ନୁହ ଏ ତ କେବେ
ଦେବୀଙ୍କ ଭିତରେ ଏହାକୁ ଲେଖ ।
ନୁହଇ ପାବର୍ତ୍ତୀ ତାଙ୍କଠାରୁ ବଳେ
ନୁହଇ କମଳା ନୁହେ ଭାରତୀ,
ନୁହଇ ତ ଶଚୀ ଇନ୍ଦ୍ର ପାଟରାଣୀ
ନୁହଇ ଅପ୍‌ସରୀ ନୁହଇ ରତି ।
ସବୁ ଦେବୀଙ୍କୁ କି ଏକାଠି ମିଶାଇ
ଗଢ଼ିଛୁ ବିଧାତା ଯତନ କରି ?
କେଉଁ କରମର ଫଳ୍‌ରେ ଦେବକୀ
ତୋ ପୁଅକୁ ନେଲା ଏ କନ୍ୟା ବରି ।
ଉଦରଟି ଦେଖ ପାନ ଥାଳଟିଏ
ତା ଦେହରେ ଶିରଗି ଦିଶୁଛୁ ଫୁଟି,
କ୍ଷୀନ ବସନଟି ନାହିର ଉପରେ
ଅଳପ ଟିକିଏ ରହିଛି ଉଠି ।

କଟିଟି ସରୁଆ ଡମ୍ବରୁଟିଏ କି
ତଳକୁ ନିତମ୍ବ ଟିକିଏ ପୀନ,
ଜଙ୍ଘ ଯୋଡ଼ିକ ତ ମାଂସଳ ସୁଗୋଲ
ନିତମ୍ବଠାରୁ ସେ ଅଳପ କ୍ଷୀଣ ।
କ୍ରମେ ଗଡ଼ ଗଡ଼ ଆସିଛି ତଳକୁ
ଆଣ୍ଠୁର ଉପରେ ଯାଇଛି ସରି,
କଦଳୀ ଗଛକୁ କିଏ ଥୋଇଅଛି
ଏତେ ଯତନରେ ଓଲଟା କରି ।
ପେଣ୍ଡା ଦୁଇଟି ତ ଖଟ ଖୁରା ପରି
କିଏସେ କୁନ୍ଦିଛି ବସାଇ କୁନ୍ଦେ,
ଯିଏ ଦେଖିବ ସେ ଭଣ୍ଡାର ଛଇଳା
ଆଉ ଦେଖିବାକୁ ଖୋଜିବ ମୁଦେ ।
ତଳପା ଯୋଡ଼ିକ ସାନ ଓ ପାତଳ
ଭୂଇଁରେ ଲାଗୁଛି ସମାନ ହୋଇ,
ରାଜହଂସୀଠାରୁ ଛଡ଼ାଇ ଆଣି କେ
ଚାଲି, ଯା' ଚରଣେ ଦେଇଛି ଥୋଇ ।
ଷୋଡ଼ଶୀ ରୂପସୀ ପୁଣି ଗୁଣବନ୍ତୀ
ଏପରି ଯୁବତୀ ଭୁଞ୍ଜିବ କିଏ,
ବଳରାମ ଆମ ବଡ଼ କପାଳିଆ
ଏପରି ବୋହୂକୁ ପାଇଛି ସିଏ ।
ଦ୍ୱାରକା ନଗରୀ ଦ୍ୱିତୀୟ ବୈକୁଣ୍ଠ
ତାହାର ବିଭବ ବର୍ଣ୍ଣିବ କିଏ ?
ସାଗର ଗରଭେ ଦାଉ ଦାଉ ହୋଇ
ବାଡ଼ବ ଅନଳ ଜଳେ କି ସିଏ ?
ଆଜି ବଇକୁଣ୍ଠ ଆସିଲା କି ଆଜି
ବନ୍ଧୁଙ୍କୁ ଚଳସି ଆକୁଳ ହୋଇ ?
ଯାହା ଯୋଉଠେଇଁ ଥିଲା ମଳନତା
ସାଗର ସଲିଳ ଦେଇଛି ଧୋଇ ।

କାହାନ୍ତି ସେ ବିଷ୍ଣୁ ଗୋଲୋକ ବିହାରୀ
କାହାନ୍ତି କମଳା କାହାନ୍ତି ବାଣୀ ?
କାହାନ୍ତି ପାର୍ଷଦ କାହାନ୍ତି ଅନନ୍ତ
କହି ତ କୋଉଠି ହେଉନ ଜାଣି ।
ଦ୍ୱାରପାଖେ ଯା'ର ସୁନୀଳ ସାଗର
ଗରଜୁଛି ଖାଲି ଦିବସ ରାତି,
କାହାକୁ ଲାଗିଛି କିଏ ତା ଅରାତି
କାହିଁକି ଏ ଏତେ ଫୁଲାଏ ଛାତି ?
ଏ ରୁଦ୍ରତାରେ କି ନାହିଁ ସୌନ୍ଦର୍ଯ୍ୟତା
ଗରଭେ ରତନ ରଖିଛି ପରା,
ସେଗୁଡ଼ିକ କ'ଣ ସୁନ୍ଦର ନୁହନ୍ତି
ଖାଲି ଅସୁନ୍ଦର ସାଗର ଧରା ?
ସାଗର ଗରଭ ଦିଶେ ଭୟଙ୍କର
ସେଥିରେ କି ସତେ ମାଧୁରୀ ନାହିଁ ?
ସଜଳ ଲହରୀ ଶୁକଳ ଫେନିଳ
ବାଲୁକାର ବେଳା ମେଘର ଛାଇ ।
ଏଗୁଡ଼ିକ କ'ଣ ସୁନ୍ଦର ନୁହଇ
ଖାଲି ଭୀଷଣତା ଦିଶଇ ଫୁଟି ?
କବି ଆଖିଟିରେ ଦେଖି ଭଲ କରି
ତେବେ ସେ ସୁଷମା ପାରିବ ଲୁଟି ।
ଶ୍ମଶାନ ସୁମନ ନୁହେଁ କ'ଣ ସିଏ ?
ଲୁଣିଆ ପାଣିରେ ନାହିଁ ରତନ ?
କିଏ ସେ ଦେଖୁଛି କିଏ ବା ଜାଣୁଛି
କିଏ ଖୋଜିବାକୁ କରେ ଯତନ ।
ଦ୍ୱାରକାରେ କିଏ ସତେ ସେ ରତନ
ଯାହା ଲାଗି ଆଜି ସିଏ ବୈକୁଣ୍ଠ ?
ସତେ କ'ଣ ସିଏ ସେହି ବାସୁଦେବ
ଯଶୋଦାନନ୍ଦନ କଳା ଶ୍ରୀକୃଷ୍ଣ ?

ଆସିବେନ ଏଠି          ଲକ୍ଷ୍ମୀ ସରସ୍ୱତୀ ?
    ରହିବେ କୋଉଠି ପଣ୍ଡିଙ୍କୁ ଗୁଡ଼ି,
ଆସିବେ ଏଇଠି          ହସିବେ ଏଇଠି
    ବଞ୍ଚାନ ବଭବ ଦେବେ ଅଜାଡ଼ି ।
ରାତି ପାହିଲାଣି          ସକାଳ ହେଲାଣି
    ଆସିବେ ଏଥର ହେଲାଣି ବେଳ,
ଶ୍ରୀକୃଷ୍ଣ କୋଳରେ          ନାନା ରଙ୍ଗ ରସେ
    ଏହି ଦ୍ୱାରକାରେ ଖେଳିବେ ଖେଳ ।
ଏଇଠି କରିବେ          ସଂସାର ଧରମ
    ଶିଖାଇ ଦେବେ ଗୋ ଗୃହସ୍ଥ ଧନ୍ଦା,
ଏଇଠି ଫିଟିବ          ବୃନ୍ଦାବନର ସେ
    ସୁନ୍ଦର ଯୁଗଳ ଚରଣ ଛନ୍ଦା ।
ବଇଁଶୀ ବଦଳ          ଧରିବେ ଆୟୁଧ
    ଗୋରୁଜଗା ଛାଡ଼ି ଜଗିବେ ନର,
ଏଇଠେଇ ପୁଅ          ନାତିଙ୍କ ସଙ୍ଗରେ
    ନବାନ୍ନ କରିବେ ସଂସାରୀ ଘର ।
କମଳା ଭାରତୀ          ଗୃହ ଗୃହ ଜଣ
    ହେବେ ଏଇଠାରେ ଆଠ ରମଣୀ,
ବଇକୁଣ୍ଠାରୁ          ଦ୍ୱାରକା ବଳିବ
    କୃଷ୍ଣଙ୍କର ହେବେ ବହୁ ଘରଣୀ ।
ଏଇଠିକି ଆସି          ଦୁଃଖୀ ହେବ ଧନୀ
    ଧନେ ଜନେ ପୂରିଯିବ ଦ୍ୱାରକା,
ଏଇଠେଇ ସବୁ          ଦାନବ ମାନବ
    ଆସି ପଳାଇବେ ହାରି ହାରିକା ।
ଏଇଠି ଏଇନା          ଗଢ଼ିଲେ ସଂସାର
    ଏଇଠେଇ କାଲି ଯିବ ସେ ଭାଜି,
ଏଇଠେଇ ସବୁ          ହୋଇଯିବ କାଲି
    ଖୋଜିଲେ କି କାହିଁ ଥିବ ଲୋ ଆଜି ?”

# ରୁକ୍ମଣୀ ମିଳନ

ବିନ୍ଧ୍ୟ ପରବତ ଏ ଦେଶର କଟି
ତାହାର ମେଖଳା ମଧ୍ୟପ୍ରଦେଶ,
ଧନ୍ୟ ସେ ଖଣିଜ ଧନ୍ୟ ତା ବିଭବ
ସବୁଦିନେ ତାର ନୂତନ ବେଶ ।
ସମତଳ ଭୂଇଁ ବନ୍ଧୁର ପର୍ବତ
ସରୁ ଗିରି ଝିଅ ଖେଳନ୍ତି ତହିଁ,
ଗିରିଷମେ ଗ୍ରୀଷ୍ମ ବରଷାରେ ବର୍ଷା
ଶୀତେ ଅତି ଶୀତ ହୁଏନା ସହି ।
ପରବତମାଳ ଗଗନ-ପରଶୀ
ନିତ୍ୟ ଶ୍ୟାମଳିମା ତାହାର ଶିରି,
ଗଗନ ଦେହରେ ପୂରାଇ ଦେଇଛି
ନୂତନ ନୀଳିମା ଆଲୋକ ଶିର ।
ହିମ ଆଳୟରୁ ନୁହଇ ତ ଊଣା
ଶୋଭା ସମ୍ପଦରେ ଆହୁରି ବେଶୀ,
ଅଛି ସବୁ କଥା କିନ୍ତୁ ହୋଇ ନାହିଁ
ବାର ମାସ ହିମ ନିହାର ଲେସି ।
ଏହି ପ୍ରଦେଶରେ ବିଦର୍ଭ ନଗର
ନଗ ବକ୍ଷେ ଶିର ଦେଇଛି ଢୋଳି,
ଆଜକାଲି ତାକୁ କହନ୍ତି ସମସ୍ତେ
ନିଜାମ ରାଜ୍ୟରୁ ବେରାର ବୋଲି ।

ନଗର ତ ନୁହେ ପର୍ବତ କାନ୍ଥରେ
ଶୁକ୍ଳ ସାରସ ପେଣ୍ଡା ଗୋଟିଏ,
କିବା ଗିରି ଗଳା ଶୁକ୍ଳ ସୁମନ
ଗୁନ୍ଥା ଅଧା ଗୁନ୍ଦ ମାଳାଟେ ସିଏ ।
ଶିଖରୀ ବକ୍ଷରେ ଅଧା ବୃତ୍ତ ପରି
ଗଢ଼ା ହୋଇଅଛି ସଉଧଗଣି,
ତହିଁରେ ପଡ଼ିଛି ଅସ୍ତ ରବି କର
ସାତ ଜାତି ବର୍ଣ୍ଣ ଉଠିଛି ଭାସି ।
ପାହାଡ଼ ଦେହରେ ଆଲୁଅ ଜାଳେ କି
ମଧ୍ୟାହ୍ନର ଶୁଭ୍ର ଉଜ୍ଜ୍ୱଳ ରବି,
ଦୂରକୁ କେସନ ଦିଶି ଯାଉନ୍ତି ତ
ବିଦର୍ଭ ଅମଳ ଧବଳ ଛବି ।
ଶୁଭ୍ର ବଉଦ କି ଦୂତ ହୋଇ କା'ର
ପ୍ରଣୟ ଖବର ଦେଉଛି ଆଣି ?
କିଏ ବିରହିଣୀ କିଏ ତା ବିରହୀ
କାହାର ଆଖିରୁ ବହୁଛି ପାଣି ?
ଗଗନ ପରଶି ଯାଇଛି ତ ଗିରି
ବକ୍ଷରେ ସରଜ ଦେଇ ନଗରୀ,
ନଗ ଓ ନଗର ମଳ ଶୁକ୍ଳର
ମିଶାମିଶି ଗୃହ ଛବିଟି ପରି ।
ପର୍ବତ ପଦରେ ଘନଶ୍ୟାମ ବନ
ଭକ୍ତିରେ ଦେଉଛି ପୁଷ୍ପ ଅଞ୍ଜଳି ।
ଗିରି ଝିଏ ସବୁ ପାଦ ପଖାଳନ୍ତି
କୁଳୁ କୁଳୁ ଗାଇ ସଙ୍ଗୀତ ଭଳି ।
ନିତି ଆବାହନୀ ନିତି ବନ୍ଦାପନା
ନାହିଁ ବିସର୍ଜନୀ ନାହିଁ ତ ଦୁଃଖ,
ନଗର ଓ ତାର ଅଧିବାସୀ ଯେତେ
ଭୁଞ୍ଜୁଥାନ୍ତି ବସି ବିମଳ ସୁଖ ।

ଗ୍ରୀଷ୍ମେ ବିଷମ ସନ୍ତାପେ ଆକୁଳ
କେନ୍ତୁ ନଗାଡ଼େନା ଦେହରୁ ବାରି,
ବର୍ଷାରେ ଶୀତରେ ଚାପର ଅଭାବ
ସେ ଦୁହେଁ ବଳିଷ୍ଠ ପ୍ରବଳ ଘରି ।
ପ୍ରକୃତି ଏପରି ଗଢ଼ିଛି ଦେଶଟି
ଭୋକ ଶୋଷ ନାହିଁ କାହିଁ କାହାରି,
ଶସ୍ୟରେ ଶ୍ୟାମଳ ଫୁଲେ ପରିମଳ
ସରଗ ସୁଷମା ମରଇ ହାରି ।
ଏହି ରାଜ୍ୟ ଘର କରନ୍ତି ଭୀଷ୍ମକ
ପାଳନ୍ତି ପରଜା ତନୟ ପରି,
ନ୍ୟାୟ ଓ ଅନ୍ୟାୟ ତଉଲ ହଅନ୍ତି
ବିଚାରେ ସମାନ ନିକିତି ଧରି ।
ପାଞ୍ଚଟି ତନୟ ଗୋଟିଏ ତନୟା
ବାପ ମାଆଙ୍କର ଗଣ୍ଠି ଘଞ୍ଚାଳି,
ଗୋଟିଏ ଗୁଡ଼ଲେ ଗଢ଼ା ତାର ତନୁ
ନିଖୁଣ ରୂପଟି ସୁନ୍ଦର ଭାରି ।
ପୁଅମାନେ ସବୁ ତାକୁ ତାକୁ ବଳି
ରୂପରେ ଗୁଣରେ ସର୍ବେ ସମାନ,
ବଡ଼ ପୁଅ ରୁକ୍ମ ରାଜ୍ୟ ଯୁବରାଜ
ସବୁଠାରୁ ତାର ଅଧିକ ମାନ ।
ତନୟା ରୁକ୍ମିଣୀ କଅଁଳ ହୃଦୟ
ପିଲଟି ଦିନରୁ ଶାନ୍ତ ସୁଶୀଳା,
ସମାନ ବୟସୀ ଝିଅଙ୍କ ସଙ୍ଗରେ
କୁଣ୍ଢେଇ ନେଇଣ ଧୂଳିରେ ଲୀଳା ।
ରଜାର ଝିଅ ସେ ଗରବ ନ ଥାଏ
ଭୁଟିକରି କେବେ କହେନା କଥା,
ଲାଜ ସରମର କଥା ସେ ଶୁଣିଲେ
ନୁଆଁଇ ଦିଅଇ ତଳକୁ ମଥା ।

କରୁଣାର କବା ଜୀବନ୍ତ ମୂରତି
ଦୁଃଖୀ ରଙ୍କୀ ଦେଖି ପକାଏ କାନ୍ଦି,
ସାଙ୍ଗ ସାଥୀ ତାର ଆଉ ଯେତେ ଝିଅ
ସଭିଙ୍କୁ ରଖଇ ସ୍ନେହରେ ବାନ୍ଧି ।
କମଳ ତ ନୁହେ କମଳାଳୟା ସେ
କମଳ କୋଉଠୁ ହେବ ତା ସରି,
ଫୁଟୁ ଫୁଟୁ ଫୁଟି ନାହିଁ ଶିଶୁ ଏବେ
ହେଲଣି ବଅସ ଫୁଟିଲା ପରି ।
ବୈକୁଣ୍ଠ ଛାଡ଼ିଛି ବାହନ ଛାଡ଼ିଛି
ସରସୀ ବରଜ ଆସିଛି ଶୁଖେ,
ବିଡ଼ମ୍ବନା କଥା କଏ କେସ ଦେଖିଛି
କମଳ ଫୁଟଇ ପାହାଡ଼ ଶିଖେ ?
ରୁହୁଁ ରୁହୁଁ ଝିଅ ହେଲା ଘରଯୋଗ୍ୟା
ବାପ ମାଅଙ୍କର ତେଣୁ ଭାବନା,
କାହା କରେ ଦେବେ ଝିଅକୁ ସମର୍ପି
କାହାକୁ ମୋହିବ ମହୀମଣ୍ଡନା ।
ବାପଙ୍କର ମନ ଶ୍ରୀକୃଷ୍ଣଙ୍କୁ ଦେବେ
କିନ୍ତୁ ବଡ଼ ପୁଅ ମଙ୍ଗିଲା ନାହିଁ,
କହିଲା, "କୃଷ୍ଣଟା କୋଉ ରଜାପୁଅ
ସେଇଟା କି ଯୋଗ୍ୟ ରୁକ୍ମିଣୀ ପାଇଁ ?
ଦମଘୋଷ ପୁଅ ନାଆଁ ଶିଶୁପାଳ
ଚେଦି ରାଜ୍ୟ ଭାବୀ ରାଜକେଶରୀ,
ଆଗରୁ ମୁଁ ତାକୁ ରୁକ୍ମିଣୀକୁ ଦେବି
ବୋଲି ସଂକଳପ ସାରିଛି କରି ।"
ବାପଟା ବିଚରା କଅଣ କରିବ
ପୁଅର କଥାରେ ହୋଇଲା ରାଜି,
କିନ୍ତୁ ମନେ ମନେ ଡାକଇ ଦଇଁଙ୍କୁ
ପୁଅର ବାସନା ଯିବାକୁ ଭାଜି ।

ଆଜ ଯିଏ କଡ଼ କାଲକ ହୁଅଇ
କାଳର ପ୍ରଭାବେ ଫୁଟା କୁସୁମ,
ଛୁଟାଏ ସୌରଭ ବଢ଼ାଏ ଗୌରବ
କାଙ୍କ୍ଷୀ ଚରଣେ ହୁଏ ସୁଷମ ।
ଅଙ୍ଗେ ଅଙ୍ଗେ ବସେ ସୁଷମା ପସରା
ଚହଲା ଗ୍ରାହକ ରୂପକୁ ଚାହିଁ,
ଦଉଡ଼ନ୍ତି ସବୁ ଆକୁଳ ଆଗ୍ରହେ
ସୁଷମା ସୌରଭ କଣିବା ପାଇଁ ।
ରୁକ୍ମଣୀର ବେଳ ହେଲା ମୁକୁଳିଲା
ଲୁଚାଇ ଲୁଚାଇ ଖୋଜିଲା ସାଥୀ,
କୋଉ ଯୁବକ ସେ ଫୁଲେ ମାଳା ଗୁନ୍ଥି
ଲମ୍ବାଇ ଫୁଲାଇ ଦେବ ତା ଛାତି ।
ଶୁଣେ ଶତମୁଖେ ଶ୍ରୀକୃଷ୍ଣଙ୍କ ରୂପ
ଗୁଣର ମାଧୂରୀ ପାରେନା ଦେଖି,
କିନ୍ତୁ ସେ ରୂପଟି କଳ୍ପନାରେ ଚିତ୍ରି
ହୃଦୟ-ପଟରେ ରଖିଲା ଲେଖି ।
ସେ କଳ୍ପନା ସ୍ୱପ୍ନ ହୋଇଲା ବାସ୍ତବ
ସେ ଚିତ୍ରଟି ହେଲା ଜୀବନ୍ତ ମୂର୍ତ୍ତି,
କୃଷ୍ଣଙ୍କୁ ସୁମରି ଶ୍ରୀକୃଷ୍ଣଙ୍କୁ ବରି
ହୃଦୟେ ରଖିଲା ତାଙ୍କର ସ୍ମୃତି ।
ଭାଇଙ୍କର ଜିଦ୍ ବାଜିଲା କାନରେ
ମରମେ ଗୁମରି କାନ୍ଦିଲା ସିନା,
କିଏ ତାକୁ ଆଉ ସଂକଟୁ ତାରିବ
ଏକା ସେଇ କଳା କହ୍ନାଇ ବିନା ?
ବନସ୍ତ ପୋଡ଼ିଲେ ଜାଣନ୍ତି ସମସ୍ତେ
ମନ ପୋଡ଼ିଗଲେ ଜାଣେନା କେହି,
ଯାହା ମନ ପୋଡ଼େ ଯାହାର ପାଇଁକି
ତାହା କଥା ଖାଲି ଜାଣଇ ସେଇ ।

ତଟାଠାରୁ ତନ୍ଦ୍ରା ଅଧିକ ପୋଡ଼ଇ
ରୁକ୍ମଣୀ ମନରୁ ଶୁଖିଲା ରସ,
ଫୁଟିଲା ଫୁଲଟି ଝାଉଁଳ ପଡ଼ିଲା
ଲୁଚିଗଲା ସଜ ମୁହଁରୁ ହସ ।
ସବୁର ଅନ୍ତର ଜାଣନ୍ତି ଶ୍ରୀକୃଷ୍ଣ
ବୋଲି ଦେଗ ସବୁ କହନ୍ତି କେତେ,
ରୁକ୍ମଣୀ ଅନ୍ତର ଜାଣୁ ନାହାନ୍ତି କି
ଶୁଣୁ ତ ନାହାନ୍ତି ଡାକଲେ ଯେତେ ।
ବୃନ୍ଦାବନ ବଂଶୀ ଶୁଣିନି ରୁକ୍ମଣୀ
ତଥାପି କାହିଁକି ଲେଉଟୁଛି କାନ,
ସୁନ୍ଦର ତ୍ରିଭଙ୍ଗୀ ଦେଖି ତ ନାହିଁ ସେ
କାହିଁକି ଆକୁଳ ହେଉଛି ମନ ?
ମୟୂର ଚନ୍ଦ୍ରିକା କାଇଁଚର ମାଳ
ଦେଖି ନାହିଁ କେବେ କୃଷ୍ଣଙ୍କ ଚୂଳେ,
ତଥାପି କାହିଁକି ଶ୍ରୀକୃଷ୍ଣ ମୂରତି
ସବୁବେଳେ ଆଖି ଆଗରେ ବୁଲେ ?
ଯମୁନା ନଈଟି କଦମ୍ବ ଗଛଟି
କାହିଁ କେତେ ଦୂରେ ପାଉନି ଆଖି,
ତଥାପି ତ କିଆଁ ରୁକ୍ମଣୀର ମନ-
ନୟନ ସେଥିରେ ରହିଛି ଲାଖି ।
ପାଟ ପୀତାମ୍ବରୀ ପିନ୍ଧାଇ ଦେଲେ ସେ
ମଣଇ ନିଜକୁ ଶ୍ରୀକୃଷ୍ଣ ବୋଲି,
କଜଳପାତିରୁ କଳା କାଢ଼ି ଆଣି
କାହିଁକି ତହିଁରେ ଦଅଇ ବୋଳି ।
କାଇଁଚ ଫଳକୁ ଗୋଟାଇ ଆଣି ସେ
ଦେଖଇ ଲୁଚିଇ କଣରେ ବସି,
କାହିଁକି ଏପରି ମନ ମାରିଦିଏ
ଆତୁର ହେଉନା ଦଅଇ ହସି ।

କୋଇଲି ଗୋଟାଏ ବୋବାଇଲେ କାହିଁ
ଉଡ଼ଇ କାହିଁକି ଗବାକ୍ଷ ପଥେ,
ଲଞ୍ଜା ମୟୂରର ପକ୍ଷୀଟାଏ ଧର
କାହିଁକି ନରେଖି ଦେଛଇ ଏତେ ?
ଘର ଲହୁଣୀକୁ ବାଢ଼ି ଦେଲେ ଆଗେ
ଆଡ଼େଇ ଦଅଇ କଆଁ ବଗରେ,
ଫୁଲମାଳ ଗୁନ୍ଥି ଗଭାରେ ତା ଦେଲେ
କାଢ଼ି ଫିଙ୍ଗିଦଏ କାହିଁକି ଦୂରେ ?
ସଖୀମାନେ ଦେଖି କୁହାକୁହି ହେଲେ
ରୁକ୍ମଣୀ ଢଙ୍ଗ ତ ନୁହେ ଲୋ ଇଏ,
କିଏ କ'ଣ ପ୍ରେମ- ମନ୍ତ୍ର ଫୁଙ୍କିଲା କି
କାହିଁକି ବଦଳିଗଲା ଲୋ ସିଏ ?
ଏଗୁଡ଼ାକ ସବୁ ପାଗଳୀ ଲକ୍ଷଣ
କାହିଁକି ବାଳକୁ ନଖୋରେ ଏତେ,
ତା ମୁଣ୍ଡରେ କ'ଣ ଉକୁଣୀ ପଶିଛି
କୁଣ୍ଡାଇ ପୁଣ୍ଡାଇ ଦେଲା ତ କେତେ ।
ବେଣୀକୁ ଥୋଉଛି ଗ୍ରୀବଟା ଉପରେ
ଦରପଣ ନେଇ ଦେଖୁଛି ପୁଣି,
କାହାକୁ ସେ ଆଉ ଝୁରୁଅଛି କଲେ
କାହାର ରୂପକୁ ହେଉଛି ଗୁଣି ?
କଥା କଥାକରେ ଚଢ଼ୁଛି ଲୋ କିଆଁ
କବାଟ କଣରେ ବସୁଛି ରୁଷି,
ଯେତେ କଳା କାଳ ଯୋଉଠି ପାଉଛି
ଗୋଟାଇ ଆଣି ସେ ହେଉଛି ଭୂଷି ।
ମଣ୍ଡା ଗେଣ୍ଡୁ ଫୁଲ ହାର ଗୁନ୍ଥି ଦେଲ
ଫିଙ୍ଗିଦେଲା ତାକୁ ସେଇଠି କିଆଁ,
ଫୁଲମାଳ କ'ଣ ଫୁଲବାଣ ପରି
ଚେଙ୍ଗିଦଏ ତାହା ଦେହରେ ନିଆଁ ?

ରୁକ୍ମିଣୀର ମନ ଜାଣିଲେ ସଖିଏ
ରୁକ୍ମିଣୀର ସେ ତ ଅନ୍ତରଯାମୀ,
ପାଖରେ ରହନ୍ତି ପାଖରେ ଶୁଅନ୍ତି
ତାହାର ଯେ ପ୍ରିଏ ମଙ୍ଗଳକାମୀ ।
ହାତ ଓଠ ଧରି ପଗୁରି ବଗୁରି
ମରମ ବେଦନା କଲେ ବାହାର,
ଶ୍ରୀକୃଷ୍ଣ କପରି ପ୍ରାପତ ହୋଇବେ
ସବୁ ସଖୀ ମିଳି କଲେ ବିଗୁର ।
ରୁକ୍ମିଣୀଙ୍କୁ ସବୁ ବୁଝାଇ ସୁଝାଇ
କହିଲେ, "ସଖୀ ଗୋ ଲେଖ ଚିଠାଉ,
ଦ୍ୱାରକାପୁରୀକୁ ସେହିଟିକୁ ନେଇ
ବିଶ୍ୱାସୀ ବ୍ରାହ୍ମଣେ ଏଇନା ଯାଉ ।
ସରମ ଭରମ ଲେଖ ସବୁ କଥା
ଏତେବେଳେ କ'ଣ ସଂକୋଚ ଶୋହେ,
ଯୁବକ ଯୁବତୀ କରନ୍ତି ଗୋ ସବୁ
ସଂସାରେ ସବୁଠି ପୀରତି ମୋହେ ।
ଚକୋରୀ ଝୁରେନା ଜ୍ୟୋଛନା ରାତିରେ
ଖୋଜି ଖୋଜି ତାର ପ୍ରଣୟୁ ସାଥୀ,
ରୋହିଣୀ ତରୁଣି ଖୋଜେନା ଶଶାଙ୍କ
ଧାଏଁନା ପଛରେ ଚାଆଁରି ରାତି ?
ଗୋପର ଗୋପୀଏ ଧାଇଁ ନ ଥିଲେ କି
କୃଷ୍ଣଙ୍କ ପାଖକୁ ଅଧ ରାତିରେ,
ଧୁଆ ପତି ସବୁ ଛାଡ଼ି କରିଦେଇ
ଡର ଥିଲା କି ଗୋ ଟିକେ ଛାତିରେ ?"
ରୁକ୍ମିଣୀ ଟିକିଏ ହସିଲେ ମୁରୁକି
ସଖୀଙ୍କ କଥାରେ ମାନିଲା ମନ,
ଲେଖିବେ ଚିଠାଉ ମନ କଲେ ଦମ୍ଭ
ଆଣିଲେ ପତର ଆଉ ଲେଖନ ।

ପଢ଼ିଲେ ବନ୍ଦିଲେ ଗଣେଶ ଚରଣ
କହିଲେ, "ହେ ପ୍ରଭୁ ବିଘ୍ନନାଶନ,
ମୋର ବିଘ୍ନସବୁ ନାଶ କରିଦିଅ
ପତି କରିଦିଅ ନନ୍ଦନନ୍ଦନ ।"
ଲେଖିଲେ ଚିଠାଉ କାଟିଦେଲେ ଲେଖା
ପୁଣି ଗାର ଦେଇ ଫୋପାଡ଼ି ଦେଲେ,
ଆହୁରି ଆଣିଲେ ଆହୁରି ଲେଖିଲେ
"ପ୍ରାଣ-ଉହୁଁ ଉହୁଁ !" ଲୁଚାଇ ଦେଲେ ।
ଆଉ ଥରେ ଲେଖି ଦୃଷ୍ଟି ତାକୁ ଚାରି
ଠିକ ଠିକ କରି ବସିଲେ ଗୁହାଁ,
ସଖିଏ ହସିଣ ପଚାରିଲେ ସବୁ
"ଲେଖିଲ ଚରିଲ କଅଣ ପାଇଁ ?
ଲେଖିଦିଅ ବେଗେ ବ୍ରାହ୍ମଣ ଆସିଲେ
ଜଣା ପଡ଼ିଯିବ ହେଲେ ଡେରି,
ହେଲେ କ'ଣ ହେବ ବ୍ରାହ୍ମଣଟିଏ ତ
ବଡ଼ ବିଶ୍ୱାସୀ ବଡ଼ ଚତୁର ।
ଏପରି ଲୋକଟେ ପାଖରେ ରଖିବ
ସବୁ କାମ ସିଏ ପାରିବ କରି,
ପରୀକ୍ଷା କରୁନା ପଠା ଦ୍ୱାରକାକୁ
ନିଶ୍ଚୟ କୃଷ୍ଣଙ୍କୁ ଆଣିବ ଧରି ।"
"ଆହେ ପ୍ରାଣନାଥ ! ଘେନ ନମସ୍କାର
କ୍ଷମିବ ମୋ ଦୋଷ କରୁଛି ନତ,
ଅବୋଧ ବାଳିକା ସଂସାରେ ପଶିନି
ଜାଣିନି ମୁଁ କିଛି କଅଁଳ ମତ ।
କାହିଁକି କେଜାଣି ପିଲାଟି ଦିନରୁ
ସଂପିଛି ପରାଣ ତୁମ ଚରଣେ,
ତୁମରି ମୁଁ ଦାସୀ ତୁମରି ଭାର୍ଯ୍ୟା
ତୁମ ଛଡ଼ା ନେବ ଆଉ କେ ଜଣେ ?

ତୁମେ ସତେ କ'ଣ ସମ୍ଭବ ଏ କଥା
ନାହିଁ ନାହିଁ ନାଥ କଦାପି ନୁହେ,'
'ତୁମ ରୂପ କେବେ ଦେଖିନ ନୟନେ
ଭାବେ ଯେତେବେଳେ ଭାସଇ ଲୁହେ ।
ଏତେ ଆକର୍ଷଣୀ କାହାର କହ ତ
ତୁମର ନୁହେ କି ଭାବିଲ ଦେଖି,
ତୁମେ ପର ଦେଖ ଅଦୃଷ୍ଟ କୁଆଡ଼େ ?
ମୋ ଅଦୃଷ୍ଟେ ଅଛ କଅଣ ଲେଖି !
କେଶରୀ ମୁହଁରୁ ଶୃଗାଳଟା ଆସି
କାଢ଼ିନେବ ବଳେ ଆହାର୍ଯ୍ୟ ତାର,
ତୁମେ ଥାଉଁ ଥାଉଁ ନେବ କହେ ମୋତେ
ପାପୀ ଦୁରାତ୍ମା ସେ ଶିଶୁପାଳ ?
କାଲ ଅଧିବାସ ଭାଇ ଯାଇଛନ୍ତି
ଶିଶୁପାଳକୁ ସେ ଆଣିବେ ଧରି,
ଉଚିତ ହେବ କି ମୋର ମନ ନାହିଁ
ମୋ ପାଇଁ ବର ସେ ପାରିବେ ବରି ?
ବାପାଙ୍କର ସିନା ଏକା ଅଧିକାର
ଝିଅକୁ ସେ ଦେଇ ପାରିବେ ଦାନ,
ସେଥିରେ ବାପର ଝିଅର କାହାରି
ହାନ ହୁଏ ନାହିଁ ସଂଭ୍ରମ ମାନ ।
ବାପାଙ୍କର ଇଚ୍ଛା ତୁମକୁ ଦେବାକୁ
ଭାଇ ତୁଚ୍ଛାଟାରେ କରନ୍ତି ବାଦ,
ତାଙ୍କର ଏଥିରେ କାହିଁ ଅଧିକାର
ବାପାଙ୍କର ମନ ମୋହର ସାଧ ।
କ୍ଷତ୍ରିୟ କୁଳରେ ଅଛି ଏ ବିଧାନ
ବାପ ଦେବ ଦାନ କି ସ୍ୱୟମ୍ବର,
ମୋ ପାଇଁ ଉଭୟ ବାପାଙ୍କର ଦାନ
ମୁଁ ତ ମୋର ପାଇଁ ବାଛୁଛି ବର ।

ଗାନ୍ଧର୍ବ ମତରେ ଅଛି ମଧ୍ୟ ଏହା
ବର ହରିନେବ କନ୍ୟାକୁ ବଳେ,
କାଳ କାଳକୁ ତ ଆମ ସମାଜରେ
ଏପରି ବିବାହ ସବୁଠି ଚଳେ ।
ଆପଣ ବିଚାରି ନ୍ୟାୟ ଦେବେ ମୋତେ
ରୁକ୍ମଣୀ ଖୋଜଇ କେବଳ ମତି,
ପ୍ରଣୟ ପାଇଁକି କାମନା ପାଇଁକି
ରୁକ୍ମଣୀ ଜନମି ନାହିଁ ଏ କ୍ଷିତି ।
ରୁକ୍ମଣୀର ମତି ନୁହେ ସୁକୁମାର
ନୁହେ ଅବଳାର ସଞ୍ଚାର ଏକା,
ଏ ଜନମେ ଯେବେ ଦେବ ନାହିଁ ଧରା
ଆର ଜନମରେ ମିଳିବ ଦେଖା ।
ମୋର ଦୂତ ନୁହେ ମରାଳ ବା ମେଘ
ମୋର ଏ ଦୂତଟି କହିବେ କଥା,
ତାଙ୍କଠାରୁ ଶୁଣି ସବୁ କଥା ବୁଝି
ରୁକ୍ମଣୀ ମନରୁ ହରିବେ ବ୍ୟଥା ।
ମଝିରେ ହିଁ ହନ ଏଇନା ମୁଁ ଏଠି
ଦୁର୍ବଳା ତ ନୁହେ ଅବଳା ଅତି,
ବାପା ଭାଇ ମିଶି ଧରି ବାନ୍ଧି କରି
ଖଞ୍ଜି ଦେଇଛନ୍ତି ଅଲୋଡ଼ା ପତି ।
ବ୍ରାହ୍ମଣଙ୍କ ସହ ନ ଆସନ୍ତି ଯେବେ
ରୁକ୍ମଣୀ ମରିବ ଅନଳେ ଝାସି,
ସେତେବେଳେ ଖାଲି ଅନୁତାପ କରି
କାନ୍ଦିବେ ଲୋତକ ସଲିଳେ ଭାସି ।
ଦାସୀ ଦଶ ଦୋଷ କ୍ଷମା କରି ନାଥ
ବିପଦରୁ ମୋତେ ଉଦ୍ଧାର ଦିଅ,
ଯୋଗ୍ୟ ମନେ କଲେ ସହଳେ ଆସିଣ
କଣାକଙ୍କଣିକୁ କୋଳକୁ ନିଅ ।”

ଚଳିଲେ ବ୍ରାହ୍ମଣ ଦ୍ୱାରକା ନଗର
ଅଞ୍ଚଳେ ଚିଠାଉ ଯତନେ ବାନ୍ଧି,
ରୁକ୍ମଣୀ ପଶିଲେ ଗମ୍ଭୀର ଭିତରେ
ତଳେ କାନପାରି ଶୋଇଲେ କାନ୍ଦି ।
ସଖିଏ ପାଖରେ ବସିଗଲେ ଘେରି
କହିଲେ ବହୁତ ବୁଝାଇ କରି,
"ଶ୍ରୀକୃଷ୍ଣ ନିଶ୍ଚୟ ଆସିବେ ଗୋ କାଲି
ରହିଥା ଦିନଟେ ଧଇର୍ଯ୍ୟ ଧରି ।"
ବ୍ରାହ୍ମଣ ପଶିଲେ ଦ୍ୱାରକା ନଗରେ
ସବୁଠି ଦେଖିଲେ ବୈକୁଣ୍ଠ ଚିହ୍ନ,
ଶାସ୍ତ୍ରରେ ପୁରାଣେ ପଢ଼ିଥିଲେ ଯାହା
ଦ୍ୱାରକା ତ ତା'ଠୁ ନୁହଇ ଭିନ୍ନ ।
କୃଷ୍ଣଙ୍କ ନଅର ସବୁଠୁ ସୁନ୍ଦର
ବିଜେ ଯୋଉଠେଇ ଯାର ଦେବତା,
କୋଉ ପଣ୍ଡିତର କୋଉ ଭାଷାରେ ବା
ବର୍ଣ୍ଣି ପାରିବ କେ ସେ ପୁର କଥା ?
ଯୋଗୀ ଋଷି ଦୁଃଖୀ ବ୍ରାହ୍ମଣ ଯାଚକ
କରିଛନ୍ତି ସେଠି ଲୋକ ଗହଳି,
ଦାନ ନେଉଛନ୍ତି ଫେରି ଆସୁଛନ୍ତି
ପୁଣି ପଶୁଛନ୍ତି ପିମ୍ପୁଡ଼ି ଭଳି ।
ଦିଆ ସରୁ ନାହିଁ ନିଆ ସରୁ ନାହିଁ
ଭଣ୍ଡାରଟା ମଧ ହେଉନି ଖାଲି,
ଯେତେ ଆସୁଛନ୍ତି ତେତେ ନେଉଛନ୍ତି
ହସି ହସି ଯାଉଅଛନ୍ତି ଚାଲି ।
କୃଷ୍ଣଙ୍କ ଅଧରେ ମଧୁର ହସର
କ୍ଷୀଣ ରେଖାଟିଏ ରହିଛି ଲାଗି,
ଯିଏ ଆସୁଅଛି ଯାହା ଇଚ୍ଛା ତାର
ମନ ପୂରି କରି ନେଉଛି ମାଗି ।

କଏ ମାଗୁଅଛୁ ହାତ ଯୋଡ଼ କରେ
ସଂସାର ଜଞ୍ଜାଳ ସହିବା ଶକ୍ତି,
କଏ ବା କାତରେ ମାଗୁଛୁ କରୁଣା
କଏସେ ମାଗୁଛୁ ଗତି ମୁକତି ।
କଏ ଭକତରେ ମାଗିନଏ ପ୍ରେମ
କଏ ସଖା ଭାବେ ମାଗୁଛୁ ସଖ୍ୟ,
ସବୁ ସାର କଥା ଦାନ ଦେବା ପାଇଁ
ଶ୍ରୀକୃଷ୍ଣ କେବଳ ମାତର ଦକ୍ଷ ।
ନୂଆ ବ୍ରାହ୍ମଣଙ୍କୁ ଦେଖିଲେ ଯୋଜନା
ଆସିଲେ ଓହ୍ଲାଇ ଆସନ ଛାଡ଼ି,
ବ୍ରାହ୍ମଣଙ୍କ ପାଦ ଧୋଇଧାଇ ଦେଇ
ପୋଛୁଦେଲେ କ୍ଷୀନ ବସନ କାଢ଼ି ।
ରୁକ୍ମୁଣୀ କରୁଣ ନିବେଦନ କ'ଣ
ଶୂନ୍ୟରୁ ଶ୍ରୀକୃଷ୍ଣ ଥିଲେ କି ଶୁଣି ?
ଦାନ ଦେଲାବେଳେ ସେହି କଥା କ'ଣ
ମନେ ମନେ ହେଉଥିଲେ ସେ ଗୁଣି ?
ଦୂତକୁ ସେ କ'ଣ ଗୃହିଁ ବସିଥିଲେ
ଦେଖିଲେ ଯୋଜନା ଆସିଲେ ଧାଇଁ,
ଗୁହାର ବାହାରେ ଆଉ କୋଉ କଥା
ନାହିଁ କି ତାଙ୍କର ଶୁଣିବା ପାଇଁ ?
ବ୍ରାହ୍ମଣଙ୍କ ହାତ ଧରି ନେଇଗଲେ
ବସାଇଲେ ପାଖେ ନିଜ ଆସନେ,
ଚକିତ ଗୃହିଣୀ ଚାହିଁଲେ ତା ଆଡ଼େ
ବସିଲେ କାହିଁକି ଗମ୍ଭୀର ମନେ ?
ବ୍ରାହ୍ମଣ କାଢ଼ିଲେ ଅଅଳ୍ପ ଚିଠାଉ
ବଢ଼ାଇଦେଲେ ତା ଶ୍ରୀକୃଷ୍ଣ କରେ,
ଆଦ୍ୟୁଁ ପ୍ରାନ୍ତଯାଏ ପଢ଼ିଲେ ଶ୍ରୀକୃଷ୍ଣ
ପଢ଼ିଲେ କ୍ଷେତରେ ଆଦ୍ଧର ଥରେ ।

ସନ୍ଧ୍ୟ ମଙ୍ଗଳାର  ଗଲେ ଭିତରକୁ
 ଦାନ ଦିଆନିଆ ହୋଇଲା ଶେଷ,
ବ୍ରାହ୍ମଣଙ୍କ ସଙ୍ଗେ  ବସି ନିକାଞ୍ଚନେ
 କଥାବାର୍ତ୍ତା କ'ଣ ହେଲେ ବିଶେଷ ।
ଅତିଥିଛି ପରି  ପୂଜିଲେ ବ୍ରାହ୍ମଣେ
 କହିଲେ ସଧୀରେ ମଧୁର ହସି,
"କାଲି ପ୍ରତ୍ୟୁଷରୁ  ଯିବା ବିଦର୍ଭକୁ
 ସାଙ୍ଗ ହୋଇ କରି ରଥରେ ବସି ।
ଯାଆନ୍ତୁ ଆପଣ  ବିଶ୍ରାମ କରନ୍ତୁ
 ବାଟ ଚାଲି ଚାଲି ଯାଇଛ ଥକି,
ରୁକ୍ମଣୀ ମୋହର  ମୁଁ ତ ରୁକ୍ମଣୀର
 କିଏ ବା କାହାକୁ ପାରିବ ଠକି ?"
ଭୋଜନ ଭଜନ  କରିଲେ ବ୍ରାହ୍ମଣ
 ଶୋଇଲେ ଆନନ୍ଦେ ସୁଖ ଶପନେ,
କୃତକୃତ୍ୟ ହୋଇ  କୃଷ୍ଣଙ୍କ ଚର୍ଚ୍ଚାରେ
 ରାତିଯାକ ଭଲ ହୋଇଲେ ମନେ ।
ରାତି ପାହିଗଲା  ଶ୍ରୀକୃଷ୍ଣ ଉଠିଲେ
 ସୁଖ ଶପନର ତଳପ ତେଜି,
ସେ ବି ରାତିଯାକ  ରୁକ୍ମଣୀଙ୍କ ଗୁଣ
 ଶୋଇ ଶୋଇ ହେଉଥାଆନ୍ତି ହେଜି ।
ଦାରୁକକୁ ଡାକି  କହିଲେ, "ଚଞ୍ଚଳ
 ମଣ୍ଡି କରି ଆଣ ମୋହର ରଥ,
ଯିବା ବିଦର୍ଭକୁ,  ଯିବା ରେ ଚଞ୍ଚଳ
 ହେଲେ ହେଉ ପଛେ ବହୁତ ପଥ ।"
ସାରଥି ଆଣିଲା  ରଥ ମଣ୍ଡିକରି
 ପକ୍ଷୀରାଜ ଘୋଡ଼ା ଯୋଚିଲା ଆଣି,
ବସିଲେ ଶ୍ରୀକୃଷ୍ଣ  ବ୍ରାହ୍ମଣ ସହିତ
 ଘୋଡ଼ାଏ ଉଡ଼ିଲେ ପବନ ଜିଣି ।

ଜାଣିଲେ ଯାଦବ ପୁଣି ବଳରାମ
ଶ୍ରୀକୃଷ୍ଣ ଗଲେଣି ବିଦର୍ଭ ଦେଶେ,
ଗଲେ ପଛେ ପଛେ ରଥ ବାଜି ଚଢ଼ି
ସଜ ହୋଇ କରି ସମର ବେଶେ ।
ଶୁଭିଲା ଶବଦ ବିଦର୍ଭ ନଗରେ
ରାମ କୃଷ୍ଣ ସେନା ସାମନ୍ତ ଧରି,
ଆସିଛନ୍ତି ସାଜ ବିବାହ ଦେଖିବେ
କିବା ରୁକ୍ମଣୀଙ୍କୁ ନେବେ ସେ ହରି ।
ବିଦର୍ଭ ନରେଶ ସମାଦର କରି
ଶ୍ରୀକୃଷ୍ଣଙ୍କୁ କଲା ପରମ ଭକ୍ତି,
ଜରାସନ୍ଧ ଦମ- ଘୋଷ ଶିଶୁପାଳ
ବିଗାଡ଼ି ବସିଲେ ତାଙ୍କର ମତି ।
ବାଜିଲା ବାଜଣା ଶୁଭେ ହୁଳହୁଳି
କେତେ ରଙ୍ଗିଣୀରେ ମଙ୍ଗଳ ଗୀତ,
ମହୁରି ମୁରଲି ଆଦି ବାଦ୍ୟଯନ୍ତ୍ରେ
ଲଳିତ ଛନ୍ଦରେ ହୋଇଲା ଧ୍ୱନିତ ।
ପଡ଼ିଗଲା ମନେ କୃଷ୍ଣଙ୍କର ଗୋପ
ଗୋପୀମାନଙ୍କର ପରମ ପ୍ରୀତି,
ରୁକ୍ମଣୀଙ୍କ ଚିଠି ପୁଣି ଅନୁରୋଧ
ପାଳିବାର ପାଇଁ ବିବାହ ନୀତି ।
ସ୍ୱୟମ୍ବର ନୁହେ କନ୍ୟାଦାନ ନୁହେ
କରିବି ଏଇନା କନ୍ୟା ହରଣ,
ଏତେ ଏତେ ରଜା ଆସି ଯେ ଅଛନ୍ତି
କରିବେ ତ ନିଶ୍ଚେ ମୋ ସଙ୍ଗେ ରଣ ।
ହରିବି ରୁକ୍ମଣୀ କରିବି ସମର
ପାଳିବି ରୁକ୍ମଣୀ ଚିଠାଉ କଥା,
ଶିଶୁପାଳ ଆସି- ଅଛି ବରବେଶେ
ଲାଜରେ ନୁଆଇଁ ଦେବି ତା' ମଥା ।

ସଖିଏ କହିଲେ ରୁକ୍ମଣୀ ଆଗରେ
"ଶ୍ରୀକୃଷ୍ଣ ଆସିଲେ ତଟାଜ ପାଇ,
ଆସ ଆସ ସଖି ! ଦେଖିବା ଅନନ୍ଦେ
ମନ ମୋହିବା ଗୋ ରୂପକୁ ଚାହିଁ ।"
ଅସିଲେ ରୁକ୍ମଣୀ ସଖୀଙ୍କ ସଙ୍ଗରେ
ଝରୋଖ ପଥରେ ଦେଖିଲେ ଚାହିଁ,
ଅନଙ୍ଗ କ ସତେ ଅଙ୍ଗଟିଏ ଆଣି
ଆସିଛି ଜଗତ ମୋହିବା ପାଇଁ ?
ଏ ତ ସେହି ରୂପ କଳ୍ପନାରେ ଯାହା
କଳପିଥିଲି ମୁଁ ମାନସପଟେ,
କିଏ ଚିତ୍ରକର ଚିତ୍ରିଲା ଏ ରୂପ
କଣିବା ପାଇଁକି ମୋତେ କି ସତେ ?
କିଏ ସେ କହିବ ରୁକ୍ମଣୀଙ୍କ ମନ
ଆନନ୍ଦର କିଏ କରିବ ସୀମା ?
ସେହି ଏକା ତାହା ମାପିବା ପାଇଁକି
ତିନ ଭୁବନରେ ଭଜନ ଯିନା !
ଆସିଲେ ରୁକ୍ମଣୀ ନାରୀଙ୍କ ମେଳରେ
ଅମ୍ବିକା ଅର୍ଚ୍ଚନା କରିବା ପାଇଁ,
କେତେ ସୁନାଗୋରୀ ମାଳ କୁମୁଦିମା
ରମଣୀ ଅଛନ୍ତି ପଛରେ ଧାଇଁ ।
କେହି ରୁକ୍ମିଣୀଙ୍କ ସମସରି ନୁହଁ
ତଥାପି ସମସ୍ତେ ସୁନ୍ଦରୀସାର,
କେହି ତ ନୁହନ୍ତି ହାଡ଼ ମାଉଁସର
ଗୋଟିଏ ଗୋଟିଏ ରତନହାର ।
ରୁକ୍ମିଣୀ ତହିଁରେ ହୀରା ପଦକଟି
କଅଁଳ ଖଣିରେ ଜଳୁଛି ପଡ଼ି,
ଯିଏ ଦେଖୁଅଛି ତାହାର ମନରୁ
କଳୁଷ କାଳିମା ଦେଉଛି ଛଡ଼ି ।

ପଦ୍ମଣ୍ଡକୁ ଗଣି ଗଣି ଗଲ୍ ପର
ଧୀରେ ଧୀରେ ଦାଣ୍ଡେ ଯାଆନ୍ତି ଚଳ,
କରେ ସୁନା ଥାଳ କୁସୁମ ଗୁଙ୍ଗୁଡ଼
କନକଗୋଡ଼ଏ ଥାଆନ୍ତି ଧରି ।
କଅଁଳ କଣ୍ଠରେ ମଙ୍ଗଳ ଗୀତିକା
ଗାଇ ଗାଇ ଚଳ ଯାଆନ୍ତି ବାଳୀ,
ଧୂଳି ଧରଣୀକୁ ଉଜଳାଇ ଦେଇ
ଚନ୍ଦ୍ରଙ୍କ ମୁହଁରେ ବୋଳନ୍ତି କାଳି ।
ହୁଳହୁଳି ଶୁଭେ ଆହୁରି ମଧୁର
ଆଜି ସବୁ ବାଜା ଯାଆନ୍ତି ହାରି,
ସବୁ ରମଣୀଙ୍କ ତୁଣ୍ଡରେ କେବଳ
ରୁକ୍ମିଣୀ ମଙ୍ଗଳ ପାଇଁ ଗୁହାରି ।
ଦେବ ଦେବୀ ସବୁ ସରଗୁଁ ଓହ୍ଲାଇ
ମରତ ଲକ୍ଷ୍ମୀଙ୍କୁ ଦେଖିବା ପାଇଁ,
ଅଧା ଗଗନରେ ରହିଲେ ଉଜଟରେ
ରୁକ୍ମିଣୀଙ୍କ ରୂପସମ୍ପଦ ଚାହିଁ ।
କୃଷ୍ଣଙ୍କ ଦେହରେ ରୁକ୍ମିଣୀ ଦିଶିବେ
କଷଟି ପଥରେ ସୁନାର ଗାର,
ଯୁଗଳ ମୂରତି ମର୍ତ୍ତ୍ୟରେ କାହିଁକି
ସରଗରେ ମଧ୍ୟ ହୋଇବେ ସାର ।
ନଗର ବାହାରେ ଦେବୀଙ୍କ ମନ୍ଦିରେ
ପଶିଗଲ ବାମାଏ କଲେ ପ୍ରଣତି,
ରୁକ୍ମିଣୀଙ୍କ ମନ ମରି ଯାଇଅଛି
କାହିଁକି ଚହଲି ଯାଇଛି ମତି !
କୃଷ୍ଣ ଆସିନାହାନ୍ତି ଶୁଣିଛନ୍ତି ତ ସେ
କାହିଁକି ମହଲିଗଲ୍ ସେ ମନ,
ଡର ମାଡ଼ୁଛି କି ଦେଖି ଶିଶୁପାଳ
ଜରାସନ୍ଧଙ୍କର ବହୁତ ସୈନ୍ୟ ।

ଦେବୀ ଆରାଧନା ସାରିଲେ ବାମାଏ
ରୁକ୍ମିଣୀଙ୍କ ପାଇଁ ମାଗିଲେ ବର,
ମାଆ ଟେଗୋ ଅମ୍ବିକେ ! କର ଗୋ କରୁଣା
ରୁକ୍ମିଣୀଙ୍କୁ ଦିଅ ମୁରଲୀଧର ।
କୁମାରୀ ସହଜେ ମନାସି ଥାଆନ୍ତି
ପାଇବା ପାଇଁକ ସୁଯୋଗ୍ୟ ପତି,
ପିଲାଟି ଦିନରୁ କୁଆଁର ପୁନେଇଁ
ଓଷା ସେଥିପାଇଁ ଗଢ଼ଇ ମତି ।
କାତ୍ୟାୟନୀ କ'ଣ ସତରେ ଶୁଣିଲେ
ରୁକ୍ମିଣୀ ନୀରବ ମନ-କାମନା,
କହିଲେ, "ଝିଅ ଲୋ ଚାଲ ଯାଉଁ ଯାଉଁ
ବାଟରେ ଟିକିଏ ଗଗନେ ଅନା ।
ହାତ ଟେକିଦେବୁ ଉପରକୁ ଝିଅ
ମୁହଁରୁ ଓଢ଼ଣା ଆଡ଼େଇ ଦେବୁ,
ରଥଟି ଉପରେ ଚୋର ନୀଳମଣି
ହସୁଛି ଚାହିଁଛି ତାକୁ ଦେଖିବୁ ।"
ଚାଲିଲେ ରୁକ୍ମିଣୀ ଧୀରେ ଧୀରେ ଧୀରେ
ଚାହିଁଲେ ଗଗନେ ଦେଖିଲେ କୃଷ୍ଣ,
ତାଙ୍କରି ଆଡ଼କୁ ଅନାଇଁ ଅଛନ୍ତି
ରଥଟି ଉପରେ ହୋଇ ସତୃଷ୍ଣ ।
ହାତ ଟେକିଦେଲେ ଊର୍ଦ୍ଧ୍ୱକୁ ରୁକ୍ମିଣୀ
ପବନେ ଚଢ଼ିଲା ସୁବର୍ଣ୍ଣ ରେଖା,
ବସନ ବଦନୁ ଅପସରି ଗଲା
ଲୁଚିବା ଶଶାଙ୍କ ପଡ଼ିଲା ଦେଖା ।
ହାତେ ହାତ ଧରି କୃଷ୍ଣ ଫୁଲ ପରି
ରୁକ୍ମିଣୀଙ୍କୁ ନେଲେ ପବନେ ତୋଳି,
ସରୁ ନାଲି ବାସ ସୁନୀଳ କୁନ୍ତଳ
କନକ ପ୍ରତିମା ଖେଳିଲେ ଦୋଳି ।

ନବଘନ କୋଳେ ସ୍ଥିର ସୌଦାମିନୀ
ଧରସ୍ଥ ରୁକ୍ମିଣୀ ଦେବୀଙ୍କ ହାତ,
କିବା ଦିଗ୍‌ବଳୟେ ଅରୁଣ କିରଣ
ଚଢ଼ିଲା ପାହିଲା ତାମସୀ ରାତ ।
ଉପରୁ ଦେବତା କଲେ ପୁଷ୍ପ ବୃଷ୍ଟି
ପୁଷ୍ପ ନୁହେ ସେ'ତ ଆଶିଷରାଶି,
କିବା ଉକତ ସେ ସୁମନ ରୂପରେ
ସରଗ ଦେବତା ଗଲେ ବରଷି ।
ଲକ୍ଷ୍ମୀ ନାରାୟଣ ହୋଇଲେ ମିଳିତ
ଗୃହସ୍ଥ ଧରମ କରିବେ ପରା,
ଯେହ୍ନେ ଧରମଟି ପ୍ରଚୁରିତ ହେବ
ସରଗ ହୋଇବ ଧୂଳିର ଧରା ।
ଗୃହସ୍ଥ ଆଶ୍ରମ ନୁହେ ଖେଳ ପାଇଁ
କରମ ଜଞ୍ଜାଳ ତାହାର ଧର୍ମ,
ରମଣୀ ପୁରୁଷ !ମଧୁର ପ୍ରଣୟ
ସନ୍ତାନ ପାଳିବା ପରମ କର୍ମ ।
ପୁଅ ଓ ଝିଅଙ୍କୁ ସେନେହ କରିଣ
ଶିଖ ଅପରକୁ ସେନେହ କରି,
ଏହି ସେନେହରୁ ସଞ୍ଚରିବ ସୁଧା
ମନକୁ ମୁହଁରେ ପଶିବ ଝରି ।
ଏହିତକ କଥା ଶିଖାଇବା ପାଇଁ
ଶ୍ରୀହରି ଆସିଲେ ବୈକୁଣ୍ଠ ଛାଡ଼ି,
ରାଜସୂୟ ଯଜ୍ଞେ କୁରୁକ୍ଷେତ୍ର ରଣେ
ଏହି ଶିକ୍ଷା କର୍ମେ ଦେବେ ସେ ବାଢ଼ି ।
ଆସିଛନ୍ତି ବ୍ୟାସ ଆଗରୁ ଧରାକୁ
ଏହି କର୍ମଯୋଗ ଲେଖିବା ପାଇଁ,
ଶ୍ରୀକୃଷ୍ଣ କହିବେ ଅର୍ଜୁନ କରିବେ
ନିକଟ ଭବିଷ୍ୟ ରହିଲା ଚାହିଁ ।

ମାନବ ପୁରକୁ ମାନବ ରୂପରେ
ଆସିଛନ୍ତି କୃଷ୍ଣ ଘୋଟିଛି ମାୟା,
ପୁଣି ଛୁଟୁଅଛି ମଝିରେ ମଝିରେ
ପକାଇ ମନରେ ସ୍ମୃତିର ଛାୟା ।
ସେଥିପାଇଁ କ'ଣ ସୁନ୍ଦର ଅଧରୁ
ମନ୍ଦ ମନ୍ଦ ହସ ଯାଉଚି ଲୁଚି,
ପୁଣି ନିମିଷକେ ଅପସରି ଯାଇ
ହଜା ସ୍ମୃତି ମୁହଁ ଦେଉଛି କୁଞ୍ଚି ।
ଶୁଭିଲା ଚହଳ ନେଲା ନେଲା ବୋଲି
ଗଉଡ଼ଟା କନ୍ୟା ନେଲା ତ ହରି,
ସାଲ୍ୱ ଦନ୍ତବକ୍ର ଧାଇଁଲେ ରାଗରେ
କନ୍ୟା ଛଡ଼ାଇବେ କୃଷ୍ଣଙ୍କୁ ମାରି ।
ଲାଗିଲା ସମର ହେଲେ ମରାମରି
ଯାଦବ ଜିଣିଲେ ବିପକ୍ଷ ଦଳ,
ଶିଶୁପାଳ ମନ ବେଦୀଟି ଉପରେ
ଲାଜ ସରମରେ ଗଳିଣି ଜଳ ।
ବରବେଶ ତାର ଶୁଖି ମଉଳିଲା
ମଙ୍ଗଳ ସୂତା ତା ପଡ଼ିଲା ଫିଟି,
ମଙ୍ଗଳ ଘଟଟା ଛୁଏଁ ଛୁଏଁ କାଆଁ
ଚଡ଼ ଚଡ଼ ହୋଇ ଗଲା ତ ଫାଟି ।
ବହିଗଲା ପାଣି ଭିଜିଗଲା ତଳ
ଟୁଲିକ ଉଠିଲା ଭୂଇଁର ମାଟି,
ଧରଣୀର ଦୁଃଖ ବୁଝିଲା କି ଆଜ
ଫାଟିଗଲା ଶିଶୁପାଳର ଛାତି ।
ରୁକ୍ମ ବାହାରିଲା ରାଗରେ ଗରଜି
କହିଲା, "ଆଜି ମୁଁ ପ୍ରତିଜ୍ଞା କଲି,
କନ୍ୟାକୁ ଏଇନା ଛଡ଼ାଇ ଆଣିବି
ଗଉଡ଼ ଟୋକାକୁ ଦେବି ମୁଁ ଦଳି ।

ବସ ଶିଶୁପାଳ ନିରାଶ ହୁଅନା
ରୁକ୍ମିଣୀକୁ ନିଶ୍ଚେ ଦେବି ତୁମକୁ,"
ଦରପଣ ତେଣେ ଲଜରେଁ କହୁଛି
"ଦେଖୁନ ନିର୍ଲଜ୍ଜ ଥିକେ ମୁହଁକୁ!"
ଶିଶୁପାଳ ମୁହଁ ପାଳଗଦା ପରି
କୁହୁଳୁଛି ତହିଁ ପଶିଛି ନିଆଁ,
ମନକୁ ମନକୁ କହୁଛି ଲୁଚାଇ
ତୁଚ୍ଛାଟାରେ ଆଉ ବସିଛି କିଆଁ ?
ରୁକ୍ମ ଊଣା ନୁହେ ବୀରପଣିଆରେ
ହେଲେହେଁ କୃଷ୍ଣଙ୍କୁ ପାରିବ କାହୁଁ,
ଝଣ୍ଡା ଧନୁଶର ଧରି ସେ ଧାଇଁଛି
ଚନ୍ଦ୍ର ଗିଳିବାକୁ ଯାଏ କି ରାହୁ ?
ଶ୍ରୀକୃଷ୍ଣ ବଦନ ଫେରାଇ ଚାହିଁଲେ
ଆସୁଅଛି ରୁକ୍ମ ତରଜି କରି,
ହସିଲେ ଶ୍ରୀକୃଷ୍ଣ ରୁକ୍ମିଣୀଙ୍କୁ ଚାହିଁ
ଶାରଙ୍ଗ ଧନୁକୁ ଟେକିଲେ ଧରି ।
ରୁକ୍ମ ଯେତେ ଶର ବିନ୍ଧଇ କୃଷ୍ଣଙ୍କୁ
କୃଷ୍ଣ ତା କାଟନ୍ତି ଓଲଟା ଶରେ,
ସବୁ ଶର ତାର ଖଣ୍ଡ ଖଣ୍ଡ ହୋଇ
ପଡ଼େ ଏଣେ ତେଣେ ଧରା ଉପରେ ।
ଶରଶେଷେ କୃଷ୍ଣ କାଟିଲେ ତା ଧନୁ
ରାଗେ ରୁକ୍ମ ଧରି ଧାଇଁଲା ଖଣ୍ଡା,
ସତରେ ଜଳୁଛି ରକତ ତାତିଛି
ସହଜେ ତ ରଜା ବୟସ ଭେଣ୍ଡା ।
ଚଢ଼ିଗଲା ରଥେ କୃଷ୍ଣଙ୍କୁ ହାଣିବ
କାଢ଼ିନେଲେ ଖଣ୍ଡା କୃଷ୍ଣ ଆଣ୍ଟରେ,
ତାର ଉତ୍ତରୀରେ ବାନ୍ଧିଦେଲେ ତାକୁ
ଟାଣ ଗଣ୍ଠି ଦେଇ ରଥ ଖୁଣ୍ଟରେ ।

ସାନ୍ତବେଣ୍ଟି କର କାଟିଲେ ତା ବାଳ
ଯାତ ମାହାତଆ ଦୁଆର ଘର,
ଦଣିଲ ତା ଶିର ହାଣୁଥିଲେ କୃଷ୍ଣ
ରୁକ୍ମଣୀ କାନ୍ଦିଲେ ହାତକୁ ଧରି ।
କହିଲେ, "ମାରନା ମାରନା ହେ ନାଥ !
ସିଏ ପରା ମୋର ଅଗ୍ରଜ ଭାଇ,
ତାଙ୍କର ମରଣ ମୋହର ଆଗରେ
ରୁକ୍ମଣୀ ତ ସହି ପାରିବ ନାହିଁ ।
କ୍ଷମା କର ତାଙ୍କୁ କ୍ଷମା କର ମୋତେ
ଏତିକି ମାଗୁଣି ଚରଣ ତଳେ,
ଜଣା ପଡ଼ିଲଣି ହାରି ଜଣା ସବୁ
କଏସେ କାହାକୁ ବଳିଲା ବଳେ ।"
ରମଣୀ ସୁଲଭ କରୁଣା ଏ ସିନା
ଭାଇ ପ୍ରତି ସ୍ନେହ ଇଏ କି ସତେ ?
ସେହି ଭାଇ ପରା ତାଙ୍କୁ କନ୍ଦାଇଣ
ଟେକି ଦେଉଥିଲା ଅଲେଡ଼ା ହାତେ ।
ସେକଥା ମନରେ ଠିକଏ ନାହିଁ କି ?
ଅଛି ଅଛି ସବୁ ! କିନ୍ତୁ କରୁଣା,
ନାରୀର ଏଇଟି ଚିର ସହଚରୀ
କେବେ କାହାଠାରୁ ହୁଏନା ଊଣା ।
ଏତିକ ନ ଥିଲେ ମାନବ ସମାଜ
ଥାଆନ୍ତା କି ଆଉ ଏପରି ସତେ ?
ରାକ୍ଷସ ରାଇଜ ହୋଇ ସାରନ୍ତାଣି
ହଣା ମରା ହେଉଥାନ୍ତେ ସମସ୍ତେ ।
ଯୋଉ ନାରୀ କରେ ଶାନ୍ତିର ପ୍ରତିଷ୍ଠା
ସେହି ନାରୀ ପୁଣି ସୃଜଇ ଅରି,
ଧରମ ବରଜ ମାତି ଭୁଲି ଯେବେ
ପ୍ରେମ କରେ ପର ପୁରୁଷ ଧରି ।

ଗୋଟିଏ ନାରୀକୁ ପୋଡ଼ଏ ପୁରୁଷ
ଏକାଠେଇ ହେଲେ ଲାଗଇ କଳି,
କେହି ତ କାହାକୁ ସହି ପାରେ ନାହିଁ
ନାରୀ କ ମଝିରେ ହୁଏନା ଦଳି ?
ପୁରୁଷ ପୁରୁଷ ହଣାମରା ହୋଇ
କେତେ ମରନ୍ତିନ କେତେଠି ପଡ଼ି ?
ନାରୀ କ'ଣ ତେବେ କାହା ମରଣରେ
ଗୁଣ ଝୁରିହୁଏ କାନ୍ଧ କଚୁଡ଼ି ?
ଦାରା ବଇରି ତା ସବୁଠାରୁ ଉଗ୍ର
କୁକୁରଟାଏ ବି ପାରେନା ସହି,
ସହନଶୀଳତା ଶିଖାଇବା ପାଇଁ
ପାଣ୍ଡବ କ ଆଉ ଆସିଲେ ମହୀ ?
ଦ୍ରୌପଦୀ ସେପରି ପାଞ୍ଚ ପତି ପାଇ
ତୃପ୍ତ ହେଲେ ନାହିଁ ଖୋଜିଲେ ଆଉ,
ଆଉ କାହା କଥା କହିବା କାହିଁକି
ରଜା ରାଣୀ ପରି ସିଆଡ଼େ ଥାଉ ।
ଦ୍ରୁପଦୀ ଗୁଣ ଦ୍ରୌପଦୀ ଶକତି
ତେବେ କ'ଣ ସତେ ଭବେ ଅତୁଳ ?
ମାନବ ସମାଜେ ବହୁ ପତି କରି
ସଂହାର କରିବା ନୁହଇ ଭଲ ?
ଭଲ ଯେବେ ନୁହଁ କାହିଁ ତା ଦ୍ୱିତୀୟ
ସେହି ତ ଗୋଟିଏ ନାହିଁ ତ ଆଉ,
ନାରୀ ସମାଜ ତ ଏଇନା ଉଠୁଛି
ଯେତେଦୂର ପାରେ ଆଗେଇ ଯାଉ ।
କିନ୍ତୁ ଦେଶ ଖୋଜେ ଶାନ୍ତି ସହଯୋଗ
ହଣାମରା କରି ହେଉ ସେ ଲୋପ,
ନାରୀ ସେଥିପାଇଁ ହେଉ ସାବଧାନ
ପୁରୁଷ ହାତରେ ନ ହେଉ ତୋପ ।

ନାସ୍ତିକ କେତେକ କରୁଛନ୍ତି ଥୋପ
ଶେଉଳ ମାରିବେ କେରାଣ୍ଡି ଗୁଚ୍ଛି,
ହୁସିଆର ନାସ୍ତି ! ଆଗତ ଭବିଷ୍ୟ
ଦେଖି ଚିହ୍ନି କରି ବଢ଼ିବ ପନ୍ଥ ।
କୃଷ୍ଣ ବାହା ହେବେ ବହୁତ ରମଣୀ
ତାର ବିଚାର ତା କରିବେ ନାହିଁ ?
ତାଙ୍କର ଶକତି ନୁହେ ମାନବର
ବୋଲି ତ ପୁରାଣ ଦେଉଛି କହି ।
ଏଇଟା କେବଳ ହିନ୍ଦୁଏ କହନ୍ତି
ଆଉ କେତେ ଧର୍ମ ଅଛି ଜଗତେ,
ସେଗୁଡ଼ିକ କ'ଣ ସବୁ ଏକମତ
କୃଷ୍ଣଙ୍କୁ ମାନନ୍ତି ଠିକ ସମସ୍ତେ ?
ବହୁତ ରମଣୀ ବହୁ ପତ୍ନୀ କଥା
ଦୋଷ ବୋଲି କରି ବାଛିଲ ମତ,
ତେବେ କ'ଣ ସିଏ ଗଲାଣି ସମାଜୁ
ଆହୁରି ବଢ଼ୁଛି ଖାଲି ଦୁର୍ମତି ।
ମାନବ ଆଖିରେ ମାନବ ବାଛୁଛି
ମାନବର ସିନା ଦୋଷ ଓ ଗୁଣ,
ଶ୍ରୀକୃଷ୍ଣ ତ ଆଉ ମାନବ ନୁହନ୍ତି
କୋଉଠି ପାଇବ କେ ତାଙ୍କ ଖୁଣ ?
ସେ ତ ବିଶ୍ୱରୂପ ସେହି ମଧ୍ୟ ବିଶ୍ୱ
ଦୋଷ ଗୁଣ ସବୁ ରହିବ ବିଶ୍ୱେ,
ଦୋଷକୁ ବରଜି ଗୁଣ ବାଛିନିଅ
ଏହି ଶିକ୍ଷା କୃଷ୍ଣ ଦିଅନ୍ତି ଶିଷ୍ୟେ ।
କିଏ ତାଙ୍କ ଶିଷ୍ୟ ବୀର ଅରଜୁନ
ଦ୍ରୌପଦୀକୁ ଆଣିଥିଲେ ତ ସିଏ,
କୃଷ୍ଣଙ୍କ କଥାରେ ମହା ଭାରତରେ
ସମର-ବିଜୟୀ ହୋଇଲା କିଏ ?

ବ୍ୟାସଦେବ କ'ଣ  ପଣ୍ଡିତ ନୁହନ୍ତ
 ବେଦ ବେଦାନ୍ତ ତ ଲେଖିଲେ ସିଏ,
ଭଗବତ ଗୀତା  ଲେଖିଛନ୍ତ ମଧ
 ତାଙ୍କୁ ଯୋଗଡ଼ଣ୍ଡ କହିଲ କଏ ?
ବ୍ୟାସଙ୍କ ପାଖରେ  କୃଷ୍ଣ ଭଗବାନ
 ଆଉ କାହା କଥା ଶୁଣିବା କଆଁ ?
ଧରମ ବଦ୍ୱେଷ  ଜାତର ବଦ୍ୱେଷ
 ଧରଣୀରେ ଜାଳ ଦେଲଣି କଆଁ ।
ବଜ୍ଞାନ ଯୁଗରେ  ପୁରାଣ କଥା ତ
 କେତେ କେଉଁଠାରେ ହେଲଣି ସତ,
କୃଷ୍ଣ ଭଗବାନ  ନୁହନ୍ତ ଏକଥା
 କହିଦେବା କ'ଣ ନୁହେ ଅସତ ?
ପୁଷ୍ପକ ବମାନୁ  ହେଲ ବ୍ୟୋମଯାନ
 ମନଯାନ ଚଢ଼ା ହେବ ପୂରଣ,
ରେଡ଼ିଓ ବେତାର  ମୂଳ କୋଉଥିରେ
 ପୁରାଣରେ ନାହିଁ ତାର ଲକ୍ଷଣ ?
ଦ୍ରୌପଦୀ ଡାକଲେ  ଘୋର ଅରଣ୍ୟରେ
 ଶ୍ରୀକୃଷ୍ଣ ପହଞ୍ଚଗଲେ ତକ୍ଷଣ,
ଏ କ'ଣ ନୁହଇ  ପୁରାଣ କଥାର
 ନୂଆ ଅବସ୍ଥାର ଟେଲିଭିଜନ ?
ମନ ଯାନର ବ  ନୁହେ ଏ ସଙ୍କେତ
 ମିଳିଯିବ ଦନେ ତାହାର ମୂଳ,
ମନ ବାହନରେ  ଚଢ଼ିବ ମାନବ
 ଲଂଘିବ ସାଗର ପୁଣି ତିପୁର ।
ଆଗେ ପରମାଣୁ  ମାନୁ ନ ଥିଲ କେ
 ପାଶ୍ଚାତ୍ୟ ଦାର୍ଶନିକ ଥିଲ ତା ଲେଖି,
ସେହି ଲେଖାଟିରୁ  ଖୋଜ ଖୋଜ କର
 ଏଇନା ବଜ୍ଞାନ ପାରିଲ ଦେଖି ।

ଖାଲି ଦେଖି ନାହିଁ ଭାଙ୍ଗି ବି ଦେଲଣି
ବିଶ୍ୱ ସଂହାରକ ଶକତି ତାର,
ମାପି ଦେଇ କରି ଚିନ୍ତା କରୁଅଛୁ
କିପରି କରିବ ସଦୁପଯ୍ୱର ।
ଯେଉଁ ପରମାଣୁ ଦୃଷ୍ଟିର ଅଜ୍ଞାତ
ତାକୁ କେଉଁପରି ଧରିଲା କିଏ ?
ସେହି ଦେଖାଇଲେ ସେହି ଭଙ୍ଗାଇଲେ
କରାଇଲେ ସବୁ ନିଷ୍ଟସ୍ୱ ସିଏ ।
କୃଷ୍ଣ ଯେତେବେଳେ ସୂକ୍ଷ୍ମ ରୂପ ଧରି
ପରମାଣୁ ପରି କରନ୍ତି କାମ,
ଅଣାକାର ପୁଣି ସାକାର ହୁଅନ୍ତି
ସିଏ ଯୋଉପରି ଦିଅନ୍ତ ନାମ ।
ସ୍ଥୂଳ ଦେହଟିରେ ଆଗରେ ବୁଲିଲେ
ମୂର୍ଖ କହେ ତାଙ୍କୁ ଖାଲି ମାନବ,
ଏହି କଥାଟିକୁ କହିଦେଲେ ଖାଲି
ମାନବ ପାଲଟି ହୁଏ ଦାନବ ।
ଦାନବ ମାନବ ସବୁ ତ ସମାନ
କେବଳ ମାତ୍ରରେ ଆକୃତିରେ ଭିନ୍ନ,
ସ୍ଥୂଳକୁ ନେଇ ଯେ ବିଚାର କରଇ
ଦେଖା ଦିଏ ତା'ଠି ହିଂସାର ଚିହ୍ନ ।
ଯାହାଠାରେ ଯେତେ ହିଂସା ରହେ ବେଶୀ
ସେହି ସିନା ହୁଏ ବଡ଼ ଦାନବ,
ଯାହାଠାରେ ହିଂସା କେତେବେଳେ ନାହିଁ
ସେହି ସିନା ଏକା ମହାମାନବ ।
ପୁଣି ଯାହାଠାରେ ଦୁହେଁ ଛନ୍ତି ମିଶି
କେହି କାହାରିକୁ କରୁନି ଲଘୁ,
ସେହି ଏକା ସିନା ଜଗତ ଈଶ୍ୱର
ଧର୍ମ ରଖିବାକୁ ଆସନ୍ତି ସ୍ୱର୍ଗୁ ।

ଅନ୍ଧ ସ୍ଥୂଳ ହେଲେ ହୃଏ ବର୍ଣ୍ଣ ରୂପ
ସବୁରି ଆଖି ତା ପାରେନା ସହି,
ସହିଲେ ଯଶୋଦା ସହିଲେ ଅର୍ଜୁନ
ଆଉ ବ୍ୟାସଦେବ ଜନମି ମହୀ ।
ଆଉ ଥରେ ଦେଖି- ଥିଲ ଦୁର୍ଯ୍ୟୋଧନ
ଯେବେ ପାଞ୍ଚଥିଲ ବାନ୍ଧିବା ପାଇଁ,
ସହି ପାରିଲ ନ ଝୋଲି ମାରଗଲ
ପାଟିଟି ଫିଟାଇ ପାରିଲ ନାହିଁ ।
କୃଷ୍ଣଙ୍କୁ ମାନବ କହିବା ଆଗରୁ
ରେ ମାନବ ବସି ସାଧନା କର,
କୃଷ୍ଣ କା'ର ଶତ୍ରୁ ମିତ୍ର ତ ନୁହନ୍ତି
ଭକତରେ ଶୋଇ ଚରଣ ଧର ।
ବଳରାମ ଆସି କହିଲେ କୃଷ୍ଣଙ୍କୁ
କେତେ ମତେ କଥା ବଢ଼ାଉ କର,
କୃଷ୍ଣ ତୁ ପାଗଳ ହୋଇ ଗଲୁଣି କି
ବନ୍ଧୁଙ୍କୁ ଏପରି କଲୁ କପର ?
ବନ୍ଧୁ ଗଉରବ ରଖିଲୁ ନାହିଁ ତୁ
ଛାଡ଼ିଦେ ଛାଡ଼ିଦେ ତାଙ୍କୁ ରେ ବେଗେ,
ବଡ଼ ଶଳା ପରା ସିଏ ରେ ତୋହର
ଦଣ୍ଡବତ ତାଙ୍କୁ କର ତ ଆଗେ ।"
ରୁକ୍ମକୁ ବୁଝାଇ ସଖାଇ କହିଲେ
ବନ୍ଧନରୁ ହେଲେ ମୁକତ କରି,
ରୁକ୍ମ ପଳାଇଲ ଏକମୁହା ହୋଇ
ପଛକୁ ତ ଆଉ ଚାହିଁନ ଫେରି ।
ରୁକ୍ମିଣୀକୁ ମଧ୍ୟ କହିଲେ ପ୍ରବୋଧି
କ୍ଷତ୍ରୀ ଧରମଟା ବଡ଼ କଠୋର,
ଯୁଦ୍ଧରେ ପଶିଲେ ରକତ ତାତଇ
ଘଟିକ ତ ଭାଇ ମଣଇ ପର ।

ଶ୍ରୀକୃଷ୍ଣଙ୍କୁ ମାରି    ରୁକ୍ମଣୀ ଆଣିବି
    ବୋଲି କରିଥିଲା ଦୁରୂହ ପଣ,
ନ ଆଣି ପାରିଲେ    ପଶିବ ବଣରେ
    କେଉଁଠି ଆସିବ ନାହିଁ ସେ ଘର ।
ପାଳିଲା ତା' ପଣ    ଫେରିଲାନି ଆଉ
    ପଶି ଅରଣ୍ୟରେ ତୋଳିଲା ଘର,
ଅପମାନ ପାଇ    ରହିଲା ସେଇଠି
    ବସାଇଲା ତହିଁ ଭୋଜ ନଗର ।
ଶିଶୁପାଳ ମୁହିଁ    ଶୁଖି କଳାକାଠ
    ଅନ୍ତରେ ଅନ୍ତରେ ବଢୁଚ ରାଗ,
ସୁଯୋଗ ପାଇଲେ    ବାଗ ପଡ଼ିଗଲେ
    ଶ୍ରୀକୃଷ୍ଣଙ୍କୁ ଧରି ମାରିବ ଆଗ ।
କଏସେ କାହାକୁ    ମାରିବ ସେକଥା
    ଶ୍ରୀକୃଷ୍ଣ କେବଳ ଜାଣନ୍ତି ଏକା,
ଭବିଷ୍ୟତ ପାଇଁ    ରହିଲା ଏଇନା
    ରାଜସୂୟ ବେଳେ ପଡ଼ିବ ଦେଖା ।
ଯେ ମରେ କୃଷ୍ଣଙ୍କ    ପରମ ବଇରି
    ସେହି ପୁଣି ହୁଏ ତାଙ୍କଠି ଲୀନ,
କେବଳ ଖେଳଇ    ସଂସାର ମାୟାରେ,
    ଶତ୍ରୁ ଶତ୍ରୁ ବୋଲି ସାରଇ ଦିନ ।
ଲେଖକ ଶ୍ରୀକୃଷ୍ଣ    କେହି କାର ଶତ୍ରୁ
    ନୁହନ୍ତି କାମରେ ମନରେ କେବେ,
ସିଏ କ'ଣ ଆଉ    ମିଶିଯିବେ ନାହିଁ
    ଭକ୍ତ ଭଗବାନ ଅଲଗା ହେବେ ?
ଶ୍ରୀକୃଷ୍ଣ ନାଆଁଟି    କେଡ଼ାଏଁ ମଧୁର
    ଭୁଣ୍ଡରୁ କାହିଁକି ଗୁଡ଼ୁ ତ ନାହିଁ,
ଜୟକୃଷ୍ଣ ପରି    ସେହି ନାଆଁଟିକୁ
    ଭରସା କରିଣ ବସିଛୁ ମୁହିଁ ।

# ଦ୍ୱାରକା ଲୀଳା

ଲକ୍ଷ୍ମୀ ନାରାୟଣ                ଏକାଠି ରଥରେ
        ଆହା କି ସୁନ୍ଦର କି ମନୋହର,
ପ୍ରାଚୀ ଦିଗ ମୂଳେ                ଉଇଁଛନ୍ତି କି ଆଜି
        ପ୍ରତ୍ୟୁଷରେ ରବି କନକ କର ।
ନୀଳ ଘନ କୋଳେ                କନକ ଚପଳା
        କାହିଁକି ଚଞ୍ଚଳ ହେଉନି ସତେ,
ସ୍ଥିର ହୋଇ କେବେ                ରହେ କି ବିଜୁଳି
        କୋଉଠି ତ ଦେଖା ନାହିଁ ଜଗତେ ?
ରୁକ୍ମିଣୀ ବୋଲଣି                କହୁଛନ୍ତି ଯାହାକୁ
        ସ୍ଥିର ସୌଦାମିନୀ ସିଏ ତ ନିଜେ,
କଳା ମେଘ ପୁଣି                କହୁଛ ଯାହାକୁ
        ସେହି ତ ଶ୍ରୀକୃଷ୍ଣ ରଥରେ ବିଜେ ।
ଝଙ୍ଗାର ଅଙ୍ଗରେ                ମିଶିଗଲା କିଆଁ
        କହ୍ନବାଠା ଖାଲି ଯୁକ୍ତି ମାତର,
କାଳେ କାଳେ ଚିର                କାଳଆ ଅଙ୍ଗାର
        ଉଜ୍ଜ୍ୱଳ ରତନ ହୀରକ ଧର ।
ରଥ ଯାଉଅଛି                ମନ୍ଥର ଗତିରେ
        ଗଛ ଲତା ସବୁ ହଅନ୍ତି ହସି,
କୋଉ କୋଉ ଗଛ                ବର-କନ୍ୟା ଶିରେ
        କୁସୁମ ଅଞ୍ଜଳି ହଅନ୍ତି ବର୍ଷି ।

ପକ୍ଷୀ ପକ୍ଷିଣୀଏ     ଗଛରେ ଗଛରେ
        ମଙ୍ଗଳ ମନ୍ତ୍ରଣା ଦିଅନ୍ତି ବାଇ,
ବୃନ୍ଦାବନ ବନେ     କୋକିଳଟିଏ କି
        ମୁରଲୀ ସ୍ୱରରେ ଦିଅଇ ଗାଇ ।
ମୟୂର ନାଚଇ     ଚନ୍ଦ୍ରିକା ଖେଳାଇ
        ନବଘନ କୋଳେ ଚପଳା ଦେଖି,
ମୃଗ ନରତକୀ     କୁଳବଧୂ ଭଳି
        ନାଚେ ପୁଚ୍ଛ ନାହିଁ ଦେବାକୁ ଠେକ ।
ଭଦଭଦଳିଆ     ଶୁଭ ଇଚ୍ଛା କରି
        ଉଡ଼ି ଉଡ଼ି ଗାଏ ମଙ୍ଗଳାଷ୍ଟକ,
ପବନ ବହଇ     ଧୀରେ ଧୀରେ ଧୀରେ
        ମୁହଁରୁ ଘରମ ହୁଅଇ ଶୁଷ୍କ ।
ମରାଳ ମରାଳୀ     ଯାଆନ୍ତି ଗଗନେ
        କୁହାକୁହି ହୋଇ ଦୁଃଖ ଓ ସୁଖ,
ରୁକ୍ମିଣୀ ଭୁଲିଲେ     ଆମ ଭୁଲ କ'ଣ
        କରିବ ଗରବ ଠେକିବ ମୁଖ ?
ହରିଣୀଏ ସବୁ     ଧାଇଁ ଯାଉ ଯାଉ
        ଭୁଲାନ୍ତି ରୁକ୍ମିଣୀ ଆଖି କଣକୁ
ଅପମାନ ପାଇ     ସଲଜ୍ଜ ଲୋଚନ
        ଲୁଚାଇ ଚାଲନ୍ତି ଘୋର ବଣକୁ ।
ବନ୍ଧୁଲୀ ହାରଇ     ଅଧର ପାଖରେ
        ରକତିମା ଲୁଚେ ସରମ ପାଇ,
ସୁନାରି ଗରବ     ଭାଙ୍ଗିଯାଏ ଗୁଏଁ
        ସୁନାଗୋଟି କାନ୍ତି ଅପାଙ୍ଗେ ଚାହିଁ ।
ଫଗୁଆ ରଙ୍ଗର     ବଣ ଫୁଲ ସବୁ
        ଫଗୁ ଗୁଣ୍ଡି କରି ଦିଅନ୍ତି ବାଞ୍ଛି,
ହୋରି ଖେଳିବାକୁ     ପ୍ରକୃତି ଚାହିଁରେ
        ଶିଶିର ନୀର କି ଦିଅନ୍ତି ଛିଞ୍ଚି ?

ସୁଷମ ବାସଙ୍ଗ    ଗଛ ମଥାନରେ
ମଥା ହଲାଉଛୁ ମଉନେ ବସି,
ରୁକ୍ମଣୀ ନାସିକା    ମୋଠାରୁ ସୁନ୍ଦର
ଯିବ କ ଲାଜରେ କଆଁରେ ପଶି ?
ବାଟ ପାଖେ ପାଖେ    ଫୁଟିଅଛୁ କୁନ୍ଦ
ରୁକ୍ମଣୀ ରଦନେ ନୁହଇ ସର,
ସରମେ ସଂକୋଚେ    ଯାଇଛୁ ମଉଳ
ଅପମାନ ପାଇ ଯିବ କ ଝର !
ରବ ଗଗନରେ    ଭାଳନ୍ତୁ ମନରେ
ନଳନୀ ପାଖରେ କ ସୁଖ ଆଜ,
ରୁକ୍ମଣୀ ଲୋଚନ    କର ଓ ଚରଣ
ମୋ ତୃଷିତ ଆଖି ଆଗରେ ଥାଜ ।
ସରଗ ସୁଷମା    ଶଶୀଙ୍କ କହଇ
କଆଁ ମୁଁ ଜୀଇଛୁ ନ ଯାଇ ମରି,
ଶ୍ରୀକୃଷ୍ଣଙ୍କ କୋଳେ    ନାଚୁ ମୁହଁଟିର
ସଙ୍ଗରେ ତ ନୁହେ ମୁଁ ସମସର ।
ବାଟରେ ଘାଟରେ    ଯିଏ ଦେଖୁଅଛୁ
କହୁଛୁ ସତେ ଲୋ କଏ ଏ ବୁହେଁ,
ନାଲ କୁମୁଦରେ    ପୀତ ପ୍ରଜାପତ
ଯତନେ ବସାଇ ଦେଇଛୁ କଏ ?
ରଥ ପହଞ୍ଚିଲା    ଦ୍ୱାରକା ସୀମାରେ
ଗରବେ ସାଗର ଫୁଲଏ ଛାତ,
ଆଜଠୁଁ ମୋ ଘରେ    ଲକ୍ଷ୍ମୀ-ନାରାୟଣ
ଖେଳବେ ସୁଖରେ ଶୟନ ପାତ ।
ଝିଅ ଜ୍ୱାଇଁଙ୍କୁ ମୁଁ    ପାରୁଛି ଆଣେଇ
ହ୍ଲେ ପାଦରେ ଢାଳଇ ଅର୍ଘ୍ୟ,
ଉପହାର ଦାଏ    ଅମୂଲ୍ୟ ରତନ
ମୋ ଘରେ ସିଏ ତ ନୁହେ ମହାର୍ଘ ।

ବାରୁଣୀଙ୍କି ଡାକ ଦିଅ ରେ ଚଞ୍ଚଳ
ଆଗ ସେ ପିନ୍ଧାନ୍ତୁ ମୁକୁତା ହାର,
ଯାଅ ଯାଅ ବେଗେ ଆଣ ରେ ମୋ ପାଇଁ
ବାଛୁ ବାଛୁ କର ରତନ ସାର ।
ସଜାଇ ଦିଅ ରେ ନଗର ଗୋଟାକ
ବାଟରେ ବାଟରେ ତୋରଣ ତୋଳ,
ରମ୍ଭାତରୁ ସବୁ ଥାପି ଦେଇଯାଅ
କାନ୍ଧ କାନ୍ଧ ଫଳ ଥାଉ ଓହଳ ।
ବାଟ ଦୁଇ ପାଖେ ପୋତି ଦେଇଯାଅ
ସୁନା ରୁପା ମଣିମାଣିକ୍ୟ ଖୁଣ୍ଟି,
ଖଦ୍ୟୋତ ବାତି ଆଣି ଝୁଲସାଇ
ପଥ ଉଜଳାଇ ଜଳୁ ସବୁଠି ।
ଡାକ ବାଜାଦାର ବଜାନ୍ତୁ ବାଇଦ
ଗାଆନ୍ତୁ ମହ୍ଲାର ରାଗରେ ଗୀତ,
ଅଦିନ ବାଦଲ ବରଷାଇ ଦିଅ
ଝାଳ ମରିଯାଉ ସଞ୍ଚରୁ ଶୀତ ।
ଦୀପକ ରାଗିଣୀ ଯୋଡ଼ିଦିଅ ପଛେ
ଦୁଆରେ ଦୁଆରେ ଜଳୁ ଦୀପାଳି,
ଦୀଆଲି ଉଆଁସ ପରବଟି ପରି
ଆନନ୍ଦ ଉତ୍ସବ ଯାଅ ରେ ପାଳି ।
ଆକାଶରେ ମଲ୍ଲୀ ଫୁଟାଇ ଦିଅ ରେ
ଲୁଟାଇ ଅନ୍ଧାର ଫୁଟାଉ ଜ୍ୟୋତି,
ଗଗନ ବିତାନେ ବିଞ୍ଚାଇ ଦେଉ ସେ
କୋଟି କୋଟି କରି କନକ ମୋତି ।
ରକାରେ ଆଜ ଏଡ଼େ ସମାରୋହେ
କାହିଁକି ଲାଗିଛି କାହାର ପାଇଁ,
ଆଲୁଅର ସୁଅ ଗଗନେ ଭୁବନେ
କୋଉଠି କାଳିମା ଟିକଏ ନାହିଁ ।

ଉଗ୍ରସେନ ସହ ଯାଦବ ଯାଦବୀ
ଯାଗ୍ଛନ୍ତି ଆସିଲେ ଭୂଇଁରେ ଚାଲି,
ସାଗର ଲହରୀ ଅଂଗରୁ ଆଗରୁ
ଧୋଇ ଦେଇଗଲା ବାଟ ଓ ବାଲି ।
ସବୁଜ କଅଁଳ ଦୁବଘାସ ଆସି
ପାରି ଦେଇ ଗଲା ସବୁ ଗାଲିଚ୍ଚ,
ଦ୍ୱାରକାର ଦାଣ୍ଡ ହୋଇଛୁ କ ସତେ
ଛାଞ୍ଚଲା ଗୋବର ପାଣିରେ ଲିପା ।
ରାମ କୃଷ୍ଣ ରଥ ଅବତରି ଗଲେ
ରୁକ୍ମଣୀଙ୍କି ରଖି ରଥରେ ଏକା,
ରଥ କଣେ କଣେ ଲଖି ରହିଗଲା
ଶ୍ରୀମୁଖ ଚନ୍ଦ୍ରମା ମୟୂଖ ଲେଖା ।
ସରଗ ସୁଷମା ମରତକୁ ଆସି
ମାନବ ଶରୀରେ କରୁଛୁ ଲୀଳା,
ପଦ ପରଶରେ ଦାଣ୍ଡର ଧୂଳି ତ
ପାଲଟି ହୋଇଲା ହୀରା ଓ ନୀଳା ।
ଯାଦବୀ କେତେକ ରଥରେ ଆରୋହି
ରୁକ୍ମଣୀଙ୍କି ନେଲେ ତଳକୁ ଧରି,
ପଦ ଚାଲିବାରୁ ଚରଣର ତଳ
ଦିଶିଲା ମନ୍ଦାର ପାଖୁଡ଼ା ପରି ।
କୁସୁମ ସୁନ୍ଦର କରେ ରମଣୀକୁ
ରୁକ୍ମଣୀ ପରଶେ ଫୁଲ ସୁନ୍ଦର,
କୁସୁମ ସୌରଭ ସଜ ଥିବାଯାକେ
ସବୁବେଳେ ଥାଏ ରୁକ୍ମଣୀଙ୍କର ।
କେତକୀ ଚମ୍ପକ ଲୁଚିବେ ଲାଜରେ
ଅଙ୍ଗର ଗଉର କାନ୍ତିକି ଦେଖି,
ରୁକ୍ମଣୀଙ୍କ ଅଙ୍ଗ ସଉନ୍ଦର୍ଯ୍ୟରାଶି
ପ୍ରକୃତି ରଖିଛୁ ଅଙ୍କରେ ଲେଖି ।

ସେସବୁ ଶୋଭା ତ ନୁହେ ଭବନର
ସେ ଯେ ଭୁବନର ଗଗନ ପରି,
କାହିଁ ସୀମା ତାର କିନ୍ତୁ ସେ ସୀମିତ
ମାନବର ଶ୍ରେଷ୍ଠ ଦେହଟି ଧରି ।
ଗଗନ ଦେହରେ କେତେ କୋଉ କଥା
ଲୁଚି ଲୁଚି କରି ରହନ୍ତି ପୂର୍ଣ୍ଣ,
ସେ ପୂର୍ଣ୍ଣତାର କି ଅଛି କାହିଁ ଚିହ୍ନ
ସିଏ ତ କେବଳ ବିଶାଳ ଶୂନ୍ୟ ।
ରୁକ୍ମିଣୀ ଶୂନ୍ୟତା ସେହିପରି ସିନା
ନୋହିଲେ ସେ ପୂର୍ଣ୍ଣ ଶୋଭା ସଂପଦେ,
ଦେଖୁନା କପରି ମନ୍ଦାର ଫୁଟିଛି
ତାର ଏ କଅଁଳ ଯୁଗଳ ପଦେ ।
ମୁହେଁ ସରସିଜ ନେନେ ନୀଳୋତ୍ପଳ
ନାସିକାରେ ତିଳ ସୁମନ ଅଛି,
ଅଧରେ ପାଟଳ ରଦନେ ଡାଳିମ୍ବ
କଣ୍ଠ କମ୍ବୁଟିକୁ ମୁହଁ ମୋଡ଼ୁଛି ।
କୃଷ୍ଣ ଅଙ୍କ ଶିକ୍ଷା ଦିଶୁ ତ ନ ଥିଲା
ରୁକ୍ମିଣୀ ବର୍ଣ୍ଣର ଫୁଲଟି ବିନା,
ମେଘହୀନ ନୀଳ ଗଗନ ବକ୍ଷରେ
ରୁକ୍ମିଣୀ ବିଜୁଳି ଝଟକ ସିନା ।
ଏଇନା ଦିଶିଲା ଶ୍ୟାମ-ନିକଷରେ
ଦଗଧ ସୁନାର ଉଜ୍ଜ୍ୱଳ ଭାତି,
ରଜନୀ କୋଳରେ ଚନ୍ଦନ ଖେଳିଲା
ହସରେ ଖୁସିରେ ନଚୁଇ ରାତି ।
କୃଷ୍ଣର ମନରେ ଗୁପତ ହୋଇ କି
ଥାନଟିଏ କାହିଁ ଥିଲା ଲୋ ଖାଲି,
ଯୋଉଥି ପାଇଁକି ହସ ଲୁଚିଥିଲା
ଲୁଚିବା ବିରହ ଆସିଲା ଚାଲି ।

ହୃଦୟ ଭିତରେ ଅଭାବ ପଶିଲେ
ମନଟା କି ସତେ ହୁଏନା ଘାଣ୍ଟି,
ଅଭାବ ତ ନୁହେ ମନରୁ ଖଣ୍ଡେ ସେ
ତେଣୁ ତ ମୁହଁଟା ପଡ଼ଇ ଫୁଟି ।
ମନର ସଙ୍ଗରେ ଦେହର ସଂବନ୍ଧ
ଏତିକ ନିବିଡ଼ ଏତେ ଅଭିନ୍ନ,
ମନ ମଉଳିଲେ ମୁହଁ ମଉଳଇ
ଫୁଟିଲେ ମୁହଁରେ ପଡ଼ଇ ଚିହ୍ନ ।
ବସୁଦେବ ଘରେ ଆନନ୍ଦ ଉତ୍ସବ
ଦେବକୀର ଗୋଡ଼ ପଡ଼ୁ ନ ଥିଲେ,
ପୁଅ ବୋହୂ ତାର ଆସିଲେ ଏକାଠି
ହସି ହସି କର ଘରେ ଓ କୋଳେ ।
ଆନନ୍ଦର ସୀମା କିଏ ବା କଳିବ
ବସୁଦେବ ମଧ୍ୟ ପାରିବ ନାହିଁ,
ଜନନୀ ହୃଦୟ ଜନନୀର ସ୍ନେହ
କୋଉ ବାପଟାର ଅଛି ବା କାହିଁ ?
ଜନନୀ ହୃଦୟ ଲହରୀରୁ ବଳି
ସ୍ନେହ ମନ୍ଦାକିନୀ କୂଳ ଉଛୁଳା,
ଯୋଉଥି ପାଇଁ କି ନାଳ ରକତଟା
ଛୁଏଁ ହୋଇଯାଏ ସୁଧା ଧଉଳା ।
ଜାଳଦିଏ ଶକ୍ତି ଶିରରେ ଶିରରେ
ବିଦ୍ୟୁତ ବଜ୍ରରୁ ବଳେ ସେ ବଳ,
ସେହି ବଳଟିକି ଊଣା ହୋଇଗଲେ
ଶରୀର କଳଟି ହୁଏ ଅଚଳ ।
ଏହି ଅଚଳତା ନୁହଇ କି ଜଡ଼
ଜଡ଼ତା ନୁହଇ ଆମ ମରଣ,
ମାଆ ଅଭାବରେ କରୁଣ ସନ୍ତାନ
ଅକାଳରେ ତାର ମୃତ୍ୟୁ ବରଣ ।

ପୁଅ ମରଣରେ କାନ୍ଦେନା ଜନନୀ
ସବୁବେଳେ ନେତ୍ରୁ ଢାଳେନା ଲୁହ,
ନାଲିଆ ରକତ ଶୁଭ୍ର ସ୍ତନ କ୍ଷୀର
ସ୍ନେହ ଗଙ୍ଗାଧାର ସେ କ'ଣ ନୁହ ?
ରୁକ୍ମିଣୀ ହରଣ କୃଷ୍ଣ ପରିଣୟ
ଶିଶୁପାଳ ବରବେଶର କଥା,
ଶୁଣିଲେ କେତେକ ହସନ୍ତି ଖୁସିରେ
କେତେ ବା ଲଜରେ ନୁଆଁନ୍ତି ମଥା ।
ଶିଶୁପାଳ କ'ଣ ନୁଆଁଇ ନ ଥିଲା
ବେହିଆ ମୁହଁରେ ଥିଲଟି ଲଜ,
କିବା ସେ ହିଂସାରେ ଜଳିଲା ବଡ଼ାହେଁ
କୃଷ୍ଣ ମାରିବାକୁ ହୋଇଲା ସଜ ।
ଏଇନା ସେ କଥା ଢଣି ଢଣୁ ନାହିଁ
ଅଦୃଷ୍ଟ ରଖିଛୁ ଲୁଗୃଇ କରି,
କିନ୍ତୁ ଶ୍ରୀକୃଷ୍ଣ ତ ଦେଖନ୍ତି ଅଦୃଷ୍ଟ
ହସିଲେଣି ଖାଲି ଚହଟି ଧରି ।
ପୂରିଲା ବରଷ ରୁକ୍ମିଣୀ ପ୍ରସବ
କଲେ ପୁଅଟିଏ କୃଷ୍ଣଙ୍କ ପରି,
ଶିବ ଯୋଗ ଭଙ୍ଗି ମରିଥିଲା କାମ
ଏଇନା ଆସିଲା ଶରୀର ଧରି ।
ଧରି ନାହିଁ ଫୁଲ କମାଣ ହାତରେ
ଏଇନା କା ଯୋଗ ଭଙ୍ଗିବ ନାହିଁ,
ଲଭିବ କାମିନୀ ମାରିବ ଶମ୍ବର
କାଳ ବସିଲାଣି ତାକୁ ହିଁ ଚାହିଁ ।
ନାରଦ ତ ଅଉ ସହଜ ନୁହନ୍ତି
ପେଟରେ ତାଙ୍କର ରହେନା କଥା,
କପଟ କୋଉଠି କଳି ଲଗାଇବେ
ସେହି ଚିନ୍ତା କରୁଥାନ୍ତି ସର୍ବଥା ।

ଆସିଲେ ଶମ୍ବର ଅସୁର ଘରକୁ
କହିଦେଲେ କାନେ ଗୁପତ କରି,
"ଆରେ ମୋର ପ୍ରିୟ ନଷ୍ଟିନ୍ତ କାହିଁକି
ଦ୍ୱାରକାରେ ଜନ୍ମିଲାଣି ତୋ ଅରି ।
ଶ୍ରୀକୃଷ୍ଣ ଔରସେ ରୁକ୍ମଣୀ ଗରଭେ
ଜନମିଛି ଯୋଉ ପହିଲି ପୁଅ,
ସେ ତୋତେ ମାରିବ ତାକୁ ମାରି ଆଗେ
ସୁଖ ତଳପରେ ତା ଅନ୍ତେ ଶୁଅ ।
ଏଇନା ସେ ପୁଅ ଜନମ ହୋଇଛି
ସମସ୍ତେ ନଘୋଡ଼ ଅଛନ୍ତି ଶୋଇ,
ଆରୁ ଯେବେ ଯାଅ ଚଞ୍ଚଳ ଦ୍ୱାରକା
ଆଗ ଯମଘରେ ତାକୁ ଦେ ଥୋଇ ।
ନ ହେଲେ ତୁ ଜାଣେ ମରିବୁ ତା ହାତେ
କେହି ତୋତେ ରଖି ପାରିବ ନାହିଁ,
ଖରା ପଡ଼ିବାକୁ ବେଳ ବଢ଼ିବାକୁ
ମରଣ କେବଳ ବସିଛି ଗୃହିଁ ।
ଶ୍ରୀକୃଷ୍ଣ ଏଇନା ଦ୍ୱାରକାରେ ନାହିଁ
ଆଜି ରାତି ରାତି ସେ କାମ ସାରି,
ଶ୍ରୀକୃଷ୍ଣ ଆସିଲେ କରି ପାରିବୁନି
ତେଣିକି ସରିବ ତୋର ସଂହାର ।"
ଶୁଣିଲା ଯୋଜନା ହେଲା ସେ ଉଚାଟ
ଗଲା ଦ୍ୱାରକାକୁ ରାତିକା ରାତି,
ଦେଖିଲା ସକଳେ ଶୋଇଛନ୍ତି ସୁଖେ
ରୁକ୍ମଣୀ ତ ନିଜେ ପୁଣି ପୁଅଟି ।
ମନ୍ତୁରିଲା ଧୂଳି ପକାଇଲା ଶିରେ
ଯେତେ ଯିଏ ଯହିଁ ଥିଲେଟି ଶୋଇ,
ଧରିଲା ମନ୍ତ୍ରର ଶୋଇଲେ ଆହୁରି
ଗୁହଁ ଗୁହଁ ଗଲେ ଅଚେତ ହୋଇ ।

ପଶିଲା ଅନିରୁଦ୍ଧ ଶାଳରେ ନିଃଶଙ୍କ
ଆଣିଲା ମୂଅକୁ କୋଳରୁ କାଢ଼ି,
ଧଇଲା ବକ୍ଷରେ ଛୁଆ ବ କାନ୍ଦନ
ସାଗର ଗରଭେ ଦେଲା ଫୋପାଡ଼ି ।
ଭେକଲା ମାଛଟା ଗୁଣ୍ଡି ବସିଥିଲା
ଗିଳିଦେଲା ପୁଅ ରହିଲା ଜଳେ,
ସକାଳେ ସେ ମାଛ ପଡ଼ିଲା କେଉଟ
ମାଛଧରା ଜାଲେ ଦଇବ ବଳେ ।
କେଉଟ ଭେଟିଲା ରଜାକୁ ସେ ମାଛ
ରଜା ପଠାଇଲେ ରାନ୍ଧୁଣୀ ପାଖେ,
ରାନ୍ଧିବ ସେ ମାଛ ରଜା ମଣୋହିକ
ରଜା ତା ଖାଇବ ବସିଣ ସୁଖେ ।
କିଏସେ ରାନ୍ଧୁଣୀ ? ମଦନ ଭରିଯା
ମାୟାବତୀ ନାମେ ଥିଲା ତା ଘରେ,
ପ୍ରତିଦିନ ସିଏ ଲୁଚଇ ମାୟାରେ
ରଜା ଅନ୍ୟ ନାରୀ ସମ୍ଭୋଗ କରେ ।
ତାରକା ଅସୁର କଲା ଅତ୍ୟାଚାର
ବସିଲା ପାଟଣା ହରିବ ବଳେ,
ଦେବତାଏ ସବୁ ବସୁରିଲେ ସ୍ୱର୍ଗେ
ତାରକାକୁ ମାରିବାକୁ କୌଶଳେ ।
ସେତେବେଳେ ଶିବ ଥିଲେ ତପସ୍ୟାରେ
କିଏସେ ଭାଙ୍ଗିବ ତାଙ୍କର ତପ !.
ତାଙ୍କ ଔରସରେ ପୁଅ ନ ଜନ୍ମିଲେ
ତାରକା ମାରିବ କାର ବହପ ?
କାମକୁ ଡାକିଲେ ସବୁ ଦେବତାଏ
କହିଲେ ତାହାକୁ ସକଳ କଥା,
କଅଣ କରିବ କାହାକୁ ଡରିବ
ସନମତ କଲା ନୁଆଁଇ ମଥା ।

ବାହାରିଲେ ଘରୁ ସଜବାଜ ହୋଇ
ହାତେ ଫୁଲଧନୁ ପଞ୍ଚ କୁସୁମ,
ମଳୟ ବହିଲା କୋକିଳ ଗାଇଲା
ଋତୁରାଜ ହୋଇଗଲା ସୁଷମ ।
ଗଉରୀ ଦିଅନ୍ତେ ବେଶଭୂଷା ପିନ୍ଧି
ସଜବାଜ ହୋଇ ରହିଲେ ପାଶେ,
ଯୋଗ ଭାଙ୍ଗିଗଲେ ରମିବେ ରମଣେ
ତନୟ ପ୍ରସବ କରିବା ଆଶେ ।
ମଦନ ଏଥର ଉଠାଇଲା ଧନୁ
ଅମଞ୍ଜିଲା ଗୁଣ ବନ୍ଧିଲା ବାଣ,
ଶିବ ଯୋଗ ଭଙ୍ଗି ଗୁଣ୍ଡା କରିଦେଲା
ଅସମ୍ଭବ ଯାହା କୁଳଶୁଁ ଠାଣ ।
ଶିବ ରୋଷ କଲେ ତରଟି ଗୃହିଁଲେ
ନୟନୁଁ ଅନଳ ଉଠିଲା ଜଳି,
ମଦନ ସହନ୍ତା ? ଭସ୍ମ ହୋଇଗଲା
ଜଳନ୍ତା ନିଆଁରେ ପତଙ୍ଗ ପରି ।
କାମ ମରିଗଲା ଶୁଣିଲା ତହଳ
ତା ଭାରିଯା ରତି ହେଲା ବିକଳ,
ଧାଇଁଲା ସେଠିକି ପତି ସଙ୍ଗତରେ
ମରିବ ବୋଲି ସେ ଜାଳି ଅନଳ ।
ବୁଝାଇ ସୁଝାଇ ନିବର୍ତ୍ତାଇ ବ୍ରହ୍ମା
କହିଲେ, "ହିଅ ଲୋ କାନ୍ଦନା ଏତେ,
ଏହି ଦେହ ଧରି ମରତକୁ ଯାଅ
ଯେଉଁଠି ପତି ହେବ ପ୍ରାପତ ତୋତେ ।
ଦେଉଛି ଏ ମନ୍ତ୍ର ଜପିବୁ ଏହାକୁ
ସେହିଠି ହେବ ଗୋ ତୋ ପତି ଦରି,
ରଖିବୁ ସଞ୍ଚାରୁ ତାହାରି ବଳରେ
ମାୟା ଯେତେ ଇଛା ପାରିବୁ କରି ।

ସ୍ତମ୍ଭନ ମୋହନ ବଶ ଉଚ୍ଚାଟନ
ସବୁ ଏହି ମନ୍ତ୍ରଟିର ଅଧୀନ,
ଏହି ମନ୍ତ୍ର ବଳେ ରଖିବୁ ନିଜକୁ
ରଖିବୁ ସମସ୍ତଙ୍କ ପତି-ଜୀବନ ।"
ଏହି ରତି ପିଏ ଶମ୍ବର ରନ୍ଧୁଣୀ
ନାମ ମାୟାବତୀ ମାୟାକାରିଣୀ,
ଶମ୍ବରାସୁରର ଅତି ପ୍ରିୟବତୀ
ସମ ନୁହେ ସଙ୍ଗେ ନିଜ ଘରଣୀ ।
ମାଛ ପହଞ୍ଚିଲା ରନ୍ଧୁଣୀ ପାଖରେ
ଭୃତ୍ୟ ତା କାଟିଲା ଦୁ'ଫାଳ କରି,
ଦେଖିଲା ପେଟରେ ସୁନ୍ଦର ତନୟ
ରହିଛି ଜୀଅନ୍ତା ନାହିଁ ସେ ମରି ।
ମାୟାବତୀ ପାଖେ ଥୋଇଲା ପୁଅକୁ
ପୁଅ ତ ନୁହେ ସେ ପୁନଅଁ ଚନ୍ଦ୍ର,
କଅଁଳା ପୁଅଟା ମୁହଁଟାରେ ହସ
ଟିକଏ ହେଲେ ବି ନାହିଁ ତା କାନ୍ଦ ।
ମୀନ ଗରଭରୁ ବାହାରିଲା ବୋଲି
ନାଆଁ ଦେଲେ ତାର ମୀନକେତନ,
ଧୋଇଧାଇ ଦେଇ ରଖିଲା ତାହାକୁ
ପାଳିଲା ପୁଅକୁ କରି ଯତନ ।
ଶମ୍ବରାସୁରକୁ ଦେଖାଇଲା ତାକୁ
ସହଜେ ତାର ତ ନ ଥିଲା ପୁଅ,
କହିଲା ଖୁସିରେ "କୋଉଠୁ ପାଇଲ
ଅନ୍ଧାର ଘର ମୋ କଲ ଆଲୁଅ ।
ପାଳ ଏହିଟିକୁ ଯତନ କରି ଗୋ
ବଂଶ ରହିବ ଏହାରି ପାଇଁ",
ଅନ୍ଧାର ଗଡରେ କୃଷ୍ଣଙ୍କ ପୁଅକୁ
ଫିଙ୍ଗିଲା ଦାଗରେ ଚିହ୍ନିଲା ନାହିଁ ।

ଯିଏ ଯୋଗଥିରେ ମଶବ ବଧାତା
ଝଂଜାଇ ରଖଇ କୋଉଠି ଆଣି,
ନୟୂତ କେବଳ ହସେ ଠୋଅ ଠୋଅ
ସବୁ କଥା ସିଏ ଚାରଇ ଜାଣି ।
ଦିନୁଁ ଦିନ ପୁଅ ବଢ଼ିଲା ସୁଖରେ
ଜାଣିଲା ତା ରତି ଚହ୍ନିଲା ପତି,
କନ୍ଦରପ ରୂପ ଦେଖି ନୟନରେ
ବଳାଇଲା ମନ ରଚବ ରତି ।
କନ୍ଦରପ ତାକୁ ବଗିଡ଼ିଲା ଘର
କହିଲା, "ତୁ ମାଆ ଏ ଅନାଗ୍ତର,
କପର କହୁଛୁ ଏଡ଼େ ପାପ କଥା
ପ୍ତର ରମଣୀ ତୁ ନାହିଁ ବଗ୍ତର ।"
ରତି ବୁଝାଇଲା ସବୁ କଥା ତାକୁ
ମୀନକେତନର ମାନିଲା ମନ,
ବର ଘରଯାଙ୍କ ପଶ ସେ ରହିଲେ
ଶମ୍ବର ମଶବ ଆସିଲା ଦିନ ।
ମାୟାବତୀ କାମେ ଶିଖାଇଲା ମାୟା
ମଦନ ଯୁଦ୍ଧକୁ ଡାକଲା ଯାଇଁ,
ଶମ୍ବରସୁର ତ ଘରେ ମାୟା ଜାଣେ
ଧାଇଁଲା ମାୟାରେ ଜଣିବା ପାଇଁ ।
ନୟୂତ ହସିଲା ଶୁଣାଇ ଶୁଣାଇ
କହିଲା "ଯାଉଛୁ ମଶବୁ ବୋଲି",
ମାୟାବତୀ ଦେଲା ଖଡ଼ଗ ଦଡ଼ାଇ
ମଦନ ଧଇଲା ହାତରେ ତୋଳି ।
ଲଗିଲା ଲଢ଼ାଇ ମାୟାରେ ମାୟାରେ
କନ୍ଦର୍ପ ଜଣିଲା ମାୟାର ବଳେ,
ଖଡ଼ଗରେ ହାଣି ଶମ୍ବର ଶିରକୁ
ଗଡ଼ାଇ ଦେଲା ସେ ଧରଣୀ ତଳେ ।

ସମର-ବିଜୟୀ ଘୀର କନ୍ଦରପ
ଚଳିଲ ଦ୍ୱାରକା ସଙ୍ଗରେ ଧାଇଁ,
ଯିଏ ଦେଖିଲ ସେ ଯୁଗଳ ମୂରତି
ପୁଲକେ ପୂରାଇ ଦେଲ ତା ମତି ।
କୃଷ୍ଣଙ୍କ ସାଦୃଶ୍ୟ ଧଣଇ ଅଙ୍ଗରେ
ସବୁଠି କୃଷ୍ଣଙ୍କ ସଂକେତ ଲେଖା,
ଆଉ ଜଣେ କୃଷ୍ଣ କେଉଁଠାରୁ ଆସି
ଦ୍ୱାରକାରେ ପଶି ଦେଲଣି ଦେଖା !
ରୁକ୍ମିଣୀ ଯୋଜନା ଦେଖିଲେ ସେ ରୂପ
ହଜାଇଲ ଶିଶୁ ପଡ଼ିଲ ମନେ,
ଜନମର ସ୍ନେହ ଅଶ୍ରୁ ରୂପେ ଝରି
ପଡ଼ୁ ପଡ଼ୁ ରହିଗଲ ନୟନେ ।
ରୁକ୍ମିଣୀଙ୍କ ମଧ୍ୟ ଗୁଡ଼ିନ ମଦନ
ବନ୍ଧ ଦେଇଥିଲ ଅଲକ୍ଷ୍ୟ ଶର,
ଜନମ ପୀଡ଼ିତ ମଦନ ବିକାରେ
ତନୟକୁ ମଣି ପଗ୍ଞାଣେଶ୍ୱର ।
କାହା ଦୋଷ ଗୁଣ ଗୁଡ଼ଇ କି କଏ
ବେଳ ପଡ଼ିଗଲେ ଦେଖାଇ ଦିଏ,
ବର୍ଷାରେ ଚିଳିକା ପାଣି ମିଠା ବୋଲି
ଖରାଦିନେ ଲୁଣୀ ହୁଏନା ସିଏ ?
କ୍ଷୀର ଖୁଆଇଲେ ଗୋଖର ସାପର
ବିଷ କେତେବେଳେ ଯିବ କି ଛାଡ଼ି,
ନିମ୍ବ ମୂଳେ ମହୁ ଯେତେ ଅଜାଡ଼ିଲେ
ପିତା ଦୋଷ ତାର ଯିବ କି ଉଡ଼ି ?
ବାପ ମାଆଙ୍କର ପୀରତି ଭିତରେ
କନ୍ଦରପ କ'ଣ ନ ଥାଏ ଲୁଚି,
ପୀରତି ବେଳରେ ସରମ କି କାହିଁ
ପଳାଏ ପାଖରୁ ଦୂରକୁ ଘୁଞ୍ଚି ?

ମଦନର ପାଇଁ ବଢ଼ଇ ସଂସାର
ବୃଦ୍ଧିରେ ତ ତାର ଚରମ ସୁଖ,
ସିଏ ବା କାହିଁକି ଘୂଞ୍ଚିବ ପାଖରୁ
ଘୁଞ୍ଚିଲେ ଘୋଟିବ ପରମ ଦୁଃଖ ।
ଏହି ପରିବାର ସମ୍ଭୋଗର ପାଇଁ
ପ୍ରକୃତି କରିଛି ସବୁ ସର୍ଜନା,
ସୃଜନ ମାନରେ ସହଯୋଗ ପାଇଁ
କିଏ ତ କୋଉଠି କରିନ ମନା ।
କେହି କରି ନାହିଁ କଲେ ହେବ ନାହିଁ
ଯୋଗୀ ଋଷି ସବୁ ଅଛନ୍ତି ଥକି,
ପ୍ରକୃତିର ମାନ ପ୍ରକୃତି ବିଧାନ
ପ୍ରକୃତି ପାଳୁଛି ଯତନେ ରଖି ।
ଆଜି ସବୁ କଥା ଶିଖାଇ ଦେବାକୁ
ଅଛନ୍ତି ବହୁତ ସୁଯୋଗ୍ୟ ଗୁରୁ,
ଏହାଟିକୁ କେହି ଶିଖାଇ ଦିଏନା
ଶିଖି ଆସିଥାଏ ପ୍ରକୃତିଠାରୁ ।
ନାରୀ ପୁରୁଷର ଭିଆଣ କାହିଁକି
ହେବ ନାହିଁ ହିଦ ମିଳନ ସୁଖ,
ମିଳନ ଭିତରେ ଜଳ ଜଳ ହୋଇ
ଦିଶିଯାଏ ନାହିଁ ମଦନ ମୁଖ ?
ଏଇଥି ପାଇଁ ତ ମିଳନ ଛୁଟିଲେ
ବିରହ ଦହଇ ତରୁଣ ଗ୍ରୁଡି,
ମନ କୁହୁଳଇ ହୃଦୟ ତାତଇ
ସହିପାରେ ନାହିଁ ପଡ଼ଇ ଫାଟି ।
ବିରହ-ବିଷର ମିଳନ ହିଁ ଗଦ
ମିଳନର ବିନା ସଂସାର କାହିଁ ?
ତେଣୁ ତ ତାହାକୁ ସଂସାରଠାପାଇଁ
ସମ୍ଭୋଗର ପାଇଁ ବସନ୍ତ ରୁହି ।

କଏ ବାରିଦକୁ ଦୂତ କରି ପେଶେ
ଗଗନରେ ଭ୍ରମି ଖୋଜିବା ପାଇଁ,
କଏ ହଂସଟିକୁ ପଠାଏ ନଳେଷେଧ
ହେମ ମରକତ ବେଶ ପିନ୍ଧାଇ ।
କଏ ବସି ବସି କଳ୍ପନାରେ ଖାଲି
ଗଢେ ନାନା ଗଢ଼ ଅତି ସୁନ୍ଦର,
ସପନେ କେ ଦେଖେ ମନଭୁଲା ରୂପ
କରେ କେତେ ଜାତି ପ୍ରୀତି ହୁଙ୍କର ।
ପୂଜ ମଦନକୁ ରଖ ଆସ୍ଥାରେ
ଏହୁ କଥାଟିକୁ ଶିଖାଏ ମାତ୍ର,
ଯିଏ ନ ମାନିବ ଅମଙ୍ଗଳ ତାର
ମାନିଲ୍ ଯେ ତାର ମଙ୍ଗଳ ଅତି ।
ଅସୀମ ଭିତରେ ପଶିଯାଅ ନାହିଁ
ସବୁଥିରେ ଦିଅ ସୀମାଟେ ଆଙ୍କି,
ତାହାର ଭିତରେ ସବୁ କରୁଥାଅ
କୋଉ କାମ ରହିଯିବନି ବାକି ।
ବିରହ ଭିତରେ ମିଳନ ମିଳେନା
କିନ୍ତୁ ହୋଇଯାଏ ମଧୁରତର,
ଏହୁ ମାଧୁରୀକୁ ଭୁଞ୍ଜିବା ପାଇଁକ
ତର ତର ନୋହି ଅପେକ୍ଷା କର ।
ଏହି ଅପେକ୍ଷାଟି ତାର ସୀମାରେଖା
ଡେଇଁଯାଅ ନାହିଁ ହୁଡ଼ିବ ବାଟ,
ତେଣିକି ତ ଆଉ ସହି ପାରିବନି
ସବୁଠି ବାଜିବ ମରଣ-ଘାଟ ।
ଶ୍ରୀକୃଷ୍ଣ ଆସିଲେ ହସି ହସି କରି
ବାପ ମାଆ ପୁଅ ହୋଇଲେ ଏକା,
ପିତାମାତା ସ୍ନେହେ ପୁଅର ଭକ୍ତିରେ
ପରସ୍ପରେ ସବୁ ହୋଇଲେ କଣା ।

ଯାଦବପୁରରେ ଆନନ୍ଦ-ଲହରୀ
ରୁକ୍ମିଣୀଙ୍କ କୋଳେ ହଜଲା ପୁଅ,
ସ୍ତନରୁ ତାଙ୍କର ମନକୁ ମନକୁ
ଝରଇ ବହିଲା କ୍ଷୀରର ସୁଅ ।
ଜନନୀର ସ୍ନେହ ଏହ୍ପରି ସିନା
ଶୁଖିଲା କାଠରେ ସଞ୍ଚରେ ପାଣି,
ଶୁଖିଲା ନଈରେ ଜୁଆର ଆସଇ
ମାଆ ମନ ବୁଝିଆ ପାରେ କି ଜାଣି !
ନହୁଷ ନନ୍ଦନ ଯଯାତି ପ୍ରସିଦ୍ଧ
ଭାରତର ଏକ ଛତ୍ରାଧିପତି,
ଦେବଯାନୀ ଶୁକ୍ର- ଆଚାର୍ଯ୍ୟଙ୍କ କନ୍ୟା
ଶର୍ମିଷ୍ଠା ତାଙ୍କର ଦୁଇଟି ପତ୍ନୀ ।
ଯଯାତି କ୍ଷତ୍ରିୟ ଶର୍ମିଷ୍ଠା ରାକ୍ଷସୀ
ଦେବଯାନୀ ପିତା ବ୍ରାହ୍ମଣ ଜାତି,
ଦୈତ୍ୟେ-ସୂତେ ହେଲେ ବନ୍ଧାବନ୍ଧି
ଦେବଯାନୀ ପୁତ୍ର ଯଦୁ ନୃପତି ।
ଶର୍ମିଷ୍ଠା ତନୟ ପୁରୁ ନରପତି
ତାଙ୍କଠୁଁ ଉତ୍ପତ୍ତି ପୌରବ ବଂଶ,
ପୁରୁ ଅନୋତି ଭରତ ବଢ୍ୟୋତି
ତାଙ୍କର ନାମରୁ ଭାରତବର୍ଷ ।
ଭରତଙ୍କ ନାତି ହସ୍ତୀ ନାମେ ରଜା
ତାଙ୍କ ରାଜଧାନୀ ହସ୍ତୀନାପୁର,
କୌରବ ପାଣ୍ଡବ ଶହେ ପାଞ୍ଚ ଭାଇ
ଏହି ବଂଶର ରାଜକୁମର ।
ଯଯାତି ନନ୍ଦନ ଯଦୁ ନରପତି
ତାଙ୍କ ଅନୁସାରେ ଯାଦବ-ବଂଶ,
ମଥୁରାରେ ଥିଲେ ଦ୍ୱାରକାକୁ ଗଲେ
ଶ୍ରୀକୃଷ୍ଣ ଯାଦବ-ବଂଶର ଅଂଶ ।

ସତ୍ରାଜିତ ମଧ୍ୟ ଏହି ବଂଶର
ସୂର୍ଯ୍ୟଙ୍କୁ ପୂଜିଲା କରି ଭକତି,
ସ୍ୟମନ୍ତକ ମଣି ପାଇଲା ପ୍ରୀତିରେ
ଆଦିତ୍ୟଙ୍କୁ ଜିଣି ତାହାର ଦୀପ୍ତି ।
ନିତି ଆଠ ଭାର ସୁବର୍ଣ୍ଣ ପାଏ ସେ
ଯେ ପିନ୍ଧଇ ମଣି ଗଳାରେ ତାର,
ସତ୍ରାଜିତ ତେଣୁ ହେଲା ଧନଶାଳୀ
ସୁବର୍ଣ୍ଣେ ପୂରିଲା ତାର ଭଣ୍ଡାର ।
ଉଗ୍ରସେନ ରଜା ହୋଇଲା ଗରିବ
ଜରାସନ୍ଧ ଯୋଗୁଁ ସମରେ ପଶି,
ସତ୍ରାଜିତ ତେବେ ସମ୍ପଦେ ଭାସିଲା
ମଉଜରେ ଭୋଗ କଲା ସେ ବସି ।
ସତ୍ରାଜିତେ ଦିନେ ଡାକିଲେ ଶ୍ରୀକୃଷ୍ଣ
କହିଲେ, "ମଣିଟି ଆଠଟି ଦିନ,
ଦିଅ ଉଗ୍ରସେନେ ପାଉ କିଛି ସୁନା"
ସତ୍ରାଜିତ ଶୁଣି ହେଲା ମଉନ ।
ଦିନେ ତାର ଭାଇ ଗଲା ମୃଗୟାକୁ
ସ୍ୟମନ୍ତକ ମଣି ଗଳାରେ ନାଇ,
ଘୋର ଅରଣ୍ୟରେ ସିଂହ କାହିଁ ଥିଲା
ପ୍ରସେନକୁ ମାରି ଗଲା ପକାଇ ।
ମଣିଟିକି ନେଇ ଯାଉ ଯାଉ ବାଟେ
ଜାମ୍ବବାନ ସଙ୍ଗେ ହୋଇଲା କଳି,
ସିଂହ ହତ ହେଲା ଜାମ୍ବବାନ ଜିଣି
ମଣିଟିକୁ ଗଲା ହାତରେ ଧରି ।
ଦେଲା ପୁଅ ଗଲେ ଏଣେ ଦ୍ୱାରକାରେ
ମହା ହାଲହୋଳା ପ୍ରସେନ ପାଇଁ,
ଗଲା ଅରଣ୍ୟକୁ ମୃଗୟା କରିବ
କୁଆଡ଼େ ରହିଲା ଫେରିଲା ନାହିଁ ।

କୃଷ୍ଣ ନଷ୍ଟେ ମାରି- ନେଲେ ମଣି କାଢ଼ି
ଏହି ଅପବାଦ ଶୁଣିଲା ଖାଲି,
ଶ୍ରୀକୃଷ୍ଣ ଲାଜରେ ରହିପାରିଲେନି
ଗଲେ ପ୍ରସେନକୁ ଖୋଜିବେ ବୋଲି ।
ପ୍ରସେନକୁ ସିଂହ ମାରିଛି ଦେଖିଲେ
କିନ୍ତୁ ମଣି ନାହିଁ ଗଳାରେ ତାର,
ମଣି ଖୋଜିବାକୁ ପଶିଲେ ବଣରେ
ମରିଅଛି ସିଂହ ଭୀଷଣାକାର ।
କିନ୍ତୁ ମଣି ନାହିଁ, କିଏ ନେଲା ଛେବେ ?
ଖୋଜିଲେ ବହୁତ ବଣରେ ପଶି,
ଦେଖିଲେ ବାଟରେ ଠାଆ ଠାଆ ହୋଇ
ରକତ ଓ ଭାଲୁ ପାଦ ପଡ଼ିଛି ।
ତାହା ଅନନ୍ତର ଗଲେ କିଛି ଦୂର
ଦେଖିଲେ ଗୋଟାଏ ବଡ଼ ଗହ୍ୱର,
ଜାଣିଲେ ସେଥିରେ ଭାଲୁ ପଶିଅଛି
ଗହ୍ୱର ତ ଭାଲୁମାନଙ୍କ ଘର ।
ପଶିଲେ ଗହ୍ୱରେ ଦେଖିଲେ ଦୂରରୁ
ଭାଲୁଛୁଆ ଗଳେ ଜଳୁଛି ମଣି ।
ଗଲେ ତା ପାଖକୁ ଭାଲୁଛୁଆ ଦେଖି
ଧାଇଁଲା ଉପରେ ବିପଦ ଗଣି ।
କହିଲା ବାମକୁ "ମଣିଷଟାଏ କେ
ପଶିଲାଣି ଘରେ ମାଡ଼ୁଛି ଉଠ,
କପଟ ରହିବା ନବୀପଦ ଏଠି
ଚଞ୍ଚଳ ତାହାର ଉପାୟ କର ।"
ତ୍ରେତୟା ଯୁଗରେ ରାମଙ୍କ ସଙ୍ଗରେ
ଜାମ୍ବବାନ ଯାଇଥିଲା ସମରେ,
ରାମଙ୍କ ବୀରତ୍ୱ ଦେଖି ନୟନରେ
ମନାସିଥିଲା ସେ ଥରେ ମନରେ ।

'ଅରେ ମୁଁ କପର ରାମଙ୍କ ସଙ୍ଗରେ
ସମର ପ୍ରାଙ୍ଗଣେ କଷନ୍ତି ବଳ',
ଶ୍ରୀରାମ ଜାଣିଲେ ଜାମ୍ବବାନ ମନ
ଖୁସି ହୋଇ ଦେଇଥିଲେ ଏ ବର ।
"ଦ୍ୱାପର ଯୁଗରେ କୃଷ୍ଣ ହୋଇ କରି
ଅବତରିବି ମୁଁ ଆଉଥରେ,
ସ୍ୟମନ୍ତକ ମଣି ଖୋଜି ଖୋଜି କରି
ପଶିବି ମୁଁ ଯାଇ ତୁମ ବିବରେ ।
ସେତିକ ବେଳରେ ହେବା କଷାକଷି
ଏଇନାଏ ହୋଇପାରିବ ନାହିଁ,
ଏଇନା ଅମର ହୋଇ ରହିଥାଅ
ଆସନ୍ତା ଯୁଗକୁ ବସ ଯା ରହି ।"
ସେହି ବେଳ ଏବେ ପହଞ୍ଚି ଗଲାଣି
କୃଷ୍ଣ ଜାମ୍ବବାନେ ହୋଇଲେ କଳି,
ଜାଣିଲେ ଶ୍ରୀକୃଷ୍ଣ ହାରିଲା ଜାମ୍ବବ
ଆଗ କଥାକୁ ସେ ସ୍ମରଣ କରି ।
ମଣି ସହ ଝିଅ ଦେଲା ଶ୍ରୀକୃଷ୍ଣଙ୍କୁ
ଭକତି କଲା ସେ ଚରଣେ ପଡ଼ି,
କହିଲା, "ହେ ପ୍ରଭୁ ! ଚହ୍ନିଲି ତୁମକୁ
ତ୍ରେତୟାରେ ଥିଲ କୋଦଣ୍ଡଧାରୀ ।"
ଫେରିଲେ ଶ୍ରୀକୃଷ୍ଣ ଦ୍ୱାରକା ନଗର
ଜାମ୍ବବତୀ ସହ ମଣିଟି ନେଇ,
ପ୍ରସେନ ନିଧନ କଥା ବୁଝାଇଲେ
ସତ୍ରାଜିତ କରେ ମଣିଟି ଦେଇ ।
ସତ୍ରାଜିତ ଘରି ଡରିଲା କୃଷ୍ଣଙ୍କୁ
ଦେଇଥିଲା ବୋଲି ମିଥ୍ୟାପବାଦ,
କଲା ଅନୁତାପ ଭାଳିଲା ମନରେ
ଝିଅ ଦେଇ ତୁଟାଇବ ବିବାଦ ।

ଝିଅଟିଏ ଥିଲା ନାଆଁ ସତ୍ୟଭାମା
ଭାରି ଗୁଣବନ୍ତ ଭାରି ସୁନ୍ଦରୀ,
ହସ କଉତୁକ ତାର ସହଚର
ମାନେ ଅଭିମାନେ ବଡ଼ ଚତୁରୀ ।
ଅନ୍ୟ ଭାଇ ଭଗ୍ନୀ ନ ଥିଲେ ତାହାର
ବାପ ମାଆଙ୍କର ଗେହ୍ଲା ଝିଅ ସେ,
ଟିକିଏ କଥାରେ ଅଭିମାନ କରି
ମୁହଁକୁ ଫୁଲାଇ କଣରେ ବସେ ।
ଶଙ୍ଖ ପରି ରଙ୍ଗ ଟିକିଏ ରାଗିଲେ
ମୁହଁ ହୋଇଯାଏ ନାଲି ଗୋଲାପୀ,
ଶଙ୍ଖ ଫୁଲଦାନୀ ମୁହଁରେ କିଏ କି
ନାଲି ଗୋଲାପକୁ ହୁଅଇ ଥାପି !
ଆଖିକୋଣୁଁ ତାର ରକତ କି ଝରେ
ଠୋପା ଠୋପା ହୋଇ ପଡ଼ଇ ଝଳ,
କରପଲ୍ଲବ ତ ରକତିଆ ହେଲେ
ରକତ ଠୋପା କି ଦେଇଛି ମଳ !
ହେଇନା କାନ୍ଦଣା ସେଇନାଏ ହସ
ମୁହଁରେ ଅଧରେ ପଡ଼ଇ ଫାଟି,
ହସିଲେ ଖୋଜଇ ଶୋଇବାକୁ ବକ୍ଷେ
କାନ୍ଦିଲେ ଗଡ଼ଇ ଅସନା ମାଟି ।
କୋଉ ଅଳଙ୍କାର ଲୋଡ଼ା ହୁଏ ନାହିଁ
ରମଣୀଙ୍କର ତ ସିଏ ଭୂଷଣ,
ସ୍ୟମନ୍ତକ ମଣି ଯା'ର ସମ ନୁହେ
ତାକୁ ଭୂଷିବ ବା କୋଉ ରତନ !
ଶ୍ୱେତ ପଦ୍ମ ପରି କିନ୍ତୁ ନୁହେଁ ପଦ୍ମ
ପଦ୍ମଠାରୁ ସିଏ ବେଶୀ ସୁନ୍ଦର,
ଶଙ୍ଖ ପରି କାନ୍ତି କିନ୍ତୁ ଶଙ୍ଖ ନୁହେ
ସ୍ଫଟିକ ମଣିରେ ଗଠନ ତାର ।

କଇଶ୍ୱର ଯାଉ- ଯାଉ ଯାଇ ନାହିଁ
ଆସି ଆସି ନାହିଁ ଯୌବନ ତାର,
ଇଚ୍ଛା କରୁ କରୁ କରି ନାହିଁ ସିଏ
ଗୋଟକେ ଗୁନ୍ଥିବ ପ୍ରଣୟ-ହାର ।
ହସି ହସି ନାହିଁ ଅଧର ତାହାର
ଯୁବତୀ-ସୁଲଭ ସଲଜ୍ଜ ହସ,
ବହି ବହି ନାହିଁ ହୃଦୟରୁ ତାର
ପୀରତି-ଲାଳସା ମଧୁର ରସ ।
ବୁଜି ବୁଜି ନାହିଁ ଚଞ୍ଚଳ ଚାହାଣି
ସରମକୁ ଡରି ପଡ଼ନ୍ତି ନଇଁ,
ଶେଷ ଚାହାଣୀ ତା ଛନ ଛନ ହୋଇ
ଅପାଙ୍ଗ ପ୍ରାନ୍ତରେ ଯାଇନି ରହି ।
ଚାହିଁ ଚାହିଁ ଚାହିଁ ରହିନି ଅପାଙ୍ଗେ
ଚାହାଣୀ ଟିକଏ ପଡ଼ୁଛି ଢଳି,
ସୂର୍ଯ୍ୟମୁଖୀ ଫୁଲ ସୂର୍ଯ୍ୟଙ୍କ ଆଡ଼କୁ
ବୁଲି କରି ଚାହିଁ ହଏ ଯେଭଳି ।
ଲୁଚି ଲୁଚି ନାହିଁ ସରମେ ସରମ
ଓଢ଼ଣାଟି ପଡ଼ି ନାହିଁ ଓହଳି,
ଟିକଏ ନଇଁଛି ଟିକଏ ଉଠୁଛି
ଗୁରୁ ପ୍ରଜାପତି ଊଡ଼ିଲା ପରି ।
କେବେ କେତେବେଳେ ଚାହେଁ ଉପରକୁ
ମନକୁ ମନକୁ ଓହ୍ଲାଇ ଆଣେ,
ଏତେ ଲୀଳା କରି ଜାଣେ ଯେ ରମଣୀ
ଶ୍ରୀକୃଷ୍ଣଙ୍କ ଛଡ଼ା କିଏ ସେ ଜାଣେ ?
ଅପାଙ୍ଗେ ଅପାଙ୍ଗେ ରଚିଯାଏ ମୁଦ୍ରା
ଅଧର ହଲାଇ କରଇ ଅର୍ଥ,
ତା ଭାବଭଙ୍ଗୀର ଅର୍ଥ ନ ବୁଝିଲେ
ଘଟାଇ ହଏ ସେ ଘୋର ଅନର୍ଥ ।

ଫୁଟି ଫୁଟି ନାହିଁ  କମଳ କଳଟି
ପୀରନ୍ତର ପଡ଼ ଆସୁଛି ଗୁଞ୍ଜ,
ମୁଞ୍ଜୁ ମୁଞ୍ଜୁ ମୁଞ୍ଜୁ  ମୁଞ୍ଜ ପାର ନାହିଁ
ମୁବର୍ଣ୍ଣ ମଧୁର ଲାଲସା ଆଞ୍ଜ ।
ମରମ କୁହୁଳା  ସରମ କାହାଣୀ
କହୁ କହୁ କହୁ ପାରନ କହି,
ପ୍ରଣୟ-ବାସନା  ସହୁ ସହୁ ସହି
ପାରୁଛି ସେ ପୁଣି ପାରୁନ ସହି ।
ସତ୍ୟଭାମା କଣ୍ଠ  କଣ୍ଠ ତ ନୁହଇ
ଗୀତ ବାଇଦର ତାଳ ଓ ସ୍ୱର,
ଯେତେବେଳେ ଯୋଉ  ଭାବନା ଜାଗଇ
ସେହିପରି ବାଜେ ରାଗିଣୀ ତାର ।
ତାଳେ ତାଳେ ତାଳେ  ଗୃଳିଯାଏ ତନୁ
ପୃଥୁଳ ନିତମ୍ବ ହଲାଇ କରି,
କୋଉ ଯୁବକଟା  ସମ୍ଭାଳି ହୋଇବ
ସବୁଜ ପ୍ରାଣର ଲାଲସା ଧରି ?
ଅନ୍ତର ଭାବ ତା  ପ୍ରକାଶିତ ହୁଏ
କଥା କହିବାର ଭଙ୍ଗୀରୁ ତାର,
କେତେବେଳେ ବାଜେ  ମୁରଲୀ ବେହେଲା
କେତେବେଳେ ବାଜେ ମୃଦୁ ସୀତାର ।
ବେଳେ ବେଳେ ଗାଏ  ଦୀପକ ରାଗିଣୀ
ପ୍ରଣୟ-ପ୍ରଦୀପ ଦିଏ ଜଳାଇ,
ମହ୍ଲାର ରାଗିଣୀ  ଗାଇ ଦେଇ ପୁଣି
ବିରହ-ଅନଳ ଦିଏ ଲିଭାଇ ।
ରମଣୀ-ସୁଲଭ  ସବୁ ଗୁଣ ତାର
ଅଭିମାନେ ଖାଲି ପଡ଼ଇ ଫାଟି,
ଶ୍ରୀକୃଷ୍ଣଙ୍କ ଛଡ଼ା  କିଏ ଯୋଗ୍ୟ ବର
ତାକୁ ଧରିବାକୁ କାହାର ଛାତି ?

ଖୋଜ ଖୋଜ ନାହିଁ          ପ୍ରାଣର ଦୋସର
  ପାଇଲେ କାହାକୁ ଛାଡ଼ିବ ନାହିଁ,
ମିଳୁ ବା ନ ମିଳୁ          ଏଇନା କାହାକୁ
  ମନ ଧ୍ୟାନ ଦେଇ ବସିବ ଖୁନ୍ଦି ।
ସତ୍ରାଜିତ ଦେଲା          ଝିଅ, ସ୍ୟମନ୍ତକ
  ଶ୍ରୀକୃଷ୍ଣ ଆନନ୍ଦ କନ୍ୟାକୁ ପାଇ,
ସତ୍ରାଜିତକୁ ସେ          ସ୍ୟମନ୍ତକ ମଣି
  କହିବୋଲି କରି ଦେଲେ ଫେରାଇ ।
ଏକା ସ୍ୟମନ୍ତକ          ମଣି ପାଇଁ ସିନା
  କୃଷ୍ଣଙ୍କୁ ମିଳିଲେ ଯୋଡ଼ାଏ ଝିଅ,
ମଣି ଗୁଣ ମଣି          ଛାଡ଼ିଲା ତ ନାହିଁ
  ହୁନା ସଙ୍ଗେ ସରି କନ୍ୟା ନଗ୍ନଜିତ୍ ।
ଜାମ୍ବବାନ ଭାଲୁ          ତେଣୁ ତା ଝିଅ କ
  ଭାଲୁଣୀଟା ପରି କାଳୀ କୋତରା ?
ଜାମ୍ବବାନ ନୁହେ          ଭାଲୁ କଦାଚନ
  ଅନାର୍ଯ୍ୟ ମଣିଷ ଆମରି ପରି ।
ତାହାର ତନୟା          ନଗ୍ନଜିତ୍ ମାନବୀ
  ନୋହିଲେ ଶ୍ରୀକୃଷ୍ଣ ବରନ୍ତେ ଠିକ,
ଆମ ରୁଚିଠାରୁ          କୃଷ୍ଣଙ୍କର ଶ୍ରେଷ୍ଠ
  ଭାଲୁ ଝିଅଟାକୁ ବାରନ୍ତେନିକ ?
ପଙ୍କରୁ ଜନମ          ହୁଏତ ପଙ୍କଜ
  ତାହାଠାରୁ ଭଲ କିଏ ସୁନ୍ଦର,
ଜାମ୍ବବାନ ଝିଅ          ହେବନି ସୁନ୍ଦରୀ
  ଏଥିରେ ସନ୍ଦେହ କିଆଁ ଭ୍ରମର ?
ଜାମ୍ବବତୀ ପୁଅ          ନାମ ଶାମ୍ବ ତାର
  ସବୁଠୁଁ ସୁନ୍ଦର ଅଛି ପ୍ରମାଣ,
ପାଖରେ ପାଖରେ          ଠିଆ କରିଦେଲେ
  ମଦନ ତ ହୁଏ ନାହିଁ ସମାନ ।

ରାଜସୂୟ ବେଳେ    ଶ୍ରୀକୃଷ୍ଣ ଭୀମଙ୍କୁ
ପୁଛିଲେ, "ରଜାଙ୍କୁ ଯାଉଛ ବରି,
ଯାହା ତାହା ସଙ୍ଗେ    ପୀରତି ଆଚରି
ଆଣିବ ନାହିଁଟି ରାକ୍ଷସୀ ଧରି ।"
ଭୀମ କହିଥିଲେ    ପ୍ରତ୍ୟୁତ୍ତରେ ତାର
"ତୁମେ ଅବା କୋଉ ସେଥିରେ ଊଣା,
ମଣି ଖୋଜ ଯାଇଁ    ଆଣିଲ ଭାଲୁଣୀ
କାହାକୁ ଦେଉଛ ଏ ଉଲୁଗୁଣା ?"
ଶୁଣିଲେ ଶ୍ରୀକୃଷ୍ଣ    ଦାରୁଣ ବାରତା
ଜଉଘରେ ପୋଡ଼ି ପାଣ୍ଡବେ ମଲେ,
କୃଷ୍ଣଙ୍କ ମନରେ    ଭାରି ଦୁଃଖ ହେଲା
ଭୀମଙ୍କ ସଙ୍ଗରେ ହସ୍ତିନା ଗଲେ ।
ବିଦୁରଙ୍କଠାରୁ    ଶୁଣିଲେ ଖବର
ପାଣ୍ଡବ ସତରେ ନାହାନ୍ତି ମରି,
ଆଗରୁ ସେସବୁ    ଜାଣି ପାରିଥିଲେ
ସୁଡ଼ଙ୍ଗ ବାଟରେ ଗଲେ ବାହାରି ।
ଲୋକ ଦେଖିବାକୁ    କାନ୍ଦିଲେ କହିଲେ
"ଆହା ମୋ ଅର୍ଜ୍ଜୁନ ! ଗଲୁ ରେ କାହିଁ,
କିଏ ମୋତେ ଦେଖି    ଆସିବ ରେ ଧାଇଁ
ହସିବି ମୁଁ କାହା ମୁହଁକୁ ଚାହିଁ !
ପାଞ୍ଚ ଭାଇଯାକ    ଥିଲ ଏକା ପରି
ଗୁଣବାନ ଅ.ଉ କେଶରୀ ସରି,
ସତେ ତୁମେ କ'ଣ    ଜଉଘରେ ପୋଡ଼ି
ଜଲବଲ ହୋଇ ଗଲରେ ମରି !
ଆଜଠାରୁ ମୁହିଁ    ହେଲି ରେ ନିଃସଙ୍ଗ
ହରାଇ ଦେଲି ମୁଁ ହିତୈଷୀ କୃଷ୍ଣ,
ଆଜିଠୁଁ ତ ଆଉ    ଦେଖିବ ନାହିଁ ରେ
ଯେତେ ଖୋଜୁଥିଲେ ହୋଇ ସତୃଷ୍ଣ ।

କୃଷ୍ଣ ରଚିତ ସବୁ     କାମ ପଡ଼ିଅଛି
କାହାକୁ ନେଇ ସେ କରିବ ଛାହା,
ଏକାବେଳକରେ     ତୁମର ଓ ମୋର
ବନ୍ଧୁ ସଙ୍ଗେ କ'ଣ କାଟିଲ ବାହା !
କୃଷ୍ଣ ଜନ୍ମ କ'ଣ     କାନ୍ଦିବା ପାଇଁକି
ତୁମ ଜନ୍ମ କ'ଣ ମରିବା ପାଇଁ ?
ଆସ ଭାଇ ମୋର     ଶୀଘ୍ର ଫେରି ଆସ
କାମ କରି ସବୁ ମରିବା ନାହିଁ । *
ମରଣ ବେଳ ତ     ହୋଇନି ଏଇନା
କାହିଁକି ମରିବ ଏଡ଼େ ସହଳ,
ଧର୍ମର ଯୋଦ୍ଧା     ସଜ୍ଜ ତାଜା ରକ୍ତ
ଏଇନା ତ ହୋଇ ନାହିଁ ମହଳ !
ପାପ ମରି ନାହିଁ     ପୁଣ୍ୟ ବଢ଼ି ନାହିଁ
ସଂସାରୁ କଲୁଷ ନାହିଁ ରେ ଲୁଚି,
ତେବେ କିଆଁ ତୁମେ     ତରବର ହୋଇ
ସଂସାର ସମାଜୁ ଯିବ ରେ ଘୁଞ୍ଚି ?
ମରଣରେ କ'ଣ     ହେଲ ରେ ଅମର
ଅମରଧାମକୁ ଗଲ କି ଚାଲି,
କୃଷ୍ଣ କ'ଣ ଏକା     ମରଜଗତରେ
ପ୍ରତିଦିନ ମରୁଥିବ ରେ ଖାଲି ?
ଆସ ଫେରିଆସ     ଡାକୁଛି ମୁଁ କୃଷ୍ଣ
ତୁମ ପ୍ରିୟ ବନ୍ଧୁ ତୁମର ସଖା,
ଶୁଣାଅ ରେ ଥରେ     ପାଞ୍ଚ ଭାଇଯାକ
ଶ୍ରୀମୁଖ ବଚନ ଅମିୟମଖା ।
ଲୋକଦେଖାଣିଆ     କାନ୍ଦଣା ଏ ମିଛା
ଅନ୍ତରେ ଆନନ୍ଦ ଉପରେ ଦୁଃଖ,
ଛଳନା କରି ସେ     କଳୁଥାନ୍ତି ମିଛା
କୌରବମାନଙ୍କ ପ୍ରକୃତ ସୁଖ ।

* କର୍ମ କରି ଅମର ହେବା ।

ବୁଝାଇ ସୁଝାଇ ବହୁ କଥା କହି
ଶୁଦ୍ଧି କି ସ୍ପୃହା କୁଳଧର୍ମକୁ ଗୃହିଁ,
କରାଇଲେ ଛନ୍ଦି ଅସଲ କଥାଟି
ହଳଧର ମଧ୍ୟ ଜାଣିଲେ ନାହିଁ ।
ସବୁ କଥାଯାକ ରହିଲା ଅଦୃଷ୍ଟ
ଦ୍ରୌପଦୀ ହବାହେ ପଡ଼ିବ ଦେଖା,
କିଏ ଲେଖାଇବ ଅମର ଅକ୍ଷରେ
ଅଦୃଷ୍ଟରେ ଯାହା ହୋଇଛି ଲେଖା ।
ଅଦୃଷ୍ଟ ହଜିବ ଦୃଷ୍ଟ ଲୁଚିଯିବ
ଶ୍ରୀକୃଷ୍ଣ କରିବେ ଏସବୁ ସିନା,
ସେଥିପାଇଁ କୃଷ୍ଣ ଯୁଗ ଅବତାର
ଆଜି କେ ପାରିବ ଶ୍ରୀକୃଷ୍ଣ ବିନା !
ଆଗୁଁ ସତ୍ରାଜିତ କରିଥିଲା ସତ୍ୟ
ଝିଅ ଦେବ ବୋଲି ଶତଧନ୍ୱାକୁ,
ଏଇନା ସେ ସତ୍ୟ ଲଙ୍ଘନ କରି ସେ
ଶ୍ରୀକୃଷ୍ଣଙ୍କୁ ଦେଲା ସତ୍ୟଭାମାଙ୍କୁ ।
ରଗିଲା ସେ ଭାରି ଅନ୍ତରେ ଅନ୍ତରେ
କୃତବର୍ମା ସଙ୍ଗେ କଲା ଷଡ଼ଯନ୍ତ୍ର,
ସତ୍ରାଜିତେ ମାରି ସ୍ୟମନ୍ତକ ଆଣି
ଲୁଟିଦେବ ଅପମାନ ତାହାର ।
ଚୋର ପରି ପଶି ସତ୍ରାଜିତ ଘରେ
ଶୋଇଥିଲା ତାକୁ ଦେଲା ସେ ହାଣି,
ପଶିଲା ଛନକା ଗୁଣ୍ଠରେ ତାହାର
ରଖିପାରିଲାନି ମଣିଟି ଆଣି ।
ଅକ୍ରୂର ପାଖରେ ରଖିଦେଇ ତାକୁ
ପଳାଇଲା ଘରୁ କୃଷ୍ଣଙ୍କୁ ଡରି,
ବୁଲି ବୁଲି ଖାଲି ଖୋଜିଲା ଶରଣ
ଶେଷରେ ପଶିଲା ମିଥିଳାପୁରୀ ।

ସେହି ତ ମିଥିଳା          ସେଠା ରାଜଧାନୀ
ସେହି ଜନକ ତ ଏଇନା ରଜା,
ନାହାନ୍ତି ଶ୍ରୀରାମ          ନାହାନ୍ତି ଜାନକୀ
ଉଡ଼ୁଛି ତ ଏବେ ତାଙ୍କର ଧ୍ୱଜା ।
ପତିତପାବନୀ          ଜାହ୍ନବୀ ସେପାର
ପରଷି ଯାଉଛି ଶୀତଳ ବାର,
ସେହି ପରଶରେ          ଶୋକ ଶୋଷସବୁ
ଏଇନା ସେ ଦେଶେ ନାହିଁ କାହାର ।
ଗଙ୍ଗା ଯମୁନାର          ଶୁଭ୍ର ନୀଳ ବେଣୀ
ଏକାଠେଇ ମିଶି ଏକ ଆକାର,
ଯମୁନା ହଜଇ          ଦେଇଛି ତା ସତ୍ତା
ପତ୍ତା ମିଳୁ ନାହିଁ ଖୋଜିଲେ ତାର ।
ମିଥିଳା ରାଜ୍ୟର          ବାଟ ଘାଟ ପାଟ
ପବନ ସଲିଳେ ହେଉଛି ଧୋଇ,
ଦିଗ୍‌ବଳୟ ଛୁଆଁ          ଶସ୍ୟ ଶ୍ୟାମଳିମା
ଦେଉଅଛି ମନ-ନୟନ ମୋହି ।
କୋଣ କୋଣ ଧରି          ସୌରଭ ଫୁଲର
ଖେଳିଯାଉଅଛି ସୁନା-ଲହରୀ,
ମଧୁରିଆ ଗନ୍ଧ          ଗନ୍ଧବହ ବହି
ହିଲ୍ଲୋଳ ଗଡ଼ାଇ ଯାଏ ପହଁରି ।
ଘଞ୍ଚ କୁଞ୍ଜବନ          ନିତ୍ୟ ସବୁଜିମା
ଭିତରେ ଭିତରେ ମୁନି ଆଶ୍ରମ,
ବାଟର ବାଟୋଇ          ଝାଳଶ୍ରମ ମାରି
କରିଯାଉଛନ୍ତି ବସି ବିଶ୍ରାମ ।
କିନ୍ତୁ ସତ୍ରାଜିତ          ପାଉନି ବିଶ୍ରାମ
ମନରେ ପଶିଛି ଦାରୁଣ ଦକା,
ସଜନ ନଗରୀ          ମଶାଣିର ସମ
ପଲକେ ପଲକେ ମରଣ ଶଙ୍କା ।

ସନ୍ତାନମାଙ୍କର    କଅଁଳ ହୃଦୟ
ସହି ପାରିଲାନି ପିତୃନିଧନ ।
କାନ୍ଦି କାନ୍ଦି କରି    ତତଲା ଲୁହରେ
ତିନ୍ତାଇଲେ ବକ୍ଷ ଚିରା ବସନ ।
ଘରଦ୍ୱାର ସବୁ    ବିଷ ପ୍ରାୟ ମଣି
ଝାଳ ଛଟପଟ ହୋଇଲେ ସିନା,
ଅଭିମାନିନୀ ସେ    କିଏ ବୁଝାଇବ
ଏକା ସେହି କଳା କାହ୍ନୁଟି ବିନା !
ସିଏ ତ ନାହାନ୍ତି    ଯାଇଛନ୍ତି ଚାଲି
ପାଣ୍ଡବ ମରଣ ଶୁଣି ହସ୍ତିନା,
ସହି ପାରିଲେନି    ସାରଥିକି ଡାକି
କହିଲେ, "ହେ ରଥ ସାଜ ଏଇନା ।
ଯିବି ମୁଁ ହସ୍ତିନା    କୃଷ୍ଣଙ୍କ ପାଖକୁ
ଦେଖେ ଶତଧନ୍ୱା ଲୁଚିବ କାହିଁ ?
ମରାଇବି ଆଜି    ଯୋଉଠେଇ ଥାଉ
ଘରକୁ ମୁଁ ତେବେ ଫେରିବି ଯାଇଁ ।"
ରଥରେ ବସିଲେ    ବାସି ଫୁଲ ପରି
ମୁହଁଟି ଦିଶୁଛି ମଳିନ ହୋଇ,
ନୟନରୁ ନୀର    ଝର ଝର ହୋଇ
ବହିପଡ଼ୁଅଛି ଗଣ୍ଡକୁ ଧୋଇ ।
ରଥ ଦଉଡ଼ୁଛି    ପବନ ବେଗରେ
ତଥାପି ମଣନ୍ତି ଧୀର ମନ୍ଥର,
ସାରଥିକୁ ବାର-    ମ୍ବାର କହୁଛନ୍ତି
ଚଳାଅ ରଥ ତୁ ଅତି ସତ୍ୱର ।
ଘୋଡ଼ା ଥକାମରା    ହେଲେଣି ପଛକେ
ତେବେ ବି କହନ୍ତି ଚଳାଅ ବେଗେ,
ସାରଥି ଚକିତ    ଶୁଣି ଶୁଣି କରି
କିଛି କହି ପାରୁ ନ ଥାଏ ଆଗେ ।

ପଦଅଞ୍ଚଳ ରଥ ହସ୍ତୀନା ସୀମାରେ
ଶୁଭିଲା ଶବଦ ଘୋର ଘର୍ଘର,
କୋଉ ରାଇଜରୁ କୋଉ ଶତ୍ରୁ କବା
ମାଡ଼ି ଆସୁଅଛି କୁରୁ ନଗର ।
ଚକିତ ଗୃହିଣୀ ଚାହିଁଲେ ସକଳେ
ରଥରେ ଦେଖିଲେ ଅପୂର୍ବ ନାରୀ,
ରଥଟି ଭିତରେ ସ୍ଫଟିକ ପ୍ରତିମା
ଦେବୀ କି ମାନବୀ ହେଉନି ବାରି ।
ଶ୍ରୀକୃଷ୍ଣ ଚହ୍ନିଲେ ସାରଥି ଓ ବାଜୀ
ଆସିଲେ ପାଖେଇ ଆଗକୁ ଚାଲି,
ଦେଖିଲେ ଆକୁଳା ତାଙ୍କ ସତ୍ୟଭାମା
ପୁଣି ପୁଣି ଝୁରି କାନ୍ଦନ୍ତି ଖାଲି ।
ଶ୍ରୀକୃଷ୍ଣଙ୍କୁ ଦେଖି ବଢ଼ିଲା କାନ୍ଦଣା
କହୁ କହୁ କହି ପାରନ୍ତି ନାହିଁ,
ଲୋତକେ ନୟନ ଭାସି ଯାଉଅଛି
ଚାହିଁ ଚାହିଁ ପାରୁ ନାହାନ୍ତି ଚାହିଁ ।
କେତେ ବେଳକରେ କହିଲେ ସେ କଥା
"ଶତଧନ୍ୱା ମୋର ପିତାଙ୍କୁ ମାରି,
ମଣି ନେଇ ନର ଦ୍ୱାରକା ବରଜ
କୋଉଆଡ଼େ ଯାଇ ହେଲା ବାହାରି ।",
ଶୁଣିଲେ ଯୋଜନା କୃଷ୍ଣ ବଳରାମ
ସେହି ସଜେ ରଥ ବସିଲେ ଆସି,
ରଥ ଚାଲୁଥାଏ ଧୀରେ ଧୀରେ ଧୀରେ
ଶ୍ରୀକୃଷ୍ଣ ବୁଝାନ୍ତି କେତେ ଆଶ୍ୱାସି ।
"ଆଜ ଆଗେ ଶତ- ଧନ୍ୱାକୁ ମାରିବ
କୋଉଠି ରହିବ ଦେଖିବା ଦେଖି,
ତାହା ଲଲାଟରେ ଅକାଳ ମରଣ
ବିହି ଏଡ଼େ ଶୀଘ୍ର ଦେଲା ତ ଲେଖି ।

କୋଉ ବାପ ତାକୁ ରଖିବ ଦେଖିବ
ପାତାଳରେ ପଶୁ ସରଗେ ବସୁ,
କିବା ମରତରେ ଯାହା ପାଖେ ଇଚ୍ଛା
ତାହା ପାଖେ ଯାଇ ଶରଣ ପଶୁ ।
ଅରଜୁନ ଥିଲେ ରଖନ୍ତା ଶରଣ
ଶରଣ ସୋଦର ବୀର ସେ ଏକା,
ତାର ଶୁଦ୍ଧି ନିଏଁ ସଇନ୍ଧ୍ୟ ଏଇନା
କୋଉଠୁ ମିଳିବ ତାହାର ଦେଖା !"
ସତ୍ୟଭାମା ଶୁଣି ହୋଇଲେ ଚକିତ
ପଚାରିଲେ ଖେଦେ "ତୁମକୁ ଜଣା ?"
"ହଁ ଗୋ ସୁନ୍ଦରୀ ଜଣନ୍ତା ସେ ମୋତେ
ସେ ଯେ ସଂସାରରେ ବୀରଙ୍କ ମଣି ।"
କେଜାଣି କାହିଁକି ଏତିକି ଶୁଣି
ଅର୍ଜୁନଙ୍କ ପାଇଁ କାନ୍ଦିଲା ମନ,
ପଚାରିଲେ ପୁଣି "ସେ କ'ଣ ସତରେ
ବୀରତ୍ୱ ବିଭବେ ତୁମରି ସମ ?"
ଶ୍ରୀକୃଷ୍ଣ କହିଲେ "ଏମାନ ନୁହ ଗୋ
ମୋର ରୂପ ଗୁଣ ମୋଠାରୁ ବଳେ,
ଦୁଇ ହାତରେ ସେ ଧନୁ ଧରିପାରେ
ସମରେ ଅନଳ ପରାୟେ ଜଳେ ।
ବିଜୟ ତା ନାମ ସମର ତା କାମ
ହାରିବା ଜାଣିବା ନାହିଁ ତାହାର,
କେବଳ ହସଇ କେବଳ ଜଣଇ
ସମର କରିବା ପଣ ତ ତାର ।"
ସତ୍ୟଭାମାଙ୍କର ମନେ ଅନୁରାଗ
ସଞ୍ଚାରିଇ ଦେଲେ ଭବିଷ୍ୟତକୁ,
ସୁଭଦ୍ରା ହରଣ- ବେଳେ କାମଦେବ
ସତ୍ୟଭାମା ପ୍ରବର୍ତ୍ତାଇବେ ତାକୁ ।

ଦୃଷ୍ଟ ଅଦୃଷ୍ଟର ଏ ବି ଲୁଚୁକାଳି
ଲୁଚନ୍ତି ଖୋଜନ୍ତି ନିଜକୁ ନିଜେ,
ଏଇଥି ପାଇଁ ତ ବୈକୁଣ୍ଠ ବରଜି
ଦ୍ୱାରକାରେ କରିଅଛନ୍ତି ବିଜେ ।
ଦେଖା ଦେଇ ଦେଇ ଲୁଚନ୍ତି କୁଆଡ଼େ
ପୁଣି ସଫା କରି ଦିଅନ୍ତି ଦେଖା,
ଶରତ ନିଶିରେ ବୃନ୍ଦାବନ କୁଞ୍ଜେ
ଗୋପୀଙ୍କ ହୃଦୟେ ହୋଇଛି ଲେଖା ।
କିନ୍ତୁ ନୁହନ୍ତି ସେ ମାୟାର ମିରିଗ
ଗୋଟାକଯାକ ତ ନିଜେ ସେ ମାୟା,
ତେଣୁ ମାୟାଧର ପୁଣି କାୟାଧର
ସେହି ତ ଏକାଠି ମାୟା ଓ କାୟା ।
ଏହି ଭବଭୂଇଁ ତାଙ୍କ ରଙ୍ଗମଞ୍ଚ
ଦର୍ଶକ ଓ ଶ୍ରୋତା ଜଗତଯାକ,
ଯିଏ ଦେଖୁଅଛି ସିଏ ବି ଦେଖୁନି
ମିଳନ ବିଚ୍ଛେଦାନ୍ତକ ନାଟକ ।
ଶୁଣାନ୍ତି ମୁରଲୀ ଦେଖାନ୍ତି ବିଶ୍ୱଟା
ଏହି ଅଭିନୟ କରନ୍ତି ସିଏ,
ଯିଏ ଦେଖେ ମୁଗ୍‌ଧ ଯିଏ ଶୁଣେ ତୃପ୍ତ
ଏଥେ ଯବନିକା ପାଡ଼ିବ କିଏ ?
ମଥୁରା ନଗରେ ବୃଷ୍ଣି ବୋଲି କରି
ଯାଦବେକ ଥିଲା କୁଟୁମ୍ବ ଧରି,
କୃଷ୍ଣ ଯେତେବେଳେ ଦ୍ୱାରକାକୁ ଗଲେ
ମଥୁରା ନଗର ବରଜ କରି ।
ଗଲା ତାଙ୍କ ସଙ୍ଗେ ଛୁଆ ପିଲା ଧରି
ସେଠାରେ ରହିଲା କରି ବସତି,
ତାହାର ତନୟ ଶଫଲକ ନାମ
ବଡ଼ ଧାର୍ମିକ ସେ ଉତ୍ତମମତି ।

ଯୁଗ ଯୁଗ ଧରି  ତପସ୍ୟା କରି ସେ
ତପେ କରିଥିଲେ ବାସବେ ବଶ,
ତପ ପ୍ରଭାବରେ  ବରଷାଏ ମେଘ
ଯୋଉଠି ସେ ରହେ ବଢ଼ଇ ଶସ୍ୟ ।
ଅକାଳକ କେବେ  ହୁଏ ନାହିଁ ସେଠି
ଦୁର୍ଭିକ୍ଷ ସେଠାରେ ପଡ଼ଇ ନାହିଁ,
ସୁଭିକ୍ଷରେ ଲୋକେ  ରହନ୍ତି ସୁଖରେ
ସବୁବେଳେ ଭଲ ପିନ୍ଧି ଓ ଖାଇ ।
ଦ୍ୱାପର ଯୁଗର  ଋଷ୍ୟଶୃଙ୍ଗ ସିଏ
ବାସବ ତାହାର ପରମ ମିତ୍ର,
ପର ଦୁଃଖେ ଦୁଃଖୀ  ପର ସୁଖେ ସୁଖୀ
ପିଲାଟି ଦିନରୁ ଏହି ଚରିତ୍ର ।
ସେହି ସମୟରେ  କାଶୀ ରାଇଜରେ
ଥିଲେ ଜଣେ ରଜା ଅତି ଉତ୍ତମ,
ପ୍ରଜାଙ୍କୁ ପାଳନ୍ତି  ବଡ଼ ସୁଖରେ ସେ
ନିଜ ପୁଅ ଝିଅମାନଙ୍କ ସମ ।
ତାଙ୍କ ରାଜ୍ୟେ ମେଘ  ବରଷିଲା ନାହିଁ
ଲାଗି ଲାଗି ଦୀର୍ଘ ବାର ବରଷ,
ଘୋଟିଲା ଦୁର୍ଭିକ୍ଷ  ପଡ଼ିଲା ମଡ଼କ
ରଜାଙ୍କ ମୁହଁରୁ ଲୁଚିଲା ହସ ।
ପ୍ରଜାଙ୍କୁ ନେଇ ବା  କୋଉଠିକି ଯିବେ
ରାଜ୍ୟ ଛାଡ଼ି କରି ପାଞ୍ଚିଲେ ମନେ,
ଶଫଲ୍‌ଫଙ୍କ କଥା  ମନେ ପଡ଼ିଗଲା
ଅଣାଇଲେ ତାଙ୍କୁ ନିଜ ଭବନେ ।
ଝିଅଟିଏ ଥିଲା  ପରମା ସୁନ୍ଦରୀ
ଶଫଲ୍‌ଫଙ୍କୁ ଦେଲା ବିବାହ କରି,
ସେ ଝିଅକୁ ରାଣୀ  ଦ୍ୱାଦଶ ବରଷ
ବହୁ କଷ୍ଟେ ଥିଲେ ଗର୍ଭେ ଧରି ।

ଅସମ୍ଭବ ଗର୍ଭ- କାହାଣୀ ତାହାର
ସଂସାରେ ଏ କଥା କୋଉଠି ନାହିଁ,
ରଜା ଆଉ ରାଣୀ ମହା ଆତଙ୍କରେ
କେତେ କାଳ ଆଉ ବସନ୍ତେ ଗୃହିଁ ?
ଗରଭ ପାଖରେ କଲେ ସେ ଗୁହାରି
"କଏ ଅଛ ଗର୍ଭେ ବାହାର ଆସ,
ଆଉ କେତେ କାଳ ଦୁଃଖ ଦେବ ତୁମେ
କଆଁ ଆମ ସୁଖ କରିବ ନାଶ ?"
ଶୁଣି ଶୁଣି କରି ଗରଭ କହିଲା
"ଭଲ ଭଲ ଧେନୁ କର ହେ ଦାନ,
ବାର ବରଷରେ ଜନମ ମୁଁ ହେବ
ମୋ କଥାକୁ ମଣ ନାହିଁ ହେ ଆନ ।"
ରଜା ସେହିପରି ଦେଲେ ଗାଈ ଦାନ
ଜନମିଲା କନ୍ୟା ବାର ବରଷେ,
ଝିଅ ମୁହଁ ଦେଖି ରଜା ଆଉ ରାଣୀ
ଧନ ବିଳାଇଲେ ମହା ହରଷେ ।
ସେହି କନ୍ୟା ଗର୍ଭେ ଶଫଲ୍କ ଔରସେ
ଜନମ ହୋଇଲା ପୁଅ ଅକ୍ରୂର,
ଜନମ ଦିନରୁ ବାପ ମାଆଙ୍କର
ସୁଖ ସଉଭାଗ୍ୟ ହେଲା ପ୍ରଚୁର ।
ଦାନ ଧ୍ୟାନ ସିଏ କରଇ ବହୁତ
ଦୁଃଖୀ ରଙ୍କୀଙ୍କର ଚଳଇ ପେଟ,
ଦୂରଦୂରାନ୍ତରୁ ଭୋକି ଶୋଷୀ ଜନ
ଆସି ଅକ୍ରୂରକୁ କରନ୍ତି ଭେଟ ।
ଦାନେ ସରେ ନାହିଁ ତାହାର ଭଣ୍ଡାର
ହାତ ଅଣ୍ଟା ତାର ହୁଏନା ଶୂନ୍ୟ,
ଯୋଉଠିକି ଯାଏ ସେଠି ସବୁବେଳେ
କରୁଥାଏ ଖାଲି ଦାନ ଓ ପୁଣ୍ୟ ।

ଅକ୍ରୂର ଶୁଣିଲା ଶତଧନ୍ୱା ମଲା
ଶ୍ରୀକୃଷ୍ଣ ଏଥର ମାରିବେ ତାକୁ,
ପଳାଇଲା ଡରି କାଶୀ ରାଇଜକୁ
ଗଲାବେଳେ କହି ନାହିଁ କାହାକୁ ।
ଅକ୍ରୂର ଯିବାରୁ ଦ୍ୱାରକା ବରଜ
ପଡ଼ିଲା ତହିଁରେ ନାନା ଉତ୍ପାତ,
ଅନାବୃଷ୍ଟି ହେଲା ମଡ଼କ ପଡ଼ିଲା
ମେଘ ବରଷିଲା ଖାଲି ରକତ ।
କୃଷ୍ଣ ଥାଉ ଥାଉ ଘଟିଗଲା ସବୁ
ଭାବନା ପଶିଲା ସବୁରି ମନେ,
କିଆଁ ଅମଙ୍ଗଳ କିଆଁ ଏ ଅରିଷ୍ଟ
ଅଲକ୍ଷଣ କିଆଁ ଦିଶେ ନୟନେ !
ଭାବି ଭାବି କରି ପାଇଲେ କାରଣ
ହେଉଛି ଏସବୁ ଅକ୍ରୂର ପାଇଁ,
କହି ଶ୍ରୀକୃଷ୍ଣଙ୍କୁ କାଶୀ ରାଇଜରୁ
ଆଣନ୍ତୁ ବହନ ଲୋକ ପଠାଇ ।
ରଥ ପଠାଇଲେ ଅକ୍ରୂର ଆସିଲା
ଆସୁ ଆସୁ ହେଲା ମେଘ ବରଷା,
ଲୋକଙ୍କ ମନରେ ଆଶା ସଞ୍ଚରିଲା
ଅରିଷ୍ଟ ଘୁଞ୍ଚିବ ହେଲା ଭରସା ।
ଅକ୍ରୂର ଆଣିଛି ଡରି ମରି କରି
ସ୍ୟମନ୍ତକ ମଣି କାନରେ ବାନ୍ଧି,
ଆଦ୍ୟ ପ୍ରାନ୍ତଯାଏ ଜଣାଇଲା ସବୁ
କ୍ଷମା ଭିକ୍ଷା କଲା ଆକୁଳେ କାନ୍ଦି ।
ମଣିଟିକୁ ରଖି- ଦେଲା ସମ୍ମୁଖରେ
ଶ୍ରୀକୃଷ୍ଣ କହିଲେ କରି ମଧୁର,
"ଜାଣିଲି ମୁଁ ସବୁ ଶତଧନ୍ୱା ଦୋଷୀ
ଏଥିରେ ତ ଦୋଷ ନାହିଁ ତୁମର ।

ନ୍ୟାୟତଃ ଏ ମଣି ସତ୍ୟଭାମାଙ୍କର
ସତ୍ରାଜିତ ପରେ ମାଲିକ ସିଏ,
ଦେଲ ମୁଁ ତୁମକୁ ତୁମେ ଯେ ଧାର୍ମିକ
ତୁମ ଛଡ଼ା ତାକୁ ପିନ୍ଧିବ କିଏ ?"।
ଶତଧନ୍ୱା ମଲା ସତ୍ୟଭାମା ଖୁସି
ପୂର୍ଣ୍ଣ ହୋଇଗଲା ତାଙ୍କର ଇଷ୍ଟ,
ଅକ୍ରୂର ପାଇଲା ସ୍ୟମନ୍ତକ ମଣି
ଦ୍ୱାରକାରୁ ହଟିଗଲା ଅରିଷ୍ଟ।
ଶ୍ରୀକୃଷ୍ଣ ଚିନ୍ତନ୍ତି ଜଗତ ମଙ୍ଗଳ
ମଙ୍ଗଳାମଙ୍ଗଳ ତାଙ୍କର ନାହିଁ,
ସେଇଥିପାଇଁ ତ ସଂସାରେ ଟାହାକ
ତାଙ୍କର ଦୟାକୁ ବସନ୍ତି ଚାହିଁ।
ଦ୍ୱାରକାରେ ଯେଉଁ ଅରିଷ୍ଟ ଘଟିଲା
ସେ କ'ଣ ନବାର ପାରନ୍ତେ ନାହିଁ,
ଅକ୍ରୂର ଯେ ତାଙ୍କ ପରମ ଭକତ
ଦୂରରେ ରହନ୍ତା କଅଣ ପାଇଁ ?
ଅଣାଇଲେ ପାଶେ ବଢ଼ାଇଲେ ମାନ
କ୍ଷମା କଲେ ଦୋଷ ଉଚ୍ଚ ଆଦର୍ଶ,
କୃଷ୍ଣଙ୍କ ଜନମ ଶିଖାଇବା ପାଇଁ
କରମେ ଧରମେ ତାଙ୍କର ହର୍ଷ।

---

# ନରକାସୁର ବଧ

ଧରଣୀ ତନୟ ବଡ଼ ପରପଞ୍ଚ
ନାଆଁଟି ତାହାଙ୍କ ପୁଣି ନରକ,
ଏଡ଼କ ଭୀଷଣ ଏଡ଼େ ନିରଦୟ
ନରକଠାରୁ ସେ ନୁହେ ଫରକ ।
ହର ବରେ ବଳୀ ହେଲା ସେ ଦାନବ
ରାଜଧାନୀ କଲା ଜ୍ୟୋତିଷପୁର,
ଜ୍ୟୋତିଷ ପାଠକୁ ଖାତିର କରେନା
ଥିଲେହେଁ ସେ ପାଠ ସେଠି ପ୍ରଚୁର ।
ନାହିଁ ତିଥି ବାର ନାହିଁ ଭଲ ମନ୍ଦ
ଯାହା ଯେବେ ଇଚ୍ଛା କରଇ ସିଏ,
ନିଜ ମାଆଟା ତ ସହି ପାରିଲାନି
ତାର ଦାଉ ଆଉ ସହିବ କିଏ !
ସରଗ ମରତ ପାତାଳ ଜିଣିଲା
ନିଜକୁ ମଣିଲା ଦୁର୍ଜୟ ମାନୀ,
ଯେଉଁଠିକି ଗଲା ହୁରୁଡ଼ୁରୁ କଲା
ବାଛେ ନାହିଁ କିଛି ଲାଭ ବା ହାନି ।
ସରଗରେ ପଶି ଦେବଙ୍କୁ ତଡ଼ାଇ
ଦେବମାତା କାନୁ କୁଣ୍ଡଳ ଆଣି,
ନିଜ ପାଖେ ରଖି ପହ୍ନାଜ ତ କଲା
ଦେବତାଗୁଡ଼ାଙ୍କୁ ଦେବ ସେ ହାଣି ।

ଖାଲି ତ ସେତିକି କଲା ନାହିଁ ସିଏ
ରାଜ୍ୟ ରାଜ୍ୟ ପଶି ବିଜୟ କରି,
ଷୋହଳ ହଜାର ଆଉ ଏକ ଶହ
ଅନଢ଼ା କୁମାରୀ ଆଣିଲା ଧରି ।
ସବୁ କୁମାରୀଙ୍କୁ ବାହା ହୁଅନ୍ତା ସେ
ଏହି କଥା ପାଞ୍ଚି ରଖିଲା ଘରେ,
ଦେବତା ମାନବ କେହି ହେଲେ ଜଣେ
କିଛି କହିଲେନି ତାହାର ଉପରେ ।
ଧରଣୀର ପୁଅ କିନ୍ତୁ ମାଆ ତାର
ସହି ପାରିଲାନି ତା ଅତ୍ୟାଚାର,
କାହାକୁ କହିବ ମାରିବେ ତାଳଗ
ଦିନ ରାତି ଖାଲି ଲୋତକଧାର ।
ଶାପ ବା ଦିଅନ୍ତା, ଜନମ କରିଛି
ମନଟା କେବଳ ହୁଅଇ ଘାଣ୍ଟି,
ତିଆରି କହିଲେ ପୁଅଟା ଶୁଣେନା
ଓଲଟି ରାଗରେ ଗୃହେଁ ଚରିଟି ।
ପୃଥିବୀ କାନ୍ଦଣା ପଶିଲା ସରଗେ
ଦେବତା ପାରିଲେ ନାହିଁଟି ସହି,
ସରଗ ପାତାଳ ମିଳିଲେ ସଙ୍ଗରେ
ସିଏ ବି କାନ୍ଦିଲେ ମରମ ଦହି ।
ତିନିହେଁ ଏକାଠି ସହଯୋଗ କଲେ
ତିନିଙ୍କ ଦୁଃଖରେ ତିନିହେଁ ଦୁଃଖୀ,
ପୁଣି ସେହିପରି ଜଣକ ସୁଖରେ
ଆର ଦୁଇ ଜଣ ହୁଅନ୍ତି ସୁଖୀ ।
ପାତାଳରେ ବଳି ସିଏ ବି ଅସୁର
ନରକର ଦାଉ ସହିଲା ନାହିଁ,
ତିନି ପୁରବାକ ଏକାଠେଇ ମିଶି
ଇନ୍ଦ୍ରଙ୍କୁ ଏ କଥା କହିଲେ ଯାଇଁ ।

ଯୁଗେ ଯୁଗେ ଏହି କୂଟନୈତିକ
ସମ୍ବନ୍ଧଟି ଅଛି ଦେଶେ ଓ ଦେଶେ,
କିଏ ଆସେ ବନ୍ଧୁ କେ ଆସେ ବିପକ୍ଷ
ଦେଖାଚାହାଁ ହୁଏ କପଟ ବେଶେ ।
ମନ ମାନିଗଲେ ମତ ମିଳିଗଲେ
ସକଳେ ବାନ୍ଧନ୍ତି ଗୋଟିଏ ମେଣ୍ଟ,
ମିଳିମିଶି କରି ଦୁର୍ଦ୍ଦାନ୍ତ ଶତ୍ରୁର
ମଥାକୁ କରନ୍ତି ସମରେ ହେଟ ।
ନରକର ଦଶା ହେଲା ସେହିପରି
ତିନି ଶତ୍ରୁଯାକ ହେଲେ ଏକାଠି,
ବିଚାରିଲେ ସବୁ କଅଣ କରିବେ
ବିଷ୍ଣୁ ତ ରହିଲେ ମରତେ ସେଠି ।
ଇନ୍ଦ୍ରଙ୍କୁ କହିଲେ "ଯାଅ ମର୍ତ୍ତ୍ୟେ ତୁମେ
ଶ୍ରୀକୃଷ୍ଣ କରନ୍ତୁ ଯା ପ୍ରତିକାର,
ତାଙ୍କ ଛଡ଼ା କେହି କିଛି କରିବେନି
ଉଣା ହେବ ନାହିଁ ତା ଅତ୍ୟାଚାର ।"
ବାସବ ଆସିଲେ ଦ୍ୱାରକା ନଗର
ଶ୍ରୀକୃଷ୍ଣଙ୍କ ପାଶେ କଲେ ଗୁହାରି,
"ଆହେ ନରହରି ! ରଖ ତିନି ପୁର
ରଖ ଦେବତାଙ୍କୁ ନରକ ମାରି ।
ତାର ଅତ୍ୟାଚାର ସହି ହେଉ ନାହିଁ
କର ହେ ଉପାୟ ଶୀଘ୍ର ଶ୍ରୀହରି,
କେହି ତ ସଂସାରେ ରହି ପାରିଲେନି
ନରକ ଅସୁର ଦାଉକୁ ଡରି ।"
ଶ୍ରୀକୃଷ୍ଣ କହିଲେ ହସି ହସି କରି
"ଯାଅ ଦେବରାଜ ସ୍ୱରଗେ ଫେରି,
ନରକ ଅସୁର ମରିବ ଏଥର
ଆଉ ବେଶୀ ଦିନ ହେବନି ଡେରି ।"

ଶ୍ରୀକୃଷ୍ଣ ସ୍ମରିଲେ ବିନତା ନନ୍ଦନ
ଆସିଲା ଗରୁଡ଼ ଦ୍ୱାରକା ପୁରୀ,
ହାତ ଯୋଡ଼ିକରି ନମସ୍କାର କଲା
ପଚାରିଲା ମୁଣି ବିନୟ କରି ।
"କାହିଁକି ଡାକିଲେ ସେବକକୁ ପ୍ରଭୁ
ଆଜ୍ଞା ହେଉ ଏବେ କରିବି ତାହା",
ଶ୍ରୀକୃଷ୍ଣ କହିଲେ ସବୁ କଥାଯାକ
ଇନ୍ଦ୍ର କହିଥିଲେ ତାହାଙ୍କୁ ଯାହା ।
ଆହୁରି କହିଲେ "ଯିବା ଏଇନାଏଁ
ନରକାସୁରକୁ ମାରିବା ଆଜି,
ସରଗ ମରତ ପୃଥ୍ୱୀ ତିନି ପୁର
ରଖିଦେଲା ନାହିଁ ହେଲାଣି ପାଜି ।"
ଏତିକି କହି ନେଲେ କୌମୋଦକୀ
ପାଞ୍ଚଜନ୍ୟ ଶଙ୍ଖ ସୁଦରଶନ,
ସତ୍ୟଭାମା ଯିବେ ବୋଲି ଅଳି କଲେ
ନେଲେ ତାଙ୍କୁ ସଙ୍ଗେ ଖଗ-ଆସନ ।
ସେ ଯୁଗରେ ନାରୀ ଥିଲେ ବୀରାଙ୍ଗନା
ଯାଉଥିଲେ ରଣେ ପତି ଗହଣେ,
କିଏ ଦେଖୁଥିଲା କିଏ ଲଢ଼ୁଥିଲା
ସମରକୁ ଡର ନ ଥିଲା ମନେ ।
କିଏ କରୁଥିଲା ସାରଥିର କାମ
କିଏ କରୁଥିଲା ଆହତ ସେବା,
ଯୁଦ୍ଧଶ୍ରାନ୍ତ ପତି ଆଶ୍ୱାସନା ପାଇଁ
ଜଗି ବସୁଥିଲା ପାଖେ କିଏ ବା ।
କେବେ କେତେବେଳେ ଧରୁଥିଲା ଧନୁ
କରୁଥିଲା ରଣ ସାହସ କରି,
କିନ୍ତୁ ରଖୁଥିଲା ହୃଦୟରେ ତାର
ରମଣୀସୁଲଭ କରୁଣା ଧରି ।

ଏହାଥିରୁ ପର ସମ୍ଭବ ହୋଇଛି
ଆହତ ଶୁଶ୍ରୂଷା ଲୋହିତ ଛକ, +
ଏ ଯୁଗର ସେହି ନାଇଟ୍‌ଇଂଗଲ
କେତେ ଆହତଙ୍କୁ ଦେଉଛି ରଖି ।
ଆଜ ହେଥିପାଇଁ ଦେଶରେ ଦେଶରେ
ଦେଉଛନ୍ତି ସବୁ ରକତ-ଭିକ୍ଷା,
ପିଲାଠାରୁ ବୁଢ଼ା ଦେଉଛନ୍ତି ଦାନ
ଏଇଠି ଅସଲ ଦାନର ଶିକ୍ଷା ।
ଏ ଦାନରେ କେହି ହେଉ ନାହିଁ ବଳି
ବଳି ରଜା ପରି ବାମନ ପଦେ,
କିବା କର୍ଣ୍ଣ ପରି ପୁଅ ଦେଉ ନାହିଁ
ଟୋପାଏ ରକତ ପୈସାରୁ ଅଧେ ।
କେହି ହେଉ ନାହିଁ କାଙ୍ଗାଳ ଦରିଦ୍ର
ହେଉ ନାହିଁ କା'ର କୁଣ୍ଠା ଟିକଏ,
ବଢ଼ି ଯାଉଅଛି ମହତ ତାହାର
ଏ ଟିକକ ଦାନ ଦେଉଛି ଯିଏ ।
କେଉଁ ଶଇଜର ନୁହେ ଏ ସଂସ୍ଥାଟି
ଧରଣୀଟାଯାକ ଦାତା ଗ୍ରହୀତା,
ସମର ଗୋଳରେ ଏ ଟୀକା ଯାହାର
ଶତ୍ରୁ ମିତ୍ର ଭେଦ ମନେ ନାହିଁ ତା ।
ବରଣ୍ୟେ ଶାନ୍ତିମନ୍ତ୍ର ଏକା ସିନା ଇଏ
ଏହାଠାରୁ ବଳି ଅମିପ୍ଥ କଏ,
ନାରୀ ଏଇଟିକୁ ଆଦରି ନେଇଛି
ମାଆ ହୋଇ ଯାକୁ ପରଷି ଦଏ ।
ଆଜର ରମଣୀ ପରି ସେ କାଳରେ
ଯାଉ ନ ଥିଲେ କେ ସମରେ ଉଚ୍ଚର,
ସେ କାଳ ପୁରୁଷ ସହଧର୍ମିଣୀକୁ
ଗଢ଼ୁ ଥିଲେ ଯତ୍ନେ ନିପୁଣା କରି ।

---

+ Red Cross

ନ ଥିଲା ଓଢ଼ଣା ନ ଥିଲା ଘୋରୁଡା
ଲୋକ ଦେଖାଣିଆ ନ ଥିଲା ଲାଜ,
ଧରମେ କରମେ ପୁରୁଷ ସଙ୍ଗରେ
ସମ ହୋଇ ଗଢ଼ୁଥିଲା ସମାଜ ।
ତେଲ ମଣ୍ଡଣରେ ନ ଥିଲା ସେ କାଳେ
ଅଲଗା ହୋଇଣ ଥାନ ଗୋଟିଏ,
ଯାହା ଇଚ୍ଛା ଯହିଁ ବସୁଥିଲା ବାଛି
ଡଆର ଦେବାକୁ ନ ଥିଲା କିଏ ।
ବାପ ଘର ଗଲେ ଭାଇ ବନ୍ଧୁ କେହି
ଲୋଡ଼ା ନ ଥିଲାଟି କୋଉଠି କା'ର,
ବାଟରେ ହାଟରେ ନାରୀ ଏକା ଚଳି
କରି ଯାଉଥିଲା ତା କାରବାର ।
ମଝିରେ ନାରୀକୁ ଚଙ୍ଗୁ କଲା କିଏ
କହିଲା ଆହୁରି ଅବଳା ବୋଲି,
ନାରୀ ହେବ ଯେବେ ଅବଳା ଦୁର୍ବଳା
ସମାଜକୁ କିଏ ରଖିବ ତୋଳି ?
ପୁରାଣରେ ବହୁ ପ୍ରମାଣ ତ ଅଛି
ରମଣୀ ପୁରୁଷ ଦେହରୁ ଅଧେ,
ନାରୀ ଅଭାବରେ ସବଳ ସମର୍ଥ
ରହିବ ପୁରୁଷ ସମାଜ ମଧ୍ୟେ ?
ନାରୀର କରମ ପ୍ରସବ ସନ୍ତାନ
ପାଳିବ ଯତନେ ରକତ ଟିଆଇ,
ଗଢ଼ିବ ସମାଜ ରଖିବ ସଂସାର
ଆସନ୍ତା କାଳର ଉନ୍ନତି ପାଇଁ ।
ନାରୀ ଲୁଚିଇବା ଆସିଲା କୁଆଡ଼ୁ
କାହିଁକି ପଶିଲା ଏ ଘୋରୁ ନୀତି ?
ଐତିହାସିକେ କହିବେ ସେକଥା
ଦୋହଲି ସାରିଛି ସମାଜ ଭିତ୍ତି ।

ନାରୀ ଏଇନାଏଁ ଟିକଏ ମୁକୁଳା
ତେବେ ମାଂସପେଶୀ ହୋଇନ ଟାଣ,
ଆଣ୍ଠୁ ରେ ଗଣ୍ଠି ରେ ଅଛୁ ତା ଦରଜ
ଧରି ପାରି ନାହିଁ ହାତରେ ବାଣ ।
କଲମ ଧରିବା ଶିଖୁଛି ଏଇନାଁ
ଧର୍ମାଧିକରଣେ ବସୁଛି ଆସି,
କିନ୍ତୁ ତା ପୁରୁଣା ନିଜ ଦୁର୍ବଳତା
ଏବେ ବି ରହିଛି ହୋଇନ ବାସି ।
ସମାଜ ଏବେ ବି ଡର ଛାଡ଼ି ନାହିଁ
ଭାବୁଛି ନାରୀ କି ପାରିବ ରକ୍ଷି,
ନାରୀ କାଳେ ଯେବେ ଗ୍ରହିବ ଅବାଟେ
ସମାଜ ପାରିବ ମୁହିଁ ସଳଖି !
କୋଉ ଯୁଗେ ବାଟ ଅବାଟ ନ ଥିଲା
କୁନ୍ତୀ ସତ୍ୟବତୀ ପ୍ରମାଣ ତାର,
ସମାଜର କେଉଁ କ୍ଷତି ହୋଇଗଲା
କର୍ଣ୍ଣ ଦ୍ୱୈପାୟନ ସନ୍ତାନ ଯାର ।
ଅବାଟକୁ ଗଲେ ବାଟକୁ ଆଣିବା
ସମାଜର କ'ଣ ନୁହଇ କାମ,
ସୁଧାରିବ ନାହିଁ ଶିଖାଇବ ନାହିଁ
କପରି ରହିବ ସମାଜ ନାମ !
ସମାଜଟା କ'ଣ ଏକା ପୁରୁଷର
ରମଣୀର ନାହିଁ ତହିଁରେ ଭାଗ ?
ସୀତା ରାମ ପରି ସମାଜ ନାଆଁରେ
ରମଣୀ କଥାଟା ରହିବ ଆଗ ।
ସନ୍ତାନ କଥାର ଅର୍ଥଟା ବା କସ
ଏଥିପାଇଁ କ'ଣ ରମଣୀ ଦାୟୀ,
ସନ୍ତାନକୁ ଜଗି ରଖିବା ପାଇଁକି
ପୁରୁଷର କ'ଣ ଦାୟିତ୍ୱ ନାହିଁ ?

ଦୁର୍ନୀତି ଅହେତ          ରମଣୀ ଅସତୀ
ସମାଜର ଦୋଷ ଏସବୁ ସିନା !
ଅସତ ସୁଧାରୁ—          ଅସତୀ ସୁଝିବ
ସତୀ କି ସମ୍ଭବ ସତର ବିନା ?
ସରଗର ରଜା          ପହିଲେ ଅସତ
ସରଗର ରାଣୀ ତେଣୁ ଅସତୀ,
ଶାସ୍ତ୍ରପୁରାଣରୁ          କିଏ ପଢ଼ି ନାହିଁ
ସରଗ ରଜାର କାହିଁରେ ମତି—
ସରଗର ରାଣୀ          ସରଗ ବେଶ୍ୟାରେ
ହେଲେ ନାହିଁ ତୃପ୍ତ ଆସିଲେ ଧାଇଁ,
ମରତେ ମଘବା          ଅହଲ୍ୟା ସତୀତ୍ୱ
କପଟ ବେଶରେ ହରିଲେ ଯାଇଁ ।
ଶ୍ରୀରାମଙ୍କ ସମ          ଆଜ କେଉଁ ରଜା
ସତ ରହ୍ୱ ପୁଣି ସତୀତ୍ୱ ପାଇଁ,
ରଖିବେ ସତୀଙ୍କୁ          ପତି ଅଭିଶାପୁଁ
କରୁଣାରେ ଦ୍ରବ ଚରଣ ଛୁଇଁ ।
ସତୀ ପାଇଁ ପୁଣି          ଜଳିଲେ ଜୀବନେ
କଲେ ନାହିଁ କେବେ ଦ୍ୱିତୀୟ ନାରୀ,
ତେଣୁ ସିନା ସିଏ          ଆଦର୍ଶ ନୃପତି
ତାଙ୍କର ପୌରୁଷ ସବୁଠି ଭାରି ।
ସାବିତ୍ରୀ ଯେପରି          ଯମ ସଙ୍ଗେ ଲଢ଼ି
ମଲା ଭରତାକୁ ଆଣିଲେ ଜୀଆଇଁ,
ଆଜ କେତେ ନାରୀ          କରିପାରନ୍ତନ୍ତି
ସେପରି ଗୋଟିଏ ଅଛି କି କାହିଁ ?
ଖାଲି ଉଷା କଲେ          କଅଣ ବା ହେବ
ମନ ଯେବେ କା'ର ସତୀତ୍ୱ ପାଇଁ,
ନୁହଇ ଆକୁଳ,          ଉଷା ପୂଜବାରେ
କି ଫଳ ଫଳିବ ସାଧନା କାହିଁ ?

ଓଷା କର ବଅଁ ଦେବତାଙ୍କୁ ପୂଜ
ମନଟିକୁ ରଖ ପବିତ୍ର କରି,
ତେବେ ସିନା ଯାଇ ଓଷାର ମହତ
ସତ୍ତ୍ୱର ମର୍ଯ୍ୟାଦା ପାରିବ ଧରି ।
ରଜା ରଟେ ଖ ରାଜ୍ୟ ସମାଜ ସଂସାର
ସେ କେଉଁଠି ମଦ ସାଙ୍ଗକୁ ନାରୀ,
ଇନ୍ଦ୍ରଙ୍କ ଆଦର୍ଶ ଦେଖାଇଣ ଦେଲେ
ନାରୀଏ ପାରିଲେ ନାହିଁ ନିବାରି ।
ତାଙ୍କ ଦେଖାଦେଖି ଧନିକ ବଣିକ
ରଜା ଢଙ୍ଗଢାଙ୍ଗ କରିଲେ ବସି,
ନାରୀକୁ ଭୁଲାଇ ଅବା ଧନ ଦେଇ
ନାରୀ ଭୋଗ କଲେ ମହତ ଧ୍ୱଂସି ।
ଉଡ଼ିଲା ଗରୁଡ଼ ବିମାନ-ପଥରେ
ଉଲ୍କାଟାଏ କି ଯାଉଛି ଭାସି,
କୋଉ ରାଇଜରେ ପଡ଼ିବ ମଡ଼କ
କାହା ପରମାୟୁ ସରିଲା ଆସି !
ଯେତେ ବେଶୀ ଉର୍ଦ୍ଧ୍ୱେ ଉଡ଼ିଲା ଗରୁଡ଼
ଧୂମକେତୁ ପରି ଦିଶିଲା ପୁଚ୍ଛ,
ଉଜ୍ଜ୍ୱଳ ଆଲୋକ ଜଳିଲା ତହିଁରେ
ଚପାବର୍ଣ୍ଣ ତେଜ ପରାୟେ ସ୍ୱଚ୍ଛ ।
ନରକ ରାଜ୍ୟରେ ଧୂମକେତୁ ସେ କି
ରଜା ମରିବାର ସଂକେତ ଦିଏ,
ଜ୍ୟୋତିଷପୁରର ଜ୍ୟୋତିଷଙ୍କୁ ଡାକି
ପଚାରିବ ନାହିଁ ସତେ କି ସିଏ !
ଉଲ୍କା ଓ ଲଞ୍ଜା ପଡ଼ିଲେ ରାଜ୍ୟରେ
ରଜା ମରିବାଟା ତେବେ କି ସତ,
କୃଷ୍ଣ ଯାଉଛନ୍ତି ନରକ ରାଜ୍ୟକୁ
ରଜା କ'ଣ ତେବେ ହୋଇବ ହତ ?

ସେବ ଖଗଯାନ ଏବ ବ୍ୟୋମଯାନ
ଦୁହିଁଙ୍କ ପ୍ରଭେଦ ଦେଖରେ ବସି,
ଖଗଯାନ ଯାଏ ଇଚ୍ଛା ଅନୁସାରେ
କେଉଁଠି ତ କେବେ ପଡ଼େନା ଖସି ।
ଆଜର ବିଜ୍ଞାନ ଗରବ କରୁଛି
ଆକାଶଯାନକୁ ଉଡ଼ାଇ କରି,
ଯାର ନାହିଁ ପ୍ରାଣ ଯାର ନାହିଁ ଇଚ୍ଛା
ଜଡ଼ ଦେହଟାଏ ଦେଖାଇ କରି ।
ସବୁ କଳପନା ପୁରୁଣାକୁ ଦେଖି
ପୁରୁଣାର ଅନୁକରଣ ସିନା,
ବ୍ୟୋମଯାନଟାର ଗଢ଼ଣକୁ ଦେଖ
ଆଉ କଣ କଛି ଚଢ଼େଇ ବିନା !
ମଣିଷ ସର୍ଜ୍ଜନା ସବୁ ଜଡ଼ ବସ୍ତୁ
କୃଷ୍ଣଙ୍କ ସର୍ଜ୍ଜନା ସବୁ ଜୀବନ୍ତ,
ନିର୍ଜୀବକୁ ଯିଏ କରନ୍ତି ସଜୀବ
ଜୀବନ୍ତକୁ ପୁଣି କରନ୍ତି ହତ ।
ତାଙ୍କ କରେ ଯିଏ ମରେ ଜଗତରେ
ସଂସାର-ତାପରୁ ହୁଏ ସେ ମୁକ୍ତ,
ଶ୍ରୀକୃଷ୍ଣଙ୍କର ତ ଏହି ବିଚିତ୍ରତା
ଯିଏ ମୃତ ସିଏ ସୌଭାଗ୍ୟଯୁକ୍ତ ।
ବିଶ୍ୱ-ବ୍ରହ୍ମାଣ୍ଡରେ ସେ ଏକା ଅନନ୍ତ
ସବୁଥିରେ ରଖି ଦିଅନ୍ତି ଅନ୍ତ,
ଏହି ଅନ୍ତ ଆଉ ଅନନ୍ତ ଭିତରେ
ସେହି ଏକା ଜଣେ ନିତ୍ୟ ଓ ସତ୍ୟ ।
ନିମିଷ ଭିତରେ ପହଞ୍ଚିଲ ଖଗ
ନରକ ରାଜ୍ୟର ସୀମାରେ ଯାଇ,
ଦେଖିଲି ତା ରାଜ୍ୟ ଅତି ସୁରକ୍ଷିତ
ସହଜେ କେ ପଶିପାରଇ ନାହିଁ ।

ଯାଦେଶ୍ୱ ଗଢ଼ିଛି ଗଗନ-ପରଶି
　　ବସାଇ ଦେଇଛି ତୋପ କମାଣ,
ଗଡ଼ଖାଇ ପୁଣି ଖୋଳାଇ ଦେଇଛି
　　ଘୁଡ଼ୁଛି ତହିଁରେ କୁମ୍ଭୀରମାନ ।
ଅନଳ ଜାଳିଛି ତିନି ତାଳ ଉଚ
　　ଅନଳ ଜାଳୁଛି ସଦା ପବନ,
ଯୁଭ ସୁଭ ଗର୍ଜି ବହୁଛି ଜାଳୁଛି
　　ଅବସର ନାହିଁ ରଜନୀ ଦିନ ।
ରିପୁ ଯଦି କେଏ ଯାଏ ଗଡ଼ ପାଶେ
　　ପବନ ତାହାକୁ ଉଡ଼ାଇ ନିଏ,
ଗଡ଼ଖାଇ ଗର୍ଭେ ଅନଳ ଶିଖାରେ
　　ବୁଡ଼ାଏ କି ଅବା ପୋଡ଼ାଇଦିଏ !
ସମସ୍ତଙ୍କୁ ଘେରି ଅଛି ମୋହଫାଶୀ
　　ନୀଳ କାଦମ୍ବିନୀ ପରାୟେ କାନ୍ତି,
ବଇରି ମନରେ ଉପୁଯାଇ ଦିଏ
　　ସାଗର କି ଅବା ବାଦଳ ଭ୍ରାନ୍ତି !
ତା ଗଡ଼ରେ କେହି ପଶିପାରେ ନାହିଁ
　　ନିଶ୍ଚିନ୍ତ ନିର୍ଭୟେ ଥାଏ ସେ ରହି,
ସିଏ ସବୁ ରାଜ୍ୟେ ପଶଇ ଗରବେ
　　ତା ଦାଉକୁ କେହି ପାରେନା ସହି ।
ଶାଂର୍ଗ ଧନୁ ଧରି ନାରାଚ ପ୍ରହାରେ
　　ଶ୍ରୀକୃଷ୍ଣ ଚୂରିଲେ ବାଣ କମାଣ,
ସୁଦର୍ଶନ ଚକ୍ର ପ୍ରହାରି ଛେଦିଲେ
　　ସଲିଳ ଅନଳ ଓ ସମୀରଣ ।
ମୋହପାଶ ଛେଦି ଖଡ଼ଗର ଧାରେ
　　ପାଞ୍ଚଜନ୍ୟ ଶଙ୍ଖ ଦେଲେ ବଜାଇ,
କମ୍ପିଲେ ଅସୁରେ ଖସିଲା ଆୟୁଧ
　　ମୂର୍ଚ୍ଛା ଯାଇ ଜ୍ଞାନ ଦେଲେ ହଜାଇ ।

ପହଞ୍ଚିଲେ ଯାଇ ନରକ ଦୁଆରେ
ପଥର ପାଚେରୀ ଗଦା ପ୍ରହାରୀ,
ଚୂନା କରିଦେଲେ ବସୁଧା ଥରିଲା
ପ୍ରହରୀଏ ଧାଇଁ କଲେ ଗୁହାରି ।
ଦାରୁଣ ଅସୁର ପାଞ୍ଚମୁଣ୍ଡ ତାର
ଶୋଇଥିଲା ସୁଖେ ଉଠିଲା ଖରେ,
ଧାଇଁଲା ଉଚ୍ଛନେ କିଏ ସେ ପଶିଲା
ବୋଲି ତ୍ରିଶୂଳଟା ଧରିଲା କରେ ।
ସେ ଶୂଳର ଜ୍ୟୋତି କିଏ ସେ ବର୍ଣ୍ଣିବ
ପ୍ରଳୟ ବେଳର ମାର୍ତ୍ତଣ୍ଡ ପରି,
ପ୍ରଖର ଅନଳ ଜଳୁଛି ତହିଁରେ
ତିନି ପୁର ଦେବ ପାଉଁଶ କରି ।
ପାଞ୍ଚଟା ମୁହଁକୁ ମେଲାଇ ଦେଇଛି
ପଞ୍ଚଭୂତଙ୍କୁ ସେ ଗିଳିଦେବ କି ?
ଶ୍ରୀକୃଷ୍ଣ ଦେଖିଲେ ଆସୁଛି ଅସୁର
ଗରୁଡ଼ ବି ଆଗେ ଗଲା ଚମକି ।
ମହାସୁର ମୂର୍ତ୍ତି ଆସୁଅଛି ମାଡ଼ି
ଗରୁଡ଼ ଯେସନେ ନାଗର ଆଗେ,
ପ୍ରଚଣ୍ଡ ଗର୍ଜନ କରଇ ଦାନବ
କିଏ ସେ ରହିବ ତାହାର ଆଗେ ?
ଶ୍ରୀକୃଷ୍ଣ ହସିଲେ ଦେଖି ତାର ଢଙ୍ଗ
ଭାବିଲେ ଅସୁର ପାରିନି ଜାଣି,
ଦଇବ ତାହାର ମରଣ ପାଇଁକି
ଚୁଟି ଧରି ଟାଣି ଦେଲାଣି ଆଣି ।
ତ୍ରିଶୂଳକୁ ଦେଖି ତିନି ବାଣ ଯୋଖି
ବିନ୍ଧିଲେ ଶ୍ରୀକୃଷ୍ଣ ପଡ଼ିଲା ଭାଙ୍ଗି,
ଅସୁର ଦେଖିଲା ଶୂଳ ନଷ୍ଟ ହେଲା
ଧାଇଁଲା ଆତୁର ଅଧିକ ରାଗି ।

ତୋଟାଏ ଧରି          ପିଟିଲା କୃଷ୍ଣଙ୍କୁ
କୃଷ୍ଣ ଗଦା ମାରି କଲେ ତା ବ୍ୟର୍ଥ,
ତେବେ ବି ଅସୁର          ଜାଣି ପାରିଲାନି
ଦେଖି ପାରିଲାନି ମରଣ-ପଥ ।
ଆୟୁଧ ହରାଇ          ବେଶୀ ରାଗି ଯାଇ
ଖାଲି ହାତେ ଆସେ ମାରିବା ପାଇଁ,
କୌମୋଦକୀ ଗଦା          ପିଟିଲେ ଶ୍ରୀକୃଷ୍ଣ
ଅସୁର ମୁଣ୍ଡରୁ ଉଠିଲା ଝାଇଁ ।
ସାତ ପୁଅ ତାର          ସବୁ ମହାବଳୀ
ଶୁଣିଲେ ପିତୃର ହେଲା ଅଜ୍ଞାନ,
ଧାଇଁଲେ ସମସ୍ତେ          ଆଗ ପଛ ହୋଇ
ଶ୍ରୀକୃଷ୍ଣଙ୍କୁ ଜଣି ସାତବେ ମାନ ।
ପ୍ରଥମ ତନୟ          ନାଆଁ ତାର ତାମ୍ର
ଅନ୍ତରୀକ୍ଷ ବୋଲି ପୁଅ ଦ୍ୱିତୀୟ,
ବିଦ୍ୟାବସୁ ଅଟେ          ଚତୁର୍ଥ ନନ୍ଦନ
ଷଷ୍ଠ ନଭସ୍ୱାନ ବସୁ ତୃତୀୟ ।
ପଞ୍ଚମ ଶ୍ରବଣ          ସପ୍ତମରେ ଶୂର
ଏହି ସାତ ପୁଅ ବଳୁଆ ଅତି,
ସମରଭୂଇଁରେ          ଅବତୀର୍ଣ୍ଣ ହେଲେ
ଯମ ତ ଭରସି ପଶେନା କତି ।
ଧରି ଅସ୍ତ୍ରଶସ୍ତ୍ର          କଲେ ଘୋର ରଣ
ଚତୁରଙ୍ଗ ସେନା ସଙ୍ଗରେ ଧରି,
ଶ୍ରୀକୃଷ୍ଣଙ୍କ ଶରେ          ଛଅ ନାଶ ଗଲେ
ପଡ଼ିଲେ ସେସବୁ ସେଇଠି ମରି ।
ସତ୍ୟଭାମା ନଜେ          ଦେବୀ ସରସ୍ୱତୀ
ଏଇନା ହାତରେ ନାହିଁଟି ବୀଣା,
ଦେଖୁଛନ୍ତି ବସି          ପତିଙ୍କର ସବୁ
ସମର-କୌଶଳ ଜଗତଜଣା ।

ନରକ ଅସୁର ଦେଖିଲା ନୟନେ
ସବୁ ସେନା ପୁଏ ପଡ଼ିଲେ ମରି,
ଷାଠିଏ ହଜାର ହାତୀଙ୍କର ସଙ୍ଗ
ଆସିଲା କୁରଙ୍ଗ ଗୋଟାରେ ଚଢ଼ି ।
ସାଗର ମନ୍ଥନୁ ଜନମ ହାତିଏ
ଶୁଭ୍ର ଶୁଭ୍ର ଦାନ୍ତ ସମସ୍ତଙ୍କର,
ପାଣ୍ଡୁର ବରଣ ଅତି ଶ୍ରମଜ୍ଵାୟୁ
ଦୁଅ ନାତି ସବୁ ଐରାବତର ।
ସୁବର୍ଣ୍ଣରୁ ଜଣି ସୁପର୍ଣ୍ଣର କାନ୍ତି
ଗଗନେ ଉଡ଼ିଲା ଗର୍ଜ୍ଜନ କରି,
ପିଠିରେ ବଇସୃ ନରହରି ସତ୍ୟ-
ଭାମାଙ୍କୁ ଅଛନ୍ତି କୋଳରେ ଧରି ।
ଶଙ୍ଖଚକ୍ର ଦୋ କମଳ ଶ୍ରୀକରେ
ଚଉବାହା ମୂର୍ତ୍ତି ବଡ଼ ସୁନ୍ଦର,
କଣ୍ଠ ବନମାଳ ଲମ୍ବିଅଛି ଉରେ
ସୁନ୍ଦରଙ୍କୁ କରି ସୁନ୍ଦରତର ।
ଏସନ କୃଷ୍ଣଙ୍କୁ ଦେଖିଲା ନରକ
ଶତଘ୍ନୀ ଶକ୍ତି ପେଶିଲା ଧରି,
ଶ୍ରୀକୃଷ୍ଣ ପେଶିଲେ ବାଛି ପ୍ରତିଶର
ଶରଘାତେ ଶକ୍ତି ପଡ଼ିଲା ଝଡ଼ି ।
ବୈନେତେୟ ନଖ ଆଘାତରେ ହତ
ହେଲେ ଗଜଯୂଥ ଦେଖି ନରକ,
ଆଉ ଏକ ଶକ୍ତି ମାଇଲା ନରକ
ବଜ୍ରଠାରୁ ବଳି ଯା'ର ପ୍ରତାପ ।
କୃଷ୍ଣଙ୍କ ଉପରେ ପଡ଼ିଲା ଶକତି
ଫୁଲଟାଏ ପରି ମଣିଲେ ହରି,
ଛେଦିଲେ ନରକ ଗ୍ରୀଷପର ଗଳା
ସୁଦର୍ଶନ ଚକ୍ର ପ୍ରହାର କରି ।

ଦେବତାଏ ତେବେ ସ୍ୱର୍ଗେ ଦେଖୁଥିଲେ
ଆନନ୍ଦରେ ପୁଷ୍ପ ଦେଲେ ବରଷି,
ଦେବ ଓ ଅପ୍‌ସରୀ ଗାଇଲେ ବାଇଲେ
ନାଚିଲେ ପୁଲକେ ଏକାଠି ହସି ।
ନରକ ନିଧନ ଶୁଣିଲା ତା ମାଆ
ହସି କାନ୍ଦ କରି ଆସିଲା ବେଗେ,
ବରୁଣର ଛତ୍ର ଆଉ ମଣିଗିରି
ରତ୍ନମୟପୁର ଭେଟିଲା ଆଗେ ।
ପୁଣ୍ଡରିକମାଳ ଅଭୟ ଚରଣେ
ଉପହାର ଦେଇ ପୂଜିଲା ଆସି,
କରଯୋଡ଼ ବସି ସ୍ତବ ସ୍ତୁତି ଘୋଷି
ଆନନ୍ଦ ଅଶ୍ରୁରେ ଗଲା ସେ ଭସି ।
କହିଲା, "ତୁ ନାଥ ଦେବଙ୍କର ବର
ବଇକୁଣ୍ଠ ଛାଡ଼ ଆସିଲୁ ମର୍ତ୍ତ୍ୟ,
କାନ୍ଦଣା ମୋହର ବାଜିଲା କି କାନେ
ପୁତ୍ରଶୋକ କିଆଁ ଦେଲୁ ବା ମୋତେ ?
ଯୁଗେ ଯୁଗେ ଖାଲି ସରଜୁଥିବୁ ତୁ
ଖଳ ଅତ୍ୟାଚାରୀ ନର ଦାନବ,
ଯୁଗେ ଯୁଗେ ପୁଣି ବଇକୁଣ୍ଠ ଛାଡ଼ି
ହେଉଥିବୁ ମର୍ତ୍ତ୍ୟ ପଶୁମାନବ !
କୋଉ ରୂପ ଭଲ ହୋଇନାହୁଁ ତୁହି
ଘୁଷୁରି ମାଛ କୂର୍ମ ଶୂକର ହେଲୁ,
ହୀନ ଜୀବ ହୋଇ ଏତେ ଦୁଃଖ ସହି
କହ ଦେଖି ଭଲା କି ସୁଖ ନେଲୁ ?
ଯୁଗେ ଯୁଗେ ଖାଲି କାନ୍ଦୁଥିବ ମୁହିଁ
କାନ୍ଦିବା ପାଇଁକି ସର୍ଜିଲୁ ମୋତେ,
ପୁଅ ନାତି ବନ୍ଧୁ ଆପଣାର ଲୋକ
ମୋ ଆଗେ ମାରିବା ନ୍ୟାୟ କି ସତେ ?

ତୋତେ ସିନା କହୁ          ଦୋଷ ତୁଏଁ ନାହିଁ
    ମୋତେ କିଆଁ କରୁ ସଦା ଦୋଷିଣି,
କେଉଁ ଯୁଗେ କଣ          ତୋତେ ମୁଁ ପୂଜନ
    ତୋତେ ମୁଁ ଭଜନ ତୋତେ ତୋଷିନ !
ମୋହଠାରୁ ବେଶୀ          ତୋର କି ସେମାନେ
    ଯେଉଁମାନଙ୍କୁ ତୁ ଦେଉଛୁ ମାର,
ମାରୁଛୁ କି ସତେ          ନାହିଁ ନାହିଁ ନାହିଁ
    ଦେଉଛୁ ତାହାଙ୍କୁ ଦୁଃଖରୁ ତାର !
ମୋତେ ମାରୁବୁନ          ମୋତେ ତାରିବୁନ
    ମୋର କରେ ଆଉ ମରଣ ନାହିଁ,
କେତେ ଯୁଗ ଆଉ          କାନ୍ଦିବ ମୁଁ ଭଲା
    କେତେ ଦିନ ଆଉ ବସିବ ଗ୍ରହିଁ !
ବୋଝ ବୋହି ବୋହି          ଶିର ଲେମ୍ବୁ ହେଲା
    ଆଉ କେତେ କାଳ ବୋହିବି କହ ?
ଦାନବ ମାନବ-          ମାନଙ୍କର ବୋଝ
    ଦିନ୍ ଦିନ ବେଶୀ ହେଲା ଦୁର୍ବହ ।
କେଉଁ ସୁଖ ଦେଲୁ.          ମୋତେ ତୁ କହିଲୁ
    ସବୁ ଜୀବଜନ୍ତୁ ମୋର ସନ୍ତାନ,
ଜନମଦାୟିନୀ ମୁଁ          କାନ୍ଦେ ସେଥିପାଇଁ
    କରାଇଛୁ ପର ରକତ ପାନ ।
ଜାଣୁନାହୁଁ ସତେ          ସନ୍ତାନର ପାଇଁ
    ମାଆ ମନ କେତେ ହୁଏ ବିକଳ,
ପିଲା ଦୁଷ୍ଟ ହେଉ          କିବା ହେଉ ଶିଷ୍ଟ
    ଜନନୀ କି ତାକୁ ଦିଏନା କୋଳ ?
ଦେଖିଛୁ ତୁ ପରା          ରୁକ୍ମିଣୀ ଅବସ୍ଥା
    ଶମ୍ବର ପୁଅକୁ ନେଲାରେ ଯେବେ,
ତୁ କ'ଣ ଜାଣିନୁ          ତୋ ଭାରିଯା ମନ
    ତୁ କଣ ବିକଳ ହୋଇନୁ ତେବେ !

ପୁଅଟା ମୋହର        ହେଲା ଘର ଦୁଷ୍ଟ
ବୋଲରେ ମୋହର ରହିଲା ନାହିଁ,
ଖାଲି ପୁଅ ବୋଲି        କାନ୍ଦୁଛି ମୁଁ ସିନା
ନ ହେଲେ କାନ୍ଦନ୍ତି କଅଣ ପାଇଁ ?
ଶୁଣିଲି ଯେ ଧନ        ଅଦିତି କାନରୁ
ଆଣିଲା ଅନ୍ୟାୟେ କୁଣ୍ଡଳ କାଟି,
ସେହି ଧନରୁ ମୁଁ        ଜାଣିଲି ରେ ହରି
ଦଇବ ତାହାକୁ ଯାଇଛି ଛାଡ଼ି ।
ଖାଲି ସେତିକ ତ        ନୁହେ ରେ ଶ୍ରୀକୃଷ୍ଣ
ଷୋହଳ ହଜାର ଷୋଳ ବୟସୀ,
ସେଗୁଡ଼ାକୁ ଆଣି        ପୂରାଇଛି ଘରେ
ସବୁବେଳେ ଖାଲି କାନ୍ଦନ୍ତି ବସି ।
ଧନରାଶି ଘରେ        କାନ୍ଦଣା ଶବଦ
ଶିଶୁକ ବହନ୍ତା ଏଥିରେ ଘରେ,
ଯେତେ ତୁଅନ୍ତିଲେ        କଅଣ ବା ହେବ
ଶୁଣିଲା କି ହେଲେ ମୋ ମନା ଥରେ !
ଗୋଠାବୁ ଧାଇଠା        ହେଲେ ରେ ଘଟିଯା
ଜାଣିଛୁ ତ ଘର ହୁଅଇ କସ,
ଲକ୍ଷ୍ମୀ ହରସ୍ୱଣ୍ଣି        ତୋର ତ ଘରଯା
ବୁଝିନାହୁଁ କ'ଣ କଳିଆ-ବଷ୍ ?
ନାହିଁ ବା କରିବୁ        ମନ ମାନବ କା
କେହି କାହା ଛାଇ ସହନ୍ତି ନାହିଁ,
ଗୋଟିଏ ତୋ ପାଖେ        ଥାଏ ଯେତେବେଳେ
ଆରଟି ଖୋଜଇ ଅନ୍ଟି ଥାଇ ।
ତୁ ତ ଓଣା ନୋହୁ        ଦୁଇ ହରିଯାଙ୍କୁ
ଲଗାଇ ଦେଇଛୁ ଯୋଡ଼ଏ ଠାଇଁ,
ହାଟୁଆର ଘରେ        ରଖିଛୁ ଘରଣା
ଧମା ଘରେ ଅଛୁ ଚଅଁଳା ଥୋଇ ।

ତାଙ୍କର ତୁଣ୍ଡରେ ଶୁଣ ତୁ କଜିଆ
ଧର୍ମ ପଣ୍ଡିତଙ୍କୁ ଦେଉଛୁ ଘାଣ୍ଟି,
ପଣ୍ଡିତଙ୍କୁ ଧନ ଧନୀଙ୍କୁ ପାଠ
ଦେଇ ତ ନାହୁଁ ତୁ ସମାନ ବାଣ୍ଟି !
ଶେଷ ଫଳ ତାର କଅଣ ହୋଇଛି
ଧନ ବିଦ୍ୟା କେହି ପାରୁନ ଉଠି,
ଟିକିଏ କଥାରେ ଦୁହେଁ ଦୁହିଁଙ୍କର
କଜିଆ ଲଗାଇ ଧରନ୍ତି ଚୁଟି ।
କୃପଣ ହାତରେ ପାଇଥିଲୁ ଧନ
କେତେବେଳେ ସା'ର ଫିଟେନା ମୁଠା,
ଲକ୍ଷ୍ମୀ ଭରସା ତୋ ପିଏ ବି ସେଇଟା
ଖାଉଥାଏ ନିତ ସେ କୁଣ୍ଡାପିଠା ।
ପଣ୍ଡିତ ହାତରେ ରଖିଦେଲୁ ପାଠ
ଧନ ବିନା ତାର ସବୁ ଅନ୍ଧାର,
ଜ୍ଞାନ-ଦୀପ ତାର ହେଲେ ହେଁ ଉଜ୍ଜ୍ୱଳ
କେଉଁଠା କରନ୍ତ ତା କାରବାର ?
ତୋ'ର ଲାଭ କ୍ଷତି ନାହିଁ ତ ରେ କିଛି
ଚଞ୍ଚଳା ଖୁଆଏ ଖିରି ଖେଚୁଡ଼ି,
ସରସ୍ୱତୀ ତାର ବିପଞ୍ଚି ବାଇ
ଶୁଣାଏ ରେ ବେଦ ବେଦାନ୍ତ ପଢ଼ି ।
ତେଣୁ ସିନା ତୁହି ଏକା ରେ ପଣ୍ଡିତ
ପୁଣି ଧର୍ମାତ୍ମା ସଂସାର ସାର,
ଆଉ ସବୁ ଯେତେ ଦାନବ ମାନବ
ଦେବତାମାନେ ବି ସକଳେ ଛାର ।
ମୋ ପୁଅକୁ ଦେଲୁ ବିଭବ ରାଜତ୍ୱ
ଦେଲୁ ନାହିଁ ତାକୁ ପାଠରୁ କିଛି,
ଏଇନା ତାହାକୁ ରଗିଲୁ ମାଇଲୁ
ତେଣୁ ତ ମୁଁ ତୋତେ କରୁଛି ଛି ଛି ।

ଯେ ତୋତେ ଭଜଇ ଯେଉଁ ରୂପେ ହରି
ସେହି ରୂପ ତାକୁ ହୁଏ ପ୍ରାପତ,
ଶତ୍ରୁ ବୋଲି କରି ଭାବିଲା ନରକ
ତାକୁ ଶତ୍ରୁ ରୂପେ କଲୁ ରେ ହତ ।
ଶତ୍ରୁ ମିତ୍ର ସବୁ କରୁଛୁ ତ ତୁହି
ଦୁଇ ଘରଯାଙ୍କୁ ଲଗାଇ ଦେଇ,
ମଝିରେ କାହିଁକି ସୁକୁଠ ଦେଖୁଛୁ
ମୋତେ କନ୍ଦାଇଲୁ କଅଣ ପାଇଁ ?
ପରମ ଆତ୍ମା ତୁ ପରମ ମଙ୍ଗଳ
ସଂସାରପାକର ତୁ ଆଦିମୂଳ,
ତୋନତେ ଯେ ଭଜନ ତୋତେ ଯେ ପୂଜନ
ରଖିପାରିବ କି ତାହାର କୂଳ ?
ନାଭିରୁ ତୋହର ଉପୁଜିଲା ପଦ୍ମ
ଚତୁର୍ମୁଖ ହେଲ ତହିଁରେ ଜନ୍ମ,
ସେ ତୋର ପୂଜାରି ତୁ ତାହାର ପୂଜ୍ୟ
ଆଉ କିଏ ହେବ ତୋହର ସମ ?
କର ଓ ଚରଣ ଆନନ ନୟନ
ସବୁ ତ ତୋହର ପଙ୍କଜ ପରି,
ସୁନ୍ଦର ପଣର ପଟାନ୍ତର ନାହିଁ
ଆଉ କିଏ ହେବ ତୋ ସମ ସରି ?
ଜଗତ ଜନମ କରୁ ତୁହି ନାଥ
ପୁଣି ତୁହି ତାର କରୁଛି ଅନ୍ତ,
ନଜର ତୋ ନାହିଁ ଜନମ ମରଣ
ତେଣୁ ତୁ ତୋ ଆଦି ତୁହି ତୋ ଅନ୍ତ ।
କଥାଟିଏ ହରି ପଚାରିବି ତୋତେ
କହିବୁ ତୁ ସତ ମରମ ଖୋଲି,
କାହିଁକି ତୁ ଏତେ ଥରକୁ ଥର ରେ
ଜନମହେଉଛୁ କଅଣ ବୋଲି ?

ମାନବୀ ଗରଭେ          କେବେ ପଶୁ ଗର୍ଭେ
ଜନମୁଛୁ ଆସି ଥରକୁ ଥର,
ଗରଭ ଭିତର          ଅନ୍ଧାର ରାଇଜ
ଦେଖି କ'ଣ ତେବେ ମାଡ଼େ ନା ଡର ?
ଦାନବୀ ଗରଭେ          କେବେ ତ ଜନ୍ମିନୁଁ
ତା ଗର୍ଭ କି ପଶୁ ଗରଭୁଁ ହୀନ,
ଦାନବଗୁଡ଼ାଙ୍କୁ          ଦହଗଞ୍ଜ କର
କାହିଁକି କରୁଛୁ ତାଙ୍କୁ ରେ ଧନ ?
ମାଆର ରାଗ କି          ତୋର ଅଛି ହରି
ଦାନବ ଯେଣୁତର ସାବତ ଭାଇ,
ସେଥିପାଇଁ ତାଙ୍କୁ          ବିଷ ପରଷିଲ
ଅମୃତ ଯେତେକ ଥିଲା ରେ ଖାଇ ।
କେବେ କେଉଁ ଗୁଣେ          ବଡ଼ ତୁ କହିଲୁ
ଭାଇଗୁଡ଼ାଙ୍କୁ ତ ଚାହିଁଲୁ ନାହିଁ,
ସେଥିପାଇଁ ପରା          ମରତରେ ଭାଇ
ରହି ପାରୁ ନାହିଁ ଭାଇର ଛୁଇ ।
ତୁମେ ଦୁଇ ଭାଇ          କୃଷ୍ଣ ହଳଧର
ଦୁହିଁଙ୍କର କ'ଣ ମିଳଇ ମନ ?
ଜଣେ ପାଣ୍ଡବଙ୍କୁ          ସୁଖ ଦାଉଥିଲେ
ଜଣେ ପାଏ ଭଲ ଦୁରୁଯୋଧନ ।
କାହିଁକି ଏପରି          କହିଲୁ ରେ ହରି
ଦୁହିଁଙ୍କ ଜନମ ନୁହନ୍ତି ଏକା,
ତେଣୁ ତୁମଠାରେ          ମାଆଙ୍କର ଭେଦ
ମନରେ କାମରେ ଦିଏ ରେ ଦେଖା,
ପୂଜ୍ୟରକ୍ତ-ମାଂସୁ          ଜନମ ଗରଭ
ତୋର କ'ଣ ସତେ ହୁଏନା ଘୃଣା ?
ମାଆର ଗରଭ          ରୌରବ ନରକ
କିଏ କାହାଠାରୁ କହିଲୁ ଊଣା ?

ତୋର କେବେ କାହିଁ ହୁଅଇ ରେ ପାପ
ସେଥିପାଇଁ ତୋର ନରକ ଭୋଗ,
କିବା ସଂସାରର ମଙ୍ଗଳ ପାଇଁ ରେ
ଏକା ଭୋଗ କରୁ ସବୁ ଦୁର୍ଯୋଗ ?
ପାପ ପୁଣ୍ୟ ତେବେ ବାଧଇ ରେ ତୋତେ
ମର୍ତ୍ତ୍ୟରେ ମାନବ ରୂପରେ ଜନ୍ମି,
ଯୁଗେ ଯୁଗେ ଜନ୍ମି ସଂସାର-ଧନ୍ଦାରେ
ପଶି ଘାଣ୍ଟି ହୋଇଯାଉ ରେ ଭ୍ରମି ?
ଆଉ କାହାକୁ ରେ ଛୁଏଁ ନାହିଁ ପାପ
କିଏ ସେ ଜନମି ପାଏ ରେ ମୁକ୍ତି,
ଧୋବ ଲୁଗାଟାରେ ଲାଗଇ ମଇଳା
ଏହି କ'ଣ ତେବେ ତୋହର ଯୁକ୍ତି ?
ଦୁଷ୍ଟ ଅତ୍ୟାଚାରୀ- ଗୁଡ଼ାଙ୍କୁ ତୁ ମାରି
ତୋ ଦେହରେ କିଆଁ ଦେଉ ମିଶାଇ ?
ମିଶାନା ତୁ ତୋର ଶୁଦ୍ଧ ପୂତ ଦେହେ
ଥାଆନ୍ତୁ ସେ ପଛେ ଉଗାରି ଯାଇ ।
ଜାଣିଥାନ୍ତି ଯେବେ ଆଗରୁ ଏତିକ
ତୋତେ କରିଥାନ୍ତି ସାତୁଟା ପରି,
ତୋ ହାତରେ ମରି ମିଶନ୍ତେ ତୋ ଦେହେ
ହୋଇଥାନ୍ତି କିଆଁ ମାଟି ପଥର ?
ସହିବା ପାଇଁ କି ଗଢ଼ିଛୁ କି ମୋତେ
କହୁନୁ କାହିଁକି ଫିଟାଇ କରି ?
ମୋହର କଷଣ ଯେତେ ହେଉ ପଛେ
ସହିଯିବି ସବୁ ପଥର ପରି ।
ମାଡ଼ କୁଦ ଡେଇଁ ସମସ୍ତେ ହସିବେ
ବୁହାଇବ ନାହିଁ ଟୋପାଏ ଲୁହ,
ମରନ୍ତୁ ପଛକେ ତୋହର ହାତରେ
ନାହିଁ ଅଣନାତି ଆହୁରି ପୁଅ ।

ସର୍ବସଂହ୍ଲା ନାଆଁ ପାଇ ସାରିଲଣି
ଆଜ କସ ଅଛୁ ସମ୍ଭବ ନାହିଁ ?
ତୋହର ବାହାକୁ ସାହା କରିଅଛୁ
ତାକୁ ହିଁ ତ ସଦା ବସିଛୁ ଗୃହିଁ ।
ବ୍ରହ୍ମ ସ୍ୱରୂପ ତୁ ବିଶ୍ୱରୂପ ତୋର
ବିଶ୍ୱ-ବ୍ରହ୍ମାଣ୍ଡ ତ ତୋ ରୂମ ମୂଳେ,
ଅନନ୍ତ ଶକ୍ତି ତୁ ତୋ ଶକ୍ତିର ସୀମା
ଦେବତା ମାନବ କଏ ବା କଳେ !
ପଞ୍ଚଭୂତ ଆତ୍ମା ପରମ ପୁରୁଷ
ତୋହର ମହିମା କେ ପାରେ କହି ?
ତୋହର କୃପାରୁ ତୋତେ ଆଶ୍ରା କରି
ତୋ ଚରଣ ତଳେ ପଡ଼ିଛୁ ମହୀ ।
ସୃଷ୍ଟି ବେଳେ ହୋଇ ରଜୋଗୁଣାପନ୍ନ
ପ୍ରଳୟ ବେଳରେ ହୋଇ ତୁ ତମ,
ଧରମ ବେଳରେ ହୋଇ ସତ୍ତ୍ୱ ଗୁଣ
ନିର୍ଦୋଷ ନିର୍ଗୁଣ ତୋଠାରେ ସମ ।
ଅନିଳ ଅନଳ ସଲିଳ ଗଗନ
ଏ ସବୁର ସିନା ତୁହି ରେ ଆଦି,
କିନ୍ତୁ ପ୍ରଭୁ ତୋର ନିଜ ଆଦି ନାହିଁ
କେବଳ ମାତର ତୁହି ଅନାଦି ।
ଶବ୍ଦ ସ୍ପର୍ଶ ରସ ଗନ୍ଧ ଓ ଇନ୍ଦ୍ରିୟ
ସମସ୍ତେ ତୋହର ଗୋଟିଏ ରୂପ,
ତୋର ଛଡ଼ା ଆଉ ରୂପ ନାହିଁ କା'ର
ତୁହି ହିଁ ଅରୂପ ତୁହି ସରୂପ ।
ଇନ୍ଦ୍ର ଆଦି କରି ଯେତେକ ଦେବତା
ସେମାନଙ୍କର ତୁ ଆଦି କାରଣ,
ସବୁର ଦେହରେ ଅଛୁ ସବୁବେଳେ
ସବୁଠି ବିହରୁ ତୁ ନାରାୟଣ ।

ସାଗରେ ତୁ ଶୋଭ ଗଗନେ ପ୍ରକାଶୁ
ତୋହର ସୁନ୍ଦର ବଶ୍ୱମୂରତି,
ଖେଳୁ ଯେତେ ଖେଳ ମୋହର କୋଳରେ
ମଣିଲ୍ କି ମୋତେ ଯଶୋଦା ସତି !
କ୍ଷିତି ଯଶୋମତି ଦୁହେଁ ତ ସମାନ
ତାକୁ କନ୍ଦାଇଲୁ ବରଜ ଦେଇ,
ମୋତେ ସେହିପରି କନ୍ଦାଇ ଦେଲୁ ରେ
କୋଳରୁ ମୋହର ପୁଅକୁ ନେଇ ।
ନାତିନିଏ ଅଛି ସଙ୍ଗରେ ଆଣିଛି
ସେହିଟିକି ହରି ସାଇତି ଦିଅ,
ଏତିକ ମାଗୁଛି ଶ୍ରୀଚରଣ ତଳେ
ବାପଛିଆଟିକି କୋଳକୁ ନିଅ ।"
ଧରଣୀ କାକୁତି ଶୁଣିଲେ ଶ୍ରୀକୃଷ୍ଣ
ନରକ ତନୟ ତରୁଣ ଶିରେ,
ବୁଲାଇଲେ ହାତ ଟେକାଇଲେ ଛତି
କହିଲେ ପ୍ରବୋଧି ମଧୁର ଗିରେ ।
"ଜନକ ରାଜ୍ୟରେ ହେଲୁ ତୁ ରେ ରଜା
ସୁଖରେ ପାଳବୁ ପରଜା ଜନ,
ହେବୁ ଦୀର୍ଘ ଆୟୁ ଭୁଞ୍ଜିବୁ ସୌଭାଗ୍ୟ
ସବୁବେଳେ ଧର୍ମେ ରଖିବୁ ମନ ।
ଗଜବାଜୀ ଧନ ଆଉ ମଣିରତ୍ନ
ଯେତେ ଘରେ ଅଛି ସବୁରେ ତୋର,
କୁଣ୍ଡଳ ଯୋଡ଼ିକ ବାପ ତୋ ଆଣିଛି
ଗଲା ସେ ଯୋଡ଼ିକ ହେଲା ରେ ମୋର ।"
ନରକ ନଅରେ ପଶିଲେ ଶ୍ରୀକୃଷ୍ଣ
ତାର ପୁଅଟିକୁ ସଙ୍ଗରେ ନେଇ,
ହସି ହସି କରି ସବୁ ଦେଖି ବୁଲି
ରଖିଲେ ତାହାକୁ ସାନ୍ତ୍ୱନା ଦେଇ ।

ବନ୍ଦୀମା ଯୁବତୀ- ମାନଙ୍କୁ ଦେଖିଲେ
କାନ୍ଦୁଛନ୍ତି ସବୁ ବିକଳ ହୋଇ,
ସଜ ସରସିଜ ସମ ଗୁରୁଗଣ୍ଡ
ଲୋତକ-ଜଳରେ ହେଉଛି ଧୋଇ ।
ଭାଳିଲେ ଶ୍ରୀକୃଷ୍ଣ ନରକ ମରଣେ
କାନ୍ଦୁ ଅଛନ୍ତି କି ଯୁବତୀଗଣ !
ପଚାରିଲେ ତାଙ୍କୁ ଜଣ ଜଣ କରି
କାନ୍ଦିବାର ଯେତେ ସବୁ କାରଣ ।
ଦେଖିଲେ ବାଳଏ ଶ୍ରୀକୃଷ୍ଣ ମୂରତି
ସଭିଏଁ ବିକଲେ ଜୀବନ ମନ,
ମନେ ମନେ ସବୁ ପତି କରିବାକୁ
ଆକୁଳ ଆଗ୍ରହେ କଲେ ବରଣ ।
ଶ୍ରୀକୃଷ୍ଣ ଜାଣିଲେ ସବୁରି ଅନ୍ତର
ମୁକୁଳାଇ ଦେଲେ କରୁଣା କରି,
ପେଶିଲେ ଦ୍ୱାରକା ବାହା ହେବେ ବୋଲି
ସେଇଠି ହୋଇବେ ବିଧି ଆଚରି ।
ନରକ ଉପରେ ମୁଗ୍‌ଧ ହେଲେ ନାହିଁ
କୃଷ୍ଣଙ୍କ ଉପରେ ହୋଇଲେ କିଆଁ ?
ଶ୍ରୀକୃଷ୍ଣ ମୂରତି ମନୋମୁଗ୍‌ଧକରୀ
ଆଖି ଶୀତଳଇ ନରକ ଛୁଆ ।
ଗୋଟିଏ ନୁହନ୍ତି ଯୋଡ଼ିଏ ନୁହନ୍ତି
ଷୋହଳ ହଜାର ଆହୁରି ଶହେ,
ଏତେ ବାହା ହୋଇ ଘର ସମ୍ଭାଳିବା
ସଂସାର କରିବା ସହଜ ନୁହେଁ ।
ଭାଗ୍ୟକୁ ନରକ ତାହା ହୋଇ ନାହିଁ
ହୋଇଥିଲେ ସିନା ସବୁ ବିଧବା,
ହୋଇ ରହିଥାନ୍ତେ କପାଳ ଫାଟନ୍ତା
ଆଉ କିଏ ବାହା ହୁଅନ୍ତା ଅବା !

ସମସ୍ତେ ସୁନ୍ଦରୀ ପୁଣି ଏକା ପରି
ଶ୍ୟାମଳୀ ହୋଇ ତ ଗୋଟିଏ ନାହିଁ,
କେତକୀ ପାଖୁଡ଼ା ପରି ଦେହ କାନ୍ତି
କାହୁଁ ଦୋଷ ନାହିଁ ଖୁଣିବା ପାଇଁ ।
ଚଳିଲେ ଦ୍ୱାରକା ହସି ଖୁସି ହୋଇ
କୁଆଁରୀ କାମନା ହୋଇଛୁ ପୂର୍ଣ୍ଣ,
ନରକ ମରିଛୁ ବନ୍ଧନ ଫିଟିଛୁ
ଆଜ ବା କାହିଁକି ହୋଇବେ କ୍ଷୁର୍ଣ୍ଣ !
କୁଆଁରପୁଣିଅଁ ଓଷାକରି କବା
ଶିବଙ୍କୁ ପୂଜାରେ ମନାଇଁ ଥିଲେ,
ତେଣୁ କ'ଣ ସବୁ ମିଳିମିଶି କରି
ଶ୍ରୀକୃଷ୍ଣଙ୍କ ପରି ବର ପାଇଲେ !
କୃଷ୍ଣ ପୂଜ ଶିଖ ପାଇବ ଗୋ ବର
ହାରିବ ସନ୍ତାପ ଭୁଞ୍ଜିବ ସୁଖ,
ସଂସାର-ଜଞ୍ଜାଳ ଲାଗିବ ନାହିଁ ଗୋ
ଅପସରି ଯିବ ସକଳ ଦୁଃଖ ।
ପୁରୁଷ ଯେତେକ ପୂଜ ସେହି କୃଷ୍ଣ
ପାଇଯିବ ସବୁ ଗତି ମୁକତି,
ଯମର ଯାତନା ଆଉ ସହିବନି
ହଜିବ ଯମର ସବୁ ଶକତି ।
ଏ ଯୁଗରେ ଖାଲି ତାଙ୍କ ନାଆଁ ସାର
ସେହି ଏକା ମନ୍ତ୍ର ତନ୍ତ୍ର ଓ ଜପ,
ଶୟନେ ସ୍ୱପନେ ଜାଗରଣେ କର୍ମେ
କରୁଥାଅ ଖାଲି ସେଇଟା ଜପ ।
ଲେଖକର ନାଆଁ ଜୟକୃଷ୍ଣ ବୋଲି
ଏତିକ ମାତର ଅଛି ଭରସା,
ଖାଲି ମାଗଣାରେ ପାଇଯିବ ସବୁ
ଭୋଗିବ ନାହିଁ ସେ କେଉଁ ଦୁର୍ଦ୍ଦଶା ।

ଶ୍ରୀକୃଷ୍ଣ ଚଳିଲେ ସିଧା ସରଗକୁ
କୁଣ୍ଡଳକୁ ଦେଲେ ଅଦିତି କରେ,
ଦେବତାଙ୍କୁ ତୋଷି ସରଗ ହସାଇ
ଆସିଲେ ବାହୁଡ଼ି ଦ୍ୱାରକା ପୁରେ ।

# ପାରିଜାତ ହରଣ

ସୁଦୂର ଗଗନେ ଦିଗବଳୟରେ
ଗିରି ରୈବତକ ଦିଶୁଛି କି ଏ ?
ଗିରି ନୁହେ ସେ ତ ଗଗନରୁ ଖଣ୍ଡେ
ରବି ଶଶୀ ତାରା ଧରିଛି ସିଏ ।
ଗଗନ ଶିଖରୀ ବାରି ହେଉ ନାହିଁ
ମିଳମା ମିଳମା ଯାଇଛି ମିଶି,
ତ୍ରିଷ୍ଟାରୀ ସୀମନ୍ତେ ଶରତ ଦିନାନ୍ତ
କୋଳାକୋଳି କରା ଦିବସ ନିଶି !
ପ୍ରକୃତିର କରା ଗୃହୁ ଚନ୍ଦ୍ରପଟ
ଟଙ୍ଗା ହୋଇଅଛି ଅତି ଉଚ୍ଚରେ,
ଶୋଭା ରାଇଜର ଶୋଭାର ଶୋଭା ସେ
ମୋହୁଛି ନୟନ ରଙ୍ଗମଞ୍ଚରେ ।
ଘନ ଶ୍ୟାମଳିଆ ଦେହଟି ତାହାର
ଗଗନ ଉରସେ ଯାଇଛି ପଶି,
ଶରତ ଆକାଶେ ଉଇଁ ବୁଲୁଛି କି
ହସି କାନ୍ଦ ସତେ ଚଉଠୀ ଶଶୀ !
ପ୍ରଦୋଷର ଭୂଷା ପ୍ରତ୍ୟୁଷ ଲାବଣ୍ୟ
ଶିଖରୁ ଶିଖରେ ଦେଉଛି ଦେଖା,
ଋଷି ତପସ୍ୟାର ତପ ଫଳ ଏକ
ଅମ୍ଳାନ ଅକ୍ଷରେ ହୋଇଛି ଲେଖା ?

ପାଦପର ଶିର ଛୁଇଁ ଗିରି ଚୂଡ଼ା
ଫୁଟାଇ ଧରିଛି ସହସ୍ର ଫୁଲ,
ଶୂନ୍ୟ ବିତାନରେ ତାରକାବଳି କି
ଦିଶୁଛି ତ ସତେ ତା ସମତୁଲ ।
ନାହିଁ ଉଚ୍ଚ-ନୀଚ ନାହିଁ ବନ୍ଧୁରତା
ନାହିଁ ବ୍ୟବଧାନ କିଛି ତ ନାହିଁ,
ସମାନ ଆଖିରେ ସମାନ ଅନ୍ତରେ
ସମକୋଣ କରି ଅଛି ତ ଚାହିଁ ।
ଉତ୍ତରୁ ଦକ୍ଷିଣେ ଲମ୍ବି ଯାଇଅଛି
ନୀଳଗିରି ନାସି ଧନୁଟି ପରି,
ଦୁଇ କୋଟି ଦୁଇ ଦିଗଙ୍କର ଶେଷ
ଚୂଡ଼ାନ୍ତି-ହୋଇଛି ମୁଠାଟି ସରି ।
କୋଟି ଆଉ ମୁଠା ବୁଲି ଯାଇଅଛି
ଅଧାଗୁନ୍ଦ ଦେଶ ହୋଇ ନିଖୁଣ,
ସରଳ ସଳଖ ରେଖାଟିଏ ଭଳି
ଭୁଲିଁଠା ଶୋଇଛି ତାହାର ଗୁଣ ।
ଶଙ୍ଖରୂପ ବର୍ଣ୍ଣ ସୁବର୍ଣ୍ଣର ସମ
ଏ ଧନୁର କାନ୍ତ ମର୍କତ ପରି,
କିଏ ସେ ଧାନୁକୀ ଦିଶଇ ତ ନାହିଁ
ଲୁଚି ଲୁଚି କଣ ଅଛି ସେ ଧରି !
ପ୍ରତୀଚୀ କକୁଭେ ମରକତ ଗିରି
ଗଢ଼ିଦେଉଛି ତ ଉଚ୍ଚ ପ୍ରାଚୀର,
ସଜଳ କରଣ ପଡ଼ି ଝୁଲି ରହିଁ
କରି ଦେଇଛି ତ ବେଶୀ ରୁଚିର ।
ଫେନିଳ ଲହରୀ ଭାଙ୍ଗି ଗଢ଼ି କରି
ଶତ ନିର୍ଝରଣୀ ଝର୍ଝରେ ଝରି,
ଦୂର୍ବାଦଳ ଶ୍ୟାମ ଶିଖରି ଶିରରେ
ଖଞ୍ଜିଦେଇଛନ୍ତି ରଜତ ଜରି ।

ଗିରି ଝିଅଙ୍କର ଚଟ ଘାଟ ନାହିଁ
ନାଆଁ ହୋଇ ନାହିଁ ତଟିମା ଏବେ,
ଧାଇଁଛନ୍ତି ଖାଲି ସୁଜ ସୁଜ କରି
ସରୁ ଭୁଜଙ୍ଗିମା କ ସବୁ ଭେବେ !
ତ୍ରିବେଣୀ ଭିତରୁ ଗୋଟିଏ ବେଣୀ ତ
ପଙ୍କଜ ସଲିଳା ସେ ସରସ୍ୱତୀ,
ଏହି ଗିରି ଶିରୁ ଓହ୍ଲାଇ ଆସିଛି
ସାପ ପରି ଧରି କୁଟିଳ ଗତି ।
ଗଗନ ସଙ୍ଗରେ ମିଶି କାଦମ୍ବିନୀ
କରନ୍ଧଏ ତାକୁ ଅନ୍ଧାରତର,
ଅନ୍ଧାର ଭିତରେ ଜଳ ଲଭି କରି
ଦଣିଯାଏ କେତେ ଜ୍ୟୋତିଷ୍କ-କର ।
ନିଗମର ଆଦ୍ୟ ଅକ୍ଷର ଓଁକାର
ଧ୍ୱନିତ ହୋଇଲା ଏହାରି ବକ୍ଷେ,
କୃଷ୍ଣ ଦ୍ୱୈପାୟନ ଜନମିଲେ ଦ୍ୱୀପେ
ଲେଖିଗଲେ ବେଦ ଏହାରି କକ୍ଷେ ।
ଋଷି ପ୍ରଭବରୁ ପବିତ୍ର ଏ ଗିରି
ତୀର୍ଥବାସୀ ନିତ ବସନ୍ତି କେତେ,
ମୁକ୍ତିର ସୋପାନ ଗିରି ସନ୍ଧ୍ୟର୍ଘ୍ୟ
ଋଷିଙ୍କ ଆଶ୍ରମ ଦେଖନ୍ତି ନେତ୍ରେ ।
ନାହିଁ ହିଂସା ଦ୍ୱେଷ ନାହିଁ କପଟତା
ନାହିଁ ଏଠି କିଛି ସଂସାର ଧନ୍ଦା,
ହିଂସୁକ ଶାର୍ଦ୍ଦୂଳ ଫଳମୂଳାହାରୀ
ଜୀବ ମାରିବାକୁ କରିନି ଫନ୍ଦା ।
ହିଂସ୍ର ବାଘ ଏଠି ସୁଶୀଳ ସୁବୋଧ
ବେଦର ମର୍ମ କ ବୁଝନ୍ତି ସିଏ !
ଅହିଂସା ଧରମ ନିଃସ୍ୱାର୍ଥ କରମ
ତାହାଙ୍କୁ ଶିଖାଇଦେଲା ବା କିଏ ?

ପଥେ ଶୋଇଥିଲେ ଭଷ ଜ୍ଞାନ ଗଲେ
ଆଡ଼େଇ ହୋଇ ସେ ଶୁଅନ୍ତି ଯାଇଁ,
ଋଷି ପୁଅ ଝିଅ ଆଉଁସି ଦଅନ୍ତି
ଅଳସେ ଶୋଇ ସେ ମାରନ୍ତି ହାଇ ।
ଏକଦା ଶ୍ରୀକୃଷ୍ଣ ରୁକ୍ମିଣୀଙ୍କ ସଙ୍ଗ
ଆସିଲେ ଏଟିକି ବିହାର ପାଇଁ,
ଗିରି ଗୁରୁ ଶୋଭା ଋଷିଙ୍କ ଆଶ୍ରମ
କାନନର ଶିଶୁ ଦେଖିବେ ଗୁହାଁ ।
ନାରଦ ସରଗେ ଥିବୁ ହେଲେ ନାହିଁ
କପଟ କେଉଁଟି ଲଗାଇ କଳି,
ଦେଖିବେ ମଉଜ ମାରି କରତାଳି
ସରଗର ଦୁନା ପୁଅଟି ଭଲି ।
ଇନ୍ଦ୍ର ଗୋବନ୍ଦରେ ଲଗାଇବେ କଳି
ଏଇଥିରେ ବଳାଇଲେ ମାନସ,
ପାରିଜାତଟିଏ ଧଇଲେ ହାତରେ
ଗୁରି କୋଣ ଯାଏ ଯାହାର ବାସ ।
ଓହ୍ଲାଇଲେ ସ୍ୱର୍ଗୁ ଗଲେ ରୈବତକେ
ଶ୍ରୀକୃଷ୍ଣ ରୁକ୍ମିଣୀ ଥିଲେଟି ଯହିଁ,
ଦେଲେ ଶ୍ରୀକୃଷ୍ଣଙ୍କୁ ଫୁଲଟି ବଢ଼ାଇ
ହସି ହସି କରି କଲ୍ୟାଣ କହି ।
ଶ୍ରୀକୃଷ୍ଣ ଫୁଲଟି ଦେଲେ ରୁକ୍ମିଣୀଙ୍କୁ
ନାରଦଙ୍କର ତ ଦୁନା ସୁଯୋଗ,
ହେଲେ ମହା ଖୁସି ଦ୍ୱାରକାରେ ତେଣେ
ସତ୍ୟଭାମାଙ୍କୁ ଯେ ଧରିବ ରୋଗ ।
ଏହିଠାରୁ କଳି ହୋଇବ ଆରମ୍ଭ
କ୍ରମେ ବଢ଼ି ବଢ଼ି ଯିବ ସରଗ,
ଲଢ଼ାଇ ଲାଗିବ ଏହି ଫୁଲ ପାଇଁ
କୃଷ୍ଣ ହେବେ ଏକ ପକ୍ଷେ ବାସବ ।

ଗଲେ ସିଧା ସିଧା ଦ୍ୱାରକାକୁ ଯେଉଁ
କଲ୍ୟାଣ କଲେ ସତ୍ୟଭାମାଙ୍କୁ,
ସବୁ କଥାପାକ ଆଦ୍ୟଁ ପ୍ରାନ୍ତ ଯାଏ
ଗୋଟି ଗୋଟି କରି କହିଲେ ତାଙ୍କୁ ।
ଅହୁର କହିଲେ "ପାରିଜାତଟିଏ
ଆଣିଥିଲ ସ୍ୱର୍ଗୁଁ କୃଷ୍ଣଙ୍କ ପାଇଁ,
ଦେଲା ତାଙ୍କ କରେ ଖୁସି ହୋଇଲ ଭାରି
ଦେଲେ ରୁକ୍ମଣୀଙ୍କୁ ବସିଲେ ଖୁହିଁ ।"
ପୁଣି ଉଠିଗଲେ, ତାଙ୍କୁ ପିନ୍ଧାଇଲେ
ରୁକ୍ମଣୀଙ୍କ ସୁଖ କହିବ କିଏ ?
ବିଶ୍ୱ-ବିମୋହିନୀ ଶୋଭା ସେ ଧଇଲ
ଏକାଠି ବସିଲେ ଶ୍ରୀକୃଷ୍ଣ ପିଏ ।
ରୁକ୍ମଣୀ ଶ୍ରୀକୃଷ୍ଣ ତେଣେ ରୈବତକେ
କରନ୍ତି ବିହାର ସୁଖରେ ରହି,
ତୁମେ ଏଠି ବସି କଅଣ କରୁଛ
କପଟ ଗୋ ସତେ ପାରିଛ ସହି ?
ଶ୍ରୀକୃଷ୍ଣ କେବଳ ରୁକ୍ମଣୀଙ୍କର କି
ତାଙ୍କଠାରେ କିଆଁ ଏ ଅନୁରାଗ ?
ତୁମେ କଣ ଆଜ ଭାରିପା ନୁହ କି
ପାରିଜାତଟିଏ ତାହାଙ୍କୁ ମାଗ ।
ଫୁଲଟିଏ କିଆଁ ମାଗ ଗଛ ସୁଦ୍ଧା
ତୁମରି ଦୁଆରେ ଲଗାଅ ଆଣି,
ଜାଣିବ ଗୋ ତେବେ ଶ୍ରୀକୃଷ୍ଣଙ୍କ ମନ
ସତ୍ୟଭାମା କିବା ରୁକ୍ମଣୀ ରାଣୀ ।"
ସତ୍ୟଭାମା ମୁହଁ କୁହୁଳାଇ ଦେଲେ
ପଣତ ପକାଇ ଶୋଇଲେ ତଳେ,
ନାରଦ ଏତିକି କହିଦେଇ ସାରି
ରୈବତକେ ପୁଣି ସେଇନା ଗଲେ ।

କୃଷ୍ଣଙ୍କୁ କହିଲେ ସବୁ ସମାଚାର
"ସତ୍ୟଭାମା ତେଣେ ଶୋଇଲେ ରୁଷି,
ଯାଅ ପାରିଜାତ ଆଣ ବେଗେ କାହିଁ
ସତ୍ୟଭାମା ସୁଖେ ହୁଅନ୍ତୁ ଭୂଷି ।"
ଶ୍ରୀକୃଷ୍ଣ ଜାଣିଲେ ଋଷିଙ୍କ ଉଦ୍ଦେଶ୍ୟ
ମନକୁ ମନକୁ ହସିଲେ ଖାଲି,
ପାରିଜାତ ପାଇଁ ବାସବ ସଙ୍ଗରେ
କଳି କରିବାର ପଡ଼ିଲା ପାଳି ।
ଏସବୁ ବିଷାଦ ନାରଦଙ୍କର ତ
ଇନ୍ଦ୍ର ସଙ୍ଗେ କଳି କରିବା ପାଇଁ,
ମତଲବ ପାଞ୍ଚି ସରଗ ବାଇଜୁ
ଆସିଛନ୍ତି ମୋର ପାଖକୁ ଧାଇଁ ।
ରୁକ୍ମିଣୀଙ୍କୁ ଚାହିଁ କହିଲେ ବନସ୍ତି
"ଶୁଣିଲ ତ ଦେବ ଋଷିଙ୍କ କଥା,
ଖାଲି ତ କଳିଆ ଖୋଜି ବୁଲୁଥାନ୍ତି
ଭୁଛାଟାରେ ବଗାଡ଼ିଲେ ତା ମଥା ।
ସତ୍ୟଭାମାକୁ ତ ଜାଣିଛ ସୁନ୍ଦରୀ
ତା'ର ଅଭିମାନ ବାରିଦ ପରି,
ଟିକକ କଥାରେ ବରଷି ଯାଏ ସେ
ବିଜୁଳି ବଜର ସଙ୍ଗରେ ବାରି ।
ଦିଅ ତାକୁ ଥରେ ଛଡ଼ା ଫୁଲଟିକୁ
ବୁଝିଯାଉ ତାର ଅବୁଝା ମନ,
ନ ହେଲେ କରିବ ହାତ ଉଚ୍ଛୁଳା ଗୋ
ହାଣି ପକାଇବ ମୋର ଜୀବନ ।
ମୋ ରାଣୀଟି ପରି ଦିଅ ତାକୁ ଥରେ
କାହିଁ ବା ଆଣିବି ମୁଁ ପାରିଜାତ,
ନସ ହେ ସରଗର ସ୍ଵର ମଣିଷ ମୁଁ
ପାଇବି କି ମୋର ସେଠିକି ହାତ !"

ହଁ ଅଁ ନାହିଁ କହୁ କଲେନ ରୁକ୍ମଣୀ
ନ ଦେବାର ଭଙ୍ଗୀ ଦେଲେ ଦେଖାଇ,
ମୂକଟିଏ ପରି ଠିଆହେଲେ ଖାଲି
ଭୂଇଁକି କେବଳ ରହିଲେ ଗୁହିଁ ।
କୃଷ୍ଣଙ୍କ ସଂସାରେ ସଉତୁଣୀ ଭାବ
ଆଜି କାହା ଘରେ ନ ହେବ କହ ?
ଗୃହସ୍ଥର ଘରେ ସଉତୁଣୀଟାଏ
ସୁଖର ତ ନୁହଁ କେବଳ କଷ୍ଟ ।
କାଲି କାଲିକୁ ତ ସଉତୁଣୀ ଆସେ
ନିତି ତାଙ୍କ ଘରେ ଲଗଇ କଳି,
ଲକ୍ଷ୍ମୀ ସତ୍ୟଭାମା କଳିଆ ସେ ପୁଣି
ସହଜେ କେ ଯିବ କାହାକୁ ବଳି !
ସେଥିପାଇଁ ସାରା ସଂସାରଟାଯାକ
ଘାଣ୍ଟି ହୋଇଯାଏ ରହେନା ସୁଖ,
ଧର୍ମ ପଣ୍ଡିତର ପଣ୍ଡିତ ଧର୍ମର
ଆଗରେ ଅଜାଡ଼େ ଅନନ୍ତ ଦୁଃଖ ।
ସୁଖ ଦୁଃଖ ଦୁଇ ଅଛୁ ଏ ସଂସାରେ
ରହିଥିବ ପୁଣି ଚିରଦିନକୁ,
ସଉତୁଣୀ କଳି ବଡ ନିଉଛଣା
କଳି ନ ଥିଲେ ବି ଲଗେ ମନକୁ ।
ଏହି ସତ୍ୟଟିକୁ ଶିଖାଇବା ପାଇଁ
କୃଷ୍ଣଙ୍କର କ'ଣ ଏ ଅଭିନୟ,
ବହୁ ନାରୀ ନେଇ ସଂସାର କରିବା
ପାଇଁକି ତାଙ୍କର ଥିଲା କି ଭୟ ?
ବୃନ୍ଦାବନ ବନେ ଯେତେ ଗୋପୀ ସେତେ
ଶ୍ରୀକୃଷ୍ଣ କୁଆଡ଼େ ଅଛୁ ପ୍ରବାଦ,
ଷୋହଳ ହଜାର ନରକ ବନ୍ଦିନୀ
ପୂରଇ ପାରିଲେ ନାହିଁ ଯା ସାଧ ।

ତାଙ୍କର ପକ୍ଷରେ ଗୋଟିଏ ଯୋଡ଼ିଏ
ଭାରିଯା କରିବା ନୁହେ ବିଚିତ୍ର,
ଯେଉଁମାନେ ତାଙ୍କୁ ମଣନ୍ତି ମନୀଷି
ନିନ୍ଦା କରୁଥାନ୍ତି ତାଙ୍କ ଚରିତ୍ର ।
ସବୁ କଳ କଷି ବିଗ୍ଭର କରିଲେ
ପ୍ରମାଣିତ ହୁଏ ନିର୍ଭୁଲ ପରି,
ସାଧାରଣ ଜଣେ ମଣିଷ ପକ୍ଷରେ
ଏତେ ରମଣୀଙ୍କୁ ବିବାହ କରି ।
ରଖିବ ଆୟତ୍ତେ ପ୍ରତି ଭାର୍ଯ୍ୟା କୋଳେ
ଦଶ ଦଶ ପୁଅ ଗୋଟିଏ ଝିଅ,
ଦେଇ ଚିର ଯୁବା ହୋଇ ରହିଥିବ
ମାପିଲେ ସେ ଶକ୍ତି ମିଳିବ କିଅ ?
ଶ୍ରୀକୃଷ୍ଣ ଛଦ୍ମରେ ପୁଚ୍ଛିଲେ ନାରଦେ
"କୋଉଠୁ ପାଇଲ ଏ ଫୁଲ ତୁମେ ?"
ନାରଦ କହିଲେ "ଇନ୍ଦ୍ର ଉପବନୁ,
ଏଫୁଲ ତ ନାହିଁ ମରତ ଭୂମେ ।
ନନ୍ଦନ ବନରେ ଏ ଫୁଲ ଫୁଟଇ
ଜଗି ବସିଥାନ୍ତି ସଦା ପ୍ରହରୀ,
ଏ ଫୁଲ ମିଳିବା ସହଜ ତ ନୁହେଁ
ଇନ୍ଦ୍ରଙ୍କୁ ମଗାଇ ପଠା ଶ୍ରୀହରି !
ସମୁଦ୍ର-ମନ୍ଥନୁ ମିଳିଥିଲା ପରା
ଇନ୍ଦ୍ର ନେଇଥିଲେ ତୁମେ ତ ଜାଣ,
ଏଇନା ତୁମର ଶ୍ଳେଷ୍ଠା ତ ହେଲିଣି
ତାଙ୍କଠାରୁ ଏବେ ମଗାଇଆଣ ।"
ଶ୍ରୀକୃଷ୍ଣ କହିଲେ "ଯାଅଟିକେ ଋଷି
ମାଗିବ ଇନ୍ଦ୍ରଙ୍କୁ ମୋ ନାଆ କହି,
ସାଗର-ମନ୍ଥନୁ ଆଣିଥିଲେ ଦେବେ
ଫୁଲ ଅଛି ତାଂକ ପାଖରେ ରହି ।

ସେଥିରେ ତ ମୋର ଭାଗଟିଏ ଅଛି
ନ ଦେଲେ ପଛରେ ପାଇବେ ଦୁଃଖ,
ବନ୍ଧୁରେ ବନ୍ଧୁରେ ମୁହଁ ଫୁଲାଫୁଲି
କାହାର ଏଥିରେ ହେବନି ସୁଖ ।
ପହିଲେ କହିବ ବୁଝାଇ ସୁଝାଇ
ନ ଦେଲେ ପଛରେ କହିବ ଏହା,
ତେଣିକି ଯା ହେବ ଦେବ ଋଷି ତୁମେ
ଏଇନା ଟିକିଏ ସରଗେ ଯାଆ ।"
ଏହିତକ କହି ଗଲେ ଦ୍ୱାରକାକୁ
ଅନ୍ତଃପୁରେ ପଶି ଦେଖିଲେ ସତ,
ସୁନାର ପ୍ରତିମା ତାଂକ ସତ୍ୟଭାମା
ଭୂଇଁରେ ଶୋଇଛି ଟାର ପଣନ୍ତ ।
ଧୂଳିରେ ଧୂସର ହୋଇଛି ଶରୀର
ବସନ ଭୂଷଣ ଭିଜୁଛି ଲୁହେ,
ଆଜି ସତ୍ୟଭାମା ଅଭିମାନରତ
ଜ୍ୱଳନ୍ତ ପ୍ରତିମା, ସରସ ନୁହେ ।
ମୁହଁପାଖେ ବସି ବାଂଚନ୍ତି ସଖିଏ
ସୁଭଦ୍ରା ବସିଛି ଚରଣ ତଳେ,
ସେ ବି କାନ୍ଦୁଅଛି ଏକା ପରାଣ ତ
ସଖୀ ପାଇଁ ସଖୀ ଭାସୁଛି ଜଳେ ।
କୁମୁଦିନୀ ପାଶେ ନଳିନୀ ଫୁଟିଛି
ଦିବାକର ପାଶେ ହିମାଂଶୁ କିବା !
ଉଷାର ଉରସେ ପଶିଛି କି ଆଜି
ମଧ୍ୟାହ୍ନ ପ୍ରଖର ଉଜ୍ଜ୍ୱଳ ଦିବା ।
ଶୀତଳ ସଲିଳ ଛିଞ୍ଚେ ଅବିରଳ
ଧୀର ଧୀରେ କରି ଚାପେ ଚରଣ,
ସତ୍ୟଭାମାଙ୍କର ଚଞ୍ଚଳ ନିଶ୍ୱାସ
ଦେଖି କୃଷ୍ଣଙ୍କର ବିକଳ ମନ ।

ସଖୀର କରରୁ ବିଞ୍ଚଣା ଛଡ଼ାଇ
ନିଜେ ଧରି କୃଷ୍ଣ ବିଞ୍ଚିଲେ ବସି,
ସଖିଏ ଦେଖିଲେ ହେଲେ ଟିକେ ଖୁସି
କିଛି କହନ୍ତିନି ଲୁଚାଇ ହସି ।
ସଖୀ ମନ କଥା ସଖିଏ ଜାଣନ୍ତି
ଅନ୍ତରେ ଅନ୍ତରେ ଗୁନ୍ଥା ସେ ସିଏ,
ସତ୍ୟଭାମା ଢଙ୍ଗ ସିଏ ଜାଣିବେନି
ଆଉ ବା ସଂସାରେ ଜାଣିବ କିଏ ?
ଶ୍ରୀକୃଷ୍ଣ ଜାଣିବେ ପୁରୁଷର ଯାହା
ଜାଣିବାର କଥା ସେତିକି ସିନା,
ନାରୀର କଦର ନାରୀର ମଗଜ
ନର କି ଜାଣିବ ରମଣୀ ବିନା !
କେଉଁଠି ଅବଳା କେଉଁଠି ସବଳା
ନାରୀ ଆଚରଣ ଜାଣଇ ନାରୀ,
କେଉଁଠି ନରମ କେଉଁଠି ଗରମ
ତାର ଉପଯୋଗ କରେ ସେ ପାରି ।
ଏଇନା ଜାଣିଲେ ପୁରୁଷ ଅବଳ
ଆହୁରି ଦୁର୍ବଳ ଅତି ନରମ,
ନାରୀ ଯେତେବେଳେ ଅଭିମାନ କରି
ସତ୍ୟଭାମା ପରି ହୁଏ ଗରମ ।
ଗରମ ଲକ୍ଷଣ ନୟନରୁ ଲୁହ
ଭୂଇଁରେ ଶୋଇବା ମୁହଁକୁ ମାଡ଼ି,
ଯେତେ ଡାକୁଥିଲେ କଥା କହିବନି
ହଲାଇଲେ ଦେବ ହାତ ଛିଞ୍ଚାଡ଼ି ।
ଚଞ୍ଚଳ ଚଞ୍ଚଳ ମାରିବ ନିଶ୍ୱାସ
ବୁଜି ଦେଇଥିବ ବେନି ନୟନ,
ନଣନ୍ଦ କେ ଥିଲେ ସୁଭଦ୍ରାର ପରି
ଚିପି ଦେଉଥିବ ବସି ଚରଣ ।

ସଖୀମାନେ ସବୁ ବେଢ଼ି ବସିଥିବେ
ବଞ୍ଚୁଥିବ କଏ ବଂଶୀ ଧରି,
ଏତିକ ବେଳରେ ଆସିବ ପୁରୁଷ
ଦେଖିବ ମୁହଁଟି ଶୁଖାଇ କରି ।
ଘରିସା ହୋଇଣ ଅଭିମାନ କରି
ଶିଖିବ ଗୋ ଯେବେ ଶିଖ ଏଇଠି,
ବାହା ହୋଇଗଲେ ଘରକରଣାରେ
ଘରିସାପଣିଆ କରିବ ସେଠି ।
କାହିଁ ଥିଲା କାମ ଆସିଲା ସେଠିକି
ସଙ୍ଗରେ ଆଣିଛି ତା ସହଚର,
ବସନ୍ତ ଆସିଛି ମଳୟକୁ ଆଣି
ସୁରଭିତ କରି ତା କଳେବର ।
ଭଅଁର ଆସିଛି ଶୁନ୍ଦ ଶଂଖ ବାଇ
କୋକିଳ ବାଉଛି ବେଣୁ ମଧୁର,
ମଦନ ଦହୁଛି ମଳୟ ସ୍ୱାହୁଛି
ଚେତନା ପଶୁଛି ଧୀରେ ବଧୂର ।
ଧୀରେ ଧୀରେ ଟିକେ ମେଲିଲେ ନୟନ
ଚେତନା ଆସିଲା ଏଥର ଫେରି,
ଚାହିଁଲେ ସଖୀଙ୍କ ମୁହଁକୁ ଆଡ଼େଇ
ରହିଲେ ଚେଣିକ ଶ୍ରବଣ ଡେରି ।
ଦେଖିଲେ ସୁଭଦ୍ରା ଚରଣର ତଳେ
କହିଲେ "ସୁଭଦ୍ରେ ! ଏଠାଇ କଅାଁ ?
କାହିଁକି ଗୋ ମତେ ବେଢ଼ିଅଛ ସବୁ
ମୋ ମୁହଁରେ କ'ଣ ପଡ଼ୁଛି ନଅାଁ ?
ଘଇ ନଅାଁ ଦେବେ ଭଉଣୀ ଫୁଙ୍କିବେ
ଫୁଙ୍କା ନହୁ କଥା ଘାଅରେ ଲୁଣ,
କଏ ତା ମହିବ ନାସି ପସିଣେ ଗୋ
କସ ବାହୁନବ କାହାର ଗୁଣ !

ଘଇ କଳା ନାଗ ଭଉଣୀ ଲଚ୍ଛଣୀ
ରୂପରେ ଗୁଣରେ କେଜାଏ ଭିନ୍ନ,
କାହିଁକି ଗୋ ମୋତେ ଦୁହେଁଯାକ ମିଶି
ପୋଡ଼ାଇ ଜଳାଇ କରୁଛ କ୍ଷୀଣ ?
ଭଉଣୀ ଶୀତଳ କରକାରୁ ବଳି
ଘଇ ତ ଗରମ ଅନଳ ପରି,
କହିଲି ଲୋ ସବୁ କପରି ମୁଁ ଭଲି
ରହିବି ଜୀବନେ ଶରୀର ଧରି !"
ସୁଭଦ୍ରାଙ୍କୁ ନିଅ ମୋ ପାଖରୁ ବେଗେ
ତାଙ୍କ ଦେହଟି ତ ଲଚ୍ଛଣୀ ପରି,
ମୋ ଦେହର ତାତ ବାଜିବ ଲୋ ଯେବେ
ଏଇକ୍ଷଣି ସିଏ ଯିବେ ତରଳି !"
ପଚାରିଲେ ଧୀରେ ରୁକ୍ମଣୀ-ରମଣ
ଆସିଲେ କି ବୋଲି ରହିଲେ ଚୁହିଁ,
କହିଲେ, "ସିଏ ତ ରୈବତକେ ବସି
କରନ୍ତୁ ବିହାର, ଆସିବେ ନାହିଁ !
ରୁକ୍ମଣୀ ଗଭାରେ ପାରିଜାତ ଫୁଲ,
ତାଙ୍କର ନାକରେ ବାଜଇ ବାସ,
ସତ୍ୟଭାମାର ବା କୋଉ କଥା ଅଛି
ତାରଠାରେ କିଆଁ ରଖିବେ ଆଶ ?
ରୁକ୍ମଣୀକୁ ପିତା ବରି ଆଣିଥିଲେ
ତା ପାଇଁ ଥିଲେ ସେ ରକତ ତାଳି,
ତାକୁ ନେଇ ସିଏ ଖେଳିବେ ନାହିଁ ତ
ସତ୍ୟଭାମା ପାଇଁ ବସିବେ ଭାଳି !
ମୋ ବାପର ପିତା ହାନ ସରିଲାନି
ଯାଚି ଦେଇଥିଲା ମନକୁ ଆସି,
ସତ୍ୟଭାମା ମଲେ କି ଅବା ଜୀଇଲେ
କୃଷ୍ଣଙ୍କର କିସ ଯିବ ଲୋ ଭାସି !

ରୁକ୍ମଣୀର ସଙ୍ଗେ     ମୁଁ କି ସମସର
କପାଳରେ ମୋର ହୀନସ୍ତା ଅଛି,
ଜୀବନଟାଯାକ     ବାକି ତ ପଡ଼ିଛି
ଏଇନାଏ କ'ଣ ହେଲାଣି କିଛି !
କା ଅଙ୍ଗ ସୌରଭ     ବାଜିଲା ନାକରେ
ପାରିଜାତର କି ଗନ୍ଧ ଲୋ ଇଏ,
ପାରିଜାତଶ୍ରେଣୀ     ରୁକ୍ମଣୀ ଦେହରୁ
ପବନରେ ଭାସିଆସେ କି ସିଏ ?
କିବା ତାଙ୍କ ଦେହ     ସୌରଭ ଇଏ ଲୋ
ରୁକ୍ମଣୀ ଦେହରୁ ପଡ଼ୁଛି ଝେଇଁ,
ଯେ କିଆଁ ଆସିବେ     ତାଙ୍କୁ ବରିଜ ଲୋ
ମୋର କିସ ଅଛି ତୋଷିବି ଦେଇ ?
ସତ୍ୟକି ରୁକ୍ମଣୀ     ମୋଠାରୁ ସୁନ୍ଦରୀ
ତା ଭାଗ୍ୟ ମୋ ଭାଗ୍ୟ ବେଶୀ ଉଜ୍ଜ୍ୱଳ,
ଗୋଟାକ ଯାକ ତ     କୃଷ୍ଣ ରୁକ୍ମଣୀର
ନାଆଁକୁ ମାତର ସିନା ଲୋ ମୋର ।
ଏକା ଜଣକର     ଭରିଯା ତ ଆମେ
ସିଏ ହସେ ସୁଖେ ମୁଁ କାନ୍ଦେ କିଆଁ ?
ରୁକ୍ମଣୀ ମୋଠାରୁ     ବେଶୀ ଆଦରିଣୀ
ମୋ ମୁହଁରେ ସବୁ ଦଅ ଲୋ ନିଆଁ !"
କାନ୍ଦିଲେ ବକିଲେ     ଏହିତକ କହି
କପାଳରେ କଲେ କର ଆଘାତ,
ଶ୍ରୀକୃଷ୍ଣ ପାଖରେ     ଶୁଣୁଥିଲେ ସବୁ
ନଇଁପଡ଼ି ଧରି ପକାଇ ହାତ ।
କହିଲେ, "ଗୋ ପ୍ରିୟେ !  କି ଦୋଷ ମୋହର
ନାରଦ ଆଣିଲେ ଫୁଲଟି କାହୁଁ,
କହିଲ ତ ଭଲ     ମୁଁ ତାହା ଲଗାନ୍ତି
ପାଟରେ ସେଠେଇ ରୁକ୍ମଣୀ ଥାଉଁ ?"

ତୁମେ ସତ୍ୟ ଥା'ନ୍ତ କାହାକୁ ଦଅନ୍ତ ?
କହିଲ ଭଲ ଗୋ ସବୁ ବଗୃରେ,
ନୁହେ ରୁକ୍ମିଣୀର ନୁହେ ମୁଁ କାହାର
ସଂସାରଟାଯାକ ସବୁ ମୋହରେ ।
ରୁକ୍ମିଣୀର ନାଥ ବୋଲି କିଆଁ କହ
ଜଗତଯାକର ମୁହିଁ ତ ନାଥ,
ପାରିଜାତ ଫୁଲ- ଟିଏ ତାକୁ ଦେଲି
ତୁମେ ଗୃହଁ ଫୁଲ୍ ଏହି କଥା ତ ?
ଗଛ ଆଣିଦେବି ରୋଇବି ଦୁଆରେ
ଏଇଥିପାଇଁ କି କାନ୍ଦୁଛ ତୁମେ,
କୃଷ୍ଣ ତା ଚରଣ ବିକଛି ଯାହାକୁ
ତାର ସମ ଆଉ କିଏ ଏ ଭୂମେ ?
ପାରିଜାତ ଫୁଲେ ଗୁନ୍ଥିବି ଗୋ ମାଳ
ପିନ୍ଧିବ ଗଳାରେ ପିନ୍ଧାଇ ଦେବି,
ରୁକ୍ମିଣୀ ତୁମକୁ ଅନୁନୟ କରି
କେତେବେଳେ ଆସି ମାଗି ବି ନେବ ।"
ମାନ ସରୋବରେ ନଳିନୀ ଫୁଟିଲା
ମାନସ-କଣରୁ ତୁଟିଲା ମାନ,
ହୃଦୟ-କୁଞ୍ଜରେ ବଇଂଶୀ ବାଜିଲା
ତନମୟ ହୋଇ ଶୁଣିଲା କାନ ।
ସରୁ ଅଧରରେ ମଲ୍ଲୀ ଫୁଟିଗଲା
ଆନନ ଧଇଲା ଅରୁଣ ଆଭା,
କନକ ଲତାକୁ ତମାଲ ଧଇଲା
ନୀଳମଣି ଦେହେ କାଞ୍ଚନପ୍ରଭା ।
ବାରିଧି-ବାରିରେ ଜାହ୍ନବୀ ମିଶିଲା
ହାତରେ ଧଇଲା ଲହଙ୍ଗ ତୋଳି,
ବାରିଦ ବକ୍ଷରେ ବିଜୁଳି ଖେଳିଲା
ଅଧରେ ଗଣ୍ଡରେ ଚମ୍ବନ ବୋଳି ।

ବିରହ ଭିତରେ ମିଳନ ମଧୁର
ମାନରେ ତ ଥାଏ ଅମିୟ ଲୁଚି,
ପ୍ରଣୟ-ରାଜ୍ୟରେ ମାନର ମାଧୁରୀ
କିଏ କି କୋଉଠି ପାରଇ ମୂର୍ଚ୍ଛି ?
ମାନିନୀର ମାନ ଭାଙ୍ଗଇ କପଟ
ଶ୍ରୀକୃଷ୍ଣ କେବଳ ଜାଣନ୍ତି ଏକା,
ସତ୍ୟଭାମା ସମ ଅଭିମାନ କରି
ନିଶ୍ଚୟ ତାଙ୍କର ମିଳିବ ଦେଖା ।
ଭକ୍ତର ଅସାଧ୍ୟ କିଛି ନାହିଁ ଭବେ
ସେହିତକ ଯିଏ ପାରିଛି ଶିଖି,
ଗତି ମୁକ୍ତି ଶାନ୍ତି ସବୁ ତ ତାହାରି
ଆଉ କୋଉ କଥା ରହିବ ବାକି !
ଧିର ପଦ ଫେଳି ନିଶି ସଞ୍ଚରିଲା
ଧୀରେ ଲୁଚିଗଲା ଦିବସପ୍ରଭା,
ହୃଦୟ ଭିତରେ ପ୍ରଣୟ ପଶିଲା
ଦିବସ ରଜନୀ ହୋଇଲେ ବନ୍ଦୀ ।
ମଦନ ଆସିଲା ଶର ପରଖିବ
କିଏ ଅଛି ସତେ ଏଡ଼େ କଅଁଳ,
କାହାକୁ ବିନ୍ଧିବ ଭୁକିପାରିବ କି
ପାଞ୍ଚ ସୁମନର କୋମଳ ଶର ?
ଫୁଲରୁ କଅଁଳ ନିଆଁରୁ ପ୍ରଖର
ନୁହଇ କି ସତେ ମଦନ-ବାଣ !
ସେ ଶରର ଦାଉ ସହିପାରଇ କି
ପୀରତି-ଲୋଲୁପ ତରୁଣ ପ୍ରାଣ ?
ସହି ତ ହୁଏନି ସହି ହେଲା ନାହିଁ
କୃଷ୍ଣ ସତ୍ୟଭାମା କହିଲେ 'ଆହାଃ !'
ଏଥକୁ ରଜନୀ ଶୀତଳ ପରଶ
କଅଁଳ ତଳପ ହୋଇଲେ ସାହା ।

ମଦନ ଆସିଲା ପାଖକୁ ପାଖକୁ
ଶେଯାଇ ଦେଲା ସେ କୁସୁମ-ଶଯ୍ୟା,
ଦୂରକୁ ଦୂରକୁ ଅପସରି ଗଲା
ମନକୁ ମନକୁ ନିର୍ଲଜ୍ଜୀ ଲଜ୍ଜା ।
ଗୁଡି ଗୁଡି ମିଶି- ମାଶି ଗଲେ ଗୁଏଁ
ମଝି ବ୍ୟବଧାନ ଗଲା ତ ଲୁଚି,
ମାନ ଅଭିମାନ ମରମ ସନ୍ତୁଳା
କଲବଲ ସବୁ ଗଲା ତ ଘୁଞ୍ଚି ।
ସୁସୁପ୍ତି ଆସିଲା ମାଦକତା ଧରି
ନୟନର ପତା ଗଲା ଓହଳ,
ଗୃହିଟି ନୟନ ବୁଜି ହୋଇଗଲା
ରଜନୀ ପରଶେ ନଳିନୀ ଭଳ ।
ସପନ ପଶିଲା ଡରି ଡରି କରି
ହୃଦୟ କଳଣୀ ଫିଟାଇ ଦେଇ,
ସତ୍ୟଭାମାଙ୍କୁ ସେ ସରଗେ ତୋଳିଲା
ପାରିଜାତମାଳା ଦେଇ ପିନ୍ଧାଇ ।
ରୁକ୍ମଣୀ କହିଲେ "ଭଉଣୀଟି ପରି
ପାରିଜାତଟିଏ ଦେଏ ଲୋ ମୋତେ,"
ଏଇଥିପାଇଁ କି ଜଗନ୍ନାଥ କେତେ
ବୁଝାଇ ସୁଝାଇ ନାହାନ୍ତି ତୋତେ !
ଦୁର୍ଦ୍ଦୈଯାକ ପରି ଏକା କୃଷ୍ଣଙ୍କର
ତୁ କିଆଁ ହେଉଛୁ ଏଇନା ଏକା ?
ରୁକ୍ମଣୀର ସହ ଆଉ ଛଅଟିଙ୍କୁ
ଟିକିଏ ଲୋ ତୋର କରୁଣା ଦେଖା ।
ମୁଁ ବଡ଼ ବୟସେ ତୁ ବଡ଼ ଭାଗ୍ୟରେ
କହିଲୁ ମୋହର ହେବନି ହିଂସା ?
ସଉତୁଣୀ ହୃଦ ସଚଲ ନୁହେ ଲୋ
ସବୁବେଳେ ଖାଲି ଗରଳମିଶା ।

ଶ୍ରୀକୃଷ୍ଣ ଯାହାର ପରମ ଈଶ୍ୱର
ତାଙ୍କର ସଂସାରେ ପାଏ କି ଶୋଭା ?
ଚୋର ଦଶ୍ର ଆମେ ଆଠ ଜଣଯାକ
ସକଳେ ତ ତାଙ୍କ ପ୍ରଣୟୀ ଲୋଭା ।"
ଭାଙ୍ଗିଗଲା ନିଦ ତୁଟିଗଲା ସ୍ୱପ୍ନ
ମନକୁ ମନକୁ ହସିଲେ ଭାଗ,
କହିଲେ "କାହିଁକି ଅଭିମାନ କଲି
ରୁକ୍ମିଣୀ ପାଖରେ ଚଲେ ତ ହାରି ।
ସ୍ୱପନରେ ହେଉ କିବା ଜାଗରଣେ
ରୁକ୍ମିଣୀର କଥା ବେଦର ଗାର,
ସିଏ ମୋର ଜ୍ୟେଷ୍ଠ ମୋହଠାରୁ ଶ୍ରେଷ୍ଠ
ମୁଁ ସିନା ଚରଣ-ଯୋଗ୍ୟ ତାହାର ।
ଆହେ ପ୍ରାଣନାଥ ! ନୁହ ଏକା ମୋର
ପ୍ରକୃତରେ ତୁମେ ଜଗତନାଥ,
ତୁମର ମାନସୀ ସତ୍ୟଭାମା ଆଜ
ରୁକ୍ମିଣୀ ପାଖରେ ହେଲା ପରାସ୍ତ ।
ପାହିଲାଣି ରାତି ଦିଶଇ ପ୍ରଭାତ
ଉଠ ଉଠ ବେଗେ କରନା ଡେରି,
ତୁମର ରୁକ୍ମିଣୀ ମୋର ଠାକୁରାଣୀ
ପାରିଜାତ ମାଗି ଗଲେଣି ଫେରି ।
ଦେବ ନାହିଁ ମୋତେ ଦେବ ନାହିଁ ତାକୁ
ପ୍ରତିଜ୍ଞା ତୁମର ଯିବ କି ଟଳି,
ଯିବା ସରଗକୁ ଆଣିବା କୁସୁମ
ଖେଳବଟି ସବୁ ଭାରିଯା ଧରି ?
କଳ୍ପ ମୋ ଦୁଆରେ ରଖିବ ଗଛଟି
ସମସ୍ତଙ୍କୁ ଫୁଲ ଦେବି ମୁଁ ବାଣ୍ଟି,
ଏତକ ମାଗୁଣି ତୁମ ଚରଣରେ
ନ ହେଲେ ଶୋଇବ ପଣତ ପାତି ।

ବାସି ମୁହଁ ନେଇ ଚୁମ୍ବିଲେ ଶ୍ରୀକୃଷ୍ଣ
କହିଲେ, "ଏପରି ନ ଥିଲେ ରାଣୀ,
ଏତେକ କଳି ନାରୀବଶ କୃଷ୍ଣ
ରଖିପାରନ୍ତା କି ତାହାର ବାଣୀ !"
ଦିବସ ରଜନୀ ବାହା ହୋଇଥିଲେ
ଫିଟିଗଲା ଗୁଣ୍ଠି ବିବାହ-ଗଣ୍ଠି,
ଛଡ଼ାଛଡ଼ି ହୋଇ ଗଲେ ଦୁହେଁଯାକ
ଗୋଟିଏ ଲୁଚିଲା ଅନ୍ୟଟି ରଖି ।
ସଂସାର ଜଞ୍ଜାଳ ଲଗିଲା ସବୁଠି
ପେଟପାଟଣାକୁ ପୋଡ଼ିବା ପାଇଁ,
କେହି ତ କାହାକୁ ଅନାଇଁ ବସିନ
ଯେଝା ଧନ୍ଦାରେ ସେ ଥାଆନ୍ତି ଧାଇଁ ।
ଫୁଲ ତୋଳା ଠାରୁ ସଞ୍ଜବୁଡ଼ ଯାଏ
ଲଗିଥାଏ ନିତି ଏହି ଜଞ୍ଜାଳ,
ରବି ବୁଲି ବୁଲି ଥକିପଡ଼ନ୍ତି କି
ଆଶ୍ରୟ ନିଅନ୍ତି ପ୍ରତୀଚୀ କୋଳ ?
ଶୁଅନ୍ତି କି ସେଠି ବୁଲନ୍ତି କୁଆଡ଼େ
ପଚାରିଲେ ଅବା କହିବ କିଏ ?
ପୃଥିବୀମଣ୍ଡଳ ଗୋଲ ଶୂନ୍ୟାକାର
ଜାଣିଛୁ ଯେ ଅବା ପାରିବ ସିଏ ।
ଏହି ଆବର୍ତ୍ତନେ ସବୁ ଦିନ ରବି
ବୁଲନ୍ତି ବୁଲନ୍ତି ଧରଣୀଟାକୁ,
ନିତି ବାହାଘର ନିତି ଛାଡ଼ପତ୍ର
କିଏ ବା ବରିଛୁ ସତେ କାହାକୁ ?
ପୁଣି ପ୍ରାଚୀମୂଳେ ବଦନ ଟେକନ୍ତି
ଧରାରେ ଦିଅନ୍ତି ଆଲୁଅ ଵଞ୍ଚି,
ଶୁଖାଇ ଦିଅନ୍ତି ପ୍ରେମ-ଅଶ୍ରୁଟିକ
ରଜନୀ ଯାହାକୁ ଥାଏଟି ଛୁଞ୍ଚି ।

ରଜନୀର ଆଜ୍ଞ ମାନ ଭଙ୍ଗଇନା
ନୟନୁଁ ତାହାର ଲୋତକ ପୋଛୁ,
ରଜନୀଟି କନ୍ୟା ଦିବସଟି ବର
ଏହ ସର୍ଜନାଟି ବହୁ କରଛୁ ।
ନାରଦ ସରଗୁ ଲେଉଟି ଆସିଲେ
ମୁହଁ କୁହୁଲାଇ କହିଲେ ବସି,
"କହିଲ ଇନ୍ଦ୍ରଙ୍କୁ ତୁମ କଥାଯାକ
ଶୁଣି ଉପହାସ କଲେ ସେ ହସି ।
କହିଲେ 'ଗରୁଡ଼ ଟୋକାର ମୁହାଁସ
ଉଣା ତ ନୁହଇ ଏତେ ଭରସା,
ସ୍ଥିର ମଣିଷଟା ସରଗ ସୁମନ
ତାରଜାତ ପାଇଁ କରଛୁ ଆଶା !
ସାଗର ମନ୍ଥନ କିଏ କରଥିଲା
ଆଣିଥିଲା କି ସେ ମନ୍ଦର ଟେକି,
ବାସୁକୀର କୋଡ଼ ପାଖ ଧରଥିଲା
କିଏ ତାକୁ ସେଠି ଥିଲା ବା ଦେଖି ?
ଆସିଥିଲା ଶେଷେ ମାଇପିଟା ବେଶେ
ଶିବଙ୍କ ଦେହରେ ଥିଲାଟି ଝୁଲି,
ଏଇଥି ପାଇଁ କି ଭାଗ ଖୋଜୁଅଛୁ
ବେହିଆ କେ ଅଛୁ ତାହାଠୁ ବଳି ?
ଧମକାଇ ଅଛୁ କଅଣ କରିବ
ଘଟାଇବ ଯେଟା କୋଉ ପ୍ରମାଦ ?
ବାସବ ଡରଛୁ ଗରୁଡ଼ ଛୁଆକୁ
କହିବ ଯା ତାକୁ କରୁ ସେ ବାଦ' ।"
ସତ୍ୟଭାମା ସେଠି ଶୁଣୁଥିଲେ ବସି
ନାରଦ ତାହାଙ୍କୁ ଦେଲେ ଚିହାଇ,
ସତ୍ୟଭାମା କ'ଣ ସମ୍ଭାଳି ହୁଅନ୍ତେ
ଜିଦ କଲେ ଫୁଲ ଆଣିବା ପାଇଁ ।

ଗିରିସ୍ତ ହରିସା ବାରୁଦର ସମ
ନାରଦ ଠେଙ୍ଗିଲେ ତହିଁରେ ନିଆଁ,
ଶ୍ରୀକୃଷ୍ଣ କହିଲେ, "ନିର୍ଲଜ୍ଜ ଇନ୍ଦ୍ରର
ଭୁଞ୍ଜାଟାରେ ଏତେ ବଢ଼ାଇ କିଆଁ ?;
ଚଢେ଼ ଐରାବତ, ଭୂଷେ ପାରିଜାତ,
ରହେ ସେ ସରଗେ, ମୁଁ ଅଛି ମର୍ତ୍ତ୍ୟେ,
ଋଷିଟା ହାଡ଼ରେ ଗଢ଼ାଇଛି ବଜ୍ର
ଧରିଛି ବୋଲି ତା ଦୁର୍ବଳ ହାତେ ?
ହଜାରଟା ଆଖି ଥାଉଁ ହେଲା ଅନ୍ଧ
ଆଜି ତା ଆଖିରେ ଜାଳିବି ବର୍ତ୍ତି,
ଦେଖୁ ସେ କୃଷ୍ଣଙ୍କୁ ଚିହ୍ନୁ ଭଲ କରି
ଦେଖିବ କପରି ରହିବ କର୍ତ୍ତି !
ଐରାବତ କୁମ୍ଭ ଭଙ୍ଗିବି ମୁଁ ମାରି
ଇନ୍ଦ୍ରଙ୍କୁ ପାଡ଼ିବି ଧରଣୀ ତଳେ,
ସରଗ ଗରବ ତାର ଛଡ଼ାଇବି
ବସିବ ଏଇଠି ତା ଗୁଣ୍ଡ ପରେ ।
ତାର ବଜ୍ରବାଣ କରିବି ମୁଁ ବ୍ୟର୍ଥ
ମୋହର ତେଜ ତ ମିଶିଛି ତହିଁ,
କିଆଁ ମୋ ଶକତି ଥିବ ବା ସେଥିରେ
ଗରବ କରିବ ଇନ୍ଦ୍ର ତା ନେଇ ?
ପାରିଜାତ ଗଛ ଆଣିବି ଉପାଡ଼ି
କପରି ରଖିବ ଦେଖି ବାସବ,
ଯିବି ଏଇନାଏ ସରଗକୁ ରୁଷି
ଆସୁ ଅଣ୍ଟା ଭିଡ଼ି କରୁ ଆହବ ।"
ଏହିତକ କହି ହୁଙ୍କରିଲେ ଗରୁଡ଼,
ଆସିଲା ସେଇନା ବନ୍ଦିଲା ପାଦ,
ଶ୍ରୀକୃଷ୍ଣ କହିଲେ "ଯିବା ସରଗକୁ
ବାସବ ସଙ୍ଗରେ କରିବି ବାଦ ।

ଛଡ଼ାଇ ଆଣିବ ପାରିଜାତ ଗଛ
ଏହି ଦ୍ୱାରକାରେ ପୋତିବ ଏଠି,
ଇନ୍ଦ୍ରର ଗରବ ଛଡ଼ାଇବ ଆଜ
କୃଷ୍ଣ କଏ ଆଜ ଜାଣିବ ସେଟି ।
ଅମର ରଜାକୁ ମାରିବ ସମରେ
ଅମୃତ ଖାଇବା କରିବ ମାଟି,
ଏତେ ତା ଗରବ କହିଲ ଗରୁଡ଼
ପୁଣି ଲଢ଼ିବାକୁ ଦେଲା ଡାକରା !"
ଗରୁଡ଼ କହିଲା "ନିଜେ ଯିବେ କାହିଁ,
ଦିଅନ୍ତୁ ଆଦେଶ ଯିବି ମୁଁ ଏକା,
ପାରିଜାତ ସହ ଆଣିବି ଇନ୍ଦ୍ରକୁ
ଏଇଠି ଭେଟିବ କରିବ ଦେଖା ।"
ଶ୍ରୀକୃଷ୍ଣ କହିଲେ "ତୁମକୁ ସମ୍ଭବ,
କରିପାର ତୁମେ କରୁନି ମନା,
କିନ୍ତୁ ନିଜେ ତାକୁ ଦେବତାଙ୍କ ଆଗେ
କରିବି ହୀନସ୍ତା ଏ ମୋ କାମନା ।"
କୌମୋଦକୀ ଗଦା, ଖଡ଼୍‌ଗ, ସୁଦର୍ଶନ
ଧଇଲେ ହାତରେ ବସିଲେ ପାଇଁ,
ଗରୁଡ଼ ପିଠିରେ ସତ୍ୟଭାମା ଥିଲେ
କହିଲେ "ମୁଁ ଯିବି ପତିଙ୍କ ସାଙ୍ଗେ ।
ଦେଖିବି ସରଗ, ଭେଟିବି ଇନ୍ଦ୍ରାଣୀ
ଶୁଣିଛି କପରି ସ୍ୱର୍ଗ ବାସବ,
ତୁମ ସଙ୍ଗରେ ବା ଲଢ଼ିବ କପରି
କେତେଯା ତାହାର ବଳ ବଭବ ?"
କୃଷ୍ଣ ହସି ହସି ବସାଇଲେ ବାମେ
ପଛରେ ବସିଲେ ସାତ୍ୟକି କାମ,
ଗଗନ-ମାରଗେ ଉଡ଼ିଲା ଗରୁଡ଼
ସେ ତ ବିଷ୍ଣୁଙ୍କର ବୈକୁଣ୍ଠ ଯାନ ।

ଚଳିଲା ଗରୁଡ଼ ସିଧା ସରଗକୁ
ନନ୍ଦନକାନନେ ପଶିଲେ ଯାଇଁ,
ସାତ୍ୟକିଙ୍କୁ କୃଷ୍ଣ ପାରିଜାତ ଆଣ
କହି ଆଙ୍ଗୁଠିରେ ଦେଲେ ଦେଖାଇ ।
ପ୍ରହରୀ ସବୁ ଜଗି ବସିଥିଲେ
ସାତ୍ୟକିଙ୍କୁ ଦେଖି କଲେ ବାରଣ,
ସାତ୍ୟକି କହିଲା ଗରଜି ସଘନେ
"ଆସ ଯେତେ ସବୁ କରିବ ରଣ ।
ଜୀବନକୁ ଯେତେ ଅଛି ତୁମ ଡର
ଇନ୍ଦ୍ରଙ୍କୁ ତୁମର କହ ରେ ଯାଇଁ,
ଅଛି ଯେବେ ଶକ୍ତି ଆସୁ ସେ ବାହାରି
ସୈନ୍ୟବଳ ନେଇ ଲଢ଼ିବା ପାଇଁ ।"
ଧାଇଁଲେ ପ୍ରହରୀ, କହିଲେ ଇନ୍ଦ୍ରଙ୍କୁ
"ଗରୁଡ଼ ପିଠିରେ କେ ବୀର ଜଣ,
ମଣିଷ ହେବେ ସେ ପଶିଲେ କାନନେ
ନେଲେ ପାରିଜାତ ଭାଙ୍ଗିଲେ ବନ ।"
ଶୁଣିଲେ ଯୋଜନା ମନେ ପଡ଼ିଗଲା
ପାରିଜାତ ପାଇଁ ଶ୍ରୀକୃଷ୍ଣ ଆସି,
ସରଗେ ପଶିଲେ ପାରିଜାତ ନେଲେ
ମୋ ନନ୍ଦନ ବନ ଦେଲେ ତ ଧ୍ୱଂସି ।
ସରଗର ଜବା ସୌରଭେ ପ୍ରସିଦ୍ଧ
ମରତବାସୀଏ କରିବ ଭୋଗ ?
ମଣିଷଟା ପୁଣି ସରଗେ ପଶିଲା
ଦେବତାଙ୍କର ତ ହେଲା ଦୁର୍ଯୋଗ !
ରାଗେ ଥରଥର ଥରିଲେ ବାସବ
ସହସ୍ର ନୟନ ଜଳିଲା ପଡ଼ି,
"ସାଜ ସାଜ ସେନା କଏସେ ଅଛ ରେ"
ବୋଲି କରି ଉଚେ ଦେଲେ ସେ ରଡ଼ି ।

ସାଜିଲା ବାରଣ ସାଜଲେ ସଇନ
ଐରାବତେ ଚଢ଼ି ବାସବ ସଜ,
ହାତେ ଧନୁ ଶର ଖଡ଼୍ଗ ମୁଦ୍‌ଗର
ହାତକରେ ପୁଣି ଧଇଲେ ବଜ୍ର ।
ଇନ୍ଦ୍ରାଣୀ କହିଲେ, "ଯିବି ମୁଁ ସଙ୍ଗରେ,
ଦେଖିବି ସମର ହେବ କପରି,
ଶ୍ରୀକୃଷ୍ଣ ମାନବ ତୁମେ ଦେବରାଜ
ସମରେ କେ ଯିବ କାହାକୁ ହାରି !"
ହସି ହସି କରି କହିଲେ ବାସବ
"ବସ ତେବେ ମୋର ବାଆଁରେ ଆସି ।"
ଆସୁ ଜୟଦେବ ଜୟନ୍ତ ବି ଆସୁ
ଧରନ୍ତୁ ହାତରେ ଯେ ଯା'ର ଅସି ।
ଐରାବତେ ଶକ୍ର ଗରୁଡ଼ରେ କୃଷ୍ଣ
କେହି କାହାଠାରୁ ନୁହନ୍ତି ଊଣା,
ସମର-ଗୋଳରେ କିଏ ହେବ ବଡ଼
କିଏ ହେବ ସାନ ପଡ଼ିବ ଜଣା ।
ତିନି ତିନି ଜଣ ଏପାଖେ ସେପାଖେ
ଦୁଇ ପୁରୁଷରେ ହେଲା ଲଢ଼ାଇ,
ଐରାବତେ ଥାଇଁ ଇନ୍ଦ୍ରାଣୀ କହିଲେ
"ସତ୍ୟଭାମା ତୋର କେତେ ବଡ଼ାଇ ?
ମୋ ଭୂଷଣ ଫୁଲ ନେବାକୁ ଆସିଛୁ
ଆଜ ତୋ ଗରବ ଦେବି ଛଡ଼ାଇ,
ହାରିବ ଲୋ କୃଷ୍ଣ ଦେଖିବୁ ରହିଥା
କୃଷ୍ଣକୁ ତୋ ମାରି ଦେବେ ଗଡ଼ାଇ ।
ଭଲପଣକୁ ତୋ ବରିଥିଲେ ଲୋ
ପାରିଜାତ ଥୋଇ ପଳା ବାହୁଡ଼,
ସ୍ୱର ମାନବୀ ସରଗେ ପଶିଲୁ
କାହିଁକି ଗରବ କଲୁ ଲୋ ହୁଡ଼ ?

ବାମନଟାଏ ତୁ        ଏତକ ଭରସା
ଗଗନରୁ କାଢ଼ି ନେବୁ ଚନ୍ଦ୍ରମା ?
ଦେବ ପ୍ରତିଫଳ        ଦେଖିବୁ ଏଇନା
ଗୁଣ୍ଡ୍ଯିବ ତୋର ଗର୍ବ ଗାରିମା ।”
ସତ୍ୟଭାମା କଥା        କଥା ତ ନୁହଇ
ସେ ତ ନିଆଁବାଣ ନିଜେ ତ ବାଣୀ,
ତାଙ୍କୁ ଅବା କିଏ        କଥା ଶିଖାଇବ
କିଏ ଅଛୁ ବେଶୀ ତାଙ୍କଠୁଁ ଜାଣି ?
“କେତେଟା ବାସବ        କହିଲୁ ଲୋ ତୋର
ହଜାର ଯୁଗରେ ହଜାରେ ପତି,
ହଜାର ଆଖି ତା        ଫୁଟିଯାଇଛୁ କି
ଅସତୀ ଶଚୀକୁ କହୁଛୁ ସତୀ ।
ବାଳୁତ କୃଷ୍ଣଙ୍କୁ        ଥରେ ତୋ ବାସବ
ରାଗିଥିଲା ଘୋର ଗରବ କରି,
ଶ୍ରୀକୃଷ୍ଣ ତାହାକୁ        ଚିହ୍ନିଥିଲେ ପରା
ପାହାଡ଼ ଗୋଟାଏ ହାତରେ ଧରି ।
ତୋ ଇନ୍ଦ୍ର କୁଆଡ଼େ        ପାହାଡ଼ଗୁଡ଼ାର
କାଟିଥିଲା ପକ୍ଷୀ ଖଡ଼ଗ ଧରି ।
ବୃନ୍ଦାବନର ସେ        ଟିକି ପାହାଡ଼ଟି
ଇନ୍ଦ୍ରଟାକୁ ବଳିଗଲା କପରି ?
ଆଜ ସେହି କୃଷ୍ଣ        ଗଜା ଭେଣ୍ଡିଆ ଲୋ
ଜାଣିଛୁ ତ ବଳ ଯାଇଛି ବଢ଼ି,
ତୋର ଏ ଇନ୍ଦ୍ରଟା        କଅଣ କରିବ
ଆସିଛୁ ଗୋଟାଏ ହାତୀରେ ଚଢ଼ି !
କୋଉ ଯୁଗର ତୁ        ବୁଢ଼ୀ ମାଇପୀଟା
ଉପରେ ପଡ଼ି ଲୋ କରୁଛୁ କଳି,
ତୋର ଢଙ୍ଗ ଦେଖି        ହାଡ଼ ଫାଟୁଛି ଲୋ
ଲାଜରେ ତ ମୁହଁ ଯାଉଛି ଜଳି ।

କଳରେ ଜଣିବୁ ଏ କଥାଟି ସତ
ଶିଖିଛୁ ବହୁତ ଯୁଗର କଳ,
ଦେଖିବୁ ଏଇନା ସତ୍ୟଭାମା ଟିକେ
ସମରେ ନଷ୍ଟସ୍ବ ଯିବ ମୁଁ ବଳ ।
ଇନ୍ଦ୍ରଟା ବୟସେ ତୋର ନାତି ପରି
ସାନଟା ସଙ୍ଗରେ ତୋର ପୀରତି,
ଟୋକାପଣିଆ ତୁ ଦେଖାଇ ହେଉଛୁ
ଲୁଚାରେ କହୁଛୁ ଚିର ଯୁବତୀ ।
ଅଛୁ କି ବଅସ ନନ୍ଦନର ରୂପ ଲୋ
ପାରିଜାତ କିଆଁ କରିବୁ ମାରି ?
ତୋ ବଳ ବଅସ ତୋ ସୁନ୍ଦରପଣ
ଜଳ ଜଳ ହୋଇ ଦିଶୁଛି ପରି !
କୋଉ ରୂପକୁ ବା ଫଟା ଚଳପାରେ
ଲିପି ଦେଇଅଛୁ ନାଲି ଅଳତା,
ପାଚିଲା ବାଳରେ ଗୋଞ୍ଜିବାକୁ ମନ
ପାରିଜାତ ଫୁଲ ମଲା ତୋ କଥା !
ସାଗର ମନ୍ଥିଲେ ସବୁ ଦେବତାଏ
ପାରିଜାତ ଥିଲେ ତହିଁରୁ ଆଣି,
ସବୁ ଦେବଙ୍କର ସେ ଫୁଲଟି ସିନା
ତୁ କ'ଣ ଏକା ଲୋ କା ଠାକୁରାଣୀ ?
ମୋର ଅଛି ଭାଗ ଅଛି ତୋର ଜମା
ଦେବୁ ନାହିଁ ପରି ନେବି ଛଡ଼ାଇ,
ଜାଣିଛି ଲୋ ତୋର ସବୁ ବଡ଼ପଣ
ମିଛଟାରେ ଖାଲି କରୁ ବଡ଼ାଇ ।
ନରକ ଆସିଲା ତୋ ଘରେ ପଶିଲା
ତୋ ଶାଶୁ କାନରୁ ନେଲା କୁଣ୍ଡଳ,
କୋଉଠେଇ ଥିଲା ତୋର ଆଖଣ୍ଡଳ
କୋଉଠେଇ ଥିଲା ତାହାର ବଳ ?

ସେହି ନରକକୁ ମାଇଲେ ଶ୍ରୀକୃଷ୍ଣ
ତୋ ଶାଶୁକୁ ଦେଲେ କୁଣ୍ଡଳ ଆଣି,
ଧିକ ତୋ ବଡ଼ାଇ ଧିକ ତୋ ବାସବ
ଦେଖି ନ ଥିଲୁ କି ଛୁଇ ଲୋ କାଣି !"
ଦୁଇ ନାରୀଙ୍କର କଜିଆକୁ ଶୁଣି
ମୁହେଁ ଲୁଗା ଦେଇ ହସିଲେ ଦେବେ,
ସବୁଠୁଁ ବଳିଲା ନାରଦଙ୍କ ହସ
ସମର ହୋଇଲା ତୁମୁଳ ସେବେ ।
ଇନ୍ଦ୍ର ଗୋବିନ୍ଦଙ୍କ ସମର ବିଚିତ୍ର
ଅପୂର୍ବ ସେ ଦୃଶ୍ୟ ଦେବତା-ଧାମେ,
ତ୍ରିଭୁବନ କମ୍ପେ ଥର ଥର ହୋଇ
ସମର-ବିରହ ଜୟନ୍ତ କାମେ ।
ବନିତାନନ୍ଦନ ଆଜି ଐରାବତେ
ସମର ପ୍ରଚଣ୍ଡ କଲେ ବହୁତ,
ବେଳୁଁ ବେଳୁଁ ଐରା- ବତ ହୀନବଳ
ଦେହୁଁ ବହିବାରୁ ବହୁତ ରକ୍ତ ।
ଶେଷରେ ଅଥୟ ହେଲା ଐରାବତ
ବାସବ ସହିତ ଧରାରେ ପଡ଼ି,
ହେଲା ଛଟପଟ ପ୍ରାଣ ଗୁଡ଼ିବ କି
ବିକଳରେ ଦେଲା ଭୀଷଣ ରଡ଼ି ।
ଇନ୍ଦ୍ର ଡରିଗଲେ ତେବେ ବି କହିଲେ
"ହାରି ନାହିଁ ମୁଁ ତ ଚଢ଼ିଛୁ ତଳେ,
ଏଇନା ସମର ଉଚିତ ତ ନୁହେ
ମୁଁ ଚଢ଼ିଛୁ ତଳେ ତୁମେ ଉପରେ ।"
ଶ୍ରୀକୃଷ୍ଣ କହିଲେ, "ଆଚ୍ଛା ଭଲ କଥା
ତୁମ ଇଚ୍ଛା ଯାହା କର ଏଥର,
କୃଷ୍ଣ ଡରି ନାହିଁ ଘୁରି ବାସବକୁ
ବାସବ କି କେବେ ସମାନ ତାର ?"

ଲାଗିଲା ତୁମୁଳ ସମର ଆତୁର
ଶ୍ରୀକୃଷ୍ଣ କାଟିଲେ ମଘବା ଶର,
ଲାଜେ ଶଚୀପତି ମଉଳଲେ ମୁହଁ
ବଜ୍ରଟି ଧଇଲେ କରେ ଏଥର ।
ଗରୁଡ଼େ ଦେଖାଇ ଶ୍ରୀକୃଷ୍ଣ କହିଲେ
"ଦେଖ ଇନ୍ଦ୍ର ବଜ୍ର ଧଇଲା କରେ,
ପେଶଇ ମୁଁ ଚକ୍ର ଖଣ୍ଡ ଖଣ୍ଡ କରି
କାଟିଦେଉ ତାକୁ ଅଧବାଟରେ ।
ମୁନିବାଣୀ ବୃଥା ହେବ ମୁଁ ଡରୁଛି
ଏହା ପ୍ରତିକାର କର ଏଥର,
ପକ୍ଷୀଟିଏ ତୁମ ଡେଣାରୁ ଉପାଡ଼ି
ବଜ୍ର ଉପରକୁ ଫିଙ୍ଗ ସତ୍ୱର ।"
ଗରୁଡ଼ ଫିଙ୍ଗିଲା ପକ୍ଷିଏ ଉପାଡ଼ି
ଅଶନି ଉପରେ ପଡ଼ିଲା ଯାଇଁ,
ପକ୍ଷୀଟିକୁ ଧ୍ୱଂସି ବଜ୍ର ବାହୁଡ଼ିଲା
ଆଉ ସେ ଲେଉଟି ଗୃହିଁଲା ନାହିଁ ।
ବଜ୍ରର ଲକ୍ଷଣ ଏତିକ ମାତର
ଯାହାକୁ ମାରଇ କେବଳ ଥରେ,
ଆଉ ଥରକୁ ତା ବଳ ହଟିଯାଏ
ମୁହଁ ଫେରାଏନା ବଇରୀ ଡରେ ।
ବଜ୍ର ବୃଥା ହେଲା ବାସବ ଡରିଲେ
ବୁଦ୍ଧି ବଣା ହେଲା ଥରିଲେ ପଡ଼ି,
କଅଣ କରିବେ ଆଉ କୋଉ ଅସ୍ତ୍ର
ନାହିଁ ତାଙ୍କ କରେ ବଜ୍ରହୁଁ ବଳି ।
ନାରଦ ଦେଖିଲେ ବଡ଼ ବିପଦ ତ
ବାସବଙ୍କୁ କେହି ରଖିବେ ନାହିଁ,
କ୍ଷୀରୋଦ ଗରଭେ କଶ୍ୟପଙ୍କ ଘର
ତରତର ହୋଇ ଗଲେ ସେ ଧାଇଁ ।

କହିଲେ, "କଅଣ କରୁଛ ଏଠାରେ
ଇନ୍ଦ୍ରଙ୍କର ଭେଣେ ବିପଦ ଘଟି,
ଶ୍ରୀକୃଷ୍ଣଙ୍କ ସଙ୍ଗେ କଜିଆ ଲଗାଇ
ମରି ମରି ହୋଇ ଗଲେଣି ହାରି ।
ସୁଦର୍ଶନ ଚକ୍ର ଧରୁଛନ୍ତି ହରି
ଦଉଡ଼ି ତାହାଙ୍କୁ କରି ହେ ମନା,
ଆଉ କାହା କଥା ମାନିବେ ନାହିଁ ସେ
ତୁମ କଥାକୁ ବା କରିବେ ହେନା ।"
ଶୁଣିଲେ କଶ୍ୟପ ହେଲେ ଭୟାକୁଳ
ସମର ନିବୃତ୍ତ ହେବ କପରି,
ହରି ଯେତେବେଳେ ରାଗି ଯାଇ କରି
ସୁଦର୍ଶନ ଚକ୍ର ଅଛନ୍ତି ଧରି ।
ଶିବଙ୍କ ବିନା କେ କରି ପାରିବନି
ତାହାଙ୍କୁ ସେଇଠୁଁ କଲେ ସେ ସ୍ତବ,
"ଅହେ ଶୁଭକାରୀ ଶ୍ମଶାନ-ବିହାରୀ
ତ୍ୟାଗୀ ମହାଯୋଗୀ ଗିରିଜା-ଧବ !
ପଡ଼ିଲା ସଙ୍କଟ ସ୍ୱର୍ଗ ହେବ ନଷ୍ଟ
ବାସବ ଗୋବିନ୍ଦ କରନ୍ତି କଳି,
ଇନ୍ଦ୍ରଙ୍କୁ ମାରିବା ପାଇଁ ବାସୁଦେବ
କରେ ସୁଦର୍ଶନ ନେଲେଣି ତୋଳି ।
ନିବାରି ହେ ପ୍ରଭୁ ! ଦୁହିଁଙ୍କ ସଂଗ୍ରାମ
ସରଗରେ ରଖି ଦିଅ ହେ ଶାନ୍ତି,
ଏତିକି ନ କଲେ ଦେବ-ସମାଜରେ
ଯୁଗ ଯୁଗ ଧରି ହେବ ଅଖ୍ୟାତି ।"
ହର ହେଲେ ତୁଷ୍ଟ କଶ୍ୟପ ସ୍ତବରେ
ବୃଷଭ ଆରୋହି ଆସିଲେ ଧାଇଁ,
ଦୂରୁ ଡାକ ଦେଲେ "ରହ ରହ ରହ
ବୃଥିବା କଳହ କର କପାଇଁ ?"

ଶୁଣିଲେ ଶ୍ରୀକୃଷ୍ଣ ଦେବଦେବ ମନା
ସୁଦର୍ଶନ ଧରି ରହିଲେ ଗୃହିଁ,
ଏଇଥି ଭିତରେ ଶିବ ପହଞ୍ଚିଲେ
ବୁଝାଇ ମଣାଇ କହିଲେ ପାଇଁ ।
"ଦେବତା ଦେବତା ମଧ୍ୟରେ ଦ୍ୱେଷ ?
ଦାନବ ମାନବଙ୍କର ଏ କାମ,
କାହିଁକି ସରଗ ଭୋଗ କରିବ ହେ
ସାର୍ଥକ ହେବ କି ଅମର ନାମ ?
ମରିବାକୁ ଯେବେ ବଳାଇଛ ମନ
ଖାଅନା ଅମୃତ ପାଅ ମରତେ,
ସେଇଠି ମାରିବ ହେଇଠି ମରିବ
ଅକୀର୍ତ୍ତି ରଖିବ ସେହି ଜଗତେ ।
ସର୍ଗ ହୋଇନ ମରଣର ପାଇଁ
ସର୍ଗରେ କେହି ମରିବେ ନାହିଁ,
ଏଠେଇ ଦାନବ ମାନବ କାହାରି
ସ୍ଥାନ ନାହିଁ ଅଛୁ ଅମର ପାଇଁ ।
ଶ୍ରୀକୃଷ୍ଣ ଏଇନା ମର୍ତ୍ତ୍ୟର ହେଲେ ବି
ନୁହନ୍ତି ମାନବ ଦେବଙ୍କ ଶ୍ରେଷ୍ଠ,
ମଘବା ସହଜେ ଦେବଙ୍କର ରଜା
ଆହୁରି ସେ ପୁଣି ବୟସେ ଜ୍ୟେଷ୍ଠ ।
କଳିର କାରଣ ପାରିଜାତ ଫୁଲ
କୃଷ୍ଣ ସାନ ଭାଇ ନଅନ୍ତୁ ମାଗି,
ବାସବ ଦଅନ୍ତୁ ବଡ଼ ଭାଇ ପରି
ଏଥିପାଇଁ କଅଁ ଏ ରଗାରଗି ?
ଦଅ ହେ ବାସବ ପାରିଜାତ ତାଙ୍କୁ
ରଖନ୍ତୁ ସେ ନେଇ ତାଙ୍କ କାନନେ,
ମାଗ ହେ ଶ୍ରୀକୃଷ୍ଣ ନମସ୍କାର କରି
ସାନ ଭାଇ ହୋଇ ଇନ୍ଦ୍ରଚରଣେ ।

ଯାଅ ମିଳିମିଶି ହୁଅ କୋଳାକୋଳି
ଭୁଲିଯାଅ ଯାଅ ଜିଦ ଓ ବାଦ,
ଶ୍ରୀକୃଷ୍ଣ ଯାଆନ୍ତୁ ଦ୍ୱାରକାକୁ ଫେରି
ଆସିବେ ସେ ଦେବ କରମ ସାଧି ।"
କଲେ ସେହିପରି ଦୁଇ ଜଣ ଯାକ
କଜିଆ ତାଙ୍କର ଗଲା ତ ଭାଙ୍ଗି,
ଶଚୀ ଆଖିଠାରି ଉପହାସ କଲେ
ସତ୍ୟଭାମା ପୁଣି ଗଲେ ତ ରାଗି ।
ଶ୍ରୀକୃଷ୍ଣ ପ୍ରଣାମ କଲେ ବାସବଙ୍କୁ
ଶଚୀ ବସୁରିଲେ ଜାଣିଲେ ସିଏ,
ସତ୍ୟଭାମା କ'ଣ ଯେ ସେ ରମଣୀ କି
ପାଣିରୁ ଲହୁଣୀ କାଢ଼ନ୍ତି ସିଏ ।
ଜିଦ ତ ଧରିଲେ କହିଲେ କୃଷ୍ଣଙ୍କୁ
"ଶଚୀର ଟାହିଲ ସହିବ ନାହିଁ,
ଆଖିଠାରି କରି କଅଣ କହିଲା
ତୁମେ କ'ଣ ସତେ ନ ଥିଲ ଚାହିଁ ?
ଇନ୍ଦ୍ରଙ୍କୁ ପରାସ୍ତ କରିବାକୁ ହେବ
ପଡ଼ୁ ସିଏ ଆସି ମୋ ଗୋଡ଼ତଳେ,
ତେବେ ଯାଇ ମୋର ରାଗ ଶାନ୍ତ ହେବ
ତା ଇନ୍ଦ୍ରତ୍ୱ ଉଣା ହୋଇବ ବଳେ ।"
ସତ୍ୟଭାମା ଜିଦ ଶ୍ରୀକୃଷ୍ଣ ଭାଙ୍ଗିବେ
ବଢ଼ାଇ ତ ଦେଇଅଛନ୍ତି ମୁହିଁ,
ସହି ପାରନ୍ତିନି କେତେବେଳେ କୃଷ୍ଣ
ତାହାର ଆଖିରେ ଦେଖିଲେ ଲୁହ ।
କୃଷ୍ଣ ବୁଝାଇଲେ ହାତ ଓଠ ଧରି
"କହୁଛି ଶୁଣ ମୋ ମୁନାଟି ପରା,
ଯେତେ ସବୁ ପ୍ରାଣୀ ସଂସାରେ ଅଛନ୍ତି
କିଏ ମୋତେ ଭିନ୍ନ କହିଲ ଭଲା !

ମୁଁ ତ ମୋତେ ନଜେ କଲ ନମସ୍କାର
ଏଥିରେ ମୁଁ କାହିଁ ହେଲ ବା ସାନ,
ଇନ୍ଦ୍ର ହିଁ କଏସେ ସିଏ ଜାଣିଗଲ
ବୋଲ ତୁମେ କାହିଁ କରୁଛ ମାନ ?"
ସତ୍ୟଭାମା ମନ ମାନବ ଏଥିରେ ?
କହିଲେ ଆତୁରି ସଜାଇ କରି,
"ବାସବ ଆସିବ ନେତ୍ରସ୍ୱ କରିବ
ଏଇଠି ଶୋଇବ ମୋ ଚୋଣ୍ଡ଼ ଧରି ।
ନ ହେଲେ ଶରୀର କଥା ତ ରହିଲ
ମୁଁ ତ ତାର ପାଖେ ହେଲଣି ସାନ,
ତା କଥା ରହିବ ତୁମେ ଜାଣିଶୁଣି
ଦେଉଛ କାହିଁକି ଏ ଅପମାନ ?
କ୍ଷତ୍ରିୟ ପ୍ରତିଜ୍ଞା ପାଣି ଫୋଟକା କି
ତୁମର ପ୍ରତିଜ୍ଞା ରଖିବ ନାହିଁ,
ଶଚୀ ପୁଣି ହସେ ହାସ୍ୟରେ ଦଇବ
କା ଆଗେ ଏ କଥା କହିବ ଯାଇଁ ।"
"ଜାଣ ନାହିଁ ଦେବ ! ଭକ୍ତର ମୁଁ କଣା
ଭକତରେ ପଣ ଶ୍ରୀକୃଷ୍ଣ ଦାସ,
ଭକତ ହସିଲ ଏହି ତ ଆନନ୍ଦ
ତୁମେ ତା ହସରେ ମିଶାଅ ହସ ।
ଶିବଙ୍କ କଥା ମୁଁ ଭାଙ୍ଗିପାରୁ ନାହିଁ
ଇନ୍ଦ୍ରଙ୍କୁ ତ ତେଣୁ କ୍ଷମା ମୁଁ କଲ,
ଚନ୍ଦ ଧରିଥିଲ ଦେଖିଛ ତ ତୁମେ
ଆଉ ଟିକକରେ ହଅନ୍ତ ଦଳ ।"
ସତ୍ୟଭାମା ତେବେ କହିଲେ ଗମ୍ଭୀରେ
"ମୁଁ କି ଭକ୍ତ ନୁହେ କରନ ଭକ୍ତି,
ଦ୍ୱନ ସତ ତେବେ କାହିଁ ବସି ବସି
ଜପୁଥାଏ ନିତି କୃଷ୍ଣ ମୋ ପତି ?"

ଶ୍ରୀକୃଷ୍ଣ କହିଲେ ହସି ହସି କରି
"ରାଗ ପରିହାର କର ସୁନ୍ଦରି !
ଏଇନା ଇନ୍ଦ୍ରକୁ ଧରାଇ ଆଣିବ
ଶୋଇବ ସେ ତୁମ ଚରଣ ଧରି ।"
ଡାକିଲେ ଶିବଙ୍କୁ କହିଲେ, "ଧୂର୍ଜଟି !
ତୁମ କଥା ଭାଙ୍ଗି ପାରିଲି ନାହିଁ,
ତେଣୁ ସିନା ସ୍ଥିର ବାସବ ଚରଣେ
ନମସ୍କାର କରି ଡାକିଲି ଭାଇ ।
ଇନ୍ଦ୍ରଟା ସଙ୍ଗରେ କି ବନ୍ଧୁତା ମୋର
ଯୁଗେ ଯୁଗେ ହୋଇ ମୁଁ ଅବତୀର୍ଣ୍ଣ,
ଅସୁର ସଂହାରି ସରଗ ରଖିନି ?
ନ ହେଲେ ଥାଆନ୍ତା ଇନ୍ଦ୍ରର ଚିହ୍ନ !
କିଏ ସାନ କିଏ ବଡ଼ ସଦାନନ୍ଦ
କହିଲ ତ ଭଲ ତୁମେ ବିଚାରି,
ତୁମରି କଥାରେ ହେଲି ସିନା ସାନ
ସ୍ଥିର ଇନ୍ଦ୍ର ପାଖେ ଗଲି ମୁଁ ହାରି ।
ଯାହା ହେବାର ତ ହୋଇ ସାରିଲାଣି
କହ ଯା ଇନ୍ଦ୍ରକୁ ଏଇନା ଫେରି,
ସତ୍ୟଭାମା ପଦେ ପଡ଼ୁ ସେ ଏଇଠି
ଶରୀର ସହିତ କରୁନା ଡେରି ।
ନ ହେଲେ ଅନ୍ୟକୁ କରିବି ମୁଁ ଇନ୍ଦ୍ର
ତାହାକୁ ଦେବି ମୁଁ ସରଗପୁର,
ଆଜ ଏ ଇନ୍ଦ୍ରକୁ ଧକ୍କା ମାରି କରି
ସ୍ୱର୍ଗ-ସିଂହାସନୁ କରିବି ଦୂର ।"
ମହେଶ କହିଲେ "ଇନ୍ଦ୍ର ମଙ୍ଗିଲେନି"
ଗରୁଡ଼କୁ ଗୁହାରି କହିଲେ ହରି,
"ଯାଅ ବୈନତେୟ ପାତାଳକୁ ତୁମେ
ବଳିକୁ ଏଇନା ଆଣିବ ଧରି ।

ସବୁବେଳେ ସିଏ ପାତାଳରେ ପଡ଼ି
କରୁଅଛୁ ମୋତେ ଅତି ଉତ୍କଣ୍ଠ,
ଆଜ ମୁଁ ତାହାକୁ ଦେବ ପୁରସ୍କାର
ସରଗରେ ହେବ ସେ ଅଧିପତି ।"
ଗରୁଡ଼ କହିଲ ବିନୟ ବଚନ
"ଅଦିତିଙ୍କ କଥା ଭୁଲିଲ ହରି,
ମନ୍ୱନ୍ତରେ ତାକୁ କରିବେ ବାସବ
ଏଇନା ତ ନୁହ ଯାଇନ ସରି ।
କୋଉ ଛାର ଇନ୍ଦ୍ର ମାନୁନ ତୁମକୁ
ଦେଖେ ମୁଁ କଦରି ମାନବ ନାହିଁ,
ଏତେ ତା ସାହସ ହେଲା କୋଉ ଦିନ
ଏଇନା ଆସିବ ଏଠିକି ଧାଇଁ ।"
ଚଳିଲ ଗରୁଡ଼ କହିଲ ଇନ୍ଦ୍ରଙ୍କୁ
"କାହିଁକି ଅଜ୍ଞାନ ହେଲ ବାସବ !
ଯିଏ କଲା ସୃଷ୍ଟି ସ୍ଥିତି ଓ ସଂହାର
ତାର ସଙ୍ଗେ କଥାଁ ତୁମ ଅଭାବ ?
ଯିଏ ଯାଚି ଦେଲା ଇନ୍ଦ୍ରତ୍ୱ ତୁମକୁ
ତାହାର କଥାକୁ ଅବଜ୍ଞା କରି,
ଚାହିଁବଟି ସ୍ୱର୍ଗେ ରହିବ ସୁଖରେ
ଶଚୀ ଆଦି ସବୁ ସମ୍ପଦ ଧରି ?
ଆସ ମୋ ସଙ୍ଗରେ ଯେତେ ତୁମ ଦୋଷ
କ୍ଷମା କରାଇବ କୃଷ୍ଣଙ୍କୁ କହି,
ସତ୍ୟଭାମା ଗୋଡ଼- ତଳେ ପକାଇବ
ତେବେ ଯାଇଁ ସ୍ୱର୍ଗେ ପାରିବ ରହି ।"
ବାସବ ଏଥର ବୁଝିଲେ ଅନ୍ୟାୟ
ଗରୁଡ଼ ସଙ୍ଗରେ ଚଳେ ବହନ,
ସତ୍ୟଭାମା ପଦେ ଶୋଇଲେ ସାଷ୍ଟାଙ୍ଗେ
ଶ୍ରୀକୃଷ୍ଣ ଚରଣ କଲେ ଦର୍ଶନ ।

ଦାଣ୍ଡରେ ଶୋଇଲେ ଯେତେବେଳେ ଇନ୍ଦ୍ର
ତାଙ୍କର ଆଖିରେ ଲଗିଲା ଧୂଳ,
ସତ୍ୟଭାମା ତେବେ ହୋଇଲେ ଆନନ୍ଦ
ଗରୁଡ଼ ଧଇଲେ ଇନ୍ଦ୍ରଙ୍କୁ ତୋଳ ।
ମନ୍ଦାକିନୀ ନୀରେ ଧୋଇଲେ ନୟନ
ତେବେ ସେ ଗୃହିଁଲେ ସଳଖ କରି,
ଶ୍ରୀକୃଷ୍ଣ ହସିଲେ ସତ୍ୟଭାମା ଖୁସି
ପାରିଜାତ ଫୁଲ ଦେଖାଇ କରି ।
ସତ୍ୟଭାମା ପୁଣି କହିଲେ ଶଚୀଙ୍କୁ
"ଦେଖ ଗୋ ଇନ୍ଦ୍ରାଣୀ ତୋହର ଦଶା,
ତୁଚ୍ଛାଟାରେ କିଆଁ କଳିରେ ପଶିଲୁ
ଏଇନା ହେଲୁ ଲୋ ଭଗାରିହସା ।
ଗରବ କରିବା ଭଲ ନୁହଇ ଗୋ
ଶ୍ରୀକୃଷ୍ଣ ତ ଏକା ଦର୍ପଦଳା,
ସରଗ ରଜାର ରହିଲା ନାହିଁ ତ
ଆଉ କେ ରଖିବ କୋଉଠି ଭଲା !
ଆସ ଦୁହେଁଯାକ ମିଳମିଶି ଯିବା
କେତେବେଳେ ତୁମେ ହେବ ଗୋ ସାନ,
ଦେବ ସମାଜରେ ଇନ୍ଦ୍ରଙ୍କ ପାଖରେ
ବଢ଼ାଇବା ପାଇଁ ମୋହର ମାନ ।
କେତେବେଳେ ହେବ ବଡ଼ ଗୋ ଇନ୍ଦ୍ରାଣୀ
ବଡ଼ ଭଉଣୀର ପାଇବ ସ୍ଥାନ,
ମୁଁ ଭକତ ଦେବ ତୁମେ ଦେବ ସ୍ନେହ
ଦୁହେଁ ଦୁହିଁଙ୍କର ହେବା ସମାନ ।
ନାରୀ ନଗୋଡ଼ିଆ ଗୋଡ଼ ନାହିଁ ତାର
ପୁରୁଷ ଗୋଡ଼ରେ ହୁଅଇ ଠିଆ,
ବାସବ ବଡ଼ କି ବାସୁଦେବ ବଡ଼
ତୁମର ମୋହର କିଆଁ କଜିଆ ?

ପୁରୁଷ ପାଇଁକି ନାଗର ମର୍ଯ୍ୟାଦା
ତାଙ୍କର ମହତ ରଖିବା ଆସ,
ମୁହିଁ ମରତରେ ତୁମେ ସରଗରେ
ହସି ଖେଳ କରି କରିବା ବାସ ।
ରଜା ରାଣୀଙ୍କର ପାଠରେ ଆଦର
ନ ଥାଏ ଗୋ ଶଚୀ କୋଉ କାଳରେ,
ପର କଥା ଶୁଣି ପର ବୁଦ୍ଧି ନେଇ
ଉଠି ପାରନ୍ତିନ ପଡ଼ନ୍ତି ତଳେ ।
ବୃହସ୍ପତି ବୁଦ୍ଧି ତୁମ ପରାମର୍ଶ
ସ୍ୱାମୀଙ୍କ କରମତ କେତେ କି ଆଉ ?
ମୋତେ ନ ପୂଜିଲେ ବୁଦ୍ଧି କିଏ ଦେବ
ପାଠ ପଢ଼ି ଶିଖ ଦୁର୍ବୁଦ୍ଧି ଯାଉ ।
କୃଷ୍ଣ ସେଥିପାଇଁ ହେଲେ ନାହିଁ ରଜା
ମୁହିଁ ହେଲି ନାହିଁ ତେଣୁ ଗୋ ରାଣୀ,
ରାଣୀଙ୍କ ଉପରେ ମୁଁ ଗୋ ମହାରାଣୀ
ମୋହର ନାଆଁ ଟି ଭାରତୀ, ବାଣୀ ।
ମରତରେ ଯୋଉ ସାର ଗାୟକ ଗୋ
ପହିଲେ ବନ୍ଦଇ ମୋର ଚରଣ,
ସରସ୍ୱତୀ ପୂଜା ପରବଟି କଆଁ
ଜାଣି ତ ଥିବ ଗୋ ତାର କାରଣ ।
ମର୍ତ୍ତ୍ୟରେ କୋଉଠି ଶଚୀଙ୍କର ବୋଲି
ପରବଟିଏ କି ଅଛି ଗୋ କାହିଁ ?
କାରଣ କଅଣ ଜାଣ କି ଇନ୍ଦ୍ରାଣି !
ସରଗ ଥିଲେ ବି ସୁବୁଦ୍ଧି ନାହିଁ ।
କଥା କହି ଶିଖ କଜିଆ କରିବ
ସଙ୍ଗୀତ ଗାଇବ ବଜାଇ ବୀଣା,
ଯେତେବେଳେ ଯାଇ ଚହ୍ନିବ ଗୋ ମୋତେ
ମୁଁ ହେବି ତୁମର ସ୍ନେହରେ କିଣା ।

ଐଶ୍ୱର୍ଯ୍ୟ-ମଦରେ ମାତି ଯାଅ ନାହିଁ
ତା ସଙ୍ଗରେ ଟିକେ ବିନୟ ମିଶା,
ଦେଖିବ କପରେ ଧନ ଗଉରବ
ପାଠ ପଢ଼ିବାର ମଧୁର ନିଶା ।"
ପାରିଜାତ ନେଇ କୃଷ୍ଣ ସତ୍ୟଭାମା
ଫେରିଲେ ଦ୍ୱାରକା ହରଷ ମନେ,
ରୋଇଦେଲେ ଗଛଟି ସତ୍ୟଭାମା ନେଇ
ତାଙ୍କର ଦୁଆର କୁସୁମ ବନେ ।
ସରଗ କୁସୁମ ସେ ତ ନିରୁପମ
ସୁଗନ୍ଧ ସୌରଭ ଦିବସ ରାତି,
ଅମ୍ଳାନ ସୁମନ ସଜ ବାସି ନାହିଁ
ସବୁବେଳେ ତାର ଉଜ୍ଜ୍ୱଳ କାନ୍ତି ।
ଅଳି ସବୁବେଳେ ଦ୍ରୁମେ ଥାଏ ବସି
ଗୁଣୁ ଗୁଣୁ କରି ସଙ୍ଗୀତ ଗାଇ,
ମଧୁପଗୁଡ଼ାକ ପାଖ ଛାଡ଼ନ୍ତିନି
କୁସୁମ-କୋଷରୁ ଅମିୟ ଖାଇ ।
ଅନଳକୁ ବାଇ ଛୁଟେ ପ୍ରଜାପତି
ଆଲୁଅ ବରଜ କୁସୁମ କତି,
ଛାଡ଼ନ୍ତିନି କେବେ ଦଳ ଦଳ ହୋଇ
ଜଳନ୍ତା ଅନଳ ମଣି ଝାସନ୍ତି ।
ପବନ ତ କେବେ ବସିପାରେ ନାହିଁ
ଧାଇଁଥାଏ ଖାଲି ସୌରଭ ପାଇଁ,
ଛଅ ଋତୁଯାକ ଆକୁଳ ନୟନେ
ଥାଆନ୍ତି ସୁମନ ସୁଷମା ଚାହିଁ ।
ଫଗୁଣରେ ଚୂତ ମୁକୁଳଇ ନାହିଁ
ଚଇତରେ ମଲ୍ଲୀ ଫୁଟେନା ଲଜେ,
ବୈଶାଖେ ପବନ ଥକା ମାରିଯାଏ
କୁସୁମ ବରଜ ପିବନ ବ୍ୟାଜେ ।

ଜ୍ୟେଷ୍ଠ ପ୍ରଶଂସଇ ଝଙ୍କାର କଣ୍ଠରେ
କୁସୁମର ରୂପ ଗୁଣ ନିଖୁଣ,
ଆଷାଢ଼ ଗରଜି ଜଗି ବସିଥାଏ
ବାସବ ନୃପରେ ବସାଇ ଗୁଣ ।
ଶ୍ରାବଣ ଅଜାଡ଼ି ଦିଅଇ ବରଷା
କୁସୁମରୁ ଧୂଳି ଭସାଇ ଦେଇ,
ସରୁ ସଫା କରା ଖଣ୍ଡେ ଧରି ବସ୍ତ୍ର
ପୋଚ୍ଛିପାଚ୍ଛି ଦିଏ ଆଦରେ ନେଇ ।
ଅଶ୍ୱିଣୀ କାକର ଶାନ୍ତ ଉଦକ ସେ
ଛିଞ୍ଚିଦେଇ ଯାଏ ସୁମନ ଶିରେ,
ଚୋପା କୁଆଁ ଟାର୍ ଦଉଡ଼ି ଆସଇ
କାର୍ତ୍ତିକେ ଦେଖିବ ନିଶି ଶେଷରେ ।
ମଗୁଶିର ଆସେ ପକ୍ୱଶାଳି ନେଇ
କୁସୁମ ଚରଣେ ଓଳଗି ଯିବ,
ପୁଷ୍ୟ କାହାଳିଆ ପଉଷ ଗଗନ
ଆସେ ଲୁଚ କରି ଶୋଭା ଦେଖିବ ।
ମାଘ ମାସ ଆସେ ହସି ହସି କରି
ମଳୟ ବସନ୍ତ ସଙ୍ଗରେ ଧରି,
କୁସୁମ ଚୁମ୍ବିବ କୁସୁମେ ଖେଳିବ
କୋଇଲି ବଜାଇ ଦିଏ ମହୁରି ।
ଚନ୍ଦ୍ର ଗଗନରେ ଲୁଚି ଦେଖାଦେଇ
ସରମେ ମଉଳ କରଇ ମୁହଁ,
ତପନ ଲୋଭରେ କୋଳରେ ପୂରାଏ
ବରଜି ଦିଅଇ ଅରସୀ ତୁହ ।
ତାରାଏ ଲାଜରେ ମୁହଁ ଦେଖାନ୍ତିନି
କୁସୁମ ଜ୍ୟୋତିକୁ ଦୂରରୁ ଦେଖି,
ସାଗର ଗରବେ ଫୁଲାଏ ଛାତିକୁ
ରତନରାଶିଙ୍କି ଦିଏ ଉପେକ୍ଷି ।

ଆଖି ତ ସେଥିରେ ଲାଗି ରହିଯାଏ
ଆଉ କାହାରିକୁ ଅନାଏଁ ନାହିଁ,
ନାସିକା ସୌରଭେ ମୋହି ହୋଇଯାଏ
ଆକୁଳ କେବଳ ତାହାରି ପାଇଁ ।
କୃଷ୍ଣ ସତ୍ୟଭାମା କରନ୍ତି ବିହାର
ଏହି ଗଛତଳେ ରଜନୀ ଦିବା,
ଗଛ ଲୁହି ସେ ତ ଅମ୍ଳାନ ଗୁନ୍ଦୁଆ
ରବି-ଶଶୀ-ଭୂଷା ଗଗନ କିବା !
ଝରି ପଡ଼େ ନାହିଁ ଜହ୍ନ ପଡ଼େ ନାହିଁ
ଆଲୁଅ ଖୋଜେନା କୁସୁମ ପାଇଁ,
ଉଆଁସୀ ନିଶିରେ ଗଛର ତଳଟି
କେବଳ ଆଲୁଅ ଅନ୍ଧାର ନାହିଁ ।
ମିଶିଚନ୍ଦ୍ରିକାଆ ଗ୍ରୁଇ ପଡ଼େ ନାହିଁ
ସବୁଠି କେବଳ କୁସୁମ କାନ୍ତି,
ଗଛ ଗୁରିପାଖେ ବିହାର କରଇ
କେବଳ ଦିବସ ପଡ଼େନା ରାତି ।
ସତ୍ୟଭାମାଙ୍କର ପୂରିଛି କାମନା
ତାଙ୍କର ହରଷ କହିବ କିଏ,
କୃଷ୍ଣଙ୍କୁ ଲଗାଇ ବାସବ ଦଳାଇ
ତାଙ୍କର କଥା ତ ରଖିଲେ ସିଏ ।

———

# ସତ୍ୟଭାମାଙ୍କ ଓଷା

ଦିନେ ସତ୍ୟଭାମା          କୃଷ୍ଣ ଏକାଠେଇ
    କଥାବାର୍ତ୍ତା ହେଉଅଛନ୍ତି ବସି,
ସରଗପୁରରୁ          ନାରଦ ଆସିଲେ
    ବୀଣାଟିଏ ବାଇ ଅଳପ ହସି ।
କଇଲାଣ କରି          କୁଶଳ ପଚାରି
    କହିଲେ, "ଗୋ ଦେବି ! ଜାଣି ତ ଗଲ,
ଏବେ କୋଉ କଥା          ବିଚାର କରୁଛ
    ଏଠି ଗଛ ରଖି କରିଛ ଭଲ ।
ତୁମ ଛଡ଼ା କିଏ          କରିପାରନ୍ତା କି
    ତୁମେ ହିଁ କେବଳ ଏହାର ଯୋଗ୍ୟ,
ଛାର ଶଚୀ ପୁଣି          ଗରବ କରିବ
    କହିବ ପୁଲଟା ତାହାର ଭୋଗ୍ୟ ?
କୃଷ୍ଣ ପାଇଥିଲ          କୁସୁମ ପାଇଲ
    ଆଉ କୋଉ କଥା ରହିଲା ବାକି ?
କିନ୍ତୁ କୃଷ୍ଣଙ୍କର     .     ତୁମେ ନୁହ ଏକା
    ବହୁତ ଭରିଯା ଦେବେଟି ଫାଙ୍କି ।
ଏଥର କହୁଛି          ଓଷାଟିଏ କର
    ପତି-ସୋହାଗିନୀ ହେବ ଗୋ ଯେବେ,
ପତି କେବେ ପାଖ          ଛାଡ଼ିବେ ନାହିଁ ଗୋ
    ସୁଖରେ ସଂସାର କରିବ ତେବେ ।

ବ୍ରତ କରିଥିଲେ ପୁଲୋମ-ତନୟା
ଯିଏ ଏଇନାଏ ସ୍ୱର୍ଗେ ଇନ୍ଦ୍ରାଣୀ,
କେତେ ଇନ୍ଦ୍ରଙ୍କୁ ସେ ବଶ କରି ନାହାଁ
ତୁମେ ତ ସେକଥା ଅଛ ଗୋ ଜାଣି ।
ପର୍ବତ-ତନୟା କରିଥିଲେ ବ୍ରତ
ହରଙ୍କ ଦେହରୁ ହୋଇଲେ ଅର୍ଦ୍ଧ,
ତାଙ୍କଠାରୁ ବଳ କଏ ବା ସୋହାଗୀ
ମହେଶ୍ୱରୀ ହେଲେ ଦେବୀଙ୍କ ମଧ୍ୟ ।
ଶିବ ତାଙ୍କୁ ଛାଡ଼ି ରହି ପାରନ୍ତିନି
ଦେହରେ ଦେହ ତ ଯାଇଛୁ ଝୁଣ୍ଟି,
ଅଧେ ହୋଇ କରି କଏ ରହିବ ଗୋ
ପାଣି ହୋଇବ କ ଦ୍'ଭାଗ କର ?
ଅଗ୍ନିଙ୍କ ଘରଣୀ ସ୍ୱାହା ଦେବୀ ଓଷା
କରି ହୋଇଥିଲେ ପତିଙ୍କ ପ୍ରିୟା,
ତୁମେ ଓଷା କଲେ କୃଷ୍ଣ ଆଦରିଣୀ
ପତି-ସୋହାଗିନୀ ହେବନି କିଆଁ ?"
ସତ୍ୟଭାମା ଶୁଣି ହେଲେ ତ ଉଷତ
ବ୍ରତ କରିବାକୁ ହୋଇଲେ ରାଜି,
କହିଲେ ସେ ହସି, "ଶୁଣ ଦେବଋଷି !
ବତାନ୍ତୁ ବିଧାନ କରିବ ଆଜି ।"
କହିଲେ ନାରଦ "ଶୁଣ କୃଷ୍ଣପ୍ରିୟେ !
ଏ ଓଷାବିଧାନ କଠିନ ଅଟେ,
ପହିଲେ କୃଷ୍ଣଙ୍କୁ ପରୁର ଗୋ ଥରେ
ତୁମର ସେ ଏକା ନୁହନ୍ତି ପତି ।
ତାଙ୍କର ତ ଭାର୍ଯ୍ୟା କେଜାଣି କେତେ ଗୋ
ସକଳେ ଖୋଜିବେ କରିବା ପାଇଁ,
ସମସ୍ତଙ୍କର ତ ଗୋଟିଏ ଶ୍ରୀକୃଷ୍ଣ
ଶେଷରେ ଯେ କେହି ପାଇବ ନାହିଁ ।

ଆଗରୁ ଆଗରୁ ନଅ ଅନୁମତି
ପଛରେ ଯେପରି ନ ପଡ଼େ ବାଧା,
ଜାଣେ ମୁଁ ଶ୍ରୀକୃଷ୍ଣ ସବୁ ପତ୍ନୀଙ୍କଠୁଁ
ତୁମକୁ କରନ୍ତି ଅଧିକ ଶ୍ରଦ୍ଧା ।
ସତ୍ରାଜିତ୍ଣୀ ନେଲ ଘର କର୍ନ୍ତି ତ
କାଳେ ଟୋ ସେମାନେ କରିବେ ବାଦ,
କୃଷ୍ଣ ସେତେବେଳେ ହେବେ ହଟହଟା
ତୁମର ମେଣ୍ଟିବ ନାହିଁ ଗୋ ସାଧ ।"
ସତ୍ୟଭାମା ଶୁଣି କହିଲେ ଗରବେ
"ଆଜ ସତ୍ରାଜିତ୍ଣୀ ଏପରି କଏ ?
ମୋହର କଥାରେ ବାଦ କରିବ ସେ
କୃଷ୍ଣଙ୍କୁ କରିବ ନଜର ଗିଏ ?
ଏଥିପାଇଁ ପୁଣି ଖୋଜା ହେବ ମୋର
କୃଷ୍ଣଙ୍କ ମନ୍ତ୍ରର ବୁଝିବା ପାଇଁ,
ନାହିଁ ନାହିଁ ଋଷି ! ଆପଣ ଏଇନା
ବ୍ରତର ଯୋଗାଡ଼ କରନ୍ତୁ ପାଇଁ ।
ସତ୍ରାଜିତ୍ଣୀ ବାଦ, କୃଷ୍ଣ ଅନୁମତି
ଲଗିଲା ସେ ମୋତେ, ଶୁଣନ୍ତୁ ଆଗ,
ଆପଣ କରନ୍ତୁ ତଞ୍ଚଲ ଯୋଗାଡ଼
ବ୍ରତ ମୁଁ କରିବ, ମୋ ଅନୁରାଗ ।"
ନାରଦ କହିଲେ "ଶୁଣ ତେବେ କହେଁ
ଯାହା ଯାହା ସବୁ ବ୍ରତ-ବିଧାନ,
ପାରିଜାତ ଗଛେ କୃଷ୍ଣ ହେବେ ବନ୍ଧା,
ପୂଜା ଶେଷେ ଦେବ ତାଙ୍କୁ ହିଁ ଦାନ ।
ତାଙ୍କର ଓଜନ ଧନ ରତ୍ନ ଦେବ,
ଏହା ଛଡ଼ା ଅଛି ପୁଣି ଦକ୍ଷିଣା,
ଏତକ କରିଲେ ତୁମ କଳାକାହ୍ନୁ
ଚିରଦିନ ପାଇଁ ହୋଇବେ କିଣା ।"

ନାରଦ ଯେପରି　　　　କହିଲେ ସେପରି
　　ସବୁ ଆୟୋଜନ ହୋଇଲା ଶେଷ,
ଶୁଭ ଯୋଗଟିରେ　　　　ଶୁଭ ଅନୁକୂଳେ
　　ଆରମ୍ଭ ହୋଇଲା ବ୍ରତାଧିବାସ ।
ସେଠୁଁ ସତ୍ୟଭାମା　　　　ଶ୍ରୀକୃଷ୍ଣଙ୍କ ପାଶେ
　　ଏକାନ୍ତରେ ସବୁ କହିଲେ ବସି,
ଶୁଣିସାରି କୃଷ୍ଣ　　　　ସନମତ କଲେ
　　ମନକୁ ମନକୁ ଟିକଏ ହସି ।
ହସର କାରଣ　　　　ଆଉ କିଛି ନୁହେ
　　କେବଳ ନାରୀର ଛଳ କୌଶଳ,
ସବୁ ନିଜ ପାଇଁ　　　　ପର ପାଇଁ ନୁହେଁ
　　କେଡ଼େ ଆପସୁଖୀ ଏ ନାରୀକୁଳ !
ଧରଣୀରେ ଥିଲେ　　　　ଯେତେକ ବ୍ରାହ୍ମଣ
　　ଆଉ ବଡ଼ ବଡ଼ ଯେତେକ ଋଷି,
ଆମନ୍ତ୍ରି ଆଣିଲେ　　　　ବ୍ରତ ଉପଲକ୍ଷେ
　　ସତ୍ୟଭାମା ଦେଖି ବହୁତ ଖୁସି ।
ସତ୍ୟଭାମା କର୍ତ୍ତ୍ରୀ　　　　ଗର୍ଗ ପୁରୋହିତ
　　ନାରଦ ଦାନାର୍ଥୀ ଶ୍ରୀକୃଷ୍ଣ ଦାନ,
ରୁକ୍ମିଣୀଙ୍କ ସହ　　　　ଆଉ ଯେତେ ଭାର୍ଯ୍ୟା
　　ଆନନ ଫୁଲାଇ କରିଲେ ମାନ ।
ପାରିଜାତ ବୃକ୍ଷେ　　　　ବନ୍ଧା ହେଲେ କୃଷ୍ଣ
　　କୁସୁମ ଚନ୍ଦନେ ଭୂଷିତ ହୋଇଲେ,
ସତ୍ୟଭାମା ହସି　　　　ନାରଦଙ୍କ କରେ
　　ଶ୍ରୀକୃଷ୍ଣଙ୍କୁ ଧରି ସମର୍ପି ଦେଲେ ।
ଓଷା ପୂଜା କାମ　　　　ସବୁ ସରିଗଲା
　　ନାରଦ କହିଲେ, "ଦେଲ ତ ଦାନ,
ଏଇନା ଦାନକୁ　　　　ଅନାଇଁ ଦକ୍ଷିଣା
　　କୃଷ୍ଣଙ୍କ ଓଜନ ସମାନ ଆଣ ।

ଆସ ଆସ ସବୁ ଶ୍ରୀକୃଷ୍ଣ ବଦନ
ଶେଷଥର ପାଇଁ ଦେଖ ଗୋ ଯାଇଁ,
ଆଜ ତ ଶ୍ରୀକୃଷ୍ଣ ହୁହନ୍ତ ତୁମର
ମୋର ହେଲେ ସିଏ, କାନ୍ଦିବ ନାହିଁ ।"
କୃଷ୍ଣଙ୍କୁ କହିଲେ "ଛାଡ଼ ପୀତବାସ,
ପିନ୍ଧ କଷାବାସ, ହୋଇଛି ନଅ,
ବନମାଳ କାଢ଼, ଆଜ ସବୁ ଭୂଷା
କାଢ଼ିକୁଢ଼ି କରି ଫୋପାଇ ଦଅ ।
ଘର ଦୁଆର ତ ଛାଡ଼ିଲ ଏଥର
ତପସ୍ୱୀ ହୋଇ ତ ସାଧିବ ତପ,
ନିଅ ଜପମାଳା ବନସ୍ତରେ ପଶ
ଗାୟତ୍ରୀ ସାବିତ୍ରୀ କରିବ ଜପ ।"
ସତ୍ୟଭାମାଙ୍କର ହୃଦୟ ଶୁଖିଲା
ଶ୍ରୀକୃଷ୍ଣଙ୍କୁ ଦେଖି ଯୋଗୀର ବେଶେ,
କହିଲେ ବିକଳେ, "ଯିବି ମୁଁ ସଙ୍ଗରେ
ଶ୍ରୀକୃଷ୍ଣ ମୋହର ଯିବେ ଯେ ଦେଶେ ।"
ନାରଦ କହିଲେ, "ତୁମର ଶ୍ରୀକୃଷ୍ଣ
ମୋତେ ପରା ତୁମେ ଦେଲ ଗୋଦାନ ?
ମୋର ଶ୍ରୀକୃଷ୍ଣଙ୍କୁ କହୁଛ ତୁମର,
ସତ୍ୟଭାମା ତୁମେ କେଡ଼େ ଅଜ୍ଞାନ !
ଯାଅ ଯାଅ ଘରେ କୃଷ୍ଣ ପାଇବନ
ଦେଇ ତ ସାରିଛ; ଫେରାଇଦେବ ?
ହେବନ ହେବନ, ଫେରିଯା ଫେରିଯା,
ନିଶ୍ଚୟ ମୁଁ ତାଙ୍କୁ ସଙ୍ଗରେ ନେବି ।"
ସତ୍ୟଭାମା ଶୁଣି କହିଲେ ହତାଶେ
"ଏଡ଼େ ଠକ ବୋଲି ଥିଲି କି ଜାଣି,
କହିଥିଲ ହେବ ପତି-ସୋହାଗିନୀ,
ଏଇନା କହୁଛ ନିଷ୍ଠୁର ବାଣୀ ।

ଓଷା କରାଇଲ          ନାରଦତ୍ୟା କଲ
    ଲାଗିବ ନାହିଁ କି ତୁମକୁ ଦୋଷ ?
ମୋ ତୁଣ୍ଡକୁ ଯାହା          ଆସିବ ବକିବ
    କଲେ କର ପଛେ ମୋଠାରେ ରୋଷ ।
ଯେତେ ଇଚ୍ଛା ତେତେ          ଦିଅ ଅଭିଶାପ,
    ଶ୍ରୀକୃଷ୍ଣଙ୍କୁ ମୋର ଫେରାଇ ଦିଅ,
ତାଙ୍କ ବଦଳରେ          ଯାହା ଯେତେ ମୋର
    ଅଛି ତାହା ସବୁ ପଛକେ ନିଅ ।
ମାରି ଦିଅ ନାହିଁ          ସତ୍ୟଭାମାକୁ ହେ
    ଶ୍ରୀକୃଷ୍ଣ ତା ପ୍ରାଣ ନିଅନା କାଢ଼ି,
ପତି-ସୋହାଗିନୀ          ପତି-ଲୋଲୁପିନୀ
    ଆଗରେ ଜହର ଦିଅନା ବାଢ଼ି ।
ପାର୍ବତୀଙ୍କଠାରୁ          ଦାନ ନେଇଥିଲ
    ସେ ପୁଣି ଶିବଙ୍କୁ ପାଇଲେ ଫେରି,
କିସ ନେଇ ତାଙ୍କୁ          ଫେରାଇ ଦେଲ ହେ
    କହ ଭଲ ଋଷି କରନା ଡେରି ।”
ନାରଦ କହିଲେ,          “ପାର୍ବତୀଙ୍କ ପତି
    ବୃଷଭ-ବାହନ ବିଭୂତିମଖା,
ଭୂତ-ପ୍ରେତ ମେଳେ          ଶ୍ମଶାନେ ରହନ୍ତି
    ତାଙ୍କ ବେକ ସାପ ଦେଲେ ଗୋ ଶଙ୍କା ।!
ହାଡ଼ଗୁଡ଼ା ଗୁନ୍ଥି          ମାଳ ପିନ୍ଧିଥାନ୍ତି
    ଯାହାକୁ ଗୋ କେହି ଛୁଅନ୍ତି ନାହିଁ,
ବାଘ ଚମ ପିନ୍ଧି          ଡରାଇଲେ ମୋତେ,
    ଯୋଗାଇ ପାରିଲି ନାହିଁ ଗଞ୍ଜେଇ ।
ସଂସାର-ବିରାଗୀ          ପୁଣି ନାରୀଦ୍ୱେଷୀ
    ଅତି ମହାରାଗୀ ଅଟନ୍ତି ସିଏ,
ସେଇଥି ପାଇଁକି          ଫେରାଇ ଦେଲି ଗୋ
    ମୋର ଏ ଜଞ୍ଜାଳ କରନ୍ତା କିଏ ?”

"ଶଚୀଙ୍କୁ କାହିଁକି ଫେରାଇଲେ ଇନ୍ଦ୍ର ?"
ନାରଦ କହିଲେ, "ଶୁଣ ସେ କଥା,
ହଜାର ନୟନ ହୃଦ୍ବେଶ୍ୟା ସଂବେଗ
କେତେବେଳେ ସ୍ଥିର ନୁହେ ତା ମଥା ।
ଖାଲି ବଡ଼ପଣ ଦେଖାଇ ହୁଅଇ
ସବୁବେଳେ ଚଢ଼େ ଘୋଡ଼ା ଓ ହାତୀ,
ତାଙ୍କୁ ପୋଷିବାକୁ ମୋର ବଳ କାହିଁ
ତପ କରନ୍ତୁ ନା ତାଙ୍କୁ ପାଳନ୍ତୁ ?
ତୁଣି ଧାତା ତାଙ୍କୁ ଖୋଜିଲେ ସର୍ବଦା
ତ୍ରିଲୋକଯାକ ଶାସିବା ପାଇଁ,
ଖୋଜୁଥିଲି ଯାହା ବନ୍ଧ କଲି ତାହା
ତେଣୁ ତାଙ୍କୁ ଶୀଘ୍ର ଦେଲି ଫେରାଇ ।"
ପୁଣି ପଚାରିଲେ, "ଅଗ୍ନିଙ୍କୁ କାହିଁକି
ସ୍ୱାହା ଦେବୀଙ୍କୁ ହେ ଫେରାଇଦେଲ ?
ଅଗ୍ନି ଆଉ ସ୍ୱାହା ଏକାଠି ଏଇନା
ହସି ଖେଳି କରି ହୁଅନ୍ତୁ ଗେଲ ।"
ଶୁଣ ମୁଁ କହୁଛି "ଅଗ୍ନି ସବାଖିଆ
ବାଛ ବିଚାର ତା ନାହିଁ ଗୋ କିଛି,
ଅଯୋଗ୍ୟଟାକୁ ମୁଁ ଘରେ ସାଇତନ୍ତି
ତାର ଅନାଚାର କହନା ଛୁଛି !
ଯୁଆଡ଼େ ଚାହିଁଲି ଜଳିଲି ଗୋ ଖାଲି
ସହିହେଲି ନାହିଁ ତାହାର ତାତ,
ତାଙ୍କୁ କେ ରଖିବ କୋଳେ ପୂରାଇ ଗୋ
ସବୁବେଳେ ଖାଲି ଦହିଲି ଗାତ ।
ଯଜ୍ଞଟିଏ କଲେ ଘିଅ ଖାଇଯାଏ
ଅତିଥିଙ୍କ ସେବା କରିବ ନାହିଁ,
ଯାହା ଯୋଉଠାରେ ଘରେ ଥୋଇଥିବ
ସବୁଯାକ ବସିଥିବ ସେ ଖାଇ ।

ଅଲକ୍ଷଣାଟାକୁ ରଖନ୍ତ ମୁଁ ଘରେ
ସବୁଦେଲେ ତାର ପେଟରେ ଭୋକ,
କୋଉଠଉ ଦେବ ଏତେ ଖାଇବାକୁ
ମୋର ତ ଉଙ୍କାସି ଉକର ଢୋକ ।
ସେଇଥି ପାଇଁକି ତାକୁ ଫେରଦେଲି
ତାକୁ ରଖିଥିଲେ ଥାଆନ୍ତିକି ?
ତାହା କଥା ମୋତେ କହନା ଗୋ ଆଉ
ତାହା ଲଗି ସବୁ ସାରଛୁ ବକ ।
କୃଷ୍ଣଙ୍କର ନାହିଁ ସେଇ ଦୋଷ କଛୁ
ତାଙ୍କୁ ବା କାହିଁକି ଫେରାଇ ଦେବ,
ତେଣୁ ତ ଭାବଛୁ ଯେଣେ ଯିବ ତେଣେ
ଶ୍ରୀକୃଷ୍ଣଙ୍କୁ ମୋର ସଙ୍ଗରେ ନେବ ।
କି ସୁନ୍ଦର ରୂପ, କି ମଧୁର କଥା,
ମୂହୂର୍ତ୍ତ ପାରବ ତାଙ୍କୁ କି ସଡେ ?
ଯାଅ ଯାଅ ଫେର ଘରକୁ ଗୋ ସବୁ
ଫେରାଇ ଦେବାକୁ କହନା ମୋତେ ।
କେତେ ଯୁଗ ଧର ତପସ୍ୟା କରୁଛୁ
ଏହି ରୂପଟିକୁ ପାଇବା ପାଇଁ,
ପାଇଛୁ ଏଇନା, ଦେଖୁଥିବ ବସି,
ଫେରାଇ ତ ଦେଇ ପାରବ ନାହିଁ ।”
ଶୁଣି ସତ୍ୟଭାମା ହେଲେ ମୂର୍ଚ୍ଛିତ
ଭୂଇଁରେ ପଡ଼ିଲେ ହରାଇ ଜ୍ଞାନ,
ଶ୍ରୀକୃଷ୍ଣ କହିଲେ “ଶୁଣ ଦେବର୍ଷି !
କର ନାହିଁ ତାକୁ ହେ ହଇରାଣ ।”
ପୁଣି ଚେତା ପାଇ ଉଠିଲେ ଯୋଉନା
ନାରଦ କହିଲେ ଟାହୁଲି ହୋଇ,
“ପତି ଦାନ ଦେଇ ଉଶ୍ବାସ ହେଲ କି
ଭୂଇଁରେ ଟିକଏ ପଡ଼ିଲ ଶୋଇ ?”

ସତ୍ୟଭାମା ଶୁଣି କହିଲେ ବିରକ୍ତେ
"ଯୋଗୀ ଋଷି ତୁମେ କି ଜାଣ ଘର ?
ଗିରସ୍ତ ଘରପା ପ୍ରଣୟ କପଟ
ବୁଝିବ ହେ ତୁମେ ତପସ୍ୟା କର ।"
ନାରଦ ହସିଲେ ଠୋଅ ଠୋଅ କରି
କହିଲେ ଗମ୍ଭୀରେ "ସତ କହିଲ,
ହେଇଥି ପାଇଁକି କାନ୍ଦି କାନ୍ଦି କରି
ଥକଯାଇ ଟିକେ ଶୋଇ ପଡ଼ିଲି ।
ଅଚ୍ଛା ତେବେ ଶୁଣ ! ଶ୍ରୀକୃଷ୍ଣଙ୍କ ସଙ୍ଗେ
ତଉଲ କରଣ ରତନ ଆଣି,
ତେବେ ମୁଁ ଫେରାଇ ଦେବି ଶ୍ରୀକୃଷ୍ଣଙ୍କୁ
ଏଥିରୁ ହୋଇବ ନାହିଁ ଗୋ ଆନ ।"
ପୁଅମାନେ ସବୁ ଯେ ଥିଲେ ସେଠେଇ
ସତ୍ୟଭାମା ପୁରେ ପଶିଲେ ଯାଇଁ,
ଯେତେ ଯୋଉଠେଇ ଧନ ରତ୍ନ ଥିଲା
ସ୍ୟମନ୍ତକ ସହ ଦେଲେ ଗୋଟାଇ ।
ହେଲା ନାହିଁ ସମ ଶ୍ରୀକୃଷ୍ଣଙ୍କ ସଙ୍ଗେ
ଶ୍ରୀକୃଷ୍ଣଙ୍କ ପାଖ ଉଠିଲା ନାହିଁ,
ସେଠି ଯେତେ ଥିଲେ ତରାଜୁକୁ ଖାଲି
ଜକଜକ କରି ରହିଲେ ଚାହିଁ ।
ରୁକ୍ମିଣୀଙ୍କ ଘରୁ ଆଣିଲେ ଯେତେକ
ସେ ହେଲା ଉଣ୍ଶ୍ୱାସ ଶ୍ରୀକୃଷ୍ଣ ଗରୁ,
ଷୋହଳ ହଜାର ନଅରୁ ଆଣିଲେ
ଶ୍ରୀକୃଷ୍ଣଙ୍କ ପାଖ ଉଠୁନ ତଳୁଁ ।
ଉଦ୍ଧବ ସେଠେଇ ଦେଖୁଥିଲେ ସବୁ
କହିଲେ "ଶ୍ରୀକୃଷ୍ଣ କହନ୍ତି ନାମ,
କେବଳ ଏ ଯୁଗେ ସବୁଠାରୁ ବଡ଼
ନାମ ଫଟେ କେହି ନୁହେ ସମାନ ।

ତୁଳସୀ ଗଛରୁ ପତରଟିଏ ଆଣି
କୃଷ୍ଣ ଦ୍ୱି' ଅକ୍ଷର ସେଥିରେ ଲେଖି,
ତରାଜୁରେ ରଖି ସେହି ପତରଟିକୁ
ତଉଲ କରଣ ଦେଖିଲ ଦେଖି ।"
ସତକୁ ସତ ତ ନାଆଁ ହେଲା ଭାରି
ରମଣିଏ ଦେଖି ହୋଇଲେ ଖୁସି,
ନାମ ପଦ ଧରି ହରି ନାମ ଗାଇ
ବୀଣା ବାଇଗଲେ ନାରଦ ଋଷି ।
ଘରକରଣାରେ ବଡ଼ ଲୀଳାଟିଏ
କରିଥିଲେ କୃଷ୍ଣ ଘରେ କଜିଆ,
ଦେବତା ହୋଇ ବି ମଣିଷ ହୋଇଲେ
ଗୃହସ୍ଥ ଜୀବନ ଏହିଭଳିଆ ।
ମାଇପୀ କଥାରୁ କଳହ ବଢ଼ଇ
ସରଗରେ ଯାଏଁ ବଢ଼ଇ ଧାପ,
ଘରଟିଏ କରି ନାରୀ ବଶ ହେଲେ
ଏହାପରେ ସିନା ମିଳଇ ତାପ ।
ଶ୍ରୀକୃଷ୍ଣଙ୍କ ପରି ଠିକ୍ ବୋଲି ସିନା
ସାଇତି ପାରିଲେ ତାଙ୍କର ଘର,
ଆଉ କିଏ ହେଲେ ସମ୍ଭାଳନ୍ତାଟି କି
ସେଥିପାଇଁ ଜଣେ ଭାରିଯା କର ।
ଭାରିଯା ସଂସାରେ ଅତି ପ୍ରିୟ ସିନା
ଯୋଡ଼ିଏ ହୋଇଲେ ଲାଗଇ କଳି,
ସେ କଳି ତ ଖାଲି କଳହ ନୁହଇ
ଜ୍ୱଳନ୍ତ ଅନଳଶିଖାରୁ ବଳି ।
ଶ୍ରୀକୃଷ୍ଣ ଶରଣ ନିଅ ହେ ଗୃହସ୍ଥ
ଘରକୁ କରିବ ସରଗ ସମ,
ନଚେତ୍ ଯିବ ଯେବେ ଘର କରୁ କରୁ
ବାନ୍ଧି ଦଣ୍ଡିବନ ତାହାକୁ ଯମ ।

———————

# ଦ୍ରୁପଦ ଏବଂ ଦ୍ରୋଣ

ପାଞ୍ଚାଳର ରଜା       ଜାତିରେ ବ୍ରାହ୍ମଣ
ବ୍ରାହ୍ମଣତ୍ୱ ଛାଡ଼ି ହୋଇଲେ କ୍ଷତ୍ରୀ,
ସିଂହାସନେ ବସି       ଧରିଲେ କାର୍ମ୍ମୁକ
ଶିରେ ଟେକାଇଲେ ଶୁକ୍ଳ ଛତ୍ର ।
ଦ୍ରୁପଦ ତାଙ୍କର       ପୁଅ, ଯୁବରାଜ
ମର୍ଯ୍ୟାଦା ବହୁତ ପିଲ୍ ବୟସ,
ଧନ ଭରଦ୍ୱାଜ       ଋଷିଙ୍କ ତନୟ
ଦ୍ରୋଣ ଦ୍ରୁପଦଙ୍କ ପ୍ରିୟ ବୟସ୍ୟ ।
କ୍ଷୀର ନୀର ପରି       ଦୁହିଁଙ୍କ ପ୍ରଣୟ
ଦଣ୍ଡେ କେହି କାରେ ଛାଡ଼ଇ ନାହିଁ,
ଜଣେ ଯେବେ ହୁଏ       ଟିକିଏ ଅନ୍ତର
ଆରଜ ବସଇ ତାକୁ ହିଁ ଚାହିଁ ।
ଖେଳବେଳେ ଖେଳ       ପଢ଼ାବେଳେ ପଢ଼ା
ଦୁଇ ପିଲ୍‌ଯାକ କରନ୍ତି ହସି,
କେତେବେଳେ ନାହିଁ       ମୁହଁ ଫୁଲପୁଲ
କେହି ହେଲେ ଜଣେ ରୁଷେନା ବସି ।
ଦ୍ରୁପଦ କହନ୍ତି       ସବୁବେଳେ "ଦ୍ରୋଣ !
ତୁ ହେବୁ ରେ ମନ୍ତ୍ରୀ, ମୁଁ ହେଲେ ରଜା,
ମୋ ରାଜ୍ୟରୁ ଅଧେ       ଦେବି ମୁଁ ରେ ତୋତେ
ଦୁହେଁଯାକ ମିଶି ପାଳିବା ପ୍ରଜା ।"

ପାଠ ପଢ଼ି ସାରି ଫେରିଲେ ଘରକୁ
ଦ୍ରୁପଦ ରାଜ୍ୟରେ ହେଲେ ନରେଶ,
ଦ୍ରୋଣ ତ ଗରିବ ଋଷିର ତନୟ
ଆଶ୍ରମେ ପିନ୍ଧିଲେ ଯୋଗୀର ବେଶ ।
ଦିନ ଗଡ଼ିଗଲା ବୟସ ବଢ଼ିଲା
ବାହାହୋଇ କଲେ ଘରସଂସାର,
ଦ୍ରୁପଦ ରମଣୀ ରଜାର ଦୁହିତା
କୋଉ କଥାରେ ବା ଅଭାବ ତାର !
ଦ୍ରୋଣଙ୍କ ଘରଣୀ ବଡ଼ ନାରଖାର
ଗରିବ ବ୍ରାହ୍ମଣ ଝିଅ ତ ସିଏ,
ତାର ବା ସମାଜେ କେଉଁ ମାନ ଅଛି
ତାର ରୂପ ଗୁଣ ପଚାରେ କିଏ ?
ବଣ ଫଳ ମୂଳ କବା ଖାଲି ଜଳ
ଭଣ୍ଡାରର ଥାଳ ସମ୍ବଳ ତାର,
ଗଛ ଲତା ପାଳି ଫୁଲ ଫଳ ତୋଳି
ଦେବ ଅର୍ଚ୍ଚନା କାମ ତ ତାର ।
କେତେ ଦିନ ପରେ ପୁଅଟିଏ ହେଲା
ପ୍ରସବ ପୁଅକୁ ଦେଖିଲା ନାହିଁ,
ଆହା ସେ ଦୁଃଖିନୀ କାହିଁ ଚାଲିଗଲା
ପତିଙ୍କୁ ବି ତେବେ ପାଉନି ଚାହିଁ ।
କଅଁଳା ଛୁଆଟା ହେଲା କାଉକାଉ
ମାଆ କ୍ଷୀର ଢୋକେ ପାଉନି ଖାଇ,
ଭାରିଯା ମରଣ ପୁଅର କାନ୍ଦଣା
ଶୁଣି ଧଇରଯ ଦେଲେ ହରାଇ ।
କିପରି ପାଳିବେ ଛେଉଣ୍ଡ ଛୁଆକୁ
ବୁଦ୍ଧି ବାଟ ତାଙ୍କୁ ଦିଶିଲା ନାହିଁ,
ମନେ ପଡ଼ିଗଲା ଦ୍ରୁପଦଙ୍କ କଥା
ଭାବିଲେ ଆଣିବେ ଗୋଟିଏ ଗାଈ ।

ଚଳିଲେ ପାଞ୍ଚାଳେ ଘନଘୋର ବେଶେ
ପିନ୍ଧିଲ ବସନ ଅଠର ସିଆଁ,
ଏ ଭେକକୁ ଦେଖି ବାଲ୍ୟବନ୍ଧୁ ବୋଲି
ଦ୍ରୁପଦେ ତାହାଙ୍କୁ ଚହ୍ନନ୍ତା କିଆଁ ?
ବହୁ ଦିନରୁ ତ ପାସୋରି ଦେଲେଣି
କିଏ ଦ୍ରୋଣ, କିଏ ତାଙ୍କର ସଖା,
ଗୁରୁଘର ଛାଡ଼ି ଆସିବା ଦିନରୁ
କେବେହେଲେ ଦିନେ ହୋଇନି ଦେଖା ।
ଚହ୍ନିଲେ ତ ନାହିଁ ଅପମାନ ଦେଲେ
କହିଲେ ଘୃଣାରେ ଝିଙ୍ଗାସି କରି,
ଲାଜ ସରମରେ ବାହୁଡ଼ି ଆସିଲେ
କହିଲେନି କିଛି ଭାଗ୍ୟ ଆଦରି ।
ସମାନେ ସମାନେ ବନ୍ଧୁତା ସୁନ୍ଦର
ଅସମ ବନ୍ଧୁତା ପାଣିର ଗାର,
ସମ ଲଭିଯାଏ, ଆଗର ସୁଆଗ
କାହାଠାରେ କେବେ ରହେନା କାର ।
ରଜାର ବନ୍ଧୁତା ଭିକାରି ସଙ୍ଗରେ
ମଗର ସଙ୍ଗରେ କାକର ପ୍ରୀତି,
କେଶରୀ ଶାର୍ଦ୍ଦୂଳ ଅଜା ବନ୍ଧୁ ହେଲେ
ଅଜା କି ରହଇ ଜୀବନେ ବର୍ତ୍ତି !
ରଜା ଆଉ ରାଜ- ପୁରୁଷମାନଙ୍କୁ
ବିଶ୍ୱାସ କରିବା ଅଛି ତ ମନା,
ଖଳ, ଖଟକୁହା ରାଜ ଦରବାରେ
ଛଳ ଉଚ୍ଚାସନ ପାଆନ୍ତି ସିନା !
ରଜାର ଅନ୍ତର ସରଳ ନୁହଇ
ରଜା ମୁହିଁ ହସ ଖାଲି ଗରଳ,
ମନ୍ତ୍ରୀ କହୁଥିଲ ତହିଁରୁ ଅଧିକ
ତାଙ୍କ ପାଖେ ନାହିଁ ବନ୍ଧୁତା ମୂଲ୍ୟ ।

କେତେ ରଜା କାହିଁ ସଂସାର ଭିତରେ
ଅଛନ୍ତି ପ୍ରକୃତ ଈଶ୍ୱରବନ୍ତ ?
କାଳେ କାଳେ ଖାଲି ଚଳୁଛି କାହିଁକି
ଗରବର ସୁଖ କରନ୍ତି ହତ ।
ଏହି ଅବସ୍ଥାର ପାଇଁକି ଧରାରେ
ରଜା ପ୍ରଜା ଭାବ ହେଉଛି ଭିନ୍ନ,
ଏହି ଭିନ୍ନତାର ପରିଣାମ ରୂପେ
ରକତ-ଧାରରେ ଧରଣୀ ସିକ୍ତ ।
ଏହି ମର୍ମପୀଡ଼ା ଧାରନ୍ତି ତାହାଙ୍କୁ
ଯାହାର ପ୍ରତିଶୋଧ ନେବେ କପରି,
ସ୍ଥିର କଲେ ମନେ ତପସ୍ୟା ବଳରେ
କ୍ଷତ୍ରୀବୃତ୍ତି ନେବେ କାର୍ମୁକ ଧରି ।
ବଣେ ବଣେ ପଶି ଖୋଜିଲେ ବହୁତ
କୋଉଠି ଅଛନ୍ତି ପରଶୁରାମ,
କ୍ଷତ୍ରୀ ଗର୍ବଭଙ୍ଗା ମହାଧନୁର୍ଦ୍ଧର
ବୋଲି ତ ତାଙ୍କର ଅଛଇ ନାମ ।
ଭେଟିଲେ ଶେଷରେ କଲେ ବହୁ ସେବା
ଭକତିରେ ସିଏ ହୋଇଲେ ତୁଷ୍ଟ,
କହିଲେ ସ୍ନେହରେ "ମାଗିନଅ ବର
ଯହିଁରେ ତୋହର ପୂରିବ ଇଷ୍ଟ ।"
ମାଗିଲେ ବିନୟେ ଧନୁର୍ବେଦ-ଶିକ୍ଷା
ପରଶୁରାମ ଦେଲେ ଆଗ୍ରହ କରି,
ଦ୍ରୋଣ ବାହାରିଲେ ଏଥର ଆଶ୍ରମୁଁ
କ୍ଷତ୍ରିୟ ସମାନ ଧନୁଟା ଧରି ।
ବହୁ ରାଜ୍ୟ ବୁଲି ପହଞ୍ଚିଲେ ଆସି
କୁରୁ ରାଜଧାନୀ ହସ୍ତିନାପୁର,
ସେଠି ଧୃତରାଷ୍ଟ୍ର ଗାଙ୍ଗେୟ ବିଦୁର
ସମାଦର କଲେ ତାଙ୍କୁ ପ୍ରଚୁର ।

ଧୃତରାଷ୍ଟ୍ରଙ୍କର ଶତେ ପୁଅ ପୁଣି
ପାଣ୍ଡୁଙ୍କର ଆଉ ପାଞ୍ଚ ତନୟ,
ସବୁ ଗୁରୁଙ୍କର ପଢ଼ିବା ବୟସ
ତାଙ୍କୁ ପଢ଼ାଇବା ହୋଇଲା ଥୟ ।
କଣ୍ଟାମାନେ କଣ୍ଟା କାଢ଼ିବେ ଏଥର
ମନେ ମନେ ଭାବ ହେଲେ ହରଷ,
ଦ୍ରୁପଦ କ ଘର ଆଉ ଯେତେ ଋଷୀ
ସକଳେ ହୋଇବେ ସବଂଶେ ଧ୍ୱଂସ ।
ସବୁ ପିଲାଯାକ ପଢ଼ି ଶିଖି ସାରି
ଗୁରୁଙ୍କୁ ଯାଚଲେ ଦକ୍ଷିଣା ଦେବେ,
ଦ୍ରୁପଦ କଥା ତ କୁହୁକୁଛି ମନେ
ଏହି ସୁଯୋଗରେ ସୁବିଧା ନେବେ ।
କହିଲେ "ରେ ପିଲା, ଦିଅ ଏ ଦକ୍ଷିଣା
ଦ୍ରୁପଦ ରଜାକୁ ଆଣିବ ବାନ୍ଧି,
ତା ଭର୍ତ୍ସନା ଶୁଣି ଆଜ ଯାଏଁ ବୋଲି
ଜାଉଁଛି ମୁଁ ଖାଲି ମାରିବେ କାନ୍ଦି ।"
ଏକା ଅରଜୁନ ବାନ୍ଧି ଆଣିଦେଲେ
କଉରବେ କଲେ ବଡ଼ ହିନସ୍ତା,
ପୁଣି ସେ ଅର୍ଜୁନ ମୁକୁଳାଇ ଦେଲେ
ଦ୍ରୁପଦ ଜାଣିଲା ଦ୍ରୋଣ ଅବସ୍ଥା ।
ଦ୍ରୁପଦ ସେଦିନୁଁ ମୁଗ୍ଧ ହୋଇଥିଲେ
ଅରଜୁନ ରୂପ ଗୁଣକୁ ଚହିଁ,
ମନାସିଥିଲେ ସେ ଝିଅଟିଏ ହେଲେ
ଅର୍ଜୁନଙ୍କୁ ଆରେ କରିବ ଜ୍ୱାଇଁ ।
ଝିଅ ହେଲା ନାହିଁ ବହୁ ଦିନ ଯାଏଁ
ଯଜ୍ଞଟିଏ କଲେ ବ୍ୟାସଙ୍କୁ ନେଇ,
ଯଜ୍ଞରୁ ଜନମ ହେଲା ଝିଅଟିଏ
ପୂରନ୍ତେ କାମନା ଅର୍ଜ୍ଜୁନେ ଦେଇ ।

କାଲୁ ସେ ଶୁଣିଲେ ଜତୁଘରେ ପୋଡ଼ି
ମାଆ ଭାଇ ସହ ମଲେ ଅର୍ଜ୍ଜୁନ,
ଆଜ ସେଥିପାଇଁ ପାଞ୍ଚାଳ ନଗରେ
ସ୍ୱୟମ୍ବର ପାଇଁ ଏ ଆୟୋଜନ ।
ରାମାୟଣ ମହା- ଭାରତ ଆମର
ପୁରୁଣା ପୁରାଣ ପବିତ୍ର ପୋଥି,
ସେଥିରେ କପଟ ଅଛି ଧର୍ମନୀତି
ରାଜନୀତି ପୁଣି ସମାଜନୀତି ।
ଦେଖିବା ସେତକ ଖୋଜଖାଜ କରି
ଲେଉଟାଇ ଦେଇ ପତର ତାର,
ପଢ଼ି ଶୁଣି କରି ସଂସାରେ ସମାଜେ
ଯତନେ କରିବା ତା କାରବାର ।
ଆମ ସମାଜରେ ଜାତିର ବିଚାର
ପହିଲେ ନ ଥିଲା କୋଉଠି କେବେ,
ହେଲା ତାର ସୃଷ୍ଟି ଅଭାବରେ ପଡ଼ି
ନରମ ବନ୍ଧନ ହୋଇଲା ଯେବେ ।
କାମ ଅନୁସାରେ ହେଲା ଜାତି ନାମ
ଏଇନା ସେଇଟା ହୋଇଛି ଦୃଢ଼,
ସେହି ଦୃଢ଼ତାକୁ ରଖିବା ପାଇଁକି
ହିନ୍ଦୁ ସମାଜଟା ହୋଇଛି ମୂଢ଼ ।
ଏସବୁ ସଂସ୍କାର କିବା କୁସଂସ୍କାର
ବର୍ତ୍ତମାନ ତାକୁ ଦେଇଛି ବାଛି,
ତେବେ ବି ରକ୍ଷଣ- ଶୀଳତା ଯାଉନି
କ୍ଷତି ଛଡ଼ା ଲାଭ ହେଉନି କିଛି ।
ଜାତି ବଇରତା ଧର୍ମ ବଇରତା
ବ୍ୟାପି ଯାଇଅଛି ଦେଶଟାଯାକ,
ଗୁଡ଼ ଗୁଡ଼ ବୋଲି ଡାକ ପଡ଼ୁଅଛି
କେହି ତ ଶୁଣୁନି କାହାରି ଡାକ ।

କାଳେ କାଳେ ଆମ          ପୁରଗଣେ ମିଳଇ
ବ୍ରାହ୍ମଣ ମନ୍ତ୍ରୀକୁ କ୍ଷତ୍ରିୟ ରଜା,
ଏଇନାଏଁ ରଜା          ରାଜତ୍ୱ ଗଲେ ବି
ନାଆଁ ଯାଇ ନାହିଁ ଏଇ ତ ମଜା ।
ଅସବର୍ଣ୍ଣ ବାଧା          ହେଲାଣି ଏଇନା
ତଥାପି ଯାଉନା ଜାତି-ବିଗୁର,
ଆଦିବାସୀ ଆଜି          ଲୋକପ୍ରତିନିଧି
ଚାଟଶାଳ ପଢ଼େ ନ ଥାଉ ତାର ।
ମନ୍ତ୍ରୀର ଆସନ          ନୁହେ ସଂରକ୍ଷିତ
କେବଳ ପଢ଼ୁଆ ବ୍ରାହ୍ମଣ ପାଇଁ,
ଯିଏ ଇଚ୍ଛା ସିଏ          ହୋଇପାରେ ମନ୍ତ୍ରୀ
ଜାତି ଗୁଣ କିଛି ବିଗୁର ନାହିଁ ।
ତେବେ ବି ସବୁଠି          ବାଡ଼ୁଆ ବାଢ଼େଇ
ଜାତିଆଣ ମେଣ୍ଢ ଠାଆକୁ ଠାଆ,
ସମ୍ପତ୍ତି ପାଇଁକି          ଭାଇ ତ ଭାଇକୁ
ନିତି ପିଟି ପିଠେ କରୁଛି ଘାଆ ।
ସଭାଟିଏ କଲେ          ଭାଇ ଭାଇ ବୋଲି
ମଞ୍ଚରେ ମିଛରେ ଶୁଭଇ ଚାଟି,
କିନ୍ତୁ ଘରେ ଘରେ          ଭାଇ ପାଇଁ ଭାଇ
କାନ୍ଥରେ ବାଡ଼ରେ ଗ୍ରୁଟୁଛି ମାଟି ।
କାହାର ପବନ          କାହାର ଦେହରେ
ବାଜିବା ପାଇଁକି ରଖୁନି ବାଟ,
ଜଳାଟିଏ କାହିଁ          ଭୁଲରେ ରହିଲେ
ଘରଣୀ ପିଟୁଛି ଢେଙ୍କୁଳ ଗୁଣ୍ଠ ।
ସେଥିପାଇଁ ଆମ          ଶାସନ-ବିଧାନ
ନାରୀ ଅଧିକାର ଦେଲାଣି ଟଙ୍କି,
କଏ ବା ଜାଣିଛି          ଆମ ସମାଜଟା
ସୁଖ ଭୁଞ୍ଜିବ କି ହୋଇବ ଟଙ୍କି ।

ବିଧବା ବିବାହ ଚଳନ୍ତି ସମାଜେ
ବାଲ୍ୟ ବିବାହ ହେଲାଣି ଲୁପ୍ତ,
ତେବେ ବି ସମାଜ ନୁହେଁ ହସିଆର
ଛଳନା କରୁଛି ସତେ କି ସୁପ୍ତ ।
ଏହି ତ ଆମର ସମାଜ-ସଂସ୍କାର
ପୋଥିର ପାଠ କି ନୁହଇ ଛଏ,
ମୂଳରୁ ସମାଜ ଲଙ୍ଗୁଳି ତ ମୋଡ଼ା
ତାକୁ ବା ସଳଖି ପାରିବ କିଏ ?
ରଜା ବେଳେ ବେଳେ ମାଡ଼ଇ ଅମଡ଼ା
ରାଜସ ଗୁଣର ପ୍ରଭାବେ ପଡ଼ି,
ମନ୍ତ୍ରୀ ସୁଧାରଇ ସୁମନ୍ତ୍ରଣା ଦେଇ
ସାତ୍ତ୍ୱିକ ଗୁଣକୁ ପ୍ରବଳ କରି ।
ବ୍ରାହ୍ମଣ ବି ହୁଏ ନିଜେ ତାମସିକ
ଶାପକୁ କରଇ ମାରଣା ମନ୍ତ୍ର,
ପରମାଣୁ ପରି ଅଦୃଶ୍ୟ ସେ ପିନା
ହିଂସାରେ ଲୋଡ଼େ ସେ ଅମୋଘ ଅସ୍ତ୍ର ।
ରଜା କାଳେ କାଳେ ଲୋଭ ପରବଶ
ପରନାରୀ ରାଜ୍ୟ କରଇ ଲୋଭ,
ପରକୁ ସଂହାରି ତାର ସବୁ ହରି
ଭୋଗ କରିବାକୁ କରେନା କ୍ଷୋଭ ।
କାର୍ତ୍ତବୀର୍ଯ୍ୟ ରଜା ଲୋଭ କଲେ ଦେଖି
ଯମଦଗ୍ନିଙ୍କର ଆଶ୍ରମ ଗାଈ,
ଇଚ୍ଛା କଲେ ନେବେ ଋଷି ଦେଲେ ନାହିଁ
ତେଣୁ ତାଙ୍କୁ ମାରି ନେଲେ ଛଡ଼ାଇ ।
ଯମଦଗ୍ନିଙ୍କର ପୁଅ ପର୍ଶୁରାମ
ପିତୃବଇରିର ସଂହାର ପାଇଁ,
କରିଲେ ପ୍ରତିଜ୍ଞା ସଂହାରିଲେ ତାଙ୍କୁ
ମାରିଲେ ବି ଅନ୍ୟ କ୍ଷତ୍ରିୟ ପାଇଁ ।

ପର୍ଶୁରାମ ପୁଣି ମାରିଲେ ଜନମ
ପିଏ ଥିଲେ ବୋଲି କ୍ଷତ୍ରିୟ ଝିଅ,
ପୁରାଣ ପୃଷ୍ଠାକୁ ଓଲଟାଇ ଗଲେ
ମିଳିଯିବ ଏହା ସତ୍ୟର ଖିଅ ।
ବିଶ୍ୱାମିତ୍ର ପୁଣି ଯମଦଗ୍ନି ପରି
ମାଉସୀର ପୁଅ ଦୁଇଟି ଭାଇ,
ଜଣେ ହେଲେ ରଜା ଆରେକ ବ୍ରାହ୍ମଣ
ନାହିଁ ରାଜ୍ୟବାଡ଼ କଅଣ ପାଇଁ ?
ରାଜଭୋଗ ଛାଡ଼ି ତପସ୍ୟା ଆଚରି
କଉଶିକ କଆଁ ବ୍ରାହ୍ମଣ ହେଲେ,
ତ୍ରିଶଙ୍କୁର ପାଇଁ ହୋମଟିଏ କରି
ତାକୁ ବି ସରଗେ ପଠାଇଦେଲେ ।
ତଥାପି ବଶିଷ୍ଠ ମାନବେ ନାହିଁ ତା
କହନ୍ତି କେବଳ ତାଙ୍କୁ ରାଜର୍ଷି,
ବିଶ୍ୱାମିତ୍ର ରାଗି ଅଭିଶାପ ଦେଇ
ବଶିଷ୍ଠ ପୁଅଙ୍କୁ ଦେଲେ ବି ଧ୍ୱଂସି ।
ଆହୁରି ତପସ୍ୟା କଲେ ଉଗ୍ରତର
ମନାଇଁ ବ୍ରହ୍ମାଙ୍କୁ ପାଇଲେ ବର,
କେବେ ବଶିଷ୍ଠଙ୍କୁ କରିଦେବେ ଭସ୍ମ
ସେଥିପାଇଁ ହେଲେ ସଦା ତତ୍ପର ।
ଏଥର ମନରେ ଜାଗିଲା ଅହିଂସା
ବଶିଷ୍ଠଙ୍କ ଆଗେ କଲେକ ପଚ୍ଛ,
ସେଇଠୁ ବଶିଷ୍ଠ କହିଲେ ବ୍ରହ୍ମର୍ଷି
ଦୁହିଁଙ୍କର ମନ ହୋଇଲା ସ୍ୱଚ୍ଛ ।
ପର୍ଶୁରାମଙ୍କର ଯାଇ ନାହିଁ ମନୁ
ଏତେବେଳଯାଏ କ୍ଷତ୍ରିୟ ହିଂସା,
ବିଶ୍ୱାମିତ୍ର ନେଇ ଭେଟାଇଲେ ରାମ
ପର୍ଶୁରାମଙ୍କର ତୁଟିଲା ନିଶା ।

ପରାଶର ଥିଲେ ଗୃଣ୍ଡାଳୀ ତନୟ
କେଉଁଠି ଝିଅକୁ ରମିଲେ ସିଏ,
ସେହି ଗରଭରୁ ବ୍ୟାସଙ୍କ ଜନମ
ତାଙ୍କୁ ବା ବ୍ରାହ୍ମଣ କହିଲା କିଏ ?
ବଶିଷ୍ଠ ତ ପୁଣି ବେଶ୍ୟାର ତନୟ
ସେ ତ ହେଲେ ପୁଣି ବ୍ରାହ୍ମଣ ଋଷି,
ସେଥିପାଇଁ କାହିଁ ସମାଜ ଧର୍ମ ତ
ଜାତ ବା ଅଜାତ ବାଛୁନ ବସି !
ସେହି ବ୍ୟାସଦେବ ସେହି ମାଛଗନ୍ଧା
କୌରବ କୁଳର ଜନମ ପିତା,
ସେତେବେଳେ କାହିଁ ଆମ ସମାଜରେ
ନ ଥିଲା ତ କାହିଁ ଜାତିର ଚିନ୍ତା !
ଧରମ ନାଁରେ ଧର୍ମ ଦୋହି ଦେଇ
ରଜାଙ୍କୁ କରିଥିଲେ କଙ୍କର,
କେତେ ଦିନ ଆଉ ରହନ୍ତା ଏ ନାଁ
ପଦାରେ ପଡ଼ିଲା ସବୁ ଫିକର ।
ରଜା ମାନିଲେନ ଧରମ କଥାକୁ
ମନୋମୁଖୀ କାମ କରିଲା ସିଏ,
ରଜା ହାତରେ ତ ସବୁ ବଳଯାକ
ତାକୁ ବା ନିବାରି ପାରନ୍ତା କିଏ ?
ରଜା ଅତ୍ୟାଚ୍ଚର ସହି ହେଲା ନାହିଁ
ବିଦ୍ରୋହ ଅନଳ ଉଠିଲା ଜଳି,
ପ୍ରଜା ମେଣ୍ଟ ହେଲେ ଅଣ୍ଟା ଭିଡ଼ି କରି
ରଜାର ଦମାକ ଦେବାକୁ ଦଳି ।
ଏହି ବିଦ୍ରୋହରେ ଧ୍ୱଂସି ହୋଇଗଲା
ସଂସାରର ସବୁ ସୁଖ ସମୃଦ୍ଧି,
ପ୍ରଜା ହେଲେ ଜୟୀ ରଜାକୁ ନିକାଲି
ତାର ସବୁ ବାଟ ଦେଲେଟି ରୁନ୍ଧି ।

ଏହି ହେଲା ଆମ    ଗଣତନ୍ତ୍ର ମତ
  କିନ୍ତୁ ରାଜମତ ନାଆଁଟା ଅଛି,
ଲୋକ ପ୍ରତିନିଧି    ରଜାମୁଖା ପିନ୍ଧି
  ରଜା ଢଙ୍ଗଢାଙ୍ଗ କରୁଛି କିଛି ।
ଏ ଦୋଷଟା କ'ଣ    ସୁଧୁରିବ କେବେ
  କ୍ଷମତା ବଳରେ ହେବନି ଦୁଷ୍ଟ,
ଜଣଙ୍କ ଥାନରେ    ହଜାରଟା ରଜା
  ପୋଷିଲେ ସଂସାର ହେବ କି ପୁଷ୍ଟ ?
ଏଥିପାଇଁ ସିନା    ଯୁଗେ ଯୁଗେ ହରି
  ସରଗ ବରଜ ଆସନ୍ତି ମହୀ,
କିଛି ଦିନ ପାଇଁ    ଦୁଷ୍ଟ ଅତ୍ୟାଗୃହୀ
  ପାପ ତାପ ସବୁ ଦିଅନ୍ତି ଦହି ।
ଏଇନା ଶ୍ରୀକୃଷ୍ଣ    ଧାଇଁ ଆସିଛନ୍ତି
  ଦୁଷ୍ଟଙ୍କୁ ସମୂଳେ କରିବେ ନାଶ,
ନିଜେ ହେବେ ନାହିଁ    କେବେ ହେଲେ ରଜା
  ପ୍ରଜାଟିଏ ପରି କରିବେ ବାସ ।
ସେହି ପ୍ରଜା ହେବ    ଜଗତ ପୂଜିତ
  ରାଜ୍ୟ ନ ଥାଇ ବି ଜଗତନାଥ,
ପାପୀ ତାପୀ ସବୁ    ଲଭିବେ ଦର୍ଶନ
  ଗତି ମୁକ୍ତି ଶାନ୍ତି ସରଗ-ପଥ ।
ଏ ଜାତି ବିଦ୍ୱେଷ    ଏବେ ବି ଯାଇନି
  ସବୁଠି ତାହାର ନଙ୍ଗଳା ବେଶ,
ଧରମ ବିଦ୍ୱେଷ    ତା ସଙ୍ଗେ ମିଶିଛି
  ଅରକ୍ଷିତ ପୁଣି ହେଲଣି ଦେଶ ।
ଧରମ ଭିତରେ    ବିଦ୍ୱେଷ ପଶିଲେ
  ଧରମର ଅର୍ଥ ରହେଟି ଆଜ !
ଶ୍ରୀକୃଷ୍ଣଙ୍କ ମତ    ଶ୍ରୀକୃଷ୍ଣଙ୍କ ଇଚ୍ଛା
  ଧରମଟି ରହି ବିଦ୍ୱେଷ ଯାଉ ।

ଜାତିଆଣ ଭେଦ ଜାତିଆଣ ମେଣ୍ଟ
କାଳେ କାଳେ ଭିଆଇଛି ଅନର୍ଥ,
ଜାତି ଜାତି ବୋଲି ଭୁଲିଲେଣି ସବୁ
ବେଦ ବେଦାନ୍ତର ନିଗୂଢ଼ ଅର୍ଥ ।
ଧର୍ମମାନ ସଙ୍ଗେ ଜାତିମାନ ପଶି
ସମାଜେ ପୋତୁଛି ମୁନିଆଁ କଣ୍ଟା,
ତେଣୁ ତ ସମାଜ ଗୃହିପାରୁ ନାହିଁ
ସଳଖି ପାରୁନି ତାହାର ଅଣ୍ଟା ।
ସଂସାର ସମାଜ ସୁଧାରିବା ପାଇଁ
ପ୍ରଚୁର ହେଉଛି ଅହିଂସା-ମନ୍ତ୍ର,
ମନ ଶୁଦ୍ଧି ନାହିଁ ମନ୍ତ୍ର କାହିଁ ନାହିଁ
ସେଥିପାଇଁ ଆଜ ବଢ଼ୁଛି ତନ୍ତ୍ର ।
ତନ୍ତ୍ରର ସାଧନା କରଇ ତାନ୍ତ୍ରିକ
ରମଣୀ କାଞ୍ଚନ ଆବର ସୁରା,
ସେଥିପାଇଁ ପରା ସଂସାର ସମାଜ
ସେହି ନୈବେଦ୍ୟରେ ହୋଇଛି ପୂରା ।
ସମାଜେ ଦୂଷିତ ଖାଲି ରାଜତନ୍ତ୍ର
ତାକୁ ତଡ଼ିବାକୁ ଖଞ୍ଜିଲେ ଯନ୍ତ୍ର,
ସେ ଯନ୍ତ୍ରଟି କ'ଣ ସତରେ ଅହିଂସା ?
ନିର୍ମଳ ମନ୍ତ୍ର କି କେବଳ ତନ୍ତ୍ର ?
ଯୋଉଠି ଦେଖିବ ଖାଲି ଦଳ ଦଳ
ଦଳମାନ ଏବେ ହୋଇଛି ବଡ଼,
ଯୋଉ ଦଳ ବେଶୀ ସେହି ସମରଥ
ଦଳପତି ଦଳ କରୁଛି ଜଡ଼ ।
ଏହି ତ ଆମର [ଗଣତନ୍ତ୍ର ମାତ
ମୁଖା ପିନ୍ଧିଅଛି ଜଣର ମାତ,
ଚଳୁଛି ସମାଜେ ଧର୍ମାଧିକରଣେ
ରାଜ୍ୟ-ପରିଷଦେ ତେଣୁ ତ ଖ୍ୟାତ ।

ଲକ୍ଷକରେ ଜଣେ ହେବ ପ୍ରତିନିଧି
ଏହି ତ ଆମର ପରମ ଗଣ,
ସେହି ଗଣ ହେବ ଆମକୁ ବ୍ୟବସ୍ଥା
ଏହି ତ ଆବର ଚରମ ପଣ ।
ଜଣ ଜଣ କରି କେତେ ଜଣ ହେବେ
ବାଲୁଆ ବଗିର କରିବେ ବସି,
ସେ ବଗିର ହେବ ଆମର ବିଧାନ
ତାକୁ ସଂଶୋଧିବ ଜଣେ ରାଜର୍ଷି ।
ସେ ରାଜର୍ଷି କିଏ ? ନିଷ୍ଫଳ ଜନକ
କିବା ଅନୁରୂପ କୋଉଠି ଗଣ,
ଯୋଉ ଜଣକୁ ତ ପୁଣି ସେହି ଜଣେ
ତେଣୁ କ'ଣ ରାମରାଜ୍ୟର ଗୁଣ ?
ନାହିଁ ରାମ ନାହିଁ ସେ ରାଜ୍ୟ ତ ଆଉ
କାହାକୁ କାହିଁକି କରିବା ଇନ୍ଦ୍ର,
ହଜାର ଆଖିରେ ହଜାର ପ୍ରକାଟରେ
ଖୋଜି ବୁଲିବ ସେ ହିଂସାରେ ଛିଦ୍ର ।
ମାରି ସେ ରଜାକୁ ନିଅ ତା ରାଜ୍ୟକୁ
ଶୃଗାଳ ଶାଗୁଣା ହୋଇବା ସର୍ବେ,
ସେ ଯାହାର ଭାଗ ଭୁଞ୍ଜିଲୁ ଯେ ପାରେ
ଏ ମତ ଦେଖାଇ ଦେବା ଗରବେ ।
ଦଳ ଛୁଉଦେଲେ ହୋଇବା ନିର୍ବଳ
ଭଲ ମନ୍ଦ କରି ଗଢ଼ିବା ଦଳ,
ଏହି ତ ଆମର ରାଜନଇତିକ
ପୁରୁଷମାନଙ୍କ ଚୋଟିଏ ବଳ ।
ଦଳ ଭାଙ୍ଗୁଥିବ ଦଳ ଗଢ଼ୁଥିବ
ତେବେ ତ ଗୁଳିବ ଗଣର ମାତ,
ମଣିବ ଭିତରେ ବାହାରେ ସବୁଠି
ଦୁର୍ନୀତି ସଙ୍ଗରେ କର୍ମନୀତି ।

ସେଥିପାଇଁ ବୃଣି ହେବ ଅବତାର
ନାସ୍ତିକ କ କେବେ ମାନିବ, ଏହା,
ଯୁଗେ ଯୁଗେ ଫେରି ହୋଇ ଯାଇଅଛୁ
କିଏ ସେ ରୋକିବ ଏଇନା ତାହା ?
ଲୋକଙ୍କର ଆୟୁ ସରି ତ ଗଲାଣି
ଦେଖି ପାରିବନି ସେ ଅବତାର,
ପତିତପାବନ ବଡ଼ ଦେଉଳରେ
ସେହି ମୂର୍ତ୍ତିଟି ଶରଣ ତାର ।



# ପାଞ୍ଚାଳେ ଶ୍ରୀକୃଷ୍ଣ

ଦ୍ରୁପଦ ନଗରେ ଆନନ୍ଦ ଉତ୍ସବ
ଦ୍ରୌପଦୀ ବର ବରିବେ ପରା,
ଶୀତ ଯାଇ ନାହିଁ ଗ୍ରୀଷ୍ମ ଆସି ନାହିଁ
ଧରାରେ ପଡ଼ୁନି ପ୍ରଖର ଖରା ।
ଫଗୁଣ ମାସର କୁହୁଡ଼ିଆ ଜଧା
ଉଇଁ ଆସୁ ଆସୁ ପାରୁନି ଉଇଁ,
ବାଳ ରବିକର ମୁଣ୍ଡଟି ଟେକୁଛି
ଦିଗ୍‌ବଳୟରୁ ଶିର ପାରୁନି ଛୁଇଁ ।
ଆମ୍ବ ବଉଳର ସୁଗନ୍ଧ ସୌରଭ
କୁହୁଡ଼ ପାଣିରେ ଯାଇଛି ଭିଜି,
ଚାଲି ପାରୁ ନାହିଁ ଚଞ୍ଚଳ ଚଞ୍ଚଳ
ଚାଲୁ ଚାଲୁ ବାଟେ ଯାଉଛି ହଜି ।
ଦକ୍ଷିଣା ପବନ ଉଡ଼ିପାରୁ ନାହିଁ
ହିମ ବାଆ ଲାଗି ଯାଉଛି ଥରି,
କିବା କୁହୁଡ଼ିଆ ଅନ୍ଧାରକୁ ଦେଖି
ଅଳପ ଅଳସ ଯାଉଛି ଡରି ।
କୋଇଲି ଗୋଟାଏ ଗାଇବି ଗାଇବି
ଚେହ୍ୱାଇ ତ କାହିଁକି ପାରୁନି ଗାଇ,
ଗଗନ ପବନୁଁ ହଟି ହଟି ନାହିଁ
ଫଗୁଆ କୁହୁଡ଼ ବହଳା ଛୁଇ ।

କେତେ କଏ ସବୁ ଯାଆନ୍ତି ଆସନ୍ତି
ଦୂରରୁ କାହାକୁ ହେଉନ ଚହ୍ନି,
ଖବ ଫଡ଼୍ ନାହିଁ ଗୁଇ ପଡ଼୍ ନାହିଁ
ମେଘୁଆ ପାଗକୁ ଯାଇଛୁ ଜଣି ।
ମୁଣ୍ଡର ବାଳରେ ଜମି ଯାଉଅଛୁ
ଗୁଣ୍ଡ ଗୁଣ୍ଡ କେତେ କାକର ଗୁଣ୍ଡି,
ଚଢ଼େଇଗୁଡ଼ାକ ଗଛଡ଼ାଳେ ବସି
ଫୋକଜୋକ ପାରୁ ନାହାନ୍ତି ଉଣ୍ଡି ।
ସିଂହ ଦରଜାରେ ଅମଳ ପଡ଼ଆ
ସବୁଜ ଗାଲଗ୍ନ ଚହିଁରେ ଫବି
ଫୋପା ଫୋପା ହୋଇ କାକର ଚଢ଼ୁଛି
ଝଟକୁଛି ଯେହ୍ନେ ମୁକୁତା-ଝବି ।
ପଡ଼ଆ ମଝିରେ ଡେଙ୍ଗା ଖୁଣ୍ଟଏ
ଉଚ୍ଚରେ ବନ୍ଦେ ପାତଟା ଚାଲ,
ଚାହାଲି ଅଗରେ ବେହ୍ନ ମାଛଟାଏ
ତା ତଳେ ବୁଲୁଛି ଚଳ ଚଞ୍ଚଳ ।
ଚଳ ରନ୍ଧ୍ରେ ରନ୍ଧ୍ରେ ଦିଶୁଅଛି ମାଛ
ଆଖି ଯୋଡ଼ାକ ତା ଜଳୁଛି ଫଡ଼ି,
କେତେ କଉଣଲେ ବନ୍ଧା ହୋଇଅଛି
ଝୁଣ୍ଟେ ହଲଲେ ବ ପଡ଼ୁନ ଝଡ଼ି ।
ସବା ତଳେ ଅଛି ପାଣି ପାଏଟାଏ
ଚହିଁରେ ପଡ଼ୁଛି ମାଛର ଗ୍ଲାଇ,
ଯିଏ ବନ୍ଧବ ସେ ଚଳ ଛିଦ୍ର-ପଥେ
ତଳ ପାଣି ଦେଖେ ଗ୍ଲାଇକୁ ଚହିଁ—
ସେ ପାଇବ ଝିଅ ଅଛୁ ଏହ୍ନ ପଣ
ନ ହେଲେ ସେ ଯିବ ସେଇଠୁଁ ଫେରି,
ସେଇଥି ପାଇଁ କ ଡକାଇ ଆଣିଛୁ
ରଜା ରଜାପୁଅ ବରଣ କରି ।

ବାଟରେ ଘାଟରେ    ଭିଡ଼ ଚଳିଅଛି
    କନ୍ଧରେ କନ୍ଧରେ ବାରଣ ବାଜି,
ଦାଣ୍ଡ ଦୁଇ ପାଖେ    ରଥ ଧାଡ଼ି ଧାଡ଼ି
    ହୋଇଛନ୍ତି ଜରି ବନାତେ ସାଜି ।
ରଥରେ ରଥରେ    ରଥୀ ରାଜପୁତ୍ର
    ଘୋଡ଼ାରେ ଘୋଡ଼ାରେ ଶୈଖା ରାଉତ,
ହାତୀ ହାଉଦାରେ    କେଉଁ ରାଜପୁତ୍ର
    ହାତୀ କାନ୍ଧେ କାନ୍ଧେ ଦକ୍ଷ ମାହୁନ୍ତ ।
ଆସିଲେ ରଜାଏ    ବେଶଭୂଷା ପିନ୍ଧି
    ଆସିଥିଲେ ମଧ୍ୟ ଶ୍ରୀକୃଷ୍ଣ ହଳୀ,
ଦୁର୍ଯ୍ୟୋଧନ ଶତେ    ଭାଇ ଆସିଥିଲେ
    କଉରବ ବଳ ସଙ୍ଗରେ ଧରି ।
ଜତୁଗୃହ ଦାହୁଁ    ଉଦ୍ଧରି ପାଣ୍ଡବେ
    ବୁଲି ବୁଲି ନାନା ନଗର ଦେଶ,
ପାଞ୍ଚାଳ ରାଜ୍ୟରେ    ପହଞ୍ଚିଥିଲେ ସେ
    ପିନ୍ଧି ଧାନହୀନ ବ୍ରାହ୍ମଣ ବେଶ ।
ଜ୍ୟୋତି ଜଳୁଥିଲା    ଦେହରେ ଦେହରେ
    ଅଙ୍ଗାର ଦେହରେ ଅନଳ ପରି,
ମହଳ ମୁହଁରେ    ହସ ଦିଶୁଥିଲା
    କରେ କମଣ୍ଡଳୁ ଥିଲେ ସେ ଧରି ।
କପାଳରେ ଚିତା    କାନ୍ଧରେ ପଇତା
    ହିକଛ କାଢେଣି ଉଜ୍ଜ୍ୱଳ କାନ୍ତି,
ଅଙ୍ଗରେ ଅଙ୍ଗରେ    ଫୁଟି ଦିଶୁଥିଲା
    ଦେବତା ମୂରତି ବିମଳ ଶାନ୍ତି ।
ଧୃଷ୍ଟଦ୍ୟୁମ୍ନ ଆସି    ସଭାମଣ୍ଡପରେ
    କହିଲା ଉଚ୍ଚରେ ରଜାଙ୍କୁ ଚାହିଁ,
"ଯିଏ ଅଛ ରଜା    ଜଣ ଜଣ କରି
    ଧନୁ ଧରି ଲକ୍ଷ ବିନ୍ଧ ହେବ ଯାଇଁ ।"

ଗଲେ ଜଣେ ଜଣେ ବାହୁଡ଼ି ଆସିଲେ
କେହି ହେଲେ ବନ୍ଧି ପାରଲେ ନାହିଁ,
ଧୃଷ୍ଟଦ୍ୟୁମ୍ନ ପୁଣି କହିଲା "ଶୁଣ୍ଡାଳ,
ବ୍ରାହ୍ମଣ ଯେ ପାରେ ବନ୍ଧୁ ସେ ଯାଇ ।"
ଦ୍ରୋଣ ଗୁରୁ କର୍ଣ୍ଣ ଦୁହେଁ ଲକ୍ଷ୍ୟଭେଦୀ
ଲଖ ବନ୍ଧିବାରେ ଉଭୟ ଦକ୍ଷ,
କିନ୍ତୁ କୃଷ୍ଣ ପେଶି ସୁଦର୍ଶନ ଚକ୍ର
ବଢାଇ ଦେଲେନ ତାହାଙ୍କୁ ଲକ୍ଷ୍ୟ ।
ଭୀଷ୍ମ ବନ୍ଧିଥାନ୍ତେ ଶିଖଣ୍ଡି ଟା ଆସି
ଠିଆହେଲା ଆଗେ ଛାଇ ଦେଖାଇ,
ବାହୁଡ଼ିଲେ ଭୀଷ୍ମ ମୁହଁ କୁହୁଲାଇ
ଶିଖଣ୍ଡିକୁ ଆଗେ ଦେଇ ଅନାଇଁ ।
ପାଞ୍ଚଜନ୍ୟ ଶଙ୍ଖ ଡାକିଲା ଗମ୍ଭୀରେ
"ଉଠ ଫାଲଗୁନୀ ବନ୍ଧ ଯା ଲଖ,
କେହି ବନ୍ଧିବେନ ଧୃଷ୍ଟଦ୍ୟୁମ୍ନ ଚେଣେ
ଭୁହାଇ ଭୁହାଇ ଦେଲାଣି ଡାକ ।
ଉଠ ଉଠ ବେଗେ ମଠ କର ନାହିଁ
ଲଖ ବନ୍ଧି କନ୍ୟା କର ତୁମର,
ଦ୍ରୌପଦୀ ଜନମ ତୁମରି ପାଇଁକି
ତୁମେହିଁ କେବଳ ତା ଯୋଗ୍ୟ ବର ।"
ରାମ ଅନାଇଁଲେ କୃଷ୍ଣଙ୍କ ମୁହଁକୁ
କହିଲେ "କୃଷ୍ଣ ତୁ ବନ୍ଧନୁ ଯାଇ ?"
ଶ୍ରୀକୃଷ୍ଣ କହିଲେ "ଅର୍ଜୁନ ବନ୍ଧିବ,
ତାହା ଛଡ଼ା କେହି ପାରିବେ ନାହିଁ ।"
ରାମ ପଚାରିଲେ ବସୁଦ୍ଧୁରେ ପୁଣି
"ଅର୍ଜୁନକୁ ଦେଖିଲୁ କି ସପନ,
ଜଉଘରେ ପୋଡ଼ି ପାଣ୍ଡବେ ତ ମଲେ
କାହୁଁ ତୁ ପାଇଲୁ ଏଠି ଅର୍ଜୁନ ?

ପାଣ୍ଡବେ କି ତେବେ ମର ନାହାନ୍ତି ରେ
ମନ ଖୋଲି କହିଁ କହୁନୁ ସତ,
କେତେ ମତେ ଛଳି ପାରୁ ରେ ଶ୍ରୀକୃଷ୍ଣ
ମୋ ପାଖରେ ତୋର ଏତେ କପଟ !
ସେଦିନ କାନ୍ଦିଲୁ କେତେ ତୁ ବାହୁନି
ସେ କାନ୍ଦଣା ତେବେ କେବଳ ମିଛ ?
ଦେଖୁଛି ତୋ ମନ ବଡ଼ କୁଟିଳ ରେ
ମୋ ପାଖରେ ପୁଣି ନୁହେ ତା ସ୍ୱଚ୍ଛ ।"
ଶ୍ରୀକୃଷ୍ଣ କହିଲେ "ଖଳ ପାଖେ ଖଳ
ଛଳ ପାଖେ ଛଳ ରଜାର ମତ,
ଦେଖୁନା ଟିକଏ ଦୁର୍ଯ୍ୟୋଧନକୁ ହେ
କେଡ଼ାଏଁ କୁଟିଳ ସେଟାର ମତ !
ପାଣ୍ଡବେ ଜନ୍ମରୁ ବଡ଼ ହତଭାଗ୍ୟ
ନାହିଁ ରାଜ୍ୟବାଡ଼ ନାହିଁ ବ ଧନ,
ଦୁର୍ଯ୍ୟୋଧନ ତାଙ୍କୁ ଭାଗ ଦେବ ନାହିଁ
ଏହି ପାଞ୍ଚ ପାଞ୍ଚିଅଛି ତା ମନ ।
ତେଣୁ ସିନା ସିଏ ଜଉଘର କରି
ପୋଡ଼ି ମାରୁଥିଲା କପଟ କରି,
ବଞ୍ଚାଇଲି ବାଟ ମଲେ ନାହିଁ ସିଏ
କହନ୍ତୁ ଏ କଥା ମୁଁ ବା କପରି ?"
ଆହୁରି କହିଲେ "ଏଇନା ଏଠେଇଁ
ଦେଖ ପାଞ୍ଚ ଭାଇ ବ୍ରାହ୍ମଣ ବେଶେ,
ଦେଖ ଭଲକରି ବ୍ରାହ୍ମଣ ଭିତରେ
ପାଞ୍ଚ ଜଣ ବସିଛନ୍ତି କିଏ ସେ ?"
ଦେବେ କହିଲେ "ପାଣ୍ଡବେ ମରିବେ;
ଧର୍ମ ସଂସ୍ଥାପନା କରିବ କିଏ ?
ଲୁଚି ଲୁଚି କରି ବଣ ଜଙ୍ଗଲରେ
ଦେଶ ବିଦେଶରେ ଥିଲେ ତ ସିଏ !

ଅରଜୁନଙ୍କୁ ତ ହାତ କରିବାକୁ
ଦ୍ରୁପଦ କରଇଥିଲା ହେ ଯଜ୍ଞ,
ସେହି ଯଜ୍ଞାନଳୁ ଜନମ ଦ୍ରୌପଦୀ
ଯାଜ୍ଞସେନୀ ତେଣୁ ତାହାର ନାମ ।
ସେହି ଝିଅ ଇଏ ଦଅନ୍ତା ଅର୍ଜୁନେ,
କିନ୍ତୁ ସେ ଶୁଣିଲା ଅର୍ଜୁନ ମଲା,
ଦ୍ରୌପଦୀଙ୍କୁ ତେବେ କାହାକୁ ଦଅନ୍ତା
ସେଥିପାଇଁ ସିନା ଏ ଲକ୍ଷ କଲା ?
ଯଜ୍ଞଫଳ କ'ଣ ପାଆନ୍ତା ନାହିଁ କି
ଯଜ୍ଞ ତେବେ କେହି କରିବେ ନାହିଁ ?
ଧରମ କରମ ଲୋପ ହୋଇଯିବ
କୁକର୍ମକୁ ସବୁ ବସିବା ଗୃହିଁ ?
ଆସିଛନ୍ତି ଧର୍ମ ଯୁଧିଷ୍ଠିର ରୂପେ
ବସିଛନ୍ତି ସେଠି ସାଧୂଟି ପରି,
ଆସିଛୁ ପବନ ଭୀମ ରୂପେ ଦେଖ
ପ୍ରଭଞ୍ଜନ ସମ ଥରୁଛୁ ପଡ଼ ।
ସେଠି ଅରଜୁନ ନିଜେ ତ ବାସବ
ବଜ୍ରକୁ ଗା ିବ ଅଛୁ ସେ କରି,
ଅଶ୍ୱିନୀ ବିଜୟୁ ନକୁଳ ରୂପରେ
ସୁକୁମାର ତନୁଟିଏ ସେ ଧରି ।
ବୃହସ୍ପତି ସେଠି ନିଜେ ସହଦେବ
ହସୁଛୁ ହାତକୁ ଅନାଇଁ କରି,
କର୍ଣ୍ଣ ସିଏ ସିଏ ପ୍ରତ୍ୟକ୍ଷ ମାର୍ତ୍ତଣ୍ଡ
ଶକୁନ୍ତା ଶୁଦ୍ଧ ଶାଗୁଣା ପରି ।
ପାଣ୍ଡବ କୁଳରେ ଦ୍ରୌପଦୀ ଅନଳ
ଆଜ ଏହିଠାରେ ହେବ ସଂଯୋଗ,
ଆଜ ଅଳ୍ପ ଦିନେ ହସ୍ତିନା ନଗରେ
ଜଳବ ଜାଳବ ହେବ ଦୁର୍ଯୋଗ ।"

ଶଙ୍ଖ ଘନ ଘନ          ଶୁଣିଲେ ଅର୍ଜୁନ
ଜାଣିଲେ ଶ୍ରୀକୃଷ୍ଣ ଅଛନ୍ତି ସାହା,
କମ୍ପାଇଲେ ବକ୍ଷ          ଘନ ଘନ କରି
ଖାର ଦରପରେ ନାଚିଲା ବାହା ।
ଲକ୍ଷ୍ୟ ପାଖେ ଯାଇ          ଉଠାଇଲେ ଧନୁ
ଚଢ଼ାଇଲେ ଗୁଣ ବନ୍ଧିଲେ ଶର,
ଫୁଟାଇଲା ଆଖି          ପକାଇଲା ମାଛ
ସକଳେ ଦେଖିଲେ ଧରଣୀ ପର ।
ଦ୍ରୌପଦୀଙ୍କୁ ସେଠି          ବାହା ହେଇଥିଲେ
ପାଞ୍ଚ ଭାଇଯାକ କାହିଁ ପାଇଁ ?
ସୃଷ୍ଟି ହେଲା ଦିନୁ          ତିନିପୁରରେ କାହିଁ
ଏପରି ବିବାହ ଦେଖା ତ ନାହିଁ !
ବୈରତା ଭିତରେ          ଦାଗୀ ବଇରତା
ସବୁଠାରୁ ସିନା ଉତ୍କଟତମ,
ସେହି ବଇରତା          ଦୂର କରିବାକୁ
ଦ୍ରୌପଦୀ କେବଳ ମାତର କ୍ଷମ ।
ଘରକରଣାରେ          ପାଞ୍ଚଟା ଭାଇଙ୍କୁ
ଏକାଠି ରଖିବା ଉପାୟଟିଏ,
ଦ୍ରୌପଦୀ କେବଳ          ଜାଣନ୍ତି ଏ ମାତ୍ର
ଶିଖାଇ ପାରିବେ ସଭିଙ୍କୁ ସିଏ ।
ପାଞ୍ଚଜନ୍ୟ ଶଙ୍ଖ          ବଜାଇ ଥିବାରୁ
ପାଞ୍ଚ ଭରତା କ ହୋଇଲେ ଆଉ ?
ଏଇନା ତ ନୂଆ          କାଲେ କାଲେ ମଧ୍ୟ
ଏ ନୂଆ କଥାଟି ବରତି ଥାଉ ।
ଆଉ କୋଉଠେଇ          ହେବନି ଏ କଥା
ଚିରଦିନ ଥାଉ ନୂଆ ପୁରୁଣା,
ତଥାପି କୋଉଠି          ଦ୍ରୌପଦୀ ମର୍ଯ୍ୟାଦା
ସତୀ ମହତରୁ ହେବନି ଊଣା ।

ଦ୍ରୌପଦୀ ବିବାହେ ଗଢ଼ିଥିଲେ କୃଷ୍ଣ
ସମାଜେ ସଂସାରେ ନୂଆ ଏ ନୀତି,
ସେହି ତ ଏଥିରେ ପରାମର୍ଶଦାତା
ନିମିତ୍ତ କେବଳ ଜନନୀ କୁନ୍ତୀ ।
ପୁଣି ରାଜନୀତି ଏଥିରେ ମିଶିଛି
ଯୁଧିଷ୍ଠିର ହେବେ ରାଜାଧିରାଜ,
ଦୁର୍ଯ୍ୟୋଧନ ଶତେ ଭାଇ ହେବେ ହତ
ଭାରତ-ସମରେ ହେବ ଏ କାର୍ଯ୍ୟ ।
ଅଦୃଷ୍ଟ ରହିଲ ଏଇନା ଅଦୃଶ୍ୟ
ସ୍ୱଚ୍ଛ କାଚ ପଛେ ଲଗିନି ପାରା,
ହେଲା ଆୟୋଜନ ଆଜିଠାରୁ ଏଠି
ନିକଟ ଭବିଷ୍ୟେ ଦିଶିବ ପରା !
କଉରବେ ହାରି ଫେରିଲେ ହସ୍ତିନା
ଧୃତରାଷ୍ଟ୍ର ଶୁଣି କହିଲ ଧନ୍ୟ,
କି ଯୋଗରେ କୁନ୍ତୀ ପୁଅ ଜନ୍ମକଲା
ସଂସାରୁ ବାହାର ସେ ପାଞ୍ଚ ଜଣ ।
ଡକାଇ ଆଣିଲ ହସ୍ତିନାପୁରକୁ
ରଖିଲ ଦେଇଣ ଖାଣ୍ଡବପ୍ରସ୍ଥ,
ରାଜସୂୟ ଯଜ୍ଞ ଏଇଠି ହୋଇବ
ନାଆଁ ହେବ ତାର ଇନ୍ଦ୍ରପ୍ରସ୍ଥ ।
ଦୁର୍ଯ୍ୟୋଧନ ଖାଲି ଜଳିବ ହିଂସାରେ
ପାଣ୍ଡବ ସଂପଦ ସହିବ ନାହିଁ,
କପଟ ହରିବ ପାଣ୍ଡବଙ୍କ ଶିରୀ
ସେହି ଉପାୟକୁ ବସିବ ଚାହିଁ ।
ମାମୁଁ ବତାଇବ ଯୁଧିଷ୍ଠିରଙ୍କୁ ଡାକି
ଖେଳାଇବ ନେଇ କପଟ ପଶା,
ହାରିବେ ଧରମ ଧନ ଜନ ନାରୀ
ଦ୍ରୌପଦୀ ହେବେ ଭଗାରହସା ।

ଦୁଃଶାସନ ନେବ ଚୁଟି ଧରି କରି
ଦ୍ରୌପଦୀଙ୍କୁ କୁରୁ ସଭାସ୍ଥଳକୁ,
ଭୀଷ୍ମ ଦ୍ରୋଣ ବସି ଦେଖୁଥିବେ ସବୁ
ମୁହଁ ପୋତି କରି ଖାଲି ତଳକୁ ।
ଦୁର୍ଯ୍ୟୋଧନ ଅଜ୍ଞା ପାଇ ଦୁଃଶାସନ
ଲଙ୍ଗଳା କରିବ ବସନ ଟାଣି,
ଦ୍ରୌପଦୀ ଆରତ ଶୁଣିବେ ଶ୍ରୀକୃଷ୍ଣ
ବସନ ଦେବେ ସେ ସମୟ ଜାଣି ।
ଓଟାରି ଓଟାରି ବାସ ସରିବନି
ଜାନୁ ପଡ଼ିବନି ମିଳିବନି ଦେଖା,
ଚରମ ଉପରେ ଅଢ଼ୁଆ କୁନ୍ତଳ
ମୁହଁରେ ଦିଶିବ କାନ୍ଦଣା ଲେଖା ।
ସେ ଲୁହ ତ ନୁହେ ନୟନର ଜଳ
ସେ ତ କୃଷ୍ଣଙ୍କର ସୁନ୍ଦର ମୁହଁ,
ଲେଖକ ଆଖିରୁ ବହୁଚି ଲୋତକ
ମୁହଁ ଦେଖାଇବ ଏତିକେ କୁହ ।
ଆନନ୍ଦ କୃଷ୍ଣଚନ୍ଦ୍ର ! ହେଲି ମୁଁ ଅରକ୍ଷ
ଅକାଳେ ଅଥଳେ ଅଭାବେ ପଡ଼ି,
କର ହେ କରୁଣା ଅଗତିର ଗତି
କଳହ କଳୁଷେ ଗଲି ମୁଁ ସଡ଼ି ।

———

# ପାଣ୍ଡବାଳୟେ ଶ୍ରୀକୃଷ୍ଣ

କେତେ ଦିନ ଅନ୍ତେ ଆସିଲେ ଶ୍ରୀକୃଷ୍ଣ
ପାଣ୍ଡବମାନଙ୍କୁ ସନ୍ତୋଷ ଦିବେ,
ଅର୍ଜୁନଙ୍କ ସଙ୍ଗେ ହସି ଖେଳ କରି
କେତେ ଦିନ ପାଇଁ ସେଠି ରହିବେ ।
ପାଣ୍ଡବଙ୍କ ସୁଖ କଏ ସେ କହିବ
କୁନ୍ତୀଙ୍କ ଆନନ୍ଦ ସବୁଠୁ ବଳେ,
ଶ୍ରୀକୃଷ୍ଣଙ୍କୁ ଦେଖି ତାଙ୍କ ଦୁଃଖୀ ଧନ୍ଦ
ଚରଣ କାହାରି ପଡ଼ୁ ନ ଥିଲେ ।
ଦ୍ରୌପଦୀ ଶୁଣିଲେ କୃଷ୍ଣ ଆସିଛନ୍ତି
ଦେଖିବା ପାଇଁକି ହେଲେ ଆକୁଳ,
ତରତର ହୋଇ ବାହାରି ଆସିଲେ
ସୁନା ଗଡ଼ୁଟିରେ ପୂରାଇ ଜଳ ।
ଅର୍ଜୁନ ତ ଆଗୁ କହି ଦେଇଥିଲେ
ଶ୍ରୀକୃଷ୍ଣଙ୍କ ରୂପ ଗୁଣର କଥା,
ଏଇନା ଦେଖିଲେ ସବୁ କଥା ସତ
ଓଲଟି ହୋଇଲେ ନୁଆଁଇ ମଥା ।
ଆହୁରି ଦେଖିଲେ କୃଷ୍ଣ ଅରଜୁନ
ଏକାଠି ହୋଇଲେ ଚିହ୍ନିବ କଏ ?
କୋଉଠେଇ ଥିଲେ ଯାଆଁଳା ଭାଇ କି
ଗୋଟିଏ ଗର୍ଭେ ଥିଲେ ବା ଇଏ !

ପିଉସୀର ପୁଅ    ମାତୁଳ ତନୟ
    ସତେ କି ଏପରି ହୁଅନ୍ତି ଏକା,
କିବା ଏଠି ଖାଲି    ଏ ସୁନ୍ଦର ଯୁବା
    ପୁରୁଷ ଯୋଡ଼ିଏ ଦିଅନ୍ତି ଦେଖା ।
ଶ୍ରୀକୃଷ୍ଣଙ୍କ ବକ୍ଷେ    ସଜ ବନମାଳା
    ଅର୍ଜୁନଙ୍କ କରେ ଗାଣ୍ଡୀବ ଧନୁ,
ଏଇପୁଆଙ୍କୁ ଦେଖି    କଏ ସେ ଚହ୍ନିବ
    ସନ୍ଦେହ ତୁଟାଇ ପାରିବ ମନୁ ?
ଶ୍ରୀକୃଷ୍ଣ ଦେଖିଲେ    କୃଷ୍ଣାଙ୍କ ବଦନ
    ହସିଲେ ଟିକିଏ ଲକ୍ଷଣ ବାରି,
ନୟନେ ନୟନେ    ପ୍ରତି ହିଂସାନଳ
    ପାରିବ କୌରବ କୁଳକୁ ମାରି ।
ପାଞ୍ଚ ପାଣ୍ଡବ ତ    ଦେବତା ତନୟ
    ଦ୍ରୌପଦୀ ହେବନି କାହିଁକି ଦେବୀ,
ଗର୍ବିବ ପାଣ୍ଡବେ    ପାଇଲେ ଏହାଙ୍କୁ
    କୋଉ ଦେବତାଙ୍କ ଚରଣ ସେବି ?
କୃଷ୍ଣା ରୂପ କ'ଣ    ମୋହି ନ ଥିଲା କି
    ଖୋଜି ନ ଥିଲେ ସେ ବରଯାଚିଏ ?
ଦ୍ରୌପଦୀଙ୍କ ପରି    ରୂପରେ ଗୁଣରେ
    ସମସରି ହୋଇଥିବଟି ଯିଏ ।
ପାଣ୍ଡବଙ୍କ ପିତୃ-    ଶ୍ରାଦ୍ଧ ଦିବସରେ
    କୃଷ୍ଣାର୍ଜୁନ ଗଲେ ମୃଗୟା କରି,
ଦୁଇ ରଥେ ଦୁଇ    କୃଷ୍ଣ ଆରୋହିଲେ
    ଧନୁଶର ବାଛି ହାତରେ ଧରି ।
ଯମୁନା ନଦୀର    ବାଲିଶେଯ ପରେ
    ଦେଖିଲେ ନାରୀଏ ଘୋର ସୁନ୍ଦରୀ,
ତପସ୍ୟା କରୁଛି    ନିଶ୍ଚଳ ହୋଇଣ
    ଦିଶୁଛି ଗୋଟିଏ ଅପ୍‌ସରୀ ପରି ।

ଅର୍ଜୁନେ ଦେଖାଇ କହିଲେ ଶ୍ରୀକୃଷ୍ଣ
"ବୁଝ ତ ସେ ନାରୀ କାହା ଯୁବତୀ,
କାହିଁକି ବସିଛି ଝର କାକରରେ
ବଦନ ମଳିନ ଦିଶୁଛି ଅତି ?
ଯତି ମତିଭୁଲି ଫଳ ଚନ୍ଦୁଟିଏ
ଶୁଖିଶାଖି ହୋଇଅଛି ବଳତା,
କୋଉଠେଇ ଘର କାହାର ଝିଅ ସେ
କି ଅବା କାହାର ପ୍ରିଏ ବନତା ?"
ଅର୍ଜୁନ ବୁଝିଲେ କାଳନ୍ଦୀ ତା ନାମ
କହୁଛି ସେ ପୁଣି କଳନ୍ଦକନ୍ୟା,
ଅଙ୍ଗ ପ୍ରତ୍ୟଙ୍ଗରେ ବୁହାଇ ଦେଇଛି
ରୂପ ଲବଣ୍ୟର ଅତୁଳ ବନ୍ୟା ।
ତୁମକୁ ସେ ପତି ଳଭ ପାଇବାକୁ
ତପସ୍ୟା କରୁଛି ସେଠାରେ ବସି,
ନ ହେଲେ ଅନଳେ ଝାସି ସେ ମରିବ
ବୋଲି ତ କହୁଛି ନିଜେ ରୂପସୀ ।
ଅପୂର୍ବ ସୁନ୍ଦରୀ ମାଳ କଇଁଟିଏ
ତପସ୍ୟାରେ ବସି ହୋଇଛି କ୍ଷୀଣ,
ଯାଅ ଏବେ ସଖା ଦେଖାଦିଅ ତାକୁ
ବୁଝାଇ ମଣାଇ ପ୍ରେମରେ କିଣ ।
ଶ୍ରୀକୃଷ୍ଣ କହିଲେ "ତୁମେ କିଣିଲନି
ତୁମ ରୂପଟି ତ ମୋହର ପର,"
ଅର୍ଜୁନ କହିଲେ "ମୋ କଥା ତ ଆଉ
ନୁହେ ତୁମ କଥା କହିବା ସର ।
କିଏ କେଉଁ ରୂପେ କେ କେଉଁ କଥାରେ
ଦୁଲଟିଯାକ ତ ତୁମର ଅଛି,
ସେଥିପାଇଁ ସେ ପୁଣି ତୁମକୁ ଝୁରୁଛି
ତୁମରି ପାଇଁ କି ତପ କରୁଛି ।"

"କହିଲେ ତାକୁ ଚତୁରା ସେ ଲଖି
ବାପ ଭାଇଙ୍କୁ ତା ଭୁଲାଇ କରି,
ତୁମେ ସେ ଲଖିଛ ବନ୍ଧନ୍ତ କେବଳ
ମୁଁ ଫୁଙ୍କନ୍ତ ଶଙ୍ଖ ଶଙ୍ଖ ଆ ପରି ।
ଭାବୁଛ କି ଆଜ ଦ୍ଵିଜିସୁତା ଦ୍ରୌପଦୀ
ଫେରାଇବ ନାହିଁ ତୁମର ଘରେ ?"
ଅର୍ଜୁନ କହିଲେ "ତୁମେ ବରୁ ନାହିଁ
ଏଥିପାଇଁ ହିଂସା କଆଁ ମନରେ ?"
କୃଷ୍ଣ ହସି ହସି ଚଳଲେ ପାଖକୁ
ଦେଖିଲେ ଦ୍ଵିଜିସୁତା ଯାଜ୍ଞସେନୀଙ୍କ,
ଜାହ୍ନବୀର ସମ ମାନବୀ ହୋଇଛୁ *
ଯମୁନା ବରଜ ନୀର ବେଣୀଙ୍କ ।
ଚାହାଁ ଦେଲେ କୃଷ୍ଣ ବରଲ ରମଣୀ
କନ୍ୟାକୁ ପଠାଇଦେଲେ ନଅରେ,
ବାଜିଲୁ ବାଇଦ ଲାଗିବ ଉତ୍ସବ
ବାହାଘର ହେଲ ସମାରୋହରେ ।
କାଳନ୍ଦୀ ଦେଖିଲେ ଦ୍ରୁପଦୀ ରୂପ
ଦ୍ରୌପଦୀ ଦେଖିଲେ କଳନ୍ଦକନ୍ୟା,
କେହି କାହାଠାରୁ ଊଣା ତ ନୁହନ୍ତ
କୃଷ୍ଣ ଅରଜୁନେ ଲଭି ସେ ଧନ୍ୟା ।
ଗୋଟିଏ ବୃନ୍ତରେ ଦୁଇ ଇନ୍ଦୀବର
ଯାଆଁଳା ଭଉଣୀ ଯୋଡ଼ଏ କବା,
ଏକା କାରିଗର ଏକା ଉପାଦାନ
ଗଢ଼ିଲା କେ ବସି କୋଟିଏ ଦବା ।
ଗୋଟିକୁ ଶ୍ରୀକୃଷ୍ଣ ଗୋଟିକୁ ଅର୍ଜୁନ
କାହା ସୁକୃତରୁ ହୋଇଲେ ବାହା,
ଦୁହିଁଙ୍କ ଅଦୃଷ୍ଟ ସମାନ ହେବ କ
କାଳ ହିଁ କେବଳ କହିବ ତାହା ।

* ଗଙ୍ଗା ମାନବୀ ହୋଇ ଶାନ୍ତନୁଙ୍କୁ ବରଣ କରିଥିଲେ ।

ଶ୍ରୀକୃଷ୍ଣଙ୍କ ଭାଗ୍ୟ ଅର୍ଜୁନ ଅଦୃଷ୍ଟ
କୋଉ କାଳେ କ'ଣ ହୋଇବ ଏକା,
ଜଣେ ନରୋତ୍ତମ ଜଣେ ନାରାୟଣ
ଦୁହିଁଙ୍କ ପାର୍ଥକ୍ୟ ପଡ଼ିବ ଦେଖା ।
ଅର୍ଜୁନ ସହଜେ କୃଷ୍ଣଙ୍କ ହିତୈଷୀ
ଦ୍ରୌପଦୀ କନ୍ତୁ ପ୍ରଥମା କୃଷ୍ଣା,
ଶ୍ରୀକୃଷ୍ଣ ଇଆଡ଼େ ପ୍ରଥମ ଅଟନ୍ତି
ତାଙ୍କୁ ମିଳିଗଲି ହିତୈଷୀ କୃଷ୍ଣା ।
ବଦଳ ହେଲେ କ ପଡ଼ ବାପ ମାଆ
ଭାଇ ବନ୍ଧୁ କେହି ଜାଣିଲେ ନାହିଁ,
ଚହ୍ନିବେ ନଷ୍ଟରୁ କୃଷ୍ଣ ଅରଜୁନ
ବିଶେଷ ବିଶେଷ ଲକ୍ଷଣ ଗୃହିଁ ।
ଜଣେ ଅନଳର ଜଣେ ଆଦିତ୍ୟର
ଦୁଇ କାଳୀ ଝିଅ ତେଜରେ ସମ,
ଦୁହିଁଙ୍କ ଝିଅଲୁ ଦୁହେଁ ତ ଚହ୍ନିବେ
କାହିଁକି କୋଉଠି ରହିବ ଭ୍ରମ ।
ଦୁଇ ନାରୀଙ୍କଠି ହୀରକର ତେଜ
ଜଳୁଛି ଅନ୍ଧାରେ ଆଲୁଅ ପରି,
ଝିକଏ କା ବାଆ ବାଜିଲେ ଦେହରେ
ସେଇନା ଉଠିବେ ବଢ଼ାଏଁ ଜଳି ।
ସୁନ୍ଦରପଣିଆ ଅଛି କାଳିଆର
ଅଛି କି ଗୋରାର ନୁହେଁ କି ସତ ?
ନ ହେଲେ ପ୍ରକୃତି ଗୋରାଟିକୁ ରଖି
କାଳିଆଗୁଡ଼ିକ କରନ୍ତା ହତ !
ପ୍ରକୃତିଟା ଖାଲି ସୁଷମାର ହାଟ
ସୁଷମାରେ କାରବାର ତାହାର,
ତାର ସର୍ଜନାରେ ସବୁ ତ ସୁନ୍ଦର
ଅସୁନ୍ଦର ରୂପ କହ କାହାର ?

ଆଖିକୁ ସୁନ୍ଦର ମନକୁ ରୁଚେନା
ଆଖି ମନ କ'ଣ ନୁହନ୍ତି ଏକା ?
ସେ ଦୁହେଁଯାକ ତ ମନକୁ ସ୍ୱାଧୀନ
ତାଙ୍କ ସବୁ ସମ ପଡ଼େନା ଦେଖା !
ଆଖିରେ ଆଖିରେ ଅଛି ପାର୍ଥକ୍ୟ
ସମାନ କରି ସେ ଦେଖନ୍ତି ନାହିଁ,
ତେଣୁ ତ ସଂସାରେ ଅଛି ଟିକେ ଶାନ୍ତି
ନ ହେଲେ ଅଶାନ୍ତି ଆସନ୍ତା ଧାଇଁ ।
ସଂସାରେ ଅଛନ୍ତି କାଳୀ ଗୋରୀ ବୋହୂ
ପତିମାନଙ୍କର ତ ଆଦରଣୀ,
ସଂସାରେ ସମାଜେ ଯେଝା ପତିଟିକୁ
ସେ ଯାହା ବାଗରେ ଅଛନ୍ତି କଣି ।
ମନ ମାନିଗଲେ ଆଖିର ରୁଚିକୁ
କିଏ ବା କୋଉଠି ଅନାଏଁ ବସି ?
ଶତ ଶତ ଦଳ ହୋଇଥାଉ ପଦ୍ମେ
ତା ରୂପରେ କେହି ପାରେନା ରସି ।
ମନ ନ ମାନିଲେ ସରଗ ଅପ୍ସରୀ
ଆଖିକୁ ଦିଶଇ ଖାଲି କୋଚରୀ,
ସଂସାରେ ସମାଜେ ପ୍ରତି ଘରେ ଘରେ
ଦୃଷ୍ଟାନ୍ତ ବହୁତ ଅଛି ଏପରି ।
ପ୍ରେମ ରାଇଜରେ ରୂପର ତୁଳନା
କେହି ତ କୋଉଠି କରଇ ନାହିଁ,
ପ୍ରେମ ସଞ୍ଚରିଲେ କଳା ଗୋରା ବୋଲି
ଆଖିରେ ବାଛି କେ ବହଇ ଗୁହିଁ ?
କୁତ୍ସିତା ଭିତରେ ଅଛି ସୁନ୍ଦରତା
ପଥର ଭିତରେ ଅଛି ବି ରସ,
କାନ୍ଦଣା ଭିତରେ ଲୁଚି ଲୁଚି କରି
ରହି ନ ଥାଏ କି ଟିକିଏ ହସ ?

କାନ୍ଦଣା ଶେଷରେ ଆସେ ନାହିଁ ହସ
କୋଉଠୁଁ ଆସନ୍ତା ନ ଥିଲେ ତହିଁ,
ଝଡ଼ ପରେ ଶାନ୍ତି ଆସେନା ମନକୁ
କଏ ବା ଏ କଥା ଜାଣଇ ନାହିଁ ?
ବିରହ ଭିତରେ ଅଛି ବି ମାଧୁରୀ
ଯିଏ ଜାଣେ ନାହିଁ ବିଗାଡ଼େ ମଥା,
ସବୁଥିରେ ଅଛି କଳା କାହ୍ନୁଗିରି
ସେଇଟି ହିଁ ହେଲା ଅସଲ କଥା ।
ଭକ୍ତ ଅଇଶ୍ୱର୍ଯ୍ୟ ଦେଖାଇବା ପାଇଁ
ବିଶ୍ୱକର୍ମା ରାଜ କହିଲେ କୃଷ୍ଣ,
"ଗଢ଼ ଏଟି ପୁର ସୁନ୍ଦର କରିଣ
ହେବ ସେ ବାସବପୁର ସଦୃଶ ।"
ଆଜ୍ଞା ପରମାଣେ ଗଢ଼ିଲେ ନଗର
ସରଗପୁରରୁ ବଳିଲା ଶିରୀ,
ଦୁର୍ଯ୍ୟୋଧନ ଦେଖି ଜଳିଲା ହିଂସାରେ
ଭାବିଲା ସେଇଟି ନେବ କପଟେ ।
ଶକୁନି ସଙ୍ଗରେ ବଗୁର ପାଞ୍ଚଙ୍କୁ
ମାମୁଁ ବତାଇଲା କପଟ ପଶା,
ସେହି ଦିନୁଁ ଜାଣ କୌରବ ବଂଶକୁ
ପଡ଼ିଲା ଦୁର୍ଯ୍ୟୋଗ ମାରକ ଦଶା ।
ଇନ୍ଦ୍ରପୁର ସମ ନଗର ହେବାରୁ
ନାଆଁଟିଏ ଦେଲେ ଇନ୍ଦରପ୍ରସ୍ଥ,
ଏଥିପାଇଁ ହେବ ନିକଟ ଭବିଷ୍ୟେ
ଭାରତବର୍ଷଟା ଦୁର୍ଦ୍ଦଶାଗ୍ରସ୍ତ ।
ଏତେ ଭାବି ଚିନ୍ତି ନାଆଁଟିଏ ଦେଲେ
କେତେ ଦିନେ ହେବ ଜାଣଇ କଏ ?
ଇନ୍ଦ୍ରପ୍ରସ୍ଥ ହେବ ନୂଆ ରାଜଧାନୀ
କାଳେ କାଳେ ନୂଆ ରହିବ ସିଏ ।

କେତେ ରଜା ଯିବେ      କେତେ ବା ଆସିବେ
ଜଣେ ହେଲେ କେହ୍ନି ହେବନ ସ୍ଥିର,
ରକତ-ରଞ୍ଜିତ      ହେବ ଧୂଳି ମାଟି
ଧୋଇ ପାରିବନ ଯମୁନା ନୀର ।
ଶିଶୁପାଳ ଆଗେ      ଢାଳିବ ରକତ
ମରଣର ଶୁଭ୍ର ପାତ୍ରବ ପିଏ,
ଶ୍ରୀକୃଷ୍ଣ ବନ୍ଦ୍ରାକ୍ଷୀ      ଖଳ ଅତ୍ୟାଗୃଣୀ
କଂସର ଚଛକୁ ଦ୍ରୌଣପୂ ପିଏ ।

———

# ଖାଣ୍ଡବ ଦାହନ

କୃଷ୍ଣ ଫାଲଗୁଣି        ଚଢ଼ି ରଥ ବେନି
ଯମୁନା କୂଳକୁ ପାରିଧି ପାଇଁ,
ଯାଇଥିଲେ ଦିନେ        ଶିକାରି ବେଶରେ
ଆଉ ବନ୍ଧୁ ଲୋକ ଥିଲେ ବି ଯାଇ ।
ଅମଳ ଧବଳ        ତମ୍ବୁ ପଡ଼ିଅଛି
ଗଜ ବାଜି ହୋଇଅଛନ୍ତି ବନ୍ଧା,
ଲାଗିଅଛି ସେଠି        ଦିବସ ରଜନୀ
ରାଜ ଉଆସର ସକଳ ଧନ୍ଦା ।
କୃଷ୍ଣ ଅରଜୁନ        କରନ୍ତି ଶିକାର
ଯମୁନା ପୁଳିନ ଅଟବୀ କୁଞ୍ଜେ,
ଫୁଲର ପସରା        ମେଲାଛି ଅରଣ୍ୟ
ମଧୁପ ଖୁସିରେ ମଧୁର ଗୁଞ୍ଜେ ।
ସମୀର ବୋଳାଛି        ଦେହରେ ତାହାର
ବାର ମିଶା ଫୁଲ ମଧୁର ଗନ୍ଧ,
ପକ୍ଷୀ ପକ୍ଷିଣୀ ଏ        କେଳିମିଶି କରି
ଗାଆନ୍ତି ମଧୁରେ ଲଳିତ ଛନ୍ଦ ।
ଯମୁନା ସଲିଳେ        ହିଲ୍ଲୋଳ ଖେଳୁଛି
ମୁକୁଳ ପଡ଼ୁଛି ଶୋଭା ପସରା,
ତରଳ ସମ୍ପଦ        ସୁନୀଳ ଶୁକଳ
ହୀରା, ନୀଳା, ମୋତି, ମାଣିକ୍ୟ ପରା !

ତଟେ ତଟେ ଘନ ବହଳିଆ ବନ
କୋଉଠି ପଡୁନ ଟିକଏ ଖରା,
ଅରଣ୍ୟ ଭିତର ଶୀତଳ ସବୁଜ
ସୁଖ ତଳପରେ ଶୋଇଛୁ ଧରା ।
ମିରିଗ ବରାହ ଗଣ୍ଡା ଗଜ ଯୂଥ
ହରଷେ ଆରାମେ କରନ୍ତି କେଳି,
ପତର ସନ୍ଧରେ ଦିନକର କର
ହଲି ଓ ଦୋହଲି ଯାଉଛି ଖେଳି ।
କୃଷ୍ଣ ଫାଲଗୁନି କରନ୍ତି ଶିକାର
ବାଛୁ ବାଛୁ କରି ଗଣ୍ଡା ଶମ୍ବର,
ପରି ଟାଙ୍ଗିଧିଆ ବୁହାଇ ଆଣନ୍ତି
ଘରି ଘରି କରି ମଲ୍ଲ ଶିକାର ।
ଉଠା ଦୋକାନ ତ ବସିଛୁ ସେଠେଇ
ଲଗିଅଛୁ ତହିଁ ବକା ଓ କଣା,
ନିର୍ଜ୍ଜନ ପୁଳନ ସଜନ ହୋଇଛୁ
ଦିଏ ତ ଏଇନା ନଗର-ଜଣା ।
ଯିଏ ଯାଉଅଛୁ ସିଏ ଖାଉଅଛୁ
ଭେକ ଶୋଷ ଜାଣୁ ନାହାନ୍ତି କେହୁ,
ପିତୃପକ୍ଷ ବୋଲି ସଭିଙ୍କୁ ତୋଷନ୍ତି
ମୁକ୍ତହସ୍ତେ ଗଣ୍ଡା ମାଉଁସ ଦେଇ ।
ଶିବିର ଆଗରେ ଦେଖୁଛନ୍ତି ବସି
କୃଷ୍ଣ ଫାଲଗୁନି ଦୁହେଁ ଏକାଠି,
ରୋଗୀ ବ୍ରାହ୍ମଣର ବେଶରେ ଅନଳ
ପ୍ରବେଶ ହୋଇଲେ ଆସି ସେଇଟି ।
ଉଦର ଦିଶୁଛି ମୃଦଙ୍ଗଟା ପରି
ଉପର ଚମଡ଼ା ଯାଇଛି ଫାଟି,
ହାତ ଗୋଡ଼ ସରୁ ଦେହ ଶିରାମୟ
କଥା କହୁ କହୁ ଥରୁଛି ପାଟି ।

ଆଶୀର୍ବାଦ କରି କହିଲେ ଦୁଃଖରେ
"କୌରବପ୍ରଧାନ ଯାଦବ ସାଇଁ !
କି ସୌଭାଗ୍ୟ ମୋର ଖୋଜୁଥିଲି ଯା'ଙ୍କୁ
ଭେଟିଲି ଏଇନା ଗୋଟିଏ ଠାଇଁ ।
ଶୁଣ ନିବେଦନ ନର-ନାରାୟଣ !
ଆହେ ରମାକାନ୍ତ ଯାଦବଶ୍ରେଷ୍ଠ !
ଅଛି ଦୁର୍ଦ୍ଦୈବପାକ କୋଟି ଏଇନା
ଦିଅ ଖାଇବାକୁ ପୋଡ଼ୁଛି ପେଟ ।"
ଅର୍ଜୁନ ପୁଚ୍ଛିଲେ "କଅଣ ଖାଇବ ?
କୁହ ହେ ବ୍ରାହ୍ମଣ କରନା ଡେରି,
ଅକାଳେ ଅଦିନେ ଆସିଲ ତ ତୁମେ
ଭୋଜନ ନ କରି ଯିବ କି ଫେରି ?"
ବ୍ରାହ୍ମଣ ଏଥର ଦେଲେ ପରିଚୟ
"ମୁଁ ନୁହେ ବ୍ରାହ୍ମଣ ନିଜେ ଅନଳ,
ଶ୍ୱେତକି ଯଜ୍ଞରେ ଘିଅ ଖାଇ ଖାଇ
ହେଲି ମନ୍ଦ-ଅଗ୍ନି ଏତେ ଦୁର୍ବଳ ।
କେହି ମୋତେ ଭଲ କରି ପାରିଲେନି
ବ୍ରହ୍ମା ବତାଇଲେ ଦେଖି ଅସୁସ୍ଥ,
ଖାଣ୍ଡବ ବନରେ ଅଛି ଅଉଷଧ
ତାକୁ ହିଁ ଖାଇଲେ ହେବ ମୁକତ ।
ଇନ୍ଦ୍ର ସଂରକ୍ଷିତ ଉପବନ ସିଏ
ବହୁ ଜୀବଜନ୍ତୁ ଅଛନ୍ତି ତହିଁ,
ଅନ୍ୟ ଚେରମୂଳ ଅଛି ବି ବହୁତ
ଖାଇବି ସେବନ ସମୂଳେ ଦହି ।
ଘୁଞ୍ଚିଯିବ ରୋଗ ହୋଇଯିବି ସୁସ୍ଥ
ଏଇନାଏଁ ଯାଅ ଯମୁନା ତଟ,
ନର-ନାରାୟଣ ଅଛନ୍ତି ସେଇଠି
ସବୁ ଦୁଃଖ କହି ଦେଖା ଯା ପେଟ ।"

ଅର୍ଜୁନ କହିଲେ ପ୍ରଣିପାତ ହୋଇ
"କିଣ୍ଟିପ୍ସ ତୁମକୁ ଦେବ ଭୋଜନ,
ବାସବଙ୍କ ମୋର ନାହିଁ ଡରେ ଡର
କିନ୍ତୁ ସବୁ ଦେବେ କରିବେ ରଣ ।
ଦିଅ ମୋତେ ଯାନ ଶର ଶରାସନ
ଜିଣିବ ଦେବତା ଦେବ ଭୋଜନ,"
ଅଗ୍ନିଦେବ ଶୁଣି ହୋଇଲେ ତୃପତ
ବରୁଣ ଦେବଙ୍କୁ କଲେ ସ୍ମରଣ ।
ବରୁଣ ଆସିଲେ ଅଗ୍ନିଙ୍କୁ ପୁଚ୍ଛିଲେ
"କାହିଁକି ଡାକିଲ ହେ ହୁତାଶନ,"
ଅନଳ କହିଲେ "ଅଛି ତୁମ ପାଖେ
ଚନ୍ଦ୍ରଦତ୍ତ ରଥ କପିକେତନ ।
ଅକ୍ଷୟ ତୂଣୀର ଶ୍ୱେତ ବର୍ଣ୍ଣ ଅଶ୍ୱ
ତୁମ ମୋହପାର୍ଶ ଧନୁ ଗାଣ୍ଡୀବ,
ଏହିସବୁ ଟିକେ ଅର୍ଜୁନକୁ ଦେଲେ
ମୋ ଦେହରୁ ଦୁଷ୍ଟ ରୋଗ ଘୁଞ୍ଚିବ ।"
ବରୁଣ ସେସବୁ ଦେଲେ ଅର୍ଜୁନଙ୍କୁ
ଆନନ୍ଦିତ ହେଲେ ଦେଖି ଅନଳ,
କହିଲେ କୃଷ୍ଣଙ୍କୁ "ଦିଅ ସୁଦର୍ଶନ
ଦିଅ କୌମୋଦକୀ ଗଦା ତୁମର ।"
ଶ୍ରୀକୃଷ୍ଣ ତ ଖୋଜୁ- ଥିଲେ ସେହି କଥା
ହସି ହସି କରି ଦେଲେ ବଢ଼ାଇ,
ଭାବିଲେ ଅନ୍ତରେ ଧର୍ମ ସଂସ୍ଥାପନା
କରିମ ଏଥର ରହିବ ନାହିଁ ।
ରଥ, ଧନୁ, ଶର ପାଇ ଧନଞ୍ଜୟ
ଚଳିଲେ ଖାଣ୍ଡବ ବନର ପାଶ,
କହିଲେ ଅଗ୍ନିଙ୍କୁ "ଯାଅ ବୈଶ୍ୱାନର
ମନ ପୂରିକରି କର ହେ ଗ୍ରାସ ।"

ଭକ୍ଷିଲେ ଅନଳ ଜଳିଲା ଖାଣ୍ଡବ
ପ୍ରହରଏ ଦେଖି କହନ୍ତେ
ସବୁ ଦେବତାଏ ଏକଜୁଟ ହୋଇ
ଅସ୍ତ୍ରଶସ୍ତ୍ର ଧରି ଆସିଲେ ଧାଇଁ ।
ନିର୍ଭୟ ମନରେ ଖାଇଲେ ଅନଳ
ଦେବତାଏ ଆସି କଲେ ବାରଣ,
ମାନିଲେନି ଅଗ୍ନି ବାସବ କୁବେର
ଆଉ ସବୁ ଦେବେ ରଚିଲେ ରଣ ।
ପାଖକେ ଅର୍ଜୁନ ଚାଖେ ନାରାୟଣ
ଆଉ ଦୁଇ ପାଖେ ଯେତେ ଅମର,
ଧନୁ ଆଉ ଶର ଖଣ୍ଡା ମୁଦ୍ଗର
ଧରି ସେ ପାହାର କଲେ ସମର ।
କେହୁ ପାରିଲେନି ଅର୍ଜୁନଙ୍କୁ ରଣେ
ଅମର ନିକର ଗଲେ ତ ହାରି,
ଅନଳ ଦହିଲେ ସେ ସୁନ୍ଦର ବନ
ନିବାରିବା ଶକ୍ତି ନାହିଁ କାହାରି ।
ଯେତେ ଜୀବଜନ୍ତୁ ଥିଲେ ସେ ବନରେ
କେହୁ ଜଣେ ଯାଇ ପାରିଲେ ନାହିଁ,
ଦେବତାଏ ସବୁ ଥକାମରା ହୋଇ
ଆବାକାବା ହୋଇ ରହିଲେ ଚାହିଁ ।
ବରଷି ବରଷି ବାଦଲେ ଥକିଲେ
ଗରଜି ଗରଜି କୁଳିଶ ଥକା,
ଅର୍ଜୁନ ରକ୍ଷିତ ବୈଶ୍ୱାନରଙ୍କର
ଟିକିଏ ହେଲେ ବି ନ ଥିଲା ଶଙ୍କା ।
ଚଢ଼େଇଟା କାହିଁ ଉଡ଼ିଗଲା ବେଳେ
ଅନଳ ଅର୍ଜୁନେ ପାରନ୍ତି ଡକା,
"ଉଡ଼ିଲା ଉଡ଼ିଲା ଅନାଅ ଅର୍ଜୁନ
ବାହନ ଛାହାକୁ ଖସାଇ ପକା ।"

ଅର୍ଜୁନ ସେଇନା    ଦେକାନ୍ତ ନିଆଁରେ
ଅନଳ ଭକ୍ଷନ୍ତ ଭୂପତିମନେ,
ଛଅଟି ବଞ୍ଚିଲେ    ଆଉ କେହି ନାହିଁ
ପକ୍ଷଲେ ପୋଡ଼ିଲେ ଖାଣ୍ଡବ ସନେ ।
ଅସୁରଙ୍କ ଶିଳ୍ପୀ    ମୟ ନାମ ତାର
ଖସି ଯାଉଥିଲା ଚକ୍ରକୁ ଦେଖି,
ମାରୁଥିଲେ କୃଷ୍ଣ    ଡାକିଲା କାତରେ
"ରଖ ଅରଜୁନ ଚଞ୍ଚଳ ଆସି ।"
ଅର୍ଜୁନ ଶୁଣିଲେ    ଆରତର ଡାକ
କହିଲେ, "ରଖିଲି ରଖିଲି ତୋତେ,
କିଏ ରେ ଡାକିଲୁ    ଏତେ ବିକଳରେ
ପରାଣ ଭୟରେ ଉଚ୍ଚରେ ମୋତେ ?"
ପେଶିଦେଲେ ଶର    ଭେଟିଲା ଚକ୍ରକୁ
ଚକ୍ର ବାହୁଡ଼ିଲା ନ ମାରି ତାକୁ,
କିଏ ସେ ମାରିବ    ତିନି ଭୁବନରେ
ବିପଦୁ ରଖିବେ ଅର୍ଜୁନ ଯାକୁ !
ସୁଦର୍ଶନକୁ ତ    ଦେଇଥିଲେ ଟେକି
ଶ୍ରୀକୃଷ୍ଣ ଆଗରୁ ଅର୍ଜୁନ କରେ,
ଶ୍ରୀକୃଷ୍ଣଙ୍କ କରେ    ଚକ୍ର ତ ନ ଥିଲା
ଚକ୍ର ସମ ପେଶିଥିଲେ ସେ ଶରେ ।
ଅଣବାହୁଡ଼ା ସେ    ସୁଦର୍ଶନ ଚକ୍ର
ନ ମାରି ଫେରିଲା କଅଣ ପାଇଁ ?
ଯାହାକୁ ସମରେ    ଶିବ ପାଶୁପତ
ବାସବର ବଜ୍ର ପାରଇ ନାହିଁ ।
ଶର ଅର୍ଜୁନର    ଚକ୍ର କୃଷ୍ଣଙ୍କର
କ୍ଷୀର ନୀର ପରି ଦୁହିଁଙ୍କ ପ୍ରୀତି,
ଆୟୁଧ କି ଆଉ    ବଦଳାବଦଳି ହୋଇ
ପାଇଲେ କି ଆଉ ବନ୍ଧୁତା ମିତି ?

କବା ସେଥିପାଇଁ ଚନ୍ଦ୍ରକୁ କହିଲେ
ଅର୍ଜୁନ ମର୍ଯ୍ୟାଦା ବଢ଼ିବା ପାଇଁ,
"ଆସ ସୁଦର୍ଶନ ବାହୁଡ଼ ଏଥର
ମୟ ଦାନବକୁ ସଂହାର ନାହିଁ ।"
ନ ଥିଲା ଏଥିରେ ଉଦ୍ଦେଶ୍ୟ କ କିଛି
ଉତ୍ସାସ କରିବେ ପର ସେ ଧରି,
ଦୁର୍ଯ୍ୟୋଧନ ଈର୍ଷା ବଢ଼ାଇବା ପାଇଁ
ମୟ ଦାନବକୁ ରଖିଲେ ପରି !
ବରଡିଲା ମୟ ବରଜିଲା ଭୟ
ଶ୍ରୀକୃଷ୍ଣ କହିଲେ, "ଶୁଣରେ ଶିଳ୍ପି,
ସଭା ଘରଟିଏ କର ଇନ୍ଦ୍ରପ୍ରସ୍ଥେ
ସୁଧର୍ମାରୁ ବଳି ମନରୁ କଳ୍ପି ।"
ଗଢ଼ିଦେଲା ମୟ ମାୟାରେ ଘରଟେ
ମିଶାଇ ସ୍ଫଟିକ ସଙ୍ଗରେ କାଚ,
ଜଳ ସ୍ଥଳ କିଛି ବାରି ହୁଏ ନାହିଁ
ସବୁ ଏକାପରି ଦିଶଇ ସ୍ୱଚ୍ଛ ।
ଅଗ୍ନିଙ୍କର ରୋଗ ଅପସରି ଗଲା
ଅର୍ଜୁନଙ୍କଠାରେ କୃତଜ୍ଞ ହୋଇ,
ଅସ୍ତ୍ରଶସ୍ତ୍ର ସହ କପିଧ୍ୱଜ ରଥ
ଶ୍ୱେତ ଘୋଡ଼ା ଅସ୍ତ୍ର ଗଲେ ସେ ଦେଇ ।
କୁରୁକ୍ଷେତ୍ର ଯୁଦ୍ଧେ ହେବ ଉପଯୋଗ
ଦୁଷ୍ଟଯାକ ସବୁ ହୋଇବେ ହତ,
ଅଳ୍ପ କେତେ ଜଣ ଜୀଇଯିବେ ଖାଲି
ବଢ଼ାଇବା ପାଇଁ ଧର୍ମ ମହତ ।
କୃଷ୍ଣଙ୍କ ମହିମା କଏ ବଖାଣିବ
କେତେ ଉପାୟରେ କରନ୍ତି କାମ,
ରେ ମୂଢ଼ ମାନବ ଆଜ ସବୁ ଛାଡ଼
ଜପ ନିରନ୍ତର ତାଙ୍କରି ନାମ ।

———

# ଶ୍ରୀକୃଷ୍ଣଙ୍କର ଅନ୍ୟାନ୍ୟ ସ୍ତ୍ରୀ ବିବାହ

ଅବନ୍ତୀ ନଗର ରଜାର କୁମାରୀ
ନାମ ମିତ୍ରବୃନ୍ଦା ବଡ଼ ସୁନ୍ଦରୀ,
ତାର ନାହିଁ ପର ମିତ୍ରରେ ଆବୃତ
ବସୁଧାଠାଯାକ ମିତ୍ର ତାହାର ।
ପିତୃହୀନା ସିଏ ହୋଇଲା ଯୁବତୀ
ଶ୍ରୀକୃଷ୍ଣଙ୍କୁ ମନେ ବସିଲା ବରି,
କୃଷ୍ଣ ରୂପ ଗୁଣ ତାଙ୍କର ମହିମା
ଝୁରିଲା ସେ ବସି ଦିବା ଶର୍ବରୀ ।
ତାର ଦୁଇ ଭାଇ ବିନ୍ଦ, ଅନୁବିନ୍ଦ
ଶ୍ରୀକୃଷ୍ଣ ବିରୋଧୀ କଲେ ସେ ମନା,
ସ୍ୱୟମ୍ବର ହେଲା ମାନିଲା ନାହିଁ ସେ
କୃଷ୍ଣ ବରି ପୂରାଇଲା କାମନା ।
ରଜାମାନେ ସବୁ ମିଳିମିଶି କରି
ଶ୍ରୀକୃଷ୍ଣ ବିରୁଦ୍ଧେ କଲେ ସମର,
ହାରିଗଲେ ସବୁ ଡରି ପଳାଇଲେ
ଶେଷରେ ଶ୍ରୀକୃଷ୍ଣ ହେଲେ ତା ବର ।
ଆଗରୁ ଶ୍ରୀକୃଷ୍ଣ ବାହା ହୋଇଥିଲେ
ଚୃରିଟି ଭାରିଯା ସବୁ ଉତ୍ତମ,
ଏହିଟି ମିଶିଲା ସେମାନଙ୍କ ସଙ୍ଗେ
ତେଣୁ ଏ ହୋଇଲା ଭାର୍ଯ୍ୟା ପଞ୍ଚମ ।

## ଷଷ୍ଠ ପତ୍ନୀ

ଅଯୋଧ୍ୟାର ପତି ନଗ୍ନାଜିତ ନାମ
ସତ୍ୟା ବୋଲି କରି ତାଙ୍କର କନ୍ୟା
ସତ୍ୟେ ତାର ମନ ସତ୍ୟ କାରବାର
ସତ୍ୟର ଗୋଟିଏ ଉଜ୍ଜ୍ୱଳା ବନ୍ୟା ।
ନଗ୍ନାଜିତ ପଣ କରି ପୋଷିଥିଲେ
ସାତଟା ଦୁର୍ଦ୍ଦାନ୍ତ ମାରଣା ଷଣ୍ଢ,
ଷଣ୍ଢ ତ ନୁହନ୍ତି ହାତୀ କିବା ଗଣ୍ଡା
ବିଶାଳ ଶରୀର ଉଗ୍ର ପ୍ରଚଣ୍ଡ ।
ଶିବଙ୍କ ବୃଷ କି କଇଲାସ ଗୁଡ଼ି
ସାତଟା ହୋଇ କି ଆସିଲେ ଏଠି !
ହର ବସିଥିଲେ ଯୋଗ ଆସନରେ
କେଉଁବେଳେ ସିଏ ଆସିଛି ଫିଟି ।
ସମସ୍ତଙ୍କ ଶିଙ୍ଗ ବୃଷାଳ ବିଶାଳ
ପଚିଧିକ ରେଖ ପାଇବ ନାହିଁ,
ଆଖିଯାକ ସବୁ ରୋକିଆ ମୂନିଆ
ସବୁବେଳେ ସଜ ମାରିବା ପାଇଁ ।
ଚୂଲିଗୁଡ଼ାକ ତ କଜ୍ଜଳ କାଳିଆ
ଆଷାଢ଼ ମାସର ବଉଦ ପରି,
ମାଂସଳ ପୃଥୁଳ ଭାରୀ ହୋଇଯାଇ
ବାଆଁ ଡାହାଣକୁ ପଡ଼ୁଛି ଢଳି ।
ଗଳକମ୍ବ ଗୁଡ଼ା ମୋଟା ମାଉଁସିଆ
ମାଂସପେଶୀ ସବୁ ରବର ପରି,
ଠେଙ୍ଗାରେ ପିଟିଲେ ଛୁଡ଼ିକି ଆସଇ
ପ୍ରତିଘାତ କରେ ଲେଉଟି ପଡ଼ି ।
ଜନମରୁ କେବେ ପଘା ଲାଗି ନାହିଁ
ମଣିଷ ଦେଖିଲେ ମାରନ୍ତି ଉଆଁ,
ପାଖରେ ଦେଖିଲେ ଦଉଡ଼ି ଆସନ୍ତି
କାନ୍ଥବାଡ଼ କରି ଦ୍ୟନ୍ତି ଖଣ୍ଡିଆ ।

ସବୁଦିନେ ଖାଲି ଦେଖାଇ ପକାଇ
　　କ୍ଷଣମାତ୍ର ଛାଡ଼ ପକାନ୍ତି ମାଟି,
ଫିଟିଗଲେ କେବେ ନଗରଦ୍ୱାରଯାକ
　　ପଡ଼ିଯାଏ ସବୁ କବାଟ ଛାଟି ।
ସାତ ଷଣ୍ଢଯାକ କେହ୍ନେ କାହା ସ୍ଥାନ
　　ଯିବା ପାରନ୍ତିନ ଲଢ଼ିବା ପାଇଁ,
ସଭିଙ୍କୁ ସଭିଏଁ ଠାକ ବସିଥାନ୍ତି
　　ସୁବୁଦ୍ଧି ପାଇଲେ ଆସନ୍ତି ଧାଇଁ ।
ରଜାପଣ କଲେ ସାତ ଷଣ୍ଢଯାକ
　　ଯିଏ ବାନ୍ଧିଦେବ ଏକାଠି କରି,
ତାଙ୍କର ତନୟା ନଗ୍ନାଜିତ୍ କେମା
　　ସେଇଯାକୁ ପତି କରିବ ବରି ।
କେତେ କେତେ ରଜା ଆସି ବାହୁଡ଼ିଲେ
　　କେହ୍ନେ ପାରିଲେନି ତାହାଙ୍କୁ ବାନ୍ଧି,
ବାପ ଝିଅ ଦୁହେଁ କୃଷ୍ଣଙ୍କ ଭକତ
　　ତାହାଙ୍କୁ ନ ପାଇ ବସିଲେ କାନ୍ଦି ।
ସତ୍ୟା ଦିନରାତି ନିରୋଳାରେ ବସି
　　ଶ୍ରୀକୃଷ୍ଣଙ୍କୁ ଖାଲି କଲା ସ୍ମରଣ,
ଦ୍ୱାରକାରେ ତେଣେ ଜାଣିଲେ ଶ୍ରୀକୃଷ୍ଣ
　　ବାପ ଝିଅ ବେନି ଭକ୍ତଙ୍କ ମନ ।
ବେଚାରି ଯନ୍ତ୍ର କି ଥିଲି କୃଷ୍ଣଙ୍କର
　　ଜାଣିପାରିଲେ ସେ ଦୂରରେ ଥାଇ ?
ଅନ୍ତର କଥା ସେ ଜାଣନ୍ତି ବୋଲି ତ
　　ଅନ୍ତର୍ଯ୍ୟାମୀ ନାମ ଅଛନ୍ତି ପାଇ ।
ବିଜ୍ଞାନ ବଡ଼ାଇ ନାହିଁ ତାଙ୍କ ପାଖେ
　　ସେ ତ ବିଜ୍ଞାନର ପରମ ତତ୍ତ୍ୱ,
ତାଙ୍କ ଲୀଳାଖେଳା ସବୁ ଦର୍ଶନରେ
　　ତାଙ୍କ ଶକତିର କେ କଲେ ଅନ୍ତ ?

ଭକତି ତାଙ୍କର ତାର ତାରସ୍ଥାନ
ଭକତର ମନ ତହିଁରେ ଯନ୍ତ୍ର,
ଭକ୍ତ ଭଗବାନ ଯେତେ ଦୂରେ ଥିଲେ
ଭକତି କେବଳ ସଂଯୋଗସୂତ୍ର ।
ସେ ସୂତ୍ରଟି କେବେ ଛିଣ୍ଡିଯାଏ ନାହିଁ
କାଳେ କାଳେ ସ୍ଥିର ସିଏ ଶାଶ୍ୱତ,
ସେ ଭକ୍ତିସୂତ୍ରଟି ଯେ ନେଇପାରନ୍ତି
ଭଗବାନ ସଦା ତାଠି ତୃପତ ।
ଏହି ତୃପ୍ତିଟି ହିଁ ମୁକତିର ମନ୍ତ୍ର
ଏହାର ଜପ ହିଁ ପରମ ତପଃ,
କେତେ ମୁନି ଋଷି ଏଇତା ଆଚରି
ଦେହ କରିଛନ୍ତି ମାଟିର ସ୍ତୂପ ।
ଭକ୍ତ ଭଗବାନ ବିଚ୍ଛିନ୍ନ ହୋଇଲେ
ତପସ୍ୟା ଦିଅଇ ପୁଣି ମିଶାଇ,
ଏହି ମିଶାଣ ତ ଆମ ଯୋଗଶାସ୍ତ୍ର
ଅନ୍ତର ବାହାର ଦିଏ ଜଣାଇ ।
ଏହି ଯୋଗ ପୁଣି କୁକର୍ମ ଦୋଷରୁ
ହୋଇଯାଏ ଆପେ ଆପେ ବିଯୋଗ,
ଏହାର ପାଇଁକି ଯେତେ ଦୁଃଖ ଶୋକ
ରୋଗ ବଇରାଗ ହୁଅଇ ଭୋଗ ।
ରେ ମୂଢ଼ ମାନବ ପାଗଳଙ୍କ ପରି
ମାୟା ମୋହ ପଛେ ବୁଲନା ଧାଇଁ,
ମରତପୁରଟା କରମଭୂଇଁ ତ
ଧରମ କରମ କରିବା ନାହିଁ ।
କଳି କାଳେ କାଳେ କୁହୁକ ରଚଇ
ମାୟା ମୃଗ ଦିଏ ଆଗରେ ଛାଡ଼ି,
ଧାଇଁବ ପଛରେ ତାକୁ ଧରିବାକୁ
ଖାଲି ଡ଼ିଆ ବଣ ଜଙ୍ଗଲ ମାଡ଼ି ।

ହୁଅ ସାବଧାନ ବେଳ ଥାଉଁ ଥାଉଁ
କୃଷ୍ଣନାମ ମନ୍ତ୍ର କର ହେ ଜପ,
ସଂସାର-ବାସନା ବାନ୍ଧି ପାରିବନି
କର୍ମ କରିବାକୁ କର ସଂକଳ୍ପ ।
ମର୍ତ୍ତ୍ୟଟା କେବଳ ମରଣରେ ପାଇଁ
କରମର ପାଇଁ ବୁଝଇ ମିଛ,
କରିଯା କରମ ଗୀତ ଅନୁସରି
ମରଣେ ଚଢ଼ିବ ସ୍ୱର୍ଗ ପାବଚ୍ଛ ।
ଶ୍ରୀକୃଷ୍ଣ ଜାଣନ୍ତି ଗୋରୁଙ୍କର ମନ
ତେଣୁ ତ ତାଙ୍କର ଗୋବିନ୍ଦ ନାମ,
ସାତଟା ଷଣ୍ଢକୁ ବାନ୍ଧିଦେବେ ନାହିଁ
ଗୋରୁ ଚରାଇବା ଥିଲାଟି କାମ ।
ଗଲେ ଅଯୋଧ୍ୟାକୁ ଦେଲେ ଦରଶନ
ବାନ୍ଧିଦେଲେ ଷଣ୍ଢ ଜିଣିଲେ ପଣ,
ସତ୍ୟା ହେଲା ଖୁସି ଶ୍ରୀକୃଷ୍ଣଙ୍କୁ ପାଇ
ପତି କରି ତାଙ୍କୁ କଲା ବରଣ ।

## ସପ୍ତମୀ ପତ୍ନୀ

କେକୟ ଦେଶର ରାଣୀ ବସୁଭକ୍ତ
ଭଦ୍ରା ବୋଲି କରି ତନୟାଟିଏ,
ଶ୍ରୀକୃଷ୍ଣଙ୍କ କରେ କନ୍ୟାଟି ସମର୍ପି
ନିଶ୍ଚିନ୍ତ ରହିବା ପାଇଁକି ସିଏ ।
ସବୁବେଳେ ଖାଲି ଧ୍ୟାୟିଲା କୃଷ୍ଣଙ୍କୁ
ତାର ନିବେଦନ ବାଜିଲା କାନେ,
ଶ୍ରୀକୃଷ୍ଣ ଚଳିଲେ କେକୟ ନଗରେ
ଏକୁଟିଆ ବସି ଖଗ ଆସନେ ।
ଭଦ୍ରା ଲେଡ଼ା ପଡ଼ି ପାଇଲା ପାଖରେ
ପିନ୍ଧାଇ ଦେଲା ସେ ବରଣମାଳା,
ଶ୍ରୀକୃଷ୍ଣଙ୍କୁ ସେଠି ବାହା ହୋଇକରି
ପରମ ଆନନ୍ଦେ ଦ୍ୱାରକା ଗଲା ।

## ଅଷ୍ଟମା ପତ୍ନୀ

ମଦ୍ରରଜା ଝିଅ ନାଆଁ ତା ଲକ୍ଷଣା
ତାହା ପାଇଁ ବର ବାଛିବା ପାଇଁ,
ସ୍ୱୟଂବର କଲ ମହା ସମାରୋହେ
ନାନା ଦେଶୁ ରଜା ଆଣି ଡକାଇ ।
ଲକ୍ଷଣା ତ ନୁହେ ବଡ଼ ସୁଲକ୍ଷଣା
ଲକ୍ଷ୍ମୀଙ୍କ ଲକ୍ଷଣ ସବୁ ତାଠାଇଁ,
ଯେତେ ରଜା ଆସି- ଥିଲେ ସ୍ୱୟମ୍ବରେ
ସକଳେ ଝୁରିଲେ ତାହାର ପାଇଁ ।
ଲକ୍ଷ୍ମୀ ବରନ୍ତେ କି ଆଉ କୋଉ ବର
କୃଷ୍ଣଙ୍କୁ କି ଛାଡ଼ ପାରନ୍ତେ ସିଏ ?
ମଣି ଭିତରେ ବି କୋଉଠୁ ଆସିବ
ଶ୍ରୀକୃଷ୍ଣଙ୍କ ସମ ହେବ ବା କିଏ ?
ଲକ୍ଷଣା ବରିଲ ଶ୍ରୀକୃଷ୍ଣଙ୍କୁ ର
ଆଉ କେ ପାରନ୍ତା ମନ ମଜାଇ,
କେତେ ବଡ଼ ବଡ଼ ରଜା ଯାଇଥିଲେ
ଲକ୍ଷଣା କାହାକୁ ଚାହିଁଲା ନାହିଁ ।

———

# ବ୍ରଜର ଅଷ୍ଟ ସଖୀଙ୍କ ସହିତ
# ଦ୍ୱାରକାର ଅଷ୍ଟ ରମଣୀଙ୍କ ତୁଳନା

ବ୍ରଜ-ଲୀଳା ବେଳେ    କୃଷ୍ଣଙ୍କର ଥିଲେ
ଶକ୍ତି-ସ୍ୱରୂପିଣୀ ଆଠଟି ସଖୀ,
ସେମାନଙ୍କ ସଙ୍ଗେ    ନାନା ଲୀଳା ରସେ
ବ୍ରଜଧାମେ ଥିଲେ ବହୁତ ସୁଖୀ ।
ଦ୍ୱାରକା ଲୀଳାରେ    ଆଠଟି ଭାର୍ଯ୍ୟା
ଆଠ ସଖୀ ସଙ୍ଗେ ତୁଳିବା ଦେଖି,
କିଏ କେଉଁ ସଖୀ    ପୁଣି କେଉଁ ଭାର୍ଯ୍ୟା
ବାଛିବୁଛି କରି ରଖିବା ଲେଖି ।
ଲଳିତା, ଶ୍ୟାମଳା,    ବୃନ୍ଦା, ଧନ୍ୟା, ପଦ୍ମା,
ଶୈବ୍ୟା ଆଉ ଭଦ୍ରା-ବିଶାଖା ଜାଣ,
ବୃନ୍ଦାବନେ ଆଠ    ସଖୀ ଏହିମାନେ
କୃଷ୍ଣଙ୍କଠି ମନ ତାଙ୍କଠି ଧ୍ୟାନ ।
ଯିଏ ରାଧା ବୃନ୍ଦା    ସେ ରୁକ୍ମିଣୀ ଅଂଶ
ଧୀର ଲାଜକୁଳୀ ଲକ୍ଷ୍ମୀ ମୂରତି,
ପତି ମନ ଜିଣି    କରେ ଆରାଧନା
ପତିଙ୍କ ଚରଣେ ଅଚଳା ଭକ୍ତି ।
ବିରହେ ବିଧୁର    ସବୁବେଳେ ସିଏ
ଲୁହେ ଛଳଛଳ ଲୋଚନ ତାର,
ନିଜ ଭାଗ୍ୟ ନିନ୍ଦି    ମଉନରେ ରହେ
ଯେଥିପାଇଁ ଦୋଷ ବାଛେନା କାର ।

ମରମ ବେଦନା ଲୁଚାଇ ପାରେ ସେ
ନୀରବେ ନୀରବେ ଭଲଇ ବସି,
ହସ କଉତୁକ- ରସାବେଶବେଳେ
ମୃଦୁ ମୃଦୁ ଟିକେ ଦିଅଇ ହସି ।
ଚାଲି ଯାଉଥିଲେ ମାଛି ମରେ ନାହିଁ
କଥା ବାଛି କହେ ମରମ ଜାଣି,
ଟାଣ କଥା ତାର ତୁଣ୍ଡରେ ପଶେନା
ସବୁବେଳେ କହେ କଅଁଳ ବାଣୀ ।
ନିନ୍ଦା ଅପବାଦ ଯେତେ ଶୁଣିଲେ ବି
ପଥର ପରାୟ ଯାଏ ସେ ସହି,
ମରମ-ସନ୍ତୁଳା ବଚନ ଶୁଣିଲେ
ମୁହଁ ପୋତି ଖାଲି ଅନାଏଁ ମହି ।
ଶାଶୁ ନଣନ୍ଦଙ୍କ ସକଳ ଗଞ୍ଜଣା
ଲୋତକ ଜଳରେ ଦିଏ ଭସାଇ,
ରୁଷି ମୁହଁ ମାଡ଼ି କେବେ ଶୁଏ ନାହିଁ
କ୍ରୋଧ ରୋଷ ବୋଲି ଜାଣଇ ନାହିଁ ।
ଅର୍ଦ୍ଧ ନିମୀଳିତ ଲୋଚନ ଯୋଡ଼ିକ
ଲଲାଟ ଉପରେ ଚିନ୍ତାର ରେଖା,
ସବୁବେଳେ ଚାହେଁ ତଳକୁ କାହିଁକି
ଖୋଜଇ କି ଆଉ ଅଦୃଷ୍ଟ ଲେଖା ?
ପୂନେଇ ରାତିରେ ନିର୍ମଳ ଜ୍ୟୋତ୍ସ୍ନା
ଦେଖି ଆହାଃ ଆହାଃ ଉଚ୍ଛ୍ୱାସେ କହେ,
ଅମଳ ରଜତ ଶୋଙ୍କ କରଣ
ସତେ କ'ଣ ତାର ଅନ୍ତର ଦହେ !
ଉପଭୋଗ କରି- ପାରେ ସେ ବିରହ
ମିଳନ ଯେସନ ପାରଇ କରି,
କେତେବେଳେ ତାର ମନରେ ନ ଥାଏ
ପତିଙ୍କୁ ରଖିବ ତାହାର କରି ।

ଲଳିତା ଗୋପାଳୀ　　ଦୁହିଁଯାକ ଏକା
　　ହାସ ପରିହାସ ସଙ୍ଗତ ତାର,
ସେତିକି ହସାଏ　　ସେତିକି କନ୍ଦାଏ
　　ହସି ହସାଇବା ରହସ୍ୟ ତାର ।
ସତ୍ୟଭାମା ପରି　　ସରସ୍ୱତୀ ଅଂଶ
　　ଢଗଢ଼ମାଳ ସେ ପାରଇ ରଚି,
ମାନ ଅଭିମାନ　　ଚିର ସାଥୀ ତାର
　　କଥାରେ କଥାରେ ବସଇ ଘୁଞ୍ଚି ।
ନିତ୍ୟ ହାସ୍ୟମୟୀ　　ରସରେ ରସାଳ
　　ବଦନ ଶୁଖିଲା ଦିଶଇ ନାହିଁ,
ମଲ୍ଲୀ ଫୁଲ ପରି　　ହସ ଫୁଟି ପଡ଼େ
　　ତା ମୁହଁକୁ ଖାଲି ଦେଖିଲ ଅନାଇଁ ।
ଲଳିତ ବଚନ　　ଲଳିତ ଗଠନ
　　ଭାବଭଙ୍ଗିମାରେ ଲଳିତା ସେହି,
ବସନେ ଭୂଷଣେ　　ଲଳିତ ତା ରୁଚି
　　ଜନମ ଲଭିଛି ଲଳିତ୍ୟ ନେଇ ।
ଯଉବନ ଘରେ　　ସଦା ଛଳଛଳ
　　ଶ୍ରାବଣ ମାସର ସରିତ ସିଏ,
ପ୍ରଣୟ ମନାସି　　ଅଭିସାର କଲେ
　　ତାର ଗତିପଥ ରୋଧିବ କିଏ ?
ନାରୀ ପୁରୁଷର　　ମିଳନ ମାଧୁରୀ
　　ଉପଭୋଗ କରି ପାରଇ ସିଏ,
ରାଧିକାଙ୍କ ପ୍ରୀତି　　କୃଷ୍ଣ ପୀରତିରେ
　　ଭଳାଇ ମନାଇ ଦୃଢ଼ଇ ଦିଏ ।
ଛୁଟି ଇଚ୍ଛା କଲେ　　ଭୂଇଁରେ ଶୁଅଇ
　　ସ୍ଥାନ ବା ଅସ୍ଥାନ ବାଛଇ ନାହିଁ,
ସେତେ ବୁଝାଇଲେ　　ଚିଂକଇ ନାହିଁ ସେ
　　ଆଉ ଅପାଙ୍ଗରେ ଦିଅଇ ଚାହିଁ ।

କଥାରେ କଥାରେ ଅଧର ଗୋଳାଏ
ଭ୍ରୂଲତା ହଲାଇ ଦଅଇ ଠାର,
ସେଇନା ହରଷ ସେଇନା ବରସ
ଅଡ଼ୁଆ ଲଗାଏ ତୁକ୍ତାକୁ ସ୍ୱର ।
ମଧୁମାଛି ପରି ସତତ ଚଞ୍ଚଳ
କୁସୁମେ କୁସୁମେ ସୋହାଗ ତାର,
ବହୁ ରଙ୍ଗୀ ଫୁଲ ତୋଳିତାଳି ଆଣି
ଯତନେ ଗୁନ୍ଥଇ ଚନ୍ଦ୍ରରେ ହାର ।
ମାଳ ଫୁଲଟିଏ ଦଅଇ ମଝିରେ
ରତନ ହାରରେ ପଦକ ପରି,
କେବେ ବା ରାଧିକା କେବେ ଅବା କୃଷ୍ଣ
ବେକରେ ଲମ୍ବାଏ ଆଦରେ ଧରି ।
ଦେଖୁଥାଏ ବସି ପାଖେ ଅନ୍ତରାଳେ
ନୟନେ ପଲକ ପକାଏ ନାହିଁ,
ଏଥିରୁ ବା ସିଏ କେଉଁ ସୁଖ ପାଏ
ଏତେ ଅନୁରାଗ କାହାର ପାଇଁ ?
ରାଧିକା କି ଅବା ଶ୍ରୀକୃଷ୍ଣଙ୍କ ପାଇଁ
ଦୁହେଁ କ'ଣ ତାର ସମାନ ପ୍ରିୟ,
ନାହିଁ ତାର ସ୍ୱାର୍ଥ ପରାର୍ଥ କେବଳ
କାହାକୁ ପୁଛିଲେ କହିବ କିଏ ?
ପଚାର କୃଷ୍ଣଙ୍କୁ କହିବେ ବା ସିଏ
ତାଙ୍କ ଛଡ଼ା କେହି ପାରିବେ ନାହିଁ,
ଲଳିତା ଆଜ ସେ ଭଲରେ ମନ୍ଦରେ
ମିଳନ ବିରହେ ସମାନ ଦେହୀ ।

## କାଳିନ୍ଦୀ

ଶ୍ୟାମଳୀଟି ସିଏ ସେହି ତ ପାଳିକା
ଶ୍ରୀକୃଷ୍ଣ ପାଳନ ଚିତ୍ତେ ଆନନ୍ଦ,
ତା ସଙ୍ଗେ ସମାନ କଳିନ୍ଦ-ନନ୍ଦିନୀ
କାଳିନ୍ଦୀଟି ସିଏ ସେ ନୀଳ ପଦ୍ମ ।

ସାରକାଟିଏ ସେ କୋକଳା ନୁହଇ
ଅନୁକରଣପାରେ ସକଳ ଛନ୍ଦ,
କୋକିଳ ପରି ସେ ଗାଏନା ପଞ୍ଚମେ
କପୋଟ୍ଟା ପରି ତା ସ୍ୱରଟି ମନ୍ଦ ।
ଶଗ୍ଧରେ ଶଗ୍ଧର ମିଶାଇ ଦଏ ସେ
ସାଗରେ ଗଗନ ମିଶିଲା ପରି,
ସ୍ୱଚ୍ଛ କାଚ ପାତ୍ରେ ଯେସନ ମିଶଇ
ନୀଳ ନିରମଳ ଯମୁନା ବାରି ।
ଅଧରେ ଅଧରେ ଶ୍ୱେତ ଶତଦଳ
ଫୁଟାଇ ରଞ୍ଜଇ ଶ୍ରୀକୃଷ୍ଣ ଚିତ୍ତ,
ଛଡ଼ାଇ ଆଣିଛୁ ଗଗନ ଦେହରୁ
କିବା ନୀଳାବ୍ଜରୁ ଶୀତଳ କାନ୍ତ !
ଆଖିରେ ଅଞ୍ଜନ ବୋଲି ଦେଇଯାଏ
ବିରହ ତାତକୁ ଶୀତଳ ଦଏ,
କରୁଣ ଚାହାଣୀ ଅପାଙ୍ଗେ ପୂରାଇ
ମନ-ନୟନକୁ ସେ କିଣିନିଏ ।
ଧନ୍ୟା ପ୍ରେମଧନ ଅନୁଭବେ ଧନ୍ୟା
ଶ୍ରୀକୃଷ୍ଣଙ୍କ ସଙ୍ଗେ ସଦା ଅଭେଦ,
ଦୁଃଖ ଶୋକ ନାହିଁ ସବୁବେଳେ ତୁଷ୍ଟି
ମନରେ ତା ପଶି ପାରେନା ଖେଦ ।
ଶ୍ରୀକୃଷ୍ଣ ହସିଲେ ହସଇ ସେ ନିଜେ
ହସର କାରଣ ଖୋଜଇ ନାହିଁ,
କୃଷ୍ଣ ମଙ୍ଗଳରେ ମଙ୍ଗଳ ଯାଏ ସେ
କୃଷ୍ଣଙ୍କୁ ତ ଖାଲି ବସଇ ଚାହିଁ ।
ଜାମ୍ବବନ୍ତୀ ଇଏ ଅନାର୍ଯ୍ୟ କୁମାରୀ
ସ୍ୟମନ୍ତକମଣି ଯୌତୁକ ଯାର,
ଶତଧନ୍ୱା ମଲା ଏହି ମଣି ପାଇଁ
ଶେଷେ ମଣି ହେଲା ସତ୍ୟଭାମାର ।

ଭିଲ୍ଲକନ୍ୟା ବୋଲି ସନ୍ଦେହ କରନା
କେତେବେଳେ ହେଲେ ଭିଲୁଣୀ ପରି,
କୃଷ୍ଣଙ୍କ ଭରସା ଆଉ ଯେତେ ସବୁ
ସେମାନଙ୍କ ପରି ଏ ବି ସୁନ୍ଦରୀ ।

## ବିଶାଖା-ମିତ୍ରବୃନ୍ଦା

ବିଶାଖାର ନାହିଁ ନାମାନ୍ତର କାହିଁ
ଚିତ୍ରା, ଚିତ୍ରଲେଖା କହନ୍ତି କେତେ,
ବିଚିତ୍ର ତା ରୂପ ଚିତ୍ରଟିଏ ପରି
କି ବର୍ଣ୍ଣିବ ତାର ରହସ୍ୟ ଯେତେ ।
କଥାରେ କଥାରେ ବହୁ ଶାଖା ତାର
ଢଙ୍ଗରେ ଢାଙ୍ଗରେ ବହୁତ ରଙ୍ଗ,
ଏକୁଟିଆ ହୋଇ ରହିପାରେ ନାହିଁ
ସବୁବେଳେ ସିଏ ଖୋଜଇ ସଙ୍ଗ ।
ଆଙ୍କେ ଚିତ୍ରପଟ ନାନା ରଙ୍ଗ ଦେଇ
ବାସ୍ତବର ସଙ୍ଗେ ମିଳାଇ ଦିଏ,
ଚିତ୍ରକୁ ଦେଖିଲେ ବାରି ହେବ ନାହିଁ
କିଏ ଚିତ୍ର ପୁଣି ପ୍ରକୃତ କିଏ ।
କଳାବନ୍ତୀ ସିଏ ଭାବନା ଫୁଟାଏ
କାଗଜ କାଳିରେ ତୁଳୀ ଚଳାଇ,
କଳ୍ପନାକୁ ସିଏ ରୂପ ଦେଇପାରେ
ମନ-ନୟନକୁ ପାରେ ଭୁଲାଇ ।
ସପନ ଯୌବନ ଫୁଲ-ବାଣ ବାଣ
ଦୁଇଟିଯାକରେ ପ୍ରଶସ୍ତ ତାର,
ଯୋଉଠି ଦେଖିବ ପ୍ରେମ ହିଆନିଆ
ସେଇଠି ଦେଖିବ ତାହାର ଘର ।
ଏହି ମିତ୍ରବୃନ୍ଦା ଅବନ୍ତୀର ଜେମା
ଦୁନିଆଟାଯାକ ତାହାର ମିତ,
ଚିତ୍ରପଟ ଲେଖି ଅଦେଖା ଦେଖାଇ
ହିରଦେ ମିଳାଇ କରଇ ହିତ ।

## ନଗ୍ନଜିତୀ-ପଦ୍ମା-ସତ୍ୟା

ଯିଏ ନଗ୍ନଜିତି                    ସେହି ପୁଣି ପଦ୍ମା
    ସେହି ସତ୍ୟା, ସେହି ଅଯୋଧ୍ୟା କନ୍ୟା,
ସବୁ ଅବୟବ                    ବିକଚ କମଳ
    ସବୁଠେଇ ତାର ଶୋଭାର ବନ୍ୟା ।
ବୁଜିଲେ ନୟନ                    ନିମୀଳିତ ପଦ୍ମ
    ମେଲାଇଲେ ଫୁଟିଯାଏ ନଳିନ,
ସବୁବେଳେ ତାର                    ହସ ହସ ମୁହଁ
    କେତେବେଳେ ହୁଏ ନାହିଁ ମଳିନ ।
ଦେହର ସୌରଭ                    ପବନେ ଭସାଏ
    ପଛେ ପଛେ ତାର ଗୋଡ଼ାଏ ଅଳି,
ଚୀରତ ପାଇଁକି                    ଅଞ୍ଚଳ ଧରି ସେ
    ନାନା ଭଙ୍ଗୀ କରି କରଇ କଳି ।
ଅତି ସୋହାଗିନୀ                    ସଖୀ ଅନ୍ୱେଷିଣୀ
    ହୃଦୟଟି ତାର ବଡ଼ କଅଁଳ,
କାହାରି ଦୁଃଖ ସେ                    ସହିପାରେ ନାହିଁ
    ଦେଖିଲେ ନୟନୁଁ ବୁହାଏ ଜଳ ।
ସଜ ସରସିଜ                    ସମ୍ପଦେ ବିପଦେ
    ସଂସାର ସନ୍ତାପ ପାରଇ ସହି,
ମରାଳ ଭଙ୍ଗୀରେ                    ଚରଣ ଚଳିଲେ
    ପୁଲକ ଉଠଇ ମଉନ ମହୀ ।
କଥାରେ ଭାଷାରେ                    ସିତାର ବାଜଇ
    ନିଶ୍ୱାସେ ପ୍ରଶ୍ୱାସେ ମଳୟ ବହେ,
କୃଷ୍ଣେ ଅନୁରାଗ                    କୃଷ୍ଣରେ ବିଳାସ
    ଶ୍ରୀକୃଷ୍ଣଙ୍କୁ ସଦା ପ୍ରଣୟେ ମୋହେ ।
ସଉତୁଣୀମାନେ                    ଈରଷେ ତାତିଲେ
    ଶୀତଳାଇ ଦିଏ ପାଖରେ ବସି,
ଅଉଁସି ଦିଅଇ                    କା' ତନୁ ତଳପା
    ମୁରୁକ ମୁରୁକ ମଧୁରେ ହସି ।

ସେବୀ ଦୁଃଖୀଙ୍କର କରଇ ଶୁଶ୍ରୂଷା
ଜେଜ୍ଜା ଶୋଷୀ ଫେଷ୍ଟ ଜାଣଇ ସିଏ,
ଶ୍ରବଣ ଯୋଡ଼ିକ ଡେଉର ଦେଇଥାଏ
କାଟରେ ଡାକଲେ ଆରତ ଜଣ ।

ଭଦ୍ରା

ଦ୍ୱାରକାରେ ଭଦ୍ରା ବୃନ୍ଦାବନେ ଭଦ୍ରା
ବଚନେ ବସ୍ତ୍ରରେ ସବୁରେ ଭଦ୍ରା,
କେକୟ ଦେଶର ଝିଅ ହେଲେ ମଧ୍ୟ
କଇକେୟୀ ପରି ନୁହେ ଅଭଦ୍ରା ।
ପତିଙ୍କୁ ମନାଇ ପାରେ ସେ କଥାରେ
କାନ୍ଦୁ କରେ ନାହିଁ ଅନ୍ୟାୟ ଅଳ,
ସବୁ ପୁଅଝିଅ ତାହାର ସମାନ
ସବୁଗୁଡ଼ିକ ତା ପେଟର ଭଲ ।
ଦଇବେ ତ କୃଷ୍ଣ ରାଜ୍ୟ-ବାଞ୍ଛାହୀନ
କୋଉ ଦେଶର ସେ ନୃହନ୍ତି ରାଜା,
କାହା ପାଇଁ ସିଏ କ ବର ମାଗିବ
କଏ ସିବ ବଣେ ଏଇଟି ମଜା ।
ତାର ଅଳ ଧଳ ନାହିଁ କିଛି କାହିଁ
ହସି ହସି କରି ପାରଇ ହନ,
ସଉତୁଣୀପାକ ସମସ୍ତେ ଭଜଣୀ
କଇକେୟୀ ସମ ନୁହେ ସେ ସ୍ଥାନ ।
ଯଉବନ ଅଛି ରୂପ ମଧ୍ୟ ଅଛି
ଦେଖାଇ ହୁଏନା କେଉଁଠି କେବେ,
ଛଳ ଛଦରମ କରଇ ନାହିଁ ସେ
ଶ୍ରୀକୃଷ୍ଣ ବଜୟ କରନ୍ତି ଯେବେ ।
ପତି ପଦପ୍ରାନ୍ତେ ଭକତି ନୈବେଦ୍ୟ
ରୂପ ବଭବକୁ କୁସୁମ କରି,
ଅକୁଣ୍ଠ ମନରେ ସମର୍ପି ଦଅଇ
କରୁଣ ନୟନେ ଲୋତକ ଭରି ।

ଶୁଦ୍ଧ ଶଉଚ ସେ ତିନି ଥର ହୁଏ
ଦାସୀ ପରି ବାସି ଖୋଜଇ ନାହିଁ,
ଦେବ ଅରଚନା କରେ ତିନି ଥର
କେବଳ କୃଷ୍ଣଙ୍କୁ ବସଇ ଚାହିଁ ।
ଅଶନ ବସନ ସବୁ ତା ସରଳ
ତପସ୍ୱିନୀ ପରି ସବୁ ଆଚାର,
ଘରେ ସୁଗୃହିଣୀ ମାତରେ ସେ ଗୁର୍ବୀ
ବିପଦ ବେଳରେ ଧୀର ବିଚାର ।

## ଲକ୍ଷଣା-ଶୈବ୍ୟା

ଲକ୍ଷଣା ମଦ୍ରଯା ବୃନ୍ଦାବନେ ଶୈବ୍ୟା
ଶିବଙ୍କ ବଲ୍ଲଭୀ ଗଉରୀ ମିଏ,
ରୂପ ଦେଖି ତାର ପାର୍ବତୀଙ୍କ ପରି
ଉମା ବୋଲି କହିବନି ବା କିଏ !
ବରଣ ମାଧୁରୀ ଚମ୍ପାଫୁଲ ପରି
ମୁହଁର ଗଢ଼ଣ ଶଶାଙ୍କ ଜିଣି,
ଯୋଗୀ ଯୋଗ ଭାଙ୍ଗେ ଦହେ ବି ମଦନ
ମନ-ନୟନଙ୍କୁ ହରଇ କିଣି ।
ସବୁ ଲକ୍ଷଣରେ ପୂର୍ଣ୍ଣ ଷୋଳକଳା
ଲକ୍ଷଣା ନାଆଁଟି ନୁହଇ ଭୁଲ,
ସବୁ ଅଲକ୍ଷଣ ଘଉଡ଼ି ଦିଏ ସେ
ଘରକୁ କରଇ ସରଗ ତୁଲ ।
ଏହାରି ପାଇଁକି ଦ୍ୱାରକା ବୈକୁଣ୍ଠ
ସକଳ ବିଭବ ଏହାରି ପାଇଁ,
ଲକ୍ଷ୍ମୀ ସରସ୍ୱତୀ ଏହାରି ଦେହରେ
ଶଚୀ ପାରବତୀ ଏହାରି ଠାଇଁ ।
ଯୋଗୀ ଯୋଗାଭ୍ୟାସ ତପସ୍ୱୀ ତପସ୍ୟା
ଗୃହୀ ଗୃହାଶ୍ରର ଏକାଠି ଠୁଳ,
ସୁଖ ସଉଭାଗ୍ୟ ହରଷ ଓ ରାସ-
ରସ ଆସ୍ୱାଦନ ସବୁରି ମୂଳ ।

ପରମା ବୈଷ୍ଣବୀ ମହଶ୍ଚ ମାନସୀ
ପୁଣି ସ୍ୱର୍ଗଦେବୀ ସବୁ ତ ସେହି,
ନୁହେ କାଞ୍ଚନର ନୁହେ ରଚନର
କେବଳ ଶାଶ୍ୱତ ସାତ୍ତ୍ୱିକ ଦେହି ।

---

# ରୁକ୍ମଣୀ ଅହଙ୍କାର ଗଞ୍ଜନ

ନିଶି ନିରମଳ ଜ୍ୟୋସ୍ନା ଧଉତ
ଜହ୍ନିଫୁଲ ପରି ହସୁଛି ମହୀ,
ଗଗନ-ବକ୍ଷରେ ଶୁକଳ ବାରିଦ
ସାଗର ଉରସେ ବୋଇତ ଛଇ ।
ଧୀର ଧୀର ହୋଇ . ପବନ ବହୁଛି
ବଉଦ ଯାଉଛି ସଧୀରେ ଭାସି,
ଚନ୍ଦ ସଙ୍ଗେ କ'ଣ ଲୁଚକାଳି ଖେଳ
ଖେଳୁଛନ୍ତି ନଭେ ତାରକାମଣି ?
ଫୁଟିଛି କୁସୁମ ନିଶିଗନ୍ଧା ସବୁ
ଜ୍ୟୋସ୍ନାକୁ କରି ଉଜ୍ଜ୍ୱଳତର,
ସୁଗନ୍ଧ ସୌରଭ ହରୁଛି ସମୀର
କିନ୍ତୁ ପାଖେ ନାହିଁ କାହିଁ ଭ୍ରମର ।
ନିଃସଙ୍ଗ କୁସୁମ ମୁକୁଳା ସୁଷମା
ଯାଇଅଛି ସାର ଶୋଭାକୁ ଜିଣି,
ଚନ୍ଦ ପାନେ ଚାହିଁ ହସନ୍ତି ସମସ୍ତେ
ମନ-ନୟନକୁ ନିଅନ୍ତି କିଣି ।
ସାଗରେ ବୋଇତେ ଗାଉଛି ନାଉରୀ
ଆହୁଲ ପକାଇ ମଧୁର ଗୀତ,
ବାରିଧିର ବାରି ଛୁଇଁ ସମୀରଣ
ସଞ୍ଚରଉଅଛି ମୃଦୁଲ ଶୀତ ।

ବାରିଧି ବକ୍ଷରେ ଫେଳୁଛି ଜ୍ୟୋତ୍ସ୍ନା
କାଚ ଝାଡ଼ ପରି ଝଳୁଛି ପଡ଼,
ଆଗ ପଛ ହୋଇ ସଲିଳ ଲହରୀ
ଲହ ଲହ ହୋଇ ଆସୁଛି ଗଡ଼ ।
ରୁକ୍ମଣୀ ନଅର ସୁବର୍ଣ୍ଣ ରଚିତ
ଭିତ୍ତିଁରେ ଜଡ଼ିତ ନାନା ରତନ,
ଅଳକା ନଗରୀ ଶୋଭା ସମ୍ପଦକୁ
ଥୋଇ ଦେଇଅଛି କରି ଯତନ ।
ସପ୍ତବର୍ଣ୍ଣୀ ଚନ୍ଦ୍ରା— ତପ ଝୁଲୁଅଛି
ଗଗନ ଶିରୀକୁ ହଟାଇ କରି,
ଚନ୍ଦ୍ର ପନ୍ତ ହୋଇ ଉଜ୍ଜ୍ୱଳ ମୁକୁତା
ଶୋଭୁଛି ଭିତ୍ତିଁରେ ତାରକା ପରି ।
ରତନ ପ୍ରଦୀପ ଜଳେ ଜକ ଜକ
ଅମଳ କମଳୁଁ ଉଜ୍ଜ୍ୱଳତର,
ମୁକୁର ଭିତରେ ତାର ପ୍ରତିବିମ୍ବ
ନୃତ୍ୟ ଭଙ୍ଗିମାରେ ଦିଶେ ସୁନ୍ଦର ।
ଗବାକ୍ଷ ପଥରେ ଶଶାଙ୍କ ମୟୂଖ
ପଶିଛି ମନ୍ଦିର ହସୁଛି ଖାଲି,
ପାରିଜାତ ଫୁଲ୍ ସ୍ୱରଗ ସୌରଭ
ପବନ ପିଠିରେ ଆସୁଛି ଚାଲି ।
ଅଗୁରୁ ଧୂପର ମନୋହର ଗନ୍ଧ
ପୂରାଇ ଦେଇଛି ସମଗ୍ର କକ୍ଷ,
ରତନ ମଣ୍ଡିତ ସୁବର୍ଣ୍ଣ ପଲଙ୍କ
ବଢ଼ାଇ ଦେଇଛି ବିସ୍ତୀର୍ଣ୍ଣ ବକ୍ଷ ।
ତଥିଁଉପରେ ପରି ସୁକୋମଳ ଶେଯ
ଦୁଗ୍ଧଫେଣଠାରୁ ବେଶୀ ଶୁକଳ,
ଶ୍ୱେତ ମଖମଲ୍ ବିଛଣା ଚଦର
ତଳପ ଉପରେ ଶୁକଳତର ।

ଶ୍ରୀକୃଷ୍ଣ ଶୟାନ ସୁଖ ଶୟନରେ
ମାଳୋପୃଳ ସମ ଚନ୍ଦ୍ରି ଢାଳ,
ପୃଥୁଳ ନିତମ୍ବ ମୃଦୁଳେ ହଲଇ
କନକ ପ୍ରତିମା ଖ୍ରୁଷ୍ଣକ ବାଳୀ ।
କଟିରେ ମେଖଳା ଗଳେ ନେତ୍ରହାର
ସରୁ ପାଟବାସେ ତନୁ ଆବରି,
ସଖୀଟିର କନ୍ଧେ କରକୁ ନବେଶି
ପହଞ୍ଚିଲେ ଗଜ ଗମନ କରି ।
ହସିଲା ମନ୍ଦର ହସିଲା ଆଲୁଅ
ବାସିଲା ପବନ ନାସିକା ମୋହି,
ଦେଖିଲେ ଶ୍ରୀକୃଷ୍ଣ ସ୍ୱରଗ ମୋହିନୀ
ମଣ୍ଡିତ କରିଛି ମାଟିର ମହୀ ।
କହିଲେ ଛଳରେ "ରାଜକେମା ତୁମେ
ସ୍ୱୟମ୍ବର ବେଳେ ରାଜକୁମର,
ବହୁତ ଆସିଲେ ବରିବା ପାଇଁକି
ରୂପେ ଗୁଣେ ସବୁ ଯୋଗ୍ୟ ତୁମର ।
ବଳେ ବଳପ୍ପାର, ଧନେ ଧନେଶ୍ୱର
ସମୃଦ୍ଧ ରାଜ୍ୟର ଯୋଗ୍ୟ ଈଶ୍ୱର,
ତାଙ୍କୁ ବରିଲନ କିଆଁ ଗୋ ସୁନ୍ଦରି !
ମୁଁ ବା କୋଉ ଗୁଣେ ଯୋଗ୍ୟ ତୁମର ।
ନୁହଇ ମୁଁ ରଜା ନୁହେ ରଜାପୁଅ
ନାହିଁ ରାଜ୍ୟବାଡ଼ ନାହିଁ ତ କିଛି,
ବଳବନ୍ତ ରଜା— ମାନଙ୍କୁ ମୁଁ ଡରି
ପଳାଇ ସାଗରଗର୍ଭେ ପଶିଛି ।
ତୁଚ୍ଛାକୁ ତ ରୂପ କାଳିଆ କୋଇଲି
ଭୂଷଣ ତହିଁକି ଗୁଞ୍ଜିରି ମାଳ,
ମୟୂରପକ୍ଷୀଟା ମୋର ଗୋ ମୁକୁଟ
ହଳଦିଆ ଖଦି ମୋର ସଂଖାଳ ।

ବାରମିଶା ବଣ- ଫୁଲେ ମାଳ ଗୁନ୍ଥି
ବେକରେ ପକାଏ କି ଶୋଭା ତାର,
ଦଶଇ ମୁଁ ଖାଲି ପତର ଶଅର
କେଳାଟାର ପରି କି ଶୋଭା ମୋର ?
ଲୋକମତ ନାହିଁ ଘୃଣଏ ବିଦ୍ରୋହୀ
କି ସୁଖ ମୋଠାରୁ ପାଇବ ବୋଲି,
ରାଜ, ରାଜପୁତ୍ର- ମାନଙ୍କୁ ବରଜି
ମୋତେ ଦେଖି ହାତ ଦେଲ ଗୋ ଚୋଲି ।
ସହଜରେ ମୁଁ ତ ଗରିବଙ୍କ ବନ୍ଧୁ
ମୋ ପାଖରେ ତୁଚ୍ଛ ଧନ ରତନ,
ତେଣୁକରି ମୋତେ କେହି ମାନନ୍ତିନି
ମୁଁ ତ ଏ ସଂସାରେ ଏକା ଅଧମ ।
ବରିବା ଆଗରୁ ଭଲ ମନ୍ଦ ସବୁ
କିଛି ତ ପଚାରି ବୁଝିଲ ନାହିଁ,
କାହିଁକି ଗୋ ମତେ ପାଗଳମି ଚରି
ଅନାଇଁ ବସିଲ ମୋହରି ପାଇଁ ?
ସାତ ସଉତୁଣୀ ସହିବ କପରି
ଜାଣୁଛ ତ ମୋତେ ରମଣୀ-ଦଳ,
ସତ୍ୟଭାମା ଗୁଣ ସବୁ ତ ଜାଣୁଛ
ତୁମଠି ମୋହଠି ବହୁତ ଭେଦ ।
ତାକୁ ଡରି ତୁମ ପାଖକୁ ଆସେନା
ଲୁଚି ଛପି କରି ଆସଇ ଡରେ,
ଟିକିଏ ବି ସୁଖ ନାହିଁ ମୋ ମନରେ
ସବୁବେଳେ ଖାଲି ଅଶାନ୍ତି ଘରେ ।
କାହିଁକି ଗୋ ତାକୁ ଉପରେ କରି
ତୁମର ମନରେ ଦେବ ମୁଁ ଦୁଃଖ ?
ତାହାରି ପାଇଁକି ଦେଖାଇ ମୁଁ କଥା
କହିପାରେ ନାହିଁ, ଟେକେନା ମୁଖ ।

ଦେଖ ଗୋ ନିର୍ଗୁଣ    ଦେହଟା ମୋହର
    ଦୁଃଖୀ ରଙ୍କୀ ଖାଲି ମୋର ସୋଦର,
ତୁମେ ରଜାଝିଅ    ବେଳ ଯାଇ ନାହିଁ
    ରଜାଟିଏ ଆଉ ବରଣ କର ।
ଧନ ପାଇଁ ମୋତେ    କେହି ପୂଜେ ନାହିଁ
    ପୂଜିଲେ ମୁଁ ଦେଇପାରେନା ଧନ,
ତେଣୁ ମୁଁ ସଂସାରେ    କେବଳ ଅଲୋଡ଼ା
    କାହାର ମୋଠାରେ ମାନେନା ମନ ।
ବାପା ଭାଇ ମିଶି    ବର ବାଛୁଥିଲେ
    ଶିଶୁପାଳକୁ, ସେ ବେଶୀ ସୁନ୍ଦର,
ଇଚ୍ଛା ଥିଲେ ମୋତେ    ବରଜ ଏଇନା
    ତାହାକୁ ଗୋ ଭଜ ଯାଅ ତା ଘର ।
ଏଥିରୁ ପ୍ରତ୍ୟୟ    ହେଉଛି ମନରେ
    ଥିଲା ବହୁ ବାଧା ରୁକ୍ମିଣୀଙ୍କର,
ତା ନ ହୋଇଥିଲେ    ଦ୍ରୌପଦୀ କପର
    ବାଧା ହୋଇଥାନ୍ତେ ପାଞ୍ଚଟା ବର ?
ଶାଲ୍ୱ, ଦନ୍ତବକ୍ର,    ଜରାସନ୍ଧ ଆଦ
    ତୁମର ପାଇଁକ ଚଡ଼ନ୍ତ ମୋତେ,
ତୁମ ବଡ଼ ଭାଇ    ରୁକ୍ମ ବ ରାଗନ୍ତ
    କପର ତୁମକୁ ରଖିବ ସତେ !
ତାଙ୍କ ମନ ଜଗି    ବାଛ ବରଟିଏ
    ସକଳେ ସେଥିରେ ହୋଇବେ ସୁଖୀ,
କେବଳ ତାଙ୍କର    ଗର୍ବ ଗଞ୍ଜିବାକୁ
    ଆଣିଲ ତୁମକୁ ଚନ୍ଦ୍ରମାମୁଖି !
ଅସାଧୁ କରମ    ଧରମ ସହେନା
    ଜନ୍ମରୁ ମୁଁ ଉଦାସୀ ଲାଗେନା ଧନ୍ଦା,
ଦାର ପୁତ୍ର ନେଇ    କଅଣ କରିବ ?
    ମୂକତକୁ ଖାଲି କରୁଛ ଫନ୍ଦା ।

ମୋତେ ଯେ ଭଜଇ ଦଅଇ ମୁକତି
ତାହା ଛଡ଼ା ମୋର ନାହିଁ ତ କିଛି,
ଗୃହସ୍ଥ ଆଶ୍ରମେ ଧନହୀନଙ୍କୁ ଗୋ
ସକଳେ କେବଳ କରନ୍ତି ଛି ଛି !
ଧନ ଯାର ନାହିଁ ତାର କିଛି ନାହିଁ
ପେଟରେ ତ ତାର ଜଳଇ ନିଆଁ,
ରଜାଟିଏ ଛାଡ଼ି ମୋତେ ବରି କରି
କେତେକ ଉପାସରେ ସଢ଼ିବ କିଆଁ ?
ତୁମେ ଭଜିଅଛ ଏତେ ଦିନ ମୋତେ
ତେଣୁ ମୁଁ ମୁକତି ଦେଉଛି ଯାଚି,
ଏଥର ତୁମର ଇଚ୍ଛା ଯାହା କର
ବରଟିଏ ଦେଖି ନିଅ ଗୋ ବାଛି ।"
ରୁକ୍ମିଣୀଙ୍କ ମନୁ ତୁଟିଲା ଧୈର୍ଯ୍ୟ
ଆଖିରୁ ବହିଲା ଲୋତକ ଝର,
ଥର ଥର ଥରି ହରାଇଲେ ଜ୍ଞାନ
ଶ୍ୱାସଟି ଟିକିଏ ଥିଲା ମାତର ।
ଶ୍ରୀକୃଷ୍ଣ ସଚେତ କଲେ କୋଳେ ଧରି
ମୁହଁରେ ଛିଞ୍ଚିଲେ ଶୀତଳ ପାଣି,
କହିଲେ, "ମୋ ରାଣୀ ! କଲି ପରିହାସ
ଏତେ ସବୁ ହେବ ଥିଲି କି ଜାଣି !
କିନ୍ତୁ କଥାଟିଏ କହିବି ସଙ୍ଗାତ
ମୁଁ ତୁମର ଏକା ମଣିବ ନାହିଁ,
ଜଗତର ମୁହିଁ ଜଗତ ମୋହର
ମୁଁ ଏକା ଜଗତଯାକର ସାଇଁ ।
ଏହିତକ ଖାଲି କହିଦେବି ବୋଲି
ଛଳାଇ ଗୋଳାଇ କହିଲି କଥା,
ଏଇଥି ପାଇଁକି ସୁନାରାଣୀ ମୋର
ଝାଇଁ ମରିଇଲ ଶୀତଳ ମଥା !

କୃଷ୍ଣ ତୁମ ପାଖେ କଣା ଗୋ ସୁନ୍ଦର
ତୁମେ ମୋ ସଙ୍ଗାଳ ଗଳାର ହାର,
ତୁମେ ଯେବେ ପାଶୁଁ ଅନ୍ତର ହେବ ଗୋ
ଏ ଘନ କୃଷ୍ଣଟା ହେବ ବା କାର ?
ଆଜଠାରୁ ସଖି ଜଗତ ଉପେକ୍ଷି
ହେଲ ଗୋ କେବଳ ତୁମରି ନାଥ,
ଲେଖକଟା ତେଣେ ଝୁରୁଛି ଗୋ ମୋତେ
ତା ମୁଣ୍ଡରେ ଟିକେ ବୋଳଇ ହାତ ।"

---

# ଶ୍ରୀକୃଷ୍ଣଙ୍କର ଭବିଷ୍ୟତ ଚିନ୍ତା

ଆରବ ସାଗର ନୀଳ ଉରସରେ
ଦ୍ୱାରକା ନଗରୀ ରତନମୟୀ,
ଶ୍ରୀକୃଷ୍ଣ ରତନ କୋଳରେ ପୂରାଇ
ଉଜ୍ଜ୍ୱଳ ଦିଶଇ ମହିମ ମୟୀ ।
ବାର ମାସ ବହେ ମଧୁର ମଳୟ
ପାରିଜାତ ଫୁଲୁଁ ସୌରଭ ହରି,
ନାହିଁ ଗିରୀଷମ ନାହିଁ ଶୀତ ଦାଉ
ସାଗର ବକ୍ଷରେ ଧୀର ଲହରୀ ।
ଧୋବ ରାଜହଂସ ପରାୟେ ବୋଇତ
ଭାସଇ ଖେଳଇ ଦିବସ ରାତି,
ଉଆଁସ, ପୁନେଇଁ ସଂକରାନ୍ତି ଦିନ
ପୁଲକ ଉଠଇ ସାଗର ଛାତି ।
ଶ୍ୱେତ ଶତଦଳ ସମ ଫେଣରାଶି
ଭାସଇ ଝଳଇ ଲହରୀ ପରେ,
ନୀଳ ଜଳ ବେଣୀ ଉରସ ମୁକୁରେ
ଶୁଭ୍ର ପ୍ରତିବିମ୍ବ ଉଜ୍ଜ୍ୱଳେ ଝଳେ ।
ଲହରୀ ଭଜନ ଗୁରୁ ଗରଜନ
ସାଗରବେଳାକୁ ମୁଖର କରେ,
ଦୁଃଖ ଦୁରଦଶା ରୋଗ ବଇରାଗ
ଦ୍ୱାରକାରେ ପଶି ପାରେନା ଡରେ ।

ନିତ୍ୟ କଇଶୋର ନିତ୍ୟ ଯଉବନ
ଜରା ମରଣରେ ମିଳେନା ଚହ୍ନ,
ପରମ ସନ୍ତୁଳା ଦହଚଞ୍ଚ ନାହିଁ
ସୁଖ ସଉଭାଗ୍ୟ ହରଷ ଭିନ୍ନ ।
ଶରତ ପ୍ରତ୍ୟୁଷ ନିର୍ମେଘ ଆକାଶ
ଦିଗଙ୍ଗନା ଶିରେ ଗୋରଚନା ଟିକା,
ରଜନୀ ଯାଇନି ଆଲୋକ ଆସିନି
ଅନ୍ଧାର ଟିକଏ ଦିଶୁଛି ଫିକା ।
ଆଉ ଟିକକରେ ରବ ହୋଇଯିବ
ରମଣୀସୀମନ୍ତ ସିନ୍ଦୂର ପରି,
ପ୍ରାଚୀ ଦିଗମୂଳେ ବୋଲ ଦେଇଯିବ
ତରୁଣ ଅରୁଣ କରଣ ଧରି ।
ସୁନୀଳ ସାଗର ଧୀର ସମୀରଣ
ସରୁ ଲହରୀରେ କାଞ୍ଚନ ପ୍ରଭା,
ସାଗର ଗରଭ ବର୍ଜ ରତନେ
ଉରସ ଉପରେ ପାଇବେ ଶୋଭା ।
ଶରତ ପ୍ରଦୋଷ ନିର୍ମଳ ଜ୍ୟୋସ୍ନା
ଲହରେ ଲହରେ ପଶିଶ କରି,
ଖେଳଇ ହରଷେ ମୃଦୁ ମୃଦୁ ନାଚ
ବାଣ୍ଟଦେଇ ଶୁଭ୍ର ରଜତ ଜରି ।
ଶ୍ରୀକୃଷ୍ଣ ଅଳଚନେ ଦିନକେ ଦି'ଥର
ଦୁଇ ଦିଗ୍‌ବଳୟେ ନୟନ ଢାଳି,
କାହିଁକି ଅନାନ୍ତି କଅଣ ଦେଖନ୍ତି
କାହିଁକି ଏସନ ହୁଅନ୍ତି ଭଳି !
ତାଙ୍କ ଆଖି କ'ଣ ଦିଗବଳୟର
ବାହାରେ ଯାଏନା, ଭିତରେ ରହେ ?
କିବା ତାଙ୍କ ଦୃଷ୍ଟି ସୀମାର ବାହାରେ
ବିଶ୍ୱ ବ୍ରହ୍ମାଣ୍ଡଟା ସେଥିରେ ରହେ ?

କିଆଁ ତାଙ୍କ ମନେ ସୁଖ ଶାନ୍ତି ନାହିଁ
ସଂସାର ପାଇଁକି ସତେ ଏ ଚିନ୍ତା,
ମର୍ତ୍ତ୍ୟ ବଇକୁଣ୍ଠ ଦ୍ୱାରକା ନଗରୀ
ସୁଖ ଐଶ୍ୱର୍ଯ୍ୟ ସବୁ ଲାଗେ କି ପିତା ?
ଧରଣୀ କାରଣ ସାଧୁ ନିବେଦନ
ଦୁଷ୍ଟ ଅତ୍ୟାଚାର ପଡ଼େ କି ମନେ,
ତେଣୁ କ'ଣ ଆଉ ମନ ଲାଗୁ ନାହିଁ
ଐଶ୍ୱର୍ଯ୍ୟ ପୁଅ ଝିଅ ଅତୁଳ ଧନେ !
ଅନୁଶୋଚନା କି ହେଉଛି ମନରେ
ଧରଣୀ ଦୁର୍ଦ୍ଦଶା ନାହାନ୍ତି ନାଶି,
ପରମାୟୁରୁ ତ ଅଧେ ସରିଲାଣି
ଯୁଗ ତ ଏଥର ସରିବ ଆସି ।
କାଳ ପୂରିଯିବ କଳି ଆସିଯିବ
କୋଉ ଧନ ଆଉ କରିବେ କାମ,
ଶିଷ୍ଟର ପାଳନ ହେବ ନାହିଁ ଆଉ
ସଂସାରରୁ ଲୋପ ପାଇବ ଧର୍ମ !
ସବୁରି ଅଦୃଷ୍ଟ ଦେଖନ୍ତି ତ ସିଏ
ତାଙ୍କ ଅଦୃଷ୍ଟ କି ଦେଖୁ ନାହାନ୍ତି,
ତେବେ ସେ କାହିଁକି ଏତେ ଚିନ୍ତାକୁଳ
ମନରେ କୋଉଠି ଅଛି କି ଭ୍ରାନ୍ତି !
ନାହିଁ ନାହିଁ ନାହିଁ ସିଏ କିଛି ନୁହ
ଧରଣୀ ଦୁର୍ଦ୍ଦଶା ପଡ଼ୁଛି ବଳି,
ସିଏ ଥାଉଁ ଥାଉଁ କଳିର କଳୁଷ
ଧରଣୀ ଗୋଟାକ ଦେବ କି ଦଳି !
ହିମାଳୟଠାରୁ କୁମାରିକା ଯାଏ
ଜନମଭୂଇଁଟା ପଡ଼ୁଛି ଭାଙ୍ଗି,
ଖଣ୍ଡ ଖଣ୍ଡ ରାଜ୍ୟ ହିଂସା ଦ୍ୱେଷ ମାତି
ବସିଲେଣି ବେଶି ଭାଙ୍ଗିବା ଲାଗି ।

ଧରଣୀରୁ ଅଧେ    ପଶ୍ଚିମ ଖୋଲରେଁ
ସଭ୍ୟ ଏଣେ ନା ନିରଟ ଅନ୍ଧ,
ପଶି ନାହିଁ ସେଠି    ସଭ୍ୟତା ସଂସ୍କାର
ଆଚାର ବିଚାର କାହାର ଗନ୍ଧ ।
ଆର୍ଯ୍ୟ ଓ ଅନାର୍ଯ୍ୟ    ଦୁଇଟି ସମାଜ
କେହି ତ କାହାର ଦେଖୁନ ଶିରୀ,
ସବୁବେଳେ ଟାଳି    ଚାକ ବସିଛନ୍ତି
ପର ରାଜ୍ୟ ନେବା ପାଇଁ କି ହରି ।
ନାନା ଧର୍ମ ଦ୍ୱେଷେ    ଧରଣୀ ପୂରିଛି
କାହା କଥା କା'ର ସହୁନ ଗୁଣ୍ଡ,
କଥାରେ ମାଡରେ    ଖାପ ଖାଉ ନାହିଁ
ସମାଜଠାଯାକ ଗଲଣି ଫାଟି ।
ଶୈବ ସହୁ ନାହିଁ    ବଇଷ୍ଣବ ଗୁରୁ
ହଉରକୁ ଦେଖି ପାରୁନ ଶାକ୍ତ,
ଧରମ ସ୍ଥାନରେ    ଅଧରମ ପଶି
ସଂସାର ସମାଜ କଲା ବିଷାକ୍ତ ।
ରଜା ଶୁଣୁ ନାହିଁ    ପ୍ରଜାର ଗୁହାରି
ଆହୁରି ଅଧିକ କରେ ହୀନସ୍ତା,
ଘରେ ଘରେ ପଶି    ଧନ ନାଶ ହରି
ବ୍ୟସନର ପାଇଁ କରେ ବ୍ୟବସ୍ଥା ।
ରାଜ ଦରବାରେ    ପଣ୍ଡିତର ସ୍ଥାନ
ଆଉ ନାହିଁ କାହିଁ ପଡ଼ିଛି ଖାଲି,
ମନ୍ତ୍ରୀର ମନ୍ତ୍ରଣା    ଶୁଣୁ ନାହିଁ ରଜା
ଯେଣେ ଇଚ୍ଛା ମାଡ଼ି ଯାଉଛି ଚାଲି ।
ମୃଗୟା ବିନୋଦ    ରଜାର କରମ,
ବ୍ରାହ୍ମଣ କଲଣି ଭିକ୍ଷାକୁ ପେଷା,
ପୂଅ ନାତିଙ୍କୁ ବି    ବ୍ରହ୍ମବୃତ୍ତି କହି
ଦେଲଣି ଗରବେ ଏ ହୀନ ଶିକ୍ଷା ।

ମନ୍ତ୍ରିଏ ହେଲେଣି ଖଳ ଖଚକୁହା
ତୋଷାମୋଦ କରି ପାଳନ୍ତି ପେଟ,
ପଣ୍ଡିତେ ପାଳଟି ହୋଇଲେଣି ମୂକ
ରଜା ସ୍ତୁତି ଗାଇ ହେଲେଣି ଭାଟ ।
ବ୍ରାହ୍ମଣ ଧରିଲେ ଖଣ୍ଡା ଧନୁଶର
ଛଳ ବ୍ରହ୍ମବୃତ୍ତି ହୋଇଲା କ୍ଷତ୍ରୀ,
କପଟ-ଆଶ୍ରୟୀ କୁମନ୍ତ୍ରଣାଦାତା
ଶଠ ଜୁଆଚ୍ଚୋର ହେଲେଣି ମନ୍ତ୍ରୀ ।
ନାରୀ ଧରଷଣ ଦେଖି ମୃହିଁ କରି
କେହି ତ କାହାକୁ କରୁନ ମନା,
ହସ୍ତୀନା ହୋଇଛି ସବୁଠାରୁ ବଡ଼
ତାର ଅତ୍ୟାଚାର ଯୋଉଠି ଅନା ।
ଜରାସନ୍ଧ ତେଣେ ବାନ୍ଧି ରଖିଅଛି
ଛୟାଅଶୀ ସତ୍ର ସୁବୋଧ ରଜା,
ତାଙ୍କ ରାଜ୍ୟ ଧନ ଲୁଟି କରି ଆଣି
ମଗଧରେ ବସି ମାରୁଛି ପ୍ରଜା ।
ଧରମରେ ତାର ନାହିଁ ମତଗତି
ମାରି ଧରି କରି ହୋଇଛି ରଜା,
ମଦ ମାତ୍ସର୍ଯ୍ୟରେ ବୁଡ଼ି ରହିଅଛି
ଭାବୁନ କପରି ଅଛନ୍ତି ପ୍ରଜା ।
ତାହାରି ପାଇଁକି ମଥୁରା ବରଜ
ସାଗର ଗରଭେ ପଶିଲା ଆସି,
ଆଜଯାଏ ବୋଲି କଂସର ମରଣ
ମନରେ ତାହାର ହୋଇନି ବାସି ।
ଭାବୁଛି ମନରେ ହାରିଗଲି ବୋଲି
ଏଇନା ତାହାର ହୋଇନି ବେଳ,
ଗୁଡ଼ି ଦେଇଅଛି ବସି ଦେଖୁଅଛି
ଖେଳୁ ଯେ ଖେଳିବ କେଉଁଭଳି ଖେଳ ।

ରାଜସୂୟ ଯଜ୍ଞ କରାଇବ ଏବେ
ସେତିକି ବେଳରେ ମରାଇ ତାକୁ,
ବନ୍ଦୀ ରଜାଙ୍କୁ ମୁଁ ମୁକୁଳାଇ ଦେଇ
ପଠାଇଣ ଦେବ ତାଙ୍କ ରାଜ୍ୟକୁ ।
ହେବେ ସେଗୁଡ଼ିକ ପାଣ୍ଡବ ଅଧୀନ
ମହାଭାରତରେ ହୋଇବେ ସାହା,
ଯୁଧିଷ୍ଠିର ହେବେ ରାଜ ଅଧିରାଜ
ସବୁ ରଜାମାନେ ମାନିବେ ତାହା ।
ଶିଶୁପାଳ ପୁଣି ଫୁଲୁଛି ରାଗରେ
ଶାଲ୍ୱ ଦନ୍ତ ବକ୍ର ତାହାର ସାଥୀ,
ପୁଣ୍ଡ୍ରରାକ ବାସୁ- ଦେବ ବସ୍ତ୍ର ସାଜି
ଗରବେ ଫୁଲଇ ବଢ଼ିଛି ଗୁଡ ।
ଦୁର୍ଯ୍ୟୋଧନ ହିଂସା ନିଆଁରୁ ପ୍ରଖର
ଦାନବଙ୍କଠାରୁ ବଳଇ ସିଏ,
କିଏ ସେ କହିବ ମଣିଷ ସେଠାକୁ
ଭାଇଙ୍କୁ ଡୋଡ଼ାଇ ମାରଇ ସିଏ ।
ବାଘ ସାପଠାରୁ ଆହୁରି ହିଂସୁକ
ହୃଦୟରେ ତାର ଧରମ ନାହିଁ,
ପାଣ୍ଡବମାନଙ୍କୁ ମାରିବା ପାଇଁକି
ରାତି ଦିନ ଖାଲି ବସିଛି ଚାହିଁ ।
ଭୀଷ୍ମ ଦ୍ରୋଣ ଆଦି ଜ୍ଞାନୀ ଗୁରୁଜନ
ପଇସା ବଦଳେ ହେଲେଣି କିଣି,
ସଂକଳ୍ପ ତାଙ୍କର ଦୁର୍ଯ୍ୟୋଧନେ ଦେବେ
ରାଜ୍ୟ ଧନ ସବୁ ପାଣ୍ଡବେ ଜିଣି ।
କର୍ଣ୍ଣଟା କୁଆଡ଼େ ପାଣ୍ଡବ ସୋଦର
ରବିଙ୍କର ପୁଣି ନିଜ ଔରସ,
ରାଜ୍ୟ ଖଣ୍ଡେ ପାଇ ପ୍ରତିଜ୍ଞା କରିଛି
ସହୋଦର ମାରି ବୁଡ଼ାଇ ବଂଶ ।

ଦୁର୍ଯ୍ୟୋଧନକୁ ସେ କରିଦେବ ବଡ଼
ପାପକୁ ବଢ଼ାଇ ମାରିବ ଧର୍ମ,
କାହାକୁ ନେଇ ମୁଁ ଧରମ ରଖିବି
କିଏ ମୋ ସଙ୍ଗରେ କରିବ କର୍ମ !
ଗୋଟାଏ ଦାନବ ଦମିବା ପାଇଁକି
ଆସିଲି ଧରାକୁ ବୈକୁଣ୍ଠ ଛାଡ଼ି,
ଏବେ ଦେଖୁଛି ବହୁତ ଦାନବ
କେମିତି ଏକା ମୁଁ ପାରିବି ମାରି !
ଦ୍ରୋଣ ଗୁରୁ ପୁଣି ନିରପେକ୍ଷ ନୁହେଁ
ସମର କରିବେ କୌରବ ପାଇଁ,
ପିତାମହ ଭୀଷ୍ମ ଉଭୟଙ୍କର ସେ
ପାଣ୍ଡବଙ୍କ ପ୍ରତି ମମତା ନାହିଁ !
ଶଲ୍ୟ ପୁଣି ମାମୁଁ ସିଏ ବି କୌରବ-
ମାନଙ୍କ ପକ୍ଷରେ କରିବେ ରଣ,
ଆଜ୍ଞା କଥା ହେଲା ପାଣ୍ଡବଙ୍କୁ ନେଇ
ସମର କ୍ଷେତ୍ରରେ କରିବି କ'ଣ ?
ଏକ ମହାରାଜ୍ୟ ଏକ ମହାଧର୍ମ
ଗୋଟିଏ ସମାଜ ହେବନି ଗଢ଼ି,
ଦେଶ ଓ ସମାଜ ଖଣ୍ଡିଆ ଖାବରା
ହୋଇଥିବ ଘାଆ ଘାଉଡ଼େ ସଢ଼ି !
କିଏ ସେ ଗଢ଼ିବ କିଏ ବା ଯୋଡ଼ିବ
କେମିତି ଯୋଡ଼ିବ କିଏ ସେ ସିଏ,
ରାଜାରାଜୁଡ଼ା ତ ମାତିଲେ ମଦରେ
ଧରମକୁ ଜଗି ରଖିବ କିଏ ?
ସେଗୁଡ଼ାଙ୍କୁ ଅବା ସଜାଡ଼ିବ କିଏ
କାହାର ଏପରି ଅଛି ଶକତି,
ବେଶୀ ବଳ ଯା'ର ଅତ୍ୟାଚାର ତାର
କେମିତି ସମାଜ ରହିବ ବଞ୍ଚି !

କେବଳ ଦେଖୁଛୁ ପାଣ୍ଡବେ ନିଗାଢ଼
ଧରମେ କରମେ ତାଙ୍କର ମନ,
ହେଲେ ବା କି ହେବ ନିତାନ୍ତ ଗରିବ
ନାହିଁ ରାଜ୍ୟ ଧନ ନାହିଁ ବି ଜନ ।
ଯାଦବ ପାଣ୍ଡବ କରିବି ଏକାଠି
ସୁଭଦ୍ରାଙ୍କୁ ଦେଇ ଅର୍ଜୁନ କରେ,
ବଳରାମ କି'ଣ ହେବେ କେବେ ରାଜି
ସେ ତ ସଦା ଦୁର୍ଯ୍ୟୋଧନ ପକ୍ଷରେ ।
ଯାଦବ ବଂଶକୁ ଦେଇଛୁ ବଢ଼ାଇ
ବହୁତ ରମଣୀ ବିବାହ କରି,
କରିବି ଅନ୍ୟାୟ ବିରୁଦ୍ଧେ ସମର
ପାଣ୍ଡବ ଯାଦବ ସଙ୍ଗରେ ଧରି ।
ଯୁଦ୍ଧ ଆଗରୁ ନିଜେ କରିବି ଯତନ
କରାଇବା ପାଇଁ ଶାନ୍ତି ସ୍ଥାପନ,
ଦୁର୍ଯ୍ୟୋଧନ ଯେବେ ହୋଇଯିବ ରାଜି
ତେବେ ଆବଶ୍ୟକ ହେବନି ରଣ ।
ପାଣ୍ଡବଙ୍କର ତ ନାହିଁ ରାଜ୍ୟ ବାଡ଼ି
କରିବି ତାହାଙ୍କୁ ରାଜାଧିରାଜ,
ରାଜସୂୟ ଯଜ୍ଞ କରାଇ ଆଣିବି
ନିମନ୍ତ୍ରଣ କରି ରାଜାସମାଜ ।
ଜାଣିବି ସେଥିରୁ ରଜାଙ୍କର ମନ
ପାଣ୍ଡବଙ୍କ ବଳ ସମର ପାଇଁ,
ଧରମ ପାଇଁକି କର୍ମ କରିବାକୁ
ଏହା ଛଡ଼ା ମୋର ଉପାୟ ନାହିଁ ।
ଭାରତ ପଡ଼ୋଶୀ ରାଜ୍ୟ ତ ସିଂହଳ
ସେ ରାଜ୍ୟ ରଜାକୁ ଆଣିବି ଡାକି,
ଆଉ ବ୍ରହ୍ମଦେଶ ସେ ନୁହେ ଅଲଗା
ସିଏ ବା କାହିଁକି ରହିବ ବାକି !

ଭାରତରେ ଆଜ          ଯେତେ ସବୁ ରଜା
ତାଙ୍କୁ ବି ପାମଲା ପାମଲ କରି,
ଆଣିବି ସଭିଙ୍କୁ          ରାଜସୂୟ ଯଜ୍ଞେ
ଖଟିବେ ସେ ଯଜ୍ଞେ ସେବକ ପରି ।
ମାନଗୋବିନ୍ଦଙ୍କୁ          ଠେକାଠେକି କରି
ତାହାର ହାତରେ ଦେବି ଭଣ୍ଡାର,
ମାନଗୋବିନ୍ଦ ସେ          ମାନରେ ଚରିବ
ଇଚ୍ଛା ଯାହା କରୁ ସେ କାରବାର ।
ଅନାର୍ଯ୍ୟଙ୍କ ସଙ୍ଗେ          କରିଛି ବନ୍ଧୁତା
ବିବାହେ ଆଣିଛି ପାଖକୁ ଟାଣି,
ଅନାର୍ଯ୍ୟ ଦୁହିତା          ଜାମ୍ବବତୀଙ୍କୁ ତ
ଆଗୁ ବାହା ହୋଇ ଅଛି ମୁଁ ଆଣି ।
ଭୀମ ହିଡ଼ିମ୍ବିଙ୍କ          ପରିଣୟ କଥା
ସମାଜ ଏଇନା ପାରିନି ଜାଣି,
ଦୁର୍ଯ୍ୟୋଧନ ଯେବେ          ଶୁଣିବ ଏ କଥା
ବାସନ୍ଦ କରିବ ନିଆଁ ଓ ପାଣି ।
ନାଗବାଳୀ ହେଲ          ଅର୍ଜୁନଙ୍କୁ ବାହା
ଚିତ୍ରାଙ୍ଗଦା ପୁଣି ବରିଛି ଧରି,
ଯାଦବ ଅନାର୍ଯ୍ୟ          ଗନ୍ଧର୍ବ ରାକ୍ଷସ
ଆଗରୁ ସାଜିଛି ଏକାଠି କରି ।
ଚିତ୍ରାଙ୍ଗଦା ପୁଅ          ମଣିପୁର ରଜା
ବ୍ରହ୍ମ ରାଜକେମା ହୋଇଛି ବାହା,
ଅନ୍ୟାୟ ବିରୁଦ୍ଧେ          ସମର ହୋଇଲେ
ନିଶ୍ଚୟ ସେ ହେବ ପାଣ୍ଡବ ସାହା ।
ବାନରଙ୍କ ସଙ୍ଗେ          ଅଛି ମୋ ମିତ୍ରତା
ହନୁମାନ ଆସି ପଶିବ ରଣେ,
ଅସ୍ତ୍ର ଧରିବନି          ମରାଇବ ଦୁଷ୍ଟ
ରଖିଦେବ ନାହିଁ କାହାକୁ ଜଣେ ।

ଭୀମ ଅରଜୁନ ଆଣିବେ ଆମନ୍ତି
କବା ଯୁଦ୍ଧ ଜିଣି ସବଳ ରଜା,
ରାଜସୂୟ ଯଜ୍ଞେ ଯୁଧିଷ୍ଠିରଙ୍କୁ ସର୍ବେ
ରାଜଶ୍ରେଷ୍ଠ ରୂପେ କରିବେ ପୂଜା ।
ଗୋପେ ରହିଥିବେ ବଢ଼ିଥିଲ ବୋଲି
ସବୁବେଳେ ମୋତେ ଗଉଡ଼ କହି,
ଘୃଣା ନିନ୍ଦା କରି ନାକ ଟେକୁଛନ୍ତି
ଆଉ ଏ ଲାଞ୍ଛନା ହେବନି ସହି ।
ଆର୍ଯ୍ୟ ଓ ଅନାର୍ଯ୍ୟ ସମସ୍ତେ ମଣିଷ
ଏକା ରକ୍ତମାଂସ ସବୁ ତ ଏକା,
କାହିଁକି ସେ ସାନ ଆର୍ଯ୍ୟ ହେଲା ବଡ଼
ଏ ବିଭେଦ କିଆଁ ହେଲା ବା ଦେଖା !
ଋଷିଏ କେବଳ ଏଥିପାଇଁ ଦାୟୀ
ପାତର ଅନ୍ତର କରନ୍ତି ସେହି,
ଗଉର ବରଣ ଟିକିଏ ସଂସ୍କାର
ଏହି ଉତ୍କର୍ଷତା ଦେଖାଇଦେଇ ।
ମାନେ ମୁଁ ସଂସ୍କାର ମାନେ ନାହିଁ ଜାତି
ଆର୍ଯ୍ୟ ଓ ଅନାର୍ଯ୍ୟ ସମସ୍ତେ ଏକା,
ଜନମରୁ କେହି ନୁହେ ତ ବ୍ରାହ୍ମଣ
ସଂସ୍କାର ପଥରେ ହୁଅଇ ଲେଖା ।
ପରାଶର ପରା ଶୂଦ୍ରାଣୀ ତନୟ
ପାଠଶାଠ ପଢ଼ି ହେଲେ ବ୍ରାହ୍ମଣ,
ସଂସ୍କାର, ଆଚାର, କରମ, ସାଧନା
ନୁହଇ କି ତେବେ ଯୁଗର କାରଣ ?
ବଶିଷ୍ଠ ସେପରି ବେଶ୍ୟା ଗର୍ଭଜାତ
ସଂସ୍କାର ପାଇଁକି ହେଲେ ବ୍ରହ୍ମର୍ଷି,
ଯେଉଁ ଦିନୁଁ ସିଏ ପାଠଶାଠ ପଢ଼ି
ସଂସ୍କାର ଆଣିଲେ ତପରେ ବସି ।

ବ୍ୟାସଦେବ ପରା ଅବୈଧ ସନ୍ତାନ
ସିଏ ବା କପରି ହେଲେ ବ୍ରାହ୍ମଣ ?
ଶିକ୍ଷା ଓ ସଂସ୍କାର ଆଗ୍ଭର ବଗ୍ଭର
ନୁହଇ କ ସତେ ତାର କାରଣ ?
କିଏ ସେ ମଣିଷ କିଏ ଅମଣିଷ
ବାସ୍ତବ କି କଳା ଗୋରାଙ୍କୁ ଗୃହ୍ନି,
ମଣିଷ ଯେତେକ ସମସ୍ତେ ସମାନ
ରକତ ମାଉଁସେ ପ୍ରଭେଦ ନାହିଁ ।
କୃଷ୍ଣ ବଳରାମ ଅର୍ଜୁନ ପାଣ୍ଡବ
ଦୁଇ ଦୁଇ ଜଣ ସୋଦର ଭାଇ,
କହ ଭଲ ଦେଖି କାହାଠେଇ ଅଛି
ଆର୍ଯ୍ୟତ୍ୱର ଚିହ୍ନ କାହାଠି ନାହିଁ ।
ବ୍ୟାସ ପରାଶର ବାପ ପୁଅ ପରା
ଜଣେ କିଆଁ ଗୋରା ଜଣେ କାଳିଆ ?
କଳା ଗୋରା ନୁହେ ଏହାର ଲକ୍ଷଣ
ଦୁହେଁ ଆର୍ଯ୍ୟ ଦୁହିଁଙ୍କର ଭଳିଆ ।
ପୁଣି କିଏ ଆର୍ଯ୍ୟ କିଏ ବା ଅନାର୍ଯ୍ୟ
ଏହାର ସଙ୍କେତ ନାସିକା ମୁଖ,
କେତେ ଅବିବେକ ଏହା ଯେ କହୁଛି
ତାହାଠାରୁ ବଳି ଅଛି କେ ମୂର୍ଖ ?
ପାଣି ପବନର ନାହିଁ ଅଧିକାର
ଗଢ଼ିଦେବା ପାଇଁ ପୃଥକ କରି ?
ଝର କାକରର ନାହିଁ କି ପ୍ରଭାବ
ବଦଳାଇ ଦେବା ପାଇଁ ସେପରି !
ଦେବତା ଦାନବ ଜନକ ତ ଜଣେ
ତେବେ ସେ କାହିଁକି ଯୋଡ଼ଏ ଭିନ୍ନ,
ସଂସ୍କାର ଆଗ୍ଭର ନୁହଇ କି ତେବେ
ଦୁହିଁଙ୍କ ଅଲଗା ଅଲଗା ଚିହ୍ନ ?

ଗଉଡ଼ କ୍ଷତ୍ରିୟ ଜାତିର ବନ୍ଧୁର
ସଂସାରେ ସମାଜେ କାହାକୁ ନେଇ,
କରମ ବଣ୍ଟନ ସମାଜ ସଂସ୍କାର
ଏଥିପାଇଁ କ'ଣ ନୁହଇ ଦାୟୀ ?
ଜନମରୁ କେହି ନୁହଇ ସ୍ୱତନ୍ତ୍ର
ସମସ୍ତେ ସମାନ ମଣିଷ ପିଲା,
ସେହି ହୁଏ ସାଧୁ ସେହି ହୁଏ ଷଣ୍ଢ
ସଂସ୍କାର ଓ ଶିକ୍ଷା ହୋଇଲେ ଢିଲା ।
ସାଧୁ ପୁଅ କ'ଣ ଚୋର ହେଉ ନାହିଁ
ଋଷି ପୁଅ ଝିଅ ହେଉନ ଷଣ୍ଢ,
ସଂସ୍କାର ସାଧନା ଶିକ୍ଷା ଦୀକ୍ଷା ଯେବେ
ସଂସାରେ ସମାଜେ ହୁଏ ନଅଣ୍ଡ ?
ବାଲ୍ମୀକ ପରା ବ୍ରାହ୍ମଣ ସନ୍ତାନ
ସିଏ ବା କାହିଁକି ହୋଇଲେ ଠକ ?
ସେହି ଠକ ପୁଣି ଋଷି ହୋଇଗଲେ
ଶ୍ଳୋକ ଲେଖି ଦେଖି ନିଧନ ବକ ।
ପର୍ଶୁରାମ ପରା ଋଷିର ତନୟ
ସେ କିଆଁ କଲେ ବା କ୍ଷତ୍ରିୟ ବୃତ୍ତି ?
ମାତୃହତ୍ୟା କରି କୀରତି ରଖିଲେ
ପିତାଙ୍କର ହେଲେ ସନ୍ତାନ କୃତି ।
ଆଣିବି ସଂସ୍କାର ସ୍ଥାପିବି ଧରମ
ଆଜିଠାରୁ ନେଲି ଏସନ ଦୀକ୍ଷା,
ଆର୍ଯ୍ୟ ଓ ଅନାର୍ଯ୍ୟ ସମାଜ ଭିତରେ
ସଂସ୍କାର ନିମିତ୍ତ ଦେବି ମୁଁ ଶିକ୍ଷା ।
ଦେବି ମଧ୍ୟ ଦୀକ୍ଷା ଯାଦବେ ପାଣ୍ଡବେ
କର୍ମଯୋଗ କରି ଯିବି ପ୍ରଚୁର,
ଏହି ଉପାୟରେ ନିବାରିବି ପାପ
ସଂହାରିବି ସବୁ ଦୁଷ୍ଟ ଆସୁର ।

ଅନାର୍ଯ୍ୟଙ୍କୁ ଦେବ ପୂର୍ଣ୍ଣ ଅଧିକାର
ସଂସାରେ ସମାଜେ ସମାନ ସ୍ଥାନ,
ଦେବ ପୂଜଠାରୁ ପଣ୍ଡିତଏ ଯାଏଁ
କୋଉଥିରେ ସିଏ ହେବେନି ସାନ ।
କଳି ଯୁଗ ଶେଷ ହୋଇଲା ବେଳକୁ
ମୋହରି ବଂଶ ତ ହେବ ଅନ୍ୟାୟୀ,
ସଂହାରିବ ତାଙ୍କୁ ନିଜ ନିଜ ମଧ୍ୟେ
ହେବେ ହତାଶ ରହିବେ ନାହିଁ ।
ଯୁଗ ସରିଯିବ କଳି ପ୍ରବେଶିବ
ଛାଡ଼ିବି ଶରୀର ଛାଡ଼ିବି ଧରା,
ବୈକୁଣ୍ଠ ଗମନେ ହେବ ମୋ ସହାୟ
ମୋ ପରମ ଭକ୍ତ ଅନାର୍ଯ୍ୟ ଜରା ।
ଅନାର୍ଯ୍ୟ ଶବର ହେବ ମୋ ପୂଜାରୀ
ଜଗନ୍ନାଥ ଧର୍ମ ହେବ ପ୍ରଚୁର,
ଆର୍ଯ୍ୟ ଓ ଅନାର୍ଯ୍ୟ ଭେଦ ରହିବନି
ରହିବନି ଆଉ ଜାତି ବିଚାର ।
ପତିତପାବନ ମୂରତି ଗଢ଼ିବେ
ପାପୀ ଦେଖି ତାକୁ ପାଇବେ ମୁକ୍ତି,
ମୋର ପ୍ରସାଦରେ ରହିବନି ଆଉ
ଛୁଆଁ ଅଛୁଆଁର ଅନ୍ୟାୟ ଯୁକ୍ତି ।
ଧନ ଲୋକଙ୍କୁ ରଖିଛ ପତିତ
ଏତେ କାମ କରି ସଂସାର ପାଇଁ,
ଆଉ କୋଉ ଦିନ ହେବ ସେ ମୁକତି
ତାର କ'ଣ ସତେ ମୁକତି ନାହିଁ !
ଶିଖିବା ବୟସ ସରିଛି ତ ତାର
ସଂସ୍କାର ତ ଆଉ ଆସିବ ନାହିଁ,
ତାର ଶିକ୍ଷାଦୀକ୍ଷା ଆଉ ହେବ ନାହିଁ
ବସିଛି କେବଳ ତୁମକୁ ଚାହିଁ ।

# ବ୍ୟାସାଶ୍ରମେ କୃଷ୍ଣାର୍ଜୁନ

ଦିନେ ରାଜ ସିଂହଦ୍ୱାରେ ଅର୍ଜୁନ ଏକାକୀ,
ମୃଗୟାକୁ ଯିବେ ବୋଲି ସାରଥିକୁ ଡାକି ।
କହୁଛନ୍ତି ରଥ ସାଜ ରଖିବାର ପାଇଁ,
ଶୁଣିଲେ ଆର୍ତ୍ତ କାନ୍ଦଣା ରହିଲେ ଅନାଇଁ ।
ବ୍ରାହ୍ମଣେକ ଊର୍ଦ୍ଧ୍ୱଶ୍ୱାସେ ଆସୁଅଛି ଧାଇଁ,
କ୍ଳାନ୍ତ ବଶୁଁ ଚରଣ ତା ଥୟ ରହି ନାହିଁ ।
କହିଲା ସେ କାନ୍ଦି କାନ୍ଦି "ଅହେ ଅରିନ୍ଦମ !
ଅତର୍କିତେ ଆସି କାହୁଁ ଅନାର୍ଯ୍ୟ ଘାତକ,
ହରିନେଲା ଗାଈଟିକୁ ବଳାତ୍କାର କରି,
ଦୁଗ୍‌ଧପୋଷ୍ୟ ଶିଶୁଟି ମୋ ଯିବ ସିନା ମରି !"
ଦସ୍ୟୁକର ଗାଈଟିକୁ ଦିଅ ହେ ଉଦ୍ଧାରି,
ଧରମ ଖାରନ୍ତି ତୁମ ଗାଣ୍ଡିବ ଝୁରି ।"
କହିଲେ ଅର୍ଜୁନ ଖେଦେ, "କରେ ନାହିଁ ଅସ୍ତ୍ର,
ଖାଲି ହାତେ କହ କେହ୍ନେ ଉଦ୍ଧରିବ ଗାଈ ?
ଅସ୍ତ୍ରଶସ୍ତ୍ର ଅଛି ଏବେ ଭିତର ନଅରେ,
ଯୁଧିଷ୍ଠିର ଦ୍ରୌପଦୀ ଅଛନ୍ତି ସେ ଘରେ ।
ପଶି ମୁଁ ପାରିବ ନାହିଁ ସେଠି କଦାଚନ,
ପଶିଲେ ମୁଁ ବାରମାସ ଭ୍ରମିବ ଅରଣ୍ୟ ।
ନଗରପାଳଙ୍କୁ ଯାଇ ସବୁ କଥା କହ,
ନ ହେଲେ ଅପେକ୍ଷା କରି ତୁମେ ଠିକେ ରହ ।"

କହିଲେ ବ୍ରାହ୍ମଣ ଖେଦେ, "ଆହେ ବୀରବାହୁ !
ନଗରପାଳ ଦସ୍ୟୁଙ୍କୁ ସମ ହେବେ ନାହିଁ ।
ମହା ଧନୁର୍ଦ୍ଧର ଦସ୍ୟୁ ଶମନର ସମ !
ନଗରପାଳ କି କେବେ ହେବ ସମରଥ ?
ଅନାର୍ଯ୍ୟ ମାରିବ ଗାଈ ହୋଇଲେ ଉଚ୍ଛୁର;
ଗୋ-ମାଂସ ଆହାର ପରା ଅଣ-ଆର୍ଯ୍ୟଙ୍କର ।
ତୁମ ରାଜ୍ୟେ ଅତ୍ୟାଚାର ବଡ଼ ବିଡ଼ମ୍ବନା,
ଭଲ ମନ୍ଦ ଭାବ ଚିନ୍ତ ଧର୍ମକୁ ଅନା ।
ମରିବ ଶିଶୁଟି ମୋର, ମରିବ ଜନନୀ,
ଦେଖି ମୁଁ ତାଙ୍କ ମରଣ ତେଜିବି ଜୀବନ ।
ତିନି ହତ୍ୟା ସଙ୍ଗେ ହେବ ଗୋ-ହତ୍ୟା ତୁମର,
ଅରଣ୍ୟ ଓ ଜନପଦ ସବୁ ତ ତୁମର ।
ଅରଣ୍ୟକୁ ଯିବା ପାଇଁ ହୋଇବ କାତର ?
ଏହା ଆଗୁ ବନବାସ କରି ବହୁ ଥର,
ଅରଜିଛ ବହୁ ଯଶ ଧର୍ମ ମହତ୍ତର ।
ଆଜ କେଉଁ ବଡ଼ କୀର୍ତ୍ତି କରିବାର ପାଇଁ,
ପୁଣି ବନବାସ ଅଛି ତୁମକୁ ଅନାଇଁ ।
ଅଦୃଷ୍ଟର ଲିପି ଏହା ହେବ ନାହିଁ ଆନ,
ଯାଅ ବେଗେ ଅନ୍ତଃପୁରେ ପଶି ଅସ୍ତ୍ର ଆଣ ।
ଅଦୃଷ୍ଟ କି ରୂପ ଧରି ଦେଉଛି ଅନୁଜ୍ଞା,
ମଣିଲେ ଅର୍ଜୁନ ତାକୁ ଦେବାଦେଶ ସମ ।
ଧରମଘରୁ ପାଣ୍ଡବେ ଧରମକୁ ଡରି,
ଅଦୃଷ୍ଟ ଆଦେଶ ଗଲେ ବହୁ ଚିନ୍ତା କରି ।
ପଶିଲେ ମନ୍ଦିରେ ଯହିଁ ଦ୍ରୌପଦୀ ଯୁଧିଷ୍ଠି,
ଆଣିଲେ ଗାଣ୍ଡୀବ ଧନୁ ଆଖି କାନ ବୁଜି ।
ଗଲେ ବ୍ରାହ୍ମଣଙ୍କ ସଙ୍ଗେ ଅନାର୍ଯ୍ୟ ସଂହାରି,
ବ୍ରାହ୍ମଣଙ୍କ ଗାଈଟିକୁ ଦେଲେ ମୁକୁଳାଇ ।
ଫେରିଲେ ନାହିଁ ନଗରେ ରହିଲେ ବଣରେ,

ବ୍ରହ୍ମଚାରୀ ବେଶ ପିନ୍ଧି, ବୁଲି ଏଣେ ତେଣେ,
ଶେଷେ ବ୍ୟାସ ତପୋବନେ ପହଞ୍ଚିଲେ ଯାଇଁ,
ଶ୍ରୀକୃଷ୍ଣ ଆଗରୁ ସେଠି ବସିଥିଲେ ରହିଁ ।
ସିଏ ଯେ ଅଦୃଷ୍ଟ ଦ୍ରଷ୍ଟା ପାରିଥିଲେ ଦେଖି,
ଅର୍ଜୁନ ଅଦୃଷ୍ଟେ ବିହି ଯାହା ଥିଲେ ଲେଖି ।
କୃଷ୍ଣ ସ୍ୱଗତ—ଭବିଷ୍ୟତ ଚିନ୍ତା ମୋର ହୋଇବ କି ସତ ?
ଯାଦବ ପାଣ୍ଡବ ରକ୍ତ ହୋଇବ ମିଳିତ ?
ଧରା ଦେହୁଁ ଦୁଷ୍ଟ ଯେତେ ହୋଇବେ ନିହତ ?
ହେବ ଧର୍ମ ସଂସ୍ଥାପନା, ଧରା ହେବ ସୁସ୍ଥ ?
ଦେଖିଲେ ଶ୍ରୀକୃଷ୍ଣ ଦୂରୁ ବୀର ଧନଞ୍ଜୟ,
ଶ୍ୟାମଳ ସୁନ୍ଦର ତନୁ ଚୀରକେ ଆବରି,
ପୃଷ୍ଠେ ଶରାସନ କରେ କମଣ୍ଡଳୁ ଧରି,
ଯୋଗୀବେଶେ ବୀର ବପୁ କରିଦେଇ ଶୀର୍ଣ୍ଣ,
ଆସନ୍ତି କେଶରୀ ସମ ଚଉଦରେ ରହିଁ ।
ବ୍ରହ୍ମଚାରୀ ବେଶେ ବୀରଭଙ୍ଗୀ ଯାଇ ନାହିଁ ।
ଫୁଟୁଛି ଦର୍ପ ତେଜ ଜଳୁଛି ବଦନ,
ଯୋଗୀବେଶକୁ ଧିକ୍କାରୁ ଅଛି ଶରାସନ ।
କହିଲେ ସହର୍ଷେ ଡାକି, "ବଡ଼ ଭାଗ୍ୟ ସଖା !
ଆଚମ୍ବିତେ ପୁଣ୍ୟକ୍ଷେତ୍ରେ ମିଳିଗଲା ଦେଖା ।"
ମନ ଯେତେବେଳେ ଯାକୁ ଖୋଜଇ ଆଗ୍ରହେ,
ଦଇବ ଯୋଗାଇଦିଏ ରହି ଅନୁକୂଳେ ।
କେତେ ଥର ଭାବେ ସଖା ଦେଖିବାର ପାଇଁ,
କରମ ଜଞ୍ଜାଳେ ଛାଡ଼ି ହୋଇପାରେ ନାହିଁ ।
ଧରମ ଓ ଭିନେ ଭାଇ ଅଛନ୍ତିଟି ଭଲ ?
ଦ୍ରଉପଦୀ ଜନନୀଙ୍କ ସବୁ ତ କୁଶଳ ?
ଦୁର୍ଯ୍ୟୋଧନ ଆଉ ପରି କରୁ ନାହିଁ ହିଂସା ?
କହୁ ତ ନାହିଁ ସେକଥା ସତ କି ମିଛା ?

କାନରେ ତା ସତ ମିଛ କହୁନ ଶକୁନ ?
ଅନ୍ୟାୟ ତ ଆଜ କିଛି କରୁ ନାହିଁ ଶୁଣି ?
ଆଚ୍ଛା ସଖା ! ଯଉବନେ ଯୋଗୀବେଶ କିଆଁ,
ଦ୍ରୌପଦୀ କି କେତେବେଳେ ଚେଙ୍ଗିଦେଲେ କିଆଁ ?
କିବା ଭାଇମାନେ କଲେ କଳିତକରାଳ,
ସେଥିପାଇଁ ଗୃହସୁଖେ ଦେଲ ଜଳାଞ୍ଜଳି ?
ତୁମର ଏ କମଣ୍ଡଳୁ ଗେରୁଆ ବସନ,
ରମଣୀ ନୟନଲୋଭା କନ୍ତୁ ମୋ ନୟନ ,
ପୀଡ଼ୁଛି କାହିଁକି ସତେ ! ମନ ବୁଝେ ଥୟ,
ସଂସାର କରିବା ପାଇଁ କିବା କଲ ଭୟ ?
ଏତେ ପରିଶ୍ରମ କରି ଲକ୍ଷ ଯେ ବିନ୍ଧିଲ,
କାହା ପାଇଁ ଶ୍ରମଲବ୍ଧ ନାରୀ ବରିଜିଲ ?
କିବା ଗୃହ ଭାଗ କରି ସହୋଦରେ ଦେଲ,
ନିଜ ଭାଗଟି ବୁଡ଼ାଇ ବ୍ରହ୍ମଚାରୀ ହେଲ ?
ଏତେ ବଡ଼ ସ୍ୱାର୍ଥତ୍ୟାଗ ଶୁଭିଲି କାହିଁକି ?
ଦୁର୍ଯ୍ୟୋଧନ ହିଂସା କରେ ଏଇଥିପାଇଁକି ।
ତୁମକୁ ସେ ଦେବ ନାହିଁ ଭାଗ ତାର ଇଚ୍ଛା,
ତେଣୁ ତ ହିଂସାରେ ଲାଗିଅଛି ତୁମ ପିଛା ।
ତୁମର ଏ ଛଳ ବେଶେ ମନ ମାନୁ ନାହିଁ,
କି ଗୂଢ଼ ରହସ୍ୟ ମୋତେ ରଖୁଚ ଲୁଚାଇ ?
ତୁମ ପାଇଁ ବହୁ କାମ ପଡ଼ିଅଛି ରହି,
କରମ ନ କରି କି'ଣ ସତେ ଦେବ ଫାଙ୍କି ?
ସଂସାର କରମ ଛେଳ କରମ ନ କରି,
ଯୋଗୀବେଶେ ତୁମେ ହେବ ତ୍ୟାଗୀ ବ୍ରହ୍ମଚାରୀ !
କେତେ ଦିନ ହେଲା ତୁମେ ଘରଦ୍ୱାର ଛାଡ଼ି,
ବଣେ ବଣେ ବୁଲୁଅଛ ଏ ବେଶକୁ ଧରି ?"
ଅର୍ଜୁନ କହିଲେ ସବୁ ହସି ହସି କରି,
"ନୁହଇ ମୁଁ ବ୍ରହ୍ମଚାରୀ ଅଛି ଧନୁ ଧରି ।

ବସନ ଗେରୁଆ କଲ ରଜକ ଅଭାବେ,
ମୁଛ ଦାଢ଼ି ଛାଡ଼ଦେଲ ନ ପାଇ ବାରିକ,
କମଣ୍ଡଳୁ ଧରିଅଛୁ ଲୋଡ଼ା ହୁଏ ପାଣି,
ତା ତ ସବୁବେଳେ ଲୋଡ଼ା ପାରୁଥିବ ଜାଣି ।
ଦ୍ରୌପଦୀ ଚେଙ୍ଗି ନାହିଁ କେବେହେଁ ଅନଳ,
ଭାଇମାନଙ୍କର ମନ ଅଧିକ ନିର୍ମଳ ।
ସ୍ୱାର୍ଥ ତ ବରଜ ନାହିଁ ପରାର୍ଥ ମୋ ଇଚ୍ଛା,
ସେଥିପାଇଁ ନେଇଅଛୁ ବ୍ରହ୍ମଚର୍ଯ୍ୟ ଦୀକ୍ଷା ।
କରମ କରିବା ପାଇଁ ନାହିଁ ମୋର କୁଣ୍ଠା,
ବତାଅ କରମ କେଉଁ କରିବ ଅର୍ଜୁନ,
ଧରାଧାମେ ଜନ୍ମ ହୋଇ ହେବ କର୍ମହୀନ ?
ଇନ୍ଦ୍ରପ୍ରସ୍ଥ ଶିରୀ ଦେଖି ଦୁର୍ଯ୍ୟୋଧନ ହିଂସା,
ବଢ଼ିଛି ଆଗରୁ ବେଶୀ ଛାଡ଼ ନାହିଁ ନିଶା ।
ଦ୍ରୌପଦୀ ସ୍ୱୟମ୍ବରେ ପରାଭବ କଥା,
ପାସୋରି ନାହିଁ ମନରୁ ଡାଗଲ ତା ମଥା ।
ପାପ କି ବଢ଼ଇବାରେ ସ୍ୱଭାବ ତାହାର ?
ଶକୁନି ତ କୁମନ୍ତ୍ରଣା ଦିଏ ବାର ବାର ।
ବାର ବର୍ଷ ହେଲା ମୁଁ ତ ବୁଲୁଅଛୁ ବଣେ,
ଯୁଧିଷ୍ଠିରଙ୍କ ନିମିତ୍ତ ଚିନ୍ତା ହୁଏ ମନେ ।
କିଏ ଜାଣେ ଦୁର୍ଯ୍ୟୋଧନ କି କରୁଛି ତେଣେ,
ଯୁଧିଷ୍ଠିରେ ରଖିବାକୁ ଭୀମ ଏକା ଜଣେ ।
ଆଜ ମୋର ବାର ବର୍ଷ ହୋଇଗଲ ଶେଷ,
ଏଇଠି ଜଳାଇଁ ଦେବ ବ୍ରହ୍ମଚର୍ଯ୍ୟ ବେଶ ।
ଆସିଛୁ ଏଠିକି ବ୍ୟାସେ କରିବ ଦର୍ଶନ,
ବାହୁଡ଼ିବ ମୁଁ ଦେଶେ ବରଜିବ ବଣ ।
ବଡ଼ ଭାଗ୍ୟ ଆଜ ମୋର ଭେଟିଲ ଶ୍ରୀହରି,
ତୁମକୁ ଭରସା କରି ଭବୁ ଯିବ ତରି ।
ପରିହାସ ଉପହାସ ସବୁର ମୁଁ ଯୋଗ୍ୟ,

କିନ୍ତୁ ତୁମ ଦରଶନ ସଦା ମୋର କାମ୍ୟ ।
ସଖା ବୋଲି ସମ୍ବୋଧନ ମୋର ମହାଭାଗ୍ୟ,
କାଳେ କାଳେ ଦାସଠାରେ ଥାଉ ଅନୁରାଗ ।
ଏତିକି ମୋ ନିବେଦନ ଆହେ ଚକ୍ରଧର !
କରିବ ନାହିଁ ଦାସକୁ ଚରଣୁ ଅନ୍ତର ।
ପାଣ୍ଡବଙ୍କର ଶରଣ ତୁମେ ରମାକାନ୍ତ,
ଏକା ଆମଙ୍କର ନୁହ ଜଗତର ନାଥ ।"
ଶ୍ରୀକୃଷ୍ଣ ହସିଲେ ଟିକେ କହିଲେ ଗମ୍ଭୀରେ,
"କିଏ କାହାର ସହାୟ ଏ ଭଙ୍ଗୁର ଭବେ ?
ତୁମ ମୋର ପାରଥକ୍ୟ ଅଛି କି ହେ ଲବେ ?
ତୁମେ ମୋର ସଖା ନୁହ ଶରୀର ପରାଣ,
ତୁମେ ମୋ ଦୋସର ଏଥି ଭ୍ରମ ନାହିଁ ଜାଣ ।
ତୁମର ଏ ଆତ୍ମଗ୍ଳାନି ବଡ଼ ଚମତ୍କାର,
ମୁହିଁ ଯେ ନଉକା ତୁମେ ମୋର କର୍ଣ୍ଣଧାର ।
ତୁମେ କିଏ ଜାଣ ? ତୁମେ ମୋର ଶ୍ରେଷ୍ଠ ଅଂଶ,
ତୁମକୁ ନେଇ ମୁଁ ପୂର୍ଣ୍ଣ ନ ହେଲେ ଅବଶ ।
ତୁମେ ମୋ ଦକ୍ଷିଣ କର ମୁହିଁ ନିଜେ ବାମ,
ଦୁହେଁଯାକ ମିଶି ତୁମେ । ତେଣୁ ତ ତୁମର
ସଖା, ସବ୍ୟସାଚୀ ନାମ । ଆଜ କେ ସଂସାରେ
ତୁମ ପରି ଜଣେ କାହିଁ ? ଧର୍ମରଣେ ପଶି ।
ଶର ମାରେ ବେନି କରେ ନୁହନ୍ତି ପୃଥକ୍,
ନର ନାରାୟଣ କେବେ ମୁହିଁ ନାରାୟଣ ।
ତୁମେ ନର ତ ପ୍ରତ୍ୟକ୍ଷ, ମୁହିଁ ଆତ୍ମା, ତୁମେ
ଶରୀର ମୋହର ସତ୍ୟ, ତୁମେ ମୋ ବାହାର,
ମୁଁ ମୋର ଅନ୍ତର ଜାଣ, ଅନ୍ତର ବାହାର
ମିଶି ବିଶ୍ୱ ଚରାଚର, ବିଶ୍ୱ ଚରାଚର,
ପୁଣି ଗୋଟିଏ ଈଶ୍ୱର, ବିଶ୍ୱରୂପ ଯେହ୍ନ ।
ବିଶ୍ୱବ୍ରହ୍ମାଣ୍ଡ ତାଙ୍କର, କେଉଁଠି ପ୍ରଭେଦ

କେବେ ଦୃଶ୍ୟରେ ? ଅଦୃଶ୍ୟରେ ଦେଖିପାରୁଛ କି
ଦୃଶ୍ୟେ ଅଦୃଶ୍ୟରେ କାହିଁ ? ଚାଲ ଦୁହେଁଯାକ
ଯିବା ବ୍ୟାସଙ୍କ ସନ୍ନିଧି, ବେଳ ହେଲା, ତପ ।
ସାରି ଭାଙ୍ଗିବେ ସମାଧି ।”

ଆହା କି ସୁନ୍ଦର ଶ୍ୟାମଳ ଯୁଗଳ
ମୋହନ ମୂରତି ମୋହିଲା ମନ,
ମୋହିତ ହୋଇଲେ ପାହାଡ଼ କନ୍ଦର
ଲଳିତ ସବୁଜ ନୀଳ ବନ ।
ଶିଖଣ୍ଡି ଶ୍ୟାମଳ ଅରଣ୍ୟ ଶ୍ୟାମଳ
ଦୁହିଁଙ୍କ ବସନ ହରିତ ପୀତ,
କୃଷ୍ଣ ଅରଜୁନ ଦୁହେଁ ତ ସେପରି
ହସ ହସ ମୁହଁ ସରସ ଚିତ୍ତ ।
ଅନ୍ତରେ ଅନ୍ତରେ କି ରସ ବହୁଛି
ହସରେ ହସରେ ତରଳ ସ୍ରୋତ,
ଭସାଇ ଦେବେ କି ଭସିଯିବେ ଆପେ
ସେ ସ୍ରୋତେ ମାନବ-ଜୀବନ ପୋତ ?

———

# ଆଶ୍ରମେ କୃଷ୍ଣ ଅରଜୁନ

କଥା ଲୁହାଲୁହ ମୁହଁ ଗୁହାଁଗୁହିଁ
ହୋଇ ପହଞ୍ଚିଲେ ଆଶ୍ରମ କତ,
ଆଶ୍ରମ ତ ନୁହେ ଗଇରିକ ବାସ
ଜଟା ବିଭୂଷିତ ନଦେ ସେ ଯତ ।
ଆକାର ଗଠନ ଦୁହିଁଙ୍କର ଏକା
ଦୁହିଁଙ୍କ ବଦନେ ଗୋଟିଏ ଶିଖ,
ଆହା କି ସୁନ୍ଦର ଶୃଲିବାର ଭଙ୍ଗୀ
ଠାଣି ମନୋହର ଯୁବା କେଶଖ ।
ଶତଗୃପ ଶିଖ କେଶେ ଶିର୍ଖୀପୁଚ୍ଛେ
ମୃଦୁଖଗ ବାଜି ପଡ଼ୁଛି ଫୁଟି,
ସପ୍ତରଙ୍ଗ ପ୍ରଭା କେଶେ ବାସେ ଝଳି
ବାହାରେ ମନକୁ ପଡ଼ୁ·ଉଳୁଟି ।
କଣ୍ଠେ ବନମାଳ ରୁଦ୍ରାକ୍ଷର ହାର
କମଣ୍ଡଳୁ ଧନୁ ଦେଉଛି ବାଛି,
ଏତକ ନ ଥିଲେ କିଏ କୃଷ୍ଣ, କିଏ
ଅରଜୁନ ଜାଣି ହୁଅନ୍ତା କିଛି ?
ଯାଉଁ ଯାଉଁ ପଥେ ଦେଖିଲେ ଶାର୍ଦ୍ଦୂଳ
ବାଟ ମାଡ଼ି କରି ରହିଛି ଶୋଇ,
ଅର୍ଜୁନଙ୍କ କର ପଡ଼ିଲା କାର୍ମୁକେ
କରକମଣ୍ଡଳୁ ଦେଲେ ସେ ଥୋଇ ।

ଧନୁ କାଢ଼ିନେଇ କହିଲେ ଶ୍ରୀକୃଷ୍ଣ
"ବ୍ରହ୍ମଚାରୀ ହୋଇ ଇଏ କି ହିଂସା ?
ବାଘ ସିଏ ନୁହେ ସାଧୁ ଯତିଟିଏ
ଛୁଡ଼ୁଛି ସେ ଜୀବ ମାରିବା ନିଶା ।
ସାଧୁ ହିଂସ ସଙ୍ଗେ କଅଣ ନ କରେ ?
ହିଂସ୍ର ଶାର୍ଦ୍ଦୂଳକୁ କରଇ ଯତି,
ପୁଣି କୁସଂସର୍ଗ ମଣିଷକୁ କରେ
ହିଂସ୍ର ବ୍ୟାଘ୍ର ସମ ଦାରୁଣ ଅତି ।
ଭୀଷ୍ମ ଦ୍ରୋଣ ସବୁ ନିଷ୍ଠାପୂ ସଜ୍ଜନ
ହେଲେ ବା କି ହେବ ଶକୁନି ମନ୍ଦ,
ତାହାର ସଂସର୍ଗେ ଦୁର୍ଯ୍ୟୋଧନ ଖଳ
ସବୁ କଥାରେ ସେ ଲଗାଏ ଦ୍ୱନ୍ଦ୍ୱ ।"
ପବିତ୍ର ଆଶ୍ରମ ସୁଖଶାନ୍ତି ଧାମ
ରୈବତକ କକ୍ଷେ ଯୋଗ୍ୟ ଆସନେ,
ବସିଅଛି ଶ୍ୟାମ ଗାଲରୁ ବହୁଛି
ଅଞ୍ଜନ ବୋଳୁଛି ଶ୍ରାନ୍ତ ଲୋଚନେ ।
ରୈବତକ ଗିରି ଶ୍ୟାମ ଛବି ଧରି
ଶ୍ୟାମଳ ଗଗନେ ଯାଇଛି ମିଶି,
ବୃକ୍ଷ ଘନ ଛାୟା ବସ୍ତ୍ରାବରଣ କାୟା
ସଂଚରୁଛି ଅଛି ଦିବସେ ନିଶି ।
ଲହଡ଼ିଆ ଗିରି ଗଡ଼ାଣିଆ ସାନୁ
ଶ୍ୟାମଳିଆ ଶିରୀ ଆଶ୍ରମଟିଏ,
କିଏ ସେ ସଂସାରୀ ଭୋଗସ୍ପୃହା ଛାଡ଼ି
ଆଶ୍ରମକୁ ଧାଇଁ ଯିବନି ସିଏ ?
ଆଶ୍ରମକୁ ବେଢ଼ି ଉଚ୍ଚ-ନୀଚ ଶୈଳ
ସବୁଜୁଡ଼ିକର ମୋହନ ତନୁ,
ବକ୍ଷରେ ବକ୍ଷରେ ଶତ ନୀର ଝର
ଅବିରତ ଭୂଷିଅଛନ୍ତି ସାନୁ ।

ଯୋଗେ ଧ୍ୟାନ ମନ        ଯୋଗୀଟିଏ ସମ
    ଆଶ୍ରମ ବସିଛି ସମାଧି କରି,
ବୃକ୍ଷଲତା ଗୁଳ୍ମ        ଆତପ ତାପରୁ
    ରଖିଛି ତାହାକୁ ଆବରି ଧରି ।
ଆଶ୍ରମ ଆବାସ        ପତ୍ରରେ କୁଟୀର
    ସେଥିରେ ଫୁଟିଛି ଅପୂର୍ବ କଳା,
କାନ୍ଥଗୁଡ଼ିକ ତ        ଲିପାପୋଛା ହୋଇ
    କେତେକ ଗେରୁଆ, କେତେକ ଧଳା ।
ଦେ ତ ଦାଠେ ପାଖ        ତୁଳସୀ ଚଉରା
    ଚଉରା ମୂଳରେ ଋଷି ରମଣୀ,
ପୂଜା ନୈବେଦ୍ୟ        ଭକ୍ତିରେ ନିବେଶି
    ପାଞ୍ଚ ସାତ ବସିଛନ୍ତି ଧରଣୀ ।
ରମଣିଏ ସବୁ        ଗୈରିକ ବସନା
    ଦେହରେ ଅମଳ କମଳ କାନ୍ତି,
ପୁଅଝିଅ ସବୁ        କୁସୁମ ଗୁଡ଼ିଏ
    କପୋଳେ କପୋଳେ ପ୍ରଜ୍ଞାର ଭାତି ।
ଆଶ୍ରମ ପ୍ରାନ୍ତରେ        ଅଛି ବେଦୀଟିଏ
    ନୁହେ ବର୍ଗକ୍ଷେତ୍ର ନୁହେ ଆୟତ,
ଅଷ୍ଟକୋଣ ନୁହେ        ନୁହଇ ବ ବୃତ୍ତ
    ଆକାରେ ଗଠନେ ସେ ଅଦଭୁତ ।
ସ୍ୱଭାବେ ଗଠିତ        ପଥର ଗୁନ୍ଦଣି
    ବାଜ ନାହିଁ କାରିଗର ନିହଣ,
ତଥାପି ତ ସିଏ        ହୋଇ ସୁନ୍ଦର
    ଫେରିଆସେ ନାହିଁ ତହୁଁ ନୟନ ।
ବେଦୀ ଚାରିପାଖେ        ବୃକ୍ଷଲତା ଗୁଳ୍ମ
    ସବୁବେଳେ ପତ୍ର କୁସୁମେ ପୂରି,
ତହିଁ ବସିଛନ୍ତି        ବେଦୀଟିକୁ ଖାଲି
    ସରଗ ସୁଷମା ପଡ଼େ ଉଛୁଳି ।

ବେଢ଼ି ମଧ୍ୟସ୍ଥଳେ ବକୁଳ ତରୁଏ
ଶୋଭା ପାଉଅଛି ଯେସନ ଛତା,
ଗଛ ମଥାନରେ ସଞ୍ଜ ଘଞ୍ଚ ହୋଇ
ଲଟାଇଯାଇଛି ମାଳତୀ ଲତା ।
ଧଳା କଳା ମିଶା ଅକର୍ମ୍ମ ଶିଳାରେ
ବେଢ଼.ଟା ଶୋଇଛି ମୁହଁକୁ ମାଡ଼,
ପଟାଳିଆ ଟାଣ ସତରଞ୍ଜି ଟାଏ
ସତେ କି କିଏ ସେ ଦେଇଛି ପାର !
ଉଚ ନୀଚ ହୋଇ ପାହାଚଗୁଡ଼ିଏ
ନାହିଁ ମାପଚୂପ ନୁହେ ସମାନ,
କଜଳ କାଳିଆ ପଥର ପ୍ରସୂତ
ଶୋଇଛନ୍ତି ସବୁ କୁମ୍ଭୀର ସମ ।
ସିଢ଼ିଟିଏ ପର ତେରଛିଆ ହୋଇ
ଡେଗ ହୋଇଛନ୍ତି କାହୁକୁ ଛୁଇଁ,
ସବୁଠୁଁ ଉପର ତଳ ପାହାଚଟି
ଲମ୍ବା ହୋଇ ପଡ଼ିଅଛି ସେ ଭୂଇଁ ।
ବେଢ଼ା ତଳେ ତଳେ ସମତଳ କ୍ଷେତ୍ର
ଶସ୍ୟ ଶିରେ ଶିରେ ଗଢ଼େ ଲହରୀ,
ଗୋଟିକ ପଛରେ ଆଉଟିଏ ଆସେ
ତରଳ ସଲିଳ ବେଣୀର ପରି ।
ବେଢ଼ାକୁ ଘୋଡ଼ାଇ ଅଛି ଗଛଲତା
ବଛାଇ ଦେଇଣ ଅଖଣ୍ଡ ଛାଇ,
ହିମ ଆଳୟରୁ ହେମାଳିଆ ବାଆ
ସତେ କି ସେଠିକି ଆସିଛି ଧାଇଁ !
ବକୁଳ ମୂଳରେ ବାଢ଼ ଛୁଲଟିଏ
ତହିଁ ପରେ ବ୍ୟାସ ଆସନଟିରେ,
ମୁଦ୍ରିତ ନୟନେ ତପେ ନିମଗନ
ବ୍ୟାସ ତପୋଧନ ନିଶ୍ଚଳ ଧୀରେ ।

ରୁଦ୍ରାକ୍ଷ ମାଳଏ ଧରି ଦକ୍ଷ କରେ
ଗୋଟି ଗୋଟି କରି ଗଡ଼ାଉଛନ୍ତି,
ତାଙ୍କ ବେଦୀ ପାଶେ ଥାକ ଥାକ ହୋଇ
ଥୁଆ ହୋଇଅଛି ବହୁତ ପୋଥି ।
ନିଗମର ସବୁ ଗୁପ୍ତ ସୁପ୍ତ ବାଣୀ
ମୁଦ୍ରିତ ନୟନେ ଯାଏ କି ଦେଖା ?
ସେହିଗୁଡ଼ିକ କି ପୋଥିରେ ପୋଥିରେ
ଅମ୍ଳାନ ଅକ୍ଷରେ ହୋଇଛି ଲେଖା ?
କୃଷ୍ଣ ଫାଲଗୁନି ଦେଖିଲେ ଦୂରରୁ
ଅପସରି ଗଲେ ଟିକିଏ ଦୂରେ,
ଖଣ୍ଡ ଶୈଳ ସମ ମୁଗୁନି ପଥର
ବସିଲେ ବେନିଏ ତାହା ଉପରେ ।
ଅର୍ଜୁନ କହିଲେ "ବନବାସେ ବୁଲି
ବୁଲି ମୁଁ ଦେଖିଛି ବହୁ ଆଶ୍ରମ,
ଦେଖି ନାହିଁ କାହିଁ କେଉଁଠି ଏସନ
ଆଶ୍ରମ ଗୋଟିଏ ଏଡ଼େ ସୁଷମ !
ପଶୁ ପକ୍ଷୀଠାରୁ ଗଛଲତା ଶୈଳ
ଜଣେ ଜଣେ ଏଠି ସମସ୍ତେ ମୁନି,
ଯୋଗରେ ମଉନ ଋଷି, ଋଷିଶିଷ୍ୟ
ପ୍ରକୃତି ଏଠେଇ ମଉନ ଭୂମି ।
କି ଯୋଗରେ ଯୋଗୀ ଏଠାର ପ୍ରକୃତି
ସଂସାର-ଜଞ୍ଜାଳ କାହାର ନାହିଁ,
ଚକାସନେ ବସି ବୁଜି ବେନି ଆଖି
କାହାକୁ ନିଷ୍ଟେ ଅଛନ୍ତି ଚାହିଁ ?
ଆଖି ବୁଜିଲେ କି ଦେଖନ୍ତି ସେ ବେଶୀ
ଅନ୍ତର ବାହାର ରହେନା ଲୁଚି,
ବିଶ୍ୱଚକ୍ଷୁ ଏ କି ଜ୍ଞାନଚକ୍ଷୁ ଇଏ
ଦୃଷ୍ଟିର ସୀମା କି ଯାଏନା ଘୁଞ୍ଚି ?

ବିଗ୍‌ବିଜ୍ଞାନର ବାହାରକୁ କ'ଣ
ଯାଇପାରେ ଏହି ଦର୍ଶନ ସୀମା,
ଚକ୍ଷୁ ବୁଜିଲେ କି ଦିଶେ ବିଶ୍ୱରୂପ
ସୀମା ସରହଦ ନାହିଁ କି ଜମା !"
କହିଲେ ଶ୍ରୀକୃଷ୍ଣ ଗମ୍ଭୀର ବଦନେ
"ଅସୀମ ଭିତରେ ସୀମାର ରେଖା,
ଅଛି ପ୍ରକଟିତ କିନ୍ତୁ ଦିଶେ ନାହିଁ
ପରମାଣୁଠାରୁ ସୂକ୍ଷ୍ମ ସେ ଲେଖା ।
ପଢ଼ ଦରଶନେ ସାଧି ବିଜ୍ଞାନ
ତେବେ ଯାଇ ତାର ପାଇବ ଦେଖା,
ଦର୍ଶନ କଳ୍ପନା ବିଜ୍ଞାନ ପ୍ରମାଣ
ଦର୍ଶନ ଅଲେଖା ବିଜ୍ଞାନ ଲେଖା ।
ଏହି କଳ୍ପନାକୁ ଦିଅ ଆକାରଟେ
ଦର୍ଶନକୁ କର ନିତ୍ୟ ଓ ସତ୍ୟ,
ସେହି ଆକାରଟି ହେବ ନିରାକାର
ବିଶ୍ୱବ୍ୟାପକ ସେ ମୃତ ଶାଶ୍ୱତ ।
ଏହି ହେଲା ଜ୍ଞାନ ପ୍ରମାଣିତ କଲେ
ଗୁଏଁ ଗୁଏଁ ହୋଇଯିବ ବିଜ୍ଞାନ ।
ଆଖିରେ ପ୍ରତ୍ୟକ୍ଷ ନ ଦେଖିବା ଯାଏ
ସତ୍ୟ ଓ ଅସତ୍ୟ ଦୁହେଁ ସମାନ,
ଅଣୁ ପରମାଣୁ ଅଦୃଶ୍ୟ ଅଭଙ୍ଗା
ପ୍ରମାଣିତ ହେଲା ଭାଙ୍ଗିବାଦ୍ୱାରା,
ଭାଙ୍ଗି ନ ଥିଲେ କି ତାହାର ଅସ୍ତିତ୍ୱ
କୋଉଟି କି କେବେ ପଡ଼ନ୍ତା ଧରା ?
ଦର୍ଶନର ବସ୍ତୁ କଳ୍ପନାରେ ରହି
ବୁଲୁଡ଼ ଥାଆନ୍ତା ଆମକୁ ଛୁଆଁ,
କେତେବେଳେ କ'ଣ ଦିଶନ୍ତା କାହାକୁ
କୋଉଠିକି କେବେ ଦିଅନ୍ତା ଛୁଆଁ ?

ଅଛୁଆଁକୁ ଛୁଆଁ ଅଦେଖାକୁ ଦେଖା
କରିବାଟା ହେଲା ଜ୍ଞାନର କାମ,
ଦେଖାଇ ପାରିଲେ ଛୁଆଁଇ ପାରିଲେ
ପାଇବ ସେ ଯାଇ ବିଜ୍ଞାନ ନାମ ।
ଅଲେଖା ଲେଖାକୁ ଦେଖିବା ପାଇଁକି
ମୁଦ୍ରିତ ନୟନ କେବଳ କ୍ଷମ,
ଚକ୍ଷୁ ମେଲିଇଲେ ବାହାର ଜଗତ
ମାୟା ମୁଗ୍‌ଧ କରି ଆଣେଇ ତମ ।
ତମ ନ ଘୁଞ୍ଚିଲେ ଦୃଶ୍ୟ ଦିଶେ ନାହିଁ
ପୁଣି ତମ ବିନା ଆଲୋକ ମୂଲ୍ୟ,
ବୁଝିହୁଏ ନାହିଁ ତେଣୁ ଭଲ ଭେଲ
ବାଛିବା ବେଳରେ ହୁଅଇ ଭୁଲ ।
ପହିଲେ ଅନ୍ଧାର ତା ପରେ ଆଲୁଅ
ଅଜ ଯିଏ ଶିଶୁ କାଲି ପ୍ରଉଢ଼,
ପ୍ରଉଢ଼ କେବଳ ଜ୍ଞାନ ଅଧିକାରୀ
ପ୍ରଉଢ଼ର ଶିରେ ଜ୍ଞାନ ଆରୂଢ଼ ।
ଚକ୍ଷୁ ବୁଜିବାରେ ଆସେ ଏକାଗ୍ରତା
ମନ ଓ ବିବେକ ହୁଅଇ ସ୍ଥିର,
ସ୍ଥିରତା ନ ହେଲେ ଜ୍ଞାନ ଆସେ ନାହିଁ
ଅଜ୍ଞାନ ଅନ୍ଧାର ହୁଅଇ ଶିର ।
ମୁଦ୍ରିତ ନୟନ କମଳ ଆସନ
ନାସିକା ଦର୍ଶନ ଅଛି ଏ ବିଧି,
ଏତକ ନ କଲେ ଯେତେ ତପ କଲେ
ସାଧନାରେ କେହି ପାଏନା ସିଦ୍ଧି ।"
କହିଲେ ଅର୍ଜୁନ କୃଷ୍ଣଙ୍କୁ ଦେଖାଇ
"ଆଶ୍ରମ ଉଦ୍ୟାନେ ବାଳକାଟିଏ,
କୁସୁମ ଚୟନେ କରି ତରତର
ମନ୍ଦିର ଚରଣେ ଚଞ୍ଚଳ ଯିଏ ।

ସେ ତ ଫୁଲଟିଏ ଫୁଲରୁ ସୁନ୍ଦର
ଶେଫାଳୀଟି ପରି ଶୁକଳ ନାଲ,
ଆଉ କୋଉ ଫୁଲ ବାଛୁ ସେ ତୋଳୁଛୁ
କାହିଁକି ସେ ସତେ ଭୂଇଁରେ ଗୁଳ ?
ମୁହଁଟି ତାହାର ଦେଖ କି ସୁନ୍ଦର
ଝୁରୁଝୁରୁ ବାଳ ସୁନ୍ଦରତର,
କରୁଛୁ ବାଳକା କଅଁଳ ମୁହଁକୁ
ମାନୁଛୁ ସୁନ୍ଦର ସରୁ ଅଧର ।
ଲୋଚନ ଯୋଡ଼ିକ ସ୍ଥିର ଅଚଞ୍ଚଳ
କୋଣରେ ପତାରେ କଜ୍ଜ୍ୱଳ ଗାର,
ଭ୍ରୂଲତା ଦୁଇଟି ଧନୁର ସଦୃଶ
ମଝିରେ ନାକଟି ସରଳ ଧାର ।
କରକେ କୁସୁମ ଗୁଚ୍ଛୁଟିଏ ଧରି
ଆର କରଟିର ଅଙ୍ଗୁଳି ଗୁଳ,
ତର୍ଜ୍ଜନୀ ମଧ୍ୟମା ଅନାମିକା ଯୋଡ଼ି
କଣ୍ଟୁଛୁ ଅଧର ଗୋଟିଏ ଭଲ ।
ବାଛୁ ବାଛୁ କରି ଫୁଲ ତୋଳୁ ତୋଳୁ
ଗୁଣୁ ଗୁଣୁ କରି ଗାଉଛୁ ଗୀତ,
ପ୍ରଜାପତି ପରି ଫୁଲରୁ ଫୁଲକୁ
ବୁଲିଯାଉଅଛୁ ହୋଇଣ ପ୍ରୀତ ।
ଗୃହାଣୀ ତାକୁଛୁ ହରିଣୀଟି ପରି
ଅପାଙ୍ଗରେ କାହିଁ ନାହିଁ ତ ଶଙ୍କା,
ନଇଁପଡ଼ି କରି ସରଳ ସରୁଆ
ଗ୍ରୀବାଟିକୁ ଟିକେ କରୁଛୁ ବଙ୍କା ।
ଆଭରଣ ନାହିଁ ତେବେ ବି ସୁନ୍ଦର
ଅଙ୍ଗ ଆବରିଛୁ ଗେରୁଆ ବାସ,
ଶରୀର ମୁକୁଳା କଟିଯାଏଁ ବୋଲି
ସରମ ସଙ୍କୋଚ ନାହିଁ ତ ଲେଶ ।

ଋଷିତନୟା ସେ ନାହିଁ ତା ବିକାର
ମୁହଁରେ କେବଳ ସରଳ ହସ,
ଚପଳତା ନାହିଁ ନାହିଁ ଉଦ୍ଧାମତା
ଚକ୍ଷୁ ମୁଖ ନାସା ସବୁ ସରସ ।"
ଶ୍ରୀକୃଷ୍ଣ କହିଲେ ଅନାଇଁ ଅନାଇଁ
"ଏହାଠୁଁ ସୁନ୍ଦରୀ ବହୁ କୁମାରୀ,
ଅଛନ୍ତି ଆଶ୍ରମେ କୁସୁମୁଁ ସୁଷମ
ସରଗର ସାର ସୁଷମା ଧରି ।
ସକଳେ ସରସ ନର-ଆଭରଣ
ଲୋଚନେ ଲୋଚନେ ସରମ ଶଙ୍କା,
ମୂଳରୁ ଆଶ୍ରମ ଆଗ୍ରହରେ ସେ ଗଢ଼ା
କାହିଁକି ବା ହେବେ କୁଟିଳ ବଙ୍କା ?
ସାତ୍ତ୍ୱିକ ଆହାର ସାତ୍ତ୍ୱିକ ବିହାର
ବ୍ରହ୍ମଚର୍ଯ୍ୟ ବ୍ରତ ଦେଇଛୁ ମାଜ,
କାଲି ସେ ଜନନୀ ହେବେ ତ ସମାଜେ
ଏଇଠି ପ୍ରସ୍ତୁତ ହୁଅନ୍ତି ଆଜ ।
ସଂସାରେ ସମାଜେ ଏସନ ଲଳନା
ପଶି ଯୋଡ଼ି ଦିନ କରିବେ ଘର,
ଦୁଃଖ ଶୋକ କ'ଣ ରହିବ ସଂସାରେ
ରହିବ କି ଭେଦ ଆପଣା ପର ?"
ଭଙ୍ଗିଲା ତପସ୍ୟା ମେଲିଲେ ନୟନ
କରୁଣା ମହିମା ବଦନେ ଲେଖା,
ଭ୍ରୂଲତା ଉପରେ ପ୍ରଶସ୍ତ କପାଳେ
କୁଞ୍ଚିତ ହୋଇଛୁ ଗୁଡ଼ିଏ ରେଖା ।
କୃଷ୍ଣ ଧନଞ୍ଜୟ ଆଗ ପଛ ହୋଇ
ବେଦୀ ପଦମୂଳେ ଚଳିଲେ ଧୀରେ,
ପ୍ରଣମିଲେ ପଦେ ଭକ୍ତି ଗଦଗଦେ
କହିଲେ କରୁଣ କୋମଳ ଗିରେ :—

ଶ୍ରୀକୃଷ୍ଣ—ତୀର୍ଥ ପର୍ଯ୍ୟଟନେ ପାର୍ଥ ମଧ୍ୟମ ପାଣ୍ଡବ
ଆସିଅଛନ୍ତି ପ୍ରଭାସେ, ଆମନ୍ତ୍ରିଣ ତାଙ୍କୁ
ଯାଉଥିଲି ରୈବତକେ; ଆସିଲୁ ଉଭୟେ;
ଭକ୍ତିଭରେ ବନ୍ଦିବାକୁ ମହର୍ଷିଙ୍କ ପଦ ।
ବ୍ୟାସ—ତୀର୍ଥ ପର୍ଯ୍ୟଟନ ଏହି କିଶୋର ବୟସେ !
କିଆଁ ବତ୍ସ ଧନଞ୍ଜୟ ? ରଜାଏ ତ ସବୁ
ନିଜ ନିଜ ରାଜ୍ୟ ପାଳି ଜୀବନ ସାୟାହ୍ନେ
ପ୍ରବେଶନ୍ତି ତୀର୍ଥାଶ୍ରମେ ବରିକି ଆଳୟ ।
ତୁମର କି ହେଲା ବତ୍ସ ! ଛାଡ଼ି ରାଜ୍ୟ ରାଜ—
ସୁଖ ବୁଲୁଅଛ ତୀର୍ଥେ, କି ଉଦ୍ଦେଶ୍ୟ ତବ ?
ତୁମରି ବିଶାଳ ବାହୁ, ଏ ଗାଣ୍ଡୀବ ଧନୁ
ଙରନ୍ତି ବିଭବ ପୃଥ୍ୱୀ ତରୁଣ ବୟସ
ଧିକ୍କାରୁଛି କମଣ୍ଡଳୁ ଏ ଗୈରିକ ବାସ ।
ଗୋରୁ ଗାଈମାନେ ମଧ୍ୟ ଦିନଯାକ ଚରି
ପ୍ରଦୋଷରେ ବାହୁଡ଼ନ୍ତି ଯେ ଯାହାର ଘରେ ।
ରବି ମଧ୍ୟ ଦିନଯାକ ବୁଲି ବୁଲି କଷେ
ପ୍ରଦୋଷେ ଆଶ୍ରନ୍ତି ଯାଇ ଅସ୍ତାଚଳ ଶିର ।
ତୁମେ ତେବେ କିଆଁ ଏହି ସୁକୁମାର ଅଙ୍ଗ
କରୁଛ ବୃଥାରେ କ୍ଷୟ ବାନପ୍ରସ୍ଥ କ୍ଲେଶେ ?
ସଜ ତାରୁଣ୍ୟକୁ ଦେଇ ପ୍ରଦୋଷ ବାର୍ଦ୍ଧକ୍ୟ ?
କି ଅବସ୍ଥାଚକ୍ରେ ପଡ଼ି, ଯୋଗୀବେଶ ଧରି
ଖାରନ୍ତି ବିଭବ ସବୁ କରୁଅଛ କ୍ଷୟ ?
ଶିବ ପିନାକର ସମ ଏ ଗାଣ୍ଡୀବ ଧନୁ,
ଅକ୍ଷୟ ତୂଣୀର କେଉଁ ତାପସର ବେଶ ?
ତୂଣୀରରୁ ଶର କେବେ କରିବନି ବ୍ୟୟ ?
ଉପହାସ ନୁହଇ ଏ ତାପସ ତପକୁ ?
ଅକ୍ଷୟ ତୂଣୀରଟିର କରିବ କଦର୍ଥ ?
ବ୍ୟୟ କଲେ ସିନା ତୁମେ ଜାଣିବ 'ଅକ୍ଷୟ'

କବା କ୍ଷମ୍ୟ ସେ ତୂଣୀର । ତେବେ କାହିଁ ମାଗି -
ନେଲ ଅନଳଙ୍କୁ ତୋଷି ? କି ଉଦ୍ଦେଶ୍ୟ, କିଛି
ବୁଝି ପାରୁ ନାହିଁ ମୁହିଁ । ସନ୍ଦେହ ତିମିରେ
ଆଜ୍ଞ ବୁଡ଼ା ନାହିଁ ମୋତେ, କହ ସବୁ ଖୋଲି ।
ବୁଝୁଛ କି ଯଦୁପତେ ! ଏ ବେଶରୁ କିଛି ?
ଚଳିଲି ଗୋଲକଧନ୍ଦା ବସ୍ତ୍ର ଫାଲଗୁନି !
କାହିଁକି ତୁମର ହେଲି ଏସନ ବଡଷ୍ଟା ?
ବରିଜଣ ଯାଜ୍ଞସେନୀ ଶ୍ରମଲବ୍ଧ ପତ୍ନୀ,
ବରଜି ଭାଇ ଜନନୀ ରାଜ୍ୟ ରାଜସୁଖ,
ବୁଲୁଅଛ ତୀର୍ଥେ ତୀର୍ଥେ ଏ ତୀର୍ଥ ଭ୍ରମଣେ
କି ଲଭ ହୋଇବ ତବ ?

ଶ୍ରୀକୃଷ୍ଣ—ଆପଣ ତ୍ରିକାଳଦର୍ଶୀ ପଗ୍ଗରନ୍ତ ମୋତେ ?
କି କହିପାରିବ ଅବା କ୍ଷୁଦ୍ର ଅକିଞ୍ଚନ !
ଅବସ୍ଥାର ଦାସ ନର, ଅବସ୍ଥାକୁ ଡରି
ଦେଶ କାଳ ପାତ୍ର କିଛି ନ କରି ବିଗ୍ଭର
କରିଯାଏ ଯାହା ତାହା । ଅକର୍ମ କୁକର୍ମ
କର୍ମ ଜାଣିପାରେ ନାହିଁ କ୍ଷୁଦ୍ର ଶିଶୁ ସମ ।

ବ୍ୟାସ—ମୁହିଁ ତ୍ରିକାଳଦରଶୀ ତୁମେ ସ୍ରଷ୍ଟା ଯା'ର ?
ତୁମେ ନର ସତ୍ୟ କୃଷ୍ଣ ! ନାରାୟଣ କିଏ ?
ତେବେ କାହିଁକି ଛଳୁଛ, କାହାକୁ ଛଳୁଛ ?
କୃଷ୍ଣ ! ତୁମେ ଅନ୍ତର୍ଯ୍ୟାମୀ ? ସର୍ବଜ୍ଞ କହନା
ତେବେ ମୋତେ ଯଦୁପତେ ! କରିଇ ମାନବ
ଯାହା କରାଅ ହେ ତୁମେ । ବସ୍ତ୍ର ଅରଜୁନ !
ବହୁତ କରମ ପଡ଼ିଅଛି ତୁମ ପାଇଁ,
କରିବ ତା ତୁମେ ସବୁ । ଯାଅ ଏବେ ଫେରି
ଦେଉଛି ମୁଁ ଉପଦେଶ ଆଶୀର୍ବାଦ ସହ ।

କୃଷ୍ଣ—କଅଣ ସେ କାମ ପ୍ରଭୁ ! କର୍ତ୍ତବ୍ୟ କି ସବୁ ?
କରିବାକୁ ହେବ ତାହା ? କାହିଁକି କରିବ ?
କପଟ କରିବ, କିଏ କରାଇବ ଅବା ?

ବ୍ୟାସ—ସେସବୁ ଅଦୃଷ୍ଟ କଥା ପଚାରିବେ ତୁମେ ?
ଉତ୍ତରବ ଗୁର ବ୍ୟାସ ?
କୃଷ୍ଣ—ଅଦୃଷ୍ଟ ମାନିବ ତେବେ, କାହିଁକି ମାନବ ?
ମାନବର ନାହିଁ କି କରମକୁ ସାଧି
ଅଦୃଷ୍ଟକୁ ଧରି ଆଣିବ ଦର୍ଶନ ଆଗେ ?
ଅଦୃଷ୍ଟ ରହିବ ଲୁଚି ତମିର ଗର୍ଭେ ?
ବ୍ୟାସ—ପାରଇ ଯଦି ବା କିଏ, ସିଏ ତୁମେ ନିଜେ ।
ବ୍ୟାସ ବା ଅର୍ଜୁନ ପାରିବେନି ଦେଖି ତାକୁ ।
ଦେଖାଇବ ଯେବେ ତୁମେ, ଦେଖିବେ ସେ ହରି !
ମୁଁ ବି ତ ତୁମରି ପରି ମନୁଷ୍ୟ ଗୋଷ୍ଠୀଏ ।
ଅଦୃଶ୍ୟ ସ୍ୱରୂପେ କପରି ମୁଁ ଦେଖାଇବି ?
ମାନିବନି ବ୍ୟାସ ତୁମେ ମାନବ ଏ କଥା ।
ନର ରୂପ ଧରି ତୁମେ ସ୍ୱୟଂ ଭଗବାନ ଅବତୀର୍ଣ୍ଣ ଭବେ ।
ଶିଖାଇ ଦେଖାଇ କରି କରାଇ ଆବର
ସ୍ଥାପିବ ଶାଶ୍ୱତ ଧର୍ମ ଧରଣୀ ବକ୍ଷରେ ।
ଅଦୃଶ୍ୟ, ଦୃଶ୍ୟ ତ ତୁମେ ଏକା ଜଗତରେ ।
ଯାହା ଯେବେ ଇଚ୍ଛାକର କର ତ ସନ୍ତତ ।
ତୁମେ ରୂପ ତୁମେ ପୁଣି ଅରୂପ ସୁନ୍ଦର ।
ଅଦୃଷ୍ଟର ତୁମ ପାଖେ ନାହିଁ ହେ ଶକତ
ରହିବ ତୁମଠୁଁ ଲୁଚି ଅର୍ଜୁନ ଅଦୃଷ୍ଟ ।
ତୁମେ ଜାଣନା କେଶବ ? ତୁମେ ନିରାକାର
ପୁଣି ସାକାରଟି ତୁମେ ! ଅଦୃଷ୍ଟ ଆକାର—
ହିନ କହିବ କପରି ? କିନ୍ତୁ ମାନବକୁ
ସେ ଅଦୃଷ୍ଟ ନୁହେ ଦୃଶ୍ୟ କର୍ମଫଳ ବିନା ।
କର କର୍ମ ଦିଶିବ ତା କର୍ମଫଳ ରୂପେ ।
ମାନବ କରମ ବଳେ ଦେଖି ପରମାଣୁ

ଅଦୃଶ୍ୟ ଯା ରୂପେ, ଯାଙ୍କ ମାପି ଗୁଣ ଶକ୍ତି
କରିଲଣି ଉପଯୋଗ କରମ କ୍ଷେତ୍ରରେ ।
କରମ କେବଳ ନିଏ ଅଦୃଷ୍ଟ ସନ୍ଧାନ ।
ଅଦୃଷ୍ଟ ତ ଗୁଣହୀନ ନୁହଇ କଦାପି ।
ସଗୁଣ ଯେ ନିର୍ଗୁଣ କି ହୋଇପାରେ କେବେ ?
ତୁମେ ହିଁ ନିର୍ଗୁଣ ପୁଣି ସଗୁଣ ଜଗତେ ।
ତୁମେ କ୍ରିୟାହୀନ, ପୁଣି କ୍ରିୟାବାନ୍ ତୁମେ ।
କ୍ରିୟା ଯା ହୁଅଇ ତାହା ଏକା ସିନା କର୍ମ ।
ତାର ପରିଣାମ ଅଟେ ନିଶ୍ଚୟ ଅଦୃଷ୍ଟ ।
ଅଦୃଶ୍ୟ ତା ହେବ କିଆଁ ? ତୁମ ଆଖି ମୋର
ଆଖି ହେବ କି ସମାନ ? କର୍ମ କଲେ ସେହି,
ଚକ୍ଷୁ ଆସିବ ନିଶ୍ଚୟ । ସେହି ଚକ୍ଷୁ ଜ୍ଞାନ
ଚକ୍ଷୁ, ତେଣୁ ତ ବିଧାନ ଉପନୟନର ।
ଅର୍ଜୁନ ଏଇନା ଯୁବା । କର୍ମ କରିବା
ବେଳ ଆରମ୍ଭ ମାତର । କରମ ସମ୍ପାଦି
ଜ୍ଞାନ ଚକ୍ଷୁ ଉପାର୍ଜନ କରିବେନି ସିଏ ?
ତେଣୁ ତ ଆଦେଶ ମୋର ଫେରିଯିବା ପାଇଁ ।'
ଯଦୁପତେ ! ଦିଅ ଶିକ୍ଷା, କରନ୍ତୁ ସେ କର୍ମ,
ଦେଖନ୍ତୁ ଅଦୃଷ୍ଟ ଲିପି, ଦେଖାନ୍ତୁ ସଂସାରେ ।

ଅର୍ଜୁନ—ବାନପ୍ରସ୍ଥ ନୁହେ ପ୍ରଭୁ ଉଦ୍ଦେଶ୍ୟ ମୋହର,
ବ୍ରାହ୍ମଣେକ କାନ୍ଦି କାନ୍ଦି ଊର୍ଦ୍ଧ୍ୱଶ୍ୱାସେ ଆସି
କହିଲେ କାତରେ ମୋତେ ଦିନେ ଅକସ୍ମାତ୍
"ଦସ୍ୟୁଟାଏ ଗାଈଟିକୁ ନେଇଗଲା ହରି ।
ଦିଅ ହେ ଉଦ୍ଧାରି ତାକୁ ନ ହେଲେ ମୋ ଶିଶୁ
ପୁତ୍ର ମରିବ ନିଶ୍ଚୟ ପଡ଼ି ଅନାହାରେ ।"
କହିଲି ନଗରପାଳେ ଜଣାଅ ଗୁହାରି ।
କହିଲେ ସେ କାନ୍ଦି କାନ୍ଦି "ନଗରପାଳଙ୍କ

ପକ୍ଷେ ନୁହଇ ସମ୍ଭବ ।"
କି କରିବ ? କରେ ମୋର ନ ଥିଲା କାର୍ମ୍ମୁକ,
କିବା ଶର ତୂଣ । ଥିଲା ସବୁ ଅସ୍ତ୍ରଘରେ;
ସହିଁ ଯୁଧିଷ୍ଠିର ଥିଲେ ଦ୍ରୌପଦୀର ସହ ।
ତା ଆଗରୁ ପାଞ୍ଚଭାଇ କରିଥିଲୁ ପଣ—
ଜଣେ-କେହି ଥିଲେ ଦ୍ରୌପଦୀଙ୍କ ସଙ୍ଗେ କାହିଁ
ପାରିବନି ଆଉ ଜଣେ ସେ ସ୍ଥାନକୁ ଯାଇ,
ଗଲେ, ହେବ ବାର ବର୍ଷ ବନବାସ ଭୋଗ ତାର ।
ବ୍ରାହ୍ମଣ କାନ୍ଦଣା ସହି ହେଲା ନାହିଁ ପ୍ରଭୁ !
କଲିଲି ଅବଜ୍ଞା ପଣ, ପଶିଲି ଭିତରେ,
ଆଣିଲି କାର୍ମ୍ମୁକ ଶର ଅକ୍ଷୟ ତୂଣୀର ।
ନିବାରିଲି ଦସ୍ୟୁ, ମୁକୁଳାଇ ଦେଲି ଧେନୁ ।
ଫେରି ନାହିଁ ଘରେ ଆଉ ପଣ ଅନୁସରି ।
ସେହି ଦିନୁ ବଣେ ବଣେ ବୁଲୁଛି ଏ ବେଶେ ।
କୋଉଠି ଥୁଅନ୍ତି ଧନୁ ଅକ୍ଷୟ ତୂଣୀର !
ମୋର କର ମୋର ସ୍କନ୍ଧ ତା ଯୋଗ୍ୟ ଆସନ ।
ବାର ବର୍ଷ ଆଜ ମୋର ଯାଉଅଛି ପୂରି ।
ଆସିଲି ଏ ପୁଣ୍ୟାଶ୍ରମ କରିବ ଦର୍ଶନ,
ନେବ ଆଶୀର୍ବାଦ ମାଗି ଶ୍ରୀଚରଣେ ତବ ।
ବଡ଼ ଭାଗ୍ୟ ମୋର ଭେଟିଲି ଶ୍ରୀକୃଷ୍ଣ ଏଠି ।

ବ୍ୟାସ—ବୁଝିଲ କି କୃଷ୍ଣ ଧନଞ୍ଜୟ ଦୁଇ ଜଣ
ଅଦୃଷ୍ଟ କଅଣ ?
ଯେଉଁ ଦିନ ପାଞ୍ଚ ଭାଇ କରିଥିଲେ ପଣ,
ଥିଲେ କି ସେ ଜାଣି ତେବେ ପରିଣାମ ତାର ?
ତାର ପରିଣାମ ହେଲା ପାର୍ଥ ବନବାସ ।
ଏହା ତ ତମିର ଗର୍ଭେ ଥିଲା ଲୁଚି କରି ।
ଏହି ତ ଅଦୃଷ୍ଟ ଏବେ ଟାଇଗଲା ଦୃଷ୍ଟି
ବ୍ରାହ୍ମଣଙ୍କ ଧେନୁ ମୁକ୍ତ ରୂପ କରମରେ ।

ବସ୍ତ୍ର ଧନଞ୍ଜୟ ! ତପ ନୁହେ ରାଜଧର୍ମ,
କିବା ରଜାର କରମ । ସବୁ ପାଇଁ ଅଛି
ଦେଶ, କାଳ, ପାତ୍ର କର୍ମ ଧର୍ମର ବିଚାର ।
ରଜାର କରମ କେବେ ନୁହଇ ତାପସର ।
ତପସ୍ୟାର କାଳ ନୁହେ ଯୌବନ କୈଶୋର ।
ନଗର ନୁହଇ କେବେ ତପସ୍ୟାର ସ୍ଥଳ ।
ଅରଣ୍ୟ ସେପରି ନୁହେ ରଜା ପାଇଁ ଯୋଗ୍ୟ ।
ତୁମର ଧାରଣା ଭ୍ରାନ୍ତ । ତେଣୁ ତୁମେ ଭାବ—
"ଋଷିର ଆଶ୍ରମ ଶ୍ରେଷ୍ଠ ରଜା ଆଶ୍ରମରୁ, ;
କିବା ଗୃହୀର ଆଶ୍ରମୁଁ ।"
ଗୃହୀର ଆଶ୍ରମ ସଦା କରମେ ମୁଖର ।
ରଜାର ଆଶ୍ରମ ତାହାଠାରୁ ବେଶୀ ବ୍ୟସ୍ତ ।
ତାପସ କରମ କ୍ଷୁଦ୍ର ସୀମାରେ ସୀମିତ ।
ପଙ୍ଗୁ କରି ଦେଇ ଶରୀରର ଅବୟବ
ମନର ଉପରେ ଖାଲି କରେ ସେ ନିର୍ଭର ।
ଜାଣ ତୁମେ କାୟା ମନ ଏକାଠି ନ ହେଲେ
କୌଣସି କରମ ହୁଏ ନାହିଁ ସମାହିତ ।
ନୁହେ ପରିହାର୍ଯ୍ୟ କାୟା ମନ ସହଯୋଗ ।
ବଥାଇଲେ ଅଙ୍ଗଟିଏ ମନ ରହେ ସୁସ୍ଥ ?
ଭାବୁଥିବ କିଆଁ ମୁହିଁ ହେଲିନି ସଂସାରୀ ।
ଶୁଣ ମୁଁ କହୁଛି ତାହା—ସଂସାରୀ ଗୃହୀର
ମୁଁ ନୁହେ ତନୟ ।
ଋଷିର ତନୟ ମୁହିଁ ଅବୈଧ ଉପାୟେ ।
ତେଣୁ ତ ଜନନୀ ମୋର ନୁହେ ଋଷିପତ୍ନୀ ।
ସଂସାରେ ସମାଜେ ମୋର ହେଲା ନାହିଁ ସ୍ଥାନ ।
ଅରକ୍ଷିତ ଶିଶୁ, ପିତା ଅପରାଜିତର ସମ
ରଖି ପାଳିଥିଲେ ମୋତେ ।
ଦେଇଥିଲେ ଶିକ୍ଷା ମଧ୍ୟ ଋଷିର ଆଶ୍ରମ ।

ଶିଶୁକାଳୁଁ ଋଷିଙ୍କର ଆଦର୍ଶ ନେତ୍ରେ ରଖି
ଶିଖିଲି ଆଚାର, ସଂସ୍କାର ଓ ବ୍ରତ ନୀତି ।
ଆଶ୍ରମ ବାହାରେ କେବେ ପଡ଼ି ନାହିଁ ଆଖି ।
ବ୍ୟସନ ଭୂଷଣ ଥିଲା ମୋହର ଅଦୃଷ୍ଟ ।
କ୍ରମେ ଋଷି ଧର୍ମ ମୋର ହୋଇଲା ଅଭ୍ୟାସ ।
କ୍ରମେ ସେ ଅଭ୍ୟାସ ହେଲା ଧର୍ମେ ଅଧିଷ୍ଠିତ ।
ଏଥିରେ ମୋ ନାହିଁ କିଛି ମାତ୍ର ବାହାଦୁରୀ ।
ନରରୂପ ଧରି କରିଅଛି ଇନ୍ଦ୍ରିୟକୁ ସଂଯତ ଏପରି ।
ଏ ସଂଯମେ ନାହିଁ ମୋର କିଛି ଅଧିକାର ।
ସେ ସଂଯମ ପାଇଁ ହେଲି ବ୍ରହ୍ମଋଷି ଟିଏ ।
ଏହି ମୋର ଶ୍ରେଷ୍ଠତ୍ୱର ପ୍ରଧାନ କାରଣ ।
ତୁମେ କି ପାରିବ ବତ୍ସ !
ବହୁ ସୁଖ ବହୁ ଭୋଗ ରଖି ଆଖି ଆଗେ ?
ସମ୍ବରି ପାରିବ ଲୋଭ ବ୍ୟସନ କଦାପି ?
ଗାର୍ହସ୍ଥ୍ୟ ଆଶ୍ରମେ ରହି ଯେ ପାରଇ ଏହା,
ସେହି ଋଷିଶ୍ରେଷ୍ଠ ।
ସେପରି ଜନକ ଥିଲେ ଏ ଯୁଗର ଆଗେ ।
କହ ତ ଅର୍ଜୁନ ଦେଖି ହୋଇବ ଜନକ
କିବା ଦୁଃଖୀ ଦ୍ୱୈପାୟନ ?
ନେଇନା ବୟସ ଅଛି ସାଧି ହେ କରମ ।
ରାଜସିଂହାସନେ ବସି ତାପସପ୍ରବର
ହେବ ହେ ଅଚିରେ ।
ସବୁ ଯୋଗୀ ଋଷିଙ୍କର ଆରାଧ୍ୟ ଶ୍ରୀକୃଷ୍ଣ
ସେହି ତୁମ ଗୁରୁ ପୁଣି ଅନ୍ତରଙ୍ଗ ସଖା ।
ତୁମ ଅଦୃଷ୍ଟ ଉଜ୍ଜ୍ୱଳ ଆହୁରି ଉଜ୍ଜ୍ୱଳତର ହୋଇବ ଭବିଷ୍ୟେ
ଶ୍ରୀକୃଷ୍ଣଙ୍କଠାରେ ଭକ୍ତି ରଖିବ ସତତ ।
କେଶବ ! ଅର୍ଜୁନ ତବ ପରମ ଭକତ ।

ତୁମେ ନାରାୟଣ, ସିଏ ନରଙ୍କ ଉତ୍ତମ ।
ନରନାରାୟଣ ଯୋଗ ଅପୂର୍ବ ସଂଯୋଗ ।
ଧରା ପାଇଁ ଧର୍ମ ପାଇଁ ଦ୍ୱାପର ଯୁଗରେ ।
ବ୍ୟାପର କଲ୍ୟାଣ ଶିରେ, ଭକ୍ତ ଚରଣେ
କର ହେ ଗ୍ରହଣ ।
ସ୍ଥାନାନ୍ତରେ କାଳାନ୍ତରେ ପାଇବ ଦର୍ଶନ ।
ଏହି ମୋର ଏକମାତ୍ର ଭିକ୍ଷା ଶ୍ରୀଚରଣେ ।

———

# ଦ୍ୱାରକା ପଥେ କୃଷ୍ଣ ଅର୍ଜୁନ

ବ୍ୟାସଙ୍କ ଚରଣେ          ପ୍ରଣିପାତ କରି
  କୃଷ୍ଣ ଫାଲଗୁନୀ ଆସିଲେ ଫେରି,
ଅଦୂରେ ସାନୁରେ          ରଥେ ଅଶ୍ୱ ଯୋଚି
  ସୂତ ବସିଥିଲା ଅପେକ୍ଷା କରି ।
ବସାଇ ଅର୍ଜୁନେ          ବସିଲେ କେଶବ
  ଲଗାଲଗି ହୋଇ ରଥ ଉପରେ,
ରଥ ଧୀରେ ଧୀରେ          ଚଳାଇଲା ସାରଥି
  ଘୋଡ଼ାଏ ଧାଇଁଲେ ଧୀରେ ମନ୍ଥରେ ।
ବାଟେ ଯାଉ ଯାଉ          ଦେଖିଲେ ସରସୀ
  ନୀଳ ସଲିଳରେ ଋଷିକୁମାରୀ,
ଅବଗାହି ବାପ          ଓଟାଇ ବାରିରେ
  ଆସୁଅଛି ଶୁଚି ନରେଣ ଭଳି ।
କହିଲେ ଶ୍ରୀକୃଷ୍ଣ          "ଅନା ଅନା ସଖା !
  ଏହି ଯେ କୁମାରୀ ଆସୁଛି ଚଳି,
ନୁହେଁ କି ଅଧିକ          ସୁନ୍ଦରୀ ତାଠାରୁ
  ଆଶ୍ରମେ ଦେଖାଉ ଥିଲ ଯେ ବାଳୀ ?
ସରୁ ଧୋବ ଲୁଗା          ପିନ୍ଧି ଅବଗାହି
  ଚିପୁଡ଼ିନି ଅଙ୍ଗେ ଯାଇଛି ଜଡ଼ି,
ଦେହର ସୁଷମା          ସବୁ ବର୍ଣ୍ଣ ଚିହ୍ନ
  ଉଛୁଳି ଉଠିଛି ଉପରେ ପଡ଼ି ।

ନିଜ ନବାଣବା ପାଣ୍ଡିକ ରମଣୀ
ଦାନ୍ତରେ କାମୁଡ଼ି ଧଇଲା ଧଡ଼ି,
ନିଜ ଘରଘର ହୋଇଗଲା ସିନା
ଅଥଳରେ ଆମ ଅଂଗରେ ପଡ଼ି ।
ଏତିକେରେ କ'ଣ ନିବାରିବ ଲଜ୍ଜା ?
ନିଜ ସରମ ସେ ମନର କଥା,
ଦେହ ଘୋଡ଼ାଇଲେ ମରମ ଲୁଚିବ
ସତେ ଯିବ କି ତା ସରମ ବଥା ?
କହୁଥିଲ ପରା ଋଷି ହିଁ ଅଟିର
ନ ଥିଲା ଟିକିଏ ସରମ ଶଙ୍କା ?
ଦେଖ ଭଲ କରି ଏଠି ଏ କୁମାରୀ
ସରମରେ ନଇଁ ହେଲଣି ବଙ୍କା ।
ନଇଁ ପଡ଼ିଲେ କି ନିଜ ଦୁଃଖ ଯାଏ
ପିଠିଟାର କ'ଣ ଜୀବନ ନାହିଁ ?
ହୃଦର ରକତ ପିଠିକୁ ଯାଏନା
ଧମନୀ ସର୍ଜନା କଅଣ ପାଇ ?
ଯେ ମାରଇ ମାରେ ପିଠିକି କାହିଁକି
ସତେ କ'ଣ ତାକୁ କାଟଇ ନାହିଁ ?
ପଛରେ କେ କା'କୁ ଗାଳି ଦେଉଥିଲେ
କିଏ ବା ତାହାକୁ ଶୁଣଇ କାହିଁ ?
ପିଠିରେ କାହାର ନ ଥାଏ କି ଲାଜ
ପିଠିକୁ ଦାଅନ୍ତ ସବୁ ଦେଖାଇ,
ଗୁଣ୍ଡର ମୁହଁର ସବୁ ଲାଜତକ
ତାକୁ ଲୁଚାନ୍ତି କି ସେଇଥିପାଇଁ ?
ମୁହଁଟାକୁ କ'ଣ ବେଶୀ ଲାଜ ମାଡ଼େ
ନ ହେଲେ ବା ସବୁ ଲୁଚନ୍ତେ କିଆଁ,
ମଦନଟା କ'ଣ କିଆଁ ଖୁଣ୍ଟା ଧରି
ସବୁବେଳେ ସେଠି ଚେଙ୍ଗଇ ଚିଆଁ ?

ଆଖିଟା କି ସତରେ    ମଦନର ଦୂତ
ଅନେକ ପ୍ରାଣଙ୍କୁ ଯାଏ ସେ ଧାଇଁ,
ଆନନଟା କ'ଣ    ଲୁଟେ ସେଥିପାଇଁ
ଶୁଣାଇ ବାରଣ କରିବ ନାହିଁ ?
ଏହାଠାରୁ ବଳି    ଅଛି ସୁନ୍ଦରୀଏ
ଅଛି ରୂପ ଗୁଣ ବହୁତ ତାର,
ସରମ ସଂକୋଚ    ଅଛି ସ୍ୱାଠୁଁ ବେଶୀ
ପଦ୍ମ ପାଖୁଡ଼ାରେ ତନୁଟି ତାର ।
ଶ୍ୱେତ ଶତଦଳ    ମୁହଁଟିରେ ତାର
କଜଳ କାଳିଆ ଯୋଡ଼ିଏ ଆଖି,
ଗଣ୍ଡରେ ଗଣ୍ଡରେ    ଗୋଲାପୀ ଆଭାର
ଉକତିଆ ରଙ୍ଗ ରହିଛି ଲାଗି ।
କଥା କହୁଥିଲେ    ମୁହଁ ପୋତିଥାଏ
ମୁଣ୍ଡରୁ ଓଢ଼ଣା ପଡ଼େନା ଖସି,
ଏତେ ସାବଧାନ    କଥାରେ ଭାଷାରେ
ବଡ଼ାହେଁ ସେ କେବେ ହଏନା ହସି ।
ଧୋବ ସରୁ ଲୁଗା    ପିନ୍ଧିଥାଏ ଯେବେ
ଦେହର ଶୁକ୍ଳମା ହସଇ ଫୁଟି,
ସ୍ୱରଗ ରାଜ୍ୟର    ଶିରୀ ସମ୍ପଦ ସେ
ଫୁଟାଇଛି ଦେହେ ଅଣାଇ ଲୁଟି ।
ଡେଣା ନାହିଁ ତାର    ଥାଆନ୍ତାଟି ଯେବେ
ହସନ୍ତା ସ୍ୱରଗ ପରୀଟି ପରି,
ଉଡ଼ି ବୁଲୁଥାନ୍ତା    ଗଗନେ ପବନେ
ବହୁରଙ୍ଗୀ ଗୃହୁ ଟେସଟି ସର ।
ଦୁଃଖୀ ରଙ୍କୀ କେହି    ଆଖିରେ ପଡ଼ିଲେ
ଦେହରୁ ଭୂଷଣ ଦିଅଇ କାଢ଼ି,
ଭୋକା ଶୋଷୀ ଆସି    ଡାକିଲେ ଦୁଆରେ
ନିଜର ଭାତ ସେ ଦିଏ ଅଜାଡ଼ି ।

ଚନ୍ଦ୍ରେଇ ଚଗୁର୍ଣୀ ପେଟ ସେ ଜାଣଇ
ସଭିଙ୍କ ଦୁଃଖରେ କରଇ ଦୁଃଖ,
ପୁଣି ସେହିପରି ସୁଖର ସାଥୀ ସେ
ପରର ସୁଖରେ ତାହାର ସୁଖ ।
ବାପ ମାଆଙ୍କର ଗେହ୍ଲୀ ଝିଅ ସିଏ
ସ୍ୱଜନମାନଙ୍କ ପ୍ରିୟ ନନ୍ଦ,
ଭାଇମାନଙ୍କର ସ୍ନେହର ଭଉଣୀ
କାହାର ପାଖରେ ନୁହେ ସେ ମନ୍ଦ ।
ସାହି ପଡ଼ିଶାଏ ଟେକ ଧରିଥାନ୍ତି
ପଡ଼ଇ ନାହିଁ ତା ଦେହରେ ଧୂଳି,
ଫୁଲରେ ଫୁଲରେ ଖେଳଇ ସନ୍ତତ
ଫୁଲ୍ଲ ମନେ ଖାଲି ଥାଏ ସେ ଭୁଲି ।
ଲହୁଣୀଠାରୁ ସେ ଅଧିକ କଅଁଳ
ଅଳପ ଉଷୁମେ ଯାଏ ତରଳି,
ଗରମ ବେଳରେ ମୃଦୁ ଖରା ସିଏ
କେତେବେଳେ ହେଲେ ଉଠେନା ଜଳି ।
ରଣ କଉଶଳ ଶିଖିଛି ଯତନେ
ଉଲ୍ଲାସେ ମାରଇ କାର୍ମୁକ ଧରି,
ରଣଗୋଳ ବେଳେ ସବଳା ହୁଅଇ
ଅବଳା ରଖଇ ପୁରୁଷ ପରି ।
ମାରିବା ଧରିବା ସହିପାରେ ନାହିଁ
ମରଣ ଦେଖିଲେ କାନ୍ଦଇ ବସି,
ସମର ଭୂଇଁରେ ଆହତର ସେବା
କରେ ଅକାତରେ ଲୁହ ବରଷି ।
ସେବା କରିବାରେ ହୁଏ ନାହିଁ ଶ୍ରାନ୍ତ
ବାତଧନା ଅନଦ୍ରା ଜାଣେ ନା ଶୋକ,
ରୋଗୀକୁ ଦେଖିଲେ ତାହାର ସେବାରେ
ଲାଗି ରହିଥାଏ ଯେସନ ଜୋକ ।"

ଅର୍ଜୁନ ପୁଚ୍ଛିଲେ "କିଏ ସେ କୁମାରୀ
କାହାର ଦୁହିତା କାହିଁ ତା ଘର,
ଦେଖାଇ ପାରିବ ତାକୁ କି କେଶବ
ବସ୍ତ୍ର ସରିଛୁ କି ତା ପାଇଁ ବର ?"
ଶ୍ରୀକୃଷ୍ଣ ଜାଣିଲେ ଅର୍ଜୁନ ପ୍ରଶ୍ନରୁ
ମନେ ଅନୁରାଗ ପ୍ରବଳତର,
ମୃଗତେ ଭାବିଲେ ଭବିଷ୍ୟତ ଚିନ୍ତା
ସତେ ଫଳବତୀ ହେବ ମୋହର ।
କହିଲେ ଏଥର "ରୋହିଣୀ ତନୟା
ମୋହର ଭଉଣୀ ସୁଭଦ୍ରା ନାମ,
ଏତେ ରୂପ ଗୁଣ ଅଛି ତା ଦେହରେ
ପଶି ପାରେ ନାହିଁ ତା ପାଖେ କାମ ।
ବୟସ ଚାହର ନୂଆ ଯଉବନ
ବରଯୋଗ୍ୟା ହୋଇଅଛି ମାତର,
ବାପା କହୁଥିଲେ ବାହାଘର ହେବ
ବୟସ ହୋଇଲେ ତାର ସତର ।
ମୋର ଇଚ୍ଛା ଅଛି ଦେବ ମୁଁ ତୁମକୁ
ରାମଙ୍କର କିନ୍ତୁ ଅନ୍ୟ ପ୍ରକାର,
ଦେବେ ସେ କୁଆଡ଼େ ଦୁର୍ଯୋଧନ କରେ
ତୁମେ ହିଁ କରିବ ତା ପ୍ରତିକାର ।"
ଏହାର ଭିତରେ ଜାଣି ହେଲ ନାହିଁ
ରଥ ପହଞ୍ଚିଲା ଦ୍ୱାରକା ପଥେ,
ନଗରବାସିଏ ଦେଖିଲେ ସନ୍ତୁଷ୍ଟେ
କୃଷ୍ଣ ଅରଜୁନ ଏକାଠି ରଥେ ।
ରଥୁଁ ଅବତରି କୃଷ୍ଣ ଅରଜୁନ
ଧୀରେ ଧୀରେ ଗଲେ ନଅର ପାଖେ,
ପୁରୁଷ ରମଣୀ କୁହାକୁହି ହେଲେ
କିଏ ଆଉ ଜଣେ କୃଷ୍ଣଙ୍କ ସାଥେ !

ମତ୍ତ ଭୂଲୁଣିଆ ଯନ୍ତଟିର ସଙ୍ଗେ
ସଙ୍ଗୀ ଭୂଲୁଣିଆ ପୁରୁଷଟିଏ,
ଚରଣ ଚଳାଇ ଚଳାଇ ଆସନ୍ତି
ଯାଆଁଳା ଭାଇଙ୍କ ଯୋଡ଼ିଏ ସିଏ !
କଥାରେ ଭାଷାରେ ବୃଷଭର ସ୍ୱର
ଭବ-ଭଙ୍ଗିମାରେ କେଶରୀ ଠାଣି,
ଗୁଳରେ ଗୁଳରେ ବୀରର ଦରପ
ଶାର୍ଦ୍ଦୂଳର ସମ ଘୂରା ଗୃହାଣୀ ।
ଅଧରେ ଅଧରେ ମୃଦୁ ମୃଦୁ ହସ
ବଚନେ ବଚନେ ଗାମ୍ଭୀର୍ଯ୍ୟ ଚନ୍ଦ୍ର,
ନୟନେ ନୟନେ ପ୍ରଶ୍ନବାରୀ ପୁଚ୍ଛେ
ଲଲାଟେ ଲଲାଟେ ତା ସମାଧାନ ।
ଭ୍ରୂରେ ଭ୍ରୂରେ ଆଦେଶ ସଂକେତ
ଭୁଜରେ ଭୁଜରେ ପାଳନ ସତ୍ତ୍ୱ,
ଅନ୍ତର ବାହାର ଦର୍ଶନ-ଲାଳସୀ
ନୀରବ ଅନ୍ତର କହୁଛି କଥା ।
ଦୁଆରେ ଅଳନ୍ଦେ ଦାଣ୍ଡେ ନରନାରୀ
ସକଳେ ମୋହିତ ଦେଖି ଫାଲ୍‌ଗୁନୀ,
ପଚରା ପଚରି ହୁଅନ୍ତି ଗୋପନେ
କାନେ କାନେ କଥା କହନ୍ତି ଚୁମି ।
କୃଷ୍ଣ ବନ୍ଦାଇବା ପାଇଁକି ଆସିଲେ
ଅର୍ଘ୍ୟଥାଳି ଧରି ପୁର ରମଣୀ,
ସୁଭଦ୍ରା ତାଙ୍କର ପଛରେ ପଛରେ
ସତ୍ୟଭାମାଙ୍କର ଚିର ସଙ୍ଗିନୀ ।
ଦେଖିଲେ ଅର୍ଜୁନ ସୁଭଦ୍ରା ବଦନ
ସୁଭଦ୍ରା ଦେଖିଲେ ଅର୍ଜୁନ ମୁଖ,
ଗୃହ ଚକ୍ଷୁପାକ ମିଳମିଶି କରି
ଦେଖିଲେ ପ୍ରେମର ମିଳନ ସୁଖ ।

ଅର୍ଜ୍ଜୁନ ଜାଣିଲେ କୃଷ୍ଣଙ୍କ ବଞ୍ଚିତ
କୁମାରୀ ତ ଇଏ ହୋଇବ ପର !
ସୁଭଦ୍ରାଙ୍କ ମୁଣ୍ଡ ବୁଲାଇଲା ଚେତନା
ଥରିଲା ଅନ୍ତର ବୁଲିଲା ଧର ।
ଅର୍ଜ୍ଜୁନଙ୍କ ମନ ଆତୁର ଦେଖିବେ
କୁମାରୀର ପାଖ ଛାଡ଼ିବେ ନାହିଁ,
ସୁଭଦ୍ରା ଭାବିଲେ କଂପ ଲୁଚାଇବେ
ମୁହଁ ମାଡ଼ି ଖଟେ ଶୋଇବେ ଯାଇଁ ।
ଦୁହେଁ ଦୁହିଁଙ୍କର କଷିଲେ ମାନସ
କାହାକୁ କହିବେ ସରମ କଥା !
କିଏ ବା ଶୁଣିବ ତାଙ୍କ ନିବେଦନ
କିଏ ସେ ହରିବ ମରମ ବ୍ୟଥା !
ରହୁ ରହୁ ରହୁ ରହିଲେ ଅର୍ଜ୍ଜୁନ
କୃଷ୍ଣଙ୍କ ନଅରେ ବହୁତ ଦିନ,
ମଝିରେ ମଝିରେ ସୁଭଦ୍ରାଙ୍କ ସହ
ହୋଇଯାଏ ଟିକେ ଟିକେ ମିଳନ ।
ଦ୍ୱାରକା ବରଜେ ଆସିବା ପାଇଁକି
ବଳୁନ ମାନସ ରହିବେ ସିଏ,
ଶ୍ରୀକୃଷ୍ଣ ଯାହାକୁ ରଖାଇ ଅଛନ୍ତି
ଆଉ ବା ଯିବାକୁ କହିବ କିଏ ?
କ୍ରମେ କ୍ରମେ ଦେଖା କ୍ରମେ ମିଳାମିଶା
କ୍ରମେ କଥାଭାଷା ହଅା ଓ ନଅା,
ସତ୍ୟଭାମା କୃଷ୍ଣ ପରାମର୍ଶ ପାଇ
କରୁଛନ୍ତି ସବୁ ସଖୀ ଉଜିଆ ।
ସୁଭଦ୍ରା ସେ ଦୁହେଁ ଏକା ପରାଣ ତ
ଜଣକ ଦୁଃଖରେ ଅନ୍ୟଟି ଦୁଃଖୀ,
ସୁଭଦ୍ରା ବଦନ ଦେଖନ୍ତି ସେ ନିତି
ଦିନୁଁ ଦିନ ବେଶୀ ଯାଉଛି ଶୁଖି ।

ଅର୍ଜୁନଙ୍କ ମନ ହେଉନ ଆକୁଳ
ଦ୍ରୌପଦୀଙ୍କ ପାଖେ ଯିବାକୁ ଫେର ?
ନାନା ଆଳ କରି ରହିଅଛନ୍ତି ସେ
ଜାଣି ଶୁଣି କରୁଅଛନ୍ତି ଡେରି ।
ସୁଭଦ୍ରା ଲୁଚିଇ ଲୁଚିଇ କେବେ ବା
ଯାଆନ୍ତି ଅର୍ଜ୍ଜୁନ ଶୟନ-କକ୍ଷେ,
ବସନ୍ତି ଟିକଏ, ଛନ ଛନ ହୋଇ
ଅର୍ଜ୍ଜୁନ ବସନ ଧରନ୍ତି ବକ୍ଷେ ।
ବାହାରି ଆସନ୍ତି ଡର ଡର ହୋଇ
ଦେଖି ପକାଇବ କିଏ ବା କେବେ,
ତାଙ୍କ ଲୁଚି ଛପା ଅନ୍ତର କଥା ତ
ଜାଣିପକାଇବେ ସକଳେ ତେବେ ।
ଛି ଛି ! ନିନ୍ଦା ହେବ ହସିବେ ସକଳେ
କାହାକୁ ତ ରହିଁ ପାରିବ ନାହିଁ,
ସତ୍ୟଭାମା ଯେବେ ଜାଣିବେ ଏ କଥା
କହିବେ ଝିଂଗାସି ମୁହଁ ହଲଇ ।
"କାହିଁକି ସେ ଘରେ ଯାଇଥିଲ ତୁମେ
ସେ ଘରେ ତୁମର କି କାମ ଥିଲା ?
ଛି ଛି ! ତୁମ ଯୋଗୁ ଯାଦବ-ବଂଶର
ମହତ ମର୍ଯ୍ୟାଦା ଚୁଲିକୁ ଗଲା ।"
ଯିଏ ଯେତେ ଯାହା କହନ୍ତୁ ପଛକେ
ଅର୍ଜୁନେ କରିବ ପରାଣ ସାଇଁ,
ସତ୍ୟଭାମା ଏଣେ ଜଗି ବସିଥାନ୍ତି
ସୁଭଦ୍ରା ଅନ୍ତର କଳିବା ପାଇଁ ।
ଅଳିନ୍ଦେ ଅଳିନ୍ଦେ ବେଳ ଅବେଳରେ
ସୁଭଦ୍ରାଙ୍କୁ ବସି ଥାଆନ୍ତି ରହିଁ,
କେତେ ଦିନ ଆଉ ଲୁଚନ୍ତା ଏ କଥା
ସୁଭଦ୍ରାଙ୍କ ଢଙ୍ଗ ଲୁଚିଲା ନାହିଁ ।

ମୁହଁ ଫଣଫଣ କରି ସେ କହିଲେ
"ଧରିବନି ଆଉ ମୋହର ଦୋଷ,
ବାପ ଭାଇ ଆଉ ମୁହଁ ଟେକିବେନି
ତୁମ୍ଭାକୁ ମୋଠାରେ କରିବେ ରୋଷ ।
ଆଜି ମୁଁ ଭାଇଙ୍କୁ କହିବି ଶୁଣାଇ
ତୁମକୁ ଚଞ୍ଚଳ ଦିଅନ୍ତୁ ବାହା,
ନ ହେଲେ ତ ତୁମେ ଅଥଳେ ପଶିବ
ଅବାଟେ ଚାଲିବ କି ହେବ ଆହା !
ଦେଖେଇ ଦେଖେଇ କାହାର ଚିଠି ସେ
ଲୁଚାଇ ଦିଠାଇ ଦେଖୁଛ କେତେ,
କେତେବେଳେ ତୁମେ ଏ ଚିଠି ଲେଖିଲ
କଅଣ କହିବ କହୁନା ମୋତେ !
ଅର୍ଜୁନଙ୍କୁ ତୁମେ ହେବ କି ଗୋ ବାହା
ସେଇଥିପାଇଁ କି ଯାଉଛ ଶୁଖି,
କହୁନା କାହିଁକି ମନ ମୁକୁଳାଇ
ମଲି ନିରୁତରୀ ମଉନମୁଖୀ ।"
ଅର୍ଜୁନ ସେପରି ଲୁଚି ଲୁଚି କରି
ଗୋଡ଼ାଇ ଚାଲନ୍ତି ସୁଭଦ୍ରା ଚାହିଁ,
ପୋଖରୀ ତୁଠରେ କୁସୁମ କାନନେ
କେତେ କେତେବେଳେ ଭେଟନ୍ତି ଯାଇଁ ।
ଚକ୍ଷୁରେ ଚକ୍ଷୁରେ ମିଳନ ହୋଇଲେ
ସୁଭଦ୍ରା ପୋତନ୍ତି ତଳକୁ ମୁହଁ,
କାହିଁକି କେଜାଣି ନିମୀଳିତ ନେତ୍ରେ
ଜକାଇ ଆସଇ ଉଷୁମ ଲୁହ ।
ଅର୍ଜୁନ ପୁଚ୍ଛନ୍ତି ଫୁସୁ ଫୁସୁ କରି
"ମୁହଁଟି କାହିଁକି ଯାଇଛୁ ଶୁଖି,
କାଲି ରାତିରେ କି ନିଦ ହୋଇ ନାହିଁ
କାହାକୁ ଗୋ ଥିଲ ସପନ ଦେଖି ?

ସପନ କଥାକୁ ଏଡ଼କ ବିଶ୍ୱାସ
ସଫଳ ସ୍ୱପ୍ନ କ ଦେଖିଲ ସତେ,
ଟିକଏ ସୁନ୍ଦରୀ ଠିଆହୋଇ କରି
ଚୁପ୍ ଚୁପ୍ କରି କହିଯା ମୋତେ ।
ଦୁହେଁ ତ ଦୁହିଁଙ୍କୁ ଝୁରୁଥାଇ ବସି
ସତେ ତୁମେ କେବେ ହେବ ମୋହର,"
ସତ୍ୟଭାମା ଶୁଣି ଆନନ କଂପାଇ
ଚହଳି କହିଲେ, "ଚୋର ଗୋ ଚୋର ।
ଧରା ଚଢ଼ିଛନ୍ତି ଅସଲ ହାତରେ
ଦୁହିଁଙ୍କର କରି ଦେବ ମୁଁ ବାନ୍ଧି,
ମନ ଚୋରି କରି ହସୁଥିଲ ପରା
ଏଇନା କାହିଁକି ଦେଉଛ କାନ୍ଦି ?"
ଅର୍ଜୁନଙ୍କୁ ଚାହିଁ କହିଲେ ଆଦରେ
"ହେ କଳା ନାଗର ଛଳକୁ ମୁହିଁ,
କାହିଁକି ପୋତିଲ କି ଦଣ୍ଡ ପାଇବ
ଭାବି ଚମ୍ଭ କରି ତୁମେ ହିଁ କୁହ ।
ମାଙ୍କଡ଼ ଚୋପିଟା ପିନ୍ଧାଇ ଦେବା କି
ଜରି ବାନ୍ଧି ଦେଇ ମୁକୁଟ କରି,
ମାନବ ଅଧିକ କାଳିଆ ରୂପକୁ
ଦିଶିବ ସୁନ୍ଦର ବରଟି ପରି ।
ଛି ଛି ! ଲାଜ କଥା କାହାକୁ କହିବା
ଇଏ ଗୋ ଲୁଆଡ଼ ସାଧୁ ବାବାଜୀ,
ଗଇରିକ ପିନ୍ଧି ଋଷି ସାଜିଥିଲେ
ଜଣା ପଡ଼ିଗଲା ସବୁ ତ ଆଜ ।
ଯାଅ ଯାଅ ଆଉ କଅଣ କହିବା
ବନ୍ଧୁଘର ଆସି ଏସନ କର୍ମ,
କି ଗୁଣ ଗାଇବ କାହାକୁ ତୋଷିବ
ହାୟରେ କପାଳ ହାୟରେ ଧର୍ମ !"

ସୁଭଦ୍ରାଙ୍କୁ ଧରି ଗଲେ ଅନ୍ତଃପୁରେ
ରୁକ୍ମଣୀଙ୍କୁ ତହିଁ ଆଣିଲେ ଡାକି,
ଆଉ ରମଣୀଏ ମାଆଙ୍କ ସହିତ
ପଛରେ ଜାଣିବେ ରହିଲେ ବାକି ।
ରୁକ୍ମଣୀଙ୍କ କାନେ କହିଦେଲେ ସବୁ
ଶୁଣି ତାଙ୍କ ନେତ୍ରୁ ବହିଲା ଝର,
"କି କଲୁ ସୁଭଦ୍ରେ ! ଡର ହେଲା ନାହିଁ
କୁଳରେ ଦେଲୁ ଗୋ କଳଙ୍କ ଗାର ।
ନାହିଁ ନାହିଁ ନାହିଁ ଦୋଷ ଦେବି ନାହିଁ
ମନରେ ଦେଢ଼େ ଗୋ ସେଦନ ଚାଡ଼,
କୃଷ୍ଣଙ୍କ ପାଇଁକି ଗୋପନେ ମୁଁ କାହିଁ
ପଠାଇ ଥିଲି ତ ମୋର ଏ ଘୃଣ୍ଡ ।
ଲେଖିଥିଲି ଚିଠି ପେଶିଥିଲି ଦୂତ
ସତ୍ୟଭାମା ଏବେ ହୁଅ ଲୋ ଦୃଷ୍ଟ,
ପରାଣନାହାଙ୍କ କାନରେ କହ ଯା
ସୁଭଦ୍ରା ବଚାଡ଼ି ଦେଲଣି ମତି ।
ଅର୍ଜୁନଙ୍କୁ ଦେଲି ମନ-ପ୍ରାଣ ବିକି
ତାର ପ୍ରତିକାର କରନ୍ତୁ ସିଏ,
ସାବଧାନ ହୋଇ କହିବୁଟି କଥା
ଜାଣି ପାରିବନି ଯେପରି କଏ ।"
ସତ୍ୟଭାମା—ମନ ଲୁଚିଛପା ପଡ଼ନ୍ତୁ କାହିଁକି
ଜଣାଇ ଶୁଣାଇ କରିବା କାମ,
ସତ୍ୟଭାମା ପଣ ସୁଭଦ୍ରାର ଇଚ୍ଛା
ଦେଖିବା ଆଉ କେ ହୋଇବ ବାମ ?
ରୁକ୍ମଣୀ— ବଳରାମ କେବେ ହେବେ ନାହିଁ ରାଜି
ତାଙ୍କୁ ହିଁ ଗୋ ମୋତେ ମାଡ଼ୁଛି ଡର,
ଦୁର୍ଯ୍ୟୋଧନଙ୍କୁ ସେ ପସନ୍ଦ କରନ୍ତି
ସେ କୁଆଡ଼େ ରୂପ ଗୁଣର ବର ।

ସତ୍ୟଭାମା—ମାଆମାନଙ୍କୁ ଗୋ କହିବା ଏକଥା
କହନ୍ତୁ ପୁଅଙ୍କୁ ସିଏ ବୁଝାଇ,
ରେବତୀ ନାମୀଙ୍କୁ କହିବା ଗୋ ଭଲ
ରାମଙ୍କୁ ଏକଥା କହନ୍ତୁ ଯାଇ ।
ଜେଜେବାପା ଦୁହେଁ ଥାଆନ୍ତୁ ପଛକୁ
ଶେଷରେ ରାମଙ୍କୁ କହିବେ ସିଏ,
ଦେଖିବା କପର ସୁଭଦ୍ରାଙ୍କୁ ମୋର
ଅର୍ଜୁନ ନ ନେଇ ଆଉ କେ ନିଏ ।
କହିଲେ ସକଳେ ରାମଙ୍କୁ ବୁଝାଇ
ତେବେ ହେଲେ ସିଏ ବୁଝିଲେ ନାହିଁ,
ଗରଜିଲେ ରାଗେ କଲେ ଖାଲି ଜିଦ
ଦୁର୍ଯ୍ୟୋଧନ କରେ ଦେବାର ପାଇଁ ।
ଆହୁରି କହିଲେ "ପାଣ୍ଡବେ ଜାରଜ
ଛ ଛ'ଟା ଜନକ ପତ୍ନୀ ତାଙ୍କର,
ଦୁର୍ଯ୍ୟୋଧନ ସଙ୍ଗେ କୋଉ ଗୁଣେ ସମ
ନାହିଁ ରାଜ୍ୟବାଡ଼ ବୁଲି ଫକୀର ।
କାଲି ଦୁର୍ଯ୍ୟୋଧନେ ଆଣିବି ଡକାଇ
ସୁଭଦ୍ରାକୁ ଦେବି ତା କରେ ଟେକି,
କିଏ ଦେବ ତାକୁ ଅରଜୁନଟାକୁ
କାହାର ସାହସ ଦେଖେ ମୁଁ ଦେଖି ।"
ଶ୍ରୀକୃଷ୍ଣ ଦେଖିଲେ ମଜ୍ଜି ମୂକ ପରି
ସତ୍ୟଭାମାଙ୍କର କହିଲେ କାନେ,
"ଦୁର୍ଯ୍ୟୋଧନ ହେଲା ଅର୍ଜୁନଠୁଁ ଭଲ
ଭୋଳ କାଦମ୍ବରୀ ରସର ପାନେ ।
ତୁମେ ଏବେ ଯାଅ ଦେବୀ ପୂଜିବା
ଆୟୋଜନ କର କାଲି ସକାଳେ,
ସୁଭଦ୍ରାକୁ ନେବ ତୁମରି ସଙ୍ଗରେ
ସବୁ ଯାଉଥିବ ଦେବତା ଆଳେ ।

ଯାଉଛୁ ମୁଁ ସ୍ୟାଡ଼େ ଅର୍ଜୁନେ କହିବ
ଥିବ ସେ ମୃଗୟା ବେଶରେ ସାଜ,
ଦେବ ନନ୍ଦଘୋଷ ଦାରୁକର ସହ
ସୁଦର୍ଶନ ଚକ୍ର ଦେବ ବ ଆଜ ।
ନେବ ସେ ସୁଭଦ୍ରା ଅଧିବାଟୁଁ ହରି
ତୁମେ ସବୁ ଖାଲି ପାରିବ ଡକା,
ଏହି ଉପାୟରେ କରିବ ମୁଁ କାଲି
ଯାଦବଙ୍କ ସହ ରାମଙ୍କୁ ବୋକା ।
କେହି ପାରିବେନ ଅର୍ଜୁନଙ୍କୁ ରଣେ
ସୁଭଦ୍ରା ମୋହର ହେବ ସୁଖିମା,
ଯାଅ ମୋ ସୁନାଟି ଏତିକି ମାତର
କର ଗୋ ମୋ ପାଇଁ ଭଦ୍ରା ସଂଗିମା !
ତୁମର ପ୍ରତିଜ୍ଞା ମୋର ଅଭିଳାଷ
ସୁଭଦ୍ରା କାମନା କରିବା ପୂର୍ଣ୍ଣ,
ରାମ ଅଭିମାନ ଦୁର୍ଯ୍ୟୋଧନ ଗର୍ବ
ଦୁହିଁଙ୍କୁ ଏକାଠି କରିବା ଚୂର୍ଣ୍ଣ ।"
ବଳରାମ ତେଣେ ଚିଠିଟାଏ ଲେଖି
ସାରଥିକୁ ଡାକ ଦେଲେ ତା ହାତେ,
କହିଲେ, "ଏ ଚିଠି ଦେବୁ ଦୁର୍ଯ୍ୟୋଧନେ
ବର ସାଜ ଆସୁ କାଲି ପ୍ରଭାତେ ।"
କଲେ ଆୟୋଜନ ବାହାଘର ପାଇଁ
ଦ୍ୱାରକା ନଗରୀ ଉଠିଲା ହସି,
ସୁଭଦ୍ରା କେବଳ କାନ୍ଦିଲେ ମାରିବେ
ଗର୍ମ୍ଭୀର ଘରଟା କଣରେ ପଶି ।
ସତ୍ୟଭାମା ତାଙ୍କୁ କହିଲେ ବୁଝାଇ
"କାହିଁକି ଗୋ ସଖି କାନ୍ଦୁଛ ବସି ?
କାଲି ସକାଳେ ତ ହେବ ବାହାଘର
ସଇ ତୋ କାନ୍ଦଣା ଦେବେ ଗୋ ଧ୍ୱଂସି ।

ଅର୍ଜୁନ ତୋହର ହେବ ଗୋ ଫଗାତ
ଦୁର୍ଯ୍ୟୋଧନ ଆସି ଯିବ ଗୋ ଫେରି,
ଏକଥା ନିଶ୍ଚୟ କରି କରାଇବି
ଆଗରୁ ଉପାୟ କରନ୍ତୁ ସାରି ।
ଏତେ ଯତ୍ନ କରି ଶିଖିଲ ସମର
କୌଶଳ କାହିଁକି କହ ତ ମୋତେ,
କାଲି ଆବଶ୍ୟକ ହେବ ଗୋ ନିଶ୍ଚୟ
ଧନୁ ଧରିବାକୁ ପଡ଼ିବ ତୋତେ ।
ଶିଶୁପାଳ ପରି ହେବ ଦୁର୍ଯ୍ୟୋଧନ
କାହିଁକି କାନ୍ଦଣା କାହିଁକି ଚିନ୍ତା ?
ଆଜ ରାତି ପାହୁ ଦେଖିବ ସଜନୀ
ଧୈର୍ଯ୍ୟ ଧରି ତୁ ଟିକେ ରହିଥା ।”
ଅର୍ଜୁନଙ୍କୁ ଡାକି ଶ୍ରୀକୃଷ୍ଣ ସେପରି
କହିଲେ କାନରେ ବସାଇ ପାଟେ,
“ସୁଭଦ୍ରାକୁ ସଖା କାଲି ପ୍ରାତେ ନିଶ୍ଚେ
ବାହା କରାଇବି ତୁମରି ସାଥେ ।
ଦେବି ମୁଁ ତୁମକୁ ମୋ ରଥ ସାରଥି
ସୁଦର୍ଶନ ଚକ୍ର ଆସ୍ତୁରି ଦେବି,
ମୃଗୟା ବେଶରେ ତୁମେ ଆଗେ ଯିବ
ରମଣିଏ ଯିବେ ପୂଜିବେ ଦେବୀ ।
ତୁମେ ଧରିନେବ ସୁଭଦ୍ରାକୁ ତହୁଁ
ରମଣୀ ପାରିବେ ଉଚ୍ଚରେ ଡକା,
ସେଥିପାଇଁ ତୁମେ ଡରିଯିବ ନାହିଁ
ମନରେ ତୁମର ରଖନା ଶଙ୍କା ।
ସୁଭଦ୍ରା ମୋହର ଜାଣେ ଧନୁ ଧରି
ଅସମୟ ହେଲେ ହୋଇବ ସାହା,
ସେଥିପାଇଁ ସିନା ବାଛିଲି ତୁମକୁ
ଯେପରି ନାରୀକୁ ସେପରି ନାହା ।

ଯାଦବ ସଇନେ ସମର କରିବେ
କିନ୍ତୁ ସେ ସକଳେ ଯିବେଟି ହାରି,
ଦୁର୍ଯ୍ୟୋଧନ ତେଣେ ବରବେଶ ପିନ୍ଧି
ବଳ ସାଜ ଆସିଲଣି ବାହାରି ।
କୃଷ୍ଣା ସ୍ୱୟଂବରେ ପାଇଥିଲା ଲଜ
ଏଠି ସେ ପାଇବ ଦ୍ୱିଗୁଣ କରି,
ଯିବ ସେ ବାହୁଡ଼ି ପୁଣି ତା ରାଜ୍ୟକୁ
ସୁଭଦ୍ରା ତ ଅଛି ତୁମକୁ ବରି ।"

ଅର୍ଜୁନ—ତୁମେ ହରି ଯେବେ ମୋହର ଭରସା
କି କରିବ ମୋର ଯାଦବ ସେନା ?
ବାର ବର୍ଷ ପରେ ଧନୁ ମୁଁ ଧରିବି
ମୋର ଅପରାଧ ନ କର କେନା—
ଦିଅ ଅନୁମତି କର ଆଶୀର୍ବାଦ
ଯାଦବ କାହାକୁ ମାରିବି ନାହିଁ,
ଅଳକ୍ତ ସମରେ ଜିଣିବି ସଭିଙ୍କୁ
ସୁଭଦ୍ରାକୁ ନେବି ବନ୍ଦିବେ ବୃନ୍ଦୀ ।
ବାହାରିଲେ ପାର୍ଥ ପାରିଧି କରିବେ
ସରଳ ସହଜ ବସନ ପିନ୍ଧି,
ହାତକେ ଗାଣ୍ଡୀବ ହାତେ ସୁଦର୍ଶନ
ପିଠିରେ ରଖିଲେ ତୂଣୀର ବାନ୍ଧି ।
ଦାରୁକ ସାଜିଲେ ନନ୍ଦିଘୋଷ ରଥ
ସିଂହଦ୍ୱାରେ ଆଣି କରିଲେ ଠିଆ,
ରାଜପୁର ସିନ୍ଧି ଅନୁସରି କରି
ହାତେ ଥିଲା ପୂର୍ବ ପାଣି ମାଠିଆ ।
ଚଢ଼ିଲେ ଅର୍ଜୁନ ନନ୍ଦିଘୋଷ ରଥେ
ବସିଲେ ଶ୍ରୀକୃଷ୍ଣ ବସିଲ ପରି,
ଗୃଳିଲେ ଦାରୁକ ରଥ ଧୀରେ ଧୀରେ
ବାଗ ଦଉଡ଼ିକୁ ହାତରେ ଧରି ।

ବାହାରିଲେ ନାରୀ ଦଳ ଦଳ ହୋଇ
ଦେବୀ ଆରାଧନା କରିବେ ଆଜ,
ଶଂଖ ଶବ୍ଦ ଉଠେ ମଂଗଳ ମନ୍ତ୍ରସ୍ୱ
ନାନା ଗୀତ ଗାଇ ଉଠିଲା ବାଜ ।
ଚଳିଲେ ବାମାଏ ଆଗ ପଛ ହୋଇ
ଆଗେ ସତ୍ୟଭାମା ସୁଭଦ୍ରା ପଛେ,
ଆଉ ସବୁ ନାରୀ ବୃତ୍ତିଏ ପରି
ଚନ୍ଦ୍ରମଣ୍ଡଳ କି ଦିଶଇ ସ୍ୱଚ୍ଛେ !
ଦୁର୍ଯ୍ୟୋଧନ ତେଣେ ବାଇଦ ବଜାଇ
ଆସୁଛି ହରଷେ ବାଜେ କାହାଳୀ,
ରାମ ଅନୁଗ୍ରହ ତାର ସଉଭାଗ୍ୟ
ବାଟଯାକ ଖାଲି ହେଉଛି ଭଲି ।
ଭାନୁମତୀ ସହ ଆଜ ରୂପବତୀ
ଶୋଭିବ ଗଳାରେ ହୀରକ ସମ,
ତାର ଉଆସରୁ ହୃଦୟ-ମନ୍ଦିରୁ
ଅପସରି ଯିବ ସକଳ ତମ ।
ବର ଆମନ୍ତ୍ରଣ ବେଳରେ ଶୁଭିଲା
ନେଲା ନେଲା ବୋଲି ଉଚ୍ଚରେ ଡାକ,
ଚକିତ ନୟନେ ଅନାଇଲେ ସବୁ
ଉତ୍କର୍ଣ୍ଣ ଶୁଣିଲେ ସବୁଠାଯାକ ।
କିଏ ନେଲା କ'ଣ ପଚାରିଲେ ସବୁ,
"ଅରଜୁନ ନେଲା ସୁଭଦ୍ରା ହରି !
ଦାରୁକକୁ ନେଇ ରଥ ଖୁଣ୍ଟେ ବାନ୍ଧି
ରଥ ଚଳାଉଛି ଗାଣ୍ଡୀବ ଧରି ।"
ଦାରୁକ କହିଲା ମୁହଁଟି ଶୁଖାଇ
"ପ୍ରଭୁର ଭଉଣୀ ପ୍ରଭୁର ରଥ,
କିପରି ମୁଁ ରଥ ଚଳାଇବି କହ
ଉଚିତ ହେବ କି କହ ହେ ପାର୍ଥ !"

ଅର୍ଜୁନ କହିଲେ "କିଛି ଚିନ୍ତା ନାହିଁ"
ଆସିଲେ ଓଠାର ଭଦ୍ରା ଉଚ୍ଛସି,
ଦାରୁକଙ୍କୁ ରଥ ଖୁଣ୍ଟରେ ବାନ୍ଧିଲେ
ହାତ ଗୋଡ଼ ସବୁ ଏକାଠି କରି ।
ଶୁଣିଲେ ଘୋଷଣା ହଳଧର ରାଗି
ଓଠକୁ କାମୁଡ଼ି ଉଠିଲେ ଥରି,
କହିଲେ "ସାତ୍ୟକି, ପ୍ରଦ୍ୟୁମ୍ନ, ଆନନ୍ଦ
ସକଳେ ଧାଆଁରେ କାର୍ମୁକ ଧରି ।
ନିମକହାରାମ ଜାରଜ ପାଣ୍ଡବ
କୁକୁଆଁ ବେଶରେ ପାଇଲା ସ୍ଥାନ,
ଖାଇପିଇ ରହି ମୋ ଭଉଣୀ ହରି
ଶେଷେ ମୋ କୁଳର ସାରିଲା ମାନ ।
ବାନ୍ଧିଆଣ ତାକୁ କିବା ମାରିପକା
ଏଥିରେ କିଛିଏ କରନା ହେଳା,
ନ ହେଲେ ତ ତୁମେ ଜାଣି ଶୁଣି କରି
ବୁଡ଼ାଇବ ତୁମ କୁଳର ଭେଳା ।
କାହିଁ ଗଲା କୃଷ୍ଣ ଡାକ ତାକୁ ଏଠି
ଦେଉ ସେ ଜବାବ ମୋହର ପାଖେ,
ଖାସା ବନ୍ଧୁଟିଏ ଖୋଜି ଲୋଡ଼ି କରି
ଧରିଆଣିଥିଲା ବଣରୁ ସାଥେ ।"
ଯାଦବ ଯେତେକ ଧାଇଁଲେ ରାଗରେ
ଦେଖିଲେ ଆଗରେ ଶ୍ରୀକୃଷ୍ଣ ରଥ,
ନାରିଏ କାତରେ ବୋବାଳି ଗୁଡ଼ନ୍ତି
ଚୂର୍ଣ୍ଣ ହୋଇ ସବୁ ଆଗୁଳି ପଥ ।
ରଥୋପରେ ଭଦ୍ରା ଆଉ ଫାଲଗୁନୀ
ମଦନ ପାଖରେ ଯେସନ ରତି,
କିବା କୃଷ୍ଣ ପାଶେ ସହାଜତ ଜେମା
ବିଦର୍ଭନନ୍ଦିନୀ ରୁକ୍ମିଣୀ ସତୀ !

ଯାଦବ ସଇନ ଧାଇଁଥିଲ ଆଗେ
ଦୂରରୁ ଦେଖିଲ ଅପୂର୍ବ ଶିକ୍ଷା,
ଶର ଛାଡ଼ିବା ହେଲ ନାହିଁ ଆଉ
ହୃଦୟ ଉଠିଲ ଭୟରେ ଥରି ।
ଭାବିଲେ ଶ୍ରୀକୃଷ୍ଣ ସତ୍ୟଭାମା ଏଇ
ସୁଭଦ୍ରା ଅର୍ଜୁନ ନୁହନ୍ତି କେବେ,
ନନ୍ଦିଘୋଷ ରଥ, ଦାରୁକ ସାରଥି
ସୁଦର୍ଶନ ଚକ୍ର କାହିଁକି ତେବେ !
ଗୃହିଁଦେଲେ ପୁଣି ପାଖରେ ତାଙ୍କର
ସତ୍ୟଭାମା ସହ ଶ୍ରୀକୃଷ୍ଣ ନିଜେ,
ମୁଗ୍ଧ ନୟନରେ ଦୁଇ ଜଣଯାକ
କେତେବେଳେ କରଅଛନ୍ତି ବିଜେ ।
ଘୁଂଚିଲ ସନ୍ଦେହ ଅର୍ପିଲେ ଧନୁ
ଛାଡ଼ିଲେ ଶର ଅର୍ଜୁନ ପରେ,
ଶର ଯାଉ ନାହିଁ ଯାଇ ପାରୁ ନାହିଁ
ଭାଂଗିପଡ଼େ ସବୁ ଅଧବାଟରେ ।
ଅର୍ଜୁନଙ୍କ ଶର ମାରେନା କାହାକୁ
ବିପକ୍ଷର ଶର କାଟଇ ପିଏ,
ସେ ଯଦି ମାରନ୍ତେ କଏବା ରଖନ୍ତା
ତାଙ୍କ ଶର ଖାଇ ବଞ୍ଚନ୍ତା କଏ ?
ପାଖକରେ ବନ୍ଧୁ ଯାଦବ ଏକାଠି
ଆଉ ପାଖରେ ତ ଅର୍ଜୁନ ଏକା,
ଏପରି ସମର ଲକ୍ଷେ ଯୋଦ୍ଧା ସହ
ଜଣେ କରେ ଏକା ନ ଥିଲ ଦେଖା ।
ଶେଷେ ସାତ୍ୟକିର ଖର ଶରଘାତେ
ଅର୍ଜୁନ ଶୋଇଲେ ହାରିଲେ ଚେତା,
କୃଷ୍ଣଙ୍କ ବଦନ ବିସ୍ମୟ ମଳିନ
ସତ୍ୟଭାମା ମୁହିଁ ପଡ଼ିଲ ଶେତା ।

ସୁଭଦ୍ରା ଏଥର ଧଇଲେ ଗାଣ୍ଡୀବ
ମୁଂଚଲେ ମାର୍ଗଣ ବିପକ୍ଷ ଲକ୍ଷ୍ୟି,
ଯାଦବ ଭିତରୁ କେହ୍ବ ହେଲେ ଜଣେ
ଧନୁ ଧରି ପାରିଲେନି ସଲକ୍ଷି ।
ସାରଥି ବନ୍ଧନ ରଥୀ ଅଚେତନ
ସୁଭଦ୍ରାର କରୁଁ ଶର ମୋଚନ,
ହଳୀ ବିମରଷ ଶ୍ରୀକୃଷ୍ଣ ହରଷ
ସତ୍ୟଭାମା ଛଳ ଛଳ ନୟନ ।
ବୀରବରମାନେ ଟେକି ପାରନ୍ତିନି
ଯେ ଧନୁ, ସୁଭଦ୍ରା ଧଇଲା କରେ,
ଅବଳା ବନ୍ଧିଲା ଅପାଳଟ ଶର
ଶ୍ରୀକୃଷ୍ଣଙ୍କ ଶିକ୍ଷା ପ୍ରକାର ବଳେ ।
ଯାହାର କୃପାରୁ ପଙ୍ଗୁ ଲଙ୍ଘେ ଗିରି
ଅବଳା ଦେଖଇ ବିଶ୍ୱମୂରତି,
ସେହି କୃଷ୍ଣଙ୍କର ଅନୁଗ୍ରହ ହେଲେ
କିଏ ନ ପାଇବ ଏହି ଶକତି !
ଶ୍ରୀକୃଷ୍ଣ କହିଲେ ରାମଙ୍କୁ ଅନାଇଁ
"ବୀରରେ ବୀରରେ ନୁହେ ଏ ରଣ,
ଗୋଟିଏ କେଶରୀ ବାନ୍ଧି ନେବା ପାଇଁ
ପଠାଇଲେ କିଆଁ ଶୃଗାଳଗଣ ?
ନୁହଇ ତ ରଣ ପ୍ରଚଣ୍ଡ ହିଂସା ଏ
ରମଣୀ ଧଇଲା ତେଣୁ ତ ଶର,
ରଖିଲା ମହତ ଯାଦବ ବଂଶର
ଆଜି ହେ ଅଗ୍ରଜ ଭଦ୍ରା ତୁମର ।
ଯୋଗ୍ୟେ ଯୋଗ୍ୟା ଆଜି ହୋଇଲା ମିଳନ
ଦିଅ ଗୋ ସୁଭଦ୍ରେ ପୁଷ୍ପ ବରଷି,
ଚୋର ମସ୍ତକରୁ ବାଛି କାଢ଼ି ଆଣି
ଯାଉ ସେ ଭାଇଙ୍କ ପଦ ପରଶି ।"

ସୁଭଦ୍ରା କରନ୍ତି ସଙ୍ଗେ ସଙ୍ଗେ ତାହା
ଶରମୁନେ ଫୁଲ ଦେଲା ବସାଇ,
ଉଣୁଆସ କର ବରଜନ୍ତି ଶର
ଗ୍ରାମ ପଦପ୍ରାନ୍ତେ ପଡ଼ିଲା ଯାଇଁ ।
ଭୋଳା ବଳରାମ ଆନନ୍ଦରେ ଭୋଳ
ଗାଇଲେ ଉଚ୍ଚରେ "ଭଦ୍ରାର ଜୟ,
ଅର୍ଜୁନର ଜୟ ଶ୍ରୀକୃଷ୍ଣର ଜୟ
ଜୟ କାଦମ୍ବରୀ ପାର୍ଥୀର ଜୟ ।"
ଜନତା ଗାଇଲା ଯାଦବର ଜୟ
ପାଣ୍ଡବର ଜୟ ଧର୍ମର ଜୟ,
ଦୁର୍ଯ୍ୟୋଧନ ଶୁଣି ଘନ ଘନ ଜୟ
ମରମେ ତାହାର ପଶିଲା ଭୟ ।
ଆଜ ଶୁଭଦିନେ କୃଷ୍ଣ ଭବିଷ୍ୟତ
ଚିନ୍ତା ଫଳବତୀ ହେଲା କଂଶତ,
ଯାଦବ ପାଣ୍ଡବ ରକତ ଏଇଠି
କଂଶତ ବିବାଦେ ହେଲା ମିଳିତ ।
ଏ ମିଳନ ଫଳ ହେବ ଅଭିମନ୍ୟୁ
ସପ୍ତରଥୀ ଜିଣି କଣିବ ଯଶ,
ଏହାର ନିଧନେ ସବୁ ଅଧରମ
ସଙ୍ଗେ ଯିବପିବ ଦୁଷ୍ଟଙ୍କ ବଂଶ ।
ଧରମ ଉଠିବ ଝାଡ଼ିଝୁଡ଼ି ହୋଇ
ଏତେ ଦିନ ହୋଇଥିଲା ମଳିନ,
ଭାରତ ହୋଇବ ଧରଣୀର ତୀର୍ଥ
ଫୁଟିଯିବ ଏଠି ଧର୍ମ-ନଳିନ ।
ଅର୍ଜୁନ ଅଦୃଷ୍ଟ ହୋଇଲା ଉଜ୍ଜ୍ୱଳ
କୃଷ୍ଣଙ୍କ ଅଦୃଷ୍ଟ ରହିଛି ଲୁଚି,
ମହାଭାରତରେ ହୋଇଯିବ ସ୍ପଷ୍ଟ
ଅନ୍ଧାର ବସିବ ଦୂରରେ ଘୁଞ୍ଚି ।

ତାଙ୍କ ଅଦୃଷ୍ଟ ତ                 ଜଣକର ନୁହେ
ବଶ୍ୱବ୍ରହ୍ମାଣ୍ଡର ପଶ ତ ସିଏ,
ଏତକ କାମରେ                 ଏଡ଼େ ତରତର
ସେ ଅଦୃଷ୍ଟ ପୁଣି ଦେଖିବ କଏ ?

———

# ଶୁଭାଙ୍ଗୀ ସ୍ୱୟମ୍ବର

ରୁକ୍ମିଣୀ ଅଗ୍ରଜ ରୁକ୍ମଣ ବା ରୁକ୍ମ
ମହା ଧନୁର୍ଦ୍ଧର କୃଷ୍ଣଙ୍କ ପରି,
ଇନ୍ଦ୍ର ହରିହର ପରି ତା ବିକ୍ରମ
ପାରଇ ସମରେ କାର୍ମୁକ ଧରି ।
ରୁକ୍ମିଣୀ ବିବାହେ କୃଷ୍ଣଙ୍କ ବିରୁଦ୍ଧେ
କରିଥିଲା ରଣ ସାହସ କରି,
କୃଷ୍ଣ ବାନ୍ଧିଥିଲେ ରଥଖୁଣ୍ଟେ ତାକୁ
ମୁକୁଳାଇଥିଲେ ରୁକ୍ମିଣୀ ଧରି ।
କୃଷ୍ଣଙ୍କ ଉପରେ ଘୋର ରାଗ ତାର
କୃଷ୍ଣଙ୍କ ବିରୁଦ୍ଧେ ବାନ୍ଧଇ ମେଣ୍ଟ,
ଶାଲ୍ୱ ଦନ୍ତବକ୍ର ଜରାସନ୍ଧ ସହ
ସବୁବେଳେ ତାର ଗୋପନେ ଭେଟ ।
ଶିଶୁପାଳ ପୁଣି ତାର ଅନ୍ତରଙ୍ଗ
ସବୁବେଳେ ପାଞ୍ଚେ ଶ୍ରୀକୃଷ୍ଣ ମନ୍ଦ,
ତା ଝିଅ ଶୁଭାଙ୍ଗୀ ଅଙ୍ଗେ ଅଙ୍ଗେ ଶୁଭ-
ସଙ୍କେତ ବିରାଜେ ତା ପାଇଁ ହନ୍ଦ ।
କଲା ସ୍ୱୟମ୍ବର ଡକାଇ ଆଣିଲା
ରାଜ୍ୟେ ରାଜ୍ୟେ ଯେତେ ରାଜତନୟ,
କୃଷ୍ଣଙ୍କ ଉପରୁ ରାଗ ଯାଇ ନାହିଁ
କିନ୍ତୁ ତା ଅନ୍ତରେ ସନ୍ତତ ଭୟ ।

କୃଷ୍ଣ ବଡ଼ ପୁଅ ନାମଟି ପ୍ରଦ୍ୟୁମ୍ନ
ରୂପବଭବରେ ନଜେ ମଦନ,
ମତ୍ତଭ୍ରମ ସିଏ ଯୁବତୀ-ରଞ୍ଜନ
ଫୁଲରେ ତିଆରି ତା ଶରାସନ ।
କଅଁଳ ସିନା ସେ ହାତକୁ ଆଖିକୁ
ଅନ୍ତର ପାଇଁ ସେ କୁଳିଶ ଠାଣି,
ତାଆର ନାଆଁ ଟି ସେଇଥି ପାଇଁକି
ଦିଆ ହୋଇଅଛି କୁସୁମ-ବାଣ ।
ବନ୍ଧଇ ଆଖିକୁ ଫୁଟାଏ ଗୁଣ୍ଡିକୁ
ଲେଉଟି ବାହୁଡ଼ି ଆସଇ ନାହିଁ,
ଯାହାକୁ ମାରଇ ମାରେ ନାହିଁ ସିନା
ମରଣ ବାଟକୁ ବସାଏ ଗୃହିଁ ।
ତରୁଣ ଗୁଣ୍ଡିକୁ ବନ୍ଧଇ ହେ ବେଶି
ଖୋଜ ଲୋଡ଼ କର ଯୋଉଠି ପାଏ,
ଉହୁଃ ଉହୁଃ କହି ଛଟପଟ ହୋଇ
ଭୂଇଁରେ ପଡ଼ ସେ କୁନ୍ଥାଉଥାଏ ।
ରୂପ ଗୁଣ ତାର ମନ ମତାଣିଆ
ତାର ଖେଳାଖିଳା ତରୁଣ ମର୍ମେ,
ତାହାର ଲକ୍ଷଣ ସବୁରି ଦେହକୁ
ହିମ ହିମାଳୟେ ବୁଡ଼ାଏ ଘର୍ମେ ।
ମୀନ ବାମଙ୍କର ତା କେତନେ ଶୋହେ
ଫର ଫର ଉଡ଼ୁଥାଏ ସତତ,
ପବନ ଥାଉ ବା ନ ଥାଉ ଜଗତେ
ଉଡ଼ିବାରୁ ହୁଏ ନାହିଁ ବିରତ ।
ତାର ଯଉବନ ମଉଳଇ ନାହିଁ
ସବୁବେଳେ ସିଏ ସଜ ସତେଜ,
ଧୂଳି ତା ଦେହରେ ପଡ଼ି ଯାଉ ଯାଉ
ପାଲଟି ହୁଅଇ କର୍ପୂର ରଜ ।

ନିଶ୍ୱାସ ବାସଇ ଉଶ୍ୱାସ ବାସଇ
ମଳୟ ପବନ ତା ସହଚର,
ଗଗନ ଭୁବନ ସବୁଠି ପଶଇ
ପ୍ରକୃତରେ ସିଏ ସ୍ୱଚ୍ଛନ୍ଦ ଚର ।
ବାଢ ସାପ ତାର ବନ୍ଧୁର ନ ଥାଏ
ସବୁରି ଅନ୍ତରେ ପଶଇ ଯାଇ,
କେହି ତାକୁ କେବେ ପର ମଣେ ନାହିଁ
ସକଳେ ତାକୁ ହିଁ ବସନ୍ତ ଗୃହିଁ ।
ତାହାର ଜୀବିକା ପ୍ରେମମନ୍ତ୍ର ଫୁଙ୍କା
କାନ ମରମରେ ଢଅଇ ପଡ଼ି,
ମନ ଦଉଡ଼ଇ ଚଉଦ ଭୁବନ
ସଲିଳ ଅନିଳ ଅନଳେ ଚଢ଼ି ।
ଏ ରୂପ ଗୁଣକୁ କିଏ ମୂରୁଚ୍ଛିବ
ରୁକ୍ମଣ ଦୁହିତା ବସିଲ ଗୃହିଁ,
ହୃଦୟ ଫିଟାଇ ଦ୍ୱାର ମୁକୁଳାଇ
ଭିତରେ ବସି ବା ବାହାରେ ଯାଇଁ ।
ଆଉ ରଜାପୁଏ ଯେ ଥିଲେ ସେଠେଇ
କନ୍ୟାର ରୂପକୁ ଅମିୟ ମଣି,
ଯେ ଯା'ର ଆସନେ ଥୟ ହେଲେ ନାହିଁ
ରହିଲେ ସେ ଶୁଭ ମୁହୂର୍ତ୍ତ ଗଣି ।
କେତେବେଳେ ବାଳା ଧରି ଫୁଲମାଳା
ଆସିବ ସଭାକୁ ବରିବା ପାଇଁ,
ତାକୁ ହିଁ ବରିବ ମାଳା ପିନ୍ଧାଇବ
ଆଉ ସବୁ ଥିବେ ବିଷାଦେ ରୁହିଁ ।
ଶୁଭିଲା ଶବଦ ରଥ ଘର ଘର
ଦିଶିଲା କେତନେ ମକର ଚିହ୍ନ,
ଉଲୁକା ପରିକା ଖସିପଡ଼ିଲା ସେ
ଗଗନ ପବନ କରିଣ ଭିନ୍ନ ।

ଗୃହିଁଲା ଗଗନେ ଶୁଭଙ୍କୀ ନରେଖି
କେତନରେ ଅଛି ମକରଟିଏ,
ମକର ତ ନୁହେ ମକରଧ୍ୱଜ ସେ
ତାହାର ଅନ୍ତର ବାନ୍ଧିଲା ସିଏ ।
କେତନରେ ଯାର ଏସନ ଶକତ
ନିଜେ ସେ କଣବ ନାହିଁ ବା କସ,
ତାର ଦରଶନେ ତାର ପରଶନେ
ଅମିୟ ପାଲଟି ହୋଇବ ବିଷ ।
ଆଜ ସେ ଗୃହାନ୍ତା ଅନ୍ୟ ରଜାକୁଟି ?
ସମସ୍ତଙ୍କୁ କରିଦେଲା ସେ ତୁଚ୍ଛ !
ରହିଲା ଗମ୍ଭୀରେ ସୁଯୋଗକୁ ଗୃହିଁ
କହି ପାରିଲାନି କାହାକୁ କଛି ।
ଆହୁରି ଭାବିଲା ସ୍ୱୟମ୍ବର ଇଏ
ଯାହାକୁ ମୋ ଇଚ୍ଛା ବରିବ ତାକୁ,
ମିଛରେ କାହିଁକି ମୋ ଅନ୍ତର କଥା
ଜଣାଇ ଦେବି ମୁଁ ଆଜ କାହାକୁ ।
ସମାଜେ ନାରୀର ଏତିକି ମାତର
ଅଛି ଅଧିକାର ଛାଡ଼ିବ ନାହିଁ,
ପ୍ରଦ୍ୟୁମ୍ନ ଗଳାରେ ମାଳା ଲମ୍ବାଇବ
ଆଜ ଯିଏ ସବୁ ଥାଆନ୍ତୁ ଗୃହିଁ ।
ଅସିଲା ବାହାରି ଥିରି ପାଦ ଗୃଳ
ପ୍ରଦ୍ୟୁମ୍ନ ଗଳାରେ ଦେଲା ସେ ମାଳା,
ଅନ୍ତଃପୁର ତୋରଣ ଉଚ୍ଛୁଳ ପଡ଼ିଲା
ହୁଳହୁଳି ଦେଲେ ଯେତେକ ବାଳା ।
ରଜା ରଜାପୁଏ ଜଳିଲେ ରାଗରେ
ପ୍ରଦ୍ୟୁମ୍ନେ ଘେରିଲେ ସକଳେ ଯାଇ,
ମାରି ଧରି କରି କବା ହାତେଣି ମାରି
କନ୍ୟା ତା ପାଖରୁ ନେବେ ଛଡ଼ାଇ ।

ଫୁଲ ଶର ଶର ବନ୍ଧଲା ମନ୍ତ୍ର
ଯୁବତୀ ଦେଖାଇ କରଲା ମୂର୍ଚ୍ଛା,
ସମସ୍ତେ କହିଲେ ଖାଲି ଉହୁଃ ଆହାଃ
ଘୋଷିଲେ ଛଛରେ ପ୍ରଦ୍ୟୁମ୍ନ କୁତ୍ସା ।
ପିଉସୀ ଯାହାର ବାପ ପାଇଁ ଝୁର
ହୋଇଥିଲା ଭଲ ଯାଖେ ଦୋହିଣୀ,
ଝିଆରୀ ତାହାର ପୁଅକୁ ଆଦର
ହୋଇ ପାରଲାନ ବାପତୋଷିଣୀ ।
କ ବଚନ କଥା ସମାଜେ ସଂସାରେ
ଶଳା ଭଣେଇରେ ଥିଲା କଳହ,
ଏଇନା ସେ ଯୁଗ ବଦଳ ଯାଇଛୁ
ତାଙ୍କର ଭିତରେ ସକଳ ସ୍ନେହ ।
ଏ ମିଳନେ କ'ଣ କୃଷ୍ଣଙ୍କ ଅଦୃଷ୍ଟ
ନାହିଁ କୋଉଠେଇ ଟିକଏ ଲୁଚ ?
ଊଷା ପରଣୟେ ବାଣାସୁର ରଣେ
ସେ ଅଦୃଷ୍ଟ ଗୁଣ ଯିବଟି ଢଣି ।
ଲେଖକ ଅଦୃଷ୍ଟ ଉଦ୍ଧବ ଅନ୍ଧାରେ
କୃଷ୍ଣ ନ ଦେଖିବା ଯାଏଁ ଆଗରେ,
ସେ ବେଳ ତ ଆସି ନକଟ ହେଲଣି
ଦନେ ହେଲେ ପଡ଼ଯିବେ ବାଗରେ ।

———

# ବାଣ ଦମନ

ବଳି ବୋଲି ଯିଏ ପାତାଳେ ଏଇନା
ସେଇ ଥିଲା ଦିନେ ଧରଣୀ ରଜା,
ଦାନ ଧ୍ୟାନ କରି କଲା ସେ ଗରବ
ସହିଲା ନାହିଁ ତା ଦେବ କଳଜା ।
ନିଜେ ଭଗବାନ ବାମନ ରୂପରେ
ମାଗିଥିଲେ ଭୂଇଁ ତିନିଟି ପାଦ,
ସେଇ ତିନି ପାଦ ଦେଇ ପାରିଲାନି
ପଡ଼ିଗଲା ତାର ବଡ଼ ପ୍ରମାଦ ।
ମୁଣ୍ଡ ପାତିଦେଲା ବାମନ ଚପିଲେ
ପାତାଳରେ ତାକୁ ଥୋଇଲେ ନେଇ,
ସତ୍ୟ କରିଥିଲେ କଳପ ଅନ୍ତରେ
ସରଗକୁ ନେବେ ଇନ୍ଦ୍ରତ୍ୱ ଦେଇ ।
କିନ୍ତୁ ସହୁ ନାହିଁ ଦୁଃଖ ଯାଉ ନାହିଁ
ଅତଳ ଗରଭେ ଅଛି ସେ ପଡ଼ି,
ପବନ ନଅଣ୍ଟ ଆଲୁଅ ନଅଣ୍ଟ
ପାଣିରେ ବୁଡ଼ି ସେ ପାରୁଛି ରଡ଼ି ।
ଏତେ ଦୁଃଖ ସିଏ ସହନ୍ତା କାହିଁକି
ଶୁକ୍ରଙ୍କ କଥା ସେ ମାନିଲା ନାହିଁ,
ଶୁକ୍ର ହେଲେ କଣା ତାର ବୁଦ୍ଧି ବଣା
ଦାନ ଦେବାକୁ ସେ ଆସିଲା ଧାଇଁ ।

ଦାନ ତାର ନିଶା  ନୁହେ ତ ଧରମ
ସେଇଥିରେ ଖାଲି ତାହାର ମନ,
ମାତାଲ ହୋଇଲା  ହୀନମାନ ହେଲା
ଶେଷରେ ଦଳିଲା ଗୁର ବାମନ ।
ଏଇ ବଳିଙ୍କର  ଧୃତରାଷ୍ଟ୍ର ପରି
ଶହେଟା ତନୟ ସକଳେ ମନ୍ଦ,
ସବା ବଡ଼ ପୁଅ  ବାଣ ତାର ନାମ
ହଜାରଟା ହାତ ଖୋଜଇ ଦ୍ୱନ୍ଦ୍ୱ ।
ଦୁର୍ଯ୍ୟୋଧନ ଏଣେ  ତାର ଅନୁରୂପ
କେହି କାହାଠାରୁ ନୁହଇ ଊଣା,
ଦୁହିଁଙ୍କ ମନରେ  କେତେବେଳେ ହେଲେ
ଦେଖାଯାଏ ନାହିଁ ତିଳେ କରୁଣା ।
ବାଣ ଶିବଙ୍କର  ପରମ ଭକତ
ବିଷ୍ଣୁଙ୍କର ଗୁଣ ପାରେନା ସହି,
ସହସ୍ର ଭୁଜରେ  ଦଳିଲା ସଭିଙ୍କୁ
ସୁସ୍ଥ ହୋଇ  ରହିପାରେନା ମହୀ ।
ଯୁଆଡ଼େ ଦୁର୍ଯ୍ୟୋଧନ  ତାହାର ପରିକା
ଶ୍ରୀକୃଷ୍ଣଙ୍କୁ କେବେ ମାନଇ ନାହିଁ,
ମନରେ ତାହାର  ଭୀଷଣ ଅହନ୍ତା
ବସିରହିଛି ତାଙ୍କୁ ବାନ୍ଧିବା ପାଇଁ ।
ଏଇନା ପଡ଼ିଲା  ବାଣ ପାଳି ଆସି
ହରିହରଙ୍କର ଲଗିବ କଳି,
ଶ୍ରୀକୃଷ୍ଣ ହାଣିବେ  ତା ହଜାର ହାତ
ତାର ଅହଙ୍କାର ହୋଇବ ଦଳି ।
କଳିର ନିମିତ୍ତ  ହେବ ତାର ଝିଅ
ଊଷା ତାର ନାଆଁ ଊଷାଟି ପରି,
ଚନ୍ଦ ପରି ରୂପ  କଅଁଳ ହୃଦୟ
ପ୍ରେମରେ ଉଚ୍ଛୁଳା ଅନ୍ତର ଧରି ।

ଦେହେ ଅରୁଣିମା ରୂପରେ ଲବଣ୍ୟ
ମୁହଁରେ ମହିମା ଝଳକୁଥାଏ,
କୃଷ୍ଣଙ୍କ ରୂପକୁ ତାଙ୍କର ଗୁଣକୁ
ତାଙ୍କର ବଂଶକୁ ସେ ଭଲ ପାଏ ।
ଯୁବକ ହୋଇଲା ସାଥିଏ ଖୋଜିଲା
ଲୁଚିଇ ଗୋପନ ଖୋଜଇ ନିତ,
ସେଥିପାଇଁ କନ୍ଦୁ ବାପକୁ କେବଳ
ବାଘ ସାପ ପରି ତାହାର ଭୀତ ।
ପ୍ରଦ୍ୟୁମ୍ନ ଔରସେ ଶୁଭାଙ୍ଗୀ ଗରଭେ
ଅନିରୁଦ୍ଧ ବୋଲି ତନୟ ହିଏ,
ସପନେ ତା ଗତି ସପନରେ ସ୍ଥିତି
ତାର ଗତିପଥ ରୋଧିବ କିଏ ?
ତେଣୁ ତା ନାଆଁଟି ସିନା ଅନିରୁଦ୍ଧ
ସପନ-ବିଳାସୀ ଭାରି ସୁନ୍ଦର,
ବାପର ଲକ୍ଷଣ ସବୁ ତା ଦେହରେ
ସପନେ ସପନେ କରେ ହୃଦର ।
ଉଷାର ସୁଷମା ଶୁଣିଲା କାନରେ
ସପନେ ତା ସଙ୍ଗେ କଲା ପିରତି,
ଉଷାର ଅନ୍ତର ମୋହିତ କଲା ସେ
ସପନେ ଆସି ସେ କରଇ ରତି ।
ହୋଇଲା ପ୍ରକଟ କରିଲେ ଆଟକ
ଅନିରୁଦ୍ଧ ଆଉ ପାରେନା ଯାଇ,
ଉଷା ମେଡ଼ିଟିରେ ଆଟକେ ରହିଲା
ଅନିରୁଦ୍ଧ ପାଇଁ ସନ୍ତତ ଗୃହିଁ ।
କନ୍ଦୁ ଚିହ୍ନେ ନାହିଁ କିଏ ସେ ତରୁଣ
କାହାର ତନୟ କାହାର ନାତି,
ସେଇଥି ପାଇଁକି ବରହରେ ମରେ
ସହିପାରେ ନାହିଁ ମଦନ-ତାତି ।

ଶୁଖି ଶୁଖି କରି କଳା କାଠ ହେଲା
ଚିତ୍ରରେଖା ସଖୀ ଜାଣିଲା ତାହା,
ସେଇ ଖାଲି ଚାରି ମରମ ବେଦନା
ଜାଣିକରି ଟିକେ କହଇ "ଆହାଃ" ।
ଖୋଲି ଡାଡ଼ି କରି ପଚାରିଲା ସବୁ
ଊଷା କହିଦେଲା ହୃଦୟ ଫେଡ଼ି,
ଚିତ୍ରଲେଖା ଶୁଣି ପେଡ଼ିଏ ଫିଟାଇ
ଚିତ୍ରଟିଏ ଦେଲା ଆଗରେ ବାଡ଼ି ।
ଦେଖିଲା ଚିତ୍ରକୁ ଚହ୍ଲିଦେଲା ଊଷା
ଅନିରୁଦ୍ଧ ବୋଲି ଜାଣିଲା ସଖୀ,
କହିଲା, "ସଜନି ! ଏଇଥି ପାଇଁକି
ସଜ କଞ୍ଜମୁଖ ଯାଇଛି ଶୁଖି ?"
ଆଜ ଭେଟାଇବି ଏ ଯୁବାକୁ ଆଣି
ଦୁଆର କବାଟ ଫିଟିବ ନାହିଁ,
ପଶିବ ମନ୍ଦରେ ରମିବ ଗୋ ସୁଖେ
ରାତ୍ର ଆସିବାକୁ ବସିଥା ଚାହିଁ ।"
ସତ୍ୟ କରିଥିଲା ରାତ୍ରେ ଆଣିଦେଲା
ଊଷା ଅନିରୁଦ୍ଧ ମିଳନ ହେଲା,
ହାସ କଉତୁକେ ବିଳାସ ବିନୋଦେ
ଊଷା କେତେ ଦିନ କଟାଇଦେଲା ।
ହୋଇଲା ପ୍ରଘଟ ପ୍ରବାଦ ଉକ୍ରଟ
ବାଣାସୁର ଜଗି କରିଲା ବନ୍ଦୀ,
ଲୁହା ଶିକୁଳିରେ ହାତଗୋଡ଼ ସବୁ
ନିରଦୟଭାବେ ରଖିଲା ଛନ୍ଦି ।
ଅନିରୁଦ୍ଧ ଯିଏ ହେଲା ଅବରୁଦ୍ଧ
ହାତଗୋଡ଼ ନିଜେ ଦେଲା ବନ୍ଧାଇ,
ସପନରେ ପଶି ସତ୍ୟକୁ ଖୋଜିଲା
ମାୟା ମରୀଚିକା ଦେଲା କନ୍ଦାଇ ।

ଜାଲରେ କ କେବେ ପାଣି ବାନ୍ଧି ହୁଏ
ଜାଲ ରହିଥିବ ଗଳିବ ପାଣି,
ଟିକଏ ଧଇର୍ଯ୍ୟ ଧରି ରହିଥାଅ
ଶ୍ରୀକୃଷ୍ଣ ଟିକଏ ପାରନ୍ତୁ ଜାଣି ।
ସ୍ୟାଢ଼େ ଦ୍ୱାରକାରେ ଖୋଜିଲେ ପୁଅକୁ
ନ ପାଇ ସକଳେ କାନ୍ଦିଲେ ଚାଳି,
ଦ୍ୱାରକା ନଗରୀ ହସ କଉତୁକ
ଆମୋଦ ପ୍ରମୋଦ ଗଲାଟି ଗୃଳି ।
ନାରଦ ଆସିଲେ ସରଗୁଁ ଓହ୍ଲାଇ
କହିଲେ ଦ୍ୱାରକା ସଭାରେ ପଶି,
"କଅଣ କରୁଛ ସବୁ ଏଠି ବସି
ଅନିରୁଦ୍ଧେ ବାଣା ଦେଉଛି ଧ୍ୱଂସି ।
ପୁଅ ତ ଏଇନା କାନ୍ଦୁଛି କାରାରେ
ହାତଗୋଡ଼ ତାର ଦେଇଛି ଛନ୍ଦି,
ଲୁହାର କବାଟ ଲୁହାର କଳଣୀ
ଦେଇ ଲୁହାଘରେ କରିଛି ବନ୍ଦୀ ।
ଧାଆଁ ଧାଆଁ ବେଗେ ମୁକୁଳା ପୁଅକୁ
ନ ହେଲେ ଏଇନା ଦେବ ସେ ହାଣି ।
ଧାଆଁ ଚକ୍ରଧର ଧାଆଁ ହଳଧର
ଧାଆଁ ହେ ଯାଦବ ଆୟୁଧ ଘେନ ।"
ଧାଇଁଲେ ସକଳେ ତରତର ହୋଇ
ବସନ ଭୂଷଣ ପଡ଼ୁଛି ଫିଟି,
ସବୁରି ମନରେ ଦାରୁଣ ଆଶଂକା
କାଳେ ପୁଅ ମୁଣ୍ଡ କାଟି ଦେବଟି !
ଯାଦବେ ଦାନବେ ହେଲା ରଣଗୋଳ
ଶେଷେ ମହାଦେବ ଆସିଲେ ଧାଇଁ,
ପାଶୁପତ ଶର ପିନାକ କାର୍ମୁକ
ଧଇଲେ ସେ ପ୍ରିୟ ଭକତ ପାଇଁ ।

ହର-ହରଙ୍କର ସମର ପ୍ରଚଣ୍ଡ
କାର୍ତ୍ତିକେ ପ୍ରଦ୍ୟୁମ୍ନେ ସମର ଘୋର,
ବାଣ ହରାଇଲା ତା ସହସ୍ର କର
ତା ମୁଖ ରଜନୀ ହୋଇଲା ଘୋର ।
ଶ୍ରୀକୃଷ୍ଣ ବିନ୍ଧିଲେ ମୋହନା ମାର୍ଗଣ
ହର ହୋଇଗଲେ ସେଥିରେ ମୋହ,
ବାଣକୁ ମାରିବା- ବେଳେ ହର ଉଠି
କୃଷ୍ଣ ହାତ ଧରି କହିଲେ 'ରହ' ।
ଶିବ ଅନୁରୋଧ ଭାଙ୍ଗି ପାରିଲେନି
ବାଣାସୁରେ ଦେଲେ ଜୀବନ ଦାନ,
ସମର-କ୍ଷେତ୍ରରେ ହରି ହେଲେ ବନ୍ଧୁ
ହର ହାରିଯାଇ ହୋଇଲେ ସାନ ।
ଉଷା ଅନିରୁଦ୍ଧ ହେଲେ ବିବାହିତ
ରକତ ସୁଅରେ ପହଁରି କରି,
ସେହି ଶୋଣିତରେ କୁଦାକୁଦି ହୋଇ
ଗଢ଼ି ହେଲା ତହିଁ ଶୋଣିତପୁରୀ ।
ଦାନବ ଯାଦବ ହୋଇଲେ ଏକାଠି
କୃଷ୍ଣ ଭବିଷ୍ୟତ ଚିନ୍ତାକୁ ଅନା,
ଶ୍ରୀକୃଷ୍ଣ ଯାହାକୁ କରିବାକୁ ଯିବେ
କିଏ ସେ କରିବ ତାହାଙ୍କୁ ମନା ।
ଏହି ମିଳନରୁ ଜନମ ହୋଇବ
ବଜ୍ର ବୋଲି କରି ତନୟଟିଏ,
ଯଦୁବଂଶ ଧ୍ୱଂସ ହୋଇଯିବ ଯେବେ
କୁଳର ଅଙ୍କୁର ରହିବ ସିଏ ।
ପୁଣି ତ ମଥୁରା ହେବ ରାଜଧାନୀ
କୃଷ୍ଣଙ୍କର ସେହି କୁଳର ଚିହ୍ନ,
ଭବିଷ୍ୟତ ପାଇଁ ରହିଯିବ ଏକା
ଆଜି ସବୁଯାକ ହୋଇବେ ଲୀନ ।

ଧୀରେ ଧୀରେ ତାଙ୍କ ଉଦ୍‌ବୋଧିତ ଚନ୍ଦ୍ର
ଗୋଟି ଗୋଟି ହୋଇ ଯାଉଛୁ ଘଟି,
ଯୁଗ ସରିଯିବ କୃଷ୍ଣ ଛାଡ଼ିଯିବେ
ପୂରାଣ ରହିବ ତାଙ୍କୁ ହିଁ ରଟି ।
କେତେ କେତେ ଯୁଗ ଅସ୍ତଗତ ହେଲଣି
ତେବେ ବି ଶ୍ରୀକୃଷ୍ଣ ଅଛନ୍ତି ଆଜ,
ଗାଈଜଗା ଧୂଳି ଧୂପଗତ ପଦ
ଦେବେ ସେ ଲେଖକ ଶିରରେ ରଞ୍ଜି ।
ବାଣପୁର ଏବେ ରହିଛି ଚିଲିକା
କୂଳରୁ ଅଳପ ଦୂରରେ ପଡ଼ି,
ନାହିଁ ରାଜପୁର ନାହିଁ ଉଷାମେଡ଼
ସୋଳଶ ଭାଲେଶ ଅଛି ସେପରି ।
ଅଜ ସବୁ କଥା କାଳର କବଳେ
ଧରଣୀ ଦେହରୁ ଯାଉଛନ୍ତି ଚାଲି,
ପଚାରିବ ଯେବେ ସୋଳଶ ଭାଲେଶ
ମାରବରେ ରହିଁ ବସିବେ ଖାଲି ।
ଚିଲିକାର ସ୍ୱଚ୍ଛ ମଳ ଦରପଣେ
କେବେ କେତେବେଳେ ଦେଖାଇ ମୁଖ,
କହିଯିବେ ସବୁ ପୁରୁଣା ବୃତ୍ତାନ୍ତ
ଚିଲିକା କଣ୍ଠରେ ପୂରାଇ ଦୁଃଖ ।

---

# ବଳରାମଙ୍କ ବୃନ୍ଦାବନ ଗମନ

କଂସକୁ ସଂହାରି          କୃଷ୍ଣ ବଳରାମ
    ମଥୁରା ବରଜ ଯାଉଲେ ନାହିଁ,
ଦିନୁ ଦିନ ସେଠି          ଜଞ୍ଜାଳ ବଢ଼ିଲା
    କଅଣ କରିବେ ଦୁଇଟି ଭାଇ ।
ରହୁ ରହୁ ରହୁ          ରହିଲେ ସେଇଠି
    କରମ ରଖିଲା ତାହାଙ୍କୁ ବାନ୍ଧି,
ସ୍ୟାଡ଼େ ବୃନ୍ଦାବନେ          ଗୋପିମା ଯଶୋଦା
    ଦୁଃଖରେ ରହିଲେ ନିରତ କାନ୍ଦି ।
କୋଇଲଟା କାହିଁ          ଗଛରେ ଗାଇଲେ
    ଯଶୋଦା ଆସନ୍ତି ପଦାକୁ ଧାଇଁ,
କାନ୍ଦି କାନ୍ଦି ହୋଇ          ପଚାରନ୍ତି ତୁହିଁ
    "ମୋ କଳା କହ୍ନାଇ ରହିଲା କାହିଁ ?
କି ଯୋଗରେ ପୁଅ          ଗଲା ମଥୁରାକୁ
    ରହିଲା ସିଆଡ଼େ ଆସିଲା ନାହିଁ,
କୋଇଲି ରେ ଥରେ          କହିଲୁ ତୁ ଦେଖି
    କେତେ କାଳ ଆଉ ବସିବି ତୁହିଁ !
କାହିଁକି ରେ କୃଷ୍ଣ          କଲବଲ କଲା
    କନ୍ଦାଇଲା ମୋତେ ବିକଳ କରି,
କଷ୍ଟ କରିଥିଲି          ଚୁରି ଦିନ ପାଇଁ
    ସେ କଷ୍ଟ କି ଏବେ ଯାଉନି ସରି !

କହିଲୁ କୋଇଲି    ତାର କଥା ଝୁରି
    କେତେ କାଳ ଆଉ ସହିବ ଦୁଃଖେ ?
କୃଷ୍ଣ ମୋର ସେଠି    ଭଲରେ ଅଛନ୍ତି
    କବା କହି ପାରୁ ନାହିଁ ସେ ସୁଖେ ?
ଖଳ ଅକ୍ରୂରଟା    ଖବର କହିଲା
    ଖରବେଳଟାରେ ମଥୁରା ଗଲା,
ଖଣ୍ଟାଏ କରେ    କଂସର ଦୂତଟା
    ଖଣ୍ଡି ପୋଡ ତାକୁ ଖଟାଇ ଦେଲା !
ଗଲାବେଳେ କହି-    ଗଲା ଆସିବାକୁ
    ଏବେ କେତେ ଯୁଗ ଗଲାଣି ବହି,
ଗହନ ବନ ତ    ହେଲା ବୃନ୍ଦାବନ
    ଗଣ୍ଠି ଧନ ସ୍ୟାଙ୍ଗେ ଗଲା କି ରହି ?
ଘର ଘୋର ବନ    ହେଲାଣି ରେ ମୋର
    ଘଟଣା ହଟୁନ ଘାଣ୍ଟୁଛି ମନ,
ଘନ ଘନ କରି    ଘନ ଶ୍ୟାମଳିଆ
    ରୂପଟିକୁ ଲୋଡ଼ୁଅଛି ନୟନ ।
ନୂଆ ନୂଆ ନଠ    କରୁଥିଲା କେତେ
    ନିତ ଦେଖୁଥିଲ ତାର ସୁନ୍ଦର,
ନଗୁଠିଆ ଏବେ    ଲାଗିଲା ମୋ ଘର
    ନୟନୁଁ କେବଳ ବହିଲା ଝର ।
ଚନ୍ଦ୍ରିକା ଚୂଳ ତା    ଦିଶୁ ନାହିଁ ଆଉ
    ଚରଣ ନୂପୁର ଶୁଭଇ ନାହିଁ,
ଚୁହିଁ ଚୁହିଁ ତାର    ବାହୁଡ଼ା ବାଟକୁ
    ଅନ୍ଧୁଣୀ ହେଲଣି ପାରୁନ ଚୁହିଁ ।
ଚନ୍ଦନ କର୍ପୂର    ଚକ୍ଷୁରେ ଲେପିଲେ
    ପୋଡ଼ଇ ସେ ବେଣୀ ବଢ଼ଇ ଦାଉ,
ଚନ୍ଦ୍ରମା ବଦନ    ତା ଚକା ନୟନ
    ସତେ କରେ ଦେଖି ପାରିବ ଆଉ !

ଛଳ କରି କ'ଣ          ଛପିଗଲୁ କରେ
    ଛଦଗମ କରି ଆସୁନ ଫେରି ?
ଛାତିକୁ ପଥର          କରିବି ମୁଁ କେତେ
    ଛୁଇ ପରି ତାକୁ ଥିଲ ଟେର କରି !
ଜୀବନ ମୋହର          ଜଳୁଛି ରେ ଖାଲି
    ଜଳୁଛି ତ ଖାଲି ତାକୁ ଅନାଇଁ,
ଜଗତ ମୋହନ          ଜମୃତ ରୂପଟି
    ମନ ତ ମୂରୁଛି ଚାରୁନ କାହିଁ !
ଝାଇଁ ଝରା ବାଜ          ଝାଳ ବହୁଥିବ
    ଝର ଝର ହୋଇ ମୁହଁରୁ ତାର,
ଝୀନ ବସନର          ଞଂଚଳରେ ଝଂଚ
    ଶୁଖାଇପାରିବ ନାହିଁ ମୋ କର ।
ଝୁରି ଝୁରି କରି          ତା କଥା ତା ରୂପ
    ଝୁଡ଼ି ଶୁଖିଶୋଖି ଗଲେଣି ନନ୍ଦ,
ଝୁଡ଼ି ପରି ଝଂଜା          କେତେ ବା ସହିବେ
    ଝୋଲୁ ମାରିଯାଏ କପାଳ ମନ୍ଦ ।
ଅନାଇଁ ଢଅନ୍ତ          ଅନ୍ଧାର ଘରକୁ
    ଅଣ୍ଡାଳି ହୁଅନ୍ତ ଅନ୍ଧଙ୍କ ପରି,
ଅନାଇଁ ଅନାଇଁ          ଅଜ୍ଞାନ ହୁଅନ୍ତ
    ଅଣ ଆପୁଉରେ ରହନ୍ତ ପଡ଼ି ।
ଟାଳଟୁଳ କରି          ରହିଲୁ କୁଆଡ଼େ
    ଟେଳାଇ ଦେଇ ମୋ ଧଇର୍ଯ୍ୟଗଣି,
ଟାଣପଣ ମୋର          ଭାଂଗି ଚୂନାକଲୁ
    ଟଳି ପଡ଼ିବ ମୁଁ ଶୋକରେ ଭସି ।
ଠକ ପରି ମୋତେ          ଠକି ଦେଇଗଲୁ
    ଠିକଣା କରି ତ ନ କହି କଥା,
ଠକ ଠକ ମୋର          ଡେଉଁଛି କଳଜା
    ଠକପଣ ଦେଖି ଘୂରିଏ ମଥା ।

ଡରିଗଲିଣି ମୁଁ   ଉଦ୍ଧବ କଥାକୁ
ଡର ଭୟ ତାର ଟିକଏ ନାହିଁ,
ଡଗ ଡଗ ହୋଇ   ଚାଲିଗଲା ଆଗ
ରଥଟା ଉପରେ ବସିଲା ଯାଇଁ ।
ଢମ କରି କେତେ   କହିଗଲା କଥା
ଢଗ କି ଢମାଳି ନ ଥିଲା ଅର୍ଥ,
ଢାଉଁ ଢାଉଁ ଝାଲି   ବାଜିଲା କାନରେ
ଢଳିଗଲା ମୋର ସବୁ ସାମର୍ଥ୍ୟ ।
ଅକ୍ଷର କେବଳ   ଥିଲା ସେ କଥାରେ
ଅର୍ଥ ତ ତାହାର ପାଇଲି ନାହିଁ,
ଅଣ ଆୟତ୍ତ ମୁଁ   ହେଲି ରେ କୋଇଲି
ଅବୁଝା ଟୁଆର ଢଙ୍ଗକୁ ଚାହିଁ ।
ତରତର ହୋଇ   ରଥରେ ବସିଲା
ପଛକୁ ଚାହିଁନି ମୁହଁ ଫେରାଇ,
ତାର ଗୁଣଗଣ   କହିବି ମୁଁ କେତେ
ତପତ ଲୁହରେ ଆଖି ପୂରାଇ ।
ଥର ଥର ହୋଇ   ଥରିଲା ଛାତିଟା
କଂସ ନେଇଗଲା ଦୂତ ପଠାଇ,
ଥୟ ଧରି ତିଳେ   ରହି ପାରିଲିନି
ଥବିର ପରାୟ ବସିଲି ଚାହିଁ ।
ଦିନେ ମେଲାଇଲା   ଟୁଆ ତୁଣ୍ଡଟାକୁ
ଦୁନିଆଟାଯାକ ଦେଖିଲି ତହିଁ,
ଦାଉଁ ଦାଉଁ ଛାତି   ଚହଲ ଉଠିଲା
ଦମ୍ଭ ଧରି ପାରୁ ନାହିଁ ତା କହୁ ।
ଦରିଦ୍ରନାଥ ମୋ   ନୟନ-ସଙ୍ଖାଳି
ଦିନଟିଏ ପାଇଁ ଆସିଲା ନାହିଁ,
ଧନବନ୍ଧୁ ମୋର   ପୁଅ ହୋଇଥିଲା
ଧାନା ଜନମାକୁ ଦେଉନି ଚାହିଁ ।

ଧନ୍ୟେନେଲା କଂସ 	ଧ୍ୱଂସି ମୋ ଧଇର୍ଯ୍ୟ
ଧୂଳି ମାଟି ହେଲା ମୋର ଉଳପ,
ଧୀରେ ଧୀରେ କାନେ 	ସପନରେ ସମ
ପଶିଲା ତାହାର ଜନମା ଡାକ ।
ନିରମାଖି କରି 	ଗଲୁ ମୋ ନନ୍ଦନ
ନ ଖାଇ ନ ପିଇ ଝୁରଇଚ୍ଛୁ ସିନା,
ନିଦ ମାଡ଼ୁ ନାହିଁ 	ନିଶି ପାହୁ ନାହିଁ
ନ ରୁଚଇ କହୁ ତାହାର ବିନା ।
ପାପ କି କେବେ ରେ 	କରିଥିଲି କୋଉ
ପଛ ଜନମରେ ଏ ପରିଣାମ,
ପାପୀ ପାପ ପରି 	ପାଛୁଡ଼ିଇ ସିଏ
ପେଟପିଲା ହେଲା ପରର ସମ ।
ଫୁଲଇ ହୃଏ ଯେ 	କେତେ ସେ କୋଇଲି
ଫଳିଟିଏ ପରି ଥିଲି ମୁଁ କରି,
ଫୁଟାଇ ମୋ ଆଖି 	ଫୁଟିଲା କେଉଁଠି
ଫୋପାଡ଼ ସେ ମୋତେ ଚଲା ବାହାରି !
ବଂଇଶୀ ବଜାଇ 	ବାର ଗୀତ ଗାଇ
ବଙ୍କାଇ ବଙ୍କାଇ ଅନାଇଁ ଦିଏ,
ବାଆଁରେଇ ହୋଇ 	ବଳେ କୋଳେ ପଶି
ବାଟ ଭଙ୍ଗିରେ ବଚନ କହେ ।
ଭଙ୍ଗି ଭଙ୍ଗି କରି 	କହଇ ସେ କଥା
ଭ୍ରୂଲତା ନଚାଇ ହସଇ ଖାଲି,
ଭଲ ପିଲା ପରି 	ଭଲାଇ ଦିଏ ରେ
ଭଉଁରୀ ପକାଇ ଖେଳଇ ଝାଲି ।
ମନେ ପଡ଼ଇ ରେ 	ଗୋଟି ଗୋଟି ହୋଇ
ମନମଉଣିଆ ମଧୁର ଗୀତ,
ମନ ବୋଲ ତାକୁ 	କହିଦେବା ପାଇଁ
ମଉଳ ପଡ଼ଇ ମଣିଷ ରଉ ।

ଯାଦୁକର ସମ ଯାଦୁ କରଇ ରେ
ଯାହାକୁ ଦେଖଇ ନିଅଇ କିଣି,
ଯମୁନାରେ ପଶି ଯମ ପରି କାଳୀ-
ସାପଟାକୁ ଦେଲେ ଗଳ୍ପ ରେ ଜିଣି ।
ଲଗାଲଗି ହୋଇ ବଳରାମ ସିଏ
ଚାଲିଯାନ୍ତି ଗୋପ ଦାଣ୍ଡରେ ଯେବେ,
ଲାବଣ୍ୟ ଲହରୀ ଲୀଳା କରେ ଯାଏ
ଗଙ୍ଗା ଯମୁନା କି ମିଳନ୍ତି ତେବେ !
ବଳୁଆ ପଣରେ ବଡ଼ ବଳବାନ
ବାନ୍ଧି ଦେଇପାରେ ବଣୁଆ ହାତୀ,
ବାଘ ଭାଲୁ ଡର ନ ଥାଏ ରେ ତାର
ବଣେ ବଣେ ବୁଲେ ଦିବସ ରାତି ।
ଶୁଭ୍ର ଲକ୍ଷଣ ତା ଦେହରେ ଦେହରେ
ଶୁଅଇ ସେ ମୋର ଭିତରେ ଖାଲି,
ଶେଯ ଶୋଯାଇଲେ ରୁଷି ବସଇ ରେ
ସର ଲବଣୀ ସେ ଦିଅଇ ପେଲି ।
ଷଟପଦ ସମ ସ୍ୱଭାବ ତାର ରେ
କ୍ଷଣ ସୁମନରେ ତାର ଆଦର,
ଷଡ଼ ରସ ତାକୁ ରୁଚଇ ନାହିଁ ରେ
ଥୁ ଥୁ କରି ଦିଏ ଲବଣୀ ସର ।
ସାରି ଦେଇଗଲା ସବୁ ସୁଖ ମୋର
ସହିବି କେତେ ବା ଦାରୁଣ ଦୁଃଖ,
ସତେ ଭାଗ୍ୟ ହେବ ସୁତ ମୋ ଫେରିବ
ସଙ୍ଗାଳକୁ ଦେଖି ପାଇବ ସୁଖ ।
ହଜି ଯାଇଥିଲା ହୃଦରୁ କୋଇଲି
ପୁଅ ଝିଅଙ୍କର ମରଣ ଦୁଃଖ,
ହରବର କରି ହରିନେଲା କଂସ
ହୃଦୟୁ ଫାଟୁଛି ନ ଦେଖି ମୁଖ ।

କ୍ଷଣ କ୍ଷଣ କରି ପ୍ରତିଟି କ୍ଷଣରେ
କ୍ଷୁର ତ ହେଲଣି କ୍ଷରିବା ପାଇଁ,
କ୍ଷୀଣ ତ ହେଲଣି କ୍ଷମତା ବି ନାହିଁ
କ୍ଷତ ପ୍ରାଣେ ନେଇ ବସିଛୁ ଗୃହେଁ ।
ଉଦ୍ଧବଙ୍କୁ ଦିନେ ପଠାଇଥିଲ ସେ
ଭଲ ମନ୍ଦ ସବୁ ପଚାରି ଗଲ,
କହିଲ ଆତୁରି ବୁଝାଇ ସୁଝାଇ
ଥରଟିଏ ହେଲେ ଆସନ୍ତା ଭଲ !
କି କହିବି ତୋତେ ତା କଥା କୋଇଲି
ବଇଁଶୀ ବାଜଣା ବାଜିଲେ କାନେ,
କାନ୍ଦଇ କେବଳ ପର କଥା ଝୁରି
ଅନ୍ନଜଳ ଛାଡ଼ି ବସଇ ଧ୍ୟାନେ ।
ସେହି ଦିନୁ ଗୋପେ ଏକଥୁରୀ ଯେତେ
ବଂଇଶୀ ବାଜିଲେ ଖାଆନ୍ତି ନାହିଁ,
ଗାଲେ ହାତ ଦେଇ କାନ୍ଦନ୍ତି ରେ ଖାଲି
ଦିନ ସରେ ନାହିଁ ତୁଅଙ୍କୁ ଚାହିଁ ।”
ଏତିକି ବେଳରେ ଶୁଭିଲା ଦାଣ୍ଡରେ
ରଥ ଚକ ଘର ଘର ଶବଦ,
ନିମିଷକେ ଆସି ରଥ ପହଞ୍ଚିଲା
ଦେଖିଲେ ସକଳେ ହେଲେ ଆନନ୍ଦ ।
ରଥୁ ଅବତରି ଆସି ବଳରାମ
ଯଶୋଦା ପୟରେ ଲଗାଇ ଶିର,
କହିଲେ, ଜନନୀ ! କାହିଁକି ଗୋ ତୋର
ନୟନରୁ ଏତେ ବହୁଛି ନୀର ?
କି କହିବି ମାଆ ଦାରୁଣ କଥା ଲୋ
ଦଣ୍ଡିକ ପାଇଁ କି ହୁଏନା ବେଳ,
ସବୁବେଳେ ମନେ ପଡ଼ ଲୋ ସମସ୍ତେ
ମନେଚାଉଡ଼ି ପୁଣି ଏଠାର ଖେଳ ।

କେଉଁ କ୍ଷଣରେ ମଥୁରା ଗଲୁ ଲୋ
ସେହି ଦିନୁ ଖାଲି ମାର ଓ ଧର,
ଲାଗି ରହିଅଛୁ ଦିବସ ରଜନୀ
ଖାଇବାକୁ ଟିକେ ମିଳୁନି ଛର ।
ତୁମମାନଙ୍କର ସ୍ନେହ ଲୋ ଜନନୀ
ରଖି ଥୋଇ ଦେଲା ନାହିଁଟି ଆଉ,
ଶ୍ରୀକୃଷ୍ଣ କହିଲ ଯାଅ ଭାଇ ଗୋପେ
ଆଉ ସବୁ କାମ ପଛକୁ ଥାଉ ।
ରହିବ ଗୋପରେ କଛୁ ଦିନ ପାଇଁ
ବୁଝାଇ ସୁଝାଇ ସକଳ କହି,
କାନ୍ଦୁଥିବେ କେତେ ଝୁରୁଥିବେ କେତେ
ବହୁ ଦିନ ଏଠି ଗଲେଇଁ ରହି ।"
ସ୍ନେହରେ ଉଛୁଳା ସବୁରି ମାନସ
ଆଗ କଥା ସବୁ ପଡ଼ିଲା ମନେ,
କେବଳ ଶ୍ରୀକୃଷ୍ଣ ଦରଶନ ବିନା
ଜକେଇ ଆସିଲା ଲୁହ ନୟନେ ।
ନନ୍ଦ ଯଶୋମତୀ ରୋହିଣୀ ସହିତ
ହେଲେ ପୁଲକିତ ରାମଙ୍କୁ ଦେଖି,
ଗୋପୀଙ୍କ ନୟନୁଁ କଟିଲା ନୀର
କୃଷ୍ଣଙ୍କୁ ନ ପାଇ ମନୁ ଉପେକ୍ଷି ।
ଆଉ ସେ କଣୋଗୀ ଯୁବତୀ ସୁଲଭ
ହାବଭାବ ନାହିଁ କାହାରି ମନେ,
ଉଦ୍ଧବ ପ୍ରମୁଖ- ଯାଇଛୁ ଭକତି
ଲକ୍ଷଣ ଯେତେକ ସବୁରି କାନେ ।
ବୟସ ସବୁରି ହୋଇଛୁ ଅଧିକ
ଯଉବନ ଯାଇ ନାହିଁ କାହାରି,
ସବୁରି ଅଙ୍ଗରେ ଶୋଭଇ ତାରୁଣ୍ୟ
ବସନ ଫୁଟାଇ ଆସେ ବାହାରି ।

ମିଳନ ଆକାଙ୍କ୍ଷା ମୁହଁରେ ମୁହଁରେ
ନୟନେ ନୟନେ ମିଳନ ହେଲା,
ହୃଦୟେ ହୃଦୟେ ପ୍ରେମର ପ୍ରବାହ
ବିରହ ତ ନାହିଁ ମିଳନ ଭଲା ।
ରସରସ-ଚଖା ମାନସ ଏ ଲୁଚେହିଁ
ଭକତ ରସର ନିର୍ମଳ ଝର,
ଚନ୍ଦ୍ରାମଖା ମୁଖେ ହରଷର ଲୀଳା
ନିଶ୍ୱାସ ପ୍ରଶ୍ୱାସ ନୁହଇ ଝର ।
ଶ୍ରୀକୃଷ୍ଣ ଈଶ୍ୱର ଶ୍ରୀକୃଷ୍ଣ ହିଁ ନର
ତାଙ୍କର ସେ ସିନା ପରମ ଭକ୍ତ,
ତାଙ୍କ ଛଡ଼ା କାହିଁ ନାହିଁ ମତ ଗତ
କେବଳ ଶ୍ରୀକୃଷ୍ଣ ଧ୍ୟାନରେ ରତ ।
ଗଗନେ ନୟନ ଆଉ ଗୃହ୍ନ ନାହିଁ
ବଇଶୀର ସ୍ୱନ ଶୁଣୁନ କାନ,
ବିରହ ମିଳନ ସବୁ ଏକା ପରି
ନାହିଁ ଅଭିମାନ କି ଅବା ମାନ ।
ଋତୁ ବଦଳିଲେ ମନ ବଦଳୁନ
ଶ୍ରୀକୃଷ୍ଣ ଚରଣେ କେବଳ ଲୟ,
ବିରହ ହୋଇଲେ ମଦନ-ପ୍ରୀତିର
କାହାର ମନରେ ନାହିଁ ଏ ଭୟ ।
ଦେଖିବା ଲାଳସା ବଢ଼ିଅଛୁ ସିନା
ସେ ଲାଳସା ନୁହେ ଭୋଗର ପାଇଁ,
ତ୍ୟାଗ କରି କରି ଗୋପିଏ ଅଭ୍ୟସ୍ତ
ସବୁ ଛାଡ଼ିବାକୁ ଅଛନ୍ତି ରହି ।
ତ୍ୟାଗେ ଭୋଗ ସୁଖ ମିଳଇ ବହୁତ
ଏହି ଧାରା ବୁଝିକ ରଖିଛୁ ସିଏ,
ଅଙ୍ଗ ସଙ୍ଗ କିବା ଭୌତିକ ମିଳନ
ପାଇଁ ବସିବନି ଅନାଇଁ ସିଏ ।

ଗୋପୀଙ୍କର ସୁଖ          ନୁହେ ମାନବର
        ନୁହେ ଧରଣୀର ସ୍ୱର୍ଗର ସିଏ,
ମର ଜଗତରେ          ନାଶ୍ୱଜନ୍ମ ପାଇ
        ସେ ସୁଖମାଧୁରୀ ଭୋଗିଛି କଏ ?
ନାହିଁ ଚିନ୍ତା ନାହିଁ          କ୍ଷୋଭ କା’ ମନରେ
        ସକଳେ ପୁଚ୍ଛନ୍ତି କୃଷ୍ଣ କୁଶଳ,
ଏହି ପ୍ରଶ୍ନଟିରେ          ସଂଚରି ଆସଇ
        ସବୁରି ନୟନେ ପ୍ରେମର ଜଳ ।
ପଡା ଉଠି ନାହିଁ          ଟଳେ ପଡ଼େ ନାହିଁ
        ଟଳ ଟଳ ହୋଇ ଆଖିରେ ରହେ,
ପ୍ରେମ-ପ୍ରବାହ ସେ          ଅନ୍ତର ସ୍ରୋତ ସେ
        ଫଲଗୁର ସମ ଭିତରେ ବହେ ।
କୃଷ୍ଣ ଯିବା ପରେ          ବାଳକ ବାଳିକା
        ଯେତେ ଜନ୍ମିଥିଲେ ଗୋପ ନଗରେ,
ବଳରାମ ସବୁ          ଏକାଠେଇ କରି
        ଖେଳିଲେ ବୁଲିଲେ ତାଙ୍କ ସଙ୍ଗରେ ।
କୃଷ୍ଣ କଥା କହି          କୃଷ୍ଣ ଗୁଣ ଗାଇ
        ସେମାନଙ୍କୁ କଲେ କୃଷ୍ଣାନୁରକ୍ତ,
ଦେଖି ନ ଥିଲେ ସେ          ଶ୍ରୀକୃଷ୍ଣଙ୍କୁ ଯିନା
        ଶୁଣିଯାଇ ହେଲେ ତାଙ୍କର ଭକ୍ତ ।
କୃଷ୍ଣେ ତାଙ୍କ ମତି          କୃଷ୍ଣରେ ଭକତି
        କୃଷ୍ଣ ଚିନ୍ତା ଛଡ଼ା ନାହିଁଟି କିଛି,
ସଂସାର ବାସନା          ଭୋଗର ଲାଳସା
        ଆଉ ଯେତେ ଯାହା ମଣିଲେ ଛି ଛି ।
ଆଉ ଅଳ୍ପ ଦିନେ          କୁରୁକ୍ଷେତ୍ର ତୀର୍ଥେ
        ପଡ଼ିବ ସମସ୍ତ ପଞ୍ଚକ ଯୋଗ,
ସେଇଠି ସମସ୍ତେ          ହେବା ଏକାଠେଇ
        କୃଷ୍ଣ ଦରଶନ ହୋଇବ ଭୋଗ ।

ଏଡ଼େ ସଙ୍କଟରେ କୃଷ୍ଣ ଦରଶନ
ସଂସାରେ କୋଉଟି ପାଇଛି କିଏ,
ତୋଟଗୋପୀ ତଇ ମନ ପ୍ରାଣ ଦେଇ
ଭକ୍ତିରେ ତାହାଙ୍କୁ ଡାକଛି ପିଏ ।

———

# ପୁଣ୍ଡରୀକ ବାସୁଦେବ ଦମନ

କାରୁଷାଧିପତି ପୌଣ୍ଡ୍ରକ ନାମ
କାଠରେ ଗରୁଡ଼ ଚକ୍ର ଖଡ଼ାଇ,
ବାସୁ ବୋଲି କହି ପଶ୍ଚିମେ ଦେଇ
ସବୁବେଳେ ଖାଲି କଲା ବଡ଼ାଇ ।
ଶ୍ରୀକୃଷ୍ଣଙ୍କୁ ଥରେ କହିପଠାଇଲା
"ମୁଁ କ୍ଷତ୍ରିୟ ଭୁରେ ଗରୁଡ଼ ଘର,
ମୋର ନାମ ନେଇ ଲୋକ ଧମକାଇ
କାହିଁକି କରୁଛୁ ଏ କାରବାର ?
ଦୁଇ ବାସୁଦେବ ଏ ଧରାଧାମରେ
ରହି ପାରିବେନି କର ଉପାୟ,
ଛାଡ଼ ଏ ସୁଅଙ୍ଗ ତୋର ବାସୁ ପଣ
ଜୀବନକୁ ଯେବେ ଅଛି ରେ ଭୟ ।
ତୋହର ମୋହର ହେବ ଦିନେ ଦେଖା
ସମରଭୂଇଁରେ ଏଇଥିପାଇଁ,
ତୋର ଏ ବଡ଼ାଇ ରହିଦେବ ନାହିଁ
କାନ୍ଧରୁ ମୁଣ୍ଡଟା ଦେବ ଖସାଇ ।"
କାଶୀ ରଜା ସଙ୍ଗେ ମେଣ୍ଟ ବାନ୍ଧି କରି
କୃଷ୍ଣଙ୍କ ବିରୁଦ୍ଧେ ଭିଆଇଲା ରଣ,
ଶ୍ରୀକୃଷ୍ଣ ପେଶିଲେ ସୁଦର୍ଶନ ଚକ୍ର
ଉଭୟଙ୍କ ଶିର କଲା ଛେଦନ ।

ନାଆଁଟା ପାଇଁକି ମିଛେ ଗର୍ବ କଲା
ଅକାରଣେ ମର ଶୋଇଲା ରଣେ,
ତାହା ପାଇଁ କେହ୍ନ ଆହା କଲେ ନାହିଁ
କାନ୍ଦିଲା ତା ଭାର୍ଯ୍ୟା କେବଳ ଜଣେ ।
ଦୋଷୀ ସଙ୍ଗେ ଦୋଷୀ ଧାଇଁ ଯାଇଥିଲା
ଭୋଗିଲା ଶେଷରେ ସମାନ ଦଶା,
ଦୁର୍ବଳ ବାହାକୁ ସାହା କରଥିଲେ
ଏପରି ହୁଅନ୍ତ ଭଗାରହସା ।
ଭଲ କାମ ସିନା କରିଥିଲେ କିଏ
କରିଥାନ୍ତେ ସବୁ ତା ପାଇଁ ଆହା,
ଆଉ କେତେ ଜଣ ବାହାରି ଥାଆନ୍ତେ
ସମରେ ତାହାର ହେବାକୁ ସାହା ।
କାହ୍ନିଁ କିଛି ନାହିଁ ଲୁଛାରେ ବଢ଼ାଇ
କିଏ ବା କାହ୍ନିଁକ କରନ୍ତା ଦୁଃଖ,
ବରଂ ଧରଣୀଟା ହୋଇଲା ଉଶ୍ୱାସ
ତାର ମରଣରେ ତାହାରି ସୁଖ ।
ଲେଖକର କ'ଣ କିଛି ଦୋଷ ନାହିଁ
ତେଣୁ ସେ ଖାଇଛି ଗୁଡ଼ାଏ ବର୍ଷ,'
ସୁଦର୍ଶନ ଚକ୍ର କୋଉଠି ଥୋଇଲା
ପେଶ ଥରୁଟିଏ ଭୋଗୁ ସେ ହର୍ଷ ।

---

# କାଶୀ ରାଜପୁତ୍ର ସୁଦକ୍ଷିଣର ପତନ

କାଶୀ ରାଜପୁତ୍ର ନାମ ସୁଦକ୍ଷିଣ
କୃଷ୍ଣଙ୍କୁ ମଣିଲା ପିତୃ-ବଇରି,
ତାର ପ୍ରତିଶୋଧ ନେବ ବୋଲି କରି
ଶିବଙ୍କୁ ତୋଷିଲା ଭକତି କରି ।
ମାଗିନେଲା ବର ଶିବଙ୍କ ତ୍ରିଶୂଳ
କୃଷ୍ଣଙ୍କୁ କରିବ ବୋଲି ସଂହାର,
ଶେଷେ ସେହି ଶୂଳ ଚକ୍ର ପାଖେ ହାରି
ଓଲଟି କାଟିଲା ଗଳା ତାହାର ।
ପର ପାଇଁ ଯିଏ କେବଳ ହିଂସାରେ
ବାଟେ ଅବାଟରେ ଖୋଳଇ ଖାଲ,
ଶେଷେ ସେଇଥିରେ ପଡ଼ଇ ସେ ନିଜେ
ଭଙ୍ଗେ ହାଡ଼ଗୋଡ଼ ଛଡ଼ାଏ ଛାଲ ।
ସଂହାରକାରୀଙ୍କ ଶୂଳ ବ୍ୟର୍ଥ ହେଲା
ପୁଣ୍ୟର ପାଖରେ ଗଲା ସେ ହାରି,
ପାପ କରମରେ ଆଗଭର ହେଲେ
କେହି କେବେ ଶୁଣିବନି ଗୁହାରି ।
କାତର ହୋଇଣି କର ନିବେଦନ
ସୁଦର୍ଶନ ଧରି ଆସିବେ ଧାଇଁ,
କାହିଁ ବଇକୁଣ୍ଠ କାହିଁ ବା ମରତ
ଏ ଦୂରତ୍ୱକୁ ସେ ମାନିବେ ନାହିଁ ।

ଦୂର ଆଉ ପାଖ ତାଙ୍କର ତ ନାହିଁ
ଚାଖେ ପାଖେ ସଦା ତାଙ୍କ ବିହାର,
ଅତି ପାଖେ ଥାଇଁ ଦୂର ସେ କରନ୍ତି
ପାପେ ମତ୍ତଗତ ଦେଖିଲେ କାର ।

———

# ବାନରରାଜ ଦ୍ୱିବଦ ଦଳନ

ନରକ ଅସୁର ମରଣ ଖବର
ଶୁଣି ତାର ମିତ୍ର ବାନରରାଜ,
କୃଷ୍ଣଙ୍କ ବିରୁଦ୍ଧେ ସମର କରିବା
ପାଇଁ ସେନାବଳ କରିଲା ସଜ ।
ବେଢ଼ିଲା ଦ୍ୱାରକା ଆଚମ୍ବିତେ ଆସି
ଘରେ ଘରେ ନିଆଁ ଦେଲା ଲଗାଇ,
ସାଗର ସଲିଳ ଉଚ୍ଛୁଳାଇ ଦେଲା
ଭାବିଲା ଦ୍ୱାରକା ଦେବ ଭସାଇ ।
ସାଗର ଯାହାକୁ ଗଢ଼ାଇ ଦେଇଛି
ସେହି ସାଗର କି ଭାଙ୍ଗିବ ତାକୁ ?
ଏସବୁ ବିଚ୍ଛୁର ଶୋଭା ପାଏ କିନା
ଦ୍ୱିବଦର ସମ ମାଙ୍କଡ଼ଠାକୁ !
ରମଣୀଙ୍କୁ ଦେଖି ବାନରଗୁଡ଼ାକ
ଉତପାତ କରି ଠାଣିଲେ ବାସ,
ନାନା ଭଙ୍ଗୀ କରି ଉପହାସ କରି
ଝଟାଇ ହୁଅନ୍ତ ଜନ୍ମାଇ ତ୍ରାସ ।
ବଳରାମ ଦେଖି ସହି ପାରିଲେନି
ବାନରରଜାଙ୍କୁ ମାଇଲେ ମୁଥ,
ଏକା ମୁଥକରେ ମଲା ସେ ସେଇଠି
ଛୁଡ଼ ଦୋଉଲେ ବାନରଯୂଥ ।

ସହସ୍ର କେଶରୀ	ବଳ ଯା ଦେହରେ
ତାଙ୍କର ମୂଥ କ ବାନର ସହେ !
ନାଆଁ ବଳରାମ	ଶକତି ଅସୀମ
ତାଙ୍କ ବଳ ଆଗେ କିଏ ବା ରହେ ?
ଯମୁନାକୁ ଯିଏ	ଆଣିଲେ ଓଟାରି
ଲଙ୍ଗଳ ମୂନରେ ଥରାଇ ଧରା,
ହସ୍ତିନା ନଗର	ରାଜ ସିଂହଦ୍ୱାର
ବୁଲାଇ ଦେଲେ ସେ ପଶ୍ଚିମେ ଫେରା ।
ଜରାସନ୍ଧକୁ ସେ	ମାଡ଼ ବସିଥିଲେ
ମାରିନଦବେ ବୋଲି ଗୁଡରେ ବସି,
ଶ୍ରୀକୃଷ୍ଣ ଛଡ଼ାଇ	ଦେଇଥିଲେ ହସି
ସେତେ ବଡ଼ ଙ୍କର ଧାଇଁଲା ଝସି ।

---

# ଲକ୍ଷଣା ସ୍ୱୟମ୍ବର

ଦୁର୍ଯ୍ୟୋଧନ କନ୍ୟା　　　　　ସୁନ୍ଦରୀ ଲକ୍ଷଣା
ହୋଇଲା ଯୁବତୀ ଖୋଜିଲା ବର,
ସେଥିପାଇଁ ବାପ　　　　　କଲା ସ୍ୱୟମ୍ବର
ଖୋଜାଇ ଆଣିଲା ରାଜକୁମର ।
ଶ୍ରୀକୃଷ୍ଣ-ବିଦ୍ୱେଷୀ　　　　　ସଦା ଦୁର୍ଯ୍ୟୋଧନ
ତାଙ୍କୁ ଲେଉଡ଼ିଲାନ ଅବଜ୍ଞା କରି,
ନାରଦ ଋଷିଙ୍କ　　　　　ସହନ୍ତେ ଏ କଥା !
ରହି ପାରିଲେନ ଧଇର୍ଯ୍ୟ ଧରି ।
ଗଲେ ହସ୍ତିନାକୁ　　　　　ଭେଟିଲେ ଲକ୍ଷଣା
କହିଲେ ତା ମନ ଭୁଲାଇ କରି,
"ଜାମ୍ବବତୀ ପୁଅ　　　　　ବଡ଼ ସୁନ୍ଦର ଗୋ
ତୋର ଯୋଗ୍ୟ ସିଏ ନଅ ଗୋ ବର ।
ତିନ ଭୁବନରେ　　　　　ନାହିଁ ତାର ସମ
ରୂପରେ ଗୁଣରେ ବାପ ସମାନ,
ତାହାଙ୍କୁ ନେ ମାଆ　　　　　ପାରୁ ଯଦି ତେବେ
ଗୁପତରେ ଥରେ ଡକାଇ ଆଣ ।
ଜାଣିବୁ ଗୋ ତେବେ　　　　　ମୋର ସତ ମିଛ
ଆଜ ରଜାପୁଏ ଗୃକର ଛରି,
ବସିବେ ତା ପାଖେ　　　　　କହୁଛି ମୁଁ ତୋତେ
ଡାକଆଣି ଥରେ ଦେଖ ସୁନ୍ଦରି !

ବାପଟା ତୋର ଲୋ ହେଲାଣି ତ ଅନ୍ଧ
କାଞ୍ଚନ କାଇଁଚ ପାରୁନ ଜାଣି,
କୋଉଠୁ ଗୁଡ଼ାଏ ସ୍ୱାଡ଼ୁ ସ୍ୟାଡ଼ୁ କର
ବସାଇଛୁ ଏଠି ଗୋଟାଇ ଆଣି ।
କେହ୍ବ ତୋର ଯୋଗ୍ୟ ନୁହନ୍ତ ଲୋ ଝିଅ
ସେଥିଲୁ ଉପାୟ କର ଲୋ ମାଆ,
ଯେବେ କହିବୁ ତୁ ଯିବ ମୁଁ ଦ୍ୱାରକା
ତୋର ବିବାହରେ ହେବ ନୋ ସାହା ।"
ଲକ୍ଷଣା ଆଖିରୁ ଲୁହ ଝର ଝର
ବହିଲା ଋଷିଙ୍କ କହିବା ଶୁଣି,
ମନର ପିପାସା ଲୁଚୁଇଲା ନାହିଁ
କହିଲା ଫିଟାଇ ନ ରଖି ତୁଣି ।
କହିଲା ଆକୁଳେ, "ତୁମେ ମୋ ଭରସା
ମୁଁ ତୁମ ଶରଣ ଧରୁଛି ପାଦ,
ଆଣିଦିଅ ମୋତେ ସେହି ପୁଅଟିକୁ
ମେଣ୍ଟେଯାଉ ମୋର ମନର ସାଧ ।"
ନାରଦ ଚଳିଲେ ଦ୍ୱାରକା ନଗରୀ
ଶାମ୍ବକୁ କହିଲେ ଗୋପନେ ଡାକି,
"ଦୁର୍ଯ୍ୟୋଧନ ଝିଅ ସ୍ୱୟମ୍ବର ହେବ
ସମସ୍ତେ ଗଲେଣି ତୁ ଅଛୁ ବାକୀ ।"
ଲକ୍ଷଣାର ଇଚ୍ଛା ତୋତେ ସେ ବରିବ
ଯାଇପାରୁ ଯେବେ ଚଞ୍ଚଳ ଯାଆ,
ନ ହେଲେ ତୋ ଯିବା ଆଗରୁ କହୁଚି
ସରି ଯାଇଥିବ ତାହାର ବାହା ।
ଝିଅଟିଏ ତ ସେ ରୂପରେ ଗୁଣରେ
ସବୁଥିରେ ପୂର୍ଣ୍ଣ ନଜେ ତ ରମା,
ପୃଥିବୀରୁ ଅବା କାହା ସରି ସିଏ
କିଏ ଅଛି କାହିଁ ଦେବ ଉପମା !

ଦେଖିଛୁ ରୁକ୍ମିଣୀ ସବୁଠୁଁ ସୁନ୍ଦରୀ
ପ୍ରଦ୍ୟୁମ୍ନ ଜନନୀ ତାହାଠୁଁ ବଳି,
କିନ୍ତୁ କେହି ନୁହେଁ ତାର ସମସରି
ହୋଇବେ ତାହାର ଦାସୀର ଭଳି।
ଅନ୍ଧାର ଘରରେ ଜହ୍ନ ପଡ଼ିଯାଏ
ସଜ ସରସିଜ ପଡ଼େ ମଳିନ,
ଚନ୍ଦ୍ରମା ଶୋଭାରେ ପରାଜୟ ମାନି
ଦିନୁ ଦିନ ହୋଇଗଲାଣି କ୍ଷୀଣ।
ଶଶାଙ୍କ ଦେହରେ ଅଛି ରେ କଳଙ୍କ
ପୂନେଅଁ ରାତରେ ଦିଶଇ ଫୁଟି,
ସଂସାରର ଯେତେ ସାର ସୁଷମା ରେ
ସବୁ ତା ଦେହରେ ରଖିଛି ଲୁଟି।
ଝୁରୁଛି ସେ ଖାଲି ତୋତେ ଦିନରାତି
ସେଥିପାଇଁ ସିଏ ହେଲାଣି କ୍ଷୀଣ,
ସୁନାକୁ ନିଆଁରେ ଦିଅଇ ପୋଡ଼ିଲେ
କାନ୍ତି କି କେବେ ରେ ହୁଏ ମଳିନ ?
କେବଳ ସୁନ୍ଦରୀ ନୁହଇ ରେ ସିଏ
ଗୁଣ ବି ଡାଇଛି ରୂପକୁ ଗୁହିଁ,
ଭୂଇଁରେ ଚାଲିଲେ ନଳିନ ଫୁଟଇ
ପବନେ ମଳୟ ଆସଇ ଧାଇଁ।
କାନ୍ଦଣା ତା ମୁହେଁ ଦିଶେ ହସ ପରି
ହସିଲେ ଦିଶିବ କପର କୁହ !
କେତେ ପାରିଜାତ ଶତ କୋକନଦ
ସହସ୍ର ଶଶାଙ୍କ ସରସୀରୁହ ?
ଏତେ ଲକ୍ଷଣରେ ଝିଅଟିଏ ସିଏ
ହୋଇଥିପାଇଁ ତ ନାଆଁ ଲକ୍ଷଣା,
ବାପଟା ତାହାର କେଜାଣି କାହିଁକି
ଡୁଣ୍ଡାଇଛି ସବୁ ହତଲକ୍ଷଣା।"

ଏକା ଏକା ପୁଅ ଚଳ ହସ୍ତିନାକୁ
କାହାରକୁ ମନେ କରନ ଭୟ,
ମରମେ ପଶିଛି ମଦନର ଶର
କର ଦେଉ ନାହିଁ କେବେହେଁ ଥୟ,
କୃଷ୍ଣଙ୍କ ପୁଅ ସେ କାହାକୁ ଡରନ୍ତା !
ଡରନ୍ତା ବା ଯିଏ ପଶିଛି ମନେ,
ମନ ସେଥିପାଇଁ ଥୟ ହେଉ ନାହିଁ
ଶରଣ ସେ ପଶିଲାଣି ନୟନେ ।
ନୟନ କହୁଛି, "ଧାଆଁରେ ଆଗରେ"
ମନ କହୁଛି ମୁଁ ଆସିଲି ଫେରି,'
ପାଇଲ ନାହିଁ ରେ ତାର ଦରଶନ
ଖାଇ ଅଛ ଲୁହ କରନା ଡେରି ।
ଦେଖିଲି ସେ ରୂପ ଅନ୍ତରରେ ଯିଏ
କଳ୍ପନାରେ ଖାଲି ରଖିଛି ଲେଖି,
ସେ ଲେଖାଟିକୁ ରେ କରିଦେ ତୁ ସତ
ନଚେଖି ନଚେଖି ପାଖରେ ଦେଖି ।"
ନୟନ କହିଲା, "ଚରଣ କ ତୋର
ନେଇପାରିବ ରେ ମୋତେ ଚଞ୍ଚଳ ?
ଦଉଡ଼ ମଠିଆ ରେ ପଦଣ୍ଡକୁ ଗଣି
ଗଲେ ଧୀରେ ଧୀରେ କରେ ଉଚ୍ଛୁର ।"
ମନ ଆକୁଳରେ କହିଲା ବଳୟି,
"ଚରଣରେ ଲୋଡ଼ା ନାହିଁ ରେ ତୋର,
ବସ ମୋ ପିଠିରେ ନେବି ମୁଁ ନିମିଷେ
ଜାଣୁ ତ ଶୂନ୍ୟରେ ଗମନ ମୋର ।
ନିମିଷକେ ପାରେ ବୁଲି ମୁଁ ବ୍ରହ୍ମାଣ୍ଡ
କିନ୍ତୁ ଶକ୍ତି ନାହିଁ ଦେଖିବା ପାଇଁ,
ଭାବିପାରେ ଖାଲି ସେଥିପାଇଁ ଯିନା
ଅକୁଳେ ଆସିଲି ତୋ ପାଶେ ଧାଇଁ ।"

ମନ-ନୟନଙ୍କୁ ଏକାଠେଇଁ କରି
ଚଳିଗଲେ ଶାମ୍ବ ଆକାଙ୍କ୍ଷା ନେଇ,
ଆଗରୁ ନାରଦ ହସ୍ତିନାକୁ ଯାଇ
ଲକ୍ଷଣାକୁ ଥିଲେ ଖବର ଦେଇ ।
ଚକ୍ଷୁରେ ଚକ୍ଷୁରେ ପ୍ରତ୍ୟକ୍ଷ ଦର୍ଶନ
ଶ୍ରୁତାଶ୍ରୁତି କଥା ହୋଇଲା ସତ,
ମଦନ ଦହନ ପ୍ରେମର ଆକାଙ୍କ୍ଷା
କାୟା ମିଳନରେ ହୋଇଲା ହତ ।
ଜଣା ପଡ଼ିଗଲା ଗୁପତ ପ୍ରଣୟ
ଦୁର୍ଯ୍ୟୋଧନ ଶୁଣି ଥରିଲା ରାଗେ,
କହିଲା ଗରଜି, "ବାନ୍ଧିଆଣ ତାକୁ
ଗଉଡ଼ଟୁଆକୁ ମାରିବ ଆଗେ ।
ଏତେ ଭରସା ତା ହେଲା ରେ କାହିଁକି
ଜଳନ୍ତା ନିଆଁରେ ପଶିଲା ଆସି,
ଅନ୍ଧ ହୋଇଲା କି ଆଖି ବୁଜିଲା ରେ
ଦେଖିଲା ନାହିଁ ସେ ତା କାଳଫାଶୀ !
ଯାଅ ଦୁଃଶାସନ ! ବାନ୍ଧିଆଣ ବେଗେ
ଆଜ ମୁଁ ତାହାକୁ ଦେବି ରେ ଶୂଳି,
ଆସୁ ତାର ବାପ ଆସନ୍ତୁ ଯାଦବେ
ଆସନ୍ତୁ ବାସବ, ଆସନ୍ତୁ ଶୂଳୀ ।
କିଏ ଆଜ ତାକୁ ରଖିବ ଦେଖିବି
କୌରବ-ବଂଶରେ ଦେଲା କଳଙ୍କ,
ଭାବନ୍ତି ହସ୍ତିନା ହେଲା କି ବନ୍ଦର
ଦୁର୍ଯ୍ୟୋଧନ କ'ଣ ହେଲା କି ରଙ୍କ ?
ବାପଟା ଗଉଡ଼ ଭଉଣୀକୁ ଦେଲା
ଜାରଜ ଗୋଟାକ ହାତରେ ଟେକି,
ନିଅ ତାକୁ ବାନ୍ଧି ବସାଅ ଶୂଳରେ
କିଏ ସେ ରଖିବ ଦେଖିବି ମୁଁ ଦେଖି !"

ନେଇଗଲେ ବାନ୍ଧି ଶୁଣି ଆପଦାକୁ
ଶୁଣିଲେ ପାଣ୍ଡବେ, ଧାଇଁଲା ଭୀମ,
ବନ୍ଧନୁ ପୁଅକୁ ମୁକୁଳାଇ ଦେଲା
କୋଳରେ ଧଇଲା ଶମନ ସମ ।
ଧାଇଁଲେ ଧରମ ଦୁର୍ଯ୍ୟୋଧନ ପାଶେ
ବହୁତ କହିଲେ ତାକୁ ବୁଝାଇ,
ଖଳ ଦୁର୍ଯ୍ୟୋଧନ ଶୁଣନ୍ତା ସେ କଥା !
ରାଗରେ ଗରଜ କହିଲା, "ନାହିଁ ।"
ନାରଦ ଧାଇଁଲେ ଦ୍ୱାରକା ନଗର
କୃଷ୍ଣ ବଳରାମେ କହିଲେ ଯାଇଁ,
ସଜବାଜ ହେଲେ ଯାଦବ ସଇନ
ହସ୍ତିନାପୁରକୁ ଆସିବା ପାଇଁ ।
ବଳରାମ ଭାବ କହିଲେ, "ସମ୍ଭାଳ
ଏକା ମୁହିଁ ଯାଇ ଆଣିବି ପୁଅ,
ସୈନ୍ୟବଳ ଆଉ ହେବ ନାହିଁ ଲୋଡ଼ା
ହିନଟେ ଅପେକ୍ଷା କରିଣ ରୁହ ।"
ଗଲେ ହଳଧର ଏକା ହସ୍ତିନାକୁ
ଦୁର୍ଯ୍ୟୋଧନ ଦେଖି କହିଲା କୋପେ,
"କେଡ଼େ ବଡ଼ାଇ ରେ ଅସଭ୍ୟଗୁଡ଼ାକ
ପିଲାଦିନେ ବଢ଼ିଥିଲ ତ ଗୋପେ ।
ପାଦର ପାଦୁକା ମୁଣ୍ଡରେ ବସିବ
ଜୋତାକୁ ମଣିଲ ମୁକୁଟ ପରି,
ମାର ରେ, ମାର ରେ ଯିଏ ଯହିଁ ଅଛ
ଏଇଟାକୁ ସବୁ ପିଟ ରେ ଧରି ।"
ବଳରାମ ରାଗି ଧଇଲେ ଲଙ୍ଗଳ.
ହସ୍ତିନାକୁ ତାଡ଼ କରିବେ ଚୂର୍ଣ୍ଣ,
କଉରବ-ବଂଶ ସମୂଳେ ସଂହାରି
ପୁଅର କାମନା କରିବେ ପୂର୍ଣ୍ଣ ।

ବଳରାମଙ୍କର ଭୀମ ମୂର୍ତ୍ତି ଦେଖି
କଉରବ-କୁଳ ଗଲେଣି ଡରି,
ଭୀମ ତେଣେ ଦେଖି ଦାନ୍ତକୁ କାମୁଡ଼ି
ପ୍ରଚଣ୍ଡ ରାଗରେ ଉଠିଲା ଥରି ।
ଶେଷେ ଦୁର୍ଯ୍ୟୋଧନ ପରାଜୟ ମାନି
କନ୍ୟାଦାନ କରି ପଡ଼ିଲା ପଦେ,
ବଳରାମ ତାଙ୍କ କୋପ ପରିହରି
ଘୁଅ ବୋହୂ ନେଇ ଗଲେ ଆନନ୍ଦେ ।
ଏ ବନ୍ଧୁପଣିଆ ହେବ ନାହିଁ ଚିର
କୃଷ୍ଣଙ୍କ ଭବିଷ୍ୟ ହସୁଛି ଖାଲି,
ବେଳ ପହଞ୍ଚିବ ଦୁର୍ଯ୍ୟୋଧନ ପାଇଁ
ଏ ସମ୍ବନ୍ଧ ସବୁ ଯିବଟି ଚାଲି ।
ଅଦୃଷ୍ଟ ଅଦୃଶ୍ୟ ଦେଖାଯାଏ ନାହିଁ
ଦେଖନ୍ତି କେବଳ କୃଷ୍ଣ ହିଁ ଏକା,
ସଂସାର ତାଙ୍କର ସବୁ ତ ତାଙ୍କର
ଅଦୃଷ୍ଟ ବି ମଧ୍ୟ ତାଙ୍କରି ଲେଖା ।
ଅହେ ଭଗବାନ ! କୃଷ୍ଣ ନାରାୟଣ !
ଲେଖକକୁ ତାର ଅଦୃଷ୍ଟ ଦେଖା,
ଅକ୍ଷରେ ସେ କବା ଅଣଅକ୍ଷରରେ
ଲୁଚାଇ ରଖିଛି ସେ ସତ୍ୟଲେଖା !
ଆଖି ତ ଦେଇଛ ଦେଖିବାର ପାଇଁ
ଏଇଟି କାହିଁକି ପାରୁନି ଦେଖି,
ଆଖିର ମହତ ନାହିଁ ତେବେ କିଛି
କେଉଁ କଳ୍ପନାରେ ରଖିବି ଲେଖି ?
ଆଜି ଏ ଯୁଗରେ ଅଦେଖା ରେ କେହି
ବିଶ୍ୱାସ କରୁନି, କହୁଛି ମିଛ,
ପୃଥିବୀରେ ଖୋଜେ ପ୍ରତ୍ୟକ୍ଷ ପ୍ରମାଣ
କହୁଛି କେବଳ ବିଜ୍ଞାନେ ପୁଚ୍ଛ ।

ବିଜ୍ଞାନ କି କେବେ ପାରିବ ତା ଦେଖି
କଳ୍ପନାକୁ କେବେ ମଣିବ ସତ,
ତେବେ ଦର୍ଶନର ସୂକ୍ଷ୍ମ ତତ୍ତ୍ୱରାଶି
ପଦାରେ ପଡ଼ି ତ ହୋଇବ ହତ !
ତୁମର ସର୍ଜନା ତୁମେ ରକ୍ଷାକର
ବିଜ୍ଞାନ କଲିଣି ବହୁତ ଗର୍ବ,
ପରମାଣୁ ଭାଙ୍ଗି ଶୂନ୍ୟରେ ବିହର
ଦର୍ଶନ-ତତ୍ତ୍ୱକୁ କରିବ ଖର୍ବ ।

———— —

# ଯୋଗୈଶ୍ୱର୍ଯ୍ୟ

ଦ୍ୱାରକା ନଗରୀ          ମର୍ତ୍ତ୍ୟ ବଇକୁଣ୍ଠ
    ବିଷ୍ଣୁ ସନାତନ ଶ୍ରୀକୃଷ୍ଣ ତହିଁ,
ବୈକୁଣ୍ଠ ବିଭବ          ବଇକୁଣ୍ଠ ସୁଖ
    ଭୋଗ କରୁଛନ୍ତି ଗୃହରେ ରହି ।
ଶହେ ଆଠ ଭାର୍ଯ୍ୟା          ଶହେ ଆଠ କୃଷ୍ଣ
    ଶହେ ଆଠ ଘର କୃଷ୍ଣରେ ପୂର୍ଣ୍ଣ,
କେତେବେଳେ ହେଲେ          କେହି ଜଣେ ଭାର୍ଯ୍ୟା
    ଦେଖିନି ତା ଘର ଶ୍ରୀକୃଷ୍ଣ ଶୂନ୍ୟ ।
ସମସ୍ତେ ମଣନ୍ତି          କୃଷ୍ଣ ତାର ଏକା
    ସବୁଠାରୁ ବେଶୀ ସେ ଆଦରିଣୀ,
ସଂସାରେ କେ ଆଉ          ନାରୀଜନ୍ମ ପାଇ
    ସୌଭାଗ୍ୟରେ ଯିବ ତାହାକୁ ଜିଣି ।
ଥରେ ଏଥିପାଇଁ          ରୁକ୍ମିଣୀ ଗରବ
    ଭଞ୍ଜିଥିଲେ କୃଷ୍ଣ ରହସ୍ୟ କରି,
ଆଉ କେଉଁ ଭାର୍ଯ୍ୟା          ଶିଖି ନାହାନ୍ତି କି
    ମନରେ ଗରବ ଅଛନ୍ତି ଧରି ?
ସତ୍ୟଭାମା ଗର୍ବ          ସବୁଠୁଁ ଅଧିକ
    ଦେଖାଇ ହୁଏ ସେ ବହୁତ କରି,
ଟିକିଏ କଥାରେ          ରୁଷି ବସଇ ସେ
    ଏହି ଅଭିମାନ ହୃଦୟେ ଧରି ।

ସତେ କ'ଣ କୃଷ୍ଣ      ସତ୍ୟଭାମା ବଶ
  ଆଉ କାହାରିକୁ ଅନାନ୍ତି ନାହିଁ ?
କୃଷ୍ଣ ବି ସେପରି      କଥାରେ କଥାରେ
  ଅଭିମାନ କରି ଦ୍ୟନ୍ତି କନ୍ଦାଇ ।
କାନ୍ଦଣା ତାହାର      ପରମ ମନ୍ତ୍ରର
  ସେଇଥିରେ ତାକୁ ଦିଅନ୍ତି ଶିକ୍ଷା,
ଗରବ ଭାଙ୍ଗିବା      ହିଂସା ନିବାରିବା
  ଦୁଷ୍ଟଙ୍କୁ ଦମିବା ତାଙ୍କର ଦୀକ୍ଷା ।
ସଉତୁଣୀ ଈର୍ଷା      ରଖିଦେବେ ନାହିଁ
  ସେଥିପାଇଁ ସିନା ସେ ଶବ୍ଦେ ଆଠ,
ତାଙ୍କ ଗୁଣଗଣ      ତାଙ୍କର ଶକତି
  କଳି ପାରି ନାହିଁ କୌଣସି ପାଠ ।
ଦର୍ଶନ ହାରିଛି      ବିଜ୍ଞାନ ହାରିଛି
  ତପସ୍ୱୀ ତପସ୍ୟା ହାରିଛି ପରା,
ସେଥିପାଇଁ ସିନା      ସବୁ ଖୋଜାଖୋଜି
  ନିରାକାରେ ପୃଷ୍ଠ ହୋଇଛି ଧରା ।
କିଏ କହେ ପୁଣି      ସବୁ ତ ସାକାର
  ଅଣାକାର ବୋଲି ନାହିଁ ତ କିଛି,
ସାକାର ଅକାର      ବିଜ୍ଞାନ ବିକାର
  ନାସ୍ତିକ ବସ୍ତୁର ଏସବୁ ଛ୍ଟି ଛ୍ଟି ।
ସ୍ଥୂଳ ହେଉ ଅବା      ସୂକ୍ଷ୍ମଟିଏ ହେଉ
  ଆକାର ଗୋଟିଏ ଅଛି ନିଶ୍ଚୟ,
ବିଶ୍ୱମ୍ଭର ରୂପ      ପୁଣି ପରମାଣୁ
  ଦେଖଇ ସାଧନା ନୁହେ ବିସ୍ମୟ ।
ସେତେବେଳେ ଯାଇଁ      ତୁଟିଯିବ ଦ୍ୱନ୍ଦ୍ୱ
  ଦୃଷ୍ଟ ଓ ଅଦୃଷ୍ଟ ରହିବ ନାହିଁ,
ନିମିଷେ ନିମିଷେ      କାଳ ଗଡ଼ିଯାଏ
  କାହାର ପାଇଁ ସେ ବସେନା ରହିଁ ।

ଏ ଜୀବନ କାଳ ନୁହଇ ଯଥେଷ୍ଟ ?
ପରଜନ୍ମ ସୃଷ୍ଟି ସେଇଥିପାଇଁ,
ଗତ ଜନ୍ମ ଫଳ ଭୋଗିବ ଏ ଜନ୍ମେ
ସେଥିରେ ତ ତିଳେ ସନ୍ଦେହ ନାହିଁ ।
ନିରାକାର ହେବ ଗଗନର ସମ
ସେ ତ ନୀଳବର୍ଣ୍ଣ ମହା ଅନନ୍ତ,
ନୀଳିମାକୁ ଦେଖି ମହା ଅନନ୍ତର
କଳ୍ପ ନ ଥାଏ କି ଗୋଟାଏ ଅନ୍ତ ?
ଶୂନ୍ୟକୁ ଚିହ୍ନାଇ ଦେବାକୁ ବିଜ୍ଞାନେ
କଳ୍ପିତ ହୋଇଛି ଆକାରଟିଏ,
ସେ ଆକାର କ'ଣ ପ୍ରକୃତ ଆକାର
ତେବେ ଶୂନ୍ୟ ତାକୁ କହିବ କିଏ ?
ସେ ଶୂନ୍ୟ ସେଇଠି ହୋଇଗଲା ପୂର୍ଣ୍ଣ
ସେହି ତ ଶୂନ୍ୟର ପୂର୍ଣ୍ଣ ବିକାଶ,
ଶୂନ୍ୟ ସବୁବେଳେ ଗଗନେ, ଭୁବନେ
ନୀଳ ବରଣରେ ହୁଏ ପ୍ରକାଶ ।
ସେଥିପାଇଁ କ'ଣ ଶ୍ରୀକୃଷ୍ଣ ସୁନୀଳ
ତେବେ ସିଏ କ'ଣ ପ୍ରକୃତ ଶୂନ୍ୟ ?
ଦ୍ୱାରକା ନଗରେ ସବୁ ଘରେ ଘରେ
ଦେଖୁଛେଁ ତ ଆମେ ସବୁଠି ପୂର୍ଣ୍ଣ ।
ଶୂନ୍ୟ ତ ପୂର୍ଣ୍ଣର ସଙ୍କେତ ଗୋଟିଏ
ଅକ୍ଷର ଯେପରି ଶବ୍ଦ ସଙ୍କେତ,
ଶବ୍ଦ ଯେଉଁପରି ଅକ୍ଷର ସମ୍ଭୂତ
ଅକ୍ଷରୁଁ ଅକ୍ଷରୁଁ ପଦ ସଂଜାତ ।
ପଦ ପଦ ମିଳି ସରଜଇ ବାକ୍ୟ
ବାକ୍ୟରେ ଭାବର ପୂର୍ଣ୍ଣ ପ୍ରକାଶ,
ଏଇ ତ ସାକାର ନିରାକାର କଆଁ
ଏସବୁ କେବଳ ଭ୍ରାନ୍ତ ବିଶ୍ୱାସ ।

ପ୍ରଶ୍ନ—ଅଦୃଷ୍ଟ କଅଣ ?

ଉତ୍ତର—ଯାହା ଦେଖାଯାଏ ନାହିଁ ।

ପ୍ରଶ୍ନ—ସବୁ କ'ଣ ଦେଖିପାରିବ ଆଖି ?

ଆଖିର ଶକ୍ତି କେତେ ? ଦୂର୍‌ବଳସ୍ଥ ଯାଏ ?

ବିଶ୍ୱବ୍ରହ୍ମାଣ୍ଡକୁ ଦେଖିପାରିବ ତ ?

ତେବେ କ'ଣ ବିଶ୍ୱବ୍ରହ୍ମାଣ୍ଡ ନାହିଁ ?

ଉତ୍ତର—ଆଖି ଦେଖିପାରେ ନାହିଁ । କାରଣ ଆଖିରେ ସମ୍ଭାଏ ନାହିଁ ।

ପ୍ରଶ୍ନ—ସୂକ୍ଷ୍ମକୁ ସେପରି ଆଖି ଦେଖିପାରେ କି ?

ଯଦି ହଁ, ତେବେ ଅଣୁବୀକ୍ଷଣର ଆବଶ୍ୟକତା କାହିଁକି ?

ଉତ୍ତର—ସବୁ ପାଇଁ ଆଖିର ଦେଖିବା ଶକ୍ତିର ଗୋଟାଏ ସୀମା ଅଛି । ସେ ସୀମାକୁ ଡେଇଁ କିଛି କରିପାରିବ ନାହିଁ । ସେଥିପାଇଁ ସାଧନାଦ୍ୱାରା ସେ ସୀମାର ପରିଧିକୁ ବଢ଼ାଇବାକୁ ହେବ । ଅଣୁବୀକ୍ଷଣ ଯନ୍ତ୍ରଟି ସେହି ସାଧନା-ସମ୍ଭୂତ । ତାର କାମ ସେ ଦ୍ରଷ୍ଟବ୍ୟର ଆକାରକୁ ବଢ଼ାଇ ଦୃଷ୍ଟିର ସୀମା ଭିତରକୁ ଆଣେ । କିନ୍ତୁ ଦୃଷ୍ଟିର ଶକ୍ତିକୁ ବଢ଼ାଏ ନାହିଁ । ଏହି ଯେଉଁ ସାଧନାର ଫଳ ଅଣୁବୀକ୍ଷଣର ଆବିଷ୍କାର, ସେହିପରି ସାଧନା କଲେ ସୂକ୍ଷ୍ମତମ, ଏପରି କି ଅଦୃଶ୍ୟକୁ ବିନା ଯନ୍ତ୍ର ସାହାଯ୍ୟରେ ଦେଖିପାରିବ । ପୁଣି ସେହିପରି ବିଶ୍ୱବ୍ରହ୍ମାଣ୍ଡକୁ ମଧ୍ୟ ଦେଖିପାରିବ । ଯଶୋଦା, ଅର୍ଜୁନ, ବ୍ୟାସ ଆଦି ଦେଖିଥିଲେ ।

ଏତେ ପ୍ରବୀଣ ସେ ଘରକରଣାରେ
ତାଙ୍କ ଘରେ କେବେ ଲାଗିନ କଳି,
ସବୁ ସଉତୁଣୀ କରନ୍ତି ସଂସାର
ମିଳିମିଶି କରି ଭଉଣୀ ଭଳି ।
ଏଥିପାଇଁ ଦାସ୍ମୀ ଶ୍ରୀକୃଷ୍ଣ କେବଳ
ସଉତୁଣୀ ଯେ ସେ ଟିକତ ମାଂସେ,
ଭଗ୍ନୀ ସପତ୍ନୀ କଥାଁରୁ ପ୍ରଚଣ୍ଡ
କେତେବେଳେ ସିଏ ବଶେ ନ ଅସେ ।

ସେଥିପାଇଁ କୃଷ୍ଣ ବହୁ କୃଷ୍ଣ ହୋଇ
ରମଣୀଙ୍କ ମନ ଥିଲେ ମନାଇ,
କେତେବେଳେ ହେଲେ କେଉଁ ଘରପାଟି
ଶ୍ରୀକୃଷ୍ଣ ନାହାନ୍ତି ଜାଣେ ନାହିଁ ।
ସବୁର କୋଳରେ ଦଶ ଦଶ ପୁଅ
ମାଆ ଗଣ୍ଡି ଧନ ଗୋଟିଏ ଝିଅ,
ଅଣ୍ଡାଳ ହୋଇଲେ କଏ କେଉଁ ଥିରେ
ଟାଇବ ପାତର ଅନ୍ତର କିଅ ।
କୃଷ୍ଣଙ୍କ ସଂସାର କେବଳ ସୁଖର
ଚମତ୍କୃତ ସେ ଖାଲ ସଂସାର ପାଇଁ,
କେବେ କେତେବେଳେ ହଣନ୍ତି ବିମର୍ଷ
ସେଇନା ଅଛୁ ତ ସେଇନା ନାହିଁ ।
ଦୁରୂହ ପ୍ରଶ୍ନର ସମାଧାନ ପାଇଁ
ଭାବନ୍ତି ଟିକଏ ମାରବେ ବସି,
ସେହି ମାରବତା ଦେଖାଇ ଦଏ କ
ସବୁ ସମାଧାନ ଦଅନ୍ତି ହସି,
ନାରଦ ଶୁଣିଲେ କୃଷ୍ଣ ଦ୍ୱାରକାରେ
ଶହେ ଆଠ ଜଣ, ନୁହନ୍ତି ଏକା,
ଆସିଲେ ବସ୍ତୁସ୍ତେ ଜଣ ଜଣ କରି
ସବୁ ଶ୍ରୀକୃଷ୍ଣଙ୍କୁ କରିବେ ଦେଖା ।
ପହଞ୍ଚିଲେ ଆସି ରୁକ୍ମଣୀ ମନ୍ଦିରେ
ଦେଖିଲେ ଶ୍ରୀକୃଷ୍ଣ ଅଛନ୍ତି ବସି,
ନାରଦଙ୍କୁ ଦେଖି ଆସନ ଉପେକ୍ଷି
ତରବର ହୋଇ ଆସିଲେ ହସି ।
ଅତିଥିଙ୍କ ପରି କଲେ ସମାଦର
ନିଜେ ପାଣି ଆଣି ଧୋଇଲେ ପାଦ,
ପାଦୋଦକ ନେଇ ଶିରରେ ଛୁଇଁଲେ
ବସାଇ ଆସନେ ହେଲେ ଆନନ୍ଦ ।

ଦୁଃଖ ସୁଖ ସବୁ ପଚରାପଚରି
ହେଲେ ଦୁଇ ଜଣ ଟିକିଏ ବସି,
ଉଠିଲେ ନାରଦ ଯିବେ ଅନ୍ୟ ଘରେ
ଦେଖିବେ କୃଷ୍ଣଙ୍କୁ ସେଠେଇ ବସି ।
ଦେଖିଲେ ନାରଦ ସେଠେଇ ଶ୍ରୀକୃଷ୍ଣ
ପୁଅ ଝିଅ ନେଇ ଆଦର କରି,
ଜଣ ଜଣ କରି ଖେଳ କରୁଛନ୍ତି
କାହାକୁ କାହାକୁ କୋଳରେ ଧରି ।
ସେଠାରୁ ଚଳିଲେ ସତ୍ୟଭାମା ପୁରେ
ଶୋଇଛି ସୁନ୍ଦରୀ ପଣନ୍ତ ପାରି,
ଶ୍ରୀକୃଷ୍ଣ ପାଶରେ ବସି ବଚଣାରେ
ବୁଝାଉଅଛନ୍ତି ବିନମ୍ର କରି ।
ଅନ୍ୟ ନାରୀ ଘରେ ଚଳିଲେ ନାରଦ
ହୋମ ଯଜ୍ଞେ କୃଷ୍ଣ ଅଛନ୍ତି ରତ,
ପରିବାରଯାକ ଦାନ ଧ୍ୟାନ କରି
ଆନନ୍ଦ ଉତ୍ସବେ ସକଳେ ମତ୍ତ ।
ଘର ଘର ପଶି ଦେଖିଲେ ସବୁଠି
କେଉଁଠି ବୁଲନ୍ତି ଖେଳନ୍ତି କାହ୍ନି,
ସବୁ ଘରେ କୃଷ୍ଣ କରମରେ ରତ
ଟିକିଏ ବୋଲି ବି ବିଶ୍ରାମ ନାହିଁ ।
କରମଭୂଇଁ ଏ ମରତ ପୁରଟା
ଅଛନ୍ତି ତ ବହୁ କରମହୀନ,
କରମ ଯୋଗରେ ଶ୍ରୀକୃଷ୍ଣ ଆଦର୍ଶ
କରମ କରି ସେ ସାରନ୍ତି ଦିନ ।
ନାରଦ ନିଜକୁ ମଣିଲେ କୃତାର୍ଥ
କୃଷ୍ଣଙ୍କୁ କେବଳ କଲେ ସ୍ମରଣ,
ବିଶ୍ୱବ୍ରହ୍ମାଣ୍ଡଟା ଯାର କ୍ଷୁଦ୍ର ଅଂଶ
ଶବ୍ଦେ ଆଉ ହେବା କି ବଡ଼ପଣ !

ଫେରଗଲେ ଋଷି ବୀଣାଟି ବଜାଇ
କୃଷ୍ଣଗୁଣ ଘୋଷି ସରଗପୁରେ,
ଜଣାଇଲେ ସବୁ ଗୋଟି ଗୋଟି କରି
ଦେବସମାଜରେ ପିତା ଗ୍ରମୁରେ ।
ବହୁତ ମାନବ କୃଷ୍ଣଙ୍କୁ ମାନବ
ବୋଲି ଚିହ୍ନି କରି କରନ୍ତି ଘୃଣା,
ତେବେ ବି ଶ୍ରୀକୃଷ୍ଣ ନୁହନ୍ତି ବିରକ୍ତ
କରନ୍ତି ନାହିଁ ସେ କରୁଣା ଊଣା ।
ଶତ୍ରୁ ଭାବେ ଯିଏ ଭାବଇ ତାହାଙ୍କୁ
ଆଗେ ସେ ତାହାକୁ ନିଅନ୍ତି ପାଶେ,
ଭକ୍ତ ଭଜନରେ ଡାକି ଡାକି କରି
ଗୃହେଁ ବସିଥାଏ ପାଇବା ଆଶେ ।
ପାର୍ଥକ୍ୟ ଏତିକି ଆସନ୍ତି ସେ ଧାଇଁ
ଭକ୍ତଙ୍କ ପାଖକୁ ଭକତି ପାଇଁ,
ଅଭକତ ଯିଏ ଟାଣନ୍ତି ତାହାକୁ
ମାରି ଧରି କରି କାଳକୁ ଗୃହେଁ ।
ଭକତର ନାହିଁ ବେଳ ବା ଅବେଳ
ସବୁବେଳେ କୃଷ୍ଣ ଭକତ ପାଖେ,
ଛାଡ଼ିପାରନ୍ତି ନି ଭକତର ସଙ୍ଗ
ଭକ୍ତକୁ ପେଲନ୍ତି ନାହିଁ ସେ ପାପେ ।
ଏ ନ ଲେଖକର ନାହିଁ କି ଭକତି
କି ଅବା ରଖିଛି ବହୁତ କରି,
ତେଣୁ ତାକୁ କୃଷ୍ଣ ଘୋଷାରୁ ନାହାନ୍ତି
କଅଁଳାଇ କିବା ମାରିବା ଧରି ।
ନାସ୍ତିକ ଯୁଗରେ ଜନମ ହୋଇଛି
ଆସ୍ତିକ ବୋଲି ବା କହିବ କିଏ ?
ନାସ୍ତିକ ଆସ୍ତିକ ଭକ୍ତ ଅଭକତ
କେବଳ ମାତର ଜାଣନ୍ତି ସିଏ ।

ଆହେ କୃଷ୍ଣଚନ୍ଦ୍ର, କର ହେ ଉଦ୍ଧାର
ବହୁ ଦୁଃଖଶୋକ ସାଗରୁ ହେରି,
ବୁଢ଼ା ବୟସରେ ଯୋଷରା କାହିଁକି
ପାଇବ କି ଭେଟ ହୋଇଲେ ଯୋଗୀ ?
ହଅନା ହଅନା ସେଗର ବିକାର
ହାତଗୋଡ଼ ଛଡ଼ା କେହି ତ ନାହିଁ,
ଜରାଜର୍ଜ୍ଜରି ଏବେ ହେଲି ଅବସ୍ଥିବ
କାହାକୁ ଏଥର ବହିବ ଗୃହିଁ !

— — —

# ରାଜସୂୟ ଯଜ୍ଞ

ଶୁଣିଲେ ଶ୍ରୀକୃଷ୍ଣ ମଗଧାଧିପତି
ଦିଗ୍‌ବିଜୟେ ଯାଇଁ ଦେଶଠାପାକ,
ମନ୍ତ୍ରି ଦେଇଅଛୁ ତାଙ୍କୁ ବ ଗ୍ରହନ
ଏଇନା ପଡ଼ୁଛି ଉଚ୍ଚରେ ଡାକ ।
ଯେଉଁ ସବୁ ରଜା ଅମାନ୍ୟ ହୋଇଲେ
ତାଙ୍କୁ ବାନ୍ଧିଆଣି କରୁଛି ବନ୍ଦୀ,
ଅଳପ ନୁହନ୍ତି ଚଉର ଊଣା ଲକ୍ଷେ
ସଭିଙ୍କୁ ଦେଇଛି ଆକଟେ ଛନ୍ଦ ।
ତାଙ୍କ ରାଜ୍ୟସବୁ ଛାରଖାର କରି
ମଉଜ କରୁଛି ମଗଧେ ବସି,
ସେମାନଙ୍କ ଭାର୍ଯ୍ୟା ପୁଅଝିଅ ପ୍ରଜା
ସମସ୍ତଙ୍କ ସୁଖ ଦେଇଛି ଧ୍ୱଂସି ।
ନରକାସୁରକୁ ବଳିଲା ତ ଇଏ
ସିଏ ବାନ୍ଧିଥିଲା ଷୋଳ ହଜାର,
ସମସ୍ତେ ଯୁବତୀ ସମସ୍ତେ କୁମାରୀ
ବାହାହେବା ଇଚ୍ଛା ଥିଲା ତାହାର ।
ଏହାର ପାପ ଇଚ୍ଛା ସବୁ ଦେବ ଦଳ
ଶିବଙ୍କ ପାଖରେ ମସ୍ତକ କାଟି,
କେତେ ଦୁଃସାହସ ନରହତ୍ୟା କରି
ଗରବରେ ପୁଣି ଫୁଲାଏ ଛାତି ।

ଏତେ ରଜା ଯଦି ବନ୍ଧନେ ରହିବେ
ରାଜସୂୟ ଯଜ୍ଞ ହେବ କପରି ?
ଦିନୁଦିନ ପାପ ବଢ଼ିଲା ତ ବେଶୀ
ରାମ ମାରୁଥିଲେ ତାହାକୁ ଧରି ।
ବାରଣ କରି ମୁଁ ଛଡ଼ାଇଣ ଦେଲି
ଫଳିଲା ତାହାର ଏ ପରିଣାମ,
ଦୁଷ୍ଟ ନିବାରିବା ପାଇଁ କି ଆସି ମୁଁ
କାହିଁକି କଲି ମୁଁ ଏମନ କାମ ?
ଲଲାଟ ଟିକିଏ କରିଲେ କୁଂଚିତ
ଆଖି ବୁଜି କରି ବସିଲେ ଭାଳି,
କପାଳର ଚମ ଚପୁଡ଼ି ହେଲା କି
ଅଦୃଷ୍ଟ ପଦାକୁ ଆସିଲା ଗଳି ।
ମୁହୂର୍ତ୍ତିକ ପରେ ଉଠି ଠିଆହେଲେ
ହସିଲେ ଟିକିଏ ହାଇଏ ମାରି,
ଆଖି ବୁଜି କରି ଦେଖିଲେ କପରି
ତାର ଅଦୃଷ୍ଟକୁ ଦେଲେ ତ ବାରି ।
ଏକାବେଳକରେ ଲକ୍ଷେ ରଜା ମୁକ୍ତ
ଜଣକ ମରଣେ ଅତି ଉତ୍ତମ,
ରାଜସୂୟ ଯଜ୍ଞ କରାଇବି ଏବେ
ଏହି ତ କେବଳ ଯୋଗ ପରମ ।
ଭବିଷ୍ୟତ କଥା ପଡ଼ିଲା ମନରେ
ରାଜସୂୟ ବେଳ ପଡ଼ିଲା ଏବେ,
ଯୁଧିଷ୍ଠିରଙ୍କୁ ମୁଁ ଜଣାଏ ବହନ
ଏ କାମରେ କିଆଁ ଉଛୁର ତେବେ ?
ନାରଦ ଆସିଲେ ସେଇଠି କହିଲେ
ଧର୍ମ କହିଥିଲେ ତାହାଙ୍କୁ ଯାହା,
ଯୋଗୀର ଲାଳସା ଯୋଉଥି ପାଇଁକି
ବଇଦ ବତାଇ ଦେଲାଟି ତାହା ।

ନାରଦଙ୍କ ହାତେ		କହି ପଠାଇଲେ
"ଯୁଧିଷ୍ଠିର ଏଥର କରନ୍ତୁ ଯଜ୍ଞ,
ଭୋଗିବେ ଅଚିରେ		ତାର ପରିଣାମ
ଲଭିବେ ବହୁତ ସୁଖ ସୌଭାଗ୍ୟ ।"
ମୟ ବୋଲି ଯେଉଁ		ଅସୁର ଶିଳ୍ପୀ
ମରୁଥିଲା ଦହେ ଖାଣ୍ଡବ ବନେ,
ଅର୍ଜୁନଙ୍କ ପାଖେ		ଶରଣ ପଶିଲା
ରଖିଲେ ସେ ତାକୁ କରୁଣ ମନେ ।
ଶ୍ରୀକୃଷ୍ଣ ତାହାଙ୍କୁ		ସୁଣିଲେ ନିଭୃତେ
ଆଜ୍ଞା ପରମାଣେ ଆସିଲା ମୟ,
କହିଲେ ତାହାଙ୍କୁ		ଅତି ଆକଟରେ
ଇନ୍ଦ୍ରପ୍ରସ୍ଥେ ଗଢ଼ି ଦିଅ ଆଳୟ ।
ଗଢ଼ିଦେଲା ସିଏ		ସଭା ଘରଟିଏ
କାଚ ଓ ସ୍ଫଟିକ ମିଶାଇ କରି,
କାଏ ଜଳ, କାଏ		ସ୍ଥଳ ବୋଲି କରି
ଦେଖିଲେ କେବେହେଁ ହୁଏନା ବାରି ।
ଏଥିରେ କି ଅଛି		ଭବିଷ୍ୟତ ଚିନ୍ତା
ମହାଭାରତର ହେବ କାରଣ,
ଅଲିଭା ଲେଖା ଏ		ଅଦୃଷ୍ଟର ଲିପି
ତାକୁ କେ ପାରିବ କରି ବାରଣ !
ଏକା ପାଣ୍ଡବେ ତ		ପାରିବେନି କେବେ
ଜରାସନ୍ଧଟାକୁ ନ ଦେଲେ ମାରି,
ଏଇନା ସେ ହେଲା		ସବୁଠାରୁ ଦୁଷ୍ଟ
ତେଣୁ ତ ଧର୍ମର ବଡ଼ ଭଗାରି ।
ରାଜସୂୟ ଯଜ୍ଞ		ବେଳ ପହଞ୍ଚିଲା
ଯୁଧିଷ୍ଠିର ନିଶ୍ଚେ କରିବେ ଯାଗ,
ନିମନ୍ତ୍ରଣ କରି		ଆଣନ୍ତୁ ରଜାଙ୍କୁ
କେ ଆସେ ନ ଆସେ ଦେଖେଁ ମୁଁ ଆଗ ।

ଯୁଧିଷ୍ଠିରେ କହି କଲେ ଆୟୋଜନ
ରଜାଙ୍କୁ ଆଣିଲେ ଆମନ୍ତ୍ରି କରି,
ଯିଏ ନ ଆସିଲେ ସମରେ ହରାଇ
ପାଣ୍ଡବ ତାହାଙ୍କୁ ଆଣିଲେ ଧରି ।
ଲଙ୍କାଠାରୁ ବ୍ରହ୍ମ- ଦେଶ ପରିଯନ୍ତ
ଯିଏ ଯେଉଁଠାରେ ଯେତେକ ରଜା,
ଆସିଲେ ସମସ୍ତେ କିନ୍ତୁ ଜରାସନ୍ଧ
ଏକା ଆସିଲାନି ଏଇ ତ ମଜା ।
ଏଇଠି ଅଦୃଷ୍ଟ ହସି ହସି ଅସେ
ଅଳପ ଦିନରେ ହସିବ ସଫା,
ସଂସାର ସଙ୍କଟରେ ଧରମ ସଙ୍କଟରେ
ଚିରଦିନ ପାଇଁ ହୋଇବ ରଫା ।
ସାଙ୍ଗସାଥୀଙ୍କର ଅଦୃଷ୍ଟ ହୋଇବ
ଏକା ସୂତାକରେ ନିଗଡ଼େ ବନ୍ଧା,
ସେ ବନ୍ଧନ ଆଉ ଫିଟିଯିବ ନାହିଁ
ସରିଯିବ ସବୁ ସଂସାର-ଧନ୍ଦା ।
ଜରାସନ୍ଧ ମୂର୍ଖ ଶ୍ରୀକୃଷ୍ଣ ବଇରି
ପାଣ୍ଡବଙ୍କ ବନ୍ଧୁ ବୋଲି ସେ ଜାଣେ,
ପାଣ୍ଡବ ଡାକିଲେ ଆସନ୍ତା କି ସିଏ
ଦୁଷ୍ଟଙ୍କ ଉପରେ ଦୁଷ୍ଟ ସେ ଜଣେ ।
ଆସୁ ଅବା ମରୁ କରିବ ଉପାୟ
ଭୀମ ଅର୍ଜୁନଙ୍କୁ ନେଇ ମୁଁ ଯିବି,
ସମର-ରଙ୍କା ସେ ଯୁଦ୍ଧ କରିବାକୁ
ବାକି ମାରି ତାକୁ ଡାକିଆଣିବି ।
ଦୁଇ ଜଣ ମଧ୍ୟେ ହେବ ସେ ସମର
ଭୀମକୁ କରିବ ଆଗ ପସନ୍ଦ,
ଏହି ଉପାୟରେ ଦଳିବ ତାହାକୁ
ତାହାର କରମ କରିବ ମନ୍ଦ ।

ବନ୍ଦୀ ରଜାଙ୍କୁ ମୁଁ ମୁକୁଳାଇ ଦେବ
ରାଜସୂୟ ଯଜ୍ଞେ ଦେବେ ସେ ଯୋଗ,
ଯୁଧିଷ୍ଠିର ହେବେ ରାଜ-ଅଧିରାଜ
ବିପୁଳ ଧରଣୀ କରିବେ ଭୋଗ ।
ଏହିତକ ଭାବି ଚଳେ ଇନ୍ଦ୍ରପ୍ରସ୍ଥ
ଭୀମ ଅର୍ଜୁନଙ୍କୁ ଡାକିଲେ ପାଶେ,
କହିଲେ ତାହାଙ୍କୁ ସବୁ କଥାଯାକ
ବାହାରିଲେ ଦୁହେଁ ସଙ୍ଗର ଆଶେ ।
ବେଶ ବଦଳିଲେ ବ୍ରାହ୍ମଣ ସାଜିଲେ
ଜଟା ଚଇତନ ବକ୍ଷେ କପାଳେ,
ସୁଗଠିତ ତନୁ ସୁବିଶାଳ ବକ୍ଷ
ମୁହେଁ କ୍ଷାତ୍ରତେଜ ଉଜ୍ଜ୍ୱଳେ ଜଳେ ।
ମିଳିଲେ ମଗଧ- ରାଜ୍ୟର ସୀମାରେ
ଦେଖିଲେ ପର୍ବତ-ରକ୍ଷିତ ଦେଶ,
ପାଞ୍ଚଟା ପର୍ବତ ଦ୍ୱାରରୁ ବଳନ୍ତ
ଶତ୍ରୁ କରିପାରେ ନାହିଁ ପ୍ରବେଶ ।
ଦ୍ୱାରେ ତିନ ଭେରୀ ବାଜଇ ମନକୁ
ଶତ୍ରୁ କେହି ଗଲେ ଦୁଆର ପାଶେ,
ଦୁଇ ବିଷଧର ସଦା ଫଁ ଫଁ
ଅଜଣା କେ ଗଲେ ସେଇନା ଦଂଶେ ।
ଶ୍ରୀକୃଷ୍ଣ କହିଲେ, "କପରି ପଶିବା
ବଡ଼ ଦୁର୍ଗମ ଏ ମଗଧପୁରୀ,"
ଭୀମ ଉତ୍ତରିଲେ, "ଟିକି ମୋରଠାରୁ
ଭାଙ୍ଗିଭୁଙ୍ଗି ସବୁ ଦେବ ମୁଁ ଚୂରି ।"
ଶ୍ରୀକୃଷ୍ଣ କହିଲେ, "ନଦୀ ଶର-ସାପ
ଏ କାମଟି ଥାଉ ମୋହର ପାଇଁ,"
ଅର୍ଜୁନ କହିଲେ, "ପବନା ଶରରେ
ଭେରୀ ଶବଦକୁ ଦେବି ଉଡ଼ାଇ ।"

ଶ୍ରୀକୃଷ୍ଣ ସ୍ମରିଲେ    ବିନତାନନ୍ଦନ
ସାପ ଲୁଚିଗଲେ ପାତାଳେ ପଶି,
ଭୀମ ପ୍ରହାରିଲେ    ପାହାଡ଼କୁ ବାଧା
ସେଗୁଡ଼ାକ ଗଲେ ଭୂଇଁରେ ବସି ।
ଅର୍ଜୁନ ବନ୍ଧିଲେ    ପବନ-ମାର୍ଗଣ
ଭେରୀନାଦ ଗଲା ତଣ୍ଟିଁରେ ଭସି,
ପଶିଲେ ତିନେହେଁ    ରାଜ ନଅରରେ
ଜରାସନ୍ଧ ଥିଲା ହୋମରେ ବସି ।
କଲା ସତକାର    ବିଧି ଅନୁସର
ବସାଇଲା ଦିବ୍ୟ ଆସନ ଦେଇ,
ପଚାରିଲା ଧୀରେ,    "ହେ ଦ୍ୱିଜଉତ୍ତମ
କହନ୍ତୁ ଆସିଲେ କଅଣ ପାଇଁ ?"
ଚକିତ ହୋଇଲା    ଦେଖି କ୍ଷାତ୍ରବପୁ
ଶଷ୍ଟରେ ଶଙ୍ଖରେ ଅସ୍ତ୍ରର ଲେଖା,
ପଚାରିଲା ପୁଣି    କହ ସତକର
"କିଏ ତୁମେ ଆସି ଦେଇଛ ଦେଖା ?"
ଶ୍ରୀକୃଷ୍ଣ କହିଲେ,    "ଚିହ୍ନିପାରୁ ନାହିଁ ?
ତୁମର ମୋହର ବହୁଠି ଦେଖା,
ଭୁଲିଗଲ କହେ    କଂସର ମରଣ
ତୁମ ଆକ୍ରମଣ ଅଦୃଷ୍ଟ ଲେଖା ?
ମୁଁ ସେହି ଶ୍ରୀକୃଷ୍ଣ    ସିଏ ଅରଜୁନ
ଇଏ ଭୀମସେନ ପବନ ପୁଅ,
ଗୋଟିଏ ଜିନିଷ    ମାଗିବୁଁ ତୁମକୁ
ଦେବ କି ନ ଦେବ ଫିଟାଇ କହ ।"
ଜରାସନ୍ଧ ଶୁଣି    ହସିଲା ଟିକିଏ
କହିଲା, "ନିଶ୍ଚୟ ଦେବି ମୋ ଧଣ,"
ଶ୍ରୀକୃଷ୍ଣ କହିଲେ,    "ଆଉ କିଛି ନୁହେଁ,
ଆମକୁ କେବଳ ଦିଅ ହେ ରଣ ।"

ଠୋଅ ଠୋଅ କରି ହସିଲା ରାକ୍ଷସ
କହିଲା, "ଗଉଡ଼, ପାସୋରିଦେଲୁ,
ମୋତେ ଡରି ପରା ମଥୁରା ବଟେଜ
ସାଗରଗରଭେ ଶରଣ ନେଲୁ !
ଏ ଯେଉଁ ଯୋଡ଼ାଏ ଟୁଆଙ୍କୁ ଆଣିଛୁ
ସେ କାହୁଁ ଜାଣିବେ ସମର କଥା ?
କାହିଁ ଦୁଃସାହସ କଲୁ ରେ କୃଷ୍ଣ ତୁ
ବୃଥାରେ ହରାଇ ବସିବୁ ମଥା ।"
ସତ୍ୟ କରୁଅଛି ଦେବି ମୁଁ ନିଷ୍ଟୟ
କିଏ ସେ ମୋ ସଙ୍ଗେ କରିବ ରଣ ?
ଅଠର ଥର ତ ହାରି ପଳାଇଲୁ
ଜାଣିଛି ମୁଁ ତୋର ପାରିଲାପଣ ।
ଆଉ ଏ ଅର୍ଜୁନ କଅଁଳା ପିଲାଟା
ହାରିଲେ ଜିଣିଲେ ନାହିଁ ପ୍ରଶଂସା,
କାହିଁକି ତା ସଙ୍ଗେ କରିବି ସମର
ମିଛଟାରେ ହେବି ମୁଁ ଲୋକହସା ।
ଭୀମଟା ଟିକିଏ ଦିଶୁଛି ଆଖିକୁ
ତାହାରି ସଙ୍ଗରେ କରିବି ରଣ,
କାହିଁକି ମିଛରେ ଯୁଦ୍ଧ କରାଇବୁ
ଦେଖିବା ପାଇଁକି ତାର ମରଣ !"
ଭୀମ ଗରଜିଲା କହିଲା ହସିଣ
"ଦେଖିବା ସମରେ କେ କା'କୁ ମାରେ,"
ଜରାସନ୍ଧ ଶୁଣି ଦୁଇ ଗଦା ଆଣି
ଫିଙ୍ଗିଦେଲା ସେଠି ଭୀମ ଆଗରେ ।
କହିଲା, "ବାଛି ନେ ଯାହାକୁ ତୋ ଇଚ୍ଛା
କେତେ ବଳ ଅଛି ଦେଖିବି ତୋର,
ଏତେ ରେ ସାହସ କୋଉ ହାତରେ ତୁ
ଟେକିବୁ ଭୀଷଣ ଗଦାକୁ ମୋର ।"

ଭୀମ ନେଲା ତୋଳି ଗଦାଟାଏ ବାଛି
ହୋଇଲା ଧମର ପ୍ରଚଣ୍ଡତର,
ଦୁଇ ଐରାବତ ଲଢ଼ନ୍ତି କି ଆଉ
ଶୁଭିଲା ସବୁଠି ଗର୍ଜ୍ଜନ ଘୋର ।
ଶେଷେ ଜରାସନ୍ଧ ପଡ଼ିଲା ଭୂଇଁରେ
ଭୀମ ତା ଛାତିରେ ବସିଲା ମାଡ଼ି,
ଶ୍ରୀକୃଷ୍ଣ ଗୋଟାଇ ଆଣିଲେ କୁଟାଟା
ଭୀମକୁ ଦେଖାଇ ଦେଲେ ତା ଫାଡ଼ି ।
ଭୀମ ପାଇଗଲା ତା ମରଣ ଭେଦ
ମାଡ଼ି ଠିଆହେଲା ଜଂଘ ଉପରେ,
ଆର ଗୋଡ଼ଟାକୁ ଟେକିଦେଲା ଊର୍ଦ୍ଧ୍ୱେ
ଜରା ଦୁଇ ଫାଳ ସେହିଠାକରେ ।
ବନ୍ଦୀଘରେ ପଶି ମୁକୁଳାଇ ଦେଲେ
ସବୁ ରାଜାଯାକ ଯେ ଥିଲେ ବନ୍ଦୀ,
କରୁଣା ମିଶାଇ କହିଲେ ତାହାଙ୍କୁ
"ହୋଇଅଛ ସବୁ ବହୁତ ଧନ୍ଦି ।
ଯାଅ ଯାଅ ନିଜ ରାଜ୍ୟକୁ ଏଇନା
ରାଜସୂୟ ଯଜ୍ଞେ ସବୁ ଆସିବ,
ଆଉ ବହୁ ରାଜା ଆସିବେ ସେଠିକି
ମିଳିମିଶି ସବୁ ଯଜ୍ଞ ଦେଖିବ ।
ସଙ୍ଗେ ନେଇଥିବ ମୂଲ୍ୟବାନ ଭେଟି
ଯୁଧିଷ୍ଠିରଙ୍କୁ ଦେଇ ପୂଜିବ ସେଠି,
ଯୁଧିଷ୍ଠିର ହେବେ ସବୁଠାରୁ ବଡ଼
ଆଉ ସବୁ ରଜା ଖଟିବେ ବେଠି ।"
ଜରାସନ୍ଧ ସୁତ ସହଦେବେ ଡାକି
ବାପ ରାଇଜରେ କରିଲେ ରାଜା,
ଜରାସନ୍ଧ ମଲା ଶୋକ ବଦଳରେ
ଲାଗିଲା ଉତ୍ସବ ବାଜିଲା ବାଜା ।

ବୁଝାଇ ସୁଝାଇ ଶିଖାଇଲେ ମାତ
କହିଲେ, "ସୁଖରେ କରିବୁ ରାଜ୍ୟ,
ଦୁଷ୍ଟ ଦୁରାତ୍ମା ହେବୁ ନାହିଁ ପୁଅ
ହୋଇଲେ ଭୋଗିବୁ ବାପର ଭାଗ୍ୟ ।
ଇନ୍ଦ୍ରପ୍ରସ୍ଥେ ଯଜ୍ଞ କରୁଛନ୍ତି ଧର୍ମ
ଯିବୁ ତୁ ସେଠିକି କହିଲି ତୋତେ,
ଯିବୁ ଭେଟିଦ୍ରବ୍ୟ ନେଇ ତୋ ସଂଗରେ
ମଣି ମୁକ୍ତା ଧନ ପାଇବୁ ଯେତେ ।"

———

# ଦନ୍ତବକ୍ର ଓ ଶିଶୁପାଳ ବଧ

ଜରାସନ୍ଧ ଦନ୍ତ-    ବକ୍ର ଦୁଇ ଦୁଷ୍ଟ
ପିଲାଟି ଦିନରୁ ପରମ ମିତ୍ର,
ସଂପଦେ ବିପଦେ    ଦୁହେଁ ଦୁହିଁଙ୍କର
ଦେଖଣ ମହୁଚ୍ଛି କରନ୍ତି ହିତ ।
ଜରାସନ୍ଧ ମଲା    ଶୁଣି ଦନ୍ତବକ୍ର
ଧାଇଁଲା କୃଷ୍ଣଙ୍କୁ ମାରିବା ପାଇଁ,
ଶ୍ରୀକୃଷ୍ଣ ଧଇଲେ    କୌମୋଦକୀ ଗଦା
ଦନ୍ତବକ୍ର ଆଗେ ରହିଲେ ଯାଇଁ ।
କଥାରେ କଥାରେ    ହେଲା କଳିଗୋଳ
ଅସ୍ତ୍ରେ ସମର ହୋଇଲେ ପରେ,
ଗଦା ପ୍ରହାରିଲେ    କୃଷ୍ଣ ତା ମୁଣ୍ଡରେ
ଦନ୍ତବକ୍ର ମରି ପଡ଼ିଲା ତଳେ ।
କୃଷ୍ଣ ଫାଲଗୁନୀ    ଭୀମ ତିନି ଜଣ
ଇନ୍ଦ୍ରପ୍ରସ୍ଥ ଗଲେ ହରଷ ମନେ,
ଯୁଧିଷ୍ଠିର ତେଣେ    ଯହିଁ ବସିଥିଲେ
ଚାହିଁ ଉତ୍କଣ୍ଠା ବେନି ନୟନେ ।
ପ୍ରବେଶି ପ୍ରଣାମ    କରି ଯୁଧିଷ୍ଠିରଙ୍କୁ
କହିଲେ ତାଙ୍କର ବିଜୟ କଥା,
ଯୁଧିଷ୍ଠିର ଶୁଣି    ହୋଇଲେ ହରଷ
ଆଶୀର୍ବାଦ କଲେ ଆଉଁସି ମଥା ।

ଯଜ୍ଞ କାମ ଏବେ ହୋଇଲା ଆରମ୍ଭ
ଅର୍ଘ୍ୟ କା'କୁ ଦେବେ ପୁଛିଲେ ଧର୍ମ,
ଭୀଷ୍ମ ବସିଥିଲେ କହିଲେ, "କୃଷ୍ଣଙ୍କୁ
ଦେଇ ଆଗ ଅର୍ଘ୍ୟ କରଯା କର୍ମ ।"
ଶିଶୁପାଳ ଶୁଣି ଗର୍ଜିଲା ରାଗରେ
ଭୀଷ୍ମଙ୍କୁ ହିଂଗାସି କହିଲା କେତେ,
କହିଲା ଆତୁର "କୋଉ ରାଜାପୁଅ,
ରଜାରେ ତୋ କୃଷ୍ଣ କହିଲୁ ମୋତେ ?
ଏତେ ବଡ଼ ରଜା ଏଠି ବସିଛନ୍ତି
କେହି ତୋ ଆଖିକି ଦିଶିଲେ ନାହିଁ,
ଘୁର ଗଉଡ଼ଟା କି ମନ୍ତ୍ର କରିଛି
କେବଳ ତାହାକୁ ବସିଛୁ ଗୁହିଁ ।"
କୃଷ୍ଣଙ୍କୁ ହିଂଗାସି କହିଲା ସେପରି
"ଅର୍ଘ୍ୟ ନେବା ପାଇଁ ହେଲୁଣି ଯୋଗ୍ୟ ?
ଯୁଧିଷ୍ଠିର ମଧ ଛନ୍ତୁ ବଳି ଅନ୍ଧ
କୁକୁରେ ଖାଅନ୍ତି ଯଜ୍ଞର ଭୋଗ ।
ରଜାରାଜୁଡ଼ାଙ୍କୁ ନିମନ୍ତ୍ରଣ କରି
ଅପମାନ କାହିଁ ଦେଉଛ ଏବେ ?
ତୁମେ ଜାରଜକୁ ସେ ମ୍ଲେଚ୍ଛ ଗଉଡ଼
ମଣିକାଞ୍ଚନର ଯୋଗ ତ ହେବେ ।
ରଜାସମାଜରେ ପ୍ରଜାଟାଏ ବଡ଼
ସେଥିରେ ସେ ପୁଣି ଅଛବ ଜାତି,
କୋଉ ଗୁଣ ଦେଖି କୋଉ ରାଜ୍ୟ ଦେଖି
ଧନ ବୋଲି ତାକୁ ବାଛୁ ନାହାନ୍ତି ।
ହାତୁରେ ବଧାତା କି ନ କଲା ସତେ
ଅନ୍ଧହାତେ ଟେକିଦେଲା ଦର୍ପଣ,
ଆରେ ରେ ଗଉଡ଼ ଏଇତକରେ କି
ବଡ଼ ହୋଇଯିବୁ ବେଶ୍ୱଆପଣ ।"

କୃଷ୍ଣ ଶୁଣି ଶୁଣି ଟିକେ ହସିଦେଇ
ମୁହଁଟିକୁ ପୋତି ହେଲେ ମଉନ,
ଶିଶୁପାଳର ତ ବଢ଼ିଲା ସାହସ
ଗାଇଲା ତ ବେଶୀ ତାଙ୍କ ଦୁର୍ଗୁଣ ।
ସହି ହେଲା ନାହିଁ ଉଠି ଠିଆହୋଇ
ସଭାକୁ ଅନାଇଁ କହିଲେ କ୍ଷୋଭେ,
"ଶୁଣିଲ ତ ସବୁ ଆଉ ସହିବନି
କେତେବାର ଯାହା କରୁଛି ଏବେ ।
ଦୋଷ ଦେବେ ନାହିଁ ମହତ କାମ ଏ
ଯଜ୍ଞଟି କରନ୍ତୁ ସୁସମାହିତ,
ଶିଶୁପାଳକୁ ମୁଁ ଦେଖିବି ପଛରେ
ଜାଣିରଖ ତାର ହେବ ଅହିତ ।
ମାଉସୀର ପୁଅ ଭାଇ ସେ ମୋହର
ମାଉସୀର ପାଇଁ କହୁନି କିଛି,
ବଡ଼ ସାନ ଜ୍ଞାନ ବଡ଼ ଭାଇ ମାନ୍ୟ
ଏଇଠାରୁ ତଳେ ନାହିଁ ତ କିଛି କିଛି !"
ଶିଶୁପାଳ ପୁଣି କହିଲା ଗରଜି,
"ତୋହର ପାଖରେ ଅଛି ସେ ମାନ,
ରୁକ୍ମଣୀକୁ ଯେବେ ଛଡ଼ାଇ ଆଣିଲୁ
କୋଉଠେଇ ଥିଲା ତୋ ବଡ଼ ସାନ ?"
ଶ୍ରୀକୃଷ୍ଣ ଏଥର ସହି ପାରିଲେନି
ସୁଦର୍ଶନ ଚକ୍ରେ ଛେଦିଦେଲେ ମୁଣ୍ଡ,
ଭୂଇଁ ପରେ ପଡ଼ି ରକତରେ ବୁଡ଼ି
ଧୂଳି ଧୂସରିତ ହେଲା ତା ପିଣ୍ଡ ।
ତେଜଟାଏ ତାହା ଦେହରୁ ବାହାରି
ଶ୍ରୀକୃଷ୍ଣ ଶରୀରେ ପଶିଲା ଆସି,
ସକଳେ ଚକିତ ମହାଭୟେ ଭୀତ
ରହିଲେ ସମସ୍ତେ ନୀରବେ ବସି ।

ଶାଲ୍ୱ ଦନ୍ତବକ୍ର ଜରାଶିଶୁପାଳ
ଗୁରୁ ଜଣଙ୍କର ଅଭେଦ ପ୍ରୀତି,
ଯୋଉ ଆଡ଼େ ଗଲେ ହରୁ କରୁ କଲେ
ତାଙ୍କର ଦାଉରେ କମ୍ପିଲା କ୍ଷିତି ।
ଶିଶୁପାଳ ମଲା ଶାଲ୍ୱ ତା ଶୁଣିଲା
ଦ୍ୱାରକାରେ ପଶି ମାୟା ସମର,
କରି ଯାଦବଙ୍କୁ କଲା ହଇରାଣ
ତାଙ୍କ ଘରଦ୍ୱାର କଲା ଜର୍ଜର ।
ଶ୍ରୀକୃଷ୍ଣ ଶୁଣିଲେ ଇନ୍ଦ୍ରପ୍ରସ୍ଥେ ଥାଇ
ଚଳିଲେ ଦ୍ୱାରକା ମେଲାଣି ନେଇ,
ସୁଦର୍ଶନ ଧରି ତା ମାୟା ସଂହାରି
ଧରଣୀରେ ଶିର ଦେଲେ ଗଡ଼ାଇ ।
କୃଷ୍ଣ ଅବତାର ଯାହାଙ୍କ ପାଇଁକି
ସେହିସବୁ ଆଗ ହୋଇଲେ ହତ,
ଆଉ ଯେଉଁମାନେ ଅଛନ୍ତି ଏଇନା
ପାଣ୍ଡବଙ୍କ ହାତେ ହେବେ ନିହତ ।
ଦୁର୍ଯ୍ୟୋଧନ ଦୁଃଶା- ସନ ଶତେ ଭାଇ
ତାଙ୍କର ଭଣଜା ଜୟଦ୍ରଥ,
ଏହିମାନେ ସବୁ ଦୁଷ୍ଟ ଦୁରାଶୟ
ଶକୁନି ଦେଖାଏ କପଟ ପଥ ।
ଭୀଷ୍ମ ଦ୍ରୋଣ କର୍ଣ୍ଣ ଶଲ୍ୟ ସଦାଶୟ
କିନ୍ତୁ ଦୁଷ୍ଟଙ୍କର ହୋଇଲେ ସାହା,
ସଂସର୍ଗ ଦୋଷରେ ହୋଇଲେ ଦୂଷିତ
ସହିବେ ନାହିଁ ତା ଜଗତନାହା ।
କୁରୁକ୍ଷେତ୍ରେ ହେବ ମହତ ସମର
ଅଠର ଅକ୍ଷୌଣୀ ମିଳିବେ ଆସି,
ଅଠର ଅକ୍ଷୌଣୀ ଅଠର ଦିବସେ
ରକତ ସରିତେ ଯିବେଟି ଭାସି ।

———

# ସୁଦାମ ପ୍ରତି କୃପା

କୃଷ୍ଣ ଯେତେବେଳେ ପାଠ ପଢ଼ୁଥିଲେ
ଗୁରୁଘରେ ରହି କାଶୀଧାମରେ,
ଆଉ ପିଲାଟିଏ ଗରିବ ବ୍ରାହ୍ମଣ
ଘର ତାର କୋଉ ପଡ଼ାଗ୍ରାମରେ ।
ସେ ବି ପଢ଼ୁଥିଲା ପାଠ ସେହିଠାରେ
କୃଷ୍ଣଙ୍କ ସଙ୍ଗରେ ମିଳାଇ ମନ,
ଦୁହିଁଙ୍କ ଭିତରେ ପାଣି ଗଳୁଇନ
କ୍ଷୀର ନୀର ପରି ସେ ଦୁଇ ଜଣ ।
ପଢ଼ିବା ଖେଳିବା ସବୁଥିରେ ସାଥି
ପାଠ ପଢ଼ିବାରେ ନୁହନ୍ତି ଊଣା,
ଆଉ ଯେତେ ପିଲା ପାଠ ପଢ଼ୁଥିଲେ
ତାଙ୍କ ସଙ୍ଗେ କେହି ନୁହନ୍ତି ଗଣା ।
ଆଉ ଯୋଉ ପିଲା ଶିଖନ୍ତି ଦିନକେ
ସେ ଦୁହିଁଙ୍କୁ ଲାଗେ ଜମା ଘଡ଼ିଏ,
ସରସ୍ୱତୀଙ୍କର ଭାରି ଅନୁଗ୍ରହ
ସତେ କି ତାଙ୍କର ପୁଅ ଯୋଡ଼ିଏ !
ଖେଳରେ ଖେଳରେ କେତେ କଥାଭାଷା
କେତେ ହସଖୁସି ଗୋଟିଏ ମନ,
କେହି କାହା ସଙ୍ଗେ କଳି କରେ ନାହିଁ
ଖେଳ କଉତୁକେ ସାରନ୍ତି ଦିନ ।

ବାପ ମାଆ ଘର- ଦୁଆର ସକଳ
ପଡ଼େ ନାହିଁ କେବେ ଦୁହିଁଙ୍କ ମନେ,
ହସି ଖେଳ ପଢ଼ି ଦିନ ସାରି ଦ୍ୟନ୍ତି
ସୁଖରେ ଥାଆନ୍ତି ଗୁରୁସଦନେ ।
ସବୁ ପାଠ ପଢ଼ି ସାରିଲେ ସହଜ
ଏଥର ସେ ଫେରି ଆସିବେ ଘରେ,
ସେଥିପାଇଁ ସୁଖ ନାହିଁ କା ମନରେ
ମନ ଲାଗେ ନାହିଁ ହସ ଖେଳରେ ।
କୃଷ୍ଣ ଦେଲେ ଗୁରୁ- ମଲା ପୁଅ ଆଣି
ଗୁରୁପତ୍ନୀ ବୋଇଲେ ଜୀଆଇ କରି,
ସୁଦାମ ଦରିଦ୍ର କି ଦକ୍ଷିଣା ଦେବ
ଶୋଇଲା ଚରଣେ ଭକତି କରି ।
ବିଦାବିଦ ହୋଇ ଆସିବା ବେଳରେ
କେହି ଛାଡ଼େ ନାହିଁ କାହାର କରକୁ,
କାନ୍ଦିଲେ ବହୁତ ଧରାଧରି ହୋଇ
ଝିଅ ଗଲା ପରି ଶାଶୁଘରକୁ ।
ପିଲାଦିନ ସ୍ନେହ କେଡ଼େକ ମଧୁର
ଅନ୍ତରେ ଅନ୍ତରେ ଥାଏ ସେ ପୂରି,
ଯେତେ କଳି କଲେ ମାଡ଼ଗୋଳ ହେଲେ
ସେ ମାଧୁରୀ କେବେ ହୁଏନାହିଁ ଚୂରି ।
ସେ ସ୍ନେହ ନିର୍ମଳ ସଜ ଫୁଲ ପରି
ତାର ସରଳତା ଭିନ୍ନ ପ୍ରକାର,
ତାହାର ଦେହରେ ଦାଗ ପଡ଼େ ନାହିଁ
ପଡ଼େ ନାହିଁ ତହିଁ କୁଟିଳ ଗାର ।
ସେଦିନର ସ୍ମୃତି ଅଦ୍ଭୁତ ମଧୁର
ସରଳତା ଥାଏ ତହିଁରେ ପୂରି,
ସଂସାରେ ପଶିଲେ ଗୃହଧନ୍ଦା କଲେ
ସେ ସରଳତା କି ହୁଅଇ ଚୁରି ?

ଜୀବନ ଭିତରେ 'ବାଲ୍ୟ କଇଶୋର
ସେଇଥିପାଇଁ କି ଅଧିକ ମିଠା,
ଦିନ ରାତି ବସି ଯେତେ ଖାଇଲେ ବି
କାହାରିକୁ କେବେ ମାଡ଼େନା ଚିଠା ।
ସେଥିପାଇଁ ଦିନା ଯୌବନେ ପ୍ରଉଢ଼େ
ବାଲ୍ୟଜୀବନଟି ପଡ଼ଇ ମନେ,
ଅତୀତର ସ୍ମୃତି ଅଭୁଲି ସୁଖ ସେ
ମିଳେ ନାହିଁ କେବେ ଆଉ ଜୀବନେ ।
କଇଶୋର ଚାଲା ଟିକେ ଛନ୍ଦ ଛନ୍ଦ
ଚଞ୍ଚଳ, ମନ୍ଥର ଗୋଳିଆ ମିଶା,
ନୁହେ ସ୍ଥିର କାର ନୁହଇ ଫାଟସାର
ନୁହଇ ବି ଉଗ୍ର ପ୍ରବଳ ନିଶା ।
ତାର ମଧୁରତା ବେଶୀ ଉପଭୋଗ୍ୟ
ଗ୍ରାହିକା ଶକତି ଟିକେ ଅଧିକ,
ଯଉବନ ସ୍ମୃତି କରେ ଛଟପଟ
ପୋଡ଼ଇ ହୃଦୟ ତାହାକୁ ଧିକ ।
ପ୍ରଉଢ଼ ଚେତନା ପକ୍ୱା ଦରୁଆ ସେ
ପାସୋରଇ ଦିଏ ମଧୁ ଅତୀତ,
ଭବିଷ୍ୟତ ପାଇଁ 'ବର୍ତ୍ତମାନ ବ୍ୟସ୍ତ
ସଂସାର ଧନ୍ଦାରେ ବେଶୀ ଚକିତ ।
ଏହି ସ୍ମୃତିଟି ହିଁ ଚେତାଇ ଦିଅଇ
ଭବିଷ୍ୟତ ସୁଖ ଗଢ଼ିବା ପାଇଁ, .
ଅତୀତ ହଜିଲେ ସବୁ ହଜିଯାଏ
ଭୂତ ଭବିଷ୍ୟତ ରହଇ ନାହିଁ ।
ଅତୀତଟି ଦିନା 'ଆଦର୍ଶ କାଳର
ତାହା ବିନା କାଳ ହୁଏ 'କରାଳ,
କରାଳ ହେଲେ ତ ଗ୍ରାସ କରିଦିଏ
କବଳେ ପୂରାଇ ଦେଇ ଚିକାଳ ।

ଶ୍ରୀକୃଷ୍ଣ ସୁଦାମ ଉଭୟ ସଂସାରୀ
ଭୁଲିଅଛନ୍ତି କି ବାଲ୍ୟର ସ୍ମୃତି,
କେହି କାହାରିକୁ କେତେବେଳେ କ'ଣ
ଟିକିଏ ହେଲେ କି ଭାବି ନାହାନ୍ତି ?
ଧନୀ ଦରିଦ୍ରର ପୀରତି ତ ଇଏ
ରହିପାରଇ କି କୋଉଠି କାହିଁ !
ତେବେ କ'ଣ ତାଙ୍କ ଦୁହିଁଙ୍କ ଭିତରେ
ସେ ପୀରତି ହଜିଯାଇଛି ? ନାହିଁ ।
ଦ୍ରୋଣ ଦ୍ରୁପଦ ତ ଦୁଇ ବାଲ୍ୟବନ୍ଧୁ
ସତ୍ୟ କରିକରି ବନ୍ଧୁତା ପାଇଁ,
ଦ୍ରୁପଦ ହୋଇଲେ ରଜା ଯେତେବେଳେ
ଦ୍ରୋଣଙ୍କୁ ତ କାହିଁ ଚିହ୍ନିଲେ ନାହିଁ ?
ଅସମ ବନ୍ଧୁତା ନୁହଇ ନିର୍ମଳ
ଉଚ୍ଚ ନୀଚ ଭେଦ ଥାଏଟି ତହିଁ,
ପ୍ରାପ୍ତ ସବୁବେଳେ ହୁଏ ବିଡ଼ମ୍ବନା
ଉଭୟ ସେଥିରେ ହୁଅନ୍ତି ଦହି ।
ଗରିବ କରଇ ଅନୁତାପ ଯେବେ
ଧନୀ କରି ବସେ ବିପୁଳ ଗର୍ବ,
ସେଇଥିରେ ଦୁହେଁ ଘାଣ୍ଟି ହୋଇଯାନ୍ତି
ବନ୍ଧୁର ମର୍ଯ୍ୟାଦା ହୁଅଇ ଖର୍ବ ।
ସୁଦାମ ଶ୍ରୀକୃଷ୍ଣ କଲେ ଘରଦ୍ୱାର
ଭୁଲି ପାରିଲେନି ଅତୀତ ସ୍ମୃତି,
ଦୁହେଁ ଦୁହିଁଙ୍କର ରୂପ ଗୁଣ ସବୁ
ଅନ୍ତରେ ଅନ୍ତରେ ହୁଅନ୍ତି ଚିନ୍ତା ।
ଦିନ ଗଡ଼ିଗଲା ବାହାସାହା ହୋଇ
ଯେ ଯାର ସଂସାରେ ରହିଲେ ସିଏ,
କିନ୍ତୁ ଯେ ସୁଦାମ ନିତାନ୍ତ ଦରିଦ୍ର
ତାର ପେଟ ଦାଉ ଜାଣିଲା କିଏ ?

ଖାଇବାକୁ ନାହିଁ ପିନ୍ଧିବାକୁ ନାହିଁ
ସବୁବେଳେ ତାର ପେଟରେ ନିଆଁ,
ତେବେ ବି ଭୁଲିନି ଶ୍ରୀକୃଷ୍ଣଙ୍କୁ ସିଏ
ସବୁବେଳେ ତାଙ୍କୁ ଚିନ୍ତଇ କିଆଁ ?
ସେହି କୁନିଆ ସେହି ସେ ସୁଦାମା
ପିଲାଦିନର ସେ କଅଁଳ ଡାକ,
ସେହି ସରଳତା ସେହି ବନ୍ଧୁତ୍ୱସ୍ନେହ
ରହି ଯାଇଅଛି ଜୀବନଯାକ ।
ନାଆଁଟାକୁ ସତେ ଅବନତ କରି
ଡାକିଲେ କାହାର ବଢ଼ଇ ମାନ ?
ସ୍ନେହର ଲକ୍ଷଣ ସରଳତା ଚିହ୍ନ
ବନ୍ଧୁକୁ କରେନା କେବେହେଁ ସାନ ।
ଆମ ସମାଜରେ ଚଳେ ବରାବର
ବାପା ମାଆ ଭାଇ ଏପରି କରି,
ଡାକନ୍ତି ସବୁଠି ପୁଅ ଝିଅଙ୍କୁ ତ
ନାଆଁଯାକ ସବୁ ବିକୃତ କରି ।
ଦୁଃଖରେ ସୁଖରେ ଗିରସ୍ତ ଭାରିଯା
କୁହାକୁହି ହୋନ୍ତି କୃଷ୍ଣଙ୍କ ଗୁଣ,
ରୂପ ବି ସେପରି ବଖାଣେ ସୁଦାମ
କୋଉଠେଇ ନାହିଁ ଟିକିଏ ଖୁଣ ।
ଦାନରେ ନିପୁଣ ସ୍ନେହରେ ସେ ଭାଇ
ସାଙ୍ଗସାଥିଙ୍କର ହୃଦୟନିଧି,
ଦୟା ଦାକ୍ଷିଣ୍ୟରେ ମୁକୁଳା ତା ହୃଦ
ପରଦୁଃଖକୁ ସେ କୃପା-ବାରିଧି ।
କୃଷ୍ଣେ ଅନୁରାଗ ହୋଇଲା ପ୍ରବଳ
କୃଷ୍ଣଙ୍କୁ ସେ ଭୁଲିପାରିଲା ନାହିଁ,
ସବୁବେଳେ ଖାଲି କୃଷ୍ଣ କୃଷ୍ଣ ହୋଇ
ନୀଳ ଗଗନକୁ ବସିଲା ଚାହିଁ ।

ସେଇଥିଟର ଦେଖେ          କୃଷ୍ଣଙ୍କ ବରଣ
    ଗଗନର ପରି ପୁଣି ଅନନ୍ତ,
ଗଗନ ଭୁବନ          ସବୁ ତ ଶ୍ରୀକୃଷ୍ଣ
    କୋଉଠି ତା ଆଦ୍ୟ କୋଉଠି ଅନ୍ତ !
ଭୁଲିଗଲା ତାର          ଶୋକଶୋଷ ସବୁ
    ପୁଅ ଗଉଯାଙ୍କୁ ମଣିଲା ବଧ,
କୃଷ୍ଣ ବିନା ତାର          ସଂସାର ଅନ୍ଧାର
    କୋଉଠି ଅଣ୍ଟାଳି କରିବ କିସ ?
କୃଷ୍ଣ ଦ୍ୱାରକାରେ          ସୁଦାମର ପର
    ସୁଦାମ ପାଇଁ କି ସଦା ବିକଳ,
ଥରେ ଥରେ ତାଙ୍କ          ଚକା ନୟନରୁ
    ବହିପଡ଼େ କେତେ ଲୋତକ ଜଳ ।
ସୁଦାମ ଦୁଃଖକୁ          ସହିପାରନ୍ତି ନି
    କିନ୍ତୁ ସୁଦାମ ତ ଆସଇ ନାହିଁ,
କିଏ ସେ କହିବ          ଏଠିକି ଆସିବ
    କେତେ ତାହା ପାଇଁ ବସିବ ଗୃହିଁ !
ରୁକ୍ମିଣୀ ପୁଛନ୍ତି,          "କଅଣ ଭାବୁଛ
    ମୁହଁ ତ ଦିଶୁଛି କାନ୍ଦିଲା ପରି,
କହ କହ ନାଥ !          ମୋ ରାଣ ତୁମକୁ
    ପଚାରୁଛି ତୁମ ଚରଣ ଧରି ।"
ଶ୍ରୀକୃଷ୍ଣ କହିଲେ,          "ମୋର ଜଣେ ବନ୍ଧୁ,
    ଭାରି ଗରିବ ସେ ମାଗିବ ନାହିଁ,
ଦେବ ମୁଁ କପଟ          ବଳେ ଯାଚି କରି
    ଦେଲେ ବା ସେ ତାହା ନେବ କି ନାହିଁ !
ନୁହେ ଅଭିମାନୀ          ନାହିଁ ତା ଗରବ
    ମୋର ପାଇଁ ସବୁ ପାସୋରିଯାଏ,
ଖାଇବା ପିଇବା          କିଛି ଜାଣୁ ନାହିଁ
    ସବୁବେଳେ ପ୍ରାୟ ଉପାସ ଥାଏ ।

ଧରୁଯା ପାଇଛୁ ତାହାଠାରୁ ବଳି
ସତୀ ସାଧ୍ୱୀ ପୁଣି ପତିଭକତା,
ପତିସେବା ଛଡ଼ା ଜାଣେ ନାହିଁ କିଛୁ
କେବଳ ତୁଣ୍ଡରେ ମୋହର କଥା ।
ଦେଖି ନାହିଁ ସିଏ ମୋତେ କେତେବେଳେ
ଶୁଣିଥିବ ଅବା ପତିଠୁଁ ତାର,
ଶୁଣି କରି ଖାଲି ଉଡ଼ିବା କଥାକୁ
ଏତେ ଗୋ ଅଧିକ ବିଶ୍ୱାସ କା'ର ?
କନା ଖଣ୍ଡେ ନାହିଁ ଲାଜ ନିବାରିବ
ତଅଁ ଠାଇ କରି ପିନ୍ଧଇ ନିତି,
ଲାଜ ସରମରେ ବାହାରିପାରେନା
ବରଷାକାଳରେ ରହଇ ଭିଜି ।
ସେ ହତଭାଗିନୀ ଦିନେ ବି କହିନି
ପତିକୁ ତାହାର ଆସିବା ପାଇଁ,
ସେ ବି ପତି ଘରେ ରହେ ଉପାସରେ
ଜୀଇଛି କେବଳ ପବନ ଖାଇ ।
ଭକତର ଦୁଃଖ ସହି ହେବ ନାହିଁ
କରିବି ତାହାକୁ ଏଥର ସୁଖୀ,
ସାହାଯ୍ୟ କରିବ ଏଥିରେ ଗୋ ମୋତେ
ହଅଁ କରିଦିଅ ମୋ ଚନ୍ଦ୍ରମୁଖି !
ଧନଧାନ୍ୟ ଦାନ ନାହିଁ ମୋ ହାତରେ
କେବଳ ମୁଁ ଦେଇପାରଇ ମୁକ୍ତି,
ସେ ପୁଣି ଲୁହଇ ଯାହାକୁ ତାହାକୁ
ଯାର ଥିବ ମୋର ଚରଣେ ଭକ୍ତି ।
ମୁକ୍ତିର ସୋପାନ କେବଳ ମରଣ
ମାରି ମୁକ୍ତି ଦେଲେ ସରିଲା କଥା,
ଏହିସବୁ କଥା ଚିନ୍ତା କରି କରି
ପାଗଳ ହେଲଣି ମୋର ଗୋ ମଥା ।

ଯାଉ ସତ୍ୟଭାମା ତା ଭାରିଯା କତେଣୁ
ବସି କହିଦେଉ ଆସୁ ମୋ ପାଖେ,
ତା ଦରିଦ୍ର ବେଶ ଦେଖିବ ଗୋ ଯେବେ
ସୁଖ ସଉଭାଗ୍ୟ ଦେବ ଗୋ ଆପେ ।
ଏତିକ ସାହାଯ୍ୟ ମାଗେ ମୁଁ ତୁମକୁ
କରିବ ଏତିକ ମୋ ସୁନା ରାଣି,
ତାର ଭାର୍ଯ୍ୟା ତ ତୁମରି ପରି ଗୋ
ତାର ଦୁଃଖ କିଆଁ ପାରୁନା ଜାଣି ?
ଯାଏ ସତ୍ୟଭାମା ପୁରକୁ ଏଇନା
କହେ ଯାଉ ସିଏ କରୁ ଏ କାମ,
ଦୁଇ ରାଣୀଯାକ ରଖ ମୋ ମହତ
ରଖିଦିଅ ଦୀନବନ୍ଧୁ ମୋ ନାମ ।
କରିଦିଏ ସୁଖୀ ସଂସାରଯାକ
ଦୁଃଖୀ ଅଭକତ ନୁହନ୍ତି କେହି,
ଲକ୍ଷ୍ମୀ ସରସ୍ୱତୀ ଦୁଇ ଭାର୍ଯ୍ୟା ମୋର
ଏତିକ ମାଗୁଣି ଉଭୟାଂ ମେ ଦେହି ।
ତୁମେ ଦୁହେଁ ହେବ ସୁଦାମେ ମିଳିତ
ଧନବିଦ୍ୟା ଦୁହେଁ ଏକାଠି ରହି,
ସଉତୁଣୀ ନିନ୍ଦା ଭୁଲିଆ ଧରାରୁ
ତୁମରି ଆଦର୍ଶ ଦେଖନ୍ତୁ ଗୋ ମହୀ ।"
ସରସ୍ୱତୀ ଗଲେ ବସିଲେ କଣ୍ଠରେ
ଭାରିଯା ତାହାର କରିଲା ଅଳି,
"ଯାଅ କୃଷ୍ଣ ପାଶେ ଜଣାଅ ଦୁର୍ଦ୍ଦଶା
ଦିନୁଦିନ ଦୁଃଖ ଗଲାଣି ବଳି ।
ଖାଇବା ବିନା ତ ଗୋଡ଼ ଚଳୁ ନାହିଁ
ଅନାହାରେ ଦିନା ଯିବା ହେ ମରି,
ଆତ୍ମ ହତ୍ୟା ସଙ୍ଗେ ହେବ ଯେ ସମାନ
ସେ ପାପକୁ କ'ଣ ନେବା କି ବରି ?

ଯାଅ ଦ୍ୱାରକାକୁ ଚହ୍ନିବେ ତୁମକୁ
ସିଏ ତ ନୁହନ୍ତି ଦ୍ରୁପଦ ପରି,
ଦ୍ରୋଣଙ୍କୁ ଚହ୍ନି ବ ଚହ୍ନିବେ ନାହିଁ ସେ
ଗରିବଟା ବୋଲି ଅବଜ୍ଞା କରି ।"
ସୁଦାମ କହିଲେ, "ଖାଲି ହାତଟାରେ
କିପରି ଯିବି ଗୋ କୃଷ୍ଣଙ୍କ ପାଶେ ?
ଘର ଅଣ୍ଡାଳିଲ ଭଲ କରି ଦେଖି
ମିଳିଯିବ ଯେବେ ଖୁଦରୁ ଟୋଷେ ।"
ବ୍ରାହ୍ମଣୀ ଖୋଜିଲା ଯେତେ ବଣା ହାଣ୍ଡି
ପାଇଲା ମୁଠାଏ ପୁରୁଣା ଖୁଦ,
କନା ଖଣ୍ଡିକରେ ବାନ୍ଧିବୁନ୍ଧି ଦେଲା
କୃଷ୍ଣଙ୍କ ଚରଣେ ଲଗାଇ ହୃଦ ।
ଚଳିଲେ ବ୍ରାହ୍ମଣ ଦ୍ୱାରକାପୁରକୁ
ଗୋଡ଼ ଚଳିବାକୁ ପାଉନି ବଳ,
କେବଳ ଶ୍ରୀକୃଷ୍ଣ ଦର୍ଶନ-ଲାଳସା
ଗୋଡ଼ରେ ଲଗିଲା ହୋଇଣ କଳ ।
ଶ୍ରୀକୃଷ୍ଣଙ୍କ ମନ ତେଣେ ଛନଛନ
ଅଖିଆ ଅପିଆ ଅଛନ୍ତି ରହି,
କେତେବେଳେ ଆସି ଦାଣ୍ଡକୁ ଚାହାନ୍ତି
ପୁଣି ଫେରି ଘରେ ବସନ୍ତି ଯାଇ ।
ବନ୍ଧୁ ଦରଶନେ ଇଚ୍ଛା ବଳବତୀ
କରି ଦେଉ ନାହିଁ କୋଉଠି ଥୟ,
ମନ ଛଟପଟ ଗୋଡ଼ ଛଟପଟ
ବେଳେ ବେଳେ ବହି ପଡ଼ୁଛି ଲୁହ ।
ଭଗବାନ ମନ ଭକତର ପାଇଁ
ଏହିପରି କ'ଣ ହୁଅଇ ସତେ,
ପ୍ରମାଣିତ ହେଲା ସୁଦାମ ଜୀବନେ
ଭକ୍ତ ଭଗବାନ ଏକ ଜଗତେ ।

ଭକ୍ତିହୀନ କ'ଣ କରବ ବିଶ୍ୱାସ
ଭଗବାନଙ୍କୁ ସେ ମାନବ କେବେ,
ସେଥିପାଇଁ ପର କୃଷ୍ଣ ଅବତୀର୍ଣ୍ଣ
ପୃଥିବୀରେ ନାସ୍ତିକ ବଢ଼ିଲେ ଯେବେ ।
ବେଳ ବଢ଼ିଗଲା ଖେଳ ବି ବଢ଼ିଲା
ରବି ମୁଣ୍ଡ ପରେ ଯାଗି ଗଲେଣି,
ସାଗର-ଗରଭେ ଗରଜନ କରି
ଫୁଲ ଉଠିଲଣି ଜୁଆର୍‌-ଟେଣୀ ।
ପକ୍ଷୀ ଗୋରୁଗାଈ ଗଛେ, ଗଛ ତଳେ
ଆକୁଳ ହୋଇଣ ଗଲେଣି ଶୋଇ,
ସୁଦାମର ସେହି ପରିଚିତ ସ୍ୱର
କୋକିଳ କଣ୍ଠରେ ଦେଉଛି ଗାଇ ।
"ଆହା ମୋ କୃଷ୍ଣ ତୁ କେଡ଼େ ସୁନ୍ଦର ରେ
କେଡ଼େ ମଧୁର ତୋ କଅଁଳ କଥା !
କେତେ କାଳ ହେଲା ଦେଖିନି ଶୁଣିନି
ପାସୋର ଦେବୁ କି ଦରିଦ୍ରସଖା !
ମୁଁ ସିନା ଗରିବ ଉପାସରେ ରହି
ହରାଇଲି ବଳ ପାରୁନି ଚଳି,
ତୋର କୋଉ କଥା ଅଭାବ ଅଛି ରେ
ଦେଖିଲୁନି ମୋତେ ବସିଲୁ ଖାଲି !
ନାହିଁ ନାହିଁ ସଖା ଭୁଲ କରିଦେଲି
ବସି ନାହୁଁ କେବେ କରୁଛୁ କାମ,
ତୋର ପାଇଁ ନୁହେ ଜଗତର ପାଇଁ
ଜଗନ୍ନାଥ ସିନା ତେଣୁ ତୋ ନାମ ।
କ୍ଷୁଦ୍ର ସଂସାର ମୁଁ ଚଳାଇ ପାରୁନି
ଅରଜି ପାରୁନି ମୁଠାଏ ଦାନା,
କପଟ ରେ ତୁହି ସୁକୁମାର ହୋଇ
ଜଗତକୁ ଦେଉ ଦାନା ଓ କନା !

ଆହା ସଖା ମୋର ହାଲଆ ହେବଣି
କେତେ ଦୁଃଖ କଷ୍ଟ ସହୁଛୁ ଆସି,
ମନରୁ କି ତୋର ପାଠପଢ଼ା ବେଳ
ଅଗାଡର ସ୍ମୃତି ହେଲ ରେ ବାସି ?
ଯାଉଛୁ ଯାଉଛୁ ଆରେ ମୋ ଶ୍ରୀକୃଷ୍ଣ
ପାଶେ ବସି ଟିକେ ଆଉଁସି ଦେବ,
କୁସୁନଆ ମୋର ଏକୁଟିଆ ଥିବ
କୋଲକୁ ଆଦରେ ଟେକି ମୁଁ ନେବ ।
ତୁ କି ସେହିପରି ନେବୁ ରେ କୋଲକୁ
ନାହିଁ ନାହିଁ ମୋର ଅରୁଚି ଦେହ,
କୁସୁନଆ ତୋତେ ମନା ମୁଁ କରିବ
କରିବୁ ନାହିଁଟି ଏଡ଼ାହେଁ ସ୍ନେହ ।
ଦେହରେ ଲଗିବ ତୋର ମସିଆ ରେ
ଧୋଇଲେ ଧାଇଲେ ଛୁଡ଼ିବ ନାହିଁ,
ପିଲବେଳ କଥା ଆଉ କି ଅଛି ରେ
ଧୂଳି ବେଖାଡର କରିବା ପାଇଁ !
ସରି ଯାଇଅଛୁ ପିଲ ଦିନଟି ରେ
ମରି ଯାଇ ନାହିଁ ତାହାର ସ୍ମୃତି,
ବେଶୀ ବେଶୀ ସେତ ମଧୁର ହେଉଛି
ଯେତେ ଝୁରିଲେ ବି ଅସୁନ ତୃପ୍ତି ।"
ଶ୍ରୀକୃଷ୍ଣ ଶୁଣିଲେ କାନ ଡେରି କରି
ବୃନ୍ଦାବନେ ବଂଶୀସ୍ୱନର ପରି,
ବିରହେ ବ୍ୟଥିତ ମରମେ ଉତ୍କଣ୍ଠା
କରୁଣ ଗଗରେ ଉଠୁଛି ଥରି ।
ଦୁଇ ବାହୁ ମେଲି ଗଦଗଦେ କହି
ତରତର ହୋଇ ଆସିଲେ ଧାଇଁ,
ପରାଣେ ପରାଣ ମିଶାଇ ଦେବାକୁ
ଆଦର କରିଣ ନେଲେ କୁଣ୍ଢାଇ ।

ପିତ୍ରା ଟାଣି ସବୁ ଥୁଆ ହୋଇଥିଲା
ଗୋଡ଼ ଧୋଇଦେଲେ ନିଜ ହାତରେ,
ପୋଛିପାଛି ଦେଲେ ଝାଳ ଆଉ ଧୂଳି
ସୁଚୀକ୍ଷ୍ଣ ନୂତନ ପୀତବାସରେ ।
ହାତ ଧରି ଧରି ନେଲେ ଭିତରକୁ
ସୁବର୍ଣ୍ଣ ଖଟରେ ବସାଇ ଦେଇ,
ବିଂଚିଦେଲେ ଧୀରେ ଧୀରେ ସୁଦାମକୁ
ଝାଲଭିଂଚା ବିଞ୍ଚଣା ହାତରେ ନେଇ ।
ହୃଦୟ-ସାଗର ଉଛୁଳି ପଡ଼ିଲା
ସୁଦାମଚନ୍ଦ୍ରକୁ ଚାଖରେ ଦେଖି,
ତାଙ୍କୁ ଚକିତା ଯାଏ ସଖାଙ୍କର
ଚନ୍ଦ୍ର ଚନ୍ଦ୍ର କରି ଗଲେ ନିରେଖି ।
ହାତ ଚିଠ ଧରି ପଚାରିଲେ, "ସଖା !
କାହିଁକି ଏପରି ମଳିନ ବେଶ ?
ତଥାପି ମୁହଁରୁ ହସ ମରି ନାହିଁ
ମରମେ ବେଦନା ନାହିଁ କି ଲେଶ !
କେତେ ଦିନୁ ସଖା ଦେଖି ତ ନ ଥିଲି
ତୁମ ଗୀତ ଶୁଣି ପଡ଼ିଲା ମନେ,
ପିଲାଦିନର ସେ ମଧୁର ସ୍ମୃତିଟି
ହଜିଯାଇଥିଲା ସଂସାର-ବନେ ।
ନାହିଁ ନାହିଁ ସଖା, ଭୁଲି କରି ନାହିଁ
କହୁଛ ଯଥାର୍ଥ କରିନ କିଛି,
କେବଳ ବସିଛି ଖାଇଛି ଶୋଇଛି
ଧିକ ଜଗନ୍ନାଥ ନାଆଁକୁ ଛି ଛି !
ତୁମ କୁସୁନିଆ ବଡ଼ ଅଳସୁଆ
ଆଉ ମୋର ସଖା ଏଇ ସୁଦାମା,
କରିଅଛି କାମ ଡାକିଛି ବହୁତ
କୁସୁନିଆ ତାହା ଶୁଣିନି ଜମା ।

ମୁଁ ଜଗତନାଥ କଏ ସେ କହିବ
ତୁମକୁ ଦରିଦ୍ର କରିଛି କଏ,
ସେହି କ'ଣ ତୁମ ଜଗତର ନାଥ
ସଖାକୁ ଉପାସେ ମାରଇ ଯିଏ ?
ଇଏ କ'ଣ ସଖା କନାପୁଡ଼ାଟିରେ
ଆଣିଛ ହସ୍ତପ୍ସ ମୋହର ପାଇଁ,
ଏତେବେଳଯାଏ ଦେଇ ନାହଁ ମୋତେ
କାଲିଠାରୁ କିଛି ଖାଇ ମୁଁ ନାହିଁ ।
କାଲିଠାରୁ ତୁମେ ଆସିବ ବୋଲି କି
ମନ ହେଉଥିଲା ଘଣ୍ଟିଚକଟି,
କଅଣ ଆଣିଛ ଦେଖ ତ ହେଲଣି
ପୁଟୁଳା ଫିଟାଇ ଅଗେ ଦେବଟି ।"
ଏହିତକ କହି ପୁଡ଼ାଟି ଫିଟାଇ
ଖାଇଦେଲେ ନେଇ ମୁଠିଏ ଚୂଡ଼ା,
"ଏ ତ ସଖୀଙ୍କର ସ୍ନେହ-ଉପହାର
ଦେଇଛନ୍ତି କାହିଁକି ସଙ୍ଗେ ତ ଭୁନ୍ଦ ।"
ଆଉ ମୁଠିଟିଏ ଧରୁଛନ୍ତି ହାତେ
ରୁକ୍ମଣୀ ଆସିଲେ ସେଠିକି ଧାଇଁ,
କହିଲେ ସେତିକି, "ସେତିକି ରେ ଥାଉ
ଆଉ ଦେବା ପାଇଁ ମୋର ତ ନାହିଁ !"
ଶ୍ରୀକୃଷ୍ଣ କହିଲେ, 'ଦେଲ କେତେବେଳେ
କଅଣଟା ଦେଲ ଖାଲି ହାତରେ ?"
ଧରିଥିବା ମୁଠା ଭୂଇଁରେ ଭିଡଦେଲେ
ରୁକ୍ମଣୀ ଗୁହିଁଲେ ଖାଲି କାତରେ ।
ସତ୍ୟଭାମା ଆସି କହିଲେ କାନରେ
"ବନ୍ଧୁଙ୍କୁ ତ ଦେଲ ସକଳ ଧନ,
ସହି ପାରିବେଟି ଯାହା ପାଇଲେଣି
ଆଉ ଦେବା ପାଇଁ କାହିଁକି ମନ ?"

ଶ୍ରୀକୃଷ୍ଣ ଠିକଏ ହସିଦେଲେ ଖାଲି
ସୁଦାମ ଚକିତ ମୁହଁକୁ ଚାହିଁ,
ଭରସା କଥାକୁ ଭୁଲିଭାଲି ଗଲେ
ଶ୍ରୀକୃଷ୍ଣଙ୍କୁ କହିପାରିଲେ ନାହିଁ ।
ସେବା ସତକାର ପାଇଲେ ବହୁତ
ରହିଲେ ସେଠାରେ ଦିନ ଦି ଚାରି,
ମାଗିଲେ ମେଲଣି ଫେରି ଆସିବାକୁ
ଭାବିଲେ ଭରସା ଥିବ କାହରି !
ବିଦାବନ୍ଦ ହୋଇ ଆସିଲେ ପଛକେ
ଶ୍ରୀକୃଷ୍ଣଙ୍କୁ କିଛି ମାଗିଲେ ନାହିଁ,
ବାଟଯାକ ଖାଲି କୃଷ୍ଣ, କୁସୁନଆ,
ଶ୍ରୀକୃଷ୍ଣ ଏତିକେ ହୋଉଲେ ଗାଇ ।
ଗାଆଁରେ ପହଞ୍ଚି ଦେଖିଲେ ବିସ୍ମୟେ
ତାଙ୍କ ଘରଦ୍ୱାର କିଛି ତ ନାହିଁ,
ଏଇ ବରଗଛ ଏଇ କୂଅମୂଳ
ଏଇଠି ତ ଥିଲା ଗଲା ସେ କାହିଁ ?
କେତେବେଳକରେ ଆସିଲା ନାରୀଏ
ବସନେ ଭୂଷଣେ ହୋଇଛି ଭୂଷି,
ରୂପକୁ ଦେଖିଲେ ଛଟାକୁ ଚାହିଁଲେ
ଅନୁମାନ ହେବ ବଡ଼ ରୂପସୀ ।
ପଚାରିଲେ ତାକୁ, "ସୁଦାମା ଘର କେ
ଦୟାକରି ଠିକେ ଦେବ ଦେଖାଇ,
ଏହି ଗାଆଁରେ ତ ଏଇଠି ତ ଥିଲା
କୋଉ ଆଡ଼େ ଗଲା ନାହିଁ ତ କାହିଁ ?
ନାରୀ ହସି ହସି କହିଲା, "ଆପଣ
ଏହି ଘରଦ୍ୱାର ସବୁ ତୁମର,
ତୁମେ ଯାଇଥିଲ କୃଷ୍ଣଙ୍କ ପାଖକୁ
ଦେଇଯାଇଛନ୍ତି ଆସି ସେ ବର ।"

ହାତ ଧରି କରି ନେଲେ ଭିତରକୁ
ଖରଧା ପାଗ୍ରେଟି ନେଲେଟି ଆସି,
ସବୁ ଘରଦ୍ୱାର ଧନ ଦଉଲତ
ଦେଖାଇଲେ ହସି ଠିକଏ କାଣି ।
କହିଲେ, ''ସେଦିନୁ କହୁଥିଲ ପରା
ଯାଇଥାନ୍ତ ଯେବେ ଠିକେ ଦ୍ୱାରକା,
କହିବଟି ମୋତେ କେତେ କାଳ ଆଗୁଁ
ହୋଇ ସାରିଥାନ୍ତେ ଏହି ପରିକା ।''
ଏତେବେଳେ ଯାଇ ସୁଦାମ ବୁଝିଲେ
ରୁକ୍ମଣୀ କହିବା ଦେବାର କଥା,
କୃଷ୍ଣ, କୃଷ୍ଣନାରୀ ଦୁହିଁଙ୍କ ଚରଣେ
ନଇଁଗଲା ଗୁଏଁ ବ୍ରାହ୍ମଣମଥା ।
ଧନ୍ୟ ହେ ଶ୍ରୀକୃଷ୍ଣ ତୁମ ଭକ୍ତପ୍ରୀତି
ତୁମ ସାଥିପଣ ଧନ୍ୟ ମହିମା !
ମନଟି ମନାଇ ଯେ ଡାକପାରନ୍ତି
ନିମିଷକେ କର ତାକୁ ସୁଦାମା ।
ସୁଦାମାର ଘର ସେବୁ ଧନଶାଳୀ
ଆଜି ତା ହୋଇଛି ପୋର ବନ୍ଦର,
ଲକ୍ଷ୍ମୀ ସରସ୍ୱତୀ ଉଭୟ ସେଇଠି
ତେଣୁ କ'ଣ ହେଠି ଗାନ୍ଧିଙ୍କ ଘର ?
ଏ ସ୍ଥାନଟି ନୁହେ ଇତିହାସର ତ
ପୁରାଣ-ପ୍ରସିଦ୍ଧି ରହିଛି ତାର,
ମହାପୁରୁଷଙ୍କ ପୁଣ୍ୟ ଜନ୍ମପୀଠ
ସେଇଠିକି ସବୁ ମୁଣ୍ଡିଆ ମାର ।
ଆମେରିକା ଋଣ ° ଲୋଡ଼ା ହେବ ନାହିଁ
ଦେଶ ଘରଦ୍ୱାର ତୋଳିବା ପାଇଁ,
ଡାକ ମନ ଦେଇ ଭକତି ଲଗାଇ
ଦେବାକୁ ଶ୍ରୀକୃଷ୍ଣ ଅଛନ୍ତି ରହି ।

ତାଙ୍କର ଆବାସ ତାଙ୍କରି ଦ୍ୱାରକା
ସାଗର ରଖିଛୁ ଲୁଗ୍ଧଇ କରି,
ଡାକ ସେଇସ୍ଥାଙ୍କୁ ବରୁଣ ଆସିବେ
ଦେଇଯିବେ ରତ୍ନ ବନସ୍ତ କରି ।

———

# ସମସ୍ତପଞ୍ଚକ ବା କୁରୁକ୍ଷେତ୍ରରେ ବୁଡ଼

ସାରା ଭାରତରେ          ଅଛି କେତେ ତୀର୍ଥ
କୁରୁକ୍ଷେତ୍ର ଅଟେ ସବୁଠୁ ସାର,
ଭଲ ଦିନଟିରେ          ଭଲ ମୁହୂର୍ତ୍ତରେ
ବୁଡ଼ ପକାଇଲେ ପୁଣ୍ୟ ଅପାର ।
ହୁଏ ବୋଲି ଅଛି          ହିନ୍ଦୁ ସମାଜରେ
ବହୁ ଦିନୁ ଏକ ଧର୍ମବିଶ୍ୱାସ,
ମିଳେ ମୋକ୍ଷ ଧାମ          ଗତି ମୁକ୍ତି ଶାନ୍ତି
ପାପଭାରସବୁ ହୁଏ ଉଶ୍ୱାସ ।
ଥରେ ଅମାବାସ୍ୟାରେ          ଲଗିଲା ପରାଗ
ସବୁ ଶୁଭ ଗ୍ରହ ହେଲେ ଏକାଠି,
ପାଞ୍ଜିକାରମାନେ          ଗଣାପୋଛା କରି
ବୁଡ଼ଟିର ଯୋଗ କରିଲେ ସେଠି ।
ସାରା ଭାରତରୁ          ଆସିଲେ ମୁମୁକ୍ଷୁ
ରଜାଠାରୁ ପ୍ରଜା ଧନୀ ନିର୍ଦ୍ଧନ,
କାହାରି ମନରେ          କୁଣ୍ଠା ହେଲା ନାହିଁ
ସାରିବା ପାଇଁକି ଶ୍ରମ ଓ ଧନ ।
ଗୋପ ବୃନ୍ଦାବନୁ          'ଗୋପଗୋପୀ ସବୁ
ଆସିଥିଲେ ନନ୍ଦ ଯଶୋଦା ସଙ୍ଗେ,
ଦ୍ୱାରକା ନଗରୁ          ଯାଦବ ଯାଦବୀ
ରଥ ଗଜ ଚଢ଼ି ଆସିଲେ ରଙ୍ଗେ ।

ଆଜ ସବୁ ରାଜ୍ୟ ଆସିଲେ ବହୁତ
କଳନା କରିବ କିଏ ସେ କେତେ,
କୁରୁକ୍ଷେତ୍ର ହେଲା ଲୋକ-ପାରାବାର
ଦୋକାନ ବଜାର ଯାହାକୁ ଯେତେ ।
ସ୍ଥାନେ ସ୍ଥାନେ ସବୁ ତମ୍ବୁ ପଡ଼ିଗଲା
ଘୋଡ଼ା ହାତୀରେ ତ ହୋଇଲା ପୂର୍ଣ୍ଣ,
ଗାଡ଼ି ଧାଡ଼ି ଧାଡ଼ି ଲୋକ ହାଉଯାଉ
ଥାନ ରହିଲାନି କୋଉଠି ଶୂନ୍ୟ ।
ଆତ୍ମୀୟେ ଆତ୍ମୀୟେ ମିଳାମିଶା କାହିଁ
କୁଶଳାକୁଶଳ ଅନୁସନ୍ଧାନ,
ବାନ୍ଧବୀ ବାନ୍ଧବୀ ସଂଖୋଳା ସଂଖୋଳ
କାହାକୁ କିଏ କେ ମିଠାଇ ପାନ ।
କେତେ କୋଳାକୋଳ ଉଠ ଧରାଧର
ମୁହଁ ଗୁହାଁରୁହିଁ ନାହିଁ ତା ଶେଷ,
କେତେ ଜାତି ବାସ କେତେ ଅଳଙ୍କାର
କେତେ ବାଗେ କେତେ ସୁନ୍ଦର ବେଶ ।
କାହିଁ ଯୋଗୀ-ଋଷି କାହିଁ ବା ବ୍ରାହ୍ମଣ
କାହିଁ ରଜାରାଣୀ କରନ୍ତି ସ୍ନାନ,
କାହିଁ କେତେ ଧନ କେତେ ନରଧନ
ଜ୍ଞାନ ନାହିଁ କିଏ ବଡ଼ ବା ସାନ ।
ଯାଦବ ଯାଦବୀ ଗୋପଗୋପୀଙ୍କର
ସଭିଙ୍କର ସେଠି ହେଲା ମିଳନ,
ମାନବ ମାନବୀ ଦେବତା ଓ ଦେବୀ
ମିଳିଲେ କି ଆଜ ସେଠି ସେଦିନ ?
ଯଶୋଦାଙ୍କୁ ଦେଖି କୃଷ୍ଣ ଓଲଗିଲେ
ଯଶୋଦା ଧରିଲେ କୋଳରେ ନେଇ,
କୃଷ୍ଣ ପଶିଗଲେ ମାଆଙ୍କ କୋଳରେ
ତାଙ୍କର ସନ୍ତାନ ଶୋଡ଼େଇ ହୋଇ ।

ଯଶୋଦା ଦେଖିଲେ        ଆଠ ବରଷିଆ
ସେଇ କଅଁଳିଆ ପୁଅଟି ପରି,
କେତେ ଗେଲ କଲେ        କେତେ ଆଉଁସିଲେ
ପଚାରିଲେ କେତେ ଓଠଟି ଧରି ।
"ହଇରେ କହ୍ନାଇ !        ମନେ ପଡ଼ଇ ନି
ଆସିଲୁ ରେ ଗୁଡ଼ ଅନ୍ଧୁଣୀ କରି,
କାହାକୁ କେତେ ମୁଁ        ପଚାରି ନାହିଁ ରେ
ସମସ୍ତେ ତ ହେଲେ ତୋହରି ପରି !
ଉଦ୍ଧବଟା ଗଲା        ମାସୁଟା ରହିଲା
ପାଶଲା କି ସବୁ ତୋ କଥା କହି,
ବଳରାମ ଗଲା        ସେ ବି ସେହିପରି
ପଳାଇ ଆସିଲା ଦି ଦିନ ରହି ।
ଏଡ଼େ ନିରଦୟ        ହେଲୁ ରେ କାହିଁକି
ନିରମାଖି କରି ଆସିଲୁ ମୋତେ,
ରାଗିଛୁ କି ଆଉ        ପିଲାଦିନେ କେବେ
ମାଡ଼ିଥିଲି ବୋଲି ଦିନେ ରେ ତୋତେ ?
ଗୋପଠାରୁ କ'ଣ        ଦ୍ୱାରକା ସୁନ୍ଦର
ଗାଈ ବାଛୁରି କି ରଖିଛୁ ଘରେ,
ଯମୁନା ନଈଟି        ଅଛିଟି ସେଠଇଁ
ବଇଁଶୀଟି କିଆଁ ନାହିଁ ରେ କରେ ?
ମୟୂର-ଚନ୍ଦ୍ରିକା        ଗୁଞ୍ଜର ମାଳଟି
କିଏ କାଢ଼ିନିଲା ରେ ଚୂଳରୁ ତୋର ?
କେଡ଼େ ଅସୁନ୍ଦର        କେଡ଼େ ନାରଖାର
ଦିଶୁଛି ରେ ସତେ ବେଶଟି ତୋର !
ସକାଳେ ସକାଳେ        ଖାଉଟି ଲହୁଣୀ
କୁଞ୍ଜରେ କୁଞ୍ଜରେ ବାଉଟି ବଂଶୀ,
ସେହି ବଂଶୀ ଶୁଣି        କେତେ ରଜନୀରେ
ରହିଛି ଉପାସେ କାନ୍ଦିଛି ବସି ।

ମୋର ଦେଖାଦେଖି        ଆଉ ଯେତେ ଗୋପୀ
    ମୋ ପରି ଗୋଟିଏ ପୁଅ ଯାହାର,
ବଇଁଶୀ ବାଜଣା        ଶୁଣିଲେ ରେ ବାପ
    ଘଣ୍ଟରେ ବରଜି ଦିଏ ଆହାର ।
ଗୋପାଳ ରାଜ୍ୟ ତ        ଗାଈଗୋରୁ କାମ
    ଦୁଗୁଣେଇ ହୋଇ ବଜାନ୍ତି ବଂଶୀ,
କେଜାଣି କାହିଁକି        ଉପାସ ରହି ବ
    ବଂଇଶୀ ବାଜଣା ଶୁଣଇ ବସି ।
କେତେ ପିଲାଙ୍କୁ ତ        ଶିଖାଇ ଆସିଲୁ
    ଏଇନା ତୋ ହାତ ପଡ଼ୁଛି ଖାଲି,
କିବା ତୋ ବଂଇଶୀ        କାହାକୁ ଦେଇ ରେ
    ଖାଲି ହାତଟାରେ ଆସିଲୁ ଚଳି ?
ସେହି ବାଉଁଶରେ        ସେହି ବଂଇଶୀ ତ
    ଶୁଭୁ ନାହିଁ ତୋର ବଂଇଶୀ ପରି,
ସ୍ୱାଡ଼ୁ ସ୍ୟାଡ଼ୁ କରି        ବଜାନ୍ତି ସବୁ ରେ
    ବଜାନ୍ତି ନାହିଁ ସେ ମଧୁର କରି ।
ଏତେ କଥାକୁ ତୁ        ଭୁଲିଲୁ କପରି
    ବୁଢ଼ା ବାପଟାକୁ ଦେଲୁ ପାସୋରି,
ଆଉଟିଏ ହେଲେ        କୋଳରେ ଅଛୁ କି
    ହସାଇ ଖେଳାଇ ରଖିବ ବୋଲି ।"
ମାଆଙ୍କ କହିବା        ଶୁଣି ଶୁଣି କରି
    କହିଲେ ଶ୍ରୀକୃଷ୍ଣ ମନଟି ମାରି,
"କି କହିବି ମାଆ !        ଯାତ ଦେଖିବାକୁ
    ଖୁସିହୋଇ ଆସିଥିଲି ବାହାରି ।
ଜାଣିଥିଲି କିଲେ        ଏତେ ଦୁଃଖ ହେବ
    ସଂସାର-ଜଞ୍ଜାଳ ଯିବ ଗୋ ବଳି,
ମାଆ ବାପ ସାଙ୍ଗ-        ସାଥୀଙ୍କର ସୁଖ
    ଏକା ସଙ୍ଗେ ହୋଇଯିବ ଗୋ ଦଳି ।

କି କହିବି ମାଆ !  କଂସର ଶ୍ୱଶୁର
ଉଠିଗଲା ଝାଳି ଗଲା ପଳାଇ,
ମଥୁରା କି ଦୋପେ  ରହିପାରନ୍ତି କି
ସମୁଦ୍ର ଭିତରେ ରହିଲା ଯାଇ ।
ସୁନ୍ଦର କି ନୁହେଁ  ବାନ୍ଧୁଛି କଏ ତା
ଯମୁନା ସେଠେଇ ପାଇବ କାହୁଁ ?
ଖେଳିବା ପାଇଁକି  ନୁହଇ ଲୋ ସିଏ
ସହିବାକୁ ହୁଏ ସାଗର ଦାଉ ।
ଗାଈଗୋରୁ ଆଉ  ନାହାନ୍ତି ଜନନି !
ସର ଲହୁଣୀ ବା ପାଇବୁ କାହୁଁ,
ଜୀବନକୁ ଧରି  ରହିବା ପାଇଁକି
ଯାହା ପାଉଁ ତାହା ମେଞ୍ଚାଏ ଖାଉଁ ।
ବଂଶୀ ବଜାଇବି  କୋଉ ହାତରେ ଲୋ
ତାହା ଧରିବାକୁ ମିଳୁନି ତର,
ନ ହେଲେ ଜନନି !  କେତେବେଳେ ବେଢ଼ି
ମାରି ପକାଇବେ ଅସୁର ଦଳ ।
ତୋତେ ଝୁରି ଝୁରି  କଲି ବହୁ ମାଆ
ଜଣ ଜଣ କରି ଦେଖିବା ପାଇଁ,
କେତେ ଦିନ ଯିବ  କହିଲୁ ଜନନି !
ଆଜ ତୋର ପାଳି ଆସିଲା ଧାଇଁ ।
ପୁଣି କାଲି କାର  ପାଳି ପଡ଼ିଯିବ
ଯିବାକୁ ତ ହେବ ସେଠିକି ମୋତେ,
ତୁ ମୋତେ ଜନମ  କରିଛୁ ଜନନି !
ଚାଲିଯିବି ହେଲା କଲେ ଗୋ ତୋତେ ।
ଆଉ ଯେତେ ମାଆ  ସ୍ନେହର ମାଆ ସେ
ପୁଅ ଥାଉଁ ଥାଉଁ କଲେ ସେ ପୁଅ,
କାହାକୁ ଭୁଲିବି  କାହା ପାଖେ ଯିବି
ଭାବି ଚିନ୍ତା କରି ତୁହି ତା କହ ।

ପରକୁ ନଜର କରିବାକୁ ହେଲେ
ବହୁ ସ୍ୱାର୍ଥତ୍ୟାଗ ଲୋଡ଼ା ଲୋ ମାଆ,
ସେତକ ନ କଲେ ସଂସାରରେ ସ୍ନେହ
ରହି ପାରିବନି ଜାଣୁ ତ ତାହା ।
ତୋର ଇଚ୍ଛା ଖାଲି ମୋତେ ସାଇତିବୁ
ଆଉ କ'ଣ ଗୋପେ ନାହାନ୍ତି ପିଲା ?
ମୋତେ ଝୁରି ଝୁରି କାହିଁକି କାନ୍ଦୁଛୁ
ତାଙ୍କଠାରେ ସ୍ନେହ କରୁଛୁ ଢିଲା ।
ସେସବୁ କି ତୋର ସନ୍ତୁଳି ଛୁଆ
ତାଙ୍କୁ ତୁ ଆଦର କରିବୁ ନାହିଁ,
ସେଗୁଡ଼ିଙ୍କୁ ପେଲି ଦେଇ ଲୋ ଦୂରକୁ
ମୋତେ ହିଁ କେବଳ ବସିବୁ ଗୁହିଁ ?
ଜଗତ ଜନନୀ ହେବାକୁ ହେବ ଲୋ
ଜଗତକୁ ବାଣ୍ଟି ଦେଏ ତୋ ସୁଧା,
ମୋତେ ଏକା ଦେଇ କି ଲାଭ ତୋହର
ତୋର କ୍ଷୀର ଖାଇ ମରିଛି କ୍ଷୁଧା ।
ଦୁଃଖୀରଙ୍କୀ କ'ଣ ନାହାନ୍ତି ଜଗତେ
ଅଜାଡ଼ି ଦେ ତୋର କ୍ଷୀର-ଭଣ୍ଡାର,
ହଜାରେ ପୁଅ ତୁ ପାଇବୁ କୋଳରେ
ଜଣକ ପାଇଁ ତୁ କିଆଁ କାତର ?
ଯୋଉଠିଠେଇ ଥିଲେ ମୁଁ ତ ତୋର ପୁଅ
ତୁ ମୋହର ମାଆ ଜାଣୁ ତ ଏହା,
ଖାଲି ମୋର ପାଇଁ ଆହା ତୁ କରିବୁ
କି ଲାଭ ଲୋ ତୋର କରନା ତାହା ।
ଯିଏ ତ କହୁଛି ଯଶୋଦା-ନନ୍ଦନ
କିଏ କହୁଛି କି ଯମୁନା-ସୁତ,
ସମସ୍ତେ କହନ୍ତି ନନ୍ଦ-ସୁତ ମୋତେ
କେହି ତ କହୁନି ଆଉ କା ପୁତ !

ମନକୁ ବୁଝାଇ ଦେଏ ଲେ ଜନନୀ !
ତୋର ଏ କୋଳଟି ସ୍ୱରଗ ମୋର,
ଆଉ କାହା କୋଳ ନୁହେ ଲେ ଏପରି
ସେଥିପାଇଁ କିଆଁ କାନ୍ଦଣା ତୋର ?
ଜାଣଇ ମୁଁ ମାଆ ମାଆର ସ୍ନେହ
ଦୁଇଟି ରୂପରେ ବହଇ ଦେଖା,
ଗୋଟିଏ ତୋ କ୍ଷୀର ଆଉଟି ଲୋ ଲୁହ
ଦୁଇଟିଯାକ ତ ମଙ୍ଗଳମଖା ।
ତୋର ଲୁହ ଦେଖି ହସ ମାଡ଼ୁଛି ମା
କିନ୍ତୁ ସେ ତ କେବେ ହେବନି ଖାଇ,
ପୁଅର ତୋହର ଯେତେ ଅମଙ୍ଗଳ
ସବୁ ସେ ପାରିବ କମିଡ଼େ ଧୋଇ ।
ବୟସ ସରୁଛି କ୍ଷୀର ଶୁଖିଅଛି
ସ୍ନେହ-ମନ୍ଦାକିନୀ ତୋର ଏ ଲୁହ,
ମୋର ବଇକୁଣ୍ଠ ସୁଖ-ଶାନ୍ତି-ଧାମ
ତୋହର ଲୋ ଏହି କାନ୍ଦୁଣୀ ମୁହଁ ।
ଲୁହ ପୋଛିପକା ହସିଦେ ଜନନୀ !
ତୋର ଏ ପଣତ ଘୋଡ଼ାଇ ଦେଏ,
ଶୀତଟା କଲଣି ଉଷୁମାଇବାକୁ
ଆହୁରି ଟିକିଏ କୋଳକୁ ନେଏ ।”
ନନ୍ଦଙ୍କୁ ସେପରି କହିଲେ ବୁଝାଇ
ବାପଙ୍କ ମନରୁ ତୁଟିଲା ଶୋକ,
ପୁଅ କୋଳ କରି ଶିରେ ହାତ ବୋଳି
ଗଣ୍ଡରେ ଆଙ୍କିଲେ ଗୋଟିଏ ବୋକ ।
ତହୁଁ ଚାଲିଗଲେ ଗୋପଗୋପୀ ମେଳେ
ହସ ଖୁସି ଗପ ହୋଇଲେ କେତେ,
ସୁଦାମ ସୁବଳ ସଖାଙ୍କ ସଙ୍ଗେ
ଥଟ୍ଟା ପରିହାସ କରିଲେ ଯେତେ ।

ମାଆ ମାଉସୀଙ୍କ ବୟୁଷୀ ଯେତେକ
ସମସ୍ତଙ୍କୁ ଦେଖି କଲେ ଭକତି,
ରମଣୀଏ ସବୁ କଇଲଣ କରି
ବେଢ଼ିଗଲେ ଆସି କୃଷ୍ଣ ଚୌକତି ।
ପିଲାଦିନ ସାଥୀ ଯୁବତୀ ଗୋପିଏ
ଅଭିମାନ କରି ମୁରୁକ ହସି,
ଘୁଞ୍ଚି ଠିଆହେଲେ ଗୁରୁଜନ ପାଶୁ
ଆସିଲେନି କୃଷ୍ଣ ପାଶେ ଭରସି ।
ଠାରଠାରି ଚାହିଁ ମଉନ ମୁହଁରେ
ଅଣ୍ଟୋଆଡ଼ଆକୁ ଗଲେ ବାହାରି,
ଏକାଠି ହୋଇଲେ ନିଚ୍ଛଟିଆ ସ୍ଥାନେ
ସ୍ୟାଡ଼କୁ ନଜର ନାହିଁ କାହାରି ।
ଦେହରେ ଦେହରେ ଦେଲେ ଆଲିଙ୍ଗନ
ଗଣ୍ଡରେ ଗଣ୍ଡରେ ଦେଲେ ଚୁମ୍ବନ,
ଗତ ସ୍ମୃତିଯାକ ପଡ଼ିଲା ମନରେ
ଚଞ୍ଚଳ ହୋଇଲା ବିକଳ ମନ ।
ଉଦ୍ଧବ ଉପୁର ରମଙ୍କର ଶିକ୍ଷା
ଭୁଲିଗଲା ଯୁବା ଯୁବତୀ ବେଗ,
ପ୍ରେମଅଶ୍ରୁ ଛଳେ ଭକତି ଝରିଲା
ପିଡ଼ି ପାରିଲାନି ମଦ ଅନଙ୍ଗ ।
ଅନଙ୍ଗ ହୋଇଲା ଅଙ୍ଗହୀନ ପୁଣି
ଫୁଲଧନୁ ଧରିପାରିଲା ନାହିଁ,
ଭକତ ରୂପରେ ଗୋପୀଙ୍କୁ ଦେଖିଲା
ମଦୁଆ ଆଖିରେ ପାଉନି ଚାହିଁ ।
ବ୍ୟସନ ବାସନା ହେଲା ସେହିତ
ଭକତ-ରସରେ ପୂରିଲା ମନ,
ବୁଡ଼ ପକାଇବା ପରିଣାମ ଏ କି
ବୁଡ଼ରେ ବୁଡ଼ି କି ମଲା ମଦନ ?

ମଦନ ମରଇ    ଅନଳଟରେ ପୋଡ଼ି
  ଆତୁର ମରଇ ପାଣିରେ ବୁଡ଼ି,
କେତେବେଳେ ପୁଣି    ମାଆଇ ଉପର
  ଯୁବକ ଯୁବତୀ ମାରଇ ପୋଡ଼ି ।
ସବୁଗଲା ବୁଡ଼ି    ତୀର୍ଥ ସାଧାରଣ
  ଚୋଷଷ୍ଠି ଢେଉଆ ପରାପ୍ତ ହେଲା,
ଯେ ଯାର ଘରକୁ    ଯିଏ ବାହୁଡ଼ିଲେ
  ମିଳନର ଶୁଭ ଯୋଟିକେ ଥିଲା ।

———

# ଦେବକୀଙ୍କୁ ମଲା ଛଅ ପୁଅ ଦାନ

ସକଳେ ଜାଣନ୍ତି ଦେବକୀ ବିବାହେ
ଶୁଭିଲା ଶୂନ୍ୟରୁ ଦଇବ ବାଣୀ,
ଦେବକୀ ଅଷ୍ଟମ ଗରଭର ପୁଅ
କଂସକୁ ମାରିବ ଅକାଳେ ହାଣି ।
ସେଥିପାଇଁ କଂସ ଭିଣୋଇ ଭଉଣୀ
କଏଦୀ ଘରରେ ରଖିଲା ବାନ୍ଧି,
ଗୋଟି ଗୋଟି କରି ଛ'ପୁଅ ମାଇଲା
ଦଇବକୀ ଥିଲେ ସେଦିନୁ କାନ୍ଦି ।
ଶୁଣିଲେ ଶ୍ରୀକୃଷ୍ଣ ଦେଇଥିଲେ ଆଣି
ଗୁରୁ ମଲା ପୁଅ ଦକ୍ଷିଣା କରି,
ଏଇନାଏ ସିଏ ଝଇଲେ ପୁଅକୁ
ତାଙ୍କ ଛଅ ପୁଅ ଦେବାକୁ ଫେରି ।
ଜନମାଙ୍କ କଥା ଭାଙ୍ଗି ପାରିଲେନି
ପାତାଳପୁରକୁ ସେଇନା ଗଲେ,
ବଳିରାଜା ପାଶୁ ଛଅ ଭାଇ ଆଣି
ମାଆଙ୍କ କୋଳରେ ସମର୍ପି ଦେଲେ ।

---

## ଛଅ ପୁଅଙ୍କର ନାମ :—

୧—କୀର୍ତ୍ତିମାନ ୪—ଋଜୁ
୨—ସୁଷେଣ ୫—ସଂମର୍ଦ୍ଦନ
୩—ଭଦ୍ରସେନ ୬—ଭଦ୍ର

ପାତାଳରୁ ଆସିବା ପରେ ନାମକରଣ ।

# ଗୀତାବାଣୀ

ଓଁ ପାର୍ଥାୟ ପ୍ରତିବୋଧିତାଂ ଭଗବତା ନାରାୟଣେନ ସ୍ୱୟଂ
ବ୍ୟାସେନ ଗ୍ରଥିତାଂ ପୁରାଣମୁନିନା ମଧ୍ୟେ ମହାଭାରତଂ,
ଅଦ୍ୱୈତାମୃତବର୍ଷିଣୀଂ ଭଗବତୀମଷ୍ଟାଦଶାଧ୍ୟାୟିନୀ-
ମମ୍ବ ତ୍ୱାମନୁସନ୍ଧଧାମି ଭଗବଦ୍‌ଗୀତେ ଭବଦ୍ୱେଷିଣୀଂ ।

ନମୋଽସ୍ତୁତେ ବ୍ୟାସବିଶାଳ ବୁଦ୍ଧେ
ଫୁଲ୍ଲାରବିନ୍ଦାୟତପତ୍ରନେତ୍ର
ଯେନ ତ୍ୱୟା ଭାରତ ତୈଳପୂର୍ଣ୍ଣଃ
ପ୍ରଜ୍ୱାଳିତୋ ଜ୍ଞାନମୟଃ ପ୍ରଦୀପଃ ।

ଯଦା ଯଦା ହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ !
ଅଭ୍ୟୁତ୍ଥାନମଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହଂ ।

———

# ଶ୍ରୀକୃଷ୍ଣ ସାରଥ୍ୟ

ଧୃତରଷ୍ଟ୍ର ଜନ୍ମ ଅନ୍ଧ ରଜାର ଅଯୋଗ୍ୟ,
ତେଣୁ ପାଣ୍ଡୁ ସାନ ଭାଇ ହୋଇଥିଲେ ରଜା ।
ମଲେ ଅକାଳରେ ପାଣ୍ଡୁ ରଖି ପାଞ୍ଚ ପୁଅ,
ସକଳେ ବୟସେ ଶିଶୁ ।
ଧୃତରଷ୍ଟ୍ର ଶହେ ପୁଅ, ସେ ଷ ସେହିପରି,
ବୟସରେ ବଡ଼ ଯୁଧିଷ୍ଠିର ସବୁଠାରୁ,
ଯୁଧିଷ୍ଠିର ରଜା ହେବା ଅଟଇ ଉଚିତ,
ଧୃତରଷ୍ଟ୍ର ସୁତେ ସକଳେ ହିଂସୁକ, ଦୁଷ୍ଟ, ନିର୍ମମ କପଟୀ ।
ଦୁର୍ଯ୍ୟୋଧନ ଜ୍ୟେଷ୍ଠ, ସହ୍ୟପାରେ ନାହିଁ କେବେ
ପାଣ୍ଡବଙ୍କ ଶିରୀ । ଆଶଙ୍କା ତାହାର, ହେବ ଯୁଧିଷ୍ଠିର ରଜା ।
ମଧ୍ୟମ ପାଣ୍ଡବ ଭୀମ ସବୁଠାରୁ ବଳୀ ।
ବାଗୁଡ଼ି ଖେଳରେ ଥରେ, ଶହେ ଭାଇ ମିଳି
ପାରିଲେନି ପାଞ୍ଚେ । ଭୀମ ହେଲା ସର୍ବଶ୍ରେଷ୍ଠ ।
ଦୁର୍ଯ୍ୟୋଧନ ମନେ ହିଂସା ହେଲା ସେଥିପାଇଁ ।
କପଟ ମାରିବ ଭୀମେ, ଖୋଜିଲା ସନ୍ତ ।
ଖୁଆଇ ବିଷଲଡୁ ଥରେ, ଅଚେତ ବେଳରେ
ମରିବ ସେ ବୁଡ଼ି ଭାବି, ଫିଙ୍ଗିଲା ଗଙ୍ଗାରେ ।
ମଲା ନାହିଁ ଭୀମ, କିନ୍ତୁ ଧରମବଳରୁ ।
ଜଣା ପଡ଼ିଗଲା କଥା;
ତେଣୁ ଧୃତରଷ୍ଟ୍ର ଏକାଠି ନ ରଖି ପୁଏ,

ପେଶିଲା ପାଣ୍ଡବେ, ରହିବେ ବାରୁଣାବନ୍ତେ ।
ତୋଳାହୋଇଲା ଘର ଜଉ ଛଣ ଘିଏ,
ନିଆଁରେ ସେ ପୋଡ଼ିଯାଏ ।
ଉଦ୍ଦେଶ୍ୟ, ମରିବେ ପାଣ୍ଡବେ
ଶୋଇଲାବେଳେ ଲଗାଇଲେ ନିଆଁ;
ଦୁର୍ଯ୍ୟୋଧନର ମନ୍ତ୍ରଣା ।
ବିଦୁର ଆଗରୁ,
କରିଥିଲେ ହୁସିଆର ପାଣ୍ଡବମାନଙ୍କୁ ।
ତେଣୁ ସେ ଉବୁରିଗଲେ ଗୃପତ ମାରଣୁ ।
ଜଉଘରୁ ଯାଇଁ, ବଣେ ପଶି ଲୁଚି ଲୁଚି
ବୁଲି ନାନା ବଣ, ଦେଶ; ପହଞ୍ଚିଲେ ଶେଷେ ପାଞ୍ଚାଳେ,
ବ୍ରାହ୍ମଣ ବେଶେ ।
ସ୍ୱୟମ୍ବର ସଭା ହେଉଥିଲା କୃଷ୍ଣାଙ୍କର ବିବାହ ନିମିତ୍ତ ।
ଯାଇଥିଲେ ନାନା ଦେଶୁଁ ରଜା, ରାଜପୁତ୍ର,
ଲକ୍ଷ୍ୟଭେଦି ଦ୍ରୌପଦୀଙ୍କୁ ଲଭିବାର ପାଇଁ ।
ଦୁର୍ଯ୍ୟୋଧନ ଶଦ୍ଦେ ଭାଇ ଯାଇଥିଲେ ମଧ୍ୟ,
ଭୀଷ୍ମ ଦ୍ରୋଣ କର୍ଣ୍ଣ ଆଦି ସଙ୍ଗତରେ ଧରି ।
ଯାଇଥିଲେ ରାମକୃଷ୍ଣ ।
ରଜାମାନେ କେହି ବିନ୍ଧି ପାରିଲେନି ଲକ୍ଷ ।
ଭୀଷ୍ମ ଦ୍ରୋଣ କର୍ଣ୍ଣ ବିନ୍ଧି ପାରିଥାନ୍ତେ ଲକ୍ଷ,
କୃଷ୍ଣ ଚନ୍ଦ ପେଶି କନ୍ତୁ ଆବରିଲେ ମାଛ ।
ଜାଣନ୍ତି ସେ ଆଗୁଁ କନ୍ୟା ନେବ ଦୁର୍ଯ୍ୟୋଧନ,
ଭୀଷ୍ମ, ଦ୍ରୋଣ, କର୍ଣ୍ଣ କେହି ବିନ୍ଧିଲେ ଲକ୍ଷକୁ ।
ପାପୀକୁ ଦ୍ରୌପଦୀ ଦେବେ ନାହିଁ କଦାଚନ ।
ଦେଲେ, ହେବ ନାହିଁ ତାଙ୍କ ଧର୍ମ-ସଂସ୍ଥାପନା,
ଦୁଷ୍ଟର ଦଳନ ।
ଧୃଷ୍ଟଦ୍ୟୁମ୍ନ ଡାକ ଉଚ୍ଚେ କହିଲ ସଭାକୁ—
"ଶୁଣ, ଯେ ଅଛ ସଭାରେ ବ୍ରାହ୍ମଣ, ଶୂଦ୍ରାଳ

ଆଜି ଯେ ବିନ୍ଧିବ ଲକ୍ଷ, ଲଭିବ ଦ୍ରୌପଦୀ,
କରିବ ଭରସା ତାର ।"
ଶୁଣି ସେ ଡାକକୁ,
ପାଞ୍ଚଜନ୍ୟ ଶଙ୍ଖ ବାଇ କହିଲେ ଶ୍ରୀକୃଷ୍ଣ—
"ଉଠ ଫାଲଗୁନ ! ବନ୍ଧୁ,
ତୁମ ଛଡ଼ା ଆଉ କେହି ବିନ୍ଧି ପାରିବେନ ।"
ଲଭିଲେ ଦ୍ରୌପଦୀ ବିନ୍ଧି ଲକ୍ଷ ଅରଜୁନ,
ଗରିବ ବ୍ରାହ୍ମଣ ମଣି, ଦୁର୍ଯ୍ୟୋଧନ ପାଞ୍ଚ
କିଣିବ ଦ୍ରୌପଦୀ ବୋଲି, ପଠାଇଲା ଦୂତ
ଧନରତ୍ନ ଦେଇ କଳିବ ବ୍ରାହ୍ମଣ ମନ ।
କିଳିବ ମୂଳର ।
ଅର୍ଜୁନ ସହିବେ ତାହା ? ପାଇଲା ଉତ୍ତର
ତୀବ୍ର, ହୋଇଲା ସମର ।
ଏକାକୀ ମହିଲା ଥାଇ ବୀର ଅରଜୁନ ।
ପଳାଇଲେ ସବୁ ଭୟେ ଛିନ୍ନଛନ୍ନ ହୋଇ ।
ଦୁର୍ଯ୍ୟୋଧନ ଈର୍ଷା ଦ୍ୱେଷ ବଢ଼ିଲା ଅଧିକ,
ଫେରିଲେ ହସ୍ତିନା ପାର୍ଥ ଦ୍ରୌପଦୀଙ୍କୁ ନେଇ ।
ଯୁବରାଜ କଲା ଯୁଧିଷ୍ଠିରେ ଧୃତରାଷ୍ଟ୍ର,
ଘୋଷିଲା ପାଣ୍ଡବ ଯଶଃ ରାଜ୍ୟରେ ବାହାରେ ।
ଧୃତରାଷ୍ଟ୍ର ନିଜେ ମଧ୍ୟ ହୋଇଗଲେ ଈର୍ଷୀ,
ପୁତୁରାମାନଙ୍କ ଯଶ ପାରିଲେନି ସହି,
କନ୍ଦାକଟା କଲା ପୁଣି ପୁଅ ଦୁର୍ଯ୍ୟୋଧନ
ରାଜା ହେବା ପାଇଁ ।
ଖୋଜିଲେ ଉପାୟ ତେଣୁ, ଇନ୍ଦ୍ରପ୍ରସ୍ଥ ଦେଇ
ପଠାଇଲେ ପାଣ୍ଡବଙ୍କୁ ରହିବେ ସେ ସେଠି,
ରାଜପୁରଯୋଗ୍ୟ ଘର ନ ଥିଲା ସେଠାରେ ।
ଶ୍ରୀକୃଷ୍ଣ ବିଶ୍ୱକର୍ମାଙ୍କୁ ଗୁପତରେ କହି,
ଗଢ଼ିଲେ ନଅରଟିଏ ରାଜଯୋଗ୍ୟ କରି,

ବଳିଲ ସେ ହସ୍ତିନାର ରାଜପୁରଠାରୁ ।
ଦୁର୍ଯ୍ୟୋଧନ ସହିଲନି, ଜଳିଲ ଈର୍ଷାରେ ।
କପରି ତା ଅପହରି ନେବ ଚାର କରି,
ପାଞ୍ଚିଲ ଉପାୟ ବସି ମାମୁଁର ସଙ୍ଗରେ,
କପଟ ପଶାର ପାଲି ପାତିଲା ସେଇଠୁ ।
ଥର ଥର ତିନି ଥର ହାରିଲେ ଯୁଧିଷ୍ଠି ।
ଦ୍ରୌପଦୀ ଓ ଇନ୍ଦ୍ରପ୍ରସ୍ଥ ନେଲ ସବୁ ହରି ।
ଦ୍ରୌପଦୀଙ୍କ ଚୁଟି ଧରି ନେଇ ସଭାତଳେ
କରିଲ ଲଙ୍ଗଳା ।
ଭୂମିକମ୍ପେ ଥର ଥର ଥରିଲ ହସ୍ତିନା ।
ଲାଗିଲ ଅନଳ ଆସି କାହୁଁ ଆଚମ୍ବିତେ
ହସ୍ତିନା ନଅରେ ପୁଣି ରାଜବଧୂବାସେ ।
ସ୍ତ୍ରେବ୍ୟସ୍ତେ ବୋହୂମାନେ ଲଙ୍ଗଳା ମୁକୁଳା
ହୋଇ ଆସିଲେ ସଭାକୁ ।
ଦେଖିଲେ ମୁକୁଳା ବେଶ ସଭାରେ ସକଳେ,
ସଙ୍ଗେ ସଙ୍ଗେ ଫଳ ଫଳିଗଲା ଅଧର୍ମର ।
ତେବେ ବି ଜାଣିଲ ନାହିଁ ଖଳ ଦୁର୍ଯ୍ୟୋଧନ ।
ସବଶେଷେ ହାରି ଧର୍ମ କପଟ ପଶାରେ
ଚାଲିଲେ ଅରଣ୍ୟ ଭାଇ ଭାର୍ଯ୍ୟା ସହିତରେ
ବାର ବର୍ଷ ପାଇଁ ।
ପୁଣି ଅଧିକ ବରଷେ ରହିବେ ଅଜ୍ଞାତେ ।
ଜଣାପଡ଼ିଗଲେ ଯିବେ ଆଉ ବାର ବର୍ଷ ।
ଯେବେ ବନବାସେ ଥିଲେ ପାଣ୍ଡୁପୁତ୍ରମାନେ,
ପଠାଇଲ ଦୁର୍ଯ୍ୟୋଧନ ପାପୀ ଜୟଦ୍ରଥେ
କଉରବଙ୍କ ଭଣୋଇ, ହରିବ ଦ୍ରୌପଦୀ ।
କିନ୍ତୁ ହରିବା ବେଳରେ ପଡ଼ିଗଲ ଧରା ।
ଭୀମ ଦେଲ ଅପମାନ ନ ମାରି ଜୀବନେ,
ଛାଡ଼ିଦେଲା ଧର୍ମଙ୍କର ଉପଦେଶ ମାନି ।

ପଠାଇଲା ଦୁର୍ଯ୍ୟୋଧନ ପୁଣି ଦୁର୍ବାସାଙ୍କୁ
ଶିଷ୍ୟଗଣ ସହ ବନେ ରାତ୍ରି ଅଧଷ୍ଠାନରେ ।
ପାଣ୍ଡବଙ୍କ ପାଶେ ଯାଇ ମାଗିବେ ଭୋଜନ ।
ପାଣ୍ଡବେ ତା ପାରିବେନି, ଋଷି ଶାପ ଦେଇ
କରିଦେବେ ଭସ୍ମ ବୋଲି । ଗଲେ ବି ଦୁର୍ବାସା ।।
ମାଗିଲେ ଖାଇବା ପାଇଁ ଅବେଳେ ରାତ୍ରିରେ ।
ଯୁଧିଷ୍ଠିରଙ୍କର ସାହା ଉଡ଼ିଲା ଉପୁରେ ।
କହିଲେ ଯାଜ୍ଞସେଣୀଙ୍କୁ ଯାଇ ସବୁ କଥା,
ତାଙ୍କର ତୁଟିଲା ଧୈର୍ଯ୍ୟ ।
ଅଗତ୍ୟା କାତର ହୋଇ ଡାକଲେ କୃଷ୍ଣଙ୍କୁ,
କାହିଁ ଘୋର ବନ, କାହିଁ କେତେ ଦୂରେ କୃଷ୍ଣ,
ଅନ୍ଧାର ନିଶୀଥ ! ଶୁଣିଲେ ସେଇନା କୃଷ୍ଣ
ଦ୍ରୌପଦୀ କରୁଣ ଡାକ ପୁଣି ନିବେଦନ ।
ଆସିଲେ ଦ୍ୱାରକା ବର୍ଜି ପାଣ୍ଡବ ଆଶ୍ରମେ ।
ଜଣାଇଲେ ତାଙ୍କୁ ଯୁଧିଷ୍ଠିର ସବୁ ଦୁଃଖ ।
ଆତୁର କହିଲେ ଖେଦେ, "ଯାଇଛନ୍ତି ଋଷି
ଶିଷ୍ୟ ସହ ସାରି ସ୍ନାନ ସନ୍ଧ୍ୟା ଜାହ୍ନବୀରେ,
ଆସିବେ ଏଇନା, କରିବେ ଭୋଜନ ଏଠି ।"
ହସି ହସି କୃଷ୍ଣ ଚଲେ ଦ୍ରୌପଦୀଙ୍କ ପାଶେ ।
କହିଲେ, "ଖାଇବି କିଛି ଦିଅ ଯାଜ୍ଞସେଣୀ !"
ନ ଥିଲା ତ କିଛି,
ବୁଡ଼ିଲା ଦ୍ରୌପଦୀଙ୍କର ସାହସ ଭରସା,
ଶୁଖାଇ ମୁହଁଟି ଧୀରେ କହିଲେ ଦ୍ରୌପଦୀ
ସବୁ, ହାତଯୋଡ଼ି କରି ।
"ତୁମେ ବି ଆସିଲ ପ୍ରଭୁ ! ଛଳିବାର ପାଇଁ !
କି ଅଛି ବନବାସୀର ଘରେ ଏତେବେଳେ !
ସୁଝିଲି ସଂକଟେ ପଡ଼ି ଯୋଡ଼ିଥି ପାଣିଙ୍କି
ତୁମେ ବି ମିଶାଇଦେଲ ଆତୁର ସଂକଟ !

ଜଗତର ନାଥ ତୁମେ ସର୍ବ ଅନ୍ତର୍ଯ୍ୟାମୀ,
ପାଣ୍ଡବ ଭରସା ତୁମେ ବିପଦ ବେଳରେ,
ଘୁଞ୍ଚ ଏ ଛଳନା ପ୍ରଭୁ ରଖ ପାଣ୍ଡବଙ୍କୁ ।
କରନା ଦାସୀକୁ ଆଉ ଏତେ ହନ୍ତସନ୍ତ !"
ହସିଲେ ଶ୍ରୀକୃଷ୍ଣ ଶୁଣି କହିଲେ, "କି ଦୁଃଖ ?
ତୁମେ ପାଣ୍ଡବଘରଣୀ ।"
କହିଲେ ଦ୍ରୌପଦୀ ସବୁ ହାତ ଯୋଡ଼ି କରି
କରୁଣ କଣ୍ଠରେ ।
ଆହୁରି ହସିଲେ କୃଷ୍ଣ, କହିଲେ ଗମ୍ଭୀରେ—
"କିଛୁ ନାହିଁ ସତ କରି କହୁଛ ହାଣ୍ଡିରେ ?
ଆଣିଲ ଦେଖିବା ଦେଖି, ଧୋଇଧାଇ କରି
ହାଣ୍ଡି ଦେଇଛ ଉଗାଡ଼ି ?
ଆଣ ଆଣ ଦେଖି ହାଣ୍ଡି ଦେଖିବା ଟିକଏ ।"
ଦ୍ରୌପଦୀ ଆଣିଲେ ହାଣ୍ଡି,
ଖଣ୍ଡି ଆଣ୍ଡି କରି ପାଇଲେ ଶାଗ ଟିକଏ
ଲାଗିଛି ହାଣ୍ଡିରେ ।
ଖାଇଦେଲେ ସେ ଟିକକ ।
ତେଣେ ଦୁର୍ବାସାଙ୍କ ପେଟ ହୋଇଗଲା ପୂର୍ଣ୍ଣ,
ନିଦ ଆସି କାହୁଁ ଯୋଟିଗଲା ନୟନରେ ।
ଶୋଇଲେ ସେଇଠି ।
ଖାଇବାକୁ ଆସିଲେନି ଆଉ ସେ ରାତିରେ ।
ସକାଳେ ବି ଆସିଲେନି ଲାଜ ସରମରେ ।
ଥରେ ଦ୍ରୌପଦୀ କଲେ ମନରେ ଗର୍ବ,!
ସବୁଠାରୁ ସତୀ ସିଏ । ଜାଣିଲେ ଶ୍ରୀକୃଷ୍ଣ ।
ସହନ୍ତି ନାହିଁ ସେ ଗର୍ବ କେତେବେଳେ କାର ।
କୌରବ ପେଶିଲା ଜଣେ ଅନୁଚରଟାଏ,
ଏତିକବେଳରେ ବନେ ଖୋଜିବ ପାଣ୍ଡବେ ।
ପାଇଲେ, ପାଣ୍ଡବେ ତେଣେ ରହିବେ ବଣରେ

ଆଜ ବାର ବର୍ଷ ପାଇଁ ।
ଜାଣିଲେ ତା କୃଷ୍ଣ ।
ଅଲେଡ଼ାରେ ଆସିଲେ ସେ ରଖିବେ ପାଣ୍ଡବେ ।
ବ୍ରାହ୍ମଣ ମାଗିଛୁ ଧର୍ମେ ଖାଇବାକୁ ଆମ୍ବ
ଅକାଳରେ ଆଚମ୍ବିତେ ।
ଯୁଧିଷ୍ଠି ହତାଶ ।
ଶ୍ରୀକୃଷ୍ଣ ପହଞ୍ଚ ସେଠି, କହିଲେ ବ୍ରାହ୍ମଣେ—
"ଯାଅ, ସାର ସ୍ନାନ ତବ ।"
ବ୍ରାହ୍ମଣେ ଚଳିଲେ ।
ଶ୍ରୀକୃଷ୍ଣ କହିଲେ ହସି—"ଆମ୍ବ ସତ୍ୟ ଫଳ,
ଫଳଇ ପାଚଇ ସିଏ ଅକାଳେ ସତ୍ୟରେ ।
ତୁମେ ସବୁ ସତ୍ୟ କଥା କହିବ କ ମୋତେ ?
ଫଳିବ ପାଚିବ ଆମ୍ବ ଖାଇବେ ବ୍ରାହ୍ମଣ ।"
ଜଣେ ଜଣ କରି ସତ କହିଲେ ଭାଇଏ,
ପଡ଼ିଲା କୃଷ୍ଣାଙ୍କ ପାଳି କହିବେ ସେ ସତ ?
ନ ହେଲେ ତ ଆମ୍ବ ଆଉ ଫଳ ପାଚିବନି,
ଅତିଥି ଫେରିବେ ଭୋକେ ଭୋଜନ ନ ପାଇ ।
ଦ୍ରୌପଦୀ କହିଲେ ସତ୍ୟ—
"ପାଣ୍ଡବଙ୍କ ସଙ୍ଗେ କର୍ଣ୍ଣଙ୍କୁ ବି ପତି କରି ପାଇବାକୁ ଇଚ୍ଛା ।"
ତାଙ୍କର ସତୀତ୍ୱ ଗର୍ବ କରିଦେଲେ ଚୂନା
ପତିମାନଙ୍କ ପାଖରେ, ଯୋଉଠି ରମଣୀମାନେ ଲୁଚାନ୍ତି ସର୍ବଥା ।
ବ୍ରାହ୍ମଣଙ୍କୁ ଦେଲେ ଆମ୍ବ ଖାଇବା ପାଇଁକି,
କିନ୍ତୁ ଖାଇବନି ।
ନେବ ତାହା ଦୁର୍ଯୋଧନେ ଦେଇ,
ପ୍ରମାଣିତ କରିଦେବ ଋଷିବେଶେ ଅରଣ୍ୟ ଆଶ୍ରମେ
ରହିଅଛନ୍ତି ପାଣ୍ଡବେ ।
ଜାଣିଲେ ଶ୍ରୀକୃଷ୍ଣ ।
ଆଗେ ଆଗେ ଯାଇ ଆମ୍ବ ନେଲେ ଅପହରି ।

କହିଗଲେ ପାଣ୍ଡବଙ୍କୁ ଲେଉଟି ଆସିଣ—
"ଗୁଲଯାଅ ଅନ୍ୟ ସ୍ଥାନେ ଆଜ ଏଇନାଏ ।"
ଚଳିଲେ ପାଣ୍ଡବେ, ସଙ୍ଗେ ଦ୍ରୁପଦୀ ନାରୀ ।
ଅଜ୍ଞାତ ଏ ବନବାସ କୋଉଠି କପରି,
ଲୁଚିବେ ବା ଲୁଗୃଇବେ ଦିବ୍ୟ ଦେହ ବପୁ !
ବୁଲି ବୁଲି ନାନା ଦେଶ ଅରଣ୍ୟ ପାହାଡ଼,
ପରିଶେଷେ ପହଞ୍ଚିଲେ ବିରାଟ ରାଜ୍ୟରେ ।
ବଦଳାଇ ବେଶଭୂଷା ଅସ୍ତ୍ରଶସ୍ତ୍ର ଥୋଇ
ଅରଣ୍ୟେ ଲୁଗୃଇ କରି । ସେଠି ଥିବାବେଳେ
କୌରବେ ସଇନ ସାଜି ଗଲେ ବିରାଟକୁ
ଛଡ଼ାଇ ଆଣିବେ ବୋଲି ବିରାଟ ଗୋଧନ ।
ଏକମାତ୍ର ଅରଜୁନ କୌରବଙ୍କୁ ଜିଣି,
ଉଦ୍ଧାରିଲେ ତାର ଗାଈ ।
ଏଇଠି ଅଜ୍ଞାତବାସ ହୋଇଗଲା ଶେଷ ।
ବିରାଟତନୟା ବାହାହେଲା ଅଭିମନ୍ୟୁ,
ଅର୍ଜୁନତନୟ ।
କୃଷ୍ଣ ବଳରାମ ଦୁଇ ଭାଇ ଯାଇଥିଲେ,
ମାମୁଁ ବୋଲି ବିରାଟକୁ ।
ଶ୍ରୀକୃଷ୍ଣ ପାଣ୍ଡବେ ଫେରିଗଲେ ଇନ୍ଦ୍ରପ୍ରସ୍ଥେ,
ପୁଅ ବୋହୂ ସହ ।
ପାଣ୍ଡବ, ବିରାଟ କୃଷ୍ଣ ହେଲେ ଶ୍ରେଷ୍ଠ ବନ୍ଧୁ,
କୁରୁକ୍ଷେତ୍ରେ ଯୁଦ୍ଧ ପାଇଁ ।
ଦୁର୍ଯ୍ୟୋଧନ ଈର୍ଷା ଆହୁରି ବଢ଼ିଲା ବେଶୀ
ପାଣ୍ଡବ ସମ୍ପଦେ ।
ଖାଣ୍ଡବ ଦହନ କାଳେ ମୟ ଦଇତକୁ,
ମାରୁଥିଲେ କୃଷ୍ଣ ଚକ୍ର ପେଶି ତା ଉପରେ ।
ଡାକିଲା ଦଇତ ଉଚ୍ଚେ, "ରଖ ଅରଜୁନ !"
ଶରଣରକ୍ଷକ ପାର୍ଥ ରଖିଥିଲେ ତାକୁ ।

ସୁଦର୍ଶନେ ଚକ୍ର ଦାଉଁ ।
ସମସ୍ତକୁ ଶ୍ରୀକୃଷ୍ଣ କହିଥିଲେ ସମାଚାର,
ତୋଳିଦେବା ପାଇଁ ରାଜସୂୟ ଯଜ୍ଞକାଳେ ।
ସମୃଦ୍ଧି ଦେଖି ଦୁର୍ଯ୍ୟୋଧନ ଈର୍ଷା ପୁଣି
ବଢିଲ ଅଧିକ ।
ରାଜସୂୟ ଯଜ୍ଞ କରି ବଢ଼ିଲ ଗୌରବ,
ବେଶୀ ଯୁଧିଷ୍ଠିରଙ୍କର ।
କିନ୍ତୁ ଇନ୍ଦ୍ରପ୍ରସ୍ଥ ଛଡ଼ା ନାହିଁ ଆଉ କିଛି ।
ଶାନ୍ତି ଇଚ୍ଛାକରି କୃଷ୍ଣ ଦୂତ ହୋଇକରି
ଯାଇଥିଲେ ହସ୍ତିନାକୁ ପାଞ୍ଚଖଣ୍ଡି ପଡ଼ା
ମାଗିବେ ଦୁର୍ଯ୍ୟୋଧନଙ୍କୁ ରାଜ୍ୟ ବଦଳରେ ।
ଦୁର୍ଯ୍ୟୋଧନ ଦେବ ନାହିଁ ଛୁଞ୍ଚିମୂନ ଭୂଇଁ ବୋଲି
କରିଲା ପ୍ରତିଜ୍ଞା ।
ପୁଣି ଶ୍ରୀକୃଷ୍ଣଙ୍କୁ ବାନ୍ଧିବାକୁ କରିଲା ପ୍ରୟାସ,
ତେଣୁ ହେଲା ଯୁଦ୍ଧ ଅନିବାର୍ଯ୍ୟ, ହେଲା ଶେଷ ।
ଭୀଷ୍ମ ଦ୍ରୋଣ କର୍ଣ୍ଣ ହେଲେ ବି ସଜ୍ଜନ,
ହେଲେ ସାହା ଦୁଷ୍ଟଙ୍କର !
ତେଣୁ ସେ ହେଲେ ଦୂଷିତ ଧର୍ମର ଆଖିରେ ।
ହେଲା ସେନା ସମାବେଶ ।
ଏଗାର ଅକ୍ଷୌଣୀ ହେଲେ କଉରବ ପକ୍ଷେ,
ସାତ ଅକ୍ଷୌହିଣୀ ମାତ୍ର ପାଣ୍ଡବଙ୍କ ସେନା ।
ରାଜସୂୟ ଯଜ୍ଞ ପରେ ହେଲା ବି ଏସନ ।
ଏଥିରୁ ମିଳୁନି କ'ଣ ପାପ ପରିମାଣ ?
ଚଳିଲେ ଉଭୟ ପକ୍ଷ, ଡାକିବେ କୃଷ୍ଣଙ୍କୁ ।
ଦ୍ୱାରକାକୁ ଗଲେ ଦୁର୍ଯ୍ୟୋଧନ, ଅରଜୁନ ।
ଶ୍ରୀକୃଷ୍ଣ ଶୋଇବା ଦେଖି ଅରଜୁନ ଯାଇଁ
ବସିଲେ ନୀରବେ ଶ୍ରୀକୃଷ୍ଣଙ୍କ ଗୋଡ଼ତଳେ ।
ମାତ୍ର ଦୁର୍ଯ୍ୟୋଧନ

ବସିଲା ମୁଣ୍ଡ ଉପରେ ସୁବର୍ଣ୍ଣ-ଆସନେ ।
ଦେଖିଲେ ଶ୍ରୀକୃଷ୍ଣ ଗୃହେଁ ପଶିଲେ ଅର୍ଜୁନେ ।
ଦେଖିଲେ ଉଠି ତା ପରେ ଅଛୁ ଦୁର୍ଯ୍ୟୋଧନ ।
କହିଲେ ଉଭୟ ତାଙ୍କ ଯିବାର ଉଦ୍ଦେଶ୍ୟ ।
ଶ୍ରୀକୃଷ୍ଣ କହିଲେ ହସି, "ବଡ଼ ଜଞ୍ଜାଳ ତ ।
କାହାକୁ କହିବ ନାହିଁ, କାହାକୁ ବା ହଁ ।"
ଦୁହେଁଯାକ ଏକାପରି ମୋହର ଆତ୍ମୀୟ ।
ଇଚ୍ଛା ଥିଲା କୋଉ ଆଡ଼େ ଯିବ ନାହିଁ ବୋଲି ।
କିନ୍ତୁ ଯୁଦ୍ଧ ଡାକରା ଏ,
ନ ଗଲେ କ୍ଷତ୍ରିୟ ଧର୍ମେ ହେବ ଅପମାନ ।
ଆଚ୍ଛା ତେବେ ଶୁଣ ଦୁହେଁ କହିବି କଥାଏ ।
ଅର୍ଜୁନେ ଦେଖିଛୁ ଆଗ, ତୁମକୁ ପଛରେ ।
ସେଥିପାଇଁ କହେ—
ନାରାୟଣୀ ସେନା ମୋର ଏକ ଅରବୁଦ ।
ତାଙ୍କୁ ନିଅ ଦୁର୍ଯ୍ୟୋଧନ ।
ଅର୍ଜୁନ ନିଅନ୍ତୁ ମୋତେ ଏକା ଅସ୍ତ୍ରହୀନ ।
ଧରିବିନି ଅସ୍ତ୍ର ।
ହେବି ମୁଁ ସାରଥି ଖାଲି ଅର୍ଜୁନ ରଥରେ ।
କଅଣ କହୁଛ ଦୁହେଁ ?"
ଦୁର୍ଯ୍ୟୋଧନ ଖୁସି, ଅର୍ଜୁନ ବି ତତୋଽଧିକ ।
ଯଥା କୃଷ୍ଣ ତଥା ଜୟ ଭୁଲି ଦୁର୍ଯ୍ୟୋଧନ
ନେଲା ଅସ୍ତ୍ରଧର ଏକ ଅରବୁଦ ସେନା ।
ବୁଦ୍ଧି ହେଲା ବଣା ।

———

# ସମରକ୍ଷେତ୍ରେ

ଦୁଇ ପକ୍ଷେ ରଥ ଗଜ ସେନା ସେନାପତି
ହେଲେ ସମାବିଷ୍ଟ ଧରି ଅସ୍ତ୍ରଶସ୍ତ୍ର କରେ ।
କୌରବ ପକ୍ଷରେ ଆଗ ଶୁଣାଗଲା ଶଙ୍ଖ ।
ପ୍ରତ୍ୟୁତ୍ତରେ ଅରଜୁନ ବଜାଇଲେ ଦେବଦତ୍ତ ଶଙ୍ଖ ଘନ ଘନ ।
ଦେବତାଙ୍କ ଦାନ ସିଏ, ଥରିଯାଏ ଅରି
ଶୁଣି ସେ ଶଙ୍ଖର ଧ୍ୱନି, ପୌଣ୍ଡ୍ର ଶଙ୍ଖ ଧରି
ବଜାଇଲେ ଭୀମ ।
ପବନ-ତନୟ ସିଏ,
ପବନ ଅଭାବ ହେବ ଶଙ୍ଖ ଫୁଙ୍କିବାକୁ ?
ଥର ଥର ଥର ଥରିଲା ବସୁଧା ନାଦେ ।
କେତେକ ହାତରୁ ଖସିପଡ଼ିଲା ଭୂଇଁରେ ଧନୁ, ଗଦା, ଖଣ୍ଡା ।
ଯୁଧିଷ୍ଠିର ବଜାଇଲେ ଅନନ୍ତ ବିଜୟ ।
ବିଜୟ-ସଂକେତ ସିଏ ଧରମ ବଳରେ ।
ନକୁଳ ସୁଘୋଷ ବାଇ ମୁଗଧ କଲେ ସେନା ।
ମଧୁର ଗମ୍ଭୀର ସେହି ଶଙ୍ଖର ନିଃସ୍ୱନ ।
ମଣିପୁଷ୍ପକ ବଜାଇ ମନ୍ତ୍ରୀ-ସହଦେବ
ଫୁଟାଇଲେ ହସପୁଷ୍ପ ଅଧରେ ଅଧରେ
ଭବିଷ୍ୟତ ବିଜୟର ଘୋଷଣା ପ୍ରଚୁର ।
ପାଞ୍ଚଜନ୍ୟ ବାଇ କୃଷ୍ଣ
କରିଲେ ପ୍ରଚୁର ଉଚେ ସମରର ମାତି—

"ସମ୍ମୁଖେ ସମ୍ମୁଖେ ରଣ କର ବୀରଗଣ
ଅର୍ଜନ ଅକ୍ଷୟ ଯଶଃ କୀରତି ଧରାରେ ।
ପଛ କରିଥିବ ଯିଏ ମାରନା ତାହାକୁ ।
ଗୋଡ଼ାଇ ମାରନା ପଛୁଁ ପଳାତକ ଯିଏ ।
ମାରନା ସମରେ କାରେ ପାଞ୍ଚ ସାତ ମିଶି ।
କରନା ପ୍ରହାର ହୀନଅସ୍ତ୍ର, ହୀନଯାନେ ।
କରନା ଆହତ ଦର୍ଶକ, ସେବକ, ବୈଦ୍ୟେ ।
ତୃଷାର୍ତ୍ତ, ଆହତ
କିବା ସୁପ୍ତ ବିପକ୍ଷକୁ ମାରନା କଦାପି ।
ଏତକ ମାନିଲେ ଯାଇଁ ହେବ ଧର୍ମରଣ,
ନ ହେଲେ ଅଧର୍ମ ବୋଲି ହେବ ପ୍ରଚୁରିତ ।
ଅହିଂସା ସମର କାହିଁ ନୁହଇ ସମ୍ଭବ ।
ଯହିଁ ରକ୍ତପାତ ତହିଁ ହିଂସା ଅନିବାର୍ଯ୍ୟ ।
ଅରକ୍ତ ସମର କାହିଁ ନାହିଁ ଧରାଧାମେ ।
ଧରମେ ଅଧର୍ମେ ଯୁଦ୍ଧ ହୁଏ କାଳେ କାଳେ ।
ଶେଷରେ ଧର୍ମର ଜୟ ଏହା ସୁନିଶ୍ଚିତ ।
ଧର୍ମାଧର୍ମ ବିଚୁରିବା ନୁହଇ କେବେ ସମ୍ଭବ ସମସ୍ତଙ୍କ ପକ୍ଷେ ।
ଅଧର୍ମୀ ଅଛନ୍ତି, ଥିଲେ, ଥିବେ ସବୁବେଳେ ।
ସମର ବାଛଇ ତାହା ମାରି ବା ନ ମାରି ।
ସମରେ ଥାଆନ୍ତି ଧର୍ମୀ ଅଧରମୀ ମିଶି ।
ନ ହୋଇଥିଲେ ତାହା,
ସମର ସମ୍ଭବ କେବେ ହୁଅନ୍ତା କେଉଁଠି ?
ସମର ସ୍ୱାର୍ଥରେ ପୂର୍ଣ୍ଣ, ନୁହଇ ନିଃସ୍ୱାର୍ଥ ।
ନୁହଇ ତା ଧରମର ଧ୍ୟାଇ କଦାଚନ ।
ଶତ୍ରୁ ଶବ ମଧ୍ୟେ ଏହା ସକାମ ନୃଯଜ୍ଞ ।
ତେବେ କ୍ଷତ୍ରିୟଙ୍କ ପାଇଁ
ସମାଜ ଦେଇଛି ଏହି କ୍ରୂର କର୍ମ ଲଦି ।

ଆହୁରି କହୁଛ ଗର୍ବେ, ଯିଏ ମରେ ଯୁଦ୍ଧ
ପାପୀ ହେଉ ପଛେ ଲଭଇ ସ୍ୱରଗ ସୁଖ,
ପାପବଣି ଯୁଦ୍ଧ-ଯଜ୍ଞେ ଦେଇଣ ଆହୁତି ।
ନୁହଇ ପ୍ରେରଣା ଏହା ସକାମ କର୍ମର ?
ଅଠର ଅକ୍ଷୌଣୀଙ୍କର କିବା ଅଛି ସ୍ୱାର୍ଥ ?
ସ୍ୱାର୍ଥ ଖାଲି କୌରବର କିବା ପାଣ୍ଡବର ।
ସଙ୍କୁଚିତ କଲେ ହେବ ଯୁଧିଷ୍ଠିରଙ୍କର
କିବା ଦୁର୍ଯୋଧନଙ୍କର ।
ଭୀଷ୍ମ ଦ୍ରୋଣ କର୍ଣ୍ଣ ସବୁ ବଡ଼ ବଡ଼ ଜ୍ଞାନୀ,
କି ସ୍ୱାର୍ଥ ତାଙ୍କର ଯୁଦ୍ଧେ ଆସିଛନ୍ତି ଧାଇଁ ।
ଶରଶରାସନ ଧରି ଯତି ବୟସରେ ?
ଦ୍ରୋଣାଚାର୍ଯ୍ୟ ଗୁରୁ, ବ୍ରାହ୍ମଣ, ପିତାର ସମ ।
କି ଲୋଡ଼ା ହୋଇଲା
ସିଏ କ୍ଷାତ୍ରବୃତ୍ତି ନେଇ ପଶିଲେ ସମରେ ?
ଶିକ୍ଷାଦେବା ଅଧିକାର ଅଛି ବ୍ରାହ୍ମଣର ।
ମାନଇଁ ମୁଁ ଗଉରବ ପକ୍ଷପାତ କିଆଁ ?
ଭୀଷ୍ମ ପିତାମହ ଶ୍ରେଷ୍ଠ,
କୌରବ ପାଣ୍ଡବ ଦୁହେଁ ସମାନ ତାଙ୍କର ।
କିଆଁ ଧନୁ ଧରି ସଜ ସମରଭୂଇଁରେ ?
ପୁଣି ସେନାପତି ? ନ ଥିଲା ବିଚାର ତାଙ୍କ
କରିବାକୁ ଶାନ୍ତ ଖଳ ଦୁଷ୍ଟ ଦୁର୍ଯୋଧନେ ?
ସେ ଯଦି ନୁହନ୍ତେ ଯୁଦ୍ଧ ପାଇଁ ସଜବାଜ,
ସମର କରନ୍ତା କେବେ ଦୁର୍ଯୋଧନ ସ୍ଥିର ?
ରଖିଦେଲେ ନାହିଁ ମୋତେ ନିରପେକ୍ଷ କରି ।
ନେଲି ମୁଁ ଧରମ ପକ୍ଷ, ସାରଥି ରୂପରେ ।
ମହାରଥୀ ଯିଏ, ଆଜି ସେ ସାରଥି ଏଠି,
ଆତ୍ମରକ୍ଷା ପାଇଁ ଧରିବ ନାହିଁ ସେ ଅସ୍ତ୍ର ।
ଏଇଥିରୁ ବାଛିନିଅ ଧର୍ମାଧର୍ମ ସବୁ ।

ଧର୍ମ ଏକା ସ୍ୱର୍ଗପଥେ ହୁଅଇ ସାରଥି ।
ପଞ୍ଚଶାମ ରହିଅଛୁ ଏଇନା ଅଦୃଷ୍ଟ ।
ଯାର ଆଖି ଅଛୁ, ତାର ପାଖେ ଅନ୍ତ ସ୍ୱଚ୍ଛ ।”
ଶଙ୍ଖ ବଜାଇବା ହେଲା ସ୍ଥଗିତ ରହିତ ।
ଅର୍ଜୁନ କହିଲେ କୃଷ୍ଣେ—
“ହେ ମଧୁସୂଦନ !
ସେନା ମଧ୍ୟସ୍ଥଳେ ରଖନ୍ତୁ ମୋ ରଥ ନେଇ ।
ଦେଖେଁ ମୁଁ ସମର ମୋର ହେବ କାହା ସଙ୍ଗେ ।”
ଶ୍ରୀକୃଷ୍ଣ ଚାଳିଲେ ରଥ, କପିଧ୍ୱଜ ନାମ ।
ଚୂଡ଼ାରେ ଉଡ଼ଇ ଯାର ଶୁକଲ କେତନ ।
ଅଙ୍ଗରେ ଅଙ୍କିତ ପାବମାର ବଣ୍ଟରୂପ ।
ଅର୍ଜୁନ ଦେଖିଲେ ଆଗେ ଭୀଷ୍ମ ପିତାମହ ।
ଭୀଷ୍ମକର୍ମା, ଭୀଷ୍ମପ୍ରତିଜ୍ଞ ଯାହାର ଭବେ ।
ଦ୍ରୋଣ ଗୁରୁ ପୁଣି ପିତାରୁ ଅଧିକ ଯିଏ,
ଯାହାଙ୍କ କୃପାରୁ ସେ ଆଜ ଧାନୁଷ୍କଶ୍ରେଷ୍ଠ ।
ଅଧିକ କରନ୍ତି ସ୍ନେହ ନିଜ ପୁତ୍ରଠାରୁ ।
କି ଦୋଷ କଲି ମୁଁ କେବେ ଜାଣିପାରି ନାହିଁ ।
କରୁଣାସାଗର ଯିଏ ସେ ଆଜ କରାଳ ।
ଗୁରୁଦ୍ରୋହ କିବା ମୁହିଁ କଲି କେଉଁଠାରେ ?
ଗୁରୁ ଅଧିକାର କ'ଣ ନ ଥିଲା ତାଙ୍କର,
ପୀଡ଼ନ୍ତେ ନିନ୍ଦୁକେ କାହିଁ ଅମ୍ଳାନ ବସି ?
କର୍ଣ୍ଣ ସହୋଦର,
ଭୁଲିଲେ ଜନନୀ-ମାୟା, ରକ୍ତର ସମ୍ବନ୍ଧ ।
କାହିଁକି ? ହେଲାରେ କଲି ତାଙ୍କର ଅବଜ୍ଞା
ଅସ୍ତ୍ର-ତୁଳନାରେ ଗର୍ବେ ? କର୍ଣ୍ଣାର୍ଜୁନ ହେଲେ
ଏକାଠେଇ ଦୁର୍ଯ୍ୟୋଧନ କରନ୍ତା ସାହସ,
ତୁଣ୍ଡାଇ ବଳୁଆଗୁଡ଼ା ସିଂହ ମାରିବାକୁ ?
ଶଲ୍ୟ ମାମୁଁ, ବଡ଼ଭାଇ ମାତା ମାଦ୍ରୀଙ୍କର ।

ଦୁର୍ଯ୍ୟୋଧନ, ଦୁଃଶାସନ
ସବୁ ସହୋଦର ସମ, ସମ୍ପର୍କ ରକ୍ତରେ ।
ଦୁର୍ଯ୍ୟୋଧନ ସୁତ
ଲକ୍ଷ୍ମଣ କୁମର ବଳେ ଅଭିମନ୍ୟୁଠାରୁ ।
ଜୟଦ୍ରଥ ଭଗ୍ନୀପତି ଦୁଃଶଳା-ରମଣ ।
ବିଚଳିତ ହେଲା ମନ ସ୍ନେହ ଭକ୍ତି ବଶୁଁ ।
ଧାର୍ମିକର ମନ ସଦା ହୁଅଇ ଏପରି ।
ବିବେକ କରାଇ ସଦା ଜାଗ୍ରତ ସତର୍କ ।
ଉଠିଲା ବେପଥୁ ଅଂଗେ, ଥରିଗଲା ବାହୁ
ବକ୍ଷ । ପାରିଲେନି ଧରି
ମହାବଳବାନ ଧନୁ ଗାଣ୍ଡୀବ ଯା ନାମ ।
କହିଲେ ଆରକ୍ତେ ଚାହିଁ କୃଷ୍ଣଙ୍କ ବଦନ—
"ପାରିବିନି ପ୍ରଭୁ ! ପାରିବିନି ଯୁଦ୍ଧ କରି !
ପାରିବିନି ମାରି କେବେ ଆତ୍ମୀୟସ୍ୱଜନ ।
ଥର ଥର ଥର ମୋର କଂପୁଛି ଶରୀର ।
କର ମୋ ଅବଶ । ପାରିବିନି ଧନୁ ଧରି,
ଦେହରେ ଜଳୁଛି ମୋର ତୀବ୍ର ହୁତାଶନ,
କଣ୍ଠ ତାଳୁ ଶୁଖି ହେଉଅଛି କାଠ ପରି ।
ଶିର ବୁଲୁଅଛି ମୋର ଭ୍ରମ ଚକ୍ର ପରି ।
ଘୋର ଅମଙ୍ଗଳ ଦିଶୁଛି ଆଗରେ ମୋର ।
ସ୍ୱଜନମାନଙ୍କୁ ମାରି କି ଲଭ ହୋଇବ ମୋର ? ରାଜ୍ୟ ପ୍ରାପ୍ତି ?
ସେ ବିଜୟ ଲୋଡ଼ୁ ନାହିଁ ଅର୍ଜୁନ ତୁମର ।
ଯେଉଁମାନଙ୍କର ପାଇଁ ରାଜ୍ୟର ଲାଳସା
ସେହିମାନେ ଦେଖ ଆଗେ ଧନ ପ୍ରାଣ ଆଶା
ତ୍ୟାଗ କରି ଯୁଦ୍ଧକ୍ଷେତ୍ରେ ଉପସ୍ଥିତ ସବୁ ।
ତେବେ କି ଲାଭ ମୋହର ହେବ, ସଂହାରିବି
କିଆଁ ତାଙ୍କୁ ଏ ସମରେ ? ଜୀଇ ଭୋଗ କରି
କି ସୁଖ ହୋଇବ ମୋର ? ଶୁଣନ୍ତୁ କେଶବ !

ମୋର ଏ ଆତ୍ମୀୟମାନେ ମାରନ୍ତୁ ପଛକେ
ମୋତେ, ମାରିବନି ତାଙ୍କୁ ।
ତାଙ୍କୁ ମାରି ଯଦି ମୁହିଁ ଲଭଇ ତ୍ରିଲୋକ
ତେବେ ବି ମାରିବି ନାହିଁ ତାଙ୍କୁ କଦାଚନ ।
ଦୁର୍ଯ୍ୟୋଧନାଦିଙ୍କୁ ମାରି କି ସୁଖ ହୋଇବ,
ଜାଣି ପାରୁ ନାହିଁ କିଛି ହେ ମଧୁସୂଦନ !
ପାରୁ ନାହିଁ ବୁଝି ।
ସେମାନେ ଯେ ଆତତାୟୀ ଜାଣେ ମୁଁ ନିଶ୍ଚିତ ।
ତେବେ ବି ମାରିଲେ ତାଙ୍କୁ ହେବ ମହାପାପ ।
ତେଣୁ ହେ କେଶବ ! କହେ ରଣେ ସଂହାରିବା
ସବାନ୍ଧବେ ଦୁର୍ଯ୍ୟୋଧନେ, ହେବନି ଉଚିତ ।
ଜାଣି ଶୁଣି ରାଜ୍ୟଲୋଭେ ଯଦିବା ସେମାନେ
ବିବେକକୁ ହୁଡ଼ି ଦେଖୁ ନାହାନ୍ତି କେଶବ !
କୁଳକ୍ଷୟ, ମିତ୍ରଦ୍ରୋହଜନିତ ପାପକୁ ।
ମୁଁ କିଆଁ କରିବି ନାହିଁ ସେ ପାପ ନିବୃତ୍ତି ?
କୁଳକ୍ଷୟେ ହୁଏ ନଷ୍ଟ ସନାତନ ଧର୍ମ
ଜାଣଇଁ ମୁଁ ଜନାର୍ଦ୍ଦନ ! ଧର୍ମ ହେଲେ ନଷ୍ଟ,
ଅଧର୍ମେ ଆକ୍ରାନ୍ତ ହୁଏ କୁଳ ଗୋଷ୍ଠ ସବୁ ।
ଅଧର୍ମେ ଦୂଷିତା ହୋଇ କୁଳ ନାରୀଗଣ
ପ୍ରସବନ୍ତି ସମାଜରେ ଦୂଷିତ ଜାରଜ ।
ସେହିମାନେ ନରକରେ ପକାନ୍ତି ନିଶ୍ଚୟ ।
ପିତୃଗଣ ପିଣ୍ଡୋଦକ ପାଇ ପାରନ୍ତିନି ।
ଚିର ଦିନ ନରକରେ ଘାଣ୍ଟି ହେଉଥାନ୍ତି ।
ଏହି ଜାରଜଙ୍କ ପାଇଁ ପରଂପରାଗତ
ଜାତି, କୁଳ, ଧର୍ମ, ରକ୍ତ ବିଶୁଦ୍ଧତା ହୁଏ
ନଷ୍ଟ, ସଂସାରେ ସମାଜେ ।”

# ଦ୍ୱିତୀୟ ଅଧ୍ୟାୟ

## ସାଂଖ୍ୟ ଯୋଗ

ଶ୍ରୀକୃଷ୍ଣ କହିଲେ:—
"ହେ ଅର୍ଜୁନ ! ଏ ଭୀଷଣ ସଂକଟ ବେଳରେ,
ଆର୍ଯ୍ୟଙ୍କର ଯେଉଁ ମତ ନୁହଇ ଆଦୃତ,
ସ୍ୱର୍ଗପଥ ରୁଦ୍ଧି ଦିଏ ନୁହେ କୀର୍ତ୍ତିକର
କେବେ ଯେଉଁ ମୋହ, କିଆଁ ତୁମ ହୃଦୟରେ
ପ୍ରବେଶିଲା ଆସି କାହିଁ ? କାତର ହୁଅନା ।
ହେ ପାର୍ଥ ! ଧରେ ଧୈର୍ଯ୍ୟ ଧର । ନୁହଇ ଉଚିତ
କାତରତା ତୁମ ପକ୍ଷେ । ହେ ଶତ୍ରୁତାପନ !
ତୁଚ୍ଛ ମନ ଦୁର୍ବଳତା ଛାଡ଼, ଯୁଦ୍ଧ ପାଇଁ
ଠିଆହୋଇ କର ଯୁଦ୍ଧ ।"
ଅର୍ଜୁନ କହିଲେ ପୁଣି, "ହେ ମଧୁସୂଦନ !
ଯେଉଁ ଭୀଷ୍ମ ଦ୍ରୋଣ ମୋର ପୂଜନୀୟ ସଦା
କିପରି ବିରୁଦ୍ଧେ ତାଙ୍କ ଧରିବି ମୁଁ ଅସ୍ତ୍ର ?
କରିବି ସମର ?
ନିହତ ନ କରି ତାଙ୍କୁ ଭିକାରୀ ହୋଇବା
ମୋର ବେଶୀ ସ୍ପୃହଣୀୟ । ପୂଜ୍ୟଙ୍କୁ ସଂହାରି,
ରକ୍ତ-ଜର୍ଜ୍ଜରିତ ହୋଇ କାମ ଅର୍ଥ ଲୋଭ
ଭୋଗିବା ହୋଇବ ସାର ।
ଅତ ଅବାଞ୍ଛିତ ବିପକ୍ଷେ ଜିଣିବା ଆମେ,
କି ଅବା ବିପକ୍ଷ ଜିଣିବେ ଆମକୁ ରଣେ ।
ଦୁଇଟିରୁ କେଉଁ ଗୋଟି ବେଶୀ ଆମ ଶ୍ରେୟ ?
ପାରୁ ନାହିଁ ଜାଣି । ଯେଣୁ ଦୁର୍ଯ୍ୟୋଧନ ପକ୍ଷ
ଯାହାଙ୍କୁ ମାରିବା ପାଇଁ ନୁହେ ମୋର ଇଚ୍ଛା
ସେମାନେ ସମକ୍ଷେ ।
ସେମାନଙ୍କୁ ହତ୍ୟା କରି କପରି ବଞ୍ଚିବି ?

ଏହି ଯେ ଧନ ଲାଳସା ପୁଣି କୁଳକ୍ଷୟ-
ଦୋଷଜନିତ ଆଶଂକା କରୁଛି ଦୁର୍ବଳ
ମୋର ବଳ ବନ୍ଧୁମାନ । ତେଣୁ ଧର୍ମାଧର୍ମ
ବିଷୟରେ ସନ୍ଦେହାନ ହୋଇ ପଡ଼ୁଛି ମୁଁ ।
ତେଣୁ, ଯାହା ମୋର ପକ୍ଷେ ହେବ ମଂଗଳ
କହନ୍ତୁ ନିଶ୍ଚିତ କରି ।
ତୁମର ଶିଷ୍ୟ ମୁଁ, ପୁଣି ଶରଣ ଆଗତ ।
ଦୟାକରି ହରି ଏ ବିଷୟେ ଦିଅ ଶିକ୍ଷା ।
ଭବିଷ୍ୟତ ବନ୍ଧୁକ୍ଷୟଜନିତ ମୋ ଦୋଷ,
ପୁଣି କୁଳକ୍ଷୟ ପାପ ଏ ବିଚାର ଯୋଗୁଁ ମୋର
ବଳବନ୍ଧମାନ ସବୁ ହେଉଅଛି ଧ୍ୱଂସ ।
ନିଷ୍କଣ୍ଟକ ରାଜ୍ୟ, ଅଉ ସକଳ ସଂପଦ,
କିବା ସ୍ୱର୍ଗସୁଖ ଭୋଗିଲେ ବି କିଛି ଲାଭ
ଦେଖିପାରୁ ନାହିଁ । କିଆଁ କରିବି ସମର ?
ଇନ୍ଦ୍ରିୟ-ଶୋଷକ କରିବନି ସେ ସମର ମୋ ଶୋକ ନିବାରି ?"
ଶ୍ରୀକୃଷ୍ଣ—ହେ ପାର୍ଥ ! ଯେ ବନ୍ଧୁମାନେ ଶୋକର ଅଯୋଗ୍ୟ
ତାଙ୍କ ପାଇଁ ଶୋକ ତୁମେ କରୁଛ କାହିଁକି ?
ପଣ୍ଡିତଙ୍କ ପରି କଥା କହୁଛ ଅାତୁର ।
ବିବେକୀ ମାନବ ପୁଣି, ଜୀବିତ ଆତ୍ମୀୟ,
କିପରି ଜୀଇବେ ଭବେ ଏହିତକ ଭାବି,
କରନ୍ତି କି ଶୋକ କେବେ ମୃତ ବନ୍ଧୁ ପାଇଁ ?
ମୁଁ ତୁମେ ଆଉ ସବୁ ଯେ ନ ଥିଲେଁ କେବେ
ଏକଥା ତ ନୁହେଁ ପାର୍ଥ !
ପୁଣି ଏହା ପରେ ରହିବାନି କେହି ଆଉ
ଏ କଥା ବି ନୁହେଁ । ୦
ଜୀବଆତ୍ମା ପରମାତ୍ମା ଦୁଇଟି ତ ସତ୍ୟ ।
ମୁହିଁ ପରମାତ୍ମା, ତୁମେ ଜୀବାତ୍ମା ନିଶ୍ଚୟ ।
ଏ ଦୁହେଁ ଗୋଟିଏ ବୋଲି ଜାଣ ଅରଜୁନ !

ସମସ୍ତେ ସବୁ କାଳରେ ରହିଥିଲେ ନଶ୍ଚେ ।
ଏ ଶରୀର ଧ୍ୱଂସ ହେଲେ ମଧ୍ୟ ରହିଥିବା ।
କାରଣ ସବୁ ଦେହରେ
ଈଶ୍ୱରଙ୍କ ସତ୍ତା ରହିଅଛି ସବୁବେଳେ ।
ଏ ଜଡ଼ ଦେହର ଜୀବନରେ ମରଣରେ
କ୍ଷତି ହୁଏ ନାହିଁ କିଛି ଅମର ଆତ୍ମାର ।
ଜୀବନ ମରଣ ଖାଲି ଅବସ୍ଥା ଅନ୍ତର ।
ତେଣୁ ସେଥିପାଇଁ ଶୋକ ନ କରିବା ଉଚିତ ।
ପ୍ରାଣୀର ଯେପରି ଅଛି କୈଶୋର ଯୌବନ
ବାଲ୍ୟ ଓ ବାର୍ଦ୍ଧକ୍ୟ କରିବାକୁ ଜମାନ୍ୱୟେ
ଦେହ ଅବସ୍ଥା ଭୋଗ ।
ତେମନ ମରଣେ ହୁଏ ଆତ୍ମାର ବଦଳ ।
ମାତ୍ର ଏଥିରେ ହୁଏନା
ଆତ୍ମାର କଦାପି କ୍ଷୟ କି ଅବା ବିନାଶ ।
ତେଣୁ ଆତ୍ମା ଅବିନାଶୀ ପଣ୍ଡିତ ନକର
ବିଚଳିତ ନୋହି ତେଣୁ ରହନ୍ତି ନିର୍ଲିପ୍ତ ।
ହେ କୁନ୍ତୀନନ୍ଦନ ! ଶବ୍ଦ ସ୍ପର୍ଶ ରୂପ ରସ
ଗନ୍ଧ ଆଦିଙ୍କର ସବୁ ଅଛି ଯେ ସଂବନ୍ଧ
ଇନ୍ଦ୍ରିୟମାନଙ୍କ ସଂଗେ ତାହା କେବେ ଶୀତ,
କେବେ ଉଷ୍ଣ, କେବେ ସୁଖ,
କେବେ ଅବା ଦୁଃଖ ଦେଇଥାଏ ନିରବଧି ।
ବିଷୟେନ୍ଦ୍ରିୟ ସେ
ସଂଯୋଗରେ ହୁଏ ସଦା ବିନାଶ ଉତ୍ପତ୍ତି ।
ସେଥିପାଇଁ ଅନିତ୍ୟ ସେ । ତେଣୁ ସେଥିପାଇଁ
ହର୍ଷ ବା ବିଷାଦ କରି ନୁହଇ ଉଚିତ ।
ଏତିକ ଜାଣିଲେ ତୁମେ
ବନ୍ଧୁ ବିଯୋଗର ଦୁଃଖ ଜାଣିବନି ଜମା ।
ହେ ପୁରୁଷଶ୍ରେଷ୍ଠ ! ଉକ୍ତ ସୁଖ ଦୁଃଖେ ଯାର

ସମଜ୍ଞାନ, ସେହି ଧୀର ପୁରୁଷଙ୍କୁ କେବେ
ମାତ୍ରା ସ୍ପର୍ଶଦୋଷ ବାଧେ ନାହିଁ ଜୀବନରେ ।
ଅର୍ଥାତ୍ ସର୍ବେନ୍ଦ୍ରିୟ ଶକ୍ତି ସହ ବିଷୟ ସଂଯୋଗ ।
ହୁଅନ୍ତି ସମର୍ଥ
ସେହିମାନେ ହିଁ କେବଳ ମୋକ୍ଷ ସାଧନରେ ।
ଶୀତ ଉଷ୍ଣ ସୁଖ ଦୁଃଖ କାର ନାହିଁ ସତ୍ତା,
ତେଣୁ ତ ସଂବନ୍ଧ ନାହିଁ ଆତ୍ମାର ସହିତ ।
ଏକା ସନାତନ ଆତ୍ମା ଅଟଇ ସଂସାରେ
ନାହିଁ ତା ବିନାଶ କେବେ, ସଦା ଅବିନାଶୀ ।
ନିତ୍ୟାନିତ୍ୟ ଏହିପରି
ତତ୍ତ୍ୱଦର୍ଶୀମାନେ ନିରୂପଣ କରି ମୋହ
କରନ୍ତିନି କେବେ ଅନିତ୍ୟ ଯେ ତାର ପାଇଁ ।
ଏହି ଦୃଶ୍ୟମାନ ଚରାଚର ଜଗତରେ
ଯେଉଁ ଅବିନାଶୀ ପରମାତ୍ମା ରହିଛନ୍ତି
ବ୍ୟାପ୍ତ, ସେହି ନିତ୍ୟ ନୂତନ ଜାଣିବ ତାଙ୍କୁ ।
ସେହି ନିତ୍ୟ ସତ୍ୟ ହେତୁ କେବେହେଁ ବିନାଶ
କେହି ପାରନ୍ତିନି କରି ନିତ୍ୟ ଅବିନାଶୀ
ସେହି ସର୍ବବ୍ୟାପୀ ଆତ୍ମା ଚିର ସତ୍ତାଟିକୁ ।
ବିନଷ୍ଟ ହୁଅନ୍ତି ଖାଲି ଶରୀରଗୁଡ଼ାକ ।
ଅର୍ଥାତ୍—ଶରୀର କ୍ଷୟରେ ଆତ୍ମାର ହୁଏନା କ୍ଷୟ ।
ତେଣୁ ହେ ଅର୍ଜୁନ ! ଧନୁ ଧରି ଯୁଦ୍ଧ କର ।
ଅର୍ଥାତ୍—ମୋହମାୟା ଛାଡ଼ି
କ୍ଷାତ୍ରଧର୍ମ ପାଳନରେ ହୁଅ ଅଗ୍ରସର ।
ଏ ଭ୍ରମେ ହନ୍ତା ବୋଲି ଭାବଇ ଆତ୍ମାକୁ
କିଏ ଯେବେ ଭାବେ ଆତ୍ମା ହେଉଅଛି ହତ
ଅନ୍ୟଦ୍ୱାରା, ଆତ୍ମତତ୍ତ୍ୱ ଜାଣେ ନାହିଁ ସିଏ ।
ଏହାର କାରଣ ଆତ୍ମା ମାରେନା କାହାକୁ ।
ତାକୁ କେହି ମାରେ ନାହିଁ, ଆତ୍ମାର ଜନମ

ମରଣ ନାହିଁ କଦାଚନ ।
ଜନମ ହୋଇଲେ ଥରେ, ଅଉ ଯେ ଜନ୍ମିବ
ଏହା ବି ନୁହଇ ।
ଆତ୍ମାର ନାହିଁ ଜନମ ନିତ୍ୟ ଅଟେ ତାହା ।
ଅକ୍ଷୟ ଅବ୍ୟୟ ପୁଣି ନାହିଁ ପରିଣାମ ।
ଦେହର ବିନାଶ ହେଲେ ମରେ ନାହିଁ ଆତ୍ମା ।
ଆତ୍ମା ହିଁ ବିକାରଶୂନ୍ୟ; ତେଣୁ ଆହେ ପାର୍ଥ !
ଆତ୍ମା ଅବିନାଶୀ ବୋଲି ଜାଣେ ଯେଉଁ ବ୍ୟକ୍ତି
ପୁଣି ଯେ ଜାଣଇ ନିତ୍ୟ, ଅବ୍ୟୟ ଅକ୍ଷୟ
ପୁଣି ଜନ୍ମ ନାହିଁ ବୋଲି କପରି ମରିବ
ତାହା, କିଏ ବା ମାରିବ ? କିଏ ମରାଇବ ?
ଅର୍ଥାତ୍—ଆତ୍ମା ଅବିନାଶୀ ତାର ରୂପାନ୍ତର ନାହିଁ ।
ତାହାହେଲେ ତୁମେ ଆତ୍ମୀୟ ବଧରେ
କର୍ତ୍ତା ଆଉ ମୁଁ ତୁମକୁ ମାରିବା କାମରେ
ଲଗାଇ ଦେଇଛି ବୋଲି ଦୋଷୀ ହେବା କିଆଁ ?
ମଣିଷ ଯେପରି ଚିରା ଲୁଗା ବଦଳାଇ
ନୂଆ ଲୁଗାଟିଏ ପିନ୍ଧେ, ଆତ୍ମା ସେହିପରି
ପୁରୁଣା ଦେହକୁ ଗ୍ରାଡ଼ି ପାଏ ନୂଆ ଦେହ ।
କିନ୍ତୁ କେବେ ହୁଏ ନାହିଁ ଆତ୍ମାର ବଦଳ
ଦେହ ପରିବର୍ତ୍ତନରେ । ଶସ୍ତ୍ର ପାରେ ନାହିଁ
ଆତ୍ମାକୁ ଛେଦନ କରି । ନିଆଁରେ ପୋଡ଼େନା,
ପାଣିରେ ପଚଇ ନାହିଁ, ପବନେ ଶୁଖେନା ।
ତେଣୁ ଏହା ଅଟେ ନିତ୍ୟ, ସର୍ବବ୍ୟାପୀ ସ୍ଥିର ।
ଅଚଳ, ଅନାଦି, ପୁଣି ଅବ୍ୟକ୍ତ, ଅଦୃଶ୍ୟ ।
ଇନ୍ଦ୍ରିୟେ ଗୋଚର ନୁହେ ।
ଅଚିନ୍ତ୍ୟ ବିକାରଶୂନ୍ୟ କହନ୍ତି ଜ୍ଞାନିଏ ।
ଆତ୍ମାଟିକୁ ଚିହ୍ନି କାନ୍ଦ ନାହିଁ ବୃଥା ଆଉ ।
ହେ ବୀର ଅର୍ଜୁନ ! ଯଦି ତୁମେ ମନେକରି

ଆତ୍ମା ଦେହ ପରି ମରଣ ଓ ଧ୍ୱଂସଶୀଳ,
ତେବେ ବି ତୁମର ତାହା ଲଗି ଶୋକକରି ନୁହଇ ଉଚିତ ।
ଜନମ ହୋଇଲେ ପ୍ରାଣୀ ନିଶ୍ଚୟ ମରିବ ।
ମରିବା ପ୍ରାଣୀର ପୁଣି ହୋଇବ ଜନମ ।
ଏଥିପାଇଁ ଅନିବାର୍ଯ୍ୟ ଯାହା ଜୀବ ପକ୍ଷେ
ସେଥିପାଇଁ ଶୋକକରି ନୁହଇ ଉଚିତ ।
କଉଣସି ପ୍ରାଣୀ ଜନ୍ମ ଆଗରୁ କଦାପି
ଦେଖାଯାଏ ନାହିଁ କାହିଁ, ଆଉରି ମରଣ
ପରେ ଦେଖାଯିବ ନାହିଁ । ଜନମ ମରଣ
ମଧ୍ୟେ କିଛି ଦିନ ପାଇଁ ଦିଶଇ ଆଖିରେ
ଧରି ଶରୀର ଗୋଟିଏ ଯାଉଛି ଆସୁଛି
କାମଦାମ କରୁଅଛି ।
ଅର୍ଥାତ୍—ଜନ୍ମ ଆଗରୁ ଅବ୍ୟକ୍ତ ଅଦୃଶ୍ୟ, ଜନ୍ମମରଣର
ମଧ୍ୟଭାଗରେ ବ୍ୟକ୍ତ ଦୃଶ୍ୟ,
ପୁଣି ମୃତ୍ୟୁ ପରେ ଅଦୃଶ୍ୟ ଅବ୍ୟକ୍ତ ।
ଶୋକ ବା କରିବ କିଆଁ ତୁମେ ଏଥିପାଇଁ ?
ଆତ୍ମାକୁ ଆଶ୍ଚର୍ଯ୍ୟ ରୂପେ ଦେଖନ୍ତି କେତେକ ।
କେତେକ କହନ୍ତି ପୁଣି ଆଶ୍ଚର୍ଯ୍ୟ ପରି ସେ ।
ଆଶ୍ଚର୍ଯ୍ୟର ସମ ଅନ୍ୟ କେତେ ଶୁଣନ୍ତି ତା ।
କେହି କେହି ଶୁଣି ମଧ୍ୟ ଜାଣି ପାରନ୍ତିନ ।
ସଂସାରି ପକ୍ଷରେ
ଆତ୍ମତତ୍ତ୍ୱ ଜାଣିବାଟି ଦୁରୂହ କଠିନ ।
ସକଳ ପ୍ରାଣୀର, ପାରି ଅଛି ଦେହଟିଏ
ଆତ୍ମା ତା ଅବଧ୍ୟ ଜାଣ । ହେ ପୃଥାନନ୍ଦନ !
ଇତର ସମସ୍ତ ପ୍ରାଣୀମାନଙ୍କ ନିମିତ୍ତ
ଶୋକ କରିବା ତୁମର ନୁହଇ ଉଚିତ ।
ସ୍ୱଧର୍ମକୁ ଦେଖି ଶୁଣି ବିଚଳିତ ହେବା
ବା ଶୋକ କରିବା କେବେ ନୁହଇ ଉଚିତ ।

କାରଣ—କ୍ଷତ୍ରିୟର ନାହିଁ ଅନ୍ୟ ଧର୍ମ ଯୁଦ୍ଧ ବିନା ।
ହେ ପାର୍ଥ ! ଦେଖୁଅଛ କି ଫିଟିଛି କପଟ
ଅନର୍ଗଳ ସ୍ୱର୍ଗଦ୍ୱାର ଧର୍ମଯୁଦ୍ଧ ରୂପେ,
ଯିବନି ସେ ଦ୍ୱାରେ ତୁମେ ?
ଯାଆନ୍ତି ସେ ପଥେ ଭାଗ୍ୟବାନ କ୍ଷତ୍ରିୟେ ହିଁ ।।
ଅନ୍ୟଥା ମିଳଇ ନାହିଁ ଅନ୍ୟ କ୍ଷତ୍ରିୟଙ୍କୁ ।
ନ କର ଅର୍ଜୁନ ଯେବେ, ତୁମେ, ଧର୍ମଯୁଦ୍ଧ,
ତେବେ ତୁମ କ୍ଷାତ୍ରଧର୍ମ କୀର୍ତ୍ତିରାଶି ସହ ହୋଇଯିବ ଲୁପ୍ତ ।
ନିଶ୍ଚେ ଅର୍ଜିବ ପାପ ।
ହେ ଅର୍ଜୁନ ! ଶୋକ ପରିହର କର ଯୁଦ୍ଧ ।
ସମର ନ କଲେ,
ଇତର ପ୍ରାଣୀ ବି ତୁମ ଅକୀର୍ତ୍ତି ଘୋଷିବେ ।
କୀର୍ତ୍ତିମାନ ପୁରୁଷର ଅପକୀର୍ତ୍ତି ହେଲେ
ମରଣଠାରୁ ସେ ବଳ ହୁଅଇ ଦୁଃଖଦ ।
ମହାରଥୀ ଯେତେ ଛନ୍ତି
ମଣିବେ ତୁମକୁ ଭୀରୁ ପଳାତକ ବୋଲି ।
ଯେଉଁମାନେ ସବୁ
ତୁମକୁ ଚିହ୍ନିଥିଲେ ମହାବୀର ବୋଲି
ସେହିମାନେ ସାହସରେ କହିବେ ଭୀରୁଟା ।
ତୁମର ସମର୍ଥପଣ ନିନ୍ଦିବେ ସକଳେ ।
ନାନା କୁବଚନ ସବୁ କହିବେ ତୁମକୁ ।
ଏଥିରୁ ଅଧିକ ବଳି କି ଅଛି କଷ୍ଟଦ ?
ହେ କୁନ୍ତୀନନ୍ଦନ ବୀର !
ଯୁଦ୍ଧ ମଲେ ହେବ ନିଶ୍ଚେ ସ୍ୱରଗ ପ୍ରାପତ ।
କି ଅବା ଜିଣିଲେ ଭୋଗ କରିବ ପୃଥିବୀ ?
ଉଠ ବେଗେ, କର ଯୁଦ୍ଧ, ମାର ଅବା ମର ।
ଜୟ-ପରାଜୟ, ସୁଖ-ଦୁଃଖ, ହାନି-ଲାଭ
ମଣିଲେ ସମାନ କର ଯୁଦ୍ଧ ମୁଁ କହୁଛି ।

ଯୁଦ୍ଧ କଲେ ପାପ ହେବ ନାହିଁ ହେ ତୁମର ।
ସୁଖଦୁଃଖ ଚିନ୍ତା ବରଜ ଧର୍ମ ବଢ଼ାଇ
କ୍ଷତ୍ରିୟ ଧର୍ମରେ ମାତ କର ହେ ସମର
ହେବ ନାହି ପାପ ।

## ଓଁ ନମୋ ଭଗବତେ ଶ୍ରୀକୃଷ୍ଣାୟ

## ପ୍ରଥମ ଅଧ୍ୟାୟ

### ଜନ୍ମ

ନମସ୍ତେ ବାସୁଦେବାୟ କୃଷ୍ଣାୟ ପରମାତ୍ମନେ ।
ସଚ୍ଚିଦାନନ୍ଦ-ରୂପାୟ ଗୋବିନ୍ଦାୟ ନମୋ ନମଃ ॥
ଯସ୍ମାଜ୍ଜାତଂ ଜଗତ୍ ସର୍ବଂ ଯସ୍ମିନ୍ନେବ ବିଲୀୟତେ,
ଯେନେଦଂ ଧାର୍ଯ୍ୟତେ ସର୍ବଂ ତସ୍ମୈ ଶ୍ରୀକୃଷ୍ଣାୟ ନମଃ ।

ଯେ ବିଶୁଦ୍ଧ ଚୈତନ୍ୟ ଓ ଆନନ୍ଦମୟ ପରମ ପୁରୁଷ, ଯେ ବିଶ୍ୱର ଏକମାତ୍ର ମହାବୀଜ ସ୍ୱରୂପ ପରମାତ୍ମା, ଯାହାଙ୍କଠାରୁ ଚରାଚର ଜୀବଜଗତ ଓ ସବୁ ଉଦ୍ଭବ ହୋଇଛି, ଯାହାଙ୍କୁ ଆଶ୍ରୟ କରି ବିଶ୍ୱବ୍ରହ୍ମାଣ୍ଡର ଅବସ୍ଥିତି ସମ୍ଭବ ହୋଇଛି ଏବଂ ପରିଶେଷରେ ଯାହାଙ୍କଠାରେ ସବୁ ଲୀନ ହୋଇଯାଏ, ଯାହାଙ୍କର ଆଦି, ମଧ୍ୟ, ଅନ୍ତ କିଛି ନାହିଁ,ଯେ ସର୍ବଶକ୍ତିମାନ୍, ସର୍ବଜ୍ଞ, ସବୁଠାରେ ପରିପୂର୍ଣ୍ଣ, ସର୍ବବ୍ୟାପୀ, ମଙ୍ଗଳମୟ ପୁରୁଷୋତ୍ତମ, ସେହି ସର୍ବରୂପାଧାର କରୁଣାସାଗର ଭକ୍ତରଞ୍ଜନ ମଦନମୋହନ ଭଗବାନ୍ ଶ୍ରୀକୃଷ୍ଣଙ୍କର ପଦାରବିନ୍ଦ ପ୍ରଣାମ କରି ତାଙ୍କର ଜୀବନଲୀଳା ବର୍ଣ୍ଣନା କରିବାକୁ ପ୍ରବୃତ୍ତ ହେଲି ।

ଦ୍ୱାପର ଯୁଗର ଶେଷଭାଗକୁ ଭଗବାନଙ୍କର ପ୍ରିୟ ଲୀଳାଭୂମି ଏହି ଭାରତବର୍ଷ (ଜମ୍ବୁଦ୍ୱୀପ) ନାନା ଖଳ ମାନବ ଓ ଦୁଷ୍ଟ ଦାନବମାନଙ୍କ ପାପ-ଭାରରେ ପୀଡ଼ିତ ହୋଇଥିଲା । ମଥୁରାର ରଜା କଂସ,ମଗଧର ରଜା ଜରାସନ୍ଧ, ଚେଦିରାଜ ଶିଶୁପାଳ ଏବଂ ପ୍ରଲମ୍ବ, ବକ, କେଶୁର, ଅଘ,ମୁଷ୍ଟିକ,

କେଶୀ·ଧେନୁକ ପ୍ରଭୃତି କଂସ ଅନୁଚରମାନଙ୍କର ଅତ୍ୟାଚାରରେ ମାନବ-ସମାଜ ଜର୍ଜରିତ ଓ ପ୍ରପୀଡ଼ିତ ହୋଇଥିଲା । ବହୁ ରାଜାପ୍ରଜା ଭୟରେ ଘରଦ୍ୱାର ଛାଡ଼ି ପଳାଇଯାଇ ଯୁଆଡ଼େ ସୁଆଡ଼େ ଜୀବନରକ୍ଷା କରିଥିଲେ; ପୃଥିବୀରୁ ଯାଗଯଜ୍ଞାଦି ଧର୍ମକର୍ମ ଲୋପ ପାଇଥିଲା ।

## ଦ୍ୱିତୀୟ ଅଧ୍ୟାୟ

ଶ୍ରୀକୃଷ୍ଣ କହିଲେ—
ହେ ପାର୍ଥ ! କହିଲି ସାଂଖ୍ୟତତ୍ତ୍ୱରୁ କେତେକ ।
ଏଥିରେ ତୁମର ଯେବେ ନ ମାନୁଛି ମନ,
ଆତ୍ମତତ୍ତ୍ୱ ବିଷୟରେ ହେଉ ନାହିଁ ଜ୍ଞାନ;
କର୍ମଯୋଗ କଥା କିଛି କହୁଅଛି ଶୁଣ—
ଜାଣିଲେ କର୍ମଜନିତ ସଂସାର ବନ୍ଧନୁଁ
ମୁକ୍ତ ହୋଇଯିବ ତୁମେ ।
ନିଷ୍କାମ ଏ କର୍ମଯୋଗ ଆରମ୍ଭ କରିଲେ,
ବିଫଳ ହୁଅଇ ନାହିଁ ପରିଣାମ ତାର ।
କି ଅବା ସେଥିରେ ପାପ ହୁଏ ନାହିଁ କାର ।
ବାଧାବିଘ୍ନ ମଧ୍ୟ ଉପୁଜିପାରେନା କେବେ ।
ଏ ଧର୍ମରୁ ଅଳ୍ପମାତ୍ର ହେଲେ ସମାହିତ
ସଂସାର ଭୟରୁ କରେ ତାହା ପରିତ୍ରାଣ ।
ହେ କୁରୁନନ୍ଦନ !
କାମନା ବରଜି ଯିଏ ସାଧେ ଏହି ଯୋଗ
ଏକାଗ୍ର ଭାବରେ ରଖି ବୁଦ୍ଧିକୁ ସଂଯତ,
ମୁକ୍ତି ପାଇବା ଇଚ୍ଛାରେ
ଚିତ୍ତ ସମର୍ପଇ ଈଶ୍ୱରଙ୍କ ପଦପ୍ରାନ୍ତେ,
ଏକବୁଦ୍ଧି ବୋଲି (ସ୍ଥିରବୁଦ୍ଧି) ତାକୁ କହନ୍ତି ଜ୍ଞାନିଏ ।
ଆଉ ଯେଉଁମାନେ ସକାମ କରମ କରି
କରନ୍ତିନି ତାହା, ଈଶ୍ୱର-ବିମୁଖ ହୋଇ
ପାଆନ୍ତିନି ମୁକ୍ତି ।

ହେ ପାର୍ଥ ! ଯେ ଅବିବେକ ବେଦ କଥା କହି
କରମଫଳର କରି ଅଯଥା ପ୍ରଶଂସା
ଭାବନ୍ତି, ଜାଣିବା ପାଇଁ ଆଉ ନାହିଁ କିଛି ।
ସେହି ସ୍ୱର୍ଗ-ଅଭିଳାଷୀ,
କାମନା-ବିମୁଗ୍ଧ ମୂଢ଼ ପ୍ରାଣୀମାନେ ନିତି
ଜନ୍ମ, କର୍ମ୍ମ ଏବଂ କର୍ମଫଳ ଦାୟୀ ଭୋଗ
ଐଶ୍ୱର୍ଯ୍ୟସାଧକ ବୋଲି ଜାଣ ହେ ଅର୍ଜୁନ !
ତେଣୁ କର୍ମବିଶେଷର ଶ୍ରୁତି-ସୁଖକର
ପ୍ରଶଂସାମାନ କରନ୍ତି ।
ତେଣୁ ଭୋଗୈଶ୍ୱର୍ଯ୍ୟ ଆସକ୍ତ ବ୍ୟକ୍ତି କଦାପି
କାର୍ଯ୍ୟାକାର୍ଯ୍ୟ ନିରୂପଣ ପାରନ୍ତିନି କରି ।
ବୁଦ୍ଧି ନୁହେ ସ୍ଥିର ।
ବେଦମାନେ କର୍ମଫଳ କରନ୍ତି ପ୍ରମାଣ ।
ବେଦ କହେ ସକାମୀକୁ
ତାର ସୁଖ ପାଇଁ କରମ କରୁଥା ବୋଲି ।
କିନ୍ତୁ ତୁମେ ହୁଅ ଅନାସକ୍ତ କାମନାରେ ।
କର୍ମଫଳ ଭୁଲି (ଭୁଲିଯାଅ) ଶୀତ, ଉଷ୍ଣ, ସୁଖଦୁଃଖ
ପ୍ରଭୃତି ଦ୍ୱନ୍ଦ୍ୱକୁ ଧୈର୍ଯ୍ୟଧରି ସହିଯାଅ ।
ଅପ୍ରାପ୍ତ ବସ୍ତୁ ତ ମିଳିଗଲେ ହୁଏ ଯୋଗ ।
ପ୍ରାପ୍ତ ବସ୍ତୁ କ୍ଷେମ ।
ଯାହା ପାଇଛ ତାକୁ ହିଁ ଜଗିବସ ନାହିଁ ।
ସେଥିରୁ ନିବୃତ୍ତ ହୋଇ, ଅସକ୍ତ ବିରଜ
ଈଶ୍ୱରତ୍ୱ ଲଭ ପାଇଁ ହୁଅ ତତପର ।
ଆକାଙ୍କ୍ଷା ନ ରଖି ତୁମେ କରମଫଳରେ,
ସିଦ୍ଧି ଅବା ଅସିଦ୍ଧିରେ ସମ ଭାବ ରଖି
ଅର୍ଥାତ୍—ଲଭରେ ହରଷ କିବା କ୍ଷତିରେ ବିମର୍ଷ
ନୋହି, ଈଶ୍ୱରେ ବିଶ୍ୱାସ ରଖି କର କାମ ।

ହେ ବୀର, କୁନ୍ତୀନନ୍ଦନ !
ନିଷ୍କାମ କର୍ମଠୁଁ ସକାମ କରମ ନ୍ୟୂନ ।
ଏଥିପାଇଁ ତୁମେ ଈଶ୍ୱରଙ୍କଠାରେ ରଖି
ମନ ଆଉ ଲୟ କରିଯା ନିଷ୍କାମ କର୍ମ ।
ସକାମ କରମ ଅଟଇ ଅଧମ ନିଶ୍ଚେ,
ଫଳକାମୀ ବ୍ୟକ୍ତିମାନେ ହୁଅନ୍ତି କୃପଣ ।
ହୁଅନ୍ତି ସେମାନେ ସଦା ଘୃଣାଯୋଗ୍ୟ ପାତ୍ର ।
ଜ୍ଞାନଯୋଗୀମାନେ (ବୁଦ୍ଧିମାନ ବ୍ୟକ୍ତି)
ବରଜନ୍ତି ପାପପୁଣ୍ୟ ଏହି ଜନମରେ ।
କରମ କରିବା ପାଇଁ ହୁଅ ହେ ତତ୍ପର ।
କର୍ମକୁଶଳତା ନାମ ଅଟଇ ତ ଯୋଗ ।
ସୁଖଦୁଃଖ ହାନିଲାଭ ପାପପୁଣ୍ୟ ବର୍ଜି
ଜ୍ଞାନୀମାନେ ସମବୁଦ୍ଧି ହୋଇ କର୍ମ କରି
ଜନ୍ମବନ୍ଧନରୁ ଖସି
ଉପଦ୍ରବଶୂନ୍ୟ ମୋକ୍ଷଧାମକୁ ଲଭନ୍ତି ।
ଈଶ୍ୱରଙ୍କ ସେବା କରି କରୁ ଏହିପରି
ଦେହ ଅଭିମାନୀ ବୁଦ୍ଧି, ତୁମ ମୋହମୟ
ଗହନ ଦୁର୍ଗକୁ କରିଯିବ ଅତିକ୍ରମ ।
ସେତେବେଳେ ତୁମେ ଆଧ୍ୟାତ୍ମିକ ଶାସ୍ତ୍ର ଛଡ଼ା
ଆଉ ଅନ୍ୟ ଶାସ୍ତ୍ର ପଢ଼ିବାକୁ
କେବେହେଲେ କରିବନି ଇଚ୍ଛା ।
ଯେବେ ତୁମ ଭ୍ରମବୁଦ୍ଧି ସୁସ୍ଥିର ଭାବରେ
ସମାଧିରେ ହେବ ଯୁକ୍ତ, ସେତେବେଳେ ଯୋଉଁ
ଫଳ ସମ୍ଭବିବ ଯୋଗୁଁ ମିଳିବ ତୁମକୁ ।"

ଅର୍ଥ—ଯେତେବେଳେ ତୁମର ବୁଦ୍ଧି ଓ ମନ ବେଦ କଥାକୁ ନ ମାନି ନିଷ୍କାମ କର୍ମରେ ଲାଗିଯିବ, ଈଶ୍ୱରଙ୍କଠାରେ ଫଳକୁ ସମର୍ପଣ କରିଦେବ, ପବନ ବାଜୁ ନ ଥିବା ଦୀପଶିଖା ପରି ସମାଧିରେ

ସ୍ଥିର ରହିଥିବ, ଯାହା ବିଶୁଦ୍ଧ ଯୋଗଫଳ, ତାହା ତୁମକୁ ନିଶ୍ଚୟ ମିଳିଯିବ ।

ନିଷ୍କାମ କର୍ମ, ଶୁଦ୍ଧ ଜ୍ଞାନ ଈଶ୍ୱରଭକ୍ତି ସହିତ ମିଶିଲେ ସମାଧିଫଳ ଭୋଗ ହେବ । ସେହି ଫଳ ହିଁ ତତ୍ତ୍ୱଜ୍ଞାନ । ଏହିଟିକୁ ଭଲ କରି ଜାଣିଥାଅ । ଅଜ୍ଞମାନେ ଏଇଟିକୁ ଜାଣନ୍ତି ନାହିଁ । କେବଳ ସ୍ଥିତପ୍ରଜ୍ଞ ହିଁ ଜାଣନ୍ତି ।

ଅର୍ଜୁନ କହିଲେ—
"ଆହେ ସର୍ବଜ୍ଞାତା ହରି !
ସମାଧିସ୍ଥ ସ୍ଥିତପ୍ରଜ୍ଞ ବ୍ୟକ୍ତିର ଲକ୍ଷଣ କପରି, ତା କହ ।
ସ୍ଥିରବୁଦ୍ଧି ବ୍ୟକ୍ତିମାନେ ଚଳାଚଳ
କଥାବାର୍ତ୍ତା ହୁଅନ୍ତି କପରି କହନ୍ତୁ ବି ତାହା ।"
ଶ୍ରୀକୃଷ୍ଣ କହିଲେ, "ପାର୍ଥ ! ଯୋଗିଏ ଯେବେଠି
ମନସ୍ଥିତ କାମନାକୁ ପରିତ୍ୟାଗ କରି
ନିଜର ପରମାନନ୍ଦ ରୂପକ ଆତ୍ମାରେ
ରହନ୍ତି ସନ୍ତୁଷ୍ଟ ହୋଇ
ସ୍ଥିତପ୍ରଜ୍ଞ ବୋଲି ତାଙ୍କୁ କହିବା ସର୍ବଥା ।
ଦୁଃଖରେ ନୁହଇ ଯିଏ ବିଚଳିତ ଲବେ
କମ୍ପା ରଖେ ନାହିଁ ସ୍ପୃହା ସୁଖ ଭୋଗିବାକୁ,
ତ୍ୟାଗ କରିଥାଏ ପୁଣି ରାଗ ଭୟ କ୍ରୋଧ,
ସେହି ସ୍ଥିତପ୍ରଜ୍ଞ ।
ଯିଏ ସବୁ ବିଷୟରେ ଏପରି କି ନିଜ ପୁତ୍ର ମିତ୍ର ପ୍ରଭୃତିରେ
ମଧ୍ୟ ରହିଥାଏ ମମତାବିହୀନ ହୋଇ,
ଭଲ କଥାଟିଏ ଶୁଣି କରେନା ପ୍ରଶଂସା କିବା ମନ୍ଦ କଥା ଶୁଣି
କରେ ନାହିଁ ନିନ୍ଦା । ରହେ ଉଦାସୀନ
ତାହାର ବୁଦ୍ଧି ଜାଣିବ ସ୍ଥିରବୁଦ୍ଧି ବୋଲି ।
କଇଁଚ ଯେପରି ତାର କରଚରଣକୁ
ସଙ୍କୁଚିତ କରି ରଖେ, ସେହିପରି ଯୋଗୀ
ଇନ୍ଦ୍ରିୟମାନଙ୍କୁ କରି ଅଧୀନ, ଆପଣ

ଆତ୍ମାରେ କରଇ ଲୀନ ସେହି ସ୍ଥିତପ୍ରଜ୍ଞ ।
ଜ୍ୱର ରୋଗ ଉପବାସ ହେତୁ ଅନାହାରୀ
ବ୍ୟକ୍ତିର ବିଷୟମାନ (ଇନ୍ଦ୍ରିୟ ବିଷୟ) ନିବର୍ତ୍ତିନ୍ତ ସତ୍ୟ,
କିନ୍ତୁ ତାହାର କାମନା ନ ଥାଏ ନିବର୍ତ୍ତି ।
ସ୍ଥିତପ୍ରଜ୍ଞ ବ୍ୟକ୍ତିଙ୍କର କାମନାନିଚୟ
ପରମାତ୍ମା ସାକ୍ଷାତ୍କାର ହୋଇଥିବା ଯୋଗୁଁ
ନିବୃତ୍ତ ହୁଅଇ ତାହା ।
ତେଣୁ ଉପବାସ କିବା ରୋଗରୁ ସଂଭୂତ ଶିଥିଳତା
ନୁହେ ଇନ୍ଦ୍ରିୟନିଗ୍ରହ କେବେ ।
ହେ ପୃଥାନନ୍ଦନ !
ଦୁଷ୍ଟ ଇନ୍ଦ୍ରିୟନିକର ହରଣ କରନ୍ତି
ମନ ମୋକ୍ଷପଦକାମୀ ଜ୍ଞାନୀମାନଙ୍କର ।
ତେଣୁ ସେ ସାଧକ ହେବ
କରିବ ସେ ଭଲ ଭାବେ ଏଥିପାଇଁ ଯତ୍ନ ।
ଇନ୍ଦ୍ରିୟ ସଂଯତ କରି ସମ୍ପୂର୍ଣ୍ଣ ଭାବରେ
ମୋଠାରେ ଅରପି ଭକ୍ତି ରହିବ ନିଶ୍ଚଳ ।
ଯେହେତୁ ଇନ୍ଦ୍ରିୟଗଣ ଯାହାର ଅଧୀନ,
ତାର ବୁଦ୍ଧି ସ୍ଥିର ।
ରଖିବାକୁ ଇନ୍ଦ୍ରିୟଙ୍କୁ ଆପଣା ବଶରେ କରିଜ ବିଷୟ ଚିନ୍ତା ।
କାରଣ ବିଷୟୀଙ୍କର ଆସକ୍ତି ବିଷୟେ
ହୁଅଇ ବର୍ଦ୍ଧିତ ।
ବିଷୟାସକ୍ତିରୁ ଜନ୍ମେ ବହୁତ କାମନା ।
ସେହି କାମନା-ସିଦ୍ଧିରେ ପଡ଼ିଗଲେ ବାଧା-
ବିଘ୍ନ, ଜନମଇ କ୍ରୋଧ । କ୍ରୋଧରୁ ଜନମେ
ମୋହ, ଯାହାକୁ କହନ୍ତି ଅବିବେକହୀନତା ।
ମୋହରୁ ସ୍ମୃତି-ବିଭ୍ରମ, ତହୁଁ ବୁଦ୍ଧିନାଶ ।
ବୁଦ୍ଧିନାଶ ହେଲେ ପ୍ରାଣୀ ହୁଏ ମୃତତୁଲ୍ୟ ।
ଚଞ୍ଚଳ ମନ ଯାହାର, ଇନ୍ଦ୍ରିୟ-ବଶରେ

ତାର ନାହିଁ କିଛି ଫଳ । ସବୁ ନିରର୍ଥକ ।
ଯିଏ ରାଗଦ୍ୱେଷ ଛାଡ଼ି ନିଜର ଅଧୀନ
ଇନ୍ଦ୍ରିୟମାନଙ୍କଦ୍ୱାରା
ବିଷୟମାନଙ୍କୁ ପାରେ ଉପଭୋଗ କରି,
ସେହି ବିଜିତାତ୍ମା, କରିଥାଏ ଶାନ୍ତିଲାଭ ।
ମନ ପ୍ରସନ୍ନତା ପାଇଁ ତାହାର ହୁଅଇ ସବୁ ଦୁଃଖ ନାଶ ।
ତେଣୁ ସେ ପ୍ରଶାନ୍ତଚିତ୍ତ ବ୍ୟକ୍ତିର କେବଳ ବୁଦ୍ଧି ରହଇ ନିଶ୍ଚଳ !
ଯାହାର ଇନ୍ଦ୍ରିୟମାନେ ନୁହନ୍ତି ଅଧୀନ,
ତାହାର ନ ଥାଏ କେବେ ଆତ୍ମଜ୍ଞାନ ବୁଦ୍ଧି ।
ତେଣୁ କରି ତାର ଆତ୍ମ-ଭାବନା ରୂପକ ଧ୍ୟାନ ଅସଂଭବ ।
ଆତ୍ମ-ଭାବନାର ବିନା ମିଳେ ନାହିଁ ଶାନ୍ତି ।
ଅଶାନ୍ତ ବ୍ୟକ୍ତିର ସୁଖ ଆସିବ କେଉଁଠୁ ?
ଅଜିତାତ୍ମା ବ୍ୟକ୍ତି ସଦା ହୁଏ ଦୁଃଖଭାଗୀ ।
ଯେଣୁ କରି ସ୍ୱଇଚ୍ଛାରେ ବିଷୟରେ ମୁଗ୍ଧ
ଇନ୍ଦ୍ରିୟମାନଙ୍କ ମଧ୍ୟୁଁ
ଗୋଟିକର ହେଲେ ହୁଏ ମନ ଅନୁଗତ ।
ତେଣୁ ସେ ଗୋଟିକ ଇନ୍ଦ୍ରିୟ, ସେହି ମନର ହରିନଏ ପ୍ରଜ୍ଞା ।
ଯେପରି ବିପକ୍ଷ ପବନ
ନାବିକର ନାବଟିକୁ ସମୁଦ୍ରଗରଭେ କରେ ଇତସ୍ତତଃ ।
ସେପରି ଇନ୍ଦ୍ରିୟ କରେ ଆକର୍ଷଣ ମନ
ବିଷୟ-ବାସନା ଆଡ଼େ ।
ହେ ବୀର ଅର୍ଜୁନ ! ତେଣୁ ଯେଉଁମାନଙ୍କର
ବିଷୟ-ଭୋଗରୁ ସ୍ପୃହା ହୋଇଛି ନିବୃତ୍ତ,
ତାଙ୍କରି ବୁଦ୍ଧି ହିଁ ଖାଲି ଅଟଇ ସୁସ୍ଥିର ।

ସାରାର୍ଥ :—ଅଜ୍ଞାନ ଅନ୍ଧାରରେ ଥିବା ପ୍ରାଣୀର ଆତ୍ମବୁଦ୍ଧି ରାତି ପରି ଅପ୍ରକାଶିତ । କିନ୍ତୁ ଜିତେନ୍ଦ୍ରିୟ ସେଥିରେ ଜାଗ୍ରତ ଥାଏ । ବିଷୟ-ଭୋଗରେ ଅଜ୍ଞାନାନ୍ଧମାନେ ଜାଗରୂକ ଥାନ୍ତି ।

ଆତ୍ମଦର୍ଶୀ ଜିତେନ୍ଦ୍ରିୟ ପକ୍ଷରେ ବିଷୟ-ନିଷ୍ଠା ରାତ୍ରି ପରି
ଅପ୍ରକାଶିତ ।
ଜ୍ଞାନୀ ବ୍ୟକ୍ତିମାନେ ଥାନ୍ତି ଜ୍ଞାନ ଆଲୋକରେ ।
ବିଷୟାନ୍ଧ ବ୍ୟକ୍ତି ଭ୍ରମୁଥାଏ ମୋହମାୟା ସଂସାର-ଚକ୍ରରେ ।
ସମୁଦ୍ର ଯେପରି ପୂର୍ଣ୍ଣ ହୋଇ ନଦୀଜଳେ
ଲଂଘେ ନାହିଁ କୂଳ ତାର ।
ଯେତେ ବି ମିଶିଲେ ଆସି ଆଉ ବେଶୀ ଜଳ
ରହଇ ସମାନ,
ସବୁ ଜଳ ହୁଏ ଲୀନ ସେହି ସମୁଦ୍ରରେ ।
ସେପରି କାମନାରାଶି ସେ ସ୍ଥିର ବୁଦ୍ଧିରେ
ପ୍ରବେଶିଣ ନିର୍ବିକାରେ ହୁଅଇ ବିଲୀନ ।
ଏପରି ଯେ ନିର୍ବିକାର, ସେହି ଲଭେ ଶାନ୍ତି,
ମାତ୍ର କାମନା-ଅଧୀନ ବ୍ୟକ୍ତି ପାରେ ନାହିଁ ।
ଯେଉଁ ବ୍ୟକ୍ତି ଭୋଗ୍ୟବସ୍ତୁ ଯେତିକ ସେ ପାଏ
ସେଥିରେ ରହେ ସନ୍ତୁଷ୍ଟ,
ଅଲଭ୍ୟ ବସ୍ତୁରେ ରହିଥାଏ ସ୍ପୃହାହୀନ,
ସେହି ବ୍ୟକ୍ତି ଖାଲି ଲଭଇ ପରମ ଶାନ୍ତି,
ଯାହା ମୋକ୍ଷପଦ ।
ଏହିପରି ବ୍ରହ୍ମଜ୍ଞାନ ଜାଣିବ ହେ ପାର୍ଥ !
ଏହି ଅବସ୍ଥାକୁ ପାଇ କଉଣସି ବ୍ୟକ୍ତି
କେବେହେଁ ସଂସାର ମୋହେ ପଡ଼େ ନାହିଁ କାହିଁ ।
ଅନ୍ତିମ କାଳରେ ମଧ୍ୟ ରହିଲେ ମୁହୂର୍ତ୍ତେ
ପରମ ବ୍ରହ୍ମରେ ଲୀନ ହୋଇଯାଏ ସିଏ ।”

## ତୃତୀୟ ଅଧ୍ୟାୟ
### କର୍ମଯୋଗ

ଅର୍ଜୁନ କହିଲେ ଶୁଣି, “- ଏହେ ଜନାର୍ଦ୍ଦନ !
ଯଦି କର୍ମଯୋଗଠାରୁ ଜ୍ଞାନଯୋଗ ଶ୍ରେଷ୍ଠ,

କାହିଁକି ଏ ହିଂସାକାମେ (ଯୁଦ୍ଧେ) ଲଗାଉଛ ମୋତେ ?
ଆପଣ କେବେ ବା କର କର୍ମର ପ୍ରଶଂସା
ଗାଉଛନ୍ତ କେତେବେଳେ ଜ୍ଞାନର ପ୍ରଶସ୍ତି ।
ଏଥିରେ ତ ବୁଦ୍ଧି ମୋର କରୁଛନ୍ତ ଭ୍ରଂଶ ।
କହନ୍ତୁ ନିଶ୍ଚିତ କରି ଗୋଟିକର କଥା ।
ତାହାହେଲେ ସିନା ଯାଇଁ ପାଇବି ମୁଁ ଶ୍ରେୟ (ମୋକ୍ଷ) ।
କହିଲେ ଶ୍ରୀ ଭଗବାନ—"ହେ ଅନଘ ପାର୍ଥ !
ଜଗତରେ ଦ୍ୱିପ୍ରକାର ନିଷ୍ଠା ।
କହୁଅଛି ଶୁଣ ତେବେ ସେ ନିଷ୍ଠା ଲକ୍ଷଣ ।
ସାଂଖ୍ୟମାନଙ୍କର ନିଷ୍ଠା ଜ୍ଞାନ-ଯୋଗଦ୍ୱାରା
ଯୋଗିମାନଙ୍କର କର୍ମ-ଯୋଗଦ୍ୱାରା ନିଷ୍ଠା ।
କର୍ମ, ଜ୍ଞାନ ଦୁହେଁ ମିଶି ହୁଏ ମୋକ୍ଷ (ଯୋଗ) ।
କରମ ସାଧନ ବିନା ମିଳେ ନାହିଁ ଜ୍ଞାନ ।
କରମ ନ କରି ଲୋକ
କରିପାରେ ନାହିଁ କେହି ତତ୍ତ୍ୱଜ୍ଞାନ କେବେ ।
ଚିତ୍ତଶୁଦ୍ଧି ବିନା-କେବଳ ସନ୍ନ୍ୟାସେ ଖାଲି (କର୍ମତ୍ୟାଗରେ)
ମିଳି ନାହିଁ ସିଦ୍ଧି । କରମ ନ କରି କେହି
ମୁହୂର୍ତ୍ତିକ ପାଇଁ ରହିପାରେ ନାହିଁ କାହିଁ
ସଂସାର କ୍ଷେତ୍ରରେ !
କାରଣ ପ୍ରକୃତିଜାତ ଗୁଣ ପ୍ରଭାବରୁ
କରମ ନ କରି କେବେ ରହି ହୁଏ ନାହିଁ ।
ପ୍ରାଣୀମାନେ ସବୁବେଳେ କରମରେ ରତ ।
ଯେଉଁ ବ୍ୟକ୍ତି ହାତ ଗୋଡ଼ ଆଦି କର୍ମେନ୍ଦ୍ରିୟମାନ
ପଙ୍ଗୁ କରିଦେଇ କରମ ନ କରି,
କେବଳ ବିଷୟ-ସୁଖ ଚିନ୍ତା କରୁଥାଏ,
କପଟ ଆଚାରୀ ବୋଲି କହନ୍ତି ତାହାକୁ ।
ହେ ଅର୍ଜୁନ ! ଯିଏ ଜ୍ଞାନ ବୁଦ୍ଧି ଆଦି କରି
ଜ୍ଞାନ ଇନ୍ଦ୍ରିୟମାନଙ୍କୁ ହୃଦୟେ ସଂଯତ କରି,

କର୍ମେନ୍ଦ୍ରିୟଦ୍ୱାରା କରଇ କରମ
ସେହି ଏକା ଶ୍ରେଷ୍ଠଯୋଗୀ (ଜ୍ଞାନୀ) ।
ଇନ୍ଦ୍ରିୟ ସଂଯତ କରି, କରିଯାଅ କାମ ନିୟମିତ ଭାବେ ;
କାମ ନ କରିବାଠାରୁ କରିବା ଉତ୍ତମ ।
କାରଣ, କରମ ନ କଲେ ଦେହ ରଖି ପାରିବନି ।
ଯେଉଁ କର୍ମ କରାଯାଏ, ପର ଉପକାର
କିବା ଯଜ୍ଞର ନିମିତ୍ତ ତାହା ଛଡ଼ା ଆଉ
ଯେତେ କର୍ମ ବାନ୍ଧିରଖେ ସଂସାର ବନ୍ଧନେ ।
ଅତଏବ କର୍ମଫଳ ତ୍ୟାଗ କରି ତୁମେ
କରିଯାଅ କର୍ମ ପରେ ଉପକାର ପାଇଁ ।
ସୃଷ୍ଟି ଆରମ୍ଭରେ ବ୍ରହ୍ମା ଯଜ୍ଞ ଓ ବ୍ରାହ୍ମଣ
ଆଦି ପ୍ରଜାଗଣ ସୃଜି କହିଥିଲେ ଏହା —
ତୁମେମାନେ ଏହି ଯଜ୍ଞ କରି ଆଚରଣ ହମ ବୃଦ୍ଧି ଲଭକର !'
ଏହି ଯଜ୍ଞ ଦେବ କାମଧେନୁ ପରି ଫଳ ।
ବ୍ରହ୍ମା କହିଥିଲେ ପୁଣି ହେ ମାନବଗଣ !
ଘୃତାହୁତି ଦେଇ ଦେବତାଙ୍କୁ ତୁଷ୍ଟ କର ।
ଦେବତାସମୂହ ଜଳ ବୃଷ୍ଟି ଆଦିଦ୍ୱାରା
କରନ୍ତୁ ସେପରେ ତୁମ ସନ୍ତୋଷବିଧାନ ।
ଏହିପରି ପରସ୍ପର ସନ୍ତୋଷ ଲଭିରେ
ପରମ ମଙ୍ଗଳ ହେଉ ତୁମମାନଙ୍କର ।
ଇନ୍ଦ୍ରାଦି ଦେବତା ଯଜ୍ଞର ଘୃତାହୁତିରେ ହୋଇଲେ ସନ୍ତୁଷ୍ଟ,
ଦାନ କରିବେ ତୁମକୁ ନାନା ଖାଦ୍ୟଦ୍ରବ୍ୟ ।
ସେହି ଦେବଦତ୍ତ ଦ୍ରବ୍ୟ ପଞ୍ଚ ଯଜ୍ଞ କରି
ପୁଣି ଯେ ନ ଦିଏ ତାଙ୍କୁ, ସେହି ନିଶ୍ଚେ ଚୋର ।
ବୈଶ୍ୱଦେବାଦି ଯଜ୍ଞର ଅବଶିଷ୍ଟ ଅନ୍ନ
ଭୋଜନ କରେ ଯେ ସାଧୁ ପଞ୍ଚଶୂନା ଜାତ
ସକଳ ପାପରୁ ହୁଏ ନିଶ୍ଚୟ ମୁକତ ।
କିନ୍ତୁ ଅସୁର ପ୍ରକୃତି ଅନାର୍ଯ୍ୟମାନେ

ରନ୍ଧନ କରି କେବଳ ଭୁଂଜୁଥାନ୍ତି ନିଜେ ।
ସେହି ଦୁରାଚାରମାନେ ଭୁଂଜନ୍ତି କଲ୍ମଷ ।
ପ୍ରାଣୀମାନେ ଜାତପନ୍ନ ଶୋଣିତ ଶୁକ୍ରରୁ,
ଯିଏ ଉତପନ୍ନ ପୁଣି ପରିଣତ ଅନ୍ନରୁ ।
ବୃଷ୍ଟିଜଳରୁ ଉତ୍ପନ୍ନ ହୁଅଇ ସେ ଅନ୍ନ ।
ମେଘ ଯଜ୍ଞରୁ ଉତ୍ପନ୍ନ ହୋଇ କରେ ବୃଷ୍ଟି
ଏବଂ ଯଜ୍ଞର ଉତ୍ପତ୍ତି ହୁଏ କରମରୁ ।
ପ୍ରକୃତିରୁ କର୍ମ ଜାତ ।
ପରମ ବ୍ରହ୍ମରୁ ଜାତ ହୁଅଇ ପ୍ରକୃତି ।
ଯଜ୍ଞରେ ସର୍ବଦା ପ୍ରତିଷ୍ଠିତ ରହିଛନ୍ତି
ସେ ପରମ ବ୍ରହ୍ମ । ଏଣୁ ଈଶ୍ୱର ସର୍ବବ୍ୟାପୀ,
ଯଜ୍ଞ କରଣରେ ଖାଲି ହୁଅନ୍ତି ପ୍ରୀତ ।
ଇହ ଜଗତରେ ଯିଏ ଅନୁଗତ ହୋଇ
ଏ କରମଚକ୍ରେ କରେ ନାହିଁ ତାର କର୍ମ,
ସେ ପାପାତ୍ମା, ପାର୍ଥ ! ଭୋଗଲାଳସାରେ ବୃଥା ଧରଇ ଜୀବନ ।
ପୁଣି ହେ ଯାହାର ପ୍ରୀତି,
ତୃପ୍ତି ସଂତୋଷାଦି ମିଳି ଯାଉଛି ଆତ୍ମାରେ
କରମ କରିବା ତାର ହୁଏ ନାହିଁ ଲୋଡ଼ା ।
ଇହ ସଂସାରରେ ତାର କରମ କରିଲେ ହୁଏ ନାହିଁ ପୁଣ୍ୟ
ତାହାର କର୍ତ୍ତବ୍ୟ କର୍ମ ହୋଇଅଛି ପୂର୍ଣ୍ଣ ।
କରମ ନ କଲେ କିଛି ପାପ ହୁଏ ନାହିଁ ।
ପୁଣି ସେହି ଲୋକ ମୁକ୍ତି ପାଇବାର ପାଇଁ
କାହାଠାରୁ ବ୍ରହ୍ମଲୋକ ଯାଏ, ନିଏ ନାହିଁ
କାହାର ଶରଣ କେବେ ଇଚ୍ଛା ବି କରେନି ।
ଏହି ଜ୍ଞାନୀମାନଙ୍କର କର୍ମ କରିବାକୁ
ଆବଶ୍ୟକ ନ ଥିଲେ ବି ଅନ୍ୟମାନଙ୍କର ଅଛି ନିଶ୍ଚୟ ଆବଶ୍ୟକ
ଏଣୁ କରି ତୁମେ କର୍ମଫଳରେ ଆସକ୍ତି ନ ରଖି କଦାପି
ଅନାସକ୍ତ ଭାବେ ସଦା କରିଯାଅ କର୍ତ୍ତବ୍ୟକର୍ମ ନିରଳସ ଭାବେ ।
କାରଣ ପରମପଦ ପାଇବ କର୍ମରେ ।

ଜନକାଦି ରାଜାମାନେ କର୍ମଯୋଗଦ୍ୱାରା
ପାଇଛନ୍ତି ଜ୍ଞାନସିଦ୍ଧି ସର୍ବତୋଭାବରେ ।
ଯଦି ତୁମେ ଭାବ ଆପଣାକୁ ଜ୍ଞାନୀ ବୋଲି
ତଥାପି ଅନ୍ୟକୁ ଚଳାଇବା ପାଇଁ ସ୍ୱ ସ୍ୱ ଧର୍ମେ,
କରିବାକୁ ହେବ ତୁମକୁ କରମ ।
ମହାଜନମାନେ ଆଚରନ୍ତି ଯାହା ଯାହା,
ଇତର ନିକୃଷ୍ଟ ଜନ କରିଥାଏ ତାହା ।
ପୁଣି ଶ୍ରେଷ୍ଠ ଜନ ଯାହା ପ୍ରମାଣ କରଇ,
ଇତର କରଇ ଅନୁସରଣ ତାହାର ।
ହେ ପାର୍ଥ ! ମୋହର ପ୍ରୟୋଜନ ନାହିଁ କିଛି କର୍ମ କରିବାକୁ ।
କାରଣ ଏ ତ୍ରିଲୋକରେ ପାଇବାର ଯୋଗ୍ୟ
ଅବା ଦୁର୍ଲ୍ଲଭ ହୋଇଣି ମୋର କିଛି ନାହିଁ ।
ତଥାପି ମୁଁ କରୁଅଛି କର୍ମ ସବୁବେଳେ ।
ଯଦି ମୁଁ ନ କରେ କାମ ଅଳସୁଆ ହୋଇ,
ସକଳେ କରିବେ ସିନା ମୋ ଅନୁକରଣ ?
କର୍ମ ଲୁପ୍ତ ହେଲେ ସବୁ ହୋଇବେ ଉଚ୍ଛନ୍ନ ।
ଶେଷରେ ହୋଇବି ବର୍ଣ୍ଣସଂକରଙ୍କ କର୍ତ୍ତା ।
ଏଥିରେ ସକଳ ପ୍ରଜା ହୋଇବେ ମଳିନ ।
ହେ କୁନ୍ତୀନନ୍ଦନ !
ମୂର୍ଖମାନେ ଯେଉଁପରି କର୍ମଫଳେ ରଖି ଆଶା କରନ୍ତି କରମ,
ଜ୍ଞାନୀଏ ସେପରି ଅନାସକ୍ତ ରହି ଫଳେ
କରନ୍ତି କରମ ଇତରଙ୍କୁ ଦେବା ପାଇଁ ସ୍ୱଧର୍ମେ ମତାଇ ।
ଆସକ୍ତ ବିବେକହୀନମାନଙ୍କ କାର୍ଯ୍ୟରେ
ଜ୍ଞାନୀ ଜନମାନେ କେବେ ଜନ୍ମାନ୍ତି ନ ଭେଦ ।
ବରଂ ସେମାନେ ଆପେ ବ୍ୟବସ୍ଥିତ ମନେ
ସାଧିଣ ସମସ୍ତ କର୍ମ ଲଗାଇ ଦିଅନ୍ତି କାମେ ଅଜ୍ଞାନୀମାନଙ୍କୁ ।
କରମ ସକଳ ପ୍ରକୃତିର ଗୁଣଯୋଗେ
ହୁଏ ସଂପାଦିତ ସର୍ବତୋଭାବରେ ସଦା ।

କିନ୍ତୁ ଅହଂକାର ଯୋଗୁ ଯାହାଙ୍କର ଆତ୍ମା ହୁଅଇ ବିମୂଢ଼,
ସେ ମୂଢ଼ ମଣଇ ସେହି କରୁଅଛି ସବୁ ।
ଅର୍ଥାତ୍ ମଣଇ ସିଏ କାମର କରତା ।
ହେ ମହାବାହୋ ଅର୍ଜୁନ !
ଯିଏ ଜାଣିଥାଏ ଗୁଣ କର୍ମ ବିଭାଗର ତତ୍ତ୍ୱକୁ ଜଗତେ,
ସେହି ବ୍ୟକ୍ତି ପ୍ରକୃତିର ଗୁଣଦ୍ୱାରା ହୁଏ
ସଂପାଦିତ ସବୁ, ଜାଣି ନିଜକୁ କରତା
ବୋଲି ମଣେ ନାହିଁ କେବେ ।
ଯେଉଁ ଲୋକମାନେ ଇନ୍ଦ୍ରିୟମାନଙ୍କ କାର୍ଯ୍ୟେ
ଅତ୍ୟନ୍ତ ଆସକ୍ତ, ସେ ଦୁର୍ମତି ଅଳ୍ପଦର୍ଶୀ
ବ୍ୟକ୍ତିମାନଙ୍କୁ ତତ୍ତ୍ୱଜ୍ଞାନୀ ବ୍ୟକ୍ତିଙ୍କର
ବିଚଳିତ କରି ନୁହଇ ଉଚିତ କେବେ ।
ହେ ଅର୍ଜୁନ ! ତୁମେ ସକଳ କର୍ମର ଫଳ ସମର୍ପି ଈଶ୍ୱରେ
ଈଶ୍ୱରଙ୍କ ଅଧୀନରେ କରୁଛି କରମ,
ମୋର କିଛି ଶକ୍ତି ନାହିଁ ଏହି କଥା ଭାବି,
କାମନାରହିତ ଆଉ ମମତାବିହୀନ ହୋଇ
ଶୋକ ନ ଆଚରି କର ଯା ସମର ।
ଯେ ମୋର ଏହି ମତକୁ ଦୋଷହୀନ ଭାବି
ଶ୍ରଦ୍ଧାର ସହିତ କରେ କର୍ମ ଆଚରଣ,
ମୁକୁଳି ଯାଏ ସେ ଆପେ ସବୁ କରମରୁ ।
କର୍ମରେ ନିର୍ମଳ ଚିତ୍ତ ହେଲେ ଅବହେଳେ
କରଇ ମୁକତି ଲାଭ ।
ଯେ କରଇ ନିନ୍ଦା ମୋର ଏସନ ମତକୁ,
ଶ୍ରଦ୍ଧାରେ କରଇ ନାହିଁ ତାର ଆଚରଣ,
ସେ ହୋଇପାରେନା ଯୋଗ୍ୟ ଜ୍ଞାନ ବିଷୟରେ ।
ତାହାର ବିବେକ ନଷ୍ଟ ହୋଇଯାଏ ତ୍ୱରେଁ ।
ପୁଣି ସେ ହୁଅଇ ଭ୍ରଷ୍ଟ ପୁରୁଷାର୍ଥତାରୁ ।
ଧର୍ମ-ଅର୍ଥ-କାମ-ମୋକ୍ଷ ଆଦି ଚଉବର୍ଗ

ମିଳେ ନାହିଁ ତାଙ୍କୁ, ଜ୍ଞାନବାନ ହେଲେ ମଧ୍ୟ
ସ୍ୱଭାବ ବଶରେ ସିଏ କରଇ କରମ ।
ପ୍ରାଣୀମାନେ ରହିଥାନ୍ତି ପ୍ରକୃତି ଅଧୀନ ।
ଇନ୍ଦ୍ରିୟମାନଙ୍କୁ ଅବା ଜିଣିଲେ ଏପରି କି ଲାଭ ଅଛି ଏଥିରେ ?
ସ୍ୱପକ୍ଷ ବିପକ୍ଷ ଅଛି ଇନ୍ଦ୍ରିୟଗଣର ।
ଶ୍ରଦ୍ଧା ଅଶ୍ରଦ୍ଧା ଏ ଦୁହେଁ ଥାନ୍ତି ବରାବର, ଏକଥା କହିବ କିଏ ?
ସବୁ ଇନ୍ଦ୍ରିୟର ଆସକ୍ତି ଦ୍ରବ୍ୟରେ ସ୍ନେହ ।
ପ୍ରତିକୂଳେ ଥାଏ ଦ୍ୱେଷ ନିଶ୍ଚିତ ଭାବରେ ।
ଅନୁରାଗେ କିବା ବିରାଗରେ ହେବ ନାହିଁ ବଶ କେତେବେଳେ
ରାଗ ଦ୍ୱେଷ ଦୁହେଁଯାକ ମୁମୁକ୍ଷୁ କଂଟକ ।

ଟୀକା—ଜଗତର ଅନୁକୂଳ ମନ୍ଦ, ଆଉ ପ୍ରତିକୂଳ ନିନ୍ଦ୍ୟ । ଏ ଦୁହିଁଙ୍କର
ଭାବ ମୁକ୍ତିଚ୍ଛୁ ଅବଶ୍ୟ ଅନୁଭବ କରିବ ।
ପରଧର୍ମ କରିବାକୁ ହେଲେହେଁ ଉତ୍ତମ ।
ସ୍ୱଧର୍ମ ପାଳନ କରି ମରିବାଟା ଭଲ ।
ପରଧର୍ମ ଭୟଙ୍କର ମରଣୁଁ ଅଧିକ ।

ଅର୍ଜୁନ କହିଲେ—ହେ ବୃଷ୍ଣିକୁଳସମ୍ଭୂତ !
ଆପଣ କହନ୍ତୁ ମୋତେ ସବୁ ସ୍ଥିର କରି ।
ଯାର ଇଚ୍ଛା ନାହିଁ ମୋଟେ ପାପ କରିବାକୁ
ସେ ପୁଣି କାହିଁକି କରେ ସେ ପାପ କରମ ?
କିଏ ପ୍ରବର୍ତ୍ତାଏ ତାଙ୍କୁ ବଳାତ୍କାର କରି ?
ପାପ ପୁଣ୍ୟ, ନିନ୍ଦା କର୍ମ,
ଅକର୍ମ ପ୍ରଶଂସା, ହରଷ ବିଷାଦ
ଜାଣିଶୁଣି କରି କିଆଁ କରଇ ସେ ପାପ ?

ଶ୍ରୀକୃଷ୍ଣ କହିଲେ—ଅତି ଉଗ୍ର ଅତୃପ୍ତିର ନିଦାନ ଯେ କାମ,
ରଜଗୁଣରୁ ଜନ୍ମ ସେ ।
ପ୍ରତିହତ ହୁଏ ଯେବେ କୌଣସି ପ୍ରକାରେ
ଜନମଇ କ୍ରୋଧ, ରୋଧଇ ଯେ ମୁକ୍ତିପଥ ।
ସେହି କାମ ପୁଣି କ୍ରୋଧ, ଦୁହେଁ ତ ଅଭିନ୍ନ ।

ଟୀକା—ଦୁଧରେ ଦହି ମିଶିଲେ, ସଙ୍ଗେ ସଙ୍ଗେ ସେ ଦହି ହୋଇଯାଏ ।

ସେହିପରି କାମ ବାଧା ପାଇଲେ
ତମ ବା କ୍ରୋଧରେ ପରିଣତ ହୁଏ ।
ଯେପରି ଧୂଆଁରେ ନିଆଁ, ମଳରେ ଦର୍ପଣ,
ଜରାୟୁରେ ଗର୍ଭ (ଭ୍ରୂଣ) ଥାଏ ହୋଇଣ ଆବୃତ୍ତ,
ସେହିପରି କାମଦ୍ୱାରା ଜ୍ଞାନ ଥାଏ ରହି ।
ହେ କୁନ୍ତୀନନ୍ଦନ !
ଶୋକ ସନ୍ତାପ ଯଥାର୍ଥ ଅନଳର ସମ ।
ମାନବର ଚିର ଶତ୍ରୁ ଅଟଇ ଅତୃପ୍ତି ।
ଜ୍ଞାନକୁ ଘୋଡ଼ଇ ସିଏ ଅନଳର ପରି ।
ଇନ୍ଦ୍ରିୟ ସକଳ ମନ ଆଉ ବୁଦ୍ଧି ଅଟେ
କାମର ରହିବା ଘର । ତେଣୁ କରି ତାଙ୍କି
ଜ୍ଞାନ, ଜୀବକୁ ମୋହିତ କରେ ବରାବର ।

ଟୀକା—ଦେଖିବା ଶୁଣିବାରେ କାମ କ୍ରମେ କ୍ରମେ ବଢ଼େ ।

ମନ ଯାହା ଖୋଜେ, ବୁଦ୍ଧି ତାର ବାଟ ବତାଇ ଦିଏ ।
ହେ ଭରତଶ୍ରେଷ୍ଠ ! ତୁମେ ଇନ୍ଦ୍ରିୟମାନଙ୍କୁ
ଦମି, ବରଜ ତା ପରେ କାମ; ପାପ ସିଏ ।
ଜ୍ଞାନ ବିଜ୍ଞାନକୁ ଧ୍ୱଂସି କରେ ହତଜ୍ଞାନ ।
ଶରୀରଠାରୁ ଇନ୍ଦ୍ରିୟମାନେ ନଶ୍ଚେ ଶ୍ରେଷ୍ଠ ।
ଇନ୍ଦ୍ରିୟଙ୍କ ପ୍ରବର୍ତ୍ତକ ମନ ଶ୍ରେଷ୍ଠ ତହୁଁ ।
ବୁଦ୍ଧି ମନଠାରୁ ଶ୍ରେଷ୍ଠ ।
ମନ ଅପେକ୍ଷା ଯେ ଶ୍ରେଷ୍ଠ ତାହା ଏହି ଆତ୍ମା ସଭିଙ୍କର ସାକ୍ଷୀ ।
ବୁଦ୍ଧି ଦ୍ୱାରା ମନଟିକୁ କରଧାର ସ୍ଥିର
କର ହେ ଦୁର୍ଜୟ ଶତ୍ରୁ ସମରେ ସଂହାର ।

# ଚତୁର୍ଥ ଅଧ୍ୟାୟ

## ଜ୍ଞାନଯୋଗ

ଶ୍ରୀକୃଷ୍ଣ କହିଲେ—ପୂର୍ବେ ଏହି ନିତ୍ୟ ଯୋଗ
କହିଥିଲି ସୂର୍ଯ୍ୟ । ଶୁଣି ମୋଠାରୁ ଶ୍ରଦ୍ଧାରେ
କହିଥିଲେ ତାଙ୍କ ପୁତ୍ର ମନୁଙ୍କୁ ସେପରେ ।
ମନୁ କହିଥିଲେ ତାଙ୍କ ପୁତ୍ର ଇକ୍ଷ୍ୱାକୁଙ୍କୁ ।
ଟୀକା—ତେଣୁ ଏହି ଯୋଗ ଅତି ପୁରୁଣା । କେବଳ ଋଷି ପୁମାନେ
ଏହାକୁ ଯତ୍ନରେ ପାଳନ କରନ୍ତି ।
ହେ ଶତ୍ରୁତାପନ !
ଏହିପରି ଏ ଯୋଗକୁ ଉପଦେଶ ବଳେ
ପୁରୁଷାନୁକ୍ରମେ ଲଭି ରାଜର୍ଷିମାନେ
ସାଧିଥିଲେ ଯତନରେ ।
ତାହା କାଳକ୍ରମେ ଲୋପ ପାଇଅଛି ଏବେ ।
ପ୍ରଚଳିତ ନାହିଁ ଆଉ ବର୍ତ୍ତମାନ ଯୁଗେ ।
ଯେଣୁ କରି ତୁମେ ଭକ୍ତ ଆଉ ସଖା ମୋର,
ସେହି ପୁରାତନ ଯୋଗ କହିବି ତୁମକୁ ।
ଅନୁରାଗ କରି ତାହା ଶୁଣ ମୁଁ କହୁଛି ।
ଅତି ଗୋପନୀୟ । ପୁଣି ଜ୍ଞାନୀଜନଙ୍କର ଅତି ପ୍ରିୟ କଥା ।
ଅର୍ଜୁନ କହିଲେ—ଶୁଣି ଆପଣଙ୍କ ଜନ୍ମ
ଏହି ଦ୍ୱାପର ଯୁଗରେ ।
ସୂର୍ଯ୍ୟଙ୍କର ଜନ୍ମ ବହୁତ ଯୁଗର ଆଗେ ।
କିପରି ଜାଣିବି, ତେବେ ସୂର୍ଯ୍ୟଙ୍କୁ ଆପଣ କହିଥିଲେ ବୋଲି ?
ଶ୍ରୀକୃଷ୍ଣ କହିଲେ—ହେ ଅରିଦମନକାରୀ !
ତୁମର ମୋହର ବହୁ ଜନ୍ମ ବିତିଲାଣି ।
ମୋର ଜ୍ଞାନଶକ୍ତି ଅଛି । ପାରୁଛି ତେଣୁ ମୁଁ ଜାଣି ଗତ କଥା ।
ତୁମର ସେ ଶକ୍ତି ଲୁପ୍ତ ହୋଇଛି ଜନ୍ମାନ୍ତେ ।

ତେଣୁ ହେଉଅଛ ବଣା; ଜାଣି ପାରୁ ନାହିଁ ।
ମୋର ଜନମ ମରଣ ନାହିଁ । ଅରଜୁନ !
ସବୁ ଜୀବମାନେ ମୋର ଅଟନ୍ତି ଅଧୀନ ।
ଏକମାତ୍ର କର୍ତ୍ତା ମୁହିଁ ଜଗତପାଳକ ।
ମୋର ନାହିଁ ରୂପାନ୍ତର । ତଥାପି, ନିଜର
ମାୟାବଳେ ଜନ୍ମ ଲଭେଁ ଧରଣୀ ବକ୍ଷରେ ।
ଜନମ ମରଣ ମୋର ଇଚ୍ଛାର ଅଧୀନ ।
ଯେତେବେଳେ ହୁଏ ଊଣା ଧର୍ମ ଧରଣୀରୁ,
ଅଧର୍ମ ବଢ଼ଇ କ୍ରମେ, ଅବତୀର୍ଣ୍ଣ ହୋଇ ମୁହିଁ ଧରଣୀ ଉପରେ
ଭାର ନିବାରଇ ଦୁଷ୍ଟମାନଙ୍କୁ ସଂହାରି ।
କେତେବେଳେ ନିଜେ, କେବେ ଅନ୍ୟ [କାହାଦ୍ୱାରା,]
ସେ ଅନ୍ୟ ତ ତୁମେ ।
ଟୀକା—ଧର୍ମକୁ ରଖିବା ମୋ ଅବତାରର କାମ । ନ ହେଲେ ବୃଥାରେ
ଇଚ୍ଛା କରି ମୁଁ ଜନ୍ମଗ୍ରହଣ କରେ ନାହିଁ ।
ଧନଂଜୟ ! ନାହିଁ ମୋର ଜନ୍ମର ସମୟ,
ଯେତେବେଳେ ଲୋଡ଼ା ହୁଏ ଲଭଇ ଜନମ ।
ସାଧୁଙ୍କର ପରିତ୍ରାଣ ପାପୀଙ୍କ ବିନାଶ
ପାଇଁ ଯୁଗେ ଯୁଗେ କରେ ମୁହିଁ ଶରୀର ଧାରଣ ।
ମୋର ଜନ୍ମ କର୍ମଲୋକରେ ନୁହେ ସଂଭବ ।
ଯେ ଜାଣଇ ଭଲେ ତାର ନାହିଁ ଜନ୍ମାନ୍ତର ।
କେତେବେଳେ କାମ କ୍ରୋଧ ଭୟକୁ ବିନାଶି,
ଏକାଗ୍ର ମନରେ ପଶି ମୋ ପାଦେ ଶରଣ,
ତପସ୍ୟା ବଳରେ ଲଭିଅଛନ୍ତି ସ୍ୱରୂପ ।
ଯିଏ ଯେଉଁପରି ଭଜେ ମୋତେ ହେ ଅର୍ଜୁନ !
ସେହିପରି ପାଏ ମୋତେ, ନାହିଁ ହେ ସନ୍ଦେହ ।
ଜଗତରେ ଯେତେ ଯହିଁ ଅଛି ଆରାଧନା,
ସେସବୁ ତ ମୋର ଉପାସନା ହିଁ କେବଳ ।
ଯେ ଯେପରି ଇଚ୍ଛେ, ଫଳ ଦିଏ ମୁଁ ସେପରି ।

ସଂସାରରେ କେତେ କର୍ମଫଳ ଆଶାବାଦୀ
ଚନ୍ଦ୍ର ସୂର୍ଯ୍ୟାଦିଙ୍କୁ ଦେବତା ଭାବି ପୂଜନ୍ତି ।
ସେମାନେ ମର୍ତ୍ତ୍ୟରେ କର୍ମଜାତ ଫଳସବୁ ପାଆନ୍ତି ଚଂଚଳ ।
ଗୁଣ କର୍ମ ଅନୁସାରେ ବାଣ୍ଟିକରି ମୁହିଁ
ବର୍ଣ୍ଣ କରିଲି ସର୍ଜନା ।
ଏଣୁ ମୁଁ ତାହାର କର୍ତ୍ତା, ଆଉ ବି ଅକର୍ତ୍ତା ।
ପାରେ ନାହିଁ ଛୁଇଁ ମୋତେ କର୍ମ କେତେବେଳେ,
ଯେଣୁ ମୁଁ ନିର୍ମମ ଅଟେ ତାହାର ଫଳରେ ।
ଯେ ଜନ ଜାଣଇ ମୋତେ ଏହି ପରକାରେ,
ପଡ଼ଇ ନାହିଁ ସେ କେବେ କର୍ମବନ୍ଧନରେ ।
ପୂର୍ବେ ଜନକାଦି ମୁକ୍ତିକାମୀ ଋଷିମାନେ,
ଏହାହିଁ ଜାଣି କର୍ମ କରିଯାଇଛନ୍ତି,
କର୍ମଭୋଗ ନାହିଁ ସନାତନ ଏ ଆତ୍ମାର,
ଆତ୍ମା ହିଁ ଅକର୍ତ୍ତା ପୁଣି ଅଭୋକ୍ତା ଅଟଇ,
ଅତଏବ ତୁମେ ହୃଦୟରେ ସେହିପରି
ଜ୍ଞାନକୁ ସମ୍ପାଦି ଖାଲି କରିଯାଅ କାମ ।
କର୍ମରୁ ଜନମ ଲଭେ କରେ ଦିବ୍ୟ ବୁଦ୍ଧି,
ଶୁଦ୍ଧ କରିଦିଏ ପୁଣି ଅନ୍ତଃକରଣକୁ ।
ଅତଏବ କର ତୁମେ କର୍ମର ସାଧନ ।
କର୍ମାକର୍ମ କ'ଣ ଏ କଥାକୁ ଜାଣି ମଧ୍ୟ
ଜ୍ଞାନୀଜନମାନେ ବହୁତରେ କରନ୍ତି ଭ୍ରମ,
ବୃଥା ଶ୍ରମ ସିଏ ।
ମୁଁ ତୁମକୁ ଭଲ କରି କହିବି ସେ କଥା ।
ସେସବୁକୁ ଜାଣି ଯେବେ କରିବ କରମ,
ମୁକତ ହୋଇବ ତୁମେ ସବୁ ଅଶୁଭରୁ ।
ଶାସ୍ତ୍ରର ବିହିତ ଆଉ ଅବିହିତ କର୍ମେ,
କରମ ତ୍ୟାଗର ବହୁ ତତ୍ତ୍ୱମାନ ଅଛି ।
କାରଣ, କର୍ମ ଅକର୍ମ ବିକର୍ମରୁ ତତ୍ତ୍ୱ

ଅଛାବ ଦୁଜ୍ଞେ ୟ ଅଟେ ।
ବୁଝିବାକୁ ତାହା, ଶକ୍ତ ବା ଅଛୁ କାହାର ?
କର୍ମରେ ଅକର୍ମ, ଆଉ ଅକର୍ମରେ କର୍ମ,
ଦେଖି ଯେ ପାରଇ ସିଏ ସମସ୍ତଙ୍କଠାରୁ
ବେଶୀ ବୁଦ୍ଧିମାନ, ସେ ଏକା ସବୁ କାମରେ
ସବୁବେଳେ ଥାଏ କର୍ମବନ୍ଧନୁ ମୁକତ,
ଯୋଗମୁକ୍ତ ବୋଲି ତାକୁ କହନ୍ତି ଜ୍ଞାନଏ ।
ଯାହାର ବାସନା ନ ଥାଏ କର୍ମଫଳରେ,
ତାକୁ ହିଁ ପଣ୍ଡିତ ବୋଲି କହନ୍ତି ସକଳେ ।
କାରଣ କରମଜାତ ଏ ଜ୍ଞାନ ଅଗ୍ନିରେ,
ଜଳଯାଏ ତାର ସମସ୍ତ କରମଯାକ ।
କରମ ଫଳରେ ଆସକ୍ତ ନ ରଖି ସିଏ,
ନିତ୍ୟ ଆନନ୍ଦରେ ପରିତୃପ୍ତ ହୋଇ,
ଯୋଗ କମ୍ବା ମୋକ୍ଷ ପାଇଁ କାହାର ଆଶ୍ରା ନ ନେଇ,
କର୍ମ କରୁଥିଲେ ସୁଦ୍ଧା,
ମଣଇ ସେ କିଛୁ କାମ କରୁ ନାହିଁ ବୋଲି ।
ତାହାର କରମଯାକ ପ୍ରାପ୍ତ ହୁଏ
ଅକର୍ମର ଭାବ ତେବେ । କର୍ମ ଯାଏ ସରି ।
ନିରାଶୀ, ଇନ୍ଦ୍ରିୟଜୟୀ, ସବଦ୍ରବ୍ୟତ୍ୟାଗୀ
ବୈରାଗୀ, ଶରୀର ପାଇଁ କର୍ମ କରି ମଧ୍ୟ
କାମଶକ୍ତି ଅଭିମାନ ନ ଥିବାରୁ ତାରି,
ଫଳରେ ବିରାଗୀ ହୁଏ; ତେଣୁକରି ସିଏ
ହୁଏ ନାହିଁ ପାପଭାଗୀ ।
ଅଯାଚକ ବୃତ୍ତି ଆଶ୍ରା କରିଥାଏ ସିଏ
(କାହାକୁ ମାଗେନା କିଛି)
ଯେଉଁଠାରୁ ଯାହା ପାଏ, ସେଥିରେ ସନ୍ତୁଷ୍ଟ ରହି
କଳି କରେ ନାହିଁ କାହାରି ସଙ୍ଗରେ ।
ସିଦ୍ଧି ଅସିଦ୍ଧିରେ,

ହାନି ଲଭ, ସୁଖଦୁଃଖେ ଥାଏ ସମବୁଦ୍ଧି,
ପରଶ୍ରୀ ଦେଖିଲେ କେବେ ହୁଏନା କାତର,
ଆପସୁଖୀ ନୋହି କରେ ପରହିତ ବାଞ୍ଛା,
କର୍ମ କରୁଥିଲେ ସୁଦ୍ଧା
ଆବଦ୍ଧ ହୁଏନା କେବେ କରମ ଫାଶରେ ।
ହୃଦୟେ ନିଷ୍କାମ ଭାବ ସବୁବେଳେ ଧରି,
ରାଗ ଦ୍ୱେଷ ଛାଡ଼ି,
ମନକୁ ଜ୍ଞାନରେ ରଖି ସୁଦୃଢ଼ ଅଟଳ,
ବିଷ୍ଣୁ ଆରାଧନା କରି ଯେ କରଇ କର୍ମ,
ସେହି ଜନ ଏ ସଂସାରେ
ହୁଏ ନାହିଁ କେବେ କର୍ମଫାଶରେ ବନ୍ଧନ ।
ଫଳ ସହ କର୍ମ ତାର ହୁଅଇ ବିଲୟ ।
ତିଳ, ଯବ, ସ୍ରୁବ, ଘୃତ, ସମିଧ ଓ ଚରୁ,
ଯାଜ୍ଞିକ ବ୍ୟକତି ଆଦି କରି ସବୁ ବ୍ରହ୍ମ
ଯାହାର ଏପରି ଦୃଢ଼ ହୁଏ ବୁଦ୍ଧି, ତାକୁ
ମିଳଇ ସାଯୁଜ୍ୟ ମୁକ୍ତି, ଶାସ୍ତ୍ରର ଏ ବାଣୀ ।
ଯେ ଯୋଗୀ ପୂଜଇ ଦେବତାଙ୍କୁ ଭକ୍ତି ସହ,
ତାକୁ ହିଁ କହନ୍ତି ଦଇବଜ୍ଞ ଯୋଗୀ ବୋଲି ।
ଆଉ କେତେ ଯୋଗୀ ଯଜ୍ଞବିଧି ଅନୁସାରେ,
ବ୍ରହ୍ମ ଅନଳରେ ଆହୁତି ପ୍ରଦାନ ଦ୍ୱାରା
ଯଜ୍ଞ ଆଦି କର୍ମମାନ ଅନୁଷ୍ଠାନ କରି
ଲଭନ୍ତି ବିଲୟ, ସେହି ସନାତନ ବ୍ରହ୍ମେ ।
ଜ୍ଞାନ ଯଜ୍ଞ ବୋଲି ଯାକୁ କହିଛନ୍ତି ଶାସ୍ତ୍ର ।
କେହି କେହି ପୁଣି ସଂଯମ ରୂପ ଅନଳେ
ଚକ୍ଷୁ କର୍ଣ୍ଣ ଆଦି ଯେ ଇନ୍ଦ୍ରିୟମାନଙ୍କରେ,
ପୁଣି କେହି କେହି ଇନ୍ଦ୍ରିୟ ରୂପ ଅଗ୍ନିରେ
ଶବ୍ଦାଦି ବିଷୟେ ଆହୁତି ପ୍ରଦାନ କରି
ରଖଇ ବଶରେ ତାର ଇନ୍ଦ୍ରିୟମାନଙ୍କୁ ।

ଅପର ଯୋଗିଏ, ଆତ୍ମସଂଯମର ଯୋଗ
ଅନଳକୁ ଜାଳି,
ଇନ୍ଦ୍ରିୟ, କରମ, ପ୍ରାଣ, କର୍ମମାନଙ୍କୁ
ହୋମ କରି ଦେଇ ସୁଖେ ରହନ୍ତି ଜୀବନେ ।
କେହି କେହି ଧନ ଦାନେ କରନ୍ତି ଚି ଯଜ୍ଞ ।
କେହି ଅବା ତପସ୍ୟାରେ ବସି କରେ ଯଜ୍ଞ;
ପୁଣି କେହି ଯୋଗ ଯଜ୍ଞ, କେହି ବେଦାଭ୍ୟାସ
ଯଜ୍ଞ, କେହି ବେଦ ଅର୍ଥ ଜ୍ଞାନ ଯଜ୍ଞ, କେହି
ଦୃଢ଼ ବ୍ରତ ଯଜ୍ଞ ଆଦି କରେ ଆଚରଣ ।
ଅପାନ ବାୟୁରେ ପ୍ରାଣ ବାୟୁକୁ କରଇ
ହୋମ ପୁଣି କେଉଁ ଯୋଗୀ ।
ଅର୍ଥାତ୍ ପ୍ରାଣାୟାମ କରି ପ୍ରାଣ ପବନକୁ ନେଇ ଅପାନେ ମିଶାଇ
ଗତିରୋଧ କରିଦିଅନ୍ତି; ତାହା ହିଁ ଆହୁତି ।
ପୁଣି ଅପାନ ବାୟୁରେ ପ୍ରାଣପବନକୁ
ଦିଅନ୍ତି ଆହୁତି କରି ।
ପୁଣି କେହି କେହି ମିତ ଆହାରରେ ରହି
ପ୍ରାଣରେ ପ୍ରାଣକୁ ହୋମ କରି ଦେଉଥାନ୍ତି ।
ଯଜ୍ଞ ଜ୍ଞାତାମାନେ ଯଜ୍ଞ ଅନୁଷ୍ଠାନ କରି ହୁଅନ୍ତି ନିଷ୍ପାପ ।
ହେ କୁରୁଶ୍ରେଷ୍ଠ ବୀର ! ଯଜ୍ଞ ଶେଷ କରି
ଯିଏ ଭୁଞ୍ଜେ ଶେଷ ଅନ୍ନ ସେ ଖାଏ ଅମୃତ ।
ବ୍ରହ୍ମ ସନାତନଙ୍କୁ ସେ କରିଥାଏ ଲଭ ।
ଯିଏ ଯଜ୍ଞ କରେ ନାହିଁ, ସ୍ୱର୍ଗପ୍ରାପ୍ତି ଦୂରେ ଥାଉ,
ପାଇପାରେ ନାହିଁ ମାନବ ଜନମ ।
ଯଜ୍ଞ ନ କରି ଯେ ଖାଏ, ଖାଲି ପେଟ ପାଳେ,
ସ୍ୱର୍ଗଲୋକ ସିଏ ଅବା ପାଇବ କେଉଁଠୁ !
ଏହିପରି ନାନା ଯଜ୍ଞ ବେଦରେ ପ୍ରଶସ୍ତରୂପେ
ହୋଇଛି ବର୍ଣ୍ଣିତ ।
ସେହିସବୁ ଯଜ୍ଞ କର୍ମରୁ ସମ୍ଭୂତ ଜାଣି ।

ଏତକ ଜାଣିଲେ ସଂସାର-ବନ୍ଧନୁ ମୁକ୍ତ ପାଇବ ନିଶ୍ଚୟ ।
ହେ ଶତ୍ରୁତାପନ ବୀର !
ତତ୍ତ୍ୱକଥା କହେ ଏବେ ତା ଶ୍ରବଣ କର ।
ଦ୍ରବ୍ୟମୟ ଯଜ୍ଞୁ ଜ୍ଞାନଯଜ୍ଞ ଶ୍ରେଷ୍ଠ ଅଟେ ।
· କାରଣ, ଜ୍ଞାନରେ ହୁଏ ସବୁ କର୍ମ ଶେଷ ।
ସୁଜ୍ଞାନୀମାନଙ୍କୁ ସେବାପ୍ରକାରେ ମନାଇ
ତାଙ୍କୁ ପ୍ରଶ୍ନ କରି ଜ୍ଞାନଲାଭ କରିବାକୁ ହୁଅ ତତପର ।
ତତ୍ତ୍ୱଦର୍ଶୀ ଜ୍ଞାନୀମାନେ ଦେବେ ଉପଦେଶ ।
କରିଲେ ଏପରି ତୁମେ ହେ ବୀର ଅର୍ଜୁନ !
ଯେଉଁ ଜ୍ଞାନ ଲାଭ କଲେ ଛୁଟିଯିବ ମୋହ,
ତାହାରି ବଳରେ ତୁମେ ସକଳ ଜୀବଙ୍କୁ
ଦେଖିପାରିବ ଆତ୍ମାରେ ।
ଆହୁରି ଦେଖିବ, ମୋହଠାରେ ମଧ୍ୟ ତାଙ୍କୁ ।
ଯଦି ମହାପାପୀ ହୋଇଥାଅ ପ୍ରକୃତରେ,
ଜ୍ଞାନ-ନଉକାରେ ପାପ-ବାରିଧିକୁ ତୁମେ ତରିବ ସହଜେ ।
ଏ ନୁହେ ବିଚିତ୍ର କିଛି ।
ଶୁଖିଲା କାଠକୁ ଯେପରି ଜଳନ୍ତା ଅନଳ ଭସ୍ମ କରିଦିଏ,
ସେହିପରି ଜ୍ଞାନ-ଅଗ୍ନି କର୍ମସମୂହକୁ ପୋଡ଼ି କରିଦିଏ ଭସ୍ମ ।
ତପଃ, ଯୋଗ, ଯଜ୍ଞ-ଜ୍ଞାନ ପରି ଆଉ କିଛି ନୁହଇ ପବିତ୍ର ।
ଯେଉଁମାନେ କର୍ମଯୋଗ କରି,
ବିଳମ୍ବରେ ଲାଭ କରନ୍ତି ସିଦ୍ଧି,
ସେମାନେ ନିଶ୍ଚୟ ସ୍ୱାନୁଭବ ଅନୁଭବ କରନ୍ତି ନିଜେ ।
ଗୁରୁଙ୍କ ଉପଦେଶରେ ଯାର ଥାଏ ଶ୍ରଦ୍ଧା,
ଜ୍ଞାନଲାଭରେ ତତ୍ପର ଅଟଇ ଯେ ଜନ,
ସେ ନିଶ୍ଚୟ ଲଭନ୍ତି ବ୍ରହ୍ମଜ୍ଞାନ ତତ୍ତ୍ୱ ।
ଜ୍ଞାନ ଲାଭ କଲେ ପାଏ ଶୀଘ୍ର ଦିବ୍ୟ ଶାନ୍ତି,
ଗୁରୁଙ୍କ ଉପଦେଶର ଅର୍ଥ ଯେ ନ ବୁଝେ,
ଯିଏ ଶ୍ରଦ୍ଧାହୀନ, ପୁଣି ଯାହାର ମନରୁ

ସଂଶୟ ହୋଇନ ଦୂର, ଏପରି ଅଜ୍ଞାନ
ବିନାଶ ଲଭଇ ଧ୍ରୁବ ।
ଅଜ୍ଞ ଶ୍ରଦ୍ଧାହୀନ ପୁଣି ସଂଶୟୀ ଏ ଜନ,
ହୁଅନ୍ତି ବଞ୍ଚିତ ନଷ୍ଟେ ଇହଲୋକ ପୁଣି ପରଲୋକ ସୁଖୁ ।
ଆହେ ଧନଞ୍ଜୟ ! ଯୋଗଦ୍ୱାରା ଯେଉଁ ବ୍ୟକ୍ତି
ଈଶ୍ୱରଙ୍କଠାରେ ଦେଇଥାଏ ସମର୍ପି ତାର କର୍ମସମୂହକୁ,
ଆତ୍ମଜ୍ଞାନଦ୍ୱାରା ଛେଦଇ ସଂସାର-ମାୟା,
ସେହି ଆତ୍ମଜ୍ଞାନୀ, କର୍ମ-ବନ୍ଧନରେ ପଡ଼େ ନାହିଁ କଦାଚନ ।
ଅଜ୍ଞାନଜନିତ ଯେଉଁ ହୃଦୟସ୍ଥ ସଂଶୟ,
ଜ୍ଞାନ-ଖଡ଼ଗରେ ତାକୁ ଖଣ୍ଡ ଖଣ୍ଡ କରି,
କରମଯୋଗକୁ କରି ଆଶ୍ରୟ ତୁମରି,
ସ୍ୱଧର୍ମ କର୍ମରେ ମାତି ଉଠ, ଯୁଦ୍ଧ କର ।

## ପଞ୍ଚମ ଅଧ୍ୟାୟ

## କର୍ମସନ୍ନ୍ୟାସ ଯୋଗ

ଅର୍ଜୁନ କହିଲେ—କୃଷ୍ଣ !
କର୍ମସନ୍ନ୍ୟାସରେ (ତ୍ୟାଗରେ) ସ୍ନେହ ଆଉ କର୍ମଯୋଗେ
ଅନୁରାଗ କରି ଭିତରେ କେଉଁଟି ଭଲ,
ଆପଣ କହନ୍ତୁ ତାହା ସୁନିଶ୍ଚିତ କରି ।
ଶ୍ରୀ ଭଗବାନ—କର୍ମତ୍ୟାଗ ଆଉ କର୍ମରତ, ମୁକ୍ତିପଥ ଅଟେନ୍ତି ଉଭୟ ।
ଦୁହିଁଙ୍କ ଭିତରେ ସାର ହେଉଛି ନିଷ୍କାମ ।
ଅତଏବ କର୍ମତ୍ୟାଗଠାରୁ କର୍ମଯୋଗ
ନିଶ୍ଚୟ ଅଟଇ ଶ୍ରେଷ୍ଠ, ଆହେ ମହାବାହୋ !
ଯାହାର ନାହିଁ ଆକାଙ୍କ୍ଷା, ବିଦ୍ୱେଷ ବି ନାହିଁ,
ନାହିଁ ଦ୍ୱନ୍ଦ୍ୱ, ନାହିଁ ରାଗ, ନାହିଁ ବି ଆସକ୍ତି,
ସେହି ପ୍ରକୃତ ସନ୍ନ୍ୟାସୀ ।
ସେହି ହିଁ ମୁକତ ହୁଏ ସଂସାର-ବନ୍ଧନୁ ବିନା ଆୟାସରେ ।

ମୂଢ଼ଜନମାନେ ସନ୍ନ୍ୟାସ ଓ କର୍ମଯୋଗ ଅଲଗା କହନ୍ତି,
କିନ୍ତୁ ଜ୍ଞାନୀମାନେ ତାହା କହନ୍ତିନ କେବେ ।
ଦୁହିଁଙ୍କ ଭିତରୁ ଏକ କରିଲେ ଆଶ୍ରୟ,
ଦୁହିଁଙ୍କର ଫଳ ମୋକ୍ଷ ମିଳଇ ଅବଶ୍ୟ ।
ସାଂଖ୍ୟ (ସନ୍ନ୍ୟାସୀ) ଯେଉଁ ସ୍ଥାନ ପାଆନ୍ତି ସଂସାରେ,
କର୍ମଯୋଗୀମାନେ ତାହା ପାଆନ୍ତି ନିଶ୍ଚୟ ।
ସନ୍ଦେହ ନ କର ଏହା ଜାଣଇ ଯେ ଜନ
ସେହି ହିଁ ପ୍ରକୃତ ଜ୍ଞାନୀ ଆହେ ଅରିନ୍ଦମ !
ଈଶ୍ୱର-ଅର୍ପିତ କର୍ମ ନ କଲେ ସାଧନ, ହୁଏ ନାହିଁ ଚିତ୍ତଶୁଦ୍ଧି ।
ତେଣୁ କଷ୍ଟକର ହୁଏ ଲଭିବା ସନ୍ନ୍ୟାସ ।
କିନ୍ତୁ କର୍ମଯୋଗରତ ଯେଉଁମାନେ,
ତାଙ୍କୁ ମିଳେ ବ୍ରହ୍ମପଦ ଅଚିରେ, ସନ୍ଦେହ ନାହିଁ ।
ଯାର ଚିତ୍ତ ଶୁଦ୍ଧ, ଯାହାର ଦେହ ଇନ୍ଦ୍ରିୟ ସଦା ବଶୀଭୂତ,
ପରକୁ ମଣଇ ଯିଏ ଆପଣାର ସମ,
କର୍ମ କରୁଥିଲେ ମଧ୍ୟ ରହେ ସେ ନିର୍ଲିପ୍ତ ।
ଦେଖିବା ଶୁଣିବା ପୁଣି ଛୁଇଁବା ଶୁଂଘିବା,
ଖାଇବା ଶୋଇବା ପୁଣି ନିଶ୍ୱାସ ମାରିବା,
ମଳମୂତ୍ରାଦି ତ୍ୟଜିବା, ଗମନ କରିବା,
କଥାଦି କହିବା, ଦେବା ନେବା, ଅନାଇବା,
ପୁଣି ନୟନ ବୁଜିବା,
ଏସବୁ କରନ୍ତି ମନ ବୁଦ୍ଧି ପ୍ରାଣ ଆଉ ଇନ୍ଦ୍ରିୟ ନିକର ।
ଆମେ କରୁ ନାହିଁ କିଛି ।
ରହିଥାଏ ଖାଲି ଆମେ ଅକରମା ବସି ।
ଯେଉଁମାନେ ଫଳ ଆଶା ପରିତ୍ୟାଗ କରି
ଈଶ୍ୱର-ପ୍ରୀତିକୁ ରଖି ହୃଦୟ ଭିତରେ,
ଭବେଚନ୍ତି ସବୁ କାମ କରିଯାଉଥାନ୍ତି,
ତାହାଙ୍କୁ କଦାପି ପାପ ଛୁଇଁପାରେ ନାହିଁ ।
ପଦ୍ମପତ୍ରେ ପାଣି ପରି ସବୁବେଳେ ରହିଥାଆନ୍ତି ନିର୍ଲିପ୍ତ ।

ଚିତ୍ତ ଶୁଦ୍ଧି ପାଇଁ ଫଳ କାମନା ବରଜି,
ଯୋଗୀମାନେ ଦେହ ବୁଦ୍ଧି ମନଦ୍ୱାରା ମଧ୍ୟ
କରିଯାଉଥାନ୍ତି କର୍ମ ।
ନିଷ୍କାମ କର୍ମଯୋଗୀ, ଈଶ୍ୱରଙ୍କଠାରେ
ନିଷ୍ଠା, ଧ୍ୟାନ, ଲକ୍ଷ୍ୟ ରଖି ଏକାଗ୍ରତା ଯୋଗୁ ପାଆନ୍ତି ମୁକତି ।
ଫଳରେ ଆସକ୍ତ ହୋଇ ଫଳକାମୀମାନେ
ବୃଥା ଭ୍ରମି ଭ୍ରମି ଶେଷେ ପଡ଼ନ୍ତି ବନ୍ଧନେ ।
ଦୂର କରି ସବୁ କର୍ମ ଇନ୍ଦ୍ରିୟବିଜୟୀ,
କିଛି କରେ ନାହିଁ କର୍ମ୍ମ
ଅନ୍ୟଙ୍କୁ କରାଇ ବେଦନା କରମ କିଛି ।
ଏହି ନବଦ୍ୱାରଯୁକ୍ତ ଘରେ (ଦେହରେ) ବସେ ସୁଖେ ।
କର୍ତ୍ତା, କର୍ମ, କର୍ମଫଳ ପ୍ରକୃତିରୁ ଜାତ,
ଈଶ୍ୱର ସୃଜିତ ଏହା ନୁହଇ କଦାପି ।
ଭଗବାନ କାହା ପାପ ପୁଣ୍ୟ ବା କାହାର
ବିସନ୍ତି ନା ଧରି କେବେ ।
ତାଙ୍କର ନ ଥାଏ କାହାଠାରେ ଅନୁଗ୍ରହ
କି ଅବା ନିଗ୍ରହ ତିଳେ ।
କେବଳ ମାନବ ଜ୍ଞାନ, ଅଜ୍ଞାନେ ଆବୃତ୍ତ
ରହି କରେ ତାକୁ ପଶୁ,
ତେଣୁ ପକ୍ଷପାତି ମଣେ ଈଶ୍ୱରଙ୍କୁ,
ଯାହାଙ୍କର ଆତ୍ମଜ୍ଞାନ ନାଶଇ ଅଜ୍ଞାନ,
ତାଙ୍କର ଜ୍ଞାନ ଆଲୋକ ପ୍ରଭାକର ସମ
ପ୍ରକାଶିତ କରିଦିଏ ବ୍ରହ୍ମ ସ୍ୱରୂପକୁ ।
ଯାହାଙ୍କର ବୁଦ୍ଧି ପୁଣି ପରଂବ୍ରହ୍ମେ ଦୃଢ଼,
ଯେଉଁମାନଙ୍କର ଭକ୍ତି ଈଶ୍ୱରଙ୍କ ପ୍ରତି,
ଯେଉଁମାନଙ୍କର ନିଷ୍ଠା ଈଶ୍ୱରଙ୍କଠାରେ,
ଯେଉଁମାନଙ୍କର ଆଶ୍ରା ଈଶ୍ୱର କେବଳ,
ସେହିମାନେ ଜ୍ଞାନବଳେ ପାପମୁକ୍ତଙ୍କୁ

ସମୂଳେ ବିନାଶ କରି ପାନ୍ତି ମୋକ୍ଷ ପଦ ।
ଯେଉଁମାନେ ବ୍ରହ୍ମଜ୍ଞାନ ଲଭ କରିଥାନ୍ତି,
ସେହି ଜ୍ଞାନୀମାନେ
ବ୍ରାହ୍ମଣ, ଚଣ୍ଡାଳ, ଗୋରୁ, କୁକ୍କୁରାଦି ଜୀବ
ସମସ୍ତଙ୍କୁ ଏକାପରି ଦେଖନ୍ତି ସର୍ବଦା ।
ଯେଉଁମାନଙ୍କର ମନ ସର୍ବୁଠି ସମାନ,
ସେହିମାନେ ହିଁ ଜୀବିତ ଥାଇ ଏ ସଂସାରେ
ଜିଣିଛନ୍ତି ସଂସାରକୁ ବୋଲି ହିଁ ଜାଣିବ ।
କାରଣ, ବ୍ରହ୍ମ ନିର୍ଦ୍ଦୋଷ । ସ୍ଥାବର ଜଙ୍ଗମ
ଆଦି ସଂସାରେ ସର୍ବୁଠି ଅଛନ୍ତି ସମାନ
ଭାବେ, ଏହି ସତ୍ୟ ଜାଣି ପରମ ବ୍ରହ୍ମରେ
ଲୀନ ହୁଅନ୍ତି ସେମାନେ ।
ଯେଉଁ ବ୍ରହ୍ମ ଜ୍ଞାନୀଙ୍କର ପରଂବ୍ରହ୍ମେ ସ୍ଥିତି,
ସେହି ବ୍ରହ୍ମନିଷ୍ଠମାନେ ପ୍ରିୟଂଦ୍ରବ୍ୟେ ହର୍ଷ,
ଅପ୍ରିୟେ ବିମର୍ଷ ହୋଇ ଭୋଗନ୍ତିନି ଦୁଃଖ ।
ଆସକ୍ତ ନ ଥାଏ ଯାର ବାହାର ବସ୍ତୁରେ,
ଲୋପ କରୁଥାନ୍ତି ଆତ୍ମସୁଖକୁ ସେମାନେ ।
କରନ୍ତି ସେମାନେ ଅନ୍ତେ ମହା ସୁଖଭୋଗ ।
ବିଷୟଜନିତ ସୁଖ, ଦୁଃଖର କାରଣ ।
ହେ କୁନ୍ତୀନନ୍ଦନ ! ସେହି ବିଷୟଜ ସୁଖ
ଅସ୍ଥାୟୀ ହେତୁରୁ ଦୁଃଖ ଦିଅଇଟି ଜାଣ ।
ପୁଣି ସେଗୁଡ଼ିକ ଉତ୍ପତ୍ତି ବିନାଶଶୀଳ ମନେ ରଖିଥାଅ ।
ଜ୍ଞାନୀମାନଙ୍କର ଚିତ୍ତବୃତ୍ତି ତେଣୁ କରି
କେତେବେଳେ ହୁଏ ନାହିଁ ତହିଁରେ ପ୍ରବୃତ୍ତ ।
ଜନମୁଁ ମରଣ ଯାଏଁ ଯିଏ ଥାଏ ସହି
କାମ କ୍ରୋଧ ଜାତ ବେଗ, ସେହି ବ୍ୟକ୍ତି ଯୋଗୀ;
ଆହୁରି ପରମ ସୁଖୀ । ଆତ୍ମାରେ ଆମୋଦ
ଯାର, ସିଏ ଆତ୍ମସୁଖୀ ଆତ୍ମଦର୍ଶୀ ପୁଣି

ବ୍ରହ୍ମ ସ୍ୱରୂପ ସେ ଯୋଗୀ ଲଭନ୍ତି ପ୍ରାପ୍ତ ହୁଏ ।
ନିଷ୍ପାପ ସଂଯତ ଚିତ୍ତ, ସଂଶୟରହିତ,
ଜୀବ-ହିତକାମୀ ଋଷି ବିଲୀନ ହୁଅନ୍ତ ପରମ ବ୍ରହ୍ମଙ୍କ ଠାରେ ।
ଯାର ନାହିଁ କାମ, ପୁଣି ଯାର ନାହିଁ କ୍ରୋଧ,
ନିଜ ଆୟତ୍ତରେ
ମନ ରଖିଥାଏ ଯିଏ, ଆତ୍ମଜ୍ଞାନୀ ଋଷି
ଯିଏ, ଜନମ ମରଣ ଦୁଇ ଅବସ୍ଥାରେ ଲଭଇ ନିର୍ବାଣ;
ଅର୍ଥାତ୍ ପାଏ ଦିବ୍ୟ ମୋକ୍ଷପଦ ।
ବାହ୍ୟ ଇନ୍ଦ୍ରିୟର ସବୁ ସୁଖ ଦୂର କରି, ଦୁଇ ଭ୍ରୂର ମଧ୍ୟେ
ଦୃଷ୍ଟିକୁ ନିବେଶି ରଖି, ପ୍ରାଣ ଅପାନାଦି
ବାୟୁ ଶୋଷି ନାସିକାରେ, କୁମ୍ଭକ ଆଚରି,
ଅବରୁଦ୍ଧ କରି ରଖି, ମନ ବୁଦ୍ଧି ପୁଣି
ଇନ୍ଦ୍ରିୟମାନଙ୍କୁ ରଖେ ନିଜ ଆୟତ୍ତରେ
ଯେ, କେବଳ ମୁକ୍ତିକାମୀ । ଯାର ନାହିଁ କ୍ରୋଧ,
ଭୟ, ବାହ୍ୟ ବିଷୟରେ, କାମନାଶୂନ୍ୟ ଯେ,
ସେହି ଋଷି ସଦା ମୁକ୍ତ । ସର୍ବ ମହେଶ୍ୱର
ମୁହିଁ, କରେ ସର୍ବ ଯଜ୍ଞ, ତପସ୍ୟା ମୁଁ କରେ
ସର୍ବ ଜନବନ୍ଧୁ ମୁହିଁ,
ଏପରି ଯେ ଭାବେ ମୋତେ, ସେହି ଚିରମୁକ୍ତ ।

# ଷଷ୍ଠ ଅଧ୍ୟାୟ

## ଧ୍ୟାନଯୋଗ

ଭଗବାନ କହିଲେ—କର୍ମଫଳକୁ ଆଶ୍ରୟ ନ କରି ଯେ କର୍ମ
କରୁଥାଏ, ତା କର୍ତ୍ତବ୍ୟ ମଣି ବରାବର,
ସେହି ହିଁ ସନ୍ନ୍ୟାସୀ ଏକା । ସେହି ପୁଣି ଯୋଗୀ ।

କିନ୍ତୁ ଯିଏ ଅଗ୍ନି ଜାଳି ନ କରଇ ଯଜ୍ଞ,
କରେ ନାହିଁ କର୍ମ ମଧ୍ୟ, ସେ ନୁହଇ ଯୋଗୀ,
କିବା ସନ୍ନ୍ୟାସୀ ନୁହଇ । ହେ ସଖା ପାଣ୍ଡବ !
ସନ୍ନ୍ୟାସ ଯାହାକୁ କହି ତାର ନାମ ଯୋଗ ।
ସଂକଳ୍ପ ( ଫଳକାମନା ) ତ୍ୟକ୍ତ ନାହିଁ ଯିଏ,
କର୍ମେ ଜ୍ଞାନେ ନିଷ୍ଠା ଯେତେ ଥିଲେ ବି ତାହାର,
ହୋଇପାରିବ ନି ଯୋଗୀ ଏ କଥା ନିଶ୍ଚୟ ।
ଜ୍ଞାନଯୋଗରେ ଆରୂଢ଼ ହେବାକୁ ଯେ ଯୋଗୀ
ମନକୁ କରଇ ଦୃଢ଼, ତା ପକ୍ଷରେ କର୍ମ କରି
ଅଟେ ଶ୍ରେୟସ୍କର । ଯେ ଜ୍ଞାନଯୋଗରେ
ଆରୂଢ଼ ହୋଇସାରିଛି, କରମ ନିବୃତ୍ତି
ତାର ପ୍ରଧାନ କାରଣ । ଯେବେ ଅବା କେହି
ଇନ୍ଦ୍ରିୟକୃତ କର୍ମରେ ପୁଣି ଶବ୍ଦ ଆଦି
ବିଷୟରେ, ଅନାସକ୍ତ ରହି କାମନାକୁ
ବରଜନ କରେ ମନୁଁ, ଯେ ଜ୍ଞାନଯୋଗରେ
ବସିସାରିଛି ଆଗରୁ, କରମ ନିବୃତ୍ତି
ଏକା ତାହାର କାରଣ । ଇନ୍ଦ୍ରିୟଜନିତ
କର୍ମୁ, ଶବ୍ଦାଦି ବିଷୟୁଁ ଆସକ୍ତି ବରଜି
ଯେବେ କରଇ କେ କର୍ମ, ତେବେ ଯେ ହୋଇଲା
ବୋଲି ଜ୍ଞାନାରୂଢ଼ କହି । ଆତ୍ମାକୁ ସର୍ବଦା
ଉଦ୍ଧାରିବ ଆତ୍ମାଦ୍ୱାରା, ଆତ୍ମାକୁ ବିପନ୍ନ
କେବେ କରିଦେବ ନାହିଁ । ଆତ୍ମା ହିଁ ପରମ
ବନ୍ଧୁ ପୁଣି ଶତ୍ରୁ ସେହି ।
ଯେଉଁ ଆତ୍ମା ଜିଣିଅଛି ଆତ୍ମାକୁ ତାହାର,
ଯେ ଜୀବାତ୍ମା କରିଅଛି ମନକୁ ଅଧୀନ,
ସେହି ଜୀବାତ୍ମାର ମନ ଅଟେ ଶ୍ରେଷ୍ଠ ବନ୍ଧୁ ।
ଯେଉଁ ଜୀବ-ଆତ୍ମା ଜିଣି ପାରି ନାହିଁ ଆତ୍ମା,
ସେହି ଆତ୍ମା ଶତ୍ରୁ ତାର ନିଶ୍ଚୟ ଜାଣିବ ।

ଯେ ଜିଣିପାରିଛି ମନ, ସେ ଧରିପାରିଛି
ଶାନ୍ତିର ଭାବକୁ । ଶୀତ ଉଷ୍ଣ ଜାତ ସୁଖ
ଦୁଃଖରେ ଯାହାର ହର୍ଷ ହୁଏ ନାହିଁ କିବା
ହୁଏନା ବିଷାଦ,
ମାନ ଅପମାନ ପାଇ ମଧ୍ୟ ସମାଧିରେ
ରହିପାରେ ସେ ନିଶ୍ଚଳ । ଜ୍ଞାନ-ବିଜ୍ଞାନରେ
ଯାର ମନ ସଦା ତୃପ୍ତ (ଆକାଙ୍‌କ୍ଷାହୀନ ),
ଯିଏ ନିର୍ବିକାର,
ଆହୁରି ଇନ୍ଦ୍ରିୟଜୟୀ, ମାଟିଗୋଡ଼ି ସୁନା
ରୂପା ଯା ପାଖେ ସମାନ, ଯୋଗ ଅଭ୍ୟାସରେ
ଯାର ମନ ଅଟେ ଦୃଢ଼, ସେହି ଯୋଗାରୂଢ଼ ।
ଯିଏ ଶତ୍ରୁ, ମିତ୍ର, ପ୍ରିୟ, ଉଦାସୀ, ମଧ୍ୟସ୍ଥ,
ସାଧୁ, ପାପୀ, ବନ୍ଧୁ, ଦ୍ୱେଷୀ ଏମାନଙ୍କ ପ୍ରତି
ସମଭାବାପନ୍ନ ରହେ, ମାନବଙ୍କ ମଧ୍ୟେ
ସେହି ସବୁଠୁଁ ଉତ୍ତମ । ପ୍ରକୃତ ଯୋଗୀ ଯେ,
ନିଜ କାମନା ବିରହି ଆଶାନ୍ୱିତ ନୋହି
କେବେ ପ୍ରତିଗ୍ରହଣରେ ମନକୁ ଆୟତ୍ତେ
ରଖି ପରିହାର କରି ସଂସାରବାସନା,
ଚଞ୍ଚଳ ମନକୁ ସ୍ଥିର ରଖି ସବୁବେଳେ
ନିର୍ଜନ ସ୍ଥାନରେ ବସି ସମାଧି କରିବ ।
ଯୋଗାରୂଢ଼ ବ୍ୟକ୍ତି ନିଜ ଆତ୍ମଶୁଦ୍ଧି ପାଇଁ
ଶୁଦ୍ଧପୂତ ସ୍ଥାନଟିରେ କୁଶାସନ ପାରି,
ବାଘ କିମ୍ବା ମୃଗ ଛାଲଟିଏ ଯତନରେ
ପାରି, ତା ଉପରେ ଲୁଗାଟିଏ ପାରି ପୁଣି
ଆସନ ରଚିବ ତହିଁ ।ଆସନ ହେବନି
ଉଚ୍ଚ କିବା ଅତି ନୀଚ, ମନ ଇନ୍ଦ୍ରିୟର
ଗତି କରି ଅବରୁଦ୍ଧ, ମନକୁ ଏକାଗ୍ର
ରଖି ବସିବ ଆସନେ, ମନର ଶୋଧନ ପାଇଁ । ଏହାହିଁ ସମାଧି ।

# ସପ୍ତମ ଅଧ୍ୟାୟ

ଭଗବାନ କହିଲେ ମୋହଠାରେ ମନ ରଖି ମୋ ଆଶ୍ରୟ ନେଇ
କରିବ ଯୋଗ ଅଭ୍ୟାସ ଯେବେ ହେ ଅର୍ଜ୍ଜୁନ !
ସନ୍ଦେହ ନ ରଖି ମୋତେ ଜାଣିବ ନିଶ୍ଚୟ ।
ବଳ, ବିଭୂତି, ଐଶ୍ୱର୍ଯ୍ୟ ଜାଣିବ ସହଜେ ।
କହୁଛି ତା ଅରଜୁନ, ଶୁଣ ମନ ଦେଇ ।
ବିଜ୍ଞାନ ସହିତ ଯାକୁ ଜ୍ଞାନ ବୋଲି କହି
ବୁଝାଇ କହିବି ତାହା । ମୋକ୍ଷ ପାଇଁ ଆଉ ,
ରହିବ ନାହିଁ ସନ୍ଦେହ ଟିକଏ ମନରେ ।
ବହୁ ମାନବଙ୍କ ମଧ୍ୟେ କେହି କେହି ଜଣେ
ଆତ୍ମଜ୍ଞାନ ପ୍ରାପ୍ତି ପାଇଁ ପରମ ଶ୍ରଦ୍ଧାରେ
ଯତ୍ନ କରନ୍ତି ଯତନ । ଅଳ୍ପ କେତେ ଜଣ
ଜାଣନ୍ତି ଯଥାର୍ଥ ରୂପେ ମୋତେ ଏ ସଂସାରେ;
ଆଉ କେହି ଜାଣନ୍ତିନ । ମୋହର ପ୍ରକୃତି—
ଆକାଶ, ଅନଳ, ବାୟୁ, ଭୂମି ଜଳ, ମନ,
ବୁଦ୍ଧି ଆଉ ଅହଂକାର, ଏହି ଆଠ ରୂପେ
ହୋଇଛି ବିଭକ୍ତ ଜାଣ । ପର ଓ ଅପରା
ଏହି ମୂର୍ତ୍ତି ଦୁଇଟିରେ ପ୍ରକୃତି ଦ୍ୱିବିଧ ।
ଉପରେ ଆଠ ପ୍ରକାର ଅପରା ପ୍ରକୃତି ।
ଏଥିରୁ ସ୍ୱତନ୍ତ୍ର ଯାହା, ତା ଜୀବସ୍ୱରୂପା ।
ପରା ପ୍ରକୃତିଟି ଜାଣ, ସର୍ବ ଜଗତର
ଅଟଇ ଆଧାର ସେହି । ଦୁଇ ପ୍ରକୃତିରୁ
ସ୍ଥାବର ଜଙ୍ଗମ ଆଦି ସର୍ବବିଧ ଭୂତ
ହୋଇଛନ୍ତି ଉତପନ୍ନ । ଦୁହିଁଙ୍କ ଭିତରୁ
ଅପରା ପ୍ରକୃତି ଦେହ, ପରା ପ୍ରକୃତିଟି
ଜୀବନ, ଚେତନ ବସ୍ତୁ ଶରୀର ଭିତରେ
ପଶି ଭୋକ୍ତା ରୂପେ କରେ ଭୋଗ

ସୁଖ ଦୁଃଖ କର୍ମଫଳ ଅନୁରୂପ ।
ସେସବୁର କର୍ତ୍ତା ମୁହିଁ ଜାଣ ଫାଲଗୁନ !
ମୋହଠାରୁ ବଳି ନାହିଁ କାରଣ କଦାପି ।
ମୋହର ଆଶ୍ରୟେ, ଜଗତ ରହିଛି ଗୁନ୍ଥା
ସୂତାରେ ରହଇ ଯେସନ୍ତେ ମଣିରତ୍ନ ଗୁନ୍ଥା ।
ଆହେ କୁନ୍ତୀସୁତ !
ଜଳରେ ରସସ୍ୱରୂପ, ଚନ୍ଦ୍ର ଦିବାକରେ,
ଉଜ୍ଜ୍ୱଳ ପ୍ରଭା ରୂପରେ,
ବେଦରେ ପ୍ରଣବ ରୂପେ ରହିଥାଏ ମୁହିଁ ।
ଆକାଶରେ ଶବ୍ଦ, ମାନବ ମଧ୍ୟେ ପୌରୁଷ ରୂପେ ଥାଏ ରହି ।
ଅର୍ଥାତ୍ (ଯେଉଁଥିରେ ଯାହା ସାର, ତାହା ମୁହିଁ)
ପୃଥିବୀରେ ଗନ୍ଧ ରୂପେ, ଅନଳରେ ତେଜ,
ସର୍ବଭୂତରେ ଜୀବନ,
ତପୀଙ୍କ ତପସ୍ୟା ମୁହିଁ ଜାଣ ହେ ଅର୍ଜୁନ !
ହେ ପାର୍ଥ ! ଜାଣିଥା ମୋତେ ସର୍ବଭୂତେ ଜୀବ ।
ବୁଦ୍ଧି ମୁଁ ଅଟଇ ବୁଦ୍ଧିମାନ ପୁରୁଷର,
ପୁଣି ଅଟେ ତେଜ ସବୁ ତେଜସ୍ୱୀ ବ୍ୟକ୍ତିର ।
ତେଣୁ ମୁଁ ଅକ୍ଷୟ ବୀଜ ବୋଲି ନିଶ୍ଚେ ଜାଣ ।
ହେ ଭରତର୍ଷଭ !
କାମ, ରାଗ, ବିବର୍ଜିତ ବଳବନ୍ତଙ୍କର ଅଟଇ ମୁଁ ଏକା ବଳ ।
ସ୍ୱଦାରା ଗରଭେ ପୁତ୍ର ଉତ୍ପାଦନ ପାଇଁ
ଲୋଡ଼ା ଯେ କନ୍ଦର୍ପ ପ୍ରାଣୀଙ୍କର ଦେହେ ଥାଏ,
ମୁହିଁ ସେହି ଜାଣ ।
ସାତ୍ତ୍ୱିକ ରାଜସ ଆଉ ତାମସ ଯେ ଭାବ,
ସେସବୁ ମୋଠାରୁ ଜାତ, ମୁଁ ନୁହେ ତାଙ୍କଠୁ,
ସେସବୁ ମୋର ଅଧୀନ, ମୁଁ ନୁହେଁ ତାଙ୍କର ।
ଏ ଯେଉଁ ତ୍ରିଗୁଣଭାବେ ଜଗତ ମୋହିତ,
ମୁଁ ଅଟଇ ସେସବୁର ।

ପରମ ଅବ୍ୟୟ ମୋତେ ଜାଣି ପାରନ୍ତିନ ।
ମୋର ଅଲୌକିକ ମାୟା ଯାହା କି ତ୍ରିଗୁଣ,
ତାହାକୁ ତରିବା ନୁହେ ସହଜ କଦାପି ।
ଭକତ ଭାବରେ ମୋତେ ଯେ ଭଜନ କରେ,
ସେହି ହିଁ କେବଳ ତରିପାରେ ମୋ ମାୟାରୁ ।
ଯିଏ ପାପୀ ମୂଢ଼, ଯାର ଜ୍ଞାନ ମାୟାଛନ୍ନ,
ଆସୁର ଅସୁର ଭାବ ଆଶ୍ରିତ ଯେମାନେ,
ସେମାନେ ଭଜନ୍ତି ନାହିଁ ମୋତେ କଦାଚନ ।
ହେ କୁନ୍ତୀନନ୍ଦନ !
ସୁକୃତବନ୍ତ ପୁରୁଷେ କେବଳ ଭଜନ
ମୋତେ କରନ୍ତି ସର୍ବଦା ।
ହୁଅନ୍ତି ଚତୁର୍ବିଧ ସୁକୃତ ତାରତମ୍ୟରୁ ।
ମୋର ଭଜନରେ ରତ ଥାନ୍ତି ସେହିମାନେ ।
ଏ ଚାରି ଭିତରୁ ଯେ ସ୍ମରଣ କରେ ମୋତେ
ଅଦ୍ୱୈତ ଜ୍ଞାନରେ (ଆଉ ଦ୍ୱିତୀୟ ନାହିଁ),
ମାନବ ଭିତରେ ସେହି ଶ୍ରେଷ୍ଠ ବୋଲି ଜାଣ ।
ସେ ମୋର ପରମ ପ୍ରିୟ, ମୁଁ ତାଙ୍କର ପ୍ରିୟ ।
ଏ ଚାରି ପ୍ରକାର ଭକ୍ତ ସବୁ ମୋକ୍ଷକାମୀ ।
ଯେଉଁମାନେ ଜ୍ଞାନୀ, ପୁଣି ମୋ ଆତ୍ମାସ୍ୱରୂପ,
ମୋଠାରେ ଯାହାଙ୍କ ଚିତ୍ତ ମୋ ଆଶ୍ରୟେ ଦୃଢ଼,
ସେମାନେ ମଣନ୍ତି ମୋତେ ପରାଗତି ବୋଲି ।
ବହୁ ଜନ୍ମଜନ୍ମାନ୍ତରେ ଜ୍ଞାନ ଅର୍ଜନର
ଶେଷ ଜନ୍ମେ ଜ୍ଞାନୀଶ୍ରେଷ୍ଠ ହୋଇ, ଜଗତକୁ
ବାସୁଦେବ-ମୟ ଭାବି କରନ୍ତି ଭଜନ,
ମୋତେ ସେ ଜ୍ଞାନ ବଳରେ ।
ଏସନ ମହାତ୍ମା ଜଗତରେ ସୁଦୁର୍ଲ୍ଲଭ ।
କେହି ବା କାମନା-ବଶୀଭୂତ ହୋଇ ପୁଣି,
ଆତ୍ମଜ୍ଞାନୁ ହୋଇ ଚ୍ୟୁତ, ନିଜ ସ୍ୱଭାବରୁ

ଯେ ଯେପରି ଭାବେ ଅନ୍ୟ ଦେବତାଙ୍କୁ ଭଜ,
ତାଙ୍କର ନିୟମେ ମଜ୍ଜିଥାନ୍ତି ଅନୁଦିନ ।
ଯେଉଁ ଯେଉଁ ଭକ୍ତ ଯେଉଁ ଯେଉଁ ଦେବତାଙ୍କୁ
ଯେଉଁ ଉପାୟରେ ଶ୍ରଦ୍ଧା କରି ପୂଜିବାକୁ ବଳାନ୍ତି ମାନସ,
ତାଙ୍କର ଶ୍ରଦ୍ଧାକୁ ଦୃଢ଼ କରେ ମୁଁ ସତତ ।
ଯେଉଁ ଯେଉଁ ଦେବତାଙ୍କୁ ଅଟଳ ଶ୍ରଦ୍ଧାରେ
ଯିଏ ପୂଜଇ ଅନ୍ତରେ, ମୋର ଦେବା ଫଳ
ଲଭଇ ସେ ସେହି ସେହି ଦେବତାଙ୍କଠାରୁ ।
କିନ୍ତୁ ସେ ଫଳ ନଶ୍ୱର ।
ସେହି ଅଳ୍ପବୁଦ୍ଧି ଦେବ ଉପାସକମାନେ ପାଆନ୍ତି ସ୍ୱରଗ ।
କିନ୍ତୁ ମୋର ଉପାସକ ପାଇଥାଏ ମୋତେ ।
କ୍ଷୁଦ୍ରବୁଦ୍ଧି ଲୋକମାନେ ମୋର ନାଶ ନାହିଁ,
ମୋର ଅବ୍ୟକ୍ତ ସ୍ୱରୂପ ନ ଜାଣି ଭ୍ରମରେ,
ମଣନ୍ତି ମୁଁ ରୂପଧାରୀ ।
ତେଣୁ ମତ୍ସ୍ୟ କୂର୍ମ ଆଦି ଅବତାର ବୋଲି କଳ୍ପନା କରନ୍ତି ।
ମୁଁ ପ୍ରକାଶ ହୁଏ ନାହିଁ ସବୁରି ଆଗରେ ।
ଜନ୍ମ ମୃତ୍ୟୁ ନାହିଁ ମୋର;
ସବୁବେଳେ ଥାଏ ଏକାପରି ଏକାରୂପେ ।
ମୂର୍ଖେ ଜାଣନ୍ତିନ, ମୋର ଜନମ ମରଣ
ଯୋଗମାୟାଦ୍ୱାରା ଆବୃତ ଥିବାରୁ ମୂଢ଼ ପାରନ୍ତିନ ଜାଣି ।
ଅତୀତ ଭବିଷ୍ୟ ପୁଣି ବର୍ତ୍ତମାନ ତିନି ଜାଣି ମୁଁ ପାରଇ ଏକା;
ତେଣୁ ମୁଁ ସର୍ବଜ୍ଞ ।
ଅଜ୍ଞାନ ଜନ ବା ତାହା ଜାଣିବ କିପରି ?
ମୋତେ ତ ଜାଣନ୍ତି ନାହିଁ କେହି ଏ ଜଗତେ ।
ହେ ଅର୍ଜୁନ ! କହୁଛି ମୁଁ ସ୍ଥିରଭାବେ ଶୁଣ—
ପ୍ରାଣୀମାନଙ୍କର ସ୍ଥୂଳ ଦେହ ହେଲେ ଜାତ
ତହୁଁ ଜନ୍ମେ ଇଚ୍ଛା ଦ୍ୱେଷ ।
ସେଥିରୁ ଜନମ ଲଭେ ଦ୍ୱନ୍ଦ୍ୱ ମୋହ ଦୁଇ ।

ତେଣୁ ଦେହଧାରୀ ପ୍ରାଣୀମାନଙ୍କ ପକ୍ଷରେ
ଦୁର୍ଲ୍ଲଭ ହୁଅଇ ଭଗବତ ଦରଶନ ।
ପୁଣ୍ୟବନ୍ତ ଜନେ, ଯାହାଙ୍କର ପାପତାପ ହୋଇଛି ବିନାଶ,
ମୁକ୍ତ ହୋଇ ଦ୍ୱନ୍ଦ୍ୱ ମୋହୁ ଦୃଢ଼ ବ୍ରତଦ୍ୱାରା
ମୋତେ କରନ୍ତି ଅର୍ଜନ ।
ଯେମାନେ ଇଚ୍ଛନ୍ତି ମୁକ୍ତି ଜରାମରଣରୁ,
ସେଥିପାଇଁ ଆଶ୍ରା ମୋତେ କରଣ ଭଜନ୍ତି,
ସେମାନେ ଜାଣନ୍ତି ପରମାତ୍ମାଙ୍କ ମାହାତ୍ମ୍ୟ ।
ଅଧିଭୂତ, ଅଧିଦୈବ, ଅଧିଯଜ୍ଞ ସହ
ଯେଉଁମାନେ ମୋତେ ଜାଣି ମୋଠି ଚିତ୍ତ ଦ୍ୟନ୍ତି,
ସେମାନେ ଜାଣନ୍ତି ମୋତେ ମରଣ କାଳରେ ।

# ଅଷ୍ଟମ ଅଧ୍ୟାୟ

## ତାରକବ୍ରହ୍ମଯୋଗ

ଅର୍ଜୁନ ପୁଚ୍ଛିଲେ—ଆହେ ପୁରୁଷ ଉତ୍ତମ !
କାହାକୁ କହନ୍ତି ବ୍ରହ୍ମ, କାହାକୁ ଅଧ୍ୟାତ୍ମ୍ୟ,
କାହାକୁ କରମ, ଅଧିଭୂତ ଅବା କସ ?
ଅଧିଦୈବ ପୁଣି କାହାକୁ କହନ୍ତି, ମୋତେ କହନ୍ତୁ ବୁଝାଇ ।
ହେ ମଧୁସୂଦନ ! କସ ପୁଣି ଅଧିଯଜ୍ଞ,
ଏ ଦେହରେ କପର ବା ରହେ ବାସ କରି ?
ଜିତେନ୍ଦ୍ରିୟ ଯୋଗୀମାନେ ତୁମକୁ କପର
ଜାଣନ୍ତି ମରଣ କାଳେ ସ୍ୱୀୟାଗତ କରି
କହନ୍ତୁ ବୁଝାଇ ମୋତେ ।
ଶ୍ରୀକୃଷ୍ଣ କହିଲେ—"ହେ ଅର୍ଜୁନ !
ତୁମେ ଯାହା ପଚାରିଲ ମୋତେ କହୁଛି ତା ଶୁଣ ଏବେ ।
ସେହି ଏକା ବ୍ରହ୍ମ ଯେ ଅଖଣ୍ଡ ବିଶ୍ୱ ବୀଜ,

ଯାର ନାହିଁ କ୍ଷୟ କୌଣସି ପ୍ରକାରେ କେବେ ।
ସେ ମୂଳ କାରଣ ବ୍ରହ୍ମ ସର୍ବସ୍ୱ ବିଦିତ ।
ସବୁ ଶରୀରରେ ବ୍ରହ୍ମ-ପଦାର୍ଥର ଯେଉଁ ଆତ୍ମଭାବ ଅଛି,
ତାକୁ କିମ୍ବା ଅଂଶରୂପ ବ୍ରହ୍ମ-ପଦାର୍ଥର
ଜୀବକୁ ଅଧ୍ୟାତ୍ମ ବୋଲି କହନ୍ତି ଅର୍ଜୁନ !
ଏବଂ ଭୂତର ଉତ୍ପତ୍ତି ବର୍ଦ୍ଧନକାରୀ ଯେ
ଯଜ୍ଞ ଆଦି ଅନୁଷ୍ଠାନ ତାକୁ କର୍ମ କହି ।
ଦେହାଦି ନାଶଶୀଳ ଯା ତାହା ଅଧିଭୂତ ।
ଏ ଦେହରେ ଯେ ପୁରୁଷ ରହି ବାସ କରି,
ତାକୁ ଅଧିଦୈବ ବୋଲି କହନ୍ତି ସଜ୍ଜନେ ।
ଅଧିଯଜ୍ଞ ରୂପ ଧରି ରହେ ମୁଁ
ପ୍ରାଣୀଙ୍କ ଦେହେ ସତତ ଜାଗ୍ରତ ।
ଯେ ମୋତେ ସ୍ମରଣ କରି ଛାଡ଼ଇ ଶରୀର,
ଉତ୍ତରାୟଣରେ ସିଏ ଯାଇ ଯାଇ ଶେଷେ ଲଭଇ ମୋ ଦେହ ।
ପରମ ମୁକତି ତାର ହୁଅଇ ନିଶ୍ଚୟ ।
ହେ କୁନ୍ତୀନନ୍ଦନ ! ଶୁଣ ପ୍ରାଣ ଯିବାବେଳେ
ଯେ ଯେଉଁ ଭାବରେ ମୋତେ କରଇ ସ୍ମରଣ
ସେହିପରି ପାଏ ମୋତେ ମରଣର ପରେ ।
ସର୍ବଦା ସ୍ମରଣ କରି ମୋତେ ଅରଜୁନ !
ସ୍ୱଧର୍ମକୁ ପାଳି ତୁମେ କର ହେ ସମର ।
ଏକାଗ୍ରେ ବୁଦ୍ଧି ମନକୁ ମୋଠାରେ ସମର୍ପି
କରିପାର କାମ ତୁମେ ନିଶ୍ଚୟ ପାଇବ
ମୋତେ, କରନା ସନ୍ଦେହ ।
ଯୋଗାଭ୍ୟାସ କରି ସ୍ଥିର ହେ ଏକାଗ୍ର ଚିତ୍ତେ,
ପାଇବ ପରମ ପଦ ନିଶ୍ଚୟ କହୁଛି ।
କବି ପୌରାଣିକ ଆଦି ସବୁର ପାଳକ,
ଅନାଦି, ନିଖିଳ ବ୍ରହ୍ମାଣ୍ଡର ନିଅନ୍ତା ଯେ
ଅଣୁ ପରି ସୂକ୍ଷ୍ମ, ସୂର୍ଯ୍ୟ ସମ ପ୍ରକାଶକ ଈଶ୍ୱର,

ଆତ୍ମର ମନ ବୁଦ୍ଧି ଅଗୋଚର,
ପ୍ରକୃତିର ପର ଯିଏ, ଏମନ୍ତ ପୁରୁଷ
ତାଙ୍କୁ ସବୁବେଳେ କିବା ମରଣ କାଳରେ
ଯେ ସ୍ମରଣ କରେ,
ସେ ତାଙ୍କ ଶରୀରେ ଲୀନ ହୁଅଇ ନିଶ୍ଚିତ ।
ମରଣ କାଳକୁ ଲକ୍ଷ୍ୟ ରଖି ସବୁବେଳେ,
ମନକୁ ରଖି ଆପ୍ତରେ, ଯୋଗାସନେ ବସି,
ପ୍ରାଣ ପବନକୁ ରଖି ଦୁଇ ଭ୍ରୂରୁ ମଧ୍ୟେ,
ଯେଉଁ ଜ୍ଞାନୀଜନମାନେ ସ୍ମରଣ କରନ୍ତି,
ଦେହ ତ୍ୟାଗ ମାତ୍ରେ ସେହି ପରମ ପୁରୁଷ
ଦେହେ କରନ୍ତି ପ୍ରବେଶ ।
କହନ୍ତି ଅକ୍ଷର ବୋଲି ଯାହାଙ୍କୁ ବେଦଜ୍ଞେ,
ବିଷୟ ଆସକ୍ତିହୀନ ଯତି ଋଷିମାନେ,
ଯାହାଙ୍କ ଦେହରେ ଲୀନ ହୁଅନ୍ତି ଶେଷରେ ।
ବ୍ରହ୍ମଚାରୀମାନେ ଯାହାଙ୍କୁ ପାଇବା ପାଇଁ
ବ୍ରହ୍ମଚର୍ଯ୍ୟ ଧରି ରହନ୍ତି ଜୀବନଯାକ,
ସଂକ୍ଷେପେ ବୁଝାଇ ତାହା କହୁଅଛୁ ଶୁଣ ।
ସର୍ବ ଇନ୍ଦ୍ରିୟର ଦ୍ୱାର ଅବରୁଦ୍ଧ କରି,
ମନକୁ ହୃଦୟେ ଅବିଚଳ ରଖି ବସି,
ପ୍ରାଣ ପବନକୁ ଭ୍ରୂଦ୍ୱୟ ମଧ୍ୟରେ ସ୍ଥାପି,
ଯୋଗଧ୍ୟାନ କରି ଓଁ ଏକାକ୍ଷର ମନ୍ତ୍ର ଜପି ବାରମ୍ବାର,
ସ୍ମରଣ କରେ ହୃଦରେ କେବଳଟି ମୋତେ,
ଅନ୍ତିମ କାଳରେ ପାଏ ପରମ ଗତି ସେ ।
ହେ ପୃଥାନନ୍ଦନ ! ମୁଁ ଅଟେ ସୁଲଭ ତାଙ୍କୁ,
ଯେ ସ୍ମରଣ କରେ ମୋତେ ଅନନ୍ୟ ଚିତ୍ତରେ ।
ଏପରି ଲକ୍ଷଣଯୁକ୍ତ ମହାତ୍ମାମାନେ
ପ୍ରାପତ ହୋଇଲେ ମୋତେ, ଆଉ ଆସନ୍ତିନି
ଫେରି ଏ ସଂସାରେ,

ଦୁଃଖାଳୟ ଅନିତ୍ୟ ଯା । ଅର୍ଥାତ୍ (ହୁଏ ନାହିଁ ପୁନର୍ଜନ୍ମ) ;
ବ୍ରହ୍ମଲୋକଠାରୁ ସର୍ବଲୋକଯାଏ ଯାଇ ଫେରଇ ଆତ୍ମର ।
କିନ୍ତୁ ମୋ ପାଖକୁ ଯାଇ ଫେରେ ନାହିଁ କେବେ,
ଜାଣିଥା ଅର୍ଜୁନ, ଏହା । ହେ ପୃଥାନନ୍ଦନ !
ସହସ୍ର ଦେବତା ଯୁଗେ ବ୍ରହ୍ମାଙ୍କର ଦିନେ,
ସହସ୍ର ଦେବ ଯୁଗରେ ବ୍ରହ୍ମାଙ୍କୁ ରାତିଏ ।
ଯେଉଁ ଜ୍ଞାନୀଜନମାନେ ଏପରି ଜାଣନ୍ତି ଗଣି ଦିବସ ରଜନୀ,
ସେହିମାନେ ଖାଲି ଗଣି ପାରନ୍ତି ନିର୍ଭୁଲ କରି ଦିନ ରାତି ।
ବ୍ରହ୍ମାଙ୍କ ଦିବସ ଯେବେ ହୁଅଇ ଆରମ୍ଭ,
ସମସ୍ତ ଚର ଅଚର ଜଗତ ସଂଜାତ
ହୁଏ କାରଣ ସ୍ୱରୂପ ପ୍ରକୃତି ଦେହରୁ ।
ସେପରି ବ୍ରହ୍ମ ରଜନୀ ହୋଇଲେ ଆରମ୍ଭ,
ଅବ୍ୟକ୍ତ ପ୍ରକୃତିଠାରେ ସବୁ ହୁଏ ଲୀନ ।
ଚରାଚର ପ୍ରାଣୀମାନେ ବ୍ରହ୍ମଦିବାରମ୍ଭେ
ଲଭନ୍ତି ଜନମ ଭବେ ।
ପୁଣି ରଜନୀରେ ମରି ମିଶନ୍ତି ସକଳେ ।
ଜନମ-ମରଣ—ଏହିପରି ଲାଗିଅଛି ଏକ ପରେ ଆନ ।
ଜନମ ମରଣ ଚକ୍ର ସର୍ବଦା ଚଞ୍ଚଳ,
କିନ୍ତୁ ସେହି ଚରାଚର କାରଣ ସ୍ୱରୂପ
ଅବ୍ୟକ୍ତଙ୍କଠାରୁ ସାର । ଆଉର ଗୋଟିଏ
ସ୍ୱତନ୍ତ୍ର ସ୍ୱରୂପରେ ଅଛି ଏକ ଭାବ ।
ଯାହା କି ମରଇ ନାହିଁ, ସବୁ ମଲେ ସୁଦ୍ଧା ।
ତାହାର ବିନାଶ ନାହିଁ ସେହି ସନାତନ ।
ସେହି ଅବ୍ୟକ୍ତ ଭାବକୁ
ବେଦରେ ଅକ୍ଷର ବୋଲି ରହିଛି ନିର୍ଦ୍ଦେଶ ।
ତାହାକୁ ପରମ ଗତି କହନ୍ତି ଅର୍ଜୁନ !
ଯାହାକୁ ପାଇଲେ ପ୍ରାଣୀ ହୁଏନା ଜନମ ଆଉ ଧରଣୀରେ ।

ସେହି ମୋ ପରମ ଧାମ, ମୁହିଁ ସେହି ଧାମ ।
(ଅର୍ଥାତ୍ ମୁଁ ସେହି ପରମ ଗତି)
ହେ ପାର୍ଥ ! ଯାହାଙ୍କ ଗର୍ଭେ ଚରାଚର ପ୍ରାଣୀ
ରହିଛନ୍ତି, ରହିଥିବେ,
ଯିଏ ବ୍ୟାପିଛନ୍ତି ସାରା ବିଶ୍ୱ ବ୍ରହ୍ମାଣ୍ଡକୁ,
ପରମ ପୁରୁଷ ମୁଁ ସେହି ଭକ୍ତିରେ ଖାଲି ହୁଅଇ ସୁଲଭ ।
ଯେକାଳେ ସଂସାର ଛାଡ଼ିଗଲେ ଯୋଗୀମାନେ,
ଫେରନ୍ତି ନାହିଁ ସଂସାରେ ।
(ଅର୍ଥାତ୍ ପୁନର୍ଜନ୍ମ ହୁଏ ନାହିଁ)
ଉତ୍ତରାୟଣ ଛ ମାସେ ଶୁକ୍ଳପକ୍ଷ ଦିନେ
ଅଗ୍ନି ଜ୍ୟୋତି ଆଲୋକେ ଯେ ଯୋଗୀ ମରଇ,
ସେ ଲଭଇ ବ୍ରହ୍ମପଦ ।
କୃଷ୍ଣପକ୍ଷ ଧୂମ ରାତି ଦକ୍ଷିଣାୟନରେ
ଯେ ଲୋକ ମରଇ, କର୍ମଫଳ ଅନୁଯାୟୀ
ସ୍ୱର୍ଗପଦ ଲଭି ମଧ୍ୟ ପୁନର୍ଜନ୍ମ ପାଇ ଆସନ୍ତି ସଂସାରେ ।
ଏହି ଶୁକ୍ଳ ଆଉ କୃଷ୍ଣ ଏ ଦୁଇ ପ୍ରକାର
ଗତି ଅବଗତ ହେଲେ କେଉଁଣସି ଯୋଗୀ
ମୋହଗତ ହୁଏ ନାହିଁ, ଜାଣ ହେ ଅର୍ଜୁନ !
ତେଣୁ ତୁମେ ସବୁବେଳେ ହୁଅ ଯୋଗରତ,
ଲଭିବ ନିଶ୍ଚୟ ମୁକ୍ତି ।
ବେଦ ପଢ଼ିବାରେ, ଯଜ୍ଞାଦି ଅନୁଷ୍ଠାନରେ,
ଦାନେ ତପସ୍ୟାରେ ଯେଉଁ ସବୁ ଫଳ ଅଛି,
ଶାସ୍ତ୍ର ଅନୁଯାୟୀ ଯେଉଁ ଯୋଗୀ ଜାଣିପାରେ ତତ୍ତ୍ୱକଥା ସବୁ,
ତୁଚ୍ଛ ମଣି ସବୁ ଫଳ ଲଭେ ମୋକ୍ଷଗତି ।

# ନବମ ଅଧ୍ୟାୟ

## ରାଜବିଦ୍ୟା-ରାଜଗୁହ୍ୟଯୋଗ

ଶ୍ରୀକୃଷ୍ଣ କହିଲେ—ଯେଣୁ ହେ ଅର୍ଜୁନ ! ତୁମେ ନୁହଁ ଦୋଷଦର୍ଶୀ,
ତେଣୁ ମୁଁ ତୁମକୁ ଜ୍ଞାନ-ବିଜ୍ଞାନର ତତ୍ତ୍ୱ,
ଅତି ଗୋପନୀୟ ଯାହା, କହିବି ବୁଝାଇ ।
ସେତିକ ଜାଣିପାରିଲେ ସଂସାର-ବନ୍ଧନୁ
ତୁମେ ଯିବ ହୋଇ ମୁକ୍ତ ।
ଏ ଯେ ଅନନ୍ତଜ୍ଞାନ ସବୁ ବିଦ୍ୟାଙ୍କର ରଜା ବୋଲି କରି ଜାଣ ।
ଗୋପ୍ୟଙ୍କ ଭିତରେ ଗୋପ୍ୟ, ଅବ୍ୟୟ, ପବିତ୍ର,
ଉତ୍ତମ ଧର୍ମସଂଗତ, ବିନାଶ-ରହିତ, ସୁଖଦାୟୀ, ଫଳପ୍ରଦ ।
ହେ ପରନ୍ତପ !
ଯେଉଁମାନେ ଏ ଧରମ ପ୍ରତି ଶ୍ରଦ୍ଧାହୀନ,
ସେମାନେ କଦାପି ମୋତେ ପାଇପାରନ୍ତିନ ।
କେବଳ ମରସଂସାରେ ହେଉଥାନ୍ତି ଭ୍ରମି ।
ମୁଁ ଅବ୍ୟକ୍ତ ସ୍ୱରୂପରେ ଜଗତେ ବ୍ୟାପିଛି ।
ସବୁ ପ୍ରାଣୀମାନେ ମୋର ଦେହରେ ଅଛନ୍ତି ।
କଉଣସି ପ୍ରାଣୀରେ ମୁଁ ରହି ନାହିଁ କେବେ ।
ମୁଁ ଅସଙ୍ଗ, ସଙ୍ଗ ମୋର ନାହିଁ କେତେବେଳେ ।
ତେଣୁ ମୁଁ ଆକାଶ ରୂପେ ହୁଅଇ ପ୍ରକଟ ।
ଅବ୍ୟକ୍ତ ଶରୀର ମୋର ଅଟେ ଅଗୋଚର ।
ଯେଣୁ ମୁହିଁ ସଙ୍ଗହୀନ ମୋ ଦେହେ ନ ଥାନ୍ତି,
ଦେଖ ମୋର ଯୋଗୈଶ୍ୱର୍ଯ୍ୟ ।
ପାଳୁଛି ମୁଁ ସବୁ ପୁଣି ଧାରଣ କରୁଛି; ତେଣୁ ମୁଁ ତ ପିତା ।
ତଥାପି ମୋହର ଆତ୍ମା ଲିପ୍ତ ହୁଏ ନାହିଁ
କେବେ ସେମାନଙ୍କଠାରେ ।
ଯେପରି ପବନ ଗତିଶୀଳ ହୋଇ ସଦା ରୂପ ନ ଥିବାରୁ

ଆକାଶରେ ରହି ମଧ୍ୟ ମିଶେନା ତହିଁରେ,
ସେହିପରି ସବୁ ପ୍ରାଣୀ ଥାଆନ୍ତି ମୋ ଦେହେ ।
ମୋ ମାୟାରେ ପ୍ରାଣୀମାନେ ପ୍ରଳୟ କାଳରେ
ବିଲୀନ ହୁଅନ୍ତି ଆପେ ମୋର ପ୍ରକୃତିରେ ।
ସୃଷ୍ଟି ଆରମ୍ଭରେ ପୁଣି କରେ ମୁଁ ସର୍ଜନା ।
ମୁଁ ମୋର ତ୍ରିଗୁଣମୟୀ ମାୟା ଶକତିକୁ (ସ୍ୱାଧୀନ ପ୍ରକୃତିକୁ)
ଆଶ୍ରୟ ମାତର କରି ସ୍ୱଭାବ-ବଶରୁ
(ପୂର୍ବ ଜନ୍ମକୃତ କର୍ମରୁ)
ପରାଧୀନ ପରାଣୀଙ୍କୁ ସୃଷ୍ଟି କରୁଅଛି
ବାରମ୍ବାର ସଂସାରରେ, ଜାଣ ହେ ଅର୍ଜୁନ !
ମୋ ପ୍ରକୃତି ସାହାଯ୍ୟରେ ଆହେ ଧନଞ୍ଜୟ !
ସେଣୁ ମୁହିଁ ଅନାସକ୍ତ ଆହୁରି ଉଦାସୀ,
ସେହି ସୃଷ୍ଟି ଲୟାଦିରେ ସେହିସବୁ କର୍ମ
ବାନ୍ଧି ପାରନ୍ତିନ ମୋତେ ।
(ଅର୍ଥାତ୍ ମୁଁ ସେ କର୍ମରେ) ଆବଦ୍ଧ ନ ଥାଏ ।
ମୋର ସନ୍ନିଧାନ ପାଇଁ ମୋହର ପ୍ରକୃତି
(ତ୍ରିଗୁଣମୟୀ ମାୟା)
କରୁଛି ପ୍ରସବ ଚରାଚର ଜଗତକୁ ।
ସେଥିପାଇଁ ପାର୍ଥ !
ଏ ଜଗତ ବାରମ୍ବାର ହେଉଛି ଉତ୍ପନ୍ନ ।
ଜଗତର ମହାପ୍ରଭୁ (ସକଳ ଭୂତର ମହେଶ୍ୱର)
ମୁଁ ଅଟେ ନିଶ୍ଚୟ ।
ମୋର ଏହି ସାରତତ୍ତ୍ୱ ନ ପାରି ଜାଣି,
ନର ଦେହ ଧରିଅଛି ବୋଲି ଭାବ କରି
ମୂଢ଼ଜନମାନେ ମୋତେ କରନ୍ତି ଅବଜ୍ଞା ।
ହେ ପାର୍ଥ ! ଯେମାନେ ମୋତେ ଦୈବୀ ଗୁଣାକର,
ଅବ୍ୟୟ ଜଗତକର୍ତ୍ତା ବୋଲି କରି ଭାବ
କରନ୍ତି ଭଜନ, ସେମାନେ ମହାତ୍ମା ।

ଜିତେନ୍ଦ୍ରିୟ ହୋଇଣ ଯେ ଦୃଢ଼ ବ୍ରତ କରି,
ବାରମ୍ବାର ମୋର ନାମ କରଇ କୀର୍ତ୍ତନ,
ଯୋଗରତ ରହି କରେ ନମସ୍କାର, ପୂଜା
ସେହି ଅଟଇ ମହାତ୍ମା ।
କେହି ବା ପୂଜଇ ଭକ୍ତିରେ ମୋ ସ୍ୱରୂପକୁ
ତତ୍ତ୍ୱଜ୍ଞାନ ଯୋଗେ,
କେହି ବା ଭଜନ କରେ ମୋତେ ଏକ ଭାବେ,
କେହି ବା ପୃଥକ୍ ଭାବେ ମଗ୍ନ ରହିଥାଏ,
କେହି ବା ବିବିଧରୂପେ ଭଜିଥାଏ ମୋତେ ।
(ଅର୍ଥାତ୍ ବ୍ରହ୍ମା ରୁଦ୍ର ଇନ୍ଦ୍ରାଦି ରୂପେ)
(ବେଦୋକ୍ତ ଅଗ୍ନି ସୋମାଦି ଯଜ୍ଞେ)
ମୁଁ କ୍ରତୁ, ମୁଁ ସ୍ମୃତି, ଭକ୍ତି, ମୁଁ ପଞ୍ଚ ଯଜ୍ଞାଦି,
ମୁହିଁ ସ୍ୱଧା, ମୁଁ ଔଷଧି, ମୁଁ ମନ୍ତ୍ର, ମୁଁ ଘୃତ,
ମୁଁ ଅନଳ ପୁଣି ହୋମ,
ମୁହିଁ ପିତୃଲୋକ ଅର୍ଥେ ଶ୍ରାଦ୍ଧ ଆଦି ମୁହିଁ ।
ଜଗତର ପିତା, ମାତା ଓ ବିଧାତା ମୁହିଁ ।
ସର୍ବ କର୍ମଫଳଦାତା ମୁହିଁ ପିତାମହ,
ମୁହିଁ ଜ୍ଞେୟ ବସ୍ତୁ, ମୁହିଁ ପବିତ୍ର ସାଧକ,
ଋକ୍, ସାମ, ଯଜୁର୍ବେଦ ପ୍ରଣବ ସ୍ୱରୂପ ଧରି ରହିଅଛୁ ।
ଜଗତର କର୍ମଫଳ (ଗତି) ପୋଷଣକରତା (ଭର୍ତ୍ତା)
ପ୍ରଭୁ, ଦ୍ରଷ୍ଟା, ନିବାସ ମୁଁ, ଶରଣ, ସ୍ରଷ୍ଟା ମୁଁ,
ବନ୍ଧୁ, ସଂହାରକର୍ତ୍ତା ମୁଁ ଏବଂ ଲୟସ୍ଥାନ,
ଆଧାର, ବୀଜସ୍ୱରୂପ ଅଟଇ ମୁଁ ସବୁ ।
ସୂର୍ଯ୍ୟ ରୂପରେ ଉତ୍ତାପ ଦାନ କରେ ମୁହିଁ ।
ଶୋଷଣ କରେ ମୁଁ ଜଳ ।
ମୁଁ ମେଘ ରୂପରେ କରଇ ଧରାରେ ବର୍ଷା ।
କେବେ କେବେ ପୁଣି ଆକର୍ଷଣ କରେ ବୃଷ୍ଟି ।
ମୁଁ ପ୍ରାଣସ୍ୱରୂପ (ଅମୃତ), ମୁହିଁ ମୃତ୍ୟୁର ସ୍ୱରୂପ,

ମୁଁ ସତ୍ ଅସତ୍ (ସ୍ଥୂଳ ଏବଂ ସୂକ୍ଷ୍ମ),
ଏ ସମସ୍ତ ଅଟଇ ମୁଁ ଜାଣ ହେ ଅର୍ଜୁନ !
ତ୍ରିବେଦଯୁକ୍ତ ଅର୍ଥାତ୍ ଋକ୍, ଯଜୁଃ, ସାମ
ଆଦି ବେଦପରାୟଣମାନେ ମୋତେ ଯଜ୍ଞେ
ପୂଜା ଅରଚନା କରି
ଯଜ୍ଞ ଶେଷେ ସୋମରସ ପାନେ ପାପହୀନ ହୋଇ,
ସ୍ୱର୍ଗପ୍ରାପ୍ତି କାମନା କରି, ମନରେ
ପୂଜୁଥାନ୍ତି ନିତି ମୋତେ ନାନା ଉପଚାରେ ।
ଶେଷରେ ସେମାନେ ଇନ୍ଦ୍ରଲୋକରେ ପାଆନ୍ତି ସ୍ଥାନ ସୁଖକର।
ଦେବଯୋଗ୍ୟ ଭୋଗମାନ ଭୋଗନ୍ତି ଆନନ୍ଦେ ।
ସେହି ସ୍ୱର୍ଗକାମୀମାନେ, ସ୍ୱର୍ଗରେ ପରମ ସୁଖ ଭୋଗନ୍ତେ ନିଶ୍ଚୟ ।
ପୁଣ୍ୟ କ୍ଷୟ ହେଲେ ପୁଣି ଜନ୍ମନ୍ତି ଧରାରେ ।
ଏପରି ବେଦୋକ୍ତ ଧର୍ମର ଯେତେ ଆଶ୍ରିତ,
ସଂସାର-ପଥରେ ଯାତାୟାତ କରୁଥାନ୍ତି,
ତାଙ୍କ କରମର ଫଳ ଭୋଗେ ଆଶା ରଖି ।
ଅନ୍ୟରେ ଆସକ୍ତ ନୋହି ,କାମନା ବରଜି,
ମୋତେ ଧ୍ୟାନ କରି ପୂଜୁଥାନ୍ତି ଯେଉଁମାନେ,
ଏକାଗ୍ରତା ଜାଣି ମୁଁ ତାଙ୍କର ଯୋଗକ୍ଷେମ
(ପ୍ରାପ୍ତ ଓ ଅପ୍ରାପ୍ତ ବସ୍ତୁ) ଦିଏ ତାଙ୍କୁ ଯାଚି ।
ଯେଉଁମାନେ ଭକ୍ତିଭାବେ ଶ୍ରଦ୍ଧାଯୁକ୍ତ ହୋଇ
ପୂଜନ୍ତି ଅନ୍ୟ ଦେବତା, ସେମାନେ ବି ମଧ୍ୟ
ପୂଜା କରନ୍ତି ହେ ମୋତେ ।
ଏ କଥା ହେଲେହେଁ ସତ୍ୟ, ସେ ପୂଜା ଅବୈଧ ।
ତେଣୁ ତ ସେମାନେ ବାରମ୍ବାର ହେଉଥାନ୍ତି
ଜନ୍ମ ଏ ସଂସାରେ; ଆଉରି ବି ମରୁଥାନ୍ତି ।
ସକଳ ଯଜ୍ଞର ଭୋକ୍ତା ଅଟେ ମୁଁ ଅର୍ଜୁନ !
ସକଳ କର୍ମର ଫଳଦାତା ମଧ୍ୟ ମୁହିଁ ।
ତେଣୁ ତ ସେମାନେ ଜନ୍ମ ମରଣ-ବନ୍ଧନେ ହୁଅନ୍ତି ବନ୍ଧନ ।

ଦେବତା ପୂଜକମାନେ ଯାନ୍ତି ଦେବଲୋକ ।
ପିତୃଙ୍କ ପୂଜକମାନେ ଶ୍ରାଦ୍ଧାଦି ଦାନରେ
ଗମନ୍ତି ପିତୃଲୋକକୁ । ଭୂତଙ୍କ ପୂଜକ
(ଗଣେଶାଦି ଶ୍ମଶାନ-ଦେବତା)
ଅର୍ଥାତ୍ ଶିବ-ଅନୁଚର ଯାନ୍ତି ଭୂତଲୋକ ।
କିନ୍ତୁ ଏମାନେ ଆସନ୍ତି ସଂସାରକୁ ଫେରି !
ମୋର ଉପାସକମାନେ ମିଶନ୍ତି ମୋଠାରେ ।
ତାଙ୍କୁ ଆଉ ହୁଏ ନାହିଁ ଫେରିବାକୁ ଭବେ ।
ଯିଏ ମୋତେ ଭକ୍ତି ସହ ଦଏ ଫୁଲଟିଏ,
ଫଳଟିଏ, ପତ୍ରଟିଏ, ଖାଲି ପାଣି ଟିକେ,
ତାକୁ ମୁଁ ଗ୍ରହଣ କରେ ଖୁସିରେ ଅର୍ଜୁନ !
ଉପହାର ମଣଇ ମୁଁ ନିର୍ମଳଚେତାର ସେହି ଭକ୍ତିଟିକିକ ।
ସେ ମୋର ନିଷ୍କାମ ଭକ୍ତ ଅଟଇ ଅର୍ଜୁନ !
ହେ ଅର୍ଜୁନ ! ତେଣୁ ତୁମେ ଯାହା କରୁଅଛ,
ଯାହା ଖାଉଅଛ, ଯାହା ହୋମ କରୁଅଛ, ଯାହା ଦେଉଅଛ,
ଯେଉଁସବୁ ତପସ୍ୟା ବି କରୁଛ ଅର୍ଜୁନ !
ତାହାସବୁ ସମର୍ପଣ କର ମୋହଠାରେ ।
ଏହିପରି କଲେ ତୁମେ,
କରମଜନିତ ଶୁଭ ଅଶୁଭ ଫଳରୁ ହୋଇବ ମୁକତ ।
ମୁକ୍ତି ପାଇବାର ପରେ ସନ୍ନ୍ୟାସ ଯୋଗରେ
ଅର୍ଥାତ୍ ମୋଠାରେ ସମସ୍ତ କର୍ମ ସମର୍ପଣ ରୂପ ଯୋଗରେ
ମନଧ୍ୟାନ ଦେଲେ ମୋତେ ପାଇବ ନିଶ୍ଚୟ ।
ସବୁ ପ୍ରାଣୀଙ୍କର ପ୍ରତି ସମାନ ମୋ ଭାବ ।
କେହି ମୋର ନୁହେ ପ୍ରିୟ ଅବା ଅପ୍ରିୟ,
ନାହିଁ ମୋର ଶତ୍ରୁ ମିତ୍ର ।
ଯେ ମୋତେ ପୂଜଇ ଭକ୍ତି ଶ୍ରଦ୍ଧା ସହକାରେ
ତାଙ୍କଠି ମୁଁ ରହେ, ସେମାନେ ରହନ୍ତି ମୋଠି ।
ଅତି ପାତକୀ ଯେ ମେ ଯଦି ପୂଜଇ ମୋତେ ବିଧି ଅନୁସାରେ,

ଅନ୍ୟ କାହାକୁ ନ ଭଜ ଭଜୁଥାଏ ମୋତେ,
ତେବେ ବି ସେହି ପାତକୀ ବ୍ୟକ୍ତି ନିଶ୍ଚେ ସାଧୁ ।
କାରଣ ତା ବ୍ୟବସାୟ ଅତି ମନୋହର ।
ଅତି ପାପୀଟାଏ ମଧ୍ୟ ଭଜୁ ଭଜୁ ମୋତେ
ଧର୍ମାତ୍ମା ହୁଅଇ ଶୀଘ୍ର,
ତା ଉତ୍ତାରେ ଶାନ୍ତ ସୁଖ ଭୋଗ କରୁଥାଏ ।
ହେ କୁନ୍ତୀନନ୍ଦନ !
ଜାଣିଥା ମୋ ଭକ୍ତ କେବେ ହୁଏନା ବିନାଶ ।
ମୋ ଭକ୍ତ ସଦା ଆନନ୍ଦ, ହୁଏନା ବିମୁଖ ।
ହେ ପାର୍ଥ ! ନିଶ୍ଚୟ କରି କହୁଛି ତୁମକୁ,
ଯେ ମୋତେ ଆଶ୍ରୟ କରେ ନାରୀ, ଶୂଦ୍ର, ବୈଶ୍ୟ,
ଅନ୍ତ୍ୟଜ, ପତିତ କିବା ନୀଚକୁଳେ ଜାତ
ହେଲେ ମଧ୍ୟ ଲଭେ ମୁକ୍ତି ।
ବ୍ରାହ୍ମଣ, ରାଜର୍ଷିମାନେ ପାଇବେ ମୁକତି
ବିଚିତ୍ର ତ ନୁହେ ।
ଯେଣୁ ତୁମେ ଅଛ ଏହି ଅନିତ୍ୟ ସଂସାରେ,
ତେଣୁ ମୁଁ ତୁମକୁ କହୁଅଛି ଅରଜୁନ !
ନିରନ୍ତର ମୋତେ ତୁମେ କରୁଥା ଭଜନ ।
ହେ ଅର୍ଜୁନ ! ତୁମେ ସଦା ଭକ୍ତିଭାବରେ
ତୁମ ମନ ଦିଅ ମୋରଠାରେ ।
ମୋହର ସେବକ ପୁଣି ହୁଅ ହେ ପୂଜକ ।
ନମସ୍କାର କର ମୋତେ ଯେତେବେଳେ ପାର ।
ମୋହର ଚିନ୍ତାରେ ରହି ମୋର ପରାୟଣ ହୁଅ ନିରନ୍ତର,
ଅନ୍ତିମ କାଳରେ ମୋତେ ପାଇବ ନିଶ୍ଚୟ ।
ଏଥିରେ ସନ୍ଦେହ ତିଳେ କରନା ଅର୍ଜୁନ !"

# ଦଶମ ଅଧ୍ୟାୟ

ଶ୍ରୀକୃଷ୍ଣ କହିଲେ—

"ଆହେ ବଳସ୍ୱାର ବୃନ୍ଦ ପରମାତ୍ମାନନ୍ଦ !
ଶୁଣ ମୋର କଥାମୃତ । ଯେଣୁ ମୋ କଥାରେ
ଶ୍ରଦ୍ଧା ଜନମେ ତୁମର, ତେଣୁ ମୁଁ କହୁଛି
ତୁମ ହିତ ବାଞ୍ଛା କରି ।
ଇନ୍ଦ୍ରାଦି ଦେବତା, ଭୃଗୁ ଆଦି ଋଷିମାନେ
ମୋ ଉତ୍ପତ୍ତି କଥା ଜାଣନ୍ତି ନାହିଁଟି କେହି,
ଯେଣୁ ମୁଁ ଦେବତା ଆଉ ଋଷିମାନଙ୍କର ଅଟେ ମୂଳାଧାର ।
କେହି ଜାଣିପାରନ୍ତିନି ମୋର ଅନୁଗ୍ରହ
ବିନା ମୋତେ ଏ ଜଗତେ ।
ଯେ ମନେ କରଇ ମୋତେ ଅନାଦି ଅନନ୍ତ,
ଜନମ-ବିହୀନ, ସର୍ବ ଲୋକ ମହେଶ୍ୱର ସେହି ହିଁ କେବଳ
ମୋହମାୟାକୁ ବରଜି ସକଳ ପାପରୁ ମୁକ୍ତ ହୁଅଇ ନିଶ୍ଚୟ ।
ମୋହଠାରୁ ଜନ୍ମେ ବୁଦ୍ଧି, ଜ୍ଞାନ, ମୋହନାଶ
କ୍ଷମା, ସତ୍ୟଭାଷ, ସମ ଦମ, ସୁଖ ଦୁଃଖ, ଜନମ ମରଣ,
ଭୟ ଓ ଅଭୟ କ୍ରମେ ।
ଅହିଂସା, ସମତା, ସନ୍ତୋଷ, ତପସ୍ୟା, ଦାନ ଯଶ ଆଉ ନିନ୍ଦା
ସବୁ ଭିନ୍ନ ଭିନ୍ନ ହୋଇ ମୋଠାରୁ ଉତ୍ପନ୍ନ
ହୁଅନ୍ତି ଜାଣ ଅର୍ଜୁନ !
ଭୃଗୁ ଆଦି କରି ସପ୍ତ ମହାଋଷି ପୁଣି ସନକାଦି ଚାରି,
ସ୍ୱାୟମ୍ଭୁବ ଆଦି ମନୁ ଚତୁର୍ଦ୍ଦଶ ମୋର
ମନରୁ ସମ୍ଭୂତ ସବୁ ।
ଯେଉଁମାନଙ୍କଠୁଁ ପ୍ରଜାଗଣ, ପୁତ୍ର, ନାତି,
ଶିଷ୍ୟ ଓ ପ୍ରଶିଷ୍ୟ ରୂପେ ଜଗତେ ବଢ଼ିତ ।
ଯଥାର୍ଥ ରୂପରେ ଯିଏ ଜାଣେ ମୋ ବିଭୂତି—
ଯୋଗ ଯିଏ ପାଏ ତତ୍ତ୍ୱଜ୍ଞାନ, ସନ୍ଦେହର ନାହିଁ ଅବକାଶ ।

ମୁଁ ସକଳ ଜଗତର ଉତ୍ପତ୍ତି କାରଣ ।
ମୋଠାରୁ ଉତ୍ପନ୍ନ ସବୁ ଜାଣ ହେ ଅର୍ଜୁନ !
ଜ୍ଞାନୀମାନେ ଜାଣି ଏହା ପ୍ରୀତିର ସହିତ
ମୋର କରୁଥାନ୍ତି ପୂଜା ।
ଏପରି ପଣ୍ଡିତେ ମନପ୍ରାଣ ଇନ୍ଦ୍ରିୟଙ୍କୁ ମୋଠାରେ ସମର୍ପି
ପରମାନନ୍ଦ ଚିତ୍ତରେ ପରସ୍ପର ମଧ୍ୟେ
ବୁଝାବୁଝି ହେଉଥାନ୍ତି । ମୋର ଗୁଣ ଗାଥା
ସନ୍ତୋଷରେ ଗାନକରି ଲଭନ୍ତି ପରମ
ଶାନ୍ତି ଇହ ଜଗତରେ ।
ସେହି ଏକ-ଅଗ୍ର-ଚିତ୍ତ ବ୍ୟକ୍ତିମାନେ ମୋର ଅତ୍ୟନ୍ତ ସେବକ ।
ମୁଁ ଦିଅଇ ତାଙ୍କୁ ସବୁ ବୁଦ୍ଧି, ଯୋଗଶିକ୍ଷା ।
ତେଣୁ ସେହିମାନେ ମୋତେ ଲଭନ୍ତି ସର୍ବଦା ।
ଅନୁଗ୍ରହ କରି ତାଙ୍କୁ ଆଦରର ସହ
ପ୍ରବେଶ କରଇ ମୁହିଁ ତାଙ୍କର ବୁଦ୍ଧିରେ ।
ତେଜୋମୟ କରିଦିଏ ଜ୍ଞାନ-ପ୍ରଦୀପକୁ ।
ତହିଁରେ ଦୂର ହୁଅଇ ଅଜ୍ଞାନ-ଅନ୍ଧାର
ତାଙ୍କର ମନ ମଧ୍ୟରୁ ।"
ଅର୍ଜୁନ କହିଲେ—"ହେ କୃଷ୍ଣ ! ଆପଣ ସ୍ୱୟଂ ଉତ୍କୃଷ୍ଟ ଆଶ୍ରୟ,
ପୁଣି ପରଂବ୍ରହ୍ମ ଅଜ, ପରମ ପବିତ୍ର ।
ଭୃଗୁ ଆଦି କରି ଯେତେ ସବୁ ମହାଋଷି,
ନାରଦ ଆଦି ଦେବର୍ଷି, ଅସିତ, ଦେବଳ,
ପୁଣି ବ୍ୟାସ ଆଦି କରି ସକଳେ ତୁମକୁ
ଶାଶ୍ୱତ ପୁରୁଷ ପୁଣି ( ପରମ ଆତ୍ମା )
ସ୍ୱ-ପ୍ରକାଶ ଆଦିଦେବ ବିଭୁ (ସର୍ବବ୍ୟାପୀ) ବୋଲି କହି
ପ୍ରଶଂସା କରନ୍ତି ସଦା ।
ପୁଣି ସେଗୁଡ଼ିକୁ ସବୁ ସ୍ୱୀକାର କରି ମୋତେ କହୁଛନ୍ତି ନିଜେ ।
ହେ କୃଷ୍ଣ ! ଯାହା ଆପଣ କହୁଛନ୍ତି ମୋତେ,
ତାହା ମୁଁ ମଣୁଛି ସତ୍ୟ ।

ଆହେ ମହାପ୍ରଭୁ ! ସୁରାସୁରଗଣ ଜାଣି-
ପାରନ୍ତିନ କେବେ ଆପଣଙ୍କର ପ୍ରଭାବ ।
ହେ ଭୂତଭାବନ ! ଦେବଦେବ ମହାଦେବ !
ତିଲୋକର ଈଶ ! ଆହେ ନରଙ୍କ ଉତ୍ତମ !
ହେ ଜଗତପତି ! ଆପଣ ନିଜେ ହିଁ ଏକା ଜାଣନ୍ତି ନିଜକୁ ।
ଯେଣୁ ଆପଣ ସର୍ବଜ୍ଞ, ସର୍ବତ୍ର ବ୍ୟାପକ ।
ଆପଣଙ୍କ ବିନା ମୋର ନାହିଁ ଅନ୍ୟ ଗତି,
ଆପଣଙ୍କର ଅଦ୍ଭୁତ ସ୍ୱ-ବିଭୂତିମାନଙ୍କୁ
କହନ୍ତୁ ବୁଝାଇ କରି ମୋତେ ଭଲ ଭାବେ ।
କିପରି ଚିନ୍ତା କରି ମୁଁ ଜାଣିବି ତୁମକୁ ।
କିପରି ତୁମର ଧ୍ୟାନ କରିବି ଆହୁରି ।
ହେ ଯୋଗୀ, ପୁରୁଷଶ୍ରେଷ୍ଠ ! କହନ୍ତୁ ବୁଝାଇ ।
ତୁମେ ହିଁ ସମର୍ଥ ଏକା କହିବାକୁ ତାହା ।
ଆଉ ଥରେ ଭଲକରି କହନ୍ତୁ କେଶବ !
ତୁମର ଯୋଗ ବିଭୂତି ଅମୃତ ବଚନ
ଥରେ ମାତ୍ର ଶୁଣି ତୃପ୍ତି ହେଉନି ମୋହର ।
ସେ ମଧୁର କଥା କରେ ପ୍ରୀତିସୁଖ ଦାନ ।"
ଶ୍ରୀକୃଷ୍ଣ କହିଲେ ହସି—"ହେ କୁରୁଙ୍କ ଶ୍ରେଷ୍ଠ !
କହୁଛି ମୁଁ ତାହା ଶୁଣ ।
ଅନନ୍ତ ବିଭୂତି ମୋର, ତା ଭିତରୁ କେତେ
ବାଛି ବାଛି କରି ଭଲ କହିବି ତୁମକୁ
ହେ ନିଦ୍ରାବିହୀନ ( ଗୁଡ଼ାକେଶ) !
ପ୍ରାଣୀଙ୍କ ଅନ୍ତରେ ଥାଏ ମୁହିଁ ଆତ୍ମା ରୂପେ ।
ପ୍ରାଣୀଙ୍କ ଉତ୍ପତ୍ତି ସ୍ଥିତି ପ୍ରଳୟ ଆଦିର
ମୁଁ ଅଟେ ମୂଳ କାରଣ ।
ଆଦିତ୍ୟମାନଙ୍କ ମଧ୍ୟ ମୁଁ ଅଟଇଁ ବିଷ୍ଣୁ,
ଜ୍ୟୋତିଷ୍କ ମଧ୍ୟରେ ଅଟଇଁ ମୁଁ ଅଂଶୁମାନ ।
ମରୀଚି ଅଟଇ ମୁହିଁ ମରୁତଙ୍କ ମଧ୍ୟେ ।

ନକ୍ଷତ୍ରଙ୍କ ମଧ୍ୟେ ମୁହିଁ ଅଟେ ଶଶଧର ।
ବେଦଙ୍କ ଭିତରେ ମୁହିଁ ଅଟେ ସାମବେଦ ।
ଦେବତାମାନଙ୍କ ମଧ୍ୟେ ମୁଁ ଅଟଇ ଇନ୍ଦ୍ର ।
ଇନ୍ଦ୍ରିୟଙ୍କ ମଧ୍ୟେ ମୁହିଁ ମନ ଅଟେ ଜାଣ ।
ପ୍ରାଣୀଙ୍କ ଭିତରେ ମୁଁ ଅଟଇ ଚେତନ ।
ରୁଦ୍ରଙ୍କ ଭିତରେ ଅଟେ ମୁହିଁଟି ଶଙ୍କର,
ଯକ୍ଷ ରାକ୍ଷସଙ୍କ ମଧ୍ୟେ ଅଟେ ମୁଁ କୁବେର ।
ବସୁଙ୍କ ମଧ୍ୟରେ ମୁହିଁ ଅଟେ ବୈଶ୍ୱାନର,
ପର୍ବତମାନଙ୍କ ମଧ୍ୟେ ମୁହିଁ ତ ସୁମେରୁ ।
ପୁରୋହିତଶ୍ରେଷ୍ଠ ମୁହିଁ ଅଟେ ବୃହସ୍ପତି ।
ସେନାନୀଙ୍କ ମଧ୍ୟେ ମୁହିଁ ଏକା ଶକ୍ତିଧର (କାର୍ତ୍ତିକେୟ) ।
ସାଗର କେବଳ ମୁହିଁ ଜଳାଶୟ ମଧ୍ୟେ ।
ମୁଁ ଭୃଗୁ ନିଶ୍ଚୟ ମହାଋଷିଙ୍କ ଭିତରେ ।
ଓଁକାର ଅଟଇ ମୁହିଁ ବଚନ ମଧ୍ୟରେ ।
ମୁହିଁ ନାମଯଜ୍ଞ (ଜପଯଜ୍ଞ) ଯଜ୍ଞମାନଙ୍କ ଭିତରେ ।
ଅଟେ ହିମାଳୟ ସ୍ଥାବରଙ୍କ ଭିତରେ ମୁଁ,
ମୁଁ ଅଟେ ଅଶ୍ୱତ୍ଥ ବୃକ୍ଷମାନଙ୍କ ଭିତରେ ।
ଗନ୍ଧର୍ବମାନଙ୍କ ମଧ୍ୟେ ମୁହିଁ ଚିତ୍ରରଥ ।
ସିଦ୍ଧଙ୍କ ଭିତରେ ମୁହିଁ ଅଟଇ କପିଳ ।
ଅଶ୍ୱଙ୍କ ଭିତରେ ମୁହିଁ ଅଟେ ଉଚ୍ଚୈଃଶ୍ରବା,
ମୁଁ ଅମୃତ ଜାତ କ୍ଷୀର ସାଗର ମନ୍ଥନୁଁ ।
ମୁହିଁ ଐରାବତ ଗଜମାନଙ୍କ ମଧ୍ୟରେ ।
ଅଟେ ମୁଁ ନୃପତି ନରମାନଙ୍କ ମଧ୍ୟରେ ।
ଆୟୁଧଙ୍କ ମଧ୍ୟେ ମୁହିଁ ଅଟଇ କୁଳିଶ ।
ଅଟେ କାମଧେନୁ ମୁହିଁ ଧେନୁଙ୍କ ଭିତରେ ।
ପ୍ରାଣୀଙ୍କ ଜନମ-କାରଣ କନ୍ଦର୍ପ ମୁହିଁ ।
ମୁଁ ଅଟେ ଅନନ୍ତ ନାଗମାନଙ୍କ ଭିତରେ ।
ବରୁଣଟି ମୁହିଁ ଜଳଚରଙ୍କ ଭିତରେ ।

ଅର୍ଯ୍ୟମା ମୁଁ ଅଟେ ପିତୃଗଣଙ୍କ ଭିତରେ ।
ମୁଁ ଅଟଇ ଯମ ଇନ୍ଦ୍ରିୟ ଦମନ ପାଇଁ ।
ପ୍ରହ୍ଲାଦ ମୁଁ ଅଟେ ଦୈତ୍ୟମାନଙ୍କ ଭିତରେ ।
ମୁଁ ଅଟଇ କାଳ ସଂଖ୍ୟାକାରୀଙ୍କ ମଧ୍ୟରେ ।
ମୁଁ ଅଟେ କେଶରୀ ପଶୁମାନଙ୍କ ଭିତରେ ।
ଗରୁଡ଼ ମୁଁ ଅଟେ ପକ୍ଷୀମାନଙ୍କ ଭିତରେ ।
ପବନ ମୁଁ ନିଶ୍ଚେ ବେଗଗାମୀଙ୍କ ଭିତରେ ।
ମୁଁ ଅଟେ ଶ୍ରୀରାମ ଶସ୍ତ୍ରଧାରୀଙ୍କ ମଧ୍ୟରେ ।
ଜାଣ ମୁଁ ମଗର ମତ୍ସ୍ୟମାନଙ୍କ ମଧ୍ୟରେ ।
ଅଟଇ ମୁଁ ଗଙ୍ଗା ନଦୀମାନଙ୍କ ଭିତରେ ।
ଅଟେ ମୁଁ ଏସନ ପାର୍ଥ ! ଜାଣ ହେ ନିଶ୍ଚୟ ।
ସୃଷ୍ଟିରେ ପଦାର୍ଥ ଯେତେ ହୋଇଅଛି ସୃଷ୍ଟି,
ସେସବୁର ଆଦି ଅନ୍ତ ମଧ୍ୟ ମୋତେ ଜାଣ ।
ଅଧ୍ୟାତ୍ମ ବିଦ୍ୟା ମୁଁ ବିଦ୍ୟାମାନଙ୍କ ଭିତରେ
ବାଦ ବୋଲି ଜାଣ ମୋତେ ଯୁକ୍ତିଙ୍କ ମଧ୍ୟରେ ।
ଅକାର ଅଟଇ ମୁଁ ଅକ୍ଷରମାନଙ୍କରେ ।
ସମାସଙ୍କ ମଧ୍ୟେ ଦ୍ୱନ୍ଦ୍ୱ ସମାସ ମୁଁ ନିଶ୍ଚେ ।
ଅକ୍ଷୟ କେବଳ ମୁହିଁ, କାଳ ଆଉ ସର୍ବ—
ବ୍ୟାପୀମାନଙ୍କର ଅଟଇ ବିଧାତା ମୁହିଁ ।
ସର୍ବ କର୍ମଫଳ-ଦାତା ଅଟେ ମୁଁ ଅର୍ଜୁନ !
ଜାଣ ମୋତେ ନିଶ୍ଚେ ସର୍ବହର ମୃତ୍ୟୁଦେବ ।
ଭବିଷ୍ୟତ ପ୍ରାଣୀମାନଙ୍କ ସ୍ୱରୂପ ମୁହିଁ ।
ନାରୀଙ୍କ ଭିତରେ ମୁଁ ଶ୍ରୀ, ମେଧା, ବାଣୀ, ସ୍ମୃତି,
ଧୃତି, କ୍ଷମା ଆଦି ନାମମାନ ମୁଁ ଧରଇ ।
ସାମବେଦରେ ମୁଁ ଅଟଇ ବୃହତ୍ ସାମ ।
ଛନ୍ଦମାନଙ୍କରେ ମୁହିଁ ଅଟଇ ଗାୟତ୍ରୀ ।
ମାସମାନଙ୍କରେ ମୁଁ ଅଟଇ ମାର୍ଗଶିର ।
ଋତୁମାନଙ୍କରେ ମୁଁ ଅଟେ ବସନ୍ତ ଜାଣ ।

ପ୍ରବଞ୍ଚନା ପାଇଁ ଜୁଆଖେଳ ମୁଁ ପ୍ରସିଦ୍ଧ ।
ତପସ୍ୱୀଙ୍କ ତେଜ, ବିଜୟକାମୀଙ୍କ ଜୟ ।
ବ୍ୟବସାୟ ମୁହିଁ ବ୍ୟବସାୟୀମାନଙ୍କର ।।
ସତ୍ତ୍ୱ ଗୁଣ ମୁହିଁ ଅଟେ ସାତ୍ତ୍ୱିକ ପ୍ରାଣୀର ।
ବୃଷ୍ଣୀଙ୍କ ଭିତରେ ମୋତେ ବସୁଦେବ ଜାଣ ।
ପାଣ୍ଡବମାନଙ୍କ ମଧ୍ୟେ ମୁଁ ଅଟଇ ପାର୍ଥ ।
ମୁହିଁ ବ୍ୟାସ ଜାଣ ମୁନିମାନଙ୍କ ଭିତରେ ।
ମୁହିଁ ଶୁକ୍ରାଚାର୍ଯ୍ୟ କବିମାନଙ୍କ ଭିତରେ ।
ଦଣ୍ଡ ମୁଁ ଅଟଇ ଶାସନକାରୀଙ୍କ ମଧ୍ୟେ ।
ମୁଁ ନୀତି ସ୍ୱରୂପ ଜୟକାମୀଙ୍କ ଭିତରେ ।
ମୁହିଁ ମଉନତା ଗୋପନୀୟ ବିଷୟରେ ।
ମୁଁ ଅଟଇ ଜ୍ଞାନ ଜ୍ଞାନୀ ଜନମାନଙ୍କର ।
ସକଳ ଭୂତରେ ବୀଜ ମୁଁ ଅଟେ ଅର୍ଜୁନ !
ଜନ୍ମ ହେବା ପାଇଁ ମୋର ଛଡ଼ା କିଛି ନାହିଁ
ଚରାଚରେ ଜାଣ ।।
ଏମନ୍ତ ବିଭୂତି ମୋର ହେ ପରନ୍ତପ !
ତୁମକୁ ବୁଝାଇ କରି କହିଲି ସଂକ୍ଷେପେ ।
ଏ ଜଗତେ ଯାହା ଅଛି ଅଇଶ୍ୱର୍ଯ୍ୟମୟ
ସେସବୁ ଉତ୍ପନ୍ନ ମୋର ତେଜର ଅଂଶରୁ ।
ଆଉ ଅଧିକ ଜାଣିବା ନୁହେ ଆବଶ୍ୟକ
କିଛି, ଜାଣ ହେ ଅର୍ଜୁନ !
ଏତିକ ଜାଣିଲେ ତୁମେ, ହୋଇବ ଯଥେଷ୍ଟ ।
ମୁଁ ଏକା ବ୍ୟାପିଛି ଏହି ପୂର୍ଣ୍ଣ ଜଗତରେ ।
କିଛି ନାହିଁ ଆଉ ମୋର ବ୍ୟତୀତ ସଂସାରେ ।"

୯

— — — —

# ଏକାଦଶ ଅଧ୍ୟାୟ

## ବିଶ୍ୱରୂପ ଦର୍ଶନ

ଅର୍ଜୁନ କହିଲେ-—
"କୃଷ୍ଣ ! ମୋତେ ଯେ ଆପଣ
ଅନୁଗ୍ରହକରି ସବୁ ଗୋପନୀୟ କଥା
ଅଧ୍ୟାତ୍ମ୍ୟ ବିଷୟଆଦି କହିଲେ ବୁଝାଇ,
ସେସବୁ କଥାରେ ମୋର ସାଂସାରିକ ମୋହ
ହୋଇଗଲା ଦୂର ।
ଆପଣଙ୍କ ଶ୍ରୀମୁଖରୁ ହେ ପଦ୍ମଲୋଚନ !
ଶୁଣି ପ୍ରାଣୀମାନଙ୍କର ଜୀବନମରଣ ପୁଣି ଅବ୍ୟୟ ମାହାତ୍ମ୍ୟ,
ଜାଣିଲି ଏଥର ସବୁ ବିସ୍ତୃତ ଭାବରେ ।
ହେ ପରମେଶ୍ୱର !
ଆପଣଙ୍କ ନିଜ କଥା ଯେପରି ବୁଝାଇ ଦେଲେ,
ତାସବୁ ଯଥାର୍ଥ ଜାଣିଲି ମୁଁ ଏବେ ।
ହେ ପୁରୁଷୋତ୍ତମ !
ତଥାପି ତୁମର ସେହି ବିଶ୍ୱରୂପଟିକୁ ଦେଖିବାକୁ ଇଚ୍ଛା ।
ହେ ପ୍ରଭୁ ! ସେ ରୂପ ଯେବେ
ହୋଇବି ସମର୍ଥ ଦେଖିବା ପାଇଁ, ଦେଖାନ୍ତୁ ସେ ରୂପ,
ଅବ୍ୟୟ ଯାହା, ମୋତେ ଦୟା କରି ।"
ଶ୍ରୀକୃଷ୍ଣ କହିଲେ—
"ମୋର ଅଲୌକିକ ଶତ ସହସ୍ର ପ୍ରକାର
ବିବିଧ ବର୍ଣ୍ଣ ଆକୃତି ଧାରଣ କରିବା
ସେହି ରୂପଟିକୁ ଦେଖ, ଯା ଦେଖି ନ ଥିଲ ।
ସେହି ଆଦିତ୍ୟସମୂହ, ଅଶ୍ୱିନୀକୁମାର, ରୁଦ୍ରଗଣ, ବସୁଗଣ,
ଅଣଚାଶରୂପେ ମରୁତଗଣ, ଆହୁରି
ଦେଖ ମୋ ଦେହରେ ଅଛନ୍ତି ଏକତ୍ର ହୋଇ ।

ଆଜି ଯାହା ଅଛି ଚରାଚର ଜଗତରେ
ଯଦି ତାହାସବୁ ଦେଖିବାକୁ ଇଚ୍ଛାକର, ଦେଖ ବର୍ତ୍ତମାନ ।
କିନ୍ତୁ ତା ଦେଖିବା ପାଇଁ ନାହିଁ ଶକ୍ତି ତୁମ
ଏହି ମାନବ-ଚକ୍ଷୁର ।
ତେଣୁ ଦିବ୍ୟ ଚକ୍ଷୁ ଦେଉଅଛି ତୁମକୁ ମୁଁ ।
ଦେଖ ମୋର ଯୋଗ ଅଇଶ୍ୱର୍ଯ୍ୟ ଭଲ କରି ।"
ସଞ୍ଜୟ କହିଲେ—" ମହାରାଜ !
ଅର୍ଜୁନଙ୍କୁ ଶ୍ରୀକୃଷ୍ଣ ଏପରି କହି,
ତାଙ୍କର ପରମ ଅଇଶ୍ୱର୍ଯ୍ୟ ରୂପଟିକୁ ଦେଖାଇଣ ଦେଲେ ।
ବହୁତ ବଦନ ପୁଣି ବହୁତ ନୟନ,
ବହୁତ ଅଦ୍ଭୁତ ବେଶ ଭୂଷଣେ ଭୂଷିତ ଅପୂର୍ବ ମୂରତି
କୃଷ୍ଣ ଦେଖାଇଲେ ତାଙ୍କୁ ।
ବସ୍ତ୍ର ଶସ୍ତ୍ରଧାରୀ, ସୁଦିବ୍ୟ ମାଳା ଭୂଷିତ ଗନ୍ଧ ବିଲେପିତ
ମନୋହର ଦେବ ବପୁ ଦେଖାଇଲେ ପୁଣି ।
ନିଜକୁ ପ୍ରକାଶ କରି ଯୋଗୈଶ୍ୱର୍ଯ୍ୟ ରୂପ
ବିଶ୍ୱବ୍ୟାପୀ ଦେହଟିକୁ ଦେଖାଇଣ ଦେଲେ ।
ଗଗନରେ ଶତ ସୂର୍ଯ୍ୟ ଏକାବେଳକରେ
ଉଦିତ ହୋଇ ଦୀପ୍ତିକୁ କଲେ ଏକତ୍ରିତ ।
ବିଶ୍ୱରୂପ ଜ୍ୟୋତି ସହି ନୋହିବ ସମାନ ।
ସେତେବେଳେ ଅରଜୁନ ବହୁତ ପ୍ରକାରେ
ବିଭକ୍ତ ହେବା ରୂପକୁ ଦେଖିଲେ ଏକାଠି,
ସେହି ଶ୍ରୀକୃଷ୍ଣ ଶରୀରେ ।
ଦେଖିଣ ସେ ରୂପ ଅର୍ଜୁନ ଚକିତ ହୋଇ
ପୁଲକର ସହ କରଯୋଡ଼ି ବିସ୍ମୟରେ
ମୁଣ୍ଡକୁ ନୂଆଇଁ ଭକ୍ତିରେ ପ୍ରଣାମ କରି
କହିଲେ ବିନୟେ—"ହେ ବିଶ୍ୱେଶ୍ୱର ଦେବ !
ବହୁତ ଉଦର, ବହୁତ ବାହୁ, ନୟନ,
ଏକତ୍ରିତ କରି ଦେଖୁଛି ଅସୀମ ରୂପ ବ୍ୟାପିଛି ସର୍ବତ୍ର ।

କିନ୍ତୁ ଆଦି ମଧ୍ୟ ଅନ୍ତ କିଛି ଖୋଜି ଖୋଜି
ଦେଖିପାରୁ ନାହିଁ କାହିଁ !
କିନ୍ତୁ ଆପଣଙ୍କ ଶଙ୍ଖ-ଚକ୍ର-ଗଦା-ପଦ୍ମଧର ବିଶ୍ୱରୂପ,
ଅଗ୍ନି ସମ ଦୀପ୍ତିମାନ, ରବି ସମ ଖର-କର-ଉଦ୍ଭାସିତ ଯାହା
ଗୃହୀଁ ହୁଏ ନାହିଁ, ତାହା ମୁଁ ପାରୁଛି ଦେଖି ବ୍ୟାପିଛି ସର୍ବତ୍ର ।
ହେ ପ୍ରଭୁ ଶ୍ରୀକୃଷ୍ଣ ! ଆପଣ ତ ପରଂବ୍ରହ୍ମ,
ବିନାଶରହିତ ପୁଣି ଅଟନ୍ତି ଜ୍ଞାତବ୍ୟ,
ଆପଣ ପୁରୁଷଶ୍ରେଷ୍ଠ ଅବ୍ୟୟ ଅକ୍ଷୟ, ପରମ ଆଶ୍ରୟ,
କାଳେ କାଳେ ରହିଛନ୍ତି ରହିଥିବେ ମଧ୍ୟ ।
ଆର୍ଯ୍ୟଧର୍ମର ପାଳକ ଅଟନ୍ତି ଆପଣ ।
ଆପଣଙ୍କ ଆଦି ଅନ୍ତ ମଧ୍ୟ ନାହିଁ କେବେ ।
ଅସୀମ ପ୍ରଭାବବାନ୍ ଓ ଅନନ୍ତ ବାହୁ ।
ଚନ୍ଦ୍ର ସୂର୍ଯ୍ୟ ଚକ୍ଷୁ, ଜଳନ୍ତା ଅନଳ ଅଟେ ଆପଣଙ୍କ ମୁଖ ।
ଆପଣ କରୁଅଛନ୍ତି ଜଗତ ସନ୍ତପ୍ତ,
ଆପଣଙ୍କ ତେଜଦ୍ୱାରା ମୁଁ ଦେଖିପାରୁଛି ।
ସ୍ୱର୍ଗମର୍ତ୍ତ୍ୟ ମଧ୍ୟସ୍ଥିତ ବିରାଟ ଆକାଶ,
ଆଉ ଦିଗସମୂହକୁ ଆବରି ଅଛନ୍ତି ଏକା ।
ଦେଖି ସେହି ରୂପ କମ୍ପୁଛି ତ୍ରିଲୋକ, ତାହା ଦେଖୁଅଛି ମଧ୍ୟ ।
ଅମର ନିକର ପ୍ରବେଶ କରଅଛନ୍ତି ଆପଣଙ୍କ ଦେହେ ।
ସେମାନଙ୍କ ମଧ୍ୟୁ କେହି କେହି ଭୀତ ହୋଇ
ରକ୍ଷାକର ରକ୍ଷାକର କରନ୍ତି ପ୍ରାର୍ଥନା ଆପଣଙ୍କ ପଦପ୍ରାନ୍ତେ ।
ମହାଋଷିମାନେ ପୁଣି ସିଦ୍ଧ ସାଧୁଗଣ,
ସ୍ୱସ୍ତି ସ୍ୱସ୍ତି କହି କରୁଛନ୍ତି ସ୍ତୁତିଗାନ ।
ରୁଦ୍ରାଦିତ୍ୟ, ବସୁ, ସାଧ୍ୟଦେବ, ବିଶ୍ୱେଦେବ,
ଅଶ୍ୱିନୀକୁମାର, ଅଣଗୃଣାମରୁଦ୍‌ଗଣ, ପିତୃ ଓ ଗନ୍ଧର୍ବ,
ଯକ୍ଷ ଅସୁର ଓ ସିଦ୍ଧ ବିସ୍ମୟାଭିଭୂତ ହୋଇ
କରନ୍ତି ଦର୍ଶନ ତବ ବିଶ୍ୱରୂପ ।
ଆପଣଙ୍କ ବହୁମୁଖ, ନେତ୍ର, ବାହୁ, ଉରୁ,

ଉଦର, ଦଶନଯୁକ୍ତ ଭୀଷଣ, ବିଶାଳ
ତନୁ, ଦେଖିଲେ ମନରେ ହୁଏ ଭୟ ଜାତ ।
ସମସ୍ତ ପ୍ରାଣୀଜଗତ ଯେଉଁପରି ଭୟଭୀତ ହେଉଛନ୍ତି ପ୍ରଭୁ !
ମୁଁ ମଧ୍ୟ ହେଉଛି ।
ଗଗନପରଶୀ ତବ ଏ ବିଶାଳ ତନୁ,
ବହୁ ବର୍ଣ୍ଣସମନ୍ୱିତ ଉଜ୍ଜ୍ୱଳ ପ୍ରଦୀପ୍ତ
ବିଶାଳ ନେତ୍ରଯୁଗଳ, ବିସ୍ତାରିତ ମୁଖ
ଦେଖି ମୋର ଅନ୍ତରାତ୍ମା ହେଉଛି ବ୍ୟାକୁଳ,
ପାରୁ ନାହିଁ ଧୈର୍ଯ୍ୟ ଧରି ।
ଆଉ ମଧ୍ୟ ଶାନ୍ତି ପାଇପାରୁନ ହେ ବିଷ୍ଣୁ !
ଆହେ ଦେବଶ୍ରେଷ୍ଠ !
ଆପଣଙ୍କର ସୁତୀକ୍ଷ୍ଣ ଦନ୍ତପନ୍ତିଦ୍ୱାରା
ଭୀଷଣ ପ୍ରଳୟ ଅଗ୍ନି ତୁଲ୍ୟ ଦୀପ୍ତିମୟ
ବଦନମାନଙ୍କୁ ଦେଖି ଚିହ୍ନିପାରୁ ନାହିଁ ଦିଗମାନଙ୍କୁ ଭୟରେ ।
ସେଥିପାଇଁ ସୁଖଶାନ୍ତି ପାଇପାରୁ ନାହିଁ ।
ମୋଠାରେ ପ୍ରସନ୍ନ ହୁଅ ହେ ଜଗନ୍ନିବାସ !
ନୃପତିଙ୍କ ସହ ଧୃତରାଷ୍ଟ୍ର ପୁଅମାନେ,
ଭୀଷ୍ମ, ଦ୍ରୋଣ, କର୍ଣ୍ଣ, ଆମର ସ୍ୱପକ୍ଷ ଆଦି ସକଳେ ଏକାଠି
ଆପଣଙ୍କର କରାଳ ମୁଖ ବାଟ ଦେଇ
ପଶୁଛନ୍ତି ଆପଣଙ୍କ ବିଶ୍ୱବ୍ୟାପୀ ଦେହେ ।
ସେମାନେ ସକଳେ ଧାଇଁ ଧାଇଁ ପଶୁଛନ୍ତି
ଆପଣଙ୍କ ମୁଖ ମଧ୍ୟେ ।
କେହି କେହି ମଧ୍ୟ ଲାଗି ଯାଉଛନ୍ତି ରହି ଦାନ୍ତର ସନ୍ଧିରେ ।
କେତେକଙ୍କ ମୁଣ୍ଡ ମଧ୍ୟ ହେଉଅଛି ଚୂର ।
ଯେପରି କି ନଦୀସବୁ ଏକତ୍ରିତ ହୋଇ
ଧାଇଁଥାନ୍ତି ସାଗରକୁ
ଏବଂ ତହିଁ ମିଶି ହୋଇଯାନ୍ତି ଏକାକାର ।
ତେସନ ଏସବୁ ଆପଣଙ୍କର ବଦନେ

ପଶି ଏକାକାର ହୋଇ ହେଉଛନ୍ତି ଲୀନ ।
ଯେପରି ପତଙ୍ଗ ମରିବାପାଇଁ କେବଳ ପଶନ୍ତି ଅନଳେ,
ସେହିପରି ଏ ସକଳ ବେଗରେ ପଶୁଛନ୍ତି
ଚଞ୍ଚଳ ଚଞ୍ଚଳ ଧାଇଁ ଆପଣଙ୍କ ମୁଖେ ।
ଆହେ ବିଶ୍ୱବ୍ୟାପୀ ରୂପ !
ଆପଣ କରନ୍ତି ଗ୍ରାସ ଜ୍ୱଳନ୍ତ ଏ ମୁଖେ ।
ଆହେ ବିଶ୍ୱବ୍ୟାପି, ଆପଣ କରୁଅଛନ୍ତି ସକଳଙ୍କୁ ଗ୍ରାସ ।
ପୁଣି ହେ ରୁଧିରଲିପ୍ତ ଓଷ୍ଠ ଅଧରକୁ ଚାଟୁଛନ୍ତି ଥରଥର ।
ଦୀପ୍ତିରଶ୍ମି ତବ ପ୍ରକାଶି ଭୀଷଣ ତେଜ
କରୁଛି ସନ୍ତପ୍ତ ଚରାଚର ଜଗତକୁ ।
କହନ୍ତୁ ହେ ମୋତେ କିଛି ଉଗ୍ରରୂପଧାରି !
ଆପଣ କିଏ ସେ, ହେ ପ୍ରଚଣ୍ଡମୂର୍ତ୍ତିଧର !
ଆହେ ଦେବଶ୍ରେଷ୍ଠ ! ଆପଣଙ୍କୁ ନମସ୍କାର ।
ପ୍ରସନ୍ନ ହୁଅନ୍ତୁ ପ୍ରଭୁ ଏ କିଂକରଠାରେ ।
ଇଚ୍ଛା ମୁଁ କରୁଛି ଜାଣିବା ପାଇଁ ତୁମକୁ ଯେ ଆଦ୍ୟ ପୁରୁଷ ।
କାରଣ ଗୋଚର ନୁହେଁ ମୋତେ ତବ ଚେଷ୍ଟା ।"
ଶ୍ରୀ ଭଗବାନ କହିଲେ—
"ମୁଁ ଉତ୍କଟ କାଳରୂପ ଲୋକକ୍ଷୟକର ।
ପାର୍ଥିବ ପ୍ରାଣୀମାନଙ୍କ ବିନାଶରେ ମୋର
ପ୍ରବୃତ୍ତି କେବଳ ଜାଣ ।
ତୁମେ ନ ମାଇଲେ ମଧ୍ୟ ମନକୁ ମରିବେ ତୁମର ବିପକ୍ଷ ।
ଏହିସବୁ ଯେତେ ଯୋଦ୍ଧା ଉପସ୍ଥିତ ଏବେ
କେହି ରହିବେନି ଜୀଇ (ଅର୍ଥାତ୍ ମୁଁ ସମସ୍ତଙ୍କୁ ମାରିବି)
ହେ କୁନ୍ତୀନନ୍ଦନ !
ତେଣୁକରି ତୁମେ ଉଠ, ଶତ୍ରୁ ଜିଣି ଯଶ
ଅରଜନ କର ଯୁଦ୍ଧେ ।
ଜୟୀ ହୋଇ ଭୋଗ ନିଷ୍କଣ୍ଟକ ରାଜ୍ୟ ।
ଯୁଦ୍ଧ ନ କରୁଣୁ ତୁମର ଏ ଶତ୍ରୁସବୁ ହୋଇଛନ୍ତି ହତ ।

ତେଣୁ ଆହେ ସବ୍ୟସାଚୀ !
ନିମିତ୍ତ ମାତ୍ରକ ହୁଅ ତୁମେ ଏ ହତ୍ୟାରେ ।
ମୋହାରା ନିହତ ଭୀଷ୍ମ, ଦ୍ରୋଣ, ଜୟଦ୍ରଥ, କର୍ଣ୍ଣ ଆଦି ବୀରେ ।
ଆଗରୁ ମରିଅଛନ୍ତି ।
ତୁମେ ସେମାନଙ୍କୁ କ୍ଷୟ କର ନାହିଁ ମିଛରେ ।
ଡରିଯାଅ ନାହିଁ, ଜିଣିବ ନିଶ୍ଚୟ ତୁମେ ।
ଉଠ, ଯୁଦ୍ଧ କର ।"
ସଞ୍ଜୟ କହିଲେ—ଭଗବାନଙ୍କର ଏହି କଥା ଶୁଣି ପାର୍ଥ
ହାତଯୋଡ଼ି କରି । ଭୟକଂପିତ ଶରୀରେ
ଗଦ ଗଦ ହୋଇ, ଡରି ଅନ୍ତରେ ଅନ୍ତରେ,
ନମସ୍କାର କରି କୃଷ୍ଣେ କହିଲେ ଅର୍ଜୁନ—
"ଆହେ ହୃଷୀକେଶ ହରି !
ଜଗତର ଜନେ ଆପଣଙ୍କର ମହିମା ସଂକୀର୍ତ୍ତନ କରି
ହୁଅନ୍ତି ଅଧିକ ହର୍ଷ ଅନୁରାଗ ବଶୁ ।
ଦୈତ୍ୟମାନେ ଭୟଭୀତ ହୋଇ ଏଣେତେଣେ
ପଳାନ୍ତି ବାର ବାଟରେ ।
ସିଦ୍ଧଗଣ ଦଣ୍ଡବତ କରନ୍ତି ଭକ୍ତିରେ ।
ନୁହେ ଏ ବିଚିତ୍ର । ସୁଯୁକ୍ତିସଙ୍ଗତ ଏହା ।
ହେ ଜଗନ୍ନିବାସ, ହେ ଅନନ୍ତ, ହେ ମହାତ୍ମା !
ବ୍ରହ୍ମାଙ୍କ ଅପେକ୍ଷା ଗୁରୁତର ଯେ ଆପଣ ।
ବ୍ରହ୍ମାଙ୍କର ପିତା, ଆଦି କର୍ତ୍ତା ଅଟ ତୁମେ ।
ଆପଣ ତ ସତ୍ ଅବିନାଶୀ ପରଂବ୍ରହ୍ମ ।
ସବୁ ଦେବଙ୍କର ଆପଣ ତ ଆଦିଦେବ;
ପୁରୁଷ ପୁରାଣ, ଜଗତ-ନିଧାନ ପୁଣି ।
ଆପଣ ଜ୍ଞାତବ୍ୟ (ଜାଣିବାଯୋଗ୍ୟ), ଆଉ ମଧ୍ୟ ଜ୍ଞାତା ଅଟ ।
ଆପଣ ପରମଧାମ ଅଟନ୍ତି ନିଶ୍ଚୟ ।
ହେ ଅନନ୍ତରୂପ !
ଆପଣ ଏହି ସମସ୍ତ ବିଶ୍ୱ ବ୍ୟାପିକରି ଅଛନ୍ତି, ହେ ଭଗବାନ !

ଯମ, ବାୟୁ, ଅଗ୍ନି, ପ୍ରଜାପତି, ପିତାମହ, ଶଶାଙ୍କ, ବରୁଣ
ଆହ କରି ଆଜ ଯେତେ ସବୁ ତ ଆପଣ ।
କୋଟି କୋଟି ନମସ୍କାର ତେଣୁ ଆପଣଙ୍କୁ ।
ଆପଣଙ୍କ ଆଗରେ ମୁଁ ଆଚହ ସର୍ବରୂପ !
ଆହୁରି ପୃଷ୍ଠଭାଗରେ ସକଳ ଦିଗରେ
ସବୁଠି ମୁଁ କରୁଅଛି କୋଟି ନମସ୍କାର ।
ଅସୀମ ଶକ୍ତିଧର ଅଟନ୍ତି ଆପଣ ।
ଅପରିମିତ ବଳ ବି ଧରନ୍ତି ଆପଣ ।
ହେ ଅନନ୍ତବୀର୍ଯ୍ୟ ପ୍ରଭୁ ! ଆପଣ ଅଛନ୍ତି—
ବ୍ୟାପି ସର୍ବ ଜଗତକୁ ।
ତେଣୁ ହେ ଆପଣ ଅଟନ୍ତି ସର୍ବ ସ୍ୱରୂପ ।
ଆହେ ମହାପ୍ରଭୁ ! ଆପଣଙ୍କର ମହିମା,
ଏହି ବିଶ୍ୱରୂପ, ନ ଜାଣି ମୁଁ ଭ୍ରମକରି ମଣିଅଛି ସଖା ।
କେତେ ଥର କୃଷ୍ଣ, ସଖା, ପୁଣି ଯଦୁପତି,
ଏହିପରି କହି କେତେ ଡାକିଛି ହେ ପ୍ରଭୁ !
ପ୍ରୀତିପଣରେ ଯେତେକ ଭକ୍ତି କରିଛି
କଥାରେ, ଉପବେଶନେ କିବା ଶଯ୍ୟନରେ,
ଭୋଜନ, ବିହାର କାଳେ ପରିହାସ କରି,
କେବେ ବା ସଙ୍ଗ ସାଥୀରେ ଯେଉଁସବୁ ହେୟ
ବାଣୀ କହିଅଛି ମୁହିଁ ସେଥିପାଇଁ କ୍ଷମାଭିକ୍ଷା କରୁଅଛି ପ୍ରଭୁ !
ଆପଣ ଜନକ ଚରାଚର ଜଗତର ।
ଆପଣ ଆହୁରି ଗୁରୁଙ୍କର ମହାଗୁରୁ ନୁହନ୍ତି ତ କ୍ଷମ
କେହି ଆପଣଙ୍କ ସମ ।
ଉତ୍କୃଷ୍ଟ ପଣରେ ଆଉ ଜଣେ କେହି ନାହିଁ ଦ୍ୱିତୀୟ ସ୍ୱରୂପ ।
ହେ ଦେବ ! ସେଇଥିପାଇଁ ଆପଣ ଅଟନ୍ତି
ଜଗତର ମହାପ୍ରଭୁ, ସମସ୍ତଙ୍କ ପୂଜ୍ୟ ।
ଆପଣଙ୍କୁ ପ୍ରଣିପାତ ହୋଇ ମୋ ଶରୀର
ଲୋଟାଉଛି ଧରଣୀରେ କେବଳ ତୃପତି ପାଇଁ ତବ ଜନାର୍ଦ୍ଦନ !

ଯେଉଁପରି ପିତା ପୁତ୍ରର ଦୋଷସକଳ,
ଯେଉଁପରି ସଖା ସଖାର ସକଳ ତ୍ରୁଟି,
ପତି ବା ପତ୍ନୀର ଦୋଷ କରନ୍ତି ମାର୍ଜ୍ଜନା,
ସେହିପରି ମୋର ଯେତେ ସବୁ ଦୋଷ ଅଛି କରନ୍ତୁ ମାର୍ଜ୍ଜନା ।
ଆହେ ବିଶ୍ୱ କଳେବର ! ସନ୍ତୁଷ୍ଟ ହେଲି ମୁଁ
ଦେଖି ଆପଣଙ୍କ ରୂପ,
କିନ୍ତୁ ମୋ ହୃଦୟ ହେଉଅଛି ଆତଙ୍କିତ ।
ତେଣୁ ହେ କେଶବ ! ଆପଣଙ୍କ ସୌମ୍ୟରୂପ
ଦେଖାଇ ଏଥର ଆଶ୍ୱସ୍ତ କରନ୍ତୁ ମୋତେ ।
ପ୍ରସନ୍ନ ହୁଅନ୍ତୁ ମୋରଠାରେ ଜଗଦୀଶ !
ସେହି ଶଙ୍ଖ-ଚକ୍ର-ଗଦା-କିରୀଟି-କୁଣ୍ଡଳଧାରୀ ଚତୁର୍ଭୁଜ
ମନୋହର ରୂପଟିକୁ ଦେଖିବାକୁ ଇଚ୍ଛା
ମୋର, ଦେଖାନ୍ତୁ ଏଥର ।
ହେ ସହସ୍ରବାହୋ !
ନବ ନୀରଦଜିତ ସେ ସୁନ୍ଦର ରୂପକୁ
ଚଞ୍ଚଳ ଦେଖାନ୍ତୁ ମୋତେ ।"
ଶ୍ରୀକୃଷ୍ଣ କହିଲେ—"ହେ ଅର୍ଜୁନ !
ତୁଷ୍ଟ ହୋଇ ଦେଖାଇଲି ଯେଉଁ ଅସୀମ ତେଜସମ୍ପନ୍ନ
ମୋ ବିଶ୍ୱରୂପକୁ,
ତୁମ ଛଡ଼ା ଆଉ କେହି ତୁମର ଆଗରୁ
କେବେ ନ ଥିଲେ ହେ ଦେଖି ।
ଏ ନରଲୋକରେ ଲୋକମାନେ ବେଦ ପଢ଼ି,
ଯଜ୍ଞ ଦାନ ତପ ଅଗ୍ନିହୋତ୍ର ଆଦି କରି
ଏ ରୂପ ଦେଖିବା ପାଇଁ ନୁହନ୍ତି ସମର୍ଥ ।
ତୁମ ଛଡ଼ା କେହି ମୋ ବିଶ୍ୱରୂପକୁ ପାର୍ଥ !
ଦେଖି ପାରନ୍ତିନି ।
ଏ କଥା ଧ୍ରୁବ ସତ୍ୟରେ ବୁଝ କୁରୁବୀର !
ମୋର ଏହି ଭୟଙ୍କର କରାଳ ରୂପକୁ

ଦେଖି ତୁମେ ବିମୋହିତ ଆତୁର ବ୍ୟଥିତ
ହେଉଅଛ, ହୁଅ ନାହିଁ ଏପରି କଦାପି ।
ବରଂ ମନରୁ ବ୍ୟଥା, ଭୟ ଦୂରେଇ କରି,
ପ୍ରୀତିପରିପୂର୍ଣ୍ଣ ହୋଇ,
ଦେଖ ମୋର ସେହି ପୂର୍ବ ରୂପକୁ ଏଥର ।"
ସଞ୍ଜୟ କହିଲେ—ଏପରି ଶ୍ରୀକୃଷ୍ଣ କହି ଅର୍ଜୁନଙ୍କୁ ପୁଣି
ତାଙ୍କ ନିଜ ରୂପଟିକୁ ଦେଖାଇଣ ଦେଲେ ।
ତାପରେ ଶ୍ରୀକୃଷ୍ଣ ପ୍ରଶାନ୍ତ ମୂର୍ତ୍ତି ଧଇଲେ ଅର୍ଜୁନଙ୍କ ଆଗେ ।
ଅର୍ଜୁନଙ୍କ ଭୟବ୍ୟଥା ହୋଇଗଲା ଦୂର ।
ଦୟାମୟ ଭଗବାନ,
ସାନ୍ତ୍ୱନା ପ୍ରଦାନ କଲେ ଭୀତ ଅର୍ଜୁନଙ୍କୁ ।
ଅର୍ଜୁନ କହିଲେ, "ଆହେ ପ୍ରଭୁ ଜନାର୍ଦ୍ଦନ ! ସୁସ୍ଥ ମୁଁ ହୋଇଲି
ଆପଣଙ୍କର ପ୍ରଶାନ୍ତ ମନୋହର ନର ସ୍ୱରୂପ ଗୋଟିକୁ ଦେଖି
ହୃଦୟରୁ ମୋର ଛୁଟିଗଲା ସବୁ ଭୟ ।
ହୋଇଲି ମୁଁ ସ୍ଥିର ।"
ଶ୍ରୀ ଭଗବାନ କହିଲେ—
"ତୁମେ ମୋର ଏହି ଦୁର୍ଲ୍ଲଭ ବିଶ୍ୱରୂପକୁ
ଯାହା ହେ ଦେଖିଲ ସେହି ରୂପଟିକୁ ମୋର
ଦେଖିବାର ପାଇଁ ଦେବତାମାନେ ସର୍ବଦା କରୁଥାନ୍ତି ଇଚ୍ଛା ।
କିନ୍ତୁ ସେ ପାଆନ୍ତି ନାହିଁ,
ଯେଣୁ ତୁମେ ଭକ୍ତ, ପ୍ରିୟ ସଖା ଅଟ ମୋର
ତୁମକୁ ଦେଖାଇଦେଲି ହେ ପ୍ରିୟ ଅର୍ଜୁନ !
ତୁମେ ଯେଉଁ ରୂପ ଦେଖିଲ ମୋହର ଏବେ
ବେଦ ପଢ଼ିବାରେ, ତପ ଦାନ ଯଜ୍ଞାଦିରେ
ନୁହନ୍ତି ସମର୍ଥ କେହି ଦେଖିବାର ପାଇଁ ।
କେବଳ ତୁମର ଭକ୍ତି ପାଇଁ ଦେଖାଇଲି ।
କିନ୍ତୁ ହେ ଅର୍ଜୁନ !
ଯେ ମୋତେ କରଇ ଭକ୍ତି ଏକାନ୍ତ ମନରେ

ସେହି ଏକା ଜାଣେ ମୋର ସ୍ୱରୂପର ତତ୍ତ୍ୱ ।
ପୁଣି ଦେଖିପାରେ ସେହି ।
ଅନାୟାସେ ସିଏ ମୋ ଦେହରେ ହୁଏ ଲୀନ ।
ହେ ବୀରପୁଙ୍ଗବ !
ଯେଉଁ ଲୋକ ମୋର ପ୍ରୀତି ସମ୍ପାଦନ ପାଇଁ
କର୍ମ କରି ଯାଉଥାଏ,
ମୋଠାରେ ଯାହାର ଚିତ୍ତ ଆସକ୍ତ ସତତ ସେହି ମୋ ଭକତ ।
ଯେଉଁ ବ୍ୟକ୍ତି ପୁଣି ତ୍ୟଜ ସକଳ ସଂସର୍ଗ
ପ୍ରାଣୀଙ୍କ ହିତ ବାଞ୍ଛା କରେ ଚିତ୍ତରେ ତାହାର,
ଯାହାର ନ ଥାଏ କେହୁ ପ୍ରତି ବୈରଭାବନା,
ସେହି ବ୍ୟକ୍ତି ନିଶ୍ଚେ ମୋତେ ଲଭଇ ଅର୍ଜୁନ !"

## ଦ୍ୱାଦଶ ଅଧ୍ୟାୟ

### ଭକ୍ତିଯୋଗ

ଅର୍ଜୁନ କହିଲେ ଶୁଣି, "ହେ ମଧୁସୂଦନ !
ଯେଉଁମାନେ ଆପଣଙ୍କୁ ଏକାଗ୍ର ମନରେ
ଭଜୁଥାନ୍ତି ନିରନ୍ତର ।
ଏପରି ଆସକ୍ତ ହୋଇ ସ୍ମରଣ କରନ୍ତି
ହୃଦୟରେ ନିତି ଆପଣଙ୍କ ରୂପଟିକୁ ।
ଯେଉଁମାନେ ପୁଣି ଆପଣଙ୍କୁ ନିରନ୍ତର
ଅକ୍ଷୟ ଅବ୍ୟୟ ବୋଲି ଚିନ୍ତା କରୁଥାନ୍ତି,
ଏପରି ଯେ ଭକ୍ତ, ସେମାନଙ୍କ ମଧ୍ୟରେ କେ
ଶ୍ରେଷ୍ଠତମ ଯୋଗୀ ?"
ଶ୍ରୀ ଭଗବାନ କହିଲେ, "—ଯେହୁ ନିଷ୍ଠାବାନ
ଏକାଗ୍ରରେ ମୋରଠାରେ ନିବେଶନ୍ତି ମନ,
ମୋର ପରାୟଣ ହୋଇ ଶ୍ରଦ୍ଧାର ସହିତ
ମୋତେ କରୁଥାନ୍ତି ପୂଜା,

ସେହିମାନେ ସବୁ ଯୋଗୀଙ୍କ ମଧ୍ୟେ ଉତ୍ତମ ଅଟନ୍ତି ଅର୍ଜୁନ !
ଯେଉଁମାନେ ସବୁ ପ୍ରାଣୀମାନଙ୍କୁ
ସମାନ କରି ଦେଖନ୍ତି, ଆଦ୍ଭୁଣି
ଇନ୍ଦ୍ରିୟମାନଙ୍କୁ ନିରୋଧି ଯତ୍ନର ସହ
ଇନ୍ଦ୍ରିୟାଗୋଚର ମାୟାମାନଙ୍କୁ ବରଜି
ନିର୍ବିକାର ହୋଇ ପରବ୍ରହ୍ମ ରୂପେ ମୋତେ
କରନ୍ତି ଅର୍ଚ୍ଚନା,
ସେହିମାନେ ହିଁ କେବଳ ଲଭନ୍ତି ହେ ମୋତେ ।
ଯେମାନେ ଅବ୍ୟକ୍ତ ବ୍ରହ୍ମ ଆସକ୍ତମନା,
ସେମାନେ ଲଭନ୍ତି ବେଶୀ ଦୁଃଖ ହେ ଅର୍ଜୁନ !
ସିଦ୍ଧି ଲାଭ କରିବାକୁ ।
ଯେଣୁ ହେ ସେମାନେ ଦେହଧାରୀ, ଗୁଣହୀନ,
ବ୍ରହ୍ମ ବିଷୟକ ରତି ଲଭନ୍ତି କଷ୍ଟରେ ।
ହେ ପାର୍ଥ ! ଯେମାନେ ମୋଠାରେ ସକଳ କର୍ମ
କରି ସମର୍ପଣ, ଏକାନ୍ତେ ଆସକ୍ତ ରହି
କେବଳ ମୋ ପ୍ରତି ଭକତି କରନ୍ତି ନିତି
ଭଜନେ ଧ୍ୟାନରେ ସେମାନଙ୍କୁ ପାରକରେ
ମୁଁ ଭବ-ବନ୍ଧନୁ ।
ମୋର ଯେତେ ଭକ୍ତ ଥାନ୍ତି ମୋଠି ଅନୁରକ୍ତ,
ମୁଁ ତାଙ୍କୁ ଜନ୍ମ-ମରଣ-ଶୀଳ ଏ ସଂସାରୁ
ସମ୍ଭାଳେ ଆଶ୍ରୟ ଦେଇ, ତେଣୁକରି ପାର୍ଥ !
ମୋଠାରେ ତୁମର ବୁଦ୍ଧି ମନକୁ ଲଗାଅ ।
ଦେହାନ୍ତେ ପାଇବ ମୋତେ କରନା ସଂଶୟ ।
ଯଦି ତୁମେ ଅସମର୍ଥ ମଣୁଅଛ ମନେ,
ସ୍ଥିର କରି ରଖିବାକୁ ମୋହଠାରେ ମନ,
ସାଧ ହେ ଅଭ୍ୟାସ-ଯୋଗ ଯେବେ ଇଚ୍ଛା କର
ମୋତେ ପାଇବା ପାଇଁକି ।
ଏଥିରେ ଅକ୍ଷମ ଯେବେ ହୁଅ ହେ ଅର୍ଜୁନ !

ତେବେ ମୋର ପ୍ରୀତି ପାଇଁ କରଯାଅ କର୍ମ ।
ମୋର ପାଇଁ କର୍ମ ଯେବେ କରଯିବ ତୁମେ,
ତଳେ ତଳେ ସିଦ୍ଧି ଆସି ମିଳିବ ତୁମକୁ ।,
ଏହାତକ ତୁମେ ଯଦି କରି ନ ପାରିବ
ସଂଯତ ହୋଇଣ, ସର୍ବ କର୍ମ ଫଳ ଆଶା
ଛାଡ଼ିଛୁଡ଼ି ଦେଇ ମୋ' ପାଖେ ଶରଣ ପଶ ।
ଅଭ୍ୟାସ ଅପେକ୍ଷା ଶ୍ରେଷ୍ଠ ହୋଇଅଛି ଜ୍ଞାନ,
ଜ୍ଞାନର ଅପେକ୍ଷା ଶ୍ରେଷ୍ଠ ଅଟଇ ହେ ଧ୍ୟାନ ।
ଧ୍ୟାନରୁଂ ଅପେକ୍ଷା ଶ୍ରେଷ୍ଠ କର୍ମଫଳ-ତ୍ୟାଗ ।
କର୍ମଫଳ ଅନ୍ତେ ମିଳେ ସୁଃଶାନ୍ତି ନଃଶ୍ଚ ।
ଯାର ନାହିଁ ଦ୍ୱେଷ ସଂସାରେ କାହାରି ପ୍ରତି,
ସେ ଧ୍ୟକ୍ତି ହିତୈଷୀ, ଦୟାଳୁ, ମମତାଶୂନ୍ୟ,
ଅହଂକାର ଯାର ନାହିଁ, ସୁଖେଦୁଃଖେ ସମ—
ଜ୍ଞାନ ଯାର ପୁଣି, ସିଏ ଅଟେ କ୍ଷମାଶୀଳ,
ସନ୍ତତ ସନ୍ତୁଷ୍ଟ, ଯୋଗାଭ୍ୟାସୀ, ଜିତେନ୍ଦ୍ରିୟ,
ମୋ ଭକ୍ତିରେ ରତ, ସିଏ ଅରପିଣ ଥାଏ
ମୋତେ ବୁଦ୍ଧି ମନ, ଯାର ନାହିଁ ଅବିଶ୍ୱାସ,
ସେହି ବ୍ୟକ୍ତି ମୋର ପ୍ରିୟ ଅଟଇ ଅର୍ଜୁନ !
ଯାହା ପାଇଁ କେହି ଉଦ୍‌ବିଗ୍ନ ନୁହଇ କେବେ,
ହର୍ଷ ଦ୍ୱେଷ ଭୟ ଯାହାର ପାଇଛି ଲୋପ,
ଆକୁଳତା ନାହିଁ ଯାର, ସେହି ମୋର ପ୍ରିୟ !
ଲଭ୍ୟ ଦ୍ରବ୍ୟ ପାଇଁ ଯେତୁ ହୁଏନା ବିକଳ,
ତହିଁରେ ଯାହାର ସ୍ପୃହା ନାହିଁ ହେ ଅର୍ଜୁନ !
ଅନ୍ତରେ ବାହାରେ ସିଏ ସଦା ଶୁଚିବନ୍ତ,
ଆଳସ୍ୟବିହୀନ, ପୁଣି ନୁହେ ପକ୍ଷପାତୀ,
ମର୍ମବ୍ୟଥା ନାହିଁ ଯାର, କରେ ନା ଉଦ୍ୟମ
ସର୍ବ କର୍ମ ପାଇଁ, କେବଳ ନିଷ୍କାମ କର୍ମ

କରୁଥାଏ ଯିଏ, ସେହି ବ୍ୟକ୍ତି ମୋର ପ୍ରିୟ ।
ଯିଏ ହର୍ଷ ନୁହଁ ପ୍ରିୟ ପଦାର୍ଥ ଲାଭରେ
କିବା ପ୍ରିୟ କାର୍ଯ୍ୟ ସାଧନରେ, ସେ ମୋ ପ୍ରିୟ ।
ଅପ୍ରିୟ ଦ୍ରବ୍ୟରେ ହୁଏ ନାହିଁ ବିମରଷ,
ଦ୍ୱେଷ, ଶୋକହୀନ, ପାପ ପୁଣ୍ୟ ପରିତ୍ୟାଗୀ,
କାମନାରହିତ, ମୋର ଭକ୍ତ-ଅନୁରାଗୀ
ଶୁଭ ଅଶୁଭରେ ମମତା ନାହିଁ ଯାହାର,
ସେହି ମୋର ପ୍ରିୟ । ଶତ୍ରୁ ମିତ୍ର ଭାବ ଯାର
ନାହିଁ କଦାଚନ, ମାନ ଅପମାନ, ଶୀତ
ଉଷ୍ଣ, ସୁଖ ଦୁଃଖ ଯାହାରେ ସମାନ ସଦା,
ରହିତ ଯେ ସର୍ବ ସଙ୍ଗ, ସେହି ମୋର ପ୍ରିୟ ।
ନିନ୍ଦା ସ୍ତୁତି ଯିଏ ମଣଇ ସମାନ ସଦା,
ମଉନ ରହଇ କଥାକୁ ସଂଯତ କରି,
ସନ୍ତୁଷ୍ଟ ରହଇ ଯେତେ ଅଳ୍ପ ପାଇଲେ ବି,
ଯାହାର ନିର୍ଦ୍ଦିଷ୍ଟ ଘରଦ୍ୱାର ନାହିଁ କାହିଁ,
ଯିଏ ସ୍ଥିରମତି, ଭକ୍ତିମାନ ଅଟଇ ଯେ,
ସେହି ମୋର ପ୍ରିୟ ଭକ୍ତ ଜାଣ ହେ ଅର୍ଜୁନ !
ଅମୃତର ସମ ଏହି ଧର୍ମର ସାରକୁ
ଯେ ବୁଝି ପାରଇ, ମୋର ଧ୍ୟାନେ ମନଦେଇ
ଉପାସନା କରେ, ମୋହଠାରେ ଶ୍ରଦ୍ଧାବାନ,
ସେହି ମୋ ପରମ ଭକ୍ତ ଜାଣିବ ଅର୍ଜୁନ !"

## ତ୍ରୟୋଦଶ ଅଧ୍ୟାୟ

### ପ୍ରକୃତି-ପୁରୁଷ-ବିବେକ-ଯୋଗ

ଅର୍ଜୁନ କହିଲେ, "ଆହେ ଜନାର୍ଦ୍ଦନ ! ମୋତେ କହନ୍ତୁ ବୁଝାଇ
ପ୍ରକୃତି ପୁରୁଷ, ଜ୍ଞାନ ଜ୍ଞାତବ୍ୟ ବସ୍ତୁର
ତତ୍ତ୍ୱରାଶି ଯେତେ ସବୁ, ଜାଣିବାକୁ ଇଚ୍ଛା
ମୋର ହେଉଛି ପ୍ରବଳ ।"

ଶ୍ରୀକୃଷ୍ଣ କହିଲେ, "ହେ କୁନ୍ତୀନନ୍ଦନ, ଶୁଣ—
ଏ ଶରୀର କ୍ଷେତ୍ର, ଏହି ଦେହର ତତ୍ତ୍ୱକୁ
ଜାଣେ ଭଲକରି ଯେହୁ, ସେହି ହେ କ୍ଷେତ୍ରଜ୍ଞ ।
ଆହେ ଧନଞ୍ଜୟ ! ସକଳ କ୍ଷେତ୍ରରେ ମୁହିଁ
ଅଟଇ କ୍ଷେତ୍ରଜ୍ଞ (ଆତ୍ମା) । ଯାହାର ଅଛି ଏ ଜ୍ଞାନ
ପୃଥକ୍ ହୋଇଣ, ପ୍ରକୃତ ଅଟେ ତାହାର
ଜ୍ଞାନ ହେ ଅର୍ଜୁନ ! ସେହି ମୋର ଭକ୍ତ ବୋଲି
ଜାଣିଥା ନିଶ୍ଚୟ, ଯେହି ଯେ ଶରୀରରୂପୀ
କ୍ଷେତ୍ର, ସେ କିପରି ଧର୍ମପରିପୂର୍ଣ୍ଣ ପୁଣି
ଇନ୍ଦ୍ରିୟ ବିକାରୀ ପ୍ରକୃତି ପୁରୁଷ ଯୋଗେ (ମିଳନରେ)
ଉତ୍ପତ୍ତି କିପରି, ସ୍ଥାବର ଜଙ୍ଗମ ଭେଦେ
ପୃଥକ କିପରି, ଆଉ ସେ କ୍ଷେତ୍ରଜ୍ଞ କିଏ,
ପୁଣି ତା ପ୍ରଭାବ କିପରି, ତାହାସବୁ ମୁଁ
ସଂକ୍ଷେପରେ ତୁମ ଆଗେ କହୁଅଛି ଶୁଣ ।
ବଶିଷ୍ଠାଦି ଋଷି, ଋଗ୍‌ବେଦ ଆଦି ବେଦ
ଓ ଉପନିଷଦମାନେ ବିବିଧ ପ୍ରକାରେ
ନିରୂପଣ କରିଅଛନ୍ତି ହେ ଧନଞ୍ଜୟ !
ଭୂମି, ଜଳ, ଅଗ୍ନି, ପବନ, ଆକାଶ—ଏହି
ପଞ୍ଚ ମହାଭୂତ, ଅହଂକାର ବୁଦ୍ଧି ପୁଣି
ଦଶ ଯେ ଇନ୍ଦ୍ରିୟ; ଏହି ଇନ୍ଦ୍ରିୟାନୁଭୂତ
ଇଚ୍ଛା, ଦ୍ୱେଷ, ସୁଖ, ଦୁଃଖ, ଯାଙ୍କର ସମଷ୍ଟି,
ଦେହ ଓ ଚେତନା, ଧୈର୍ଯ୍ୟ ଆଦି ବିକାର
ସହିତ କ୍ଷେତ୍ରର ବିଷୟ ସଂକ୍ଷେପରେ
କହିଲି ତୁମକୁ । ନିଜକୁ ଯେ ବଡ଼ ବୋଲି
ନ ମଣି, ପ୍ରଶଂସା କରେ ନାହିଁ ଆପଣାକୁ;
ହିଂସା ଯେ କରେନା, ଦୋଷ ଯେବେ ହୁଏ କାର
ଦେଖି କରେ କ୍ଷମା, ଗୁରୁ ସେବା କରଇ ଯେ
ସରଳ ଭାବରେ, ପବିତ୍ର ଭାବେ ଜୀବନ

କରେ ଯେ ଯାପନ, ସତ୍ତ୍ୱ କାର୍ଯ୍ୟରେ ନିଷ୍ଠା ଯାର
ଥାଏ ବରାବର, ବିଷୟ-ସଙ୍ଗକୁ ଯିଏ
କରେ ପରିହାର, ଭାବନାମାନ ଯାହାର
ଅହଙ୍କାରହୀନ, ଆତ୍ମାକୁ ଯେ ନିରନ୍ତର
କରଇ ସଂଯତ; ଜରା, ରୋଗ, ମୃତ୍ୟୁ, ଜନ୍ମେ
କରଇ ଯେ ଦୁଃଖ; ପୁତ୍ର, ପୁତ୍ରୀ, ଦାରା, ଗୃହେ
ମାୟା ନାହିଁ ଯାର; ବିଷୟ, କର୍ମେ ଆସକ୍ତ
ନ ଥାଏ ଯାହାର; ଐକାନ୍ତିକ ଭକ୍ତି ଯାର
ଈଶ୍ୱରଙ୍କଠାରେ; ଯା ଚିତ୍ତ ଅଟଳ ରହେ
ସଂପଦେ ବିପଦେ, କରଇ ବସତି ଯିଏ
ଏକାନ୍ତ ନିର୍ଜନେ, ଯାର ଇଚ୍ଛା ନୁହେ କେବେ
ରହିବାର ପାଇଁ ଲୋକସମାଗମ ସ୍ଥାନେ,
ରହିଥାଏ ନିଷ୍ଠା ଯାର ହେ ତତ୍ତ୍ୱ ଜ୍ଞାନରେ,
ବାସନା ଯାହାର ତତ୍ତ୍ୱ ଅନୁସନ୍ଧାନରେ,
ସେହି ତତ୍ତ୍ୱଜ୍ଞାନୀ, ଆଉ ସବୁ ଜ୍ଞାନହୀନ
ଜାଣ ହେ ଅର୍ଜୁନ ! ଯାହା ଜାଣିବା ଉଚିତ,
ସେହି ଜ୍ଞେୟ ତତ୍ତ୍ୱ କହିବି ଶୁଣ ହେ ପାର୍ଥ !
ଯାହାକୁ ଜାଣିଲେ ମୁକତି ଲଭିବା ହେବ
ନିଶ୍ଚୟ ସହଜ । ଆଦି ଅନ୍ତ ନାହିଁ ଯାର,
ଯା ମୋହର ରୂପ ତାହା ଛଡ଼ା ନୁହେ କିଛି,
ନୁହନ୍ତି ସେ ସତ କି ଅବା ଅସତ କେବେ ।
ବ୍ରହ୍ମ ବୋଲି ଯାହା ସେହି ଅଟନ୍ତି ବିଦିତ,
ସବୁଠି ତାଙ୍କର କର, ମୁଖ, ଚକ୍ଷୁ, ଶିର, ଚରଣ ଆହୁରି ।
ସବୁଠି ତାଙ୍କର କାନ, ବ୍ୟାପିଅଛନ୍ତି ସେ ଚରାଚର ସୃଷ୍ଟିଆକ୍ରେ
ଇନ୍ଦ୍ରିୟର ଗୁଣସବୁ ପ୍ରକାଶନ୍ତି ସେହି !
କିନ୍ତୁ ହେ ଅର୍ଜୁନ ! ତାଙ୍କର ନାହିଁ ଇନ୍ଦ୍ରିୟ ।
ସବୁ ଧରନ୍ତି ସେ, ହେଲେହେଁ ବି ସଙ୍ଗହୀନ
ଯଦିବା ସମ୍ପୂର୍ଣ୍ଣ ଗୁଣହୀନ ଅଟନ୍ତି ସେ,

ସତ୍ତ୍ୱ ଆଦି ଗୁଣ ପାଳନ୍ତି ସେ ବରାବର ।
ସକଳ ଅନ୍ତରେ ପୁଣି ବାହାରେ ଅଛନ୍ତି ।
ସ୍ଥାବର ଜଙ୍ଗମ ସର୍ବ ଅଟନ୍ତି ସେ ନିଜେ ।
ଚର ଓ ଅଚର ସବୁଠି ଅଛନ୍ତି ବ୍ୟାପି ।
ଯେଣୁ ଅତି ସୂକ୍ଷ୍ମ, ଜାଣି ହୁଅନ୍ତିନି କେବେ ।
ରହନ୍ତି ସେ ଦୂରେ ପୁଣି ଅତି ନିକଟରେ ।
ହେଲେ ବି ଅଭିନ୍ନ, ରହନ୍ତି ସେ ଭିନ୍ନ ଭିନ୍ନ
ସକଳ ଭୂତରେ । ପୋଷଣକାରୀ (ଭର୍ତ୍ତା) ଅଟନ୍ତି
ସବୁ ପ୍ରାଣୀଙ୍କର ।
ସଂହାର-କରତା ପୁଣି ସୃଷ୍ଟିକର୍ତ୍ତା ସେହି ।
ଅଛନ୍ତି ଜ୍ୟୋତିଃ ରୂପରେ ରବି ଚନ୍ଦ୍ର ତାରା
ଆଦି ଜ୍ୟୋତିଷ୍କ ଶରୀରେ ।
ଅଜ୍ଞାନ ଅନ୍ଧାର ଅତୀତ ସେ ବୋଲି କହନ୍ତି ଜଗତ ।
ବୁଦ୍ଧିରେ ବୃତ୍ତିରେ ଥାନ୍ତି ସେହି ପ୍ରକାଶିତ ।
ସେହି ଜ୍ଞାନ ଜ୍ଞେୟ ତତ୍ତ୍ୱ ।
ଜ୍ଞାନ ବଳେ ଖାଲି ଜାଣି ହୁଅନ୍ତି ସେ ପାର୍ଥ !
ସବୁ ହୃଦୟରେ ଅଛନ୍ତି ସେ ସବୁବେଳେ ।
ସଂକ୍ଷେପେ କହିଲି କ୍ଷେତ୍ର, ଜ୍ଞାନ ଏବଂ ଜ୍ଞେୟ
ବିଷୟେ ତୁମକୁ । ଏହିସବୁ ତତ୍ତ୍ୱ ଜାଣି
ମୋର ଭକ୍ତମାନେ ଲଭନ୍ତି ମୋହର ଭାବ ।
ପ୍ରକୃତି ପୁରୁଷ ଦୁହେଁ ଅଟନ୍ତି ଅନାଦି ।
ଜାଣ ହେ ଅର୍ଜୁନ ! ଇନ୍ଦ୍ରିୟ ଦେହାଦି ସବୁ ପ୍ରକୃତି ବିକାର ।
ପ୍ରକୃତି ସମ୍ଭୂତ ସୁଖ ଦୁଃଖ ଗୁଣସବୁ,
ପ୍ରକୃତି କାରଣ ଦେହ ଇନ୍ଦ୍ରିୟ ଚାଳନା (କାମ କରାଇବା)
ପୁରୁଷର ସୁଖ ଦୁଃଖ ଭୋଗର କାରଣ ।
ପ୍ରକୃତି ଦେହରେ ଥାଏ ପୁରୁଷ ସତତ,
ପ୍ରକୃତିର ଗୁଣମାନ ତେଣୁ ସେ ଭୋଗଇ ।
ଏହି କାରଣରୁ ସତ୍ ବା ଅସତ୍ ଯୋନି ହୁଅଇ ପ୍ରାପତ ସିଏ

ଏ ଦେହରେ ଯିଏ ବସେ (ବାସକରେ), ସେହି ଅଟେ ଆତ୍ମା ।
ପରମ ପୁରୁଷ ସେହି, ପ୍ରକୃତି କରମ ଦେଖନ୍ତି ସର୍ବଦା ।
ଇନ୍ଦ୍ରିୟ ପାଳନକର୍ତ୍ତା ସେହି ହେ ଅର୍ଜୁନ !
ପ୍ରକୃତି କରମ ସେହି କରନ୍ତି ଗ୍ରହଣ ଅନୁମୋଦନ),
ନିର୍ଲିପ୍ତ ହେଲେହେଁ ଯିଏ କର୍ମଫଳଭୋଗୀ
ବୋଲି ହୁଅନ୍ତି ପ୍ରଖ୍ୟାତ ।
ପ୍ରକୃତି ପୁରୁଷ ତତ୍ତ୍ୱ ଜାଣଇ ସଗୁଣେ,
ଆତ୍ମ ଦରଶନ ସେହି କରଇ ଜଗତେ ।
ପୁନର୍ଜନ୍ମ ନାହିଁ ତାର । ମୁକ୍ତିର ସପକ୍ଷ
ସକଳ ଅବସ୍ଥା ତାର । କେହି କେହି ଅବା
ଦେଖନ୍ତି ଆତ୍ମାରେ ମୋତେ ଧ୍ୟାନ ପ୍ରଭାବରେ ।
କେହି ସାଂଖ୍ୟଯୋଗେ, ଦେଖେ କେହି କର୍ମଯୋଗେ
ଆତ୍ମାକୁ ଶରୀରେ ।
ଜୀବନ ସାର୍ଥକ ହୁଏ ତାଙ୍କର ଅର୍ଜୁନ !
ଏସବୁ ବାଟର ତଥ୍ୟ ନ ପାଇ ପାରିଣ
ଆହୁରି କେତେକ ଅନ୍ୟ ଉପଦେଶ ଶୁଣି,
କରନ୍ତି ଭଜନ ମୋତେ ତାକୁ ସତ ମଣି,
ସେହି ଶ୍ରବାଶ୍ରୟୀ ହୋଇ,
ହେଲେ ବି ହୁଅନ୍ତି ସବୁ ମୁକତିର ଯୋଗ୍ୟ ।
ସ୍ଥାବର ଜଙ୍ଗମ ଯେତେ ସୃଷ୍ଟିରେ ଜନମ
କ୍ଷେତ୍ରଜ୍ଞ ଓ କ୍ଷେତ୍ର ମିଳନ ତାର କାରଣ ।
ରହିଛନ୍ତି ସଦା ସର୍ବଭୂତେ ସମାନ ଯେ
ଯାହାଙ୍କର ନାହିଁ ଲୟ,
ଜଗତଟା ଯାକ ହୋଇଲେ ବିଲୟ,
ପରମ ଈଶ୍ୱର ସେହି ନିଶ୍ଚୟ ଅର୍ଜୁନ !
ତାଙ୍କୁ ଯେ ଦେଖି ପାରିଛି
ସେହି ହିଁ ପ୍ରକୃତଦର୍ଶୀ ଜାଣ ହେ ଅର୍ଜୁନ !
ନିତ୍ୟ ଶାନ୍ତି ତାର ପରିଶେଷରେ ହୁଅଇ ।

ଯେ ଦେଖଇ ପୁଣି ଈଶ୍ୱର ସର୍ବତ୍ର ସମ,
ଆତ୍ମଘାତୀ ନୁହେ, ଅନ୍ତେ ସେ ଲଭେ ସଦ୍‌ଗତି ।
ଯେ ଦେଖି ପାରଇ ପ୍ରକୃତି କରୁଛି ସବୁ
ଆତ୍ମା କରୁ ନାହିଁ କିଛି, ପ୍ରକୃତ ଦରଶୀ
ସେହି ହେ ଅର୍ଜୁନ ! ସକଳ ଜୀବେ ପାର୍ଥକ୍ୟ
ଯେବେ କେ ସାଧକ ନ ଦେଖି ଦେଖଇ ଏକ
କରି ପରଂବ୍ରହ୍ମ ସବୁ ପ୍ରାଣୀଙ୍କଠାରେ
ହୋଇଅଛି ବ୍ୟକ୍ତ, ତାଙ୍କଠାରୁ ଏ ଭିନ୍ନତ୍ୱ,
ଏହି ଅନୁଭବ କରି ପାଏ ବ୍ରହ୍ମ ଭାବ ।
ନିର୍ଗୁଣ ଓ ଆଦିହୀନ ବୋଲି ପରମାତ୍ମା ନିର୍ବିକାର ସେହି ।
ଶରୀରରେ ରହି ମଧ୍ୟ
କର୍ମଫଳ ଲିପ୍ତ କେବେ ନୁହନ୍ତି ଅର୍ଜୁନ !
ସୁଗନ୍ଧେ, ଦୁର୍ଗନ୍ଧେ, ପଙ୍କେ ସକଳ ଶରୀରେ,
ସମାନ ଆତ୍ମାରେ ରହୁଥିଲେ ନିତ୍ୟ ମଧ୍ୟ
ନୁହନ୍ତି ସେ ଲିପ୍ତ ତହିଁ କେବେହେଁ ଅର୍ଜୁନ !
ଯେମନ୍ତ ତପନ ଏକା କରଇ ପ୍ରକାଶ
ଜଗତଟା ଯାକ, ସେପରି କ୍ଷେତ୍ରଜ୍ଞ ଏକା
ସକଳ କ୍ଷେତ୍ରକୁ କରି ଦିଅଇ ପ୍ରକାଶ ।
କ୍ଷେତ୍ରଜ୍ଞ କ୍ଷେତ୍ରର ଭେଦ ମୁକ୍ତ ପ୍ରକୃତିରୁ ।
ଜାଣନ୍ତି ଯେମାନେ ଜ୍ଞାନବଳେ ହୃଦପୁରେ
ଏହି ଦୁଇ ତତ୍ତ୍ୱ, ଲଭନ୍ତି ସେମାନେ ନିଶ୍ଚୟ
ଚରମ ପରମ ଶାନ୍ତି ମୁକତିଧାମରେ,
ଜାଣ ହେ ଅର୍ଜୁନ !"

# ଚତୁର୍ଦ୍ଦଶ ଅଧ୍ୟାୟ

## ଗୁଣତ୍ରୟବିଭାଗ ଯୋଗ

ଶ୍ରୀକୃଷ୍ଣ କହିଲେ, "ପାର୍ଥ !
ଶୁଣ ମୁଁ କହିବି ଯାହା ସର୍ବଶ୍ରେଷ୍ଠ ଜ୍ଞାନ ।
ମୁନିଜନମାନେ ଏହି ଜ୍ଞାନ ଲଭ କରି
ଛୁଟାଇ ଅଛନ୍ତି ଏହି ଶରୀର ବନ୍ଧନ ।
ଏହାର ଆଶ୍ରୟେ ରହି ଯେସବୁ ପ୍ରକାରେ
ଅରଜ ପାରନ୍ତି ସିଏ ମୋହର ସ୍ୱରୂପ,
ପୁନର୍ଜନ୍ମ ହୁଏ ନାହିଁ ତାହାର ସଂସାରେ ।
ପ୍ରଳୟ କାଳରେ ମଧ ଭୋଗେ ନାହିଁ କଷ୍ଟ ।
ଗର୍ଭ ଧରିବାର ସ୍ଥାନ ଅଟେ ମୋ ପ୍ରକୃତି ।
ସୃଷ୍ଟି-ବୀଜ ତହିଁ ମୁହିଁ କରଇ ବପନ ।
ଚରାଚର ସର୍ବଭୂତ ଜନମନ୍ତି ତହୁଁ ।
ସୃଷ୍ଟି ସଂଜନନ ମୋର ଅଟେ ଏ ଅର୍ଜୁନ !
ଯେ ମୂର୍ତ୍ତି ସକଳ ଜନ୍ମନ୍ତି ସର୍ବ ଯୋନିରେ
ଜନକ ତାଙ୍କର ମୁହିଁ, ଜନନୀ ପ୍ରକୃତି ।
ସତ୍ତ୍ୱ, ରଜ, ତମ, ଗୁଣ ପ୍ରକୃତିରୁ ଜାତ ।
ଅବ୍ୟୟ ଆତ୍ମା ଯେ, ଦେହେ ହୁଅଇ ବନ୍ଧନ ।
ପ୍ରଥମ ଗୁଣଟି ସତ୍ତ୍ୱ ଜାଣ ହେ ଅର୍ଜୁନ !
ନିରମଳ, ସ୍ୱଚ୍ଛ ଅଟେ ଏହାର ଧରମ ।
ସତ୍ତ୍ୱଗୁଣ ଦୋଷହୀନ ପ୍ରକାଶକ ଅଟେ ।
ସୁଖ ଜ୍ଞାନ ସଙ୍ଗେ ବାନ୍ଧି ରଖଇ ଆତ୍ମାକୁ ।
ଅନୁରାଗ ସୃଷ୍ଟି ହେଲି ରଜର ଲକ୍ଷଣ ।
ମନକୁ ଚଳନା କରେ ନ ପାଇବା ଦ୍ରବ୍ୟ ।
ତାହାର ଆସକ୍ତି ପ୍ରାପ୍ତ ବସ୍ତୁ ରଖିବାରେ ।
କରମ-ପାଶରେ ବାନ୍ଧି ରଖଇ ଆତ୍ମାକୁ ।
ଅଜ୍ଞାନରୁ ଜାତ ହୁଏ ତମୋଗୁଣ ଜାଣ ।

ଭ୍ରମ ଜନମାଏ ସର୍ବ ଜୀବଙ୍କର ମନେ ।
ପ୍ରମାଦ ଆଳସ୍ୟ ନିଦ୍ରା ହୁଏ ତହୁଁ ଜାତ ।
ଆତ୍ମାକୁ ରଖଇ ବାନ୍ଧି ତହିଁରେ ଅର୍ଜୁନ !
କରାଏ ନିଯୁକ୍ତ ସତ୍ତ୍ୱ ସୁଖେ, ରଜ କର୍ମେ,
ଜ୍ଞାନ ନଷ୍ଟ କରି ତମଃ ପକାଏ ପ୍ରମାଦେ ।
କାହାର କାହାର ସତ୍ତ୍ୱଗୁଣ, ରଜ, ତମ
କରି ପରାହତ ହୁଅଇ ପ୍ରବଳ ପାର୍ଥ !
କାହାର ବା ରଜ ଗୁଣ ସତ୍ତ୍ୱ ତମେ ମିଶି ହୁଅଇ ପ୍ରବଳ ।
ସେହିପରି କେବେ ତମଃ ହୁଅଇ ପ୍ରବଳ
ସତ୍ତ୍ୱ ରଜେ ପରାଜୟୀ ପୂର୍ବ କର୍ମଫଳେ ।
ଜ୍ଞାନ ଯେତେବେଳେ ଉଠେ ପ୍ରକାଶିତ ହୋଇ
ସର୍ବ ଇନ୍ଦ୍ରିୟ ଭିତରେ ଜାଣିବ ଅର୍ଜୁନ,
ସତ୍ତ୍ୱଗୁଣ ହୋଇଅଛି ସେଠାରେ ବର୍ଦ୍ଧିତ ।
ରଜୋଗୁଣ ବଢ଼ିଗଲେ ଜନମଇ ଲୋଭ ।
ନାନାବିଧ କର୍ମାରମ୍ଭେ ଜନ୍ମାଏ ପ୍ରବୃତ୍ତି ।
ସବୁବେଳେ ଅସ୍ଥିରତା ସର୍ବଦା ଅଶାନ୍ତ ।
ତୃଷ୍ଣା-ଲାଳସା ବଢ଼ି ଉଠଇ ଅର୍ଜୁନ !
ତମୋଗୁଣ ବୃଦ୍ଧି ହେଲେ କର୍ମରେ ଲାଗେନା
ମନ, ବିବେକ ହୁଅଇ ନଷ୍ଟ ହେ ଅର୍ଜୁନ !
କର୍ତ୍ତବ୍ୟ ହୁଏ ବିସ୍ମୃତ, ଅଥସ୍ଥ ହୁଅଇ
ମନ, ମୋହ ପାଇଁ ହୁଏ ବୁଦ୍ଧି ବିପର୍ଯ୍ୟସ୍ତ ।
ସତ୍ତ୍ୱଗୁଣ ବୃଦ୍ଧିବେଳେ ଯେ ମରଇ ପାର୍ଥ !
ପୁଣ୍ୟଲୋକ ପାଇ ତାର ହୁଏ ସ୍ୱର୍ଗଭୋଗ ।
ରଜୋଗୁଣ ବୃଦ୍ଧିବେଳେ ଲଭିଲେ ମରଣ,
କର୍ମାସକ୍ତ ନରଲୋକେ ହୁଅଇ ଜନମ ।
ତମୋଗୁଣ ବୃଦ୍ଧିବେଳେ ଜନମ ଲଭଇ
ଜୀବ ପଶ୍ୱାଦି ଯୋନିରେ ।
ପୁଣ୍ୟ କର୍ମଫଳ ସୁଖ ଅଟଇ ସାତ୍ତ୍ୱିକ ।

ତମର ଅଜ୍ଞାନ, ରଜୋଗୁଣ ଫଳ ଦୁଃଖ ।
ସତ୍ତ୍ୱରୁ ଜନ୍ମଇ ଜ୍ଞାନ, ଲୋଭ ରଜୋଗୁଣୁ,
ତମରୁ ଅଜ୍ଞାନ, ମୋହ ପ୍ରମାଦ ଜନମ ।
କରନ୍ତି ଗମନ ସ୍ୱର୍ଗେ ସତ୍ତ୍ୱଗୁଣୀ ଯେତେ ।
ରଜୋଗୁଣୀମାନେ ଲଭନ୍ତି ଜନମ ମର୍ତ୍ତ୍ୟେ ।
ତମୋଗୁଣୀମାନେ ପ୍ରମାଦ ମୋହ ଆଚ୍ଛନ୍ନ ।
ଭୁଞ୍ଜନ୍ତି ନରକ ପଶ୍ୱାଦି ଯୋନିରେ ଜନ୍ମି ।
ଯେ ଦେଖିପାରଇ ଶରୀରରେ କରୁଛନ୍ତି
ଗୁଣମାନେ କର୍ମ ଆଉ କେହି କରୁ ନାହିଁ ଗୁଣସବୁ ବିନା ।
ଗୁଣମାନଙ୍କଠୁଁ ଶ୍ରେଷ୍ଠ ସେ ଆତ୍ମା ପରମ ।
ସେତେବେଳେ ବ୍ରହ୍ମଭାବ ହୁଅଇ ସେ ପ୍ରାପ୍ତ ।
ଏ ଜୀବନେ ହୁଅଇ ଯେ ତ୍ରିଗୁଣ ଅତୀତ ।
ଏହି ତିନି ଗୁଣ ଦେହ ଉତ୍ପତ୍ତି କାରଣ ।
ଦେହୀ ଏମାନଙ୍କୁ ଯତ୍ନେ କରି ଅତିକ୍ରମ,
ଜନ୍ମମୃତ୍ୟୁ ଜରାବ୍ୟାଧି ଦୁଃଖରୁ ଉଦ୍ଧରି
ଶେଷରେ ଭୁଞ୍ଜଇ ସେହି ଅକ୍ଷୟ ଅମୃତ ।"
ପଚାରିଲେ ଅରଜୁନ, "କି ଲକ୍ଷଣ ଦେଖି
ଜଣାଯାଏ ଅତିକ୍ରମ କରିବା ତ୍ରିଗୁଣ ?
ତ୍ରିଗୁଣକୁ ଅତିକ୍ରମ କରିଛନ୍ତି ଯିଏ
କିବା ତାଙ୍କ ଆଚରଣ ?
କପରି କରନ୍ତି ତ୍ରିଗୁଣ ସେ ଅତିକ୍ରମ ?"
କହିଲେ ଶ୍ରୀକୃଷ୍ଣ—
"ସତ୍ତ୍ୱ ଧର୍ମ ଅଟେ ଜ୍ଞାନ, କର୍ମରେ ପ୍ରବୃତ୍ତି ଅଟେ ରଜର ଲକ୍ଷଣ
ତମୋଗୁଣ ଧର୍ମ ଅଟେ ମୋହ, ଧନଞ୍ଜୟ !
ଏହିସବୁ ଗୁଣଧର୍ମ ହୋଇଲେ ପ୍ରବଳ
ଯାହାଙ୍କର ହିଂସା ଦ୍ୱେଷ ହୁଏ ନାହିଁ ଜାତ,
ନୁହନ୍ତି ସେ ସୁଖୀ ସବୁ ହୋଇଲେ ନିବୃତ୍ତ ।
ଏସନ ଅବସ୍ଥା ଉପସ୍ଥିତ ହେ ଅର୍ଜୁନ !

ଜାଣିବ ହୋଇଛୁ, ଜୀବ ତ୍ରିଗୁଣ ଅତୀତ ।
ବିଚଳିତ ନୋହି ଗୁଣ ଧର୍ମ ପ୍ରବର୍ତ୍ତିଲେ
ଉଦାସୀନ ପରି ରହଇ ନିଶ୍ଚିନ୍ତ ସେହି ।
ଭାବଇ ଏସବୁ ଗୁଣମାନଙ୍କର କର୍ମ ।
ନୁହଇ ଚଞ୍ଚଳ ତେଣୁ ଅସ୍ଥ ରଖି ମନ ।
ସୁଖରେ ଦୁଃଖରେ ଯାର ଜ୍ଞାନ ହେ ସମାନ,
ଆତ୍ମରୂପୀ ହୋଇ ସିଏ ରହୁଥାଏ ସ୍ଥିର,
ପ୍ରିୟ ଅପ୍ରିୟକୁ ସିଏ ମଣଇ ସମାନ,
ମୃତ୍ତିକା ପଥର ସ୍ୱର୍ଣ୍ଣ ମଣେ ଏକାପର,
ପ୍ରଶଂସା ନିନ୍ଦାରେ ସିଏ ନୁହେ ବିଚଳିତ,
ସେହି ହିଁ ତ୍ରିଗୁଣାତୀତ ଜାଣିବ ଅର୍ଜୁନ !
ମାନ ଅପମାନ ମଣେ ଯେ ଏକାପରି,
ଶତ୍ରୁ ମିତ୍ର ବାଛେ ନାହିଁ ମଣଇ ସମାନ,
ନ ଥାଏ ଯେ ରତ କାମ୍ୟ କର୍ମ ସାଧନରେ,
ତାଙ୍କୁ କହନ୍ତି ହେ ପାର୍ଥ ! ତ୍ରିଗୁଣ ଅତୀତ ।
ଭକ୍ତିଭାବେ ମୋତେ ସିଏ କରୁଥାଏ ସେବା,
ଅତିକ୍ରମ କରେ ସିଏ ତ୍ରିଗୁଣ ସହଜେ ।
ମୋ ପ୍ରତି ନିଶ୍ଚଳା ଭକ୍ତି କରଇ ସମର୍ଥ
ଭକତଙ୍କୁ ମୋର ବ୍ରହ୍ମଭାବ ପାଇବାକୁ ।
ଯେହେତୁ ଅଟଇ ମୁହିଁ ବ୍ରହ୍ମର, ମୋକ୍ଷର,
ଶାଶ୍ୱତ ଧର୍ମର ପୁଣି ସୁଖର ପ୍ରତିମା ।

## ପଞ୍ଚଦଶ ଅଧ୍ୟାୟ

### ପୁରୁଷୋତ୍ତମ ଯୋଗ

ଅଶ୍ୱତ୍ଥ ବୃକ୍ଷର ସମ ଅଟେ ଏ ଶରୀର ।
ଉପରେ ମୂଳ ଏହାର ତଳେ ଶାଖାମାନ ।
ବେଦମାନେ ତାର ପତ୍ର ବଦିତ ଜଗତେ ।

ଯଦ୍ୱବା ଏହାର ବ୍ୟସ୍ତ ଅଛି ଅରଜୁନ,
ପ୍ରବାହରୂପେ ଅବ୍ୟସ୍ତ ଅବିଚ୍ଛେଦ୍ୟ ଯୋଗୁଁ
ଅନାଦି ବୋଲିଏ ଏହା ।
ସଂସାର ନୁହଇ ସ୍ଥିର ସେଣୁକରି ପାର୍ଥ !
ପରଦିନ ପ୍ରାତଃ ପାଏ ରହେ ନାହିଁ ଏହା ।
ତେଣୁ ତ ଅଶ୍ୱତ୍ଥ ବୋଲି କହନ୍ତି ଏହାକୁ ।
ବେଦଜ୍ଞ ପଣ୍ଡିତେ ଖାଲି ଜାଣନ୍ତି
ଏ ବୃକ୍ଷତତ୍ତ୍ୱ ହେ ଅର୍ଜୁନ !
ସତ୍ତ୍ୱ ରଜ ତମ ଗୁଣେ ହୁଅଇ ବର୍ଦ୍ଧିତ ।
ରୂପ, ରସ, ଗନ୍ଧ ଶବ୍ଦ ଆଦି ବିଷୟ ଯେ ନବପତ୍ର ସମ ତାର,
କେତେ ତା ପ୍ରଶାଖା ଶାଖା ତଳେ ଓ ଉପରେ
ବିସ୍ତାରିତ ହୋଇଛନ୍ତି ଏହି ବୃକ୍ଷଟିର ।
ଏହାର ପତର ମନୁଷ୍ୟଲୋକରେ
ଧର୍ମ ଅଧର୍ମର କର୍ତ୍ତା ।
କେତେକ ମୂଳ ତାହାର ବ୍ୟାପିଅଛି ତଳେ ।
ଏ ବୃକ୍ଷର ନାହିଁ ରୂପ କିମ୍ବା ଆଦି ଅନ୍ତ,
ନାହିଁ ମଧ୍ୟ ଅବସ୍ଥିତି ।
ବୈରାଗ୍ୟ-ଖଡ୍‌ଗରେ ଛେଦି ଏହାର ମୂଳକୁ,
ନିଃସଙ୍ଗ ଭାବରେ ଖୋଜିବ, ତା ପରେ ଯାଇଁ
ତତ୍ତ୍ୱଜ୍ଞାନ ପଦ (ମୋକ୍ଷପଦ), ଜଗତ ବିଧାନକର୍ତ୍ତା
ପୁଣି ମୂଳାଧାର ଅଟନ୍ତି ଯେଉଁ ପୁରୁଷ,
ତାଙ୍କର ଚରଣେ ଶରଣ ମୁଁ ପଶୁଅଛି
ଏହିପରି ଭାବ, ଦୃଢ଼ ଭକ୍ତି ସହ ହେଇ
ବୈଷ୍ଣବ ପଦକୁ କର ହେ ଅନୁସନ୍ଧାନ ।
ଯାହାଙ୍କର ମାୟା, ମୋହ, ମାନ, ଅଭିମାନ ନାହିଁ କିଛି ମନେ,
ଯାହାଙ୍କ ଆସକ୍ତି ସବୁ ହୋଇଅଛି ଦୂର,
କାମନାରାଶି ଯାହାର ହୋଇଅଛି ହତ,
ସୁଖ, ଦୁଃଖ, ରୂପ ଦ୍ୱନ୍ଦ୍ୱ ହୋଇଛି ଯେ ମୁକ୍ତ,

ସେହି ଆତ୍ମଜ୍ଞାନୀ ପ୍ରଭୃତି ବିବେକୀ ବିଦ୍ୱାନ,
ମରଣେ ଲଭନ୍ତି ଏକା ଶାନ୍ତ ମୋକ୍ଷଧାମ ।
ସାଧକଗଣ ଫେରନ୍ତି ନାହିଁ ଯେଉଁଠାରୁ ।
ତାହା ହିଁ ପରମ ଧାମ ଆମର ଅର୍ଜୁନ !
ଉଜ୍ଜ୍ୱଳ କରେନା ତାକୁ ରବି ଓ ଶଶାଙ୍କ,
ପାବକ କରିପାରେନା ଉଜ୍ଜ୍ୱଳ କଦାପି ।
ମୋର ସନାତନ ଅଂଶ ଜୀବରୂପେ ଥାଏ
ରହି ଏ ସଂସାରେ ପାର୍ଥ ! ଜାଣିଥା ଏତିକି ।
ପ୍ରକୃତିସ୍ଥ ପଞ୍ଚେନ୍ଦ୍ରିୟ ଆଉ ମନ ମିଶି
ଟାଣନ୍ତି ଇହ ସଂସାରେ । ପବନ ଯେପରି
ପୁଷ୍ପରୁ ସୁଗନ୍ଧ ହରି ନିଏ ଅନ୍ୟ ସ୍ଥାନେ ।
ଜୀବାତ୍ମା ସେପରି ଅନ୍ୟ ଦେହ ଆଶ୍ରା କଲେ
ନିଅଇ ଇନ୍ଦ୍ରିୟ ମନ ତା ସଙ୍ଗରେ ଟାଣି ।
କର୍ଣ୍ଣ, ଚକ୍ଷୁ, ଚର୍ମ, ନାସା, ରସନା ଓ ମନ
ଜୀବାତ୍ମା ଦେହରେ ରହି ଭୁଞ୍ଜନ୍ତି ବିଷୟ (ଶ୍ରବ୍ଦାଦି) ।
ଜୀବାତ୍ମା କିପରି ଦେହୁଁ ଦେହାନ୍ତର ଯାଏ,
କିପରି ସତ୍ତ୍ୱାଦି ଗୁଣେ ସଂଯୁକ୍ତ ହୋଇଣ
କରନ୍ତି ବିଷୟ ଭୋଗ ଶରୀରରେ ରହି
ଜ୍ଞାନୀ ହିଁ ଜାଣନ୍ତି ତାହା ।
ଅଜ୍ଞାନ କଦାପି ତାହା ପାରେ ନାହିଁ ଜାଣି ।
ଜିତେନ୍ଦ୍ରିୟ ଯୋଗୀମାନେ ନିଜ ଦେହ ମଧ୍ୟେ
ଦେଖନ୍ତି ଆତ୍ମାକୁ ତାଙ୍କର ସାଧନା ବଳେ ।
ଅବିବେକୀ ଜନ ପୁଣି ଅଜିତ-ଇନ୍ଦ୍ରିୟ
ଶତ ଚେଷ୍ଟା କଲେ ଦେଖି ପାରନ୍ତିନି ଆତ୍ମା ।
ଚନ୍ଦ୍ର, ସୂର୍ଯ୍ୟ, ଅଗ୍ନି ଠାରେ ଯେଉଁ ତେଜ ରହି
ଜଗତକୁ କରେ ଆଲୋକିତ, ସେହି ତେଜ
ମୋଠାରୁ ସମ୍ଭୂତ ।
ଅସୀମ ଶକ୍ତିରେ ମୋର ସ୍ଥାବର ଜଙ୍ଗମ

ଆଦି ପର୍ବଣୀମାନଙ୍କୁ ଧାରଣ କରିଛି
ମୁହିଁ ପୃଥିବୀରେ ପଶି ।
ସୁଧାରସମୟ ଚନ୍ଦ୍ର ରୂପକୁ ମୁଁ ଧରି
ଔଷଧ ସୃଷ୍ଟିକୁ କରୁଅଛି ରସଯୁକ୍ତ ।
ଜଠର ଅନଳ ରୂପେ ରହି ଦେହେ ଦେହେ
ସଙ୍ଗତରେ ଧରି ପ୍ରାଣ ଅପାନ ବାୟୁକୁ,
ଚର୍ବ୍ୟ, ଚୋଷ୍ୟ, ଲେହ୍ୟ, ପେୟ—ଏହି ଚାରି ଜାତି
ଅନ୍ନ କରେ ଜୀର୍ଣ୍ଣ ।
ସକଳ ହୃଦୟେ ଅନ୍ତର୍ଯ୍ୟାମୀ ରୂପେ ମୁହିଁ
ରହିଅଛି ଜାଣ ।
ଜଗତରେ ପ୍ରାଣୀଙ୍କର ସ୍ମୃତି-ଜ୍ଞାନ ହୁଏ
ମୋହଠାରୁ ଉତ୍ପନ୍ନ ।
ପୁଣି ମୁଁ ବିଲୁପ୍ତ କରେ ସେହି ସ୍ମୃତି-ଜ୍ଞାନ
ପ୍ରାଣୀଙ୍କ ଅନ୍ତରୁ, ସର୍ବ ବେଦ ମତେ ମୁହିଁ
ଜ୍ଞାନର ବିଷୟ (ଜ୍ଞେୟ), ଆଚାର୍ଯ୍ୟ ରୂପରେ କରେ
ବେଦାନ୍ତର ଅର୍ଥ ।
ବୁଦ୍ଧିରେ ପଶି ମୁଁ ବୁଝେ ବେଦଜ୍ଞାନ ସତ୍ୟ ।
ଜଗତରେ ଖ୍ୟାତ କ୍ଷର, ଅକ୍ଷର ପୁରୁଷ ।
ଆତ୍ମା ଅବିନାଶୀ ବୋଲି ଅକ୍ଷର ତା ଜାଣ ।
ମରଣଶୀଳ ଓ କ୍ଷର ଭୂତମାନେ ସବୁ ।
ପୁରୁଷ ପରମ ଆତ୍ମା ଏହାଠାରୁ ଭିନ୍ନ ।
କରେ ଯେ ବିଶ୍ୱପାଳନ ତିନିଲୋକବ୍ୟାପି,
ସେହି ମୁଁ ଅର୍ଜୁନ ! ଜାଣ ।
କ୍ଷରଣ୍ଟାତ ମୁହିଁ ଅକ୍ଷରଠାରୁ ଉତ୍ତମ ।
ତେଣୁ ସିନା ଲୋକେ, ବେଦେ ମୁଁ ପୁରୁଷୋତ୍ତମ ।
ମୋହମୁକ୍ତ ହୋଇ ମୋତେ ପୁରୁଷୋତ୍ତମ ମଣି ଯେ କରନ୍ତି
ମୋର ଭଜନ ମନନ, ସେ ଏକା ସର୍ବଜ୍ଞ
ଜାଣ ଏହି ଧର୍ମଧାମେ ।

ସଗୁଣ ନିର୍ଗୁଣ, ସାକାର ନିରାକାରବି
ଭାବ ଉପାସନା କରି ସିଦ୍ଧ ହୋଇଥାଏ
ସଂସାରେ ଅର୍ଜୁନ !
ଗୂଢ଼ତ ପବିତ୍ର ତତ୍ତ୍ୱ ବୁଝାଇ କହିଲି,
ଯା ଅଟେ ପରମ ସତ୍ୟ, ହେ କୁରୁନନ୍ଦନ !
ଯେ ବୁଝିପାରଇ ତତ୍ତ୍ୱ ସେ ହୁଏ କୃତାର୍ଥ ।
ତୁମେ ଯେ କୃତାର୍ଥ, ନାହିଁ ସନ୍ଦେହ ଟିକିଏ ।"

# ଷୋଡ଼ଶ ଅଧ୍ୟାୟ

## ଦୈବାସୁର ସମ୍ପଦ୍ ବିଭାଗ ଯୋଗ

ଶ୍ରୀକୃଷ୍ଣ କହିଲେ—"ପାର୍ଥ !
କହୁଛି ଛବିଶ ଗୁଣ ଦଇବୀ ଶକତି;
ସେଗୁଡ଼ିକ ସବୁ ମନେ ରଖିବ ଅର୍ଜୁନ !
ସର୍ବଦା ଅଭୟ୍ଯ ଚିତ୍ତଶୁଦ୍ଧି, ପୁଣି ଜ୍ଞାନ-
ମାର୍ଗେ ଚିତ୍ତ ଧରି, ଇନ୍ଦ୍ରିୟ ସଂଯମ ପୁଣି
ତପ ଆଚରଣ, ଦାନ, ସରଳତା ପୁଣି
ଶାସ୍ତ୍ର ଅଧ୍ୟୟନ, ତେଜସ୍ୱିତା, ଯାଗ ଯଜ୍ଞ
ଆଦି ଅନୁଷ୍ଠାନ, ଅହିଂସା, ଅକ୍ରୋଧ ପୁଣି
କାମନା ବର୍ଜନ, ଉଦାରତା, ଜୀବେ ଦୟା,
ଶାନ୍ତ, ସତ୍ୟକୁହା, କୁକର୍ମରେ ଲଜ୍ଜା, କ୍ଷମା,
ପୁଣି ନିର୍ଲୋଭତ୍ୱ, ମୃଦୁତ୍ୱ, ଅଚପଳତା,
ଶୁଚିତା ଓ ଧୈର୍ଯ୍ୟ, ନିରଭିମାନତା ପୁଣି
ବିଦ୍ରୋହହୀନତା ଏତିକ ଛବିଶ ଗୁଣ ।
ପୂର୍ବ ପୁଣ୍ୟ ଫଳେ ଯେ ଜନ ଜନ୍ମଇ ଭବେ
ଭୋଗ କରିବାକୁ ଏହି ଦଇବୀ ସମ୍ପତ୍ତି,
ସତ୍ତ୍ୱ ଗୁଣ ଯୋଗୁଁ ତାର ହୃଦୟରେ ଜାତ
ହୁଅନ୍ତି ଯଥାର୍ଥ ।

ଗର୍ବ ଦମ୍ଭ ତଥା କ୍ରୋଧ ଅନଅଭିମାନ,
ନିଷ୍ଠୁର ସ୍ୱଭାବାପନ୍ନ ପୁଣି ହେ ଅଜ୍ଞାନ
ଆସୁରୀ ସମ୍ପଦ ସବୁ ଅଟନ୍ତି ଏମାନ ।
ଆସୁରିକ ଜନମାନେ ଲଭନ୍ତି ଏସବୁ ।
କେବଳ ଦୈବୀ ସମ୍ପଦ ମୋକ୍ଷର କାରଣ ।
ଆସୁରୀ ସମ୍ପଦେ ହୁଏ ବନ୍ଧନ ଯାତନା ।
ହେ ପାଣ୍ଡୁନନ୍ଦନ ! ଶୋକ କର ନାହିଁ ବୃଥା ।
ତୁମର ଜନମ ଅଟେ ଦଇବୀ ସମ୍ପଦେ ।
ଦଇବୀ ଓ ଆସୁରିକ ଏ ଦୁଇ ପ୍ରକାରେ
ପ୍ରାଣୀ ହୋଇଛନ୍ତି ସୃଷ୍ଟ ଏ ସଂସାର କ୍ଷେତ୍ରେ ।
ଦଇବୀ ପ୍ରାଣୀର କଥା କହୁଛି ବିସ୍ତାର ।
ଆସୁରିକ ପ୍ରାଣୀ କଥା ଶୁଣ ତୁମେ ଥରେ ।
ଧର୍ମରେ ପ୍ରବୃତ୍ତି କିମ୍ବା ଅଧର୍ମେ ନିବୃତ୍ତି
ନାହିଁ ଯେଉଁମାନଙ୍କର, ସଦାଚାର, ଶୌଚ,
ସତ୍ୟ ତିଳେ ଦେଖାଯାଏ ନାହିଁ ତାଙ୍କଠାରେ
ଅସୁର ପ୍ରକୃତି ଜନ କହନ୍ତି ଜଗତେ
ମିଥ୍ୟା କାରବାର ପୂର୍ଣ୍ଣ ।
ଧର୍ମ ଅଧର୍ମର ମୂଳ କିଛି ନାହିଁ କାହିଁ ।
ଏଗୁଡ଼ାକ ଖାଲି ଲୋକମାନଙ୍କ ଛଳନା ।
ଫଳଦାତା ବୋଲି କେହି ନାହାନ୍ତି ଈଶ୍ୱର ।
ନାରୀ ଓ ପୁରୁଷ ଯୋଗୁଁ ସୃଷ୍ଟ ଏ ସଂସାର ।
କାମବଶ ନାରୀ ପୁରୁଷ ମିଳନ ଏହି
ସୃଷ୍ଟିର କାରଣ ।
ଅଳ୍ପବୁଦ୍ଧି ଓ ନିଷ୍ଠୁର ମୂର୍ଖ ଲୋକମାନେ
ଏହି ଯୁକ୍ତି ଦେଖାଇଣ ନାନା ପାପ କର୍ମ
କରନ୍ତି ସଂସାରେ, ପାର୍ଥ ! ବହୁ ଅମଙ୍ଗଳ
ତେଣୁ ତହିଁ ହୁଏ ଜାତ ।
ଯେ କାମନା କେବେହେଲେ ହେବ ନାହିଁ ପୂର୍ଣ୍ଣ

ସେପରି କାମନା ରଖି ହୃଦୟ ମଧ୍ୟରେ
ଦମ୍ଭ ଅଭିମାନ ଗର୍ବେ ହୋଇଣ ଉନ୍ମତ୍ତ
ମୋହବଶେ ଧରି ଶାସ୍ତ୍ର-ବିଗର୍ହିତ ଭାବ
ଅପବିତ୍ର ବ୍ରତ, ମୂର୍ଖ ଆଚରଣ କରି
କରନ୍ତି କରମ ।
ମରଣ ପର୍ଯ୍ୟନ୍ତ ରଖି ବିବିଧ ବିଷୟେ,
ପୂର୍ଣ୍ଣ ତାଙ୍କର ହୃଦୟ ବିଷୟଭୋଗରେ
ନିତ୍ୟ ରତ ରହିକରି,
କାମ ଭୋଗ ଖାଲି ଏକା ଅଟେ ପୁରୁଷାର୍ଥ,
ଏହା ଛଡ଼ା ଆଉ କାହିଁ ଅନ୍ୟ କିଛି କର୍ମ,
ଏଥିପାଇଁ ଖାଲି ଜୀବ, ରଖିଛି ଜୀବନ;
ଏହି କଥା ଭାବି ବାନ୍ଧିହୋଇ ଆଶା-ଫାଶେ,
କାମ କ୍ରୋଧ ବଶୁଁ ଆସକ୍ତ କୁମାର୍ଗେ ପାର୍ଥ !
କାମ ଭୋଗ ପାଇଁ ଅନ୍ୟାୟରେ ସଞ୍ଚିବାକୁ
ରତନାଦି ଧନ କରନ୍ତି ଯତନ ବେଶୀ ।
ଭାବନ୍ତି ସେମାନେ—
ହେଲା କରଗତ ମୋର ଏସବୁ ପଦାର୍ଥ ।
ଅନ୍ୟ ମନୋରଥ ମୋର ହୋଇଯିବ ପୂର୍ଣ୍ଣ ।
ଏତେ ଅଛି ଧନ ପୁଣି ଆଉ ହେବ ବେଶୀ ।
ଆଜ ମୋର ସେ ଶତ୍ରୁଟା ହେଲା ପରାଜିତ ।
ଆଉ ଯେତେ ଶତ୍ରୁ ଛନ୍ତି କରିବି ମୁଁ ହତ ।
ମୁହିଁ ଅଟେ ଏକା ପ୍ରଭୁ ଏହି ସକଳର ।
ସବୁ ସୁଖ ଭୋଗିବାରେ ମୋର ଅଧିକାର ।
ସବୁ ବିଷୟରେ ଏବେ ହୋଇଛି କୃତାର୍ଥ ।
ମୋ ସଙ୍ଗେ ସମାନ କେହି ହେବ ନାହିଁ ବଳେ ।
ଆଉ କେ ସମାନ ଅଛି ମୋ ସଙ୍ଗେ ମହୀରେ !
ଉଚ୍ଚ କୁଳେ ଜାତ ହୋଇ
ଏଡ଼େ ଧନବାନ୍ ?

କରିବ ମୁଁ ଯାଗଯଜ୍ଞ, ଦେବି ନାନା ଦାନ,
ମହା ମଉଜରେ ବସି ଯାପିବି ଜୀବନ ।
ଅଜ୍ଞାନମୋହିତ ହୋଇ ଏପରି ଭାବରେ
ଚିତ୍ତ ବିଚଳିତ କରି ନାନା କଳ୍ପନାରେ,
ମୋହଜାଳବଦ୍ଧ ହୋଇ ସେହି ମୂଢ଼ମାନେ
ରହନ୍ତି ଆସକ୍ତ ସଦା ବିଷୟଭୋଗରେ ।
ଅସୁର ପ୍ରକୃତି ଯୋଗୁଁ ସେହିମାନେ ଯାଇ
ପଡ଼ନ୍ତି ନରକେ ଶେଷେ ।
ବିନୟବର୍ଜିତ, ଆତ୍ମପରଶଂସାକାରୀ,
ଧନ ପାଇଁ ଗର୍ବ, ଅଭିମାନେ ଫୁଲିଉଠି,
ଲଙ୍ଘି ଶାସ୍ତ୍ର ବିଧି, ଗର୍ବ ଦମ୍ଭ ସହକାରେ
ନାଆଁକୁ ମାତ୍ରକେ ଖାଲି ଯଜ୍ଞ କରିବାରେ ।
ସେହି ମୂଢ଼ମାନେ ଅହଙ୍କାର ବଳ, ଦର୍ପ,
କାମ, କ୍ରୋଧ, ମୋହେ ବଶୀଭୂତ ହୋଇ ହିଂସା
କରନ୍ତି ଆତ୍ମଙ୍କୁ, ନିଜ ଆଉ ପର ଦେହେ ।
ଦୋଷ ଲଦିଦିଅନ୍ତି ସଜ୍ଜନମାନଙ୍କଠାରେ ।
ନିଷ୍ଠୁର ସ୍ୱଭାବ, ହିଂସ୍ର ନରାଧମଗଣ
ଅସୁର ପ୍ରକୃତି ନିଶ୍ଚେ ଜାଣିବ ଅର୍ଜୁନ !
ସେମାନଙ୍କୁ ଜନ୍ମ ଦେଉଁ ବାରମ୍ବାର ଭବେ,
ବାଘ ସାପଙ୍କର ଯୋନିରେ ଅର୍ଜୁନ ! ଜାଣି
ବହୁ ଜନ୍ମ ଯାଏ ।
ସେହି ମୂଢ଼ଜନମାନେ ଆସୁରୀ ଯୋନିରେ
ଜନ୍ମ ଲଭନ୍ତି କୌନ୍ତେୟ !
ଆତ୍ମଙ୍କୁ ନ ପାଇ କେବେ ସେସବୁ ଜନ୍ମରେ
ଜନମନ୍ତି ପରେ ବେଶୀ ନିକୃଷ୍ଟ ଯୋନିରେ ।
କାମ କ୍ରୋଧ ଲୋଭ—ଏ ତିନ ଗୋଟିକ ଅଟେ
ନରକକୁ ବାଟ ।
ଆତ୍ମାକୁ ବିନାଶ କରେ ଏହି ତିନ ପଥ ।

ତେଣୁ ଏ ତିନଙ୍କୁ ସଦା ଛାଡ଼ିବା ଉଚିତ ।
ଅଧୋଗତି ଆଣିଦିଏ ଏ ତିନି ମାରଗ ।
ଏଥିରୁ ମୁକତ ଯିଏ ହୁଅଇ କୌନ୍ତେୟ !
ସେମାନେ ଲଭି କରନ୍ତି ଆତ୍ମାର କଲ୍ୟାଣ ।
ତାହା ପରେ ଲଭନ୍ତି ସେ ଯେ ପରମଧାମ ।
ଶାସ୍ତ୍ରର ବିଧିମାନଙ୍କୁ କରିଣ ଲଙ୍ଘନ
ସ୍ୱଇଚ୍ଛାରେ ବିଚରଣ କରନ୍ତି ଯେମାନେ,
ସିଦ୍ଧି ଅବା ସୁଖ କେବେ ମିଳେନା ତାହାଙ୍କୁ ।
ମୋକ୍ଷରେ ବି ଅଧିକାର ରହେନା ତାଙ୍କର ।
କର୍ତ୍ତବ୍ୟ ଓ ଅକର୍ତ୍ତବ୍ୟ ନିର୍ଣ୍ଣୟେ ଅର୍ଜୁନ !
ଶାସ୍ତ୍ର ହିଁ ଅଟେ କେବଳ ତୁମର ପ୍ରମାଣ ।
ଶାସ୍ତ୍ରଲିଖିତ ବ୍ୟବସ୍ଥା ଅବଗତ ହୋଇ
ବିଧି ଅନୁଯାୟୀ କର୍ମ କରିବା ଉଚିତ ।"

# ସପ୍ତଦଶ ଅଧ୍ୟାୟ

## ଶ୍ରଦ୍ଧାତ୍ରୟ ବିଭାଗ ଯୋଗ

ପାର୍ଥ ପଚାରିଲେ, "ପ୍ରଭୁ ! ଯେ ଶାସ୍ତ୍ରବିଧାନ
ଲଙ୍ଘି, ଶ୍ରଦ୍ଧାର ସହିତ ପୂଜନ୍ତି, ଚଳନ୍ତି—
ସାତ୍ତ୍ୱିକ, ରାଜସୀ କିବା ତାମସୀ ଅଟଇ ?
କି ନିଷ୍ଠା ତାଙ୍କର ଅବା କହିବେ କି ମୋତେ
ଦୟାକରି ହେ ଅଚ୍ୟୁତ !"
ଉତ୍ତରିଲେ କୃଷ୍ଣ— "ଶୁଣ ହେ କୁନ୍ତୀନନ୍ଦନ !
ସାତ୍ତ୍ୱିକ, ରାଜସୀ ତାମସୀ ଶ୍ରଦ୍ଧା ଜୀବର
ଏ ତିନି ପ୍ରକାର ।
ପୂର୍ବଜନ୍ମ କର୍ମଫଳ ସଂସ୍କାରରୁ ଜାତ
ହୋଇଥାଏ ହେ ଅର୍ଜୁନ !
ଶୁଣ ଏବେ ତାହା କହୁଅଛି ମୁଁ ବିସ୍ତାରି ।

ଯେପରି ସଂସ୍କାର ଯାର, ହେ ଅନ୍ତଃକରଣ !
ସେହିପରି ଶ୍ରଦ୍ଧା ତାଙ୍କଠାରେ ହୁଏ ଜାତ ।
ଏ ସଂସାରେ ଜୀବ ଅଟନ୍ତି, ହେ ଶ୍ରଦ୍ଧାମୟ !
ଯାହାଙ୍କର ଶ୍ରଦ୍ଧା ଯେଉଁଭଳି, ସେହିପରି
ହୁଏ ତାଙ୍କ କର୍ମ ।
ସାତ୍ତ୍ୱିକ ଗୁଣୀ ମାନବେ ପୂଜନ୍ତି ଦେବତା ।
ରଜୋଗୁଣୀ ମାନବ ଯେ ପୂଜନ୍ତି ରାକ୍ଷସେ ।
ଯେଉଁମାନଙ୍କର ଅଟେ ତାମସୀ ପ୍ରକୃତି
ଭୂତ ପ୍ରେତାଦିମାନଙ୍କୁ କରନ୍ତି ଯେ ପୂଜା ।
ଗର୍ବ, ଦମ୍ଭ, ଅହଂକାରେ ପୁଣି ଦେହ ବଳେ
ଯେତୁ ହୁଅନ୍ତି ଆସକ୍ତ,
ବିବେକ-ରହିତ ଅଜ୍ଞାନୀ ଯେଉଁମାନେ
ଅନ୍ତର୍ଯ୍ୟାମୀରୂପୀ ଆମ୍ଭଙ୍କୁ ଯନ୍ତ୍ରଣା ଦେଇ,
ନିଜ ଶରୀରକୁ ପୁଣି ଦେହ ଉପାଦାନ
ସକଳ ଭୂତଙ୍କୁ
କଷ୍ଟ ଦେଇ କରଥାନ୍ତି ଅଶାସ୍ତ୍ରୀୟ ତପ
ଆଚରଣ, ସେହିମାନେ ଅସୁର ଜାଣିବ ।
ଯଜ୍ଞ ଦାନ, ତପ ଆଦି ତିନ ଜାତି ଗୁଣ,
ପୁଣି ମାନବମାନଙ୍କ ଆହାର ବିବିଧ ।
ଏସବୁରେ ଭେଦ ଯାହା କହିବି ଏଠାରେ
ମନ ଦେଇ ଶୁଣ ତାହା ।
ଯେ ଖାଦ୍ୟ ଖାଇଲେ, ବଢ଼ଇ ଆୟୁଷ ପୁଣି
ବଳ, ସୁଖ, ପ୍ରୀତି ।
ଉତ୍ସାହ ବଢ଼ାଏ ଯାହା, ଯେ ଖାଦ୍ୟ ଦେଖିଲେ
ମନ ହୁଅଇ ଉତ୍ଫୁଲ୍ଲ, ଘୃତାଦି ସଂଯୁକ୍ତ
ରୁଚିକର ପ୍ରିୟ ଖାଦ୍ୟ, ଅଟଇ ସାତ୍ତ୍ୱିକ ।
ଅତି ଉଷ୍ମ, ଅତି ତିକ୍ତ, ଅତି ଅମ୍ଳ ଲୁଣ,
ଅତି ରାଗ ରୁକ୍ଷ ଖାଦ୍ୟ (ରସହୀନ),

ନୀରସ, ବିଦାହୀ (ସୋଷିତ)
ପଦାର୍ଥ ଯେତେକ ଅଛି, ଦୁଃଖ, ଶୋକ, ରୋଗ
ଉତ୍ପାଦନକାରୀ ବସ୍ତୁ ରାଜସ ପ୍ରକୃତି
ଲୋକମାନଙ୍କର ପ୍ରିୟ ।
ପ୍ରହରକ ଆଗେ ରନ୍ଧା, ଅପବିତ୍ର ଖାଦ୍ୟ,
ଉଚ୍ଛିଷ୍ଟ, ନୀରସ ।
ଦୁର୍ଗନ୍ଧମୟ ଓ ବାସି ହୋଇଥିବା ଖାଦ୍ୟ
ଖାଇବାର ପାଇଁ ଇଚ୍ଛା ଯାଙ୍କର ପ୍ରବଳ,
ତାଙ୍କର ଗୁଣ ତାମସ ।
ଫଳ ପାଇବାର ଆଶା ବର୍ଜି ମନରୁ
ଅବଶ୍ୟ କର୍ତ୍ତବ୍ୟ ଜାଣି ଯେ କରନ୍ତି ଯଜ୍ଞ,
ସେ ଯଜ୍ଞରେ ମନ ସଦା ଶାନ୍ତ ଥାଏ ପାର୍ଥ !
ତାକୁ ହିଁ ଜାଣିବ ସାତ୍ତ୍ୱିକ ଯଜ୍ଞସାଧନ ।
ଫଳ ଆଶା ରଖି ଐଶ୍ୱର୍ଯ୍ୟ ପ୍ରକାଶ ପାଇଁ
କରାଯାଏ ଯାହା, ସେହି ହିଁ ରାଜସ ଯାଗ ।
ବିଧିମନ୍ତ୍ରହୀନ, ଅନ୍ନଦାନହୀନ ଯଜ୍ଞ
ଶ୍ରଦ୍ଧାବିରହିତ,
ଦକ୍ଷିଣାବିହୀନ ଯଜ୍ଞ ଅଟଇ ତାମସ ।
ଦେବତା, ବ୍ରାହ୍ମଣ, ଗୁରୁ, ବିଦ୍ୟାବାନ୍ ଜନେ
ପୂଜା କରିବା ଅର୍ଜୁନ !
ଶୌଚ, ସରଳତା, ବ୍ରହ୍ମଚର୍ଯ୍ୟ, ହିଂସାତ୍ୟାଗ
ଶାରୀରିକ ତପ ବୋଲି ଜାଣିବ ଅର୍ଜୁନ !
ବାଚିକ ତପସ୍ୟା ଏହା ପରେ କହୁଅଛି
ଶୁଣ ମନ ଦେଇ ।
ଯେ କଥା କହିଲେ ଦୁଃଖ ହୁଏ ନାହିଁ ଅନ୍ୟେ,
ସଦା ସତ୍ୟପୂତ, ପ୍ରିୟ, ହିତକର ଅଟେ ।
ଯେ ବାକ୍ୟ ସକଳ ପାର୍ଥ ! ତା ଅଟେ ବାଚିକ;
ଶାସ୍ତ୍ର ଅଧ୍ୟୟନ କର୍ମ ବାଚିକ ତପସ୍ୟା

ବୋଲି ହୁଏ ଅଭିହିତ ।
ଚିତ୍ତ ପ୍ରସନ୍ନତା, ଅକ୍ରୂରତା, ମଉନତା,
ମନର ସଂଯମ,
ଅକପଟ ବ୍ୟବହାର ମାନସ ତପସ୍ୟା
ସବୁ ଅଟେ ହେ ଅର୍ଜୁନ ! ତ୍ରିବିଧ ତପସ୍ୟା
ଯାହାକୁ ଉପରେ କଲି ବର୍ଣ୍ଣନା ଅର୍ଜୁନ !
ସାତ୍ତ୍ୱିକାଦି ଭେଦେ, ତାହା ଅଟଇ ତ୍ରିବିଧ ।
ଫଳର କାମନା ଛାଡ଼ି ଭକ୍ତିଭାବରେ ମୋର
ହୋଇଲେ ପୂଜକ ପାର୍ଥ ହୁଅଇ ତ୍ରିବିଧ,
ତପ ଆଚରଣ କର୍ମ, ସାତ୍ତ୍ୱିକ ନିଶ୍ଚୟ ।
ପ୍ରଶଂସା ଶୁଣିବା ପାଇଁ, ପାଇବାକୁ ପୂଜା,
ସମ୍ମାନ ସଂସାରେ ପାର୍ଥ ! ଦମ୍ଭର ସହିତ
ହୁଏ ଯେ ତପଶ୍ଚରଣ, ସଂସାରେ ଅନିତ୍ୟ,
ଚଞ୍ଚଳ ଅଟଇ ସଦା ସେଭଳି ତପସ୍ୟା,
ଅଟଇ ରାଜସ ଜାଣ ।
ମୂଢ଼ବୁଦ୍ଧି ଯୋଗୁଁ ଆପଣାକୁ ଦେଇ କଷ୍ଟ,
ପର ଅମଙ୍ଗଳ ପାଇଁ ହୁଏ ଯେ ତପସ୍ୟା,
ତାହାକୁ ଜାଣିବ ନିକୃଷ୍ଟତମ ଲୋକର
ତାମସ ତପସ୍ୟା ।
ଲୋକ ପକ୍ଷରେ ଦାନ ହିଁ ଅଟଇ କର୍ତ୍ତବ୍ୟ ।
ଏହି ଭାବନାକୁ ନେଇ ଅନୁପକାରୀକୁ
ଦିଆଯାଏ ଯେଉଁ ଦାନ,
ଦେଶ-କାଳ-ପାତ୍ର ଜାଣି ଉପଯୁକ୍ତ ପାତ୍ରେ
ଦିଆଯାଏ ଯାହା, ସାତ୍ତ୍ୱିକ ଦାନ ହେ ତାହା ।
ଅମୁକ କରିବ ମୋ ଉପକାର ଭାବି
ଅବା ସ୍ୱର୍ଗପ୍ରାପ୍ତି ହେବ, ମୋର ଦାନ ପାଇଁ
ମନକଷ୍ଟ କରି ଅନିଚ୍ଛାରେ ଦାତା ଦିଏ
ଯେଉଁ ଦାନ ପାର୍ଥ ! ସେ ଦାନ ରାଜସ ଦାନ ଅଟଇ ଅର୍ଜୁନ !

ଦେଶ-କାଳ-ପାତ୍ର କିଛି ବିଚାର ନ କରି
ନେବା ଲୋକକୁ ଅବଜ୍ଞା କରି ଯେଉଁ ଦାନ
ଦିଆଯାଏ ହେ ଅର୍ଜୁନ !
ବିନା ସତ୍କାରରେ ଯେଉଁ ଦାନ ଦିଆଯାଏ
ଯାଚକକୁ ପାର୍ଥ, ତାହା ତାମସିକ ଦାନ ।
ବ୍ରହ୍ମଙ୍କର ନାମ ନିର୍ଦ୍ଦେଶକ ଶବ୍ଦ
ଓଁ ତତ୍ ସତ୍ ଏହା ବେଦଙ୍କ ବ୍ରାହ୍ମଣ ଯଜ୍ଞ
ଏବଂ ବେଦମାନେ ଏଥିରେ ନିର୍ମିତ ପୂର୍ବେ ହୋଇଥିଲେ ବୋଲି
ବେଦାଦି ଶାସ୍ତ୍ରରେ ଅଛି ପ୍ରମାଣ ଏହାର ।
ଅଧ୍ୟାତ୍ମ୍ୟ ଦୃଷ୍ଟିରେ ଏହା ଦେଖି ବ୍ରହ୍ମ ଋଷିମାନେ
ଜାଣିଥିଲେ ସତ୍ୟ ।
ତେଣୁ ଯଜ୍ଞ, ଦାନ, ତପସ୍ୟାଦି ଶାସ୍ତ୍ର ଉକ୍ତ
କର୍ମମାନଙ୍କରେ କରନ୍ତି ଓଁ ଉଚ୍ଚାରଣ ।
ବ୍ରହ୍ମଜ୍ଞାତାମାନେ ଫଳାଶା ବର୍ଜ୍ଜନକରି
ମୋକ୍ଷ ଅଭିଳାଷୀ ତତ୍ ଏହି ଶବ୍ଦଟିକୁ ଉଚ୍ଚାରଣ କରି
ଯଜ୍ଞ ଦାନ ତପ କର୍ମ କରନ୍ତି ସର୍ବଦା ।
ସତ୍ ଶବ୍ଦଟି ପ୍ରଯୁକ୍ତ ହୁଏ ସାଧୁଭାବେ
ତଥା ସତ୍ ଭାବେ ଖାଲି ।
ମଙ୍ଗଳ କାର୍ଯ୍ୟରେ ହୁଏ ଯାର ବ୍ୟବହାର ।
ଯଜ୍ଞ, ଦାନ, କର୍ମେ ନିଷ୍ଠା ଏବଂ ସେହି କର୍ମେ ହୁଏ ଉଚ୍ଚାରିତ ।
ସତ୍ ଶବ୍ଦଟି ଅର୍ଜୁନ ! ବିଧି ବିଧାନରେ ।
ଅଶ୍ରଦ୍ଧାରେ ହୋଇଥାଏ ଯେ ହୋମ ଅର୍ଜ୍ଜୁନ !
ପୁଣି ଅଶ୍ରଦ୍ଧାରେ ଯାହା ଦାନ କରାଯାଏ,
ଯେଉଁ କର୍ମ କରାଯାଏ ଯେଉଁ ତପସ୍ୟା ବା
କରାଯାଏ ଅଶ୍ରଦ୍ଧାରେ ସେସବୁ ଅସତ୍ ।
ମିଳେ ନାହିଁ ଫଳ ତାର ଇହ ଜନମରେ
କି ମୃତ୍ୟୁ ପର ଜନମରେ ମରଣର ପରେ ।"

# ଅଷ୍ଟାଦଶ ଅଧ୍ୟାୟ

ପଚାରିଲେ ଅରଜୁନ, "ହେ ମଧୁସୂଦନ !
ତ୍ୟାଗ, ସନ୍ନ୍ୟାସ ଦୁହିଁଙ୍କ ତତ୍ତ୍ୱ ଜାଣିବାକୁ
ଇଚ୍ଛା ହେଉଅଛି ମୋର;
ପାର୍ଥକ୍ୟ କଅଣ ସନ୍ନ୍ୟାସ ଓ ତ୍ୟାଗ ମଧ୍ୟେ ?"
ଉତ୍ତରିଲେ କୃଷ୍ଣ—
କହନ୍ତି ପଣ୍ଡିତମାନେ କାମ୍ୟ କର୍ମତ୍ୟାଗ
ପାର୍ଥ ! ଅଟଇ ସନ୍ନ୍ୟାସ ।
କର୍ମଫଳତ୍ୟାଗ ଅଟେ ତ୍ୟାଗର ଲକ୍ଷଣ ।
ଆହୁରି କେତେକ ଜ୍ଞାନୀମାନଙ୍କ ମତରେ
କର୍ମ ଦୋଷଯୁକ୍ତ ।
ତେଣୁ ମୋଟାମୋଟି କର୍ମ ନ କରିବା ଭଲ ।
ଏହା ହିଁ ମାନବ-ଧର୍ମ ହୋଇବା ଉଚିତ ।
ପୁଣି ଅନ୍ୟ କେତେ ସୁଧୀ କହନ୍ତି ଅର୍ଜ୍ଜୁନ !
ଜପ, ତପ, ଦାନ କାର୍ଯ୍ୟ କରିବାକୁ ହେବ ।
ଏହି ଧରାଧାମେ ରହି ମନୁଷ୍ୟ ପକ୍ଷରେ
ଏହା ସମ୍ଭବ ନୁହଇ, ତ୍ୟାଜ୍ୟ ବି ନୁହଇ ।
ହେ ଭରତଶ୍ରେଷ୍ଠ ପାର୍ଥ !
ତ୍ୟାଗ ବିଷୟରେ ମୋହର ନିଶ୍ଚିତ ଏ ମତ ।
ତ୍ୟାଗ ଅଟେ ତିନି ପ୍ରକାର ବୋଲି ହେ ପାର୍ଥ !
ସଂସାରେ ବିଦିତ ।
କେତେବେଳେ ହେଲେ ତୁମେ ଯଜ୍ଞ, ଦାନ, ତପ
କରିବ ନାହିଁ ବର୍ଜ୍ଜନ ।
ଏସବୁ କରିବା ଉଚିତ । ସୁଧୀଜନଙ୍କୁ
କରଇ ଯେଣୁ ଏ ପବିତ୍ର ଆହେ ଅରଜୁନ !
ନିଃସଙ୍ଗ ହୋଇଣ ।
କରମଫଳ ବରଜି କରିବ କର୍ତ୍ତବ୍ୟ ।

ସର୍ବଶ୍ରେଷ୍ଠ ମତ ମୋର ଏହା ହିଁ ଅର୍ଜୁନ !
ନିଜ ଧର୍ମ ଅନୁରାଗ ଯାହା ପାଇଁ ଯେଉଁ
କର୍ମ ହୋଇଅଛି ସ୍ଥିର ସେହିସବୁ କର୍ମ
ଛାଡ଼ିବା ନୁହେ ଉଚିତ ।
ମୋହବଶେ ଯାର ସ୍ୱଧର୍ମ କର୍ମସାଧନେ
ଜନମେ ଅନିଚ୍ଛା,
ତାହାକୁ କହନ୍ତି ପାର୍ଥ ! ତାମସିକ ତ୍ୟାଗ ।
ଦୈହିକ ଶ୍ରମକୁ ଡରି କଷ୍ଟକର ଭାବି
ତ୍ୟଜନ୍ତି ଯେ ସବୁକର୍ମ, ରାଜସ ତ୍ୟାଗ ସେ ।
ମିଳେ ନାହିଁ କେବେହେଲେ ସେ ତ୍ୟାଗର ଫଳ ।
କର୍ମଫଳ ତ୍ୟାଗ କରି ନିଃସଙ୍ଗ ଭାବରେ,
କର୍ତ୍ତବ୍ୟ-ଜ୍ଞାନରେ ପାର୍ଥ !
ସ୍ୱଧର୍ମ ପାଳନ ପାଇଁ ଯାହା କରାଯାଏ, ତାହା ହିଁ ସାତ୍ତ୍ୱିକ ।
କର୍ମ ମୋ ମତରେ ପାର୍ଥ !
ସତ୍ତ୍ୱଗୁଣୀ ଜ୍ଞାନୀ ଅଟନ୍ତି ଯେମାନେ ପାର୍ଥ !
ସେହିମାନ ତ୍ୟାଗୀ ।
କଠିନ କାମେ ନ ଡରି ସୁଖକର କାମେ
ଲାଗି ରହିଥାନ୍ତି ସଦା ସେହି ସତ୍ତ୍ୱଗୁଣୀ ।
ନୁହଇ ସମ୍ଭବ କେବେ ଦେହଟିଏ ଧରି
କର୍ମ ମୋଟେ ନ କରିବା ।
କର୍ମଫଳତ୍ୟାଗ କରଇ ଯେ ପୂର୍ଣ୍ଣଭାବେ
ସେହି ଶ୍ରେଷ୍ଠ ତ୍ୟାଗୀ ।
ଫଳ ଆଶା ତ୍ୟାଗ କରି ନ ଥାଏ ଯେ ଜନ,
ସେହି ଅତ୍ୟାଗୀ ଲୋକର ମରଣର ପରେ
ହୁଅଇ ଅନିଷ୍ଟ ଫଳ,
କିବା ଇଷ୍ଟ ଫଳ, ପୁଣି ବା ହୁଏ ଉଭୟ ।
କିନ୍ତୁ ହେ ଅର୍ଜୁନ !
କର୍ମଫଳ ବିସର୍ଜନ କରିଥାନ୍ତି ଯିଏ

ସେପରି ସନ୍ନ୍ୟାସୀମାନେ ଏ ତିନି ପ୍ରକାର
ଫଳ ଭୋଗନ୍ତିନି କେବେ ।
ଆମଠାରୁ ଶୁଣ ସାଂଖ୍ୟ ଦର୍ଶନରେ ଯାହା
ହୋଇଛୁ ବର୍ଣ୍ଣିତ ।
ସର୍ବ କର୍ମ ସମ୍ପାଦନ ପାଇଁ ହୋଇଅଛୁ
ପାଞ୍ଚଟି କାରଣ ପାର୍ଥ !
ଅଧିଷ୍ଠାନ, କର୍ତ୍ତା ଏବଂ ନାନାବିଧ କାର୍ଯ୍ୟ
ବା କର୍ମସାଧନ ।
କର୍ତ୍ତାର ବିବିଧ ଚେଷ୍ଟା ଦଇବ ପଞ୍ଚମ ।

ବ୍ୟାଖ୍ୟା—ସାଂଖ୍ୟ ଦର୍ଶନ ମତରେ ମନୁଷ୍ୟ ଯେତେ କର୍ମ କରେ—ଅଧିଷ୍ଠାନ, କର୍ତ୍ତା, କରଣ ବା ସାଧନ, କର୍ତ୍ତାର ନାନାବିଧ ଚେଷ୍ଟା ଏବଂ ଦୈବ ଏହି ପାଞ୍ଚଟି କାରଣ । ଅଧିଷ୍ଠାନ=ଦେହ, କର୍ତ୍ତା= ଅହଙ୍କାର, ଚକ୍ଷୁ ଆଦି ଇନ୍ଦ୍ରିୟ=କରଣ ବା ସାଧନ । ପ୍ରାଣ ଅପାନ ବାୟୁର କାର୍ଯ୍ୟ ଚେଷ୍ଟା ବା କର୍ତ୍ତାର ବ୍ୟାପକତା । ଏସବୁ ଛଡ଼ା ଦୈବ=ସର୍ବପ୍ରେରକ ଅନ୍ତର୍ଯ୍ୟାମୀ । ତାଙ୍କର ପ୍ରେରଣା ବିନା କିଛି ହୁଏନାହିଁ । ତେଣୁ ଦୈବ ଗୋଟିଏ କାରଣ । କେହି କେହି କହନ୍ତି, ଇନ୍ଦ୍ରିୟାଦିର ଅଧିଷ୍ଠାତ୍ରୀ ଦେବତାଙ୍କୁ ଦୈବ ବୋଲି । ଯେପରି ଶରୀରର ଦେବତା ପୃଥିବୀ,

ଚକ୍ଷୁର ,, ସୂର୍ଯ୍ୟ,
ହସ୍ତର ,, ଇନ୍ଦ୍ର,
ମନର ,, ଚନ୍ଦ୍ର,
ଅହଂକାରର ,, ରୁଦ୍ର ଇତ୍ୟାଦି ।

କାୟା ମନ ବଚନରେ ନ୍ୟାୟ ବା ଅନ୍ୟାୟ
ଯେତେ କାମ କରେ ନର ସେହି ସକଳର
ଏହି ପାଞ୍ଚଟି କାରଣ ।
ନ ଜାଣି ପ୍ରକୃତ ତତ୍ତ୍ୱ, ଯେ ଅଜ୍ଞାନମାନେ

ଭାବନ୍ତି ଆତ୍ମା ହିଁ କର୍ତ୍ତା ସକଳ କର୍ମର,
କରନ୍ତି ସେ ଭ୍ରମ ।
ଯାଙ୍କର ନ ଥାଏ ମୁହିଁ କର୍ତ୍ତା ବୋଲି ଭାବ,
ଆସକ୍ତ ବୁଦ୍ଧି ରହିତ,
ହତ୍ୟା କରିଦେଲେ ମଧ ସକଳ ଭୂତଙ୍କୁ
ଲାଗେ ନାହିଁ ପାପ ତାଙ୍କୁ କେବେ ହେ ଅର୍ଜୁନ !
ଜ୍ଞାନ, ଜ୍ଞେୟ, ଜ୍ଞାତା ଏ ତିନ ପ୍ରକାର
କର୍ମ-ପ୍ରେରଣା ଅର୍ଜୁନ !
କରଣ, କର୍ତ୍ତା ଓ କର୍ମ କ୍ରିୟାର ଆଶ୍ରୟ,
ସାଂଖ୍ୟ ଅନୁସାରେ ପାର୍ଥ !
ଜ୍ଞାନ କର୍ମ କର୍ତ୍ତା ଗୁଣ ଭେଦ ଅନୁସାରେ ।
ତିନ ପରକାର ତାହା ଶୁଣ ମନ ଦେଇ, କହୁଛି ବିସ୍ତାର ।
ଯେଉଁ ଜ୍ଞାନର ବଳରେ ସକଳ ଭୂତରେ
ପରମାତ୍ମା ଭିନ୍ନ ଭିନ୍ନ ରହି ମଧ ଏକ,
ଅବିଭକ୍ତ ବୋଲି ହୋଇଥାଆନ୍ତି ପ୍ରତୀତ ।
ଇହ ସଂସାରରେ ବହୁ ମଧ୍ୟରେ ଏକତ୍ୱ
କରିବା ସଦା ଦର୍ଶନ ।
ସର୍ବ ବାସୁଦେବମୟ ଏ ଭାବନା ପାର୍ଥ !
କହନ୍ତି ପଣ୍ଡିତେ ସାତ୍ତ୍ୱିକ ଜ୍ଞାନ ଲକ୍ଷଣ ।
ଯେଉଁ ଜ୍ଞାନବଳେ ଅନୁଭୂତ ହୁଏ ଭୂତେ
ବିଭିନ୍ନ ପାର୍ଥକ୍ୟ ।
ନାନାଭାବଯୁକ୍ତ ସେହି ଜ୍ଞାନକୁ ଅର୍ଜୁନ !
ଜାଣିବଟି ରାଜସିକ ।
ଯୁକ୍ତିହୀନ ଭାବେ ଗୋଟିଏ ବସ୍ତୁରେ ଥାଏ
ଯେ-ଜ୍ଞାନ ଆସକ୍ତି ନ ବୁଝି ପ୍ରକୃତ ତତ୍ତ୍ୱ
ସତ୍ୟ ନୁହେ ଯାହା ତାହା ତାମସିକ ଜାଣ ।
ଫଳ ଆଶା ଛାଡ଼ି, ରାଗ, ଦ୍ୱେଷ ଆଦି ବର୍ଜି,
ହୋଇଣ ନିଃସଙ୍ଗ ସ୍ୱଧର୍ମ ସାଧନ କର୍ମ

କଲେ ସମ୍ପାଦନ ହୁଏ ତା ସାତ୍ତ୍ୱିକ କର୍ମ ।
ଫଳାଶା ନ ରଖି, ଅହଂକାର ସହ ବହୁ
ଆୟାସକୁ କରି ଯାହା କରିଯାଏ ତାହା ରାଜସ କରମ ।
କରମରେ ପ୍ରାଣୀହିଂସା ହୋଇବ କି ନାହିଁ,
ହେଲେ, କି ହେବ ତା ଫଳ,
କାମ କରିବାକୁ ଯେଉଁ ବଳ ଲୋଡ଼ା ହେବ
ଅଛି କିବା ନାହିଁ,
ବିଚାର ନ କରି ଏହି କଥାମାନ ସବୁ,
ମୋହପରବଶ ହୋଇ,
ଯେଉଁ କର୍ମମାନ କରିଯାଏ ହେ ପାଣ୍ଡବ !
ସେସବୁ ତାମସ ।
ଅନାସକ୍ତ ଏକା ମୁହିଁ,
ମୋହର ସକଳ ବୋଲି, ଅହଂକାର ଯିଏ
ନ କରେ ଅର୍ଜୁନ !
ସିଦ୍ଧିରେ ଆନନ୍ଦ ଯାର ନ ଥାଏ ମୂଳରୁ,
ଅସିଦ୍ଧିରେ ଦୁଃଖ ଯାର ନ ଥାଏ ଆଦଉ,
ଧୈର୍ଯ୍ୟ ଉତ୍ସାହର ସହ କରନ୍ତି ଯେ କର୍ମ
ରହି ନିର୍ବିକାରଚିତ୍ତ, ସେ ସାତ୍ତ୍ୱିକ କର୍ତ୍ତା ।
କର୍ମଯୋଗୀ ବୋଲି ଲୋକେ ତୁଅନ୍ତି ବିଦିତ ।
କର୍ମଫଳ ଅଭିଳାଷୀ ବିଷୟେ ଆସକ୍ତ,
ସଦା ଲୋଭକୁଷ୍ଟ ଚିତ୍ତ, ପରହିଂସା ରତ,
ଶୌଚ-ଆଚାରବର୍ଜିତ, ସିଦ୍ଧିରେ ଆନନ୍ଦ ହୁଏ
ଯେଉଁମାନଙ୍କର,
ଅସିଦ୍ଧିରେ ଶୋକ କରିଥାନ୍ତି ଯେଉଁମାନେ,
ଏପରି ଲୋକଙ୍କୁ ଜାଣିବ ରାଜସ ବୋଲି ।
ଯାହାଙ୍କର ବୁଦ୍ଧି ସଦା ଚଞ୍ଚଳ ଅସ୍ଥିର
ପୁଣି ଅସଂସ୍କୃତ, ଗର୍ବ ଅହଂକାର କରି
କାହାର ପାଖରେ ମୁଣ୍ଡ ନୁଆଁନ୍ତିନ କେବେ

ଅନ୍ୟଙ୍କୁ ବଞ୍ଚନ୍ତ ଯେଉଁମାନେ ଅପମାନ,
ମାୟାବୀ ଅଳସ ଯେଉଁମାନେ ହେ ଅଟନ୍ତି
ଅତି ବିଳମ୍ବରେ କାମ ଯେମାନେ କରନ୍ତି,
ସେହି ତାମସ କର୍ତ୍ତା ବୋଲଣ ବିଦିତ ।
ଗୁଣ ଅନୁସାରେ ବୁଦ୍ଧି ଧୃତି ହୁଏ ଭିନ୍ନ
ଜାଣ ହେ ଅର୍ଜୁନ ! କପରି ହୁଅଇ ତାହା
କହୁଛୁ ବିସ୍ତାର; ତାହା ଶୁଣ ମନ ଦେଇ ।
ଧର୍ମରେ ପ୍ରବୃତ୍ତି, ଅଧର୍ମେ ନିବୃତ୍ତି ଯାର,
ଭୟ ନାହିଁ ପାର କେଉଁ କଥାରେ ଅର୍ଜୁନ !
କର୍ତ୍ତବ୍ୟାକର୍ତ୍ତବ୍ୟବନ୍ଧ ଆଉ ମୋକ୍ଷ ଆଦି
ସକଳ ବିଷୟ ଜଣାଯାଏ ଯେଉଁ ବୁଦ୍ଧି ସାହାଯ୍ୟରେ ପାର୍ଥ !
ଯଥାର୍ଥ ପ୍ରକୃତ ତତ୍ତ୍ୱ ତାହା ହିଁ ସାତ୍ତ୍ୱିକ
ଲୋକମାନଙ୍କର ବୁଦ୍ଧି ଜାଣ ହେ ଅର୍ଜୁନ !
ଯେ ବୁଦ୍ଧିରେ ଲୋକମାନେ ଧର୍ମ ବା ଅଧର୍ମ,
କାର୍ଯ୍ୟ ବା ଅକାର୍ଯ୍ୟମାନ ଅଯଥାର୍ଥରୂପେ
ବୁଝନ୍ତି ହେ ଅରଜୁନ ! ତା ରାଜସୀ ବୁଦ୍ଧି ।
ଧର୍ମକୁ ଅଧର୍ମ ଗଣେ ମୋହାଚ୍ଛନ୍ନ ହୋଇ
ତାମସୀ ବୁଦ୍ଧି ତା ଜାଣ ।
ବିପରୀତ ଭାବେ ସକଳ କଥାର ଅର୍ଥ ସେ କରେ ଗ୍ରହଣ
ଯେ ଅବିଚଳିତ ଧୃତି ବଳେ ପ୍ରାଣ ମନ,
ଇନ୍ଦ୍ରିୟର କର୍ମମାନ ହୁଏ ନିୟମିତ
ଯୋଗସାଧନରେ ପାର୍ଥ ! ସେ ସାତ୍ତ୍ୱିକ ଧୃତି ।
ଧର୍ମ ଅର୍ଥ କାମେ ମତି ରଖିଥାଏ ଜନ
ଯେଉଁ ଧୃତି ବଳେ ତାହା ଅଟଇ ରାଜସୀ ।
ନିଦ୍ରା ଭୟ ଶୋକ ପୁଣି ବିଷାଦ ମଦକୁ
ଯେଉଁ ଧୃତି ଯୋଗୁ ଛାଡ଼ିପାରେ ନାହିଁ ଲୋକ
ଜାଣିବ କୁନ୍ତୀନନ୍ଦନ ! ତାମସୀ ତାହାକୁ ।
ହେ ପାଣ୍ଡବଶ୍ରେଷ୍ଠ, ଶୁଣ ଆମ୍ଭଠାରୁ ଏବେ

ନିର୍ବାଧ ସୁଖ ବିଷୟ୍ ।
ଯା ଶୁଣିଲେ ମନୁ ଦୂର ହୋଇଯିବ ତବ
ସକଳ ସଂଶୟ୍ ।
ଅଭ୍ୟାସବଶରୁ ପାର୍ଥ !
ଯେ ସୁଖରେ ମିଳେ ଜମେ ପରମ ଆନନ୍ଦ,
ଯେ ଆନନ୍ଦ ପାଇଁ ଦୂର ହୋଇଯାଏ
ସର୍ବବିଧ ଦୁଃଖ ଦ୍ୱନ୍ଦ୍ୱ ।
ବିଷ ପରି ହୋଇଥାଏ ଅତି ପିତା ଯାହା,
ପ୍ରଥମେ ପ୍ରଥମେ ପାର୍ଥ ! ପରିଣାମେ କିନ୍ତୁ
ଅମୃତ ପରି ସୁସ୍ୱାଦ ଜଣାଯାଏ ସେହି ।
ଆତ୍ମନିଷ୍ଠ ବୁଦ୍ଧି ଜନ୍ମସୁଖରୁ ଅର୍ଜୁନ !
ରାଜସ ସୁଖ ଯା ପାର୍ଥ !
ଇନ୍ଦ୍ରିୟ ସଂଯୋଗେ ବିଷୟରୁ ହୁଏ ଜାତ,
ପ୍ରଥମେ ଲାଗଇ ଯାହା ଅମୃତ ସଦୃଶ,
ଶେଷେ ବିଷ ପରି ଲାଗେ ଜାଣ ହେ ଅର୍ଜୁନ !
ନିଦ୍ରା ଆଳସ୍ୟ ତା
ପ୍ରଥମେ, ଶେଷରେ ଯାହା ପ୍ରମାଦରୁ ଜାତ ।
ବୁଦ୍ଧି ମୋହକର ଯାହା ଅଟଇ ଅର୍ଜୁନ,
ତାମସ ସୁଖଟି ତାହା ।
ସ୍ୱର୍ଗରେ ଏପରି ପ୍ରାଣୀ ନୁହନ୍ତି ସଂଭୂତ ।
ଧରଣୀ ଉପରେ କିବା; ପ୍ରକୃତି ଜାତ ଏ ।
ହୋଇଥାନ୍ତି ମୁକ୍ତ ତିନି ଗୁଣରୁ ସେମାନେ ।
ବ୍ରାହ୍ମଣ, କ୍ଷତ୍ରିୟ, ଶୂଦ୍ର, ବୈଶ୍ୟ ଆଦିଙ୍କର
ସ୍ୱଭାବରୁ ଜାତ ଭିନ୍ନ ଭିନ୍ନ କର୍ମମାନ ।
ବିହିତ ହୋଇଛି ଜାଣ ଗୁଣ ଅନୁରୂପେ ।
ତପ, ଶୌଚ, ଜ୍ଞାନ; କ୍ଷମା, ମନ, ସରଳତା,
ଇନ୍ଦ୍ରିୟ ସଂଯମ ଆଦି ଆତ୍ମ ଅନୁଭବ୍
ବ୍ରାହ୍ମଣ-ସ୍ୱଭାବ ଆସ୍ତିକତା ଆଦି କରି କର୍ମ ଜାଣ ଏହା ।

କ୍ଷତ୍ରିୟ-ସ୍ୱଭାବ କର୍ମ ଶୌର୍ଯ୍ୟ, ବୀର୍ଯ୍ୟ, ଧୈର୍ଯ୍ୟ ।
କାର୍ଯ୍ୟରେ ଦକ୍ଷତା, ଦାନ, ଶାସନ-କ୍ଷମତା,
ଯୁଦ୍ଧରେ ବିମୁଖ କେବେ ନୋହିବା ଅର୍ଜୁନ !
ଗୋରକ୍ଷା, ବାଣିଜ୍ୟ, କୃଷି ଆଦି କରି ଯେତେ
ବୈଶ୍ୟର ଧରମ ଜାଣ ।
ଗୃହକରିବା କରି ଆଦି ତିନିସେବା କରି
ଜୀବିକାନିର୍ବାହ କରା ସ୍ୱଭାବଜ କାମ ଶୂଦ୍ରର କେବଳ ।
ଉଦ୍ୟୋଗୀ ପୁରୁଷ ଯିଏ ସ୍ୱାଭାବିକ କର୍ମେ
ସିଦ୍ଧି ଲଭ କରେ ସିଏ ।
କପରି ସେ ସିଦ୍ଧି ଶୁଣ ଏବେ କହୁଛି ତା ।
କରମ ପ୍ରବୃତ୍ତି ଜୀବର ଯାହାଙ୍କଠାରୁ ଜନମ ଅର୍ଜୁନ !
ବ୍ୟାପିଅଛନ୍ତି ସେ ସବୁ ସ୍ୱଭାବଜ କର୍ମେ ।
ତାହାଙ୍କୁ ପୂଜିଲେ ସିଦ୍ଧି ଲଭଇ ମାନବ ।
ହେଲେହେଁ ସ୍ୱଧର୍ମ, ଯାହା ଦୋଷଯୁକ୍ତ ଅଟେ
ଭଲରୂପେ ଅନୁଷ୍ଠିତ ହେଲେ ତାହା ପାର୍ଥ !
ପର-ଧର୍ମଠାରୁ ଶ୍ରେଷ୍ଠ ଅଟଇ ନିଶ୍ଚିତ ।
ଯେଉଁମାନେ କରୁଥାନ୍ତି ସ୍ୱଭାବ ନିୟତ
କର୍ମମାନଙ୍କ ସାଧନ, ପାପ କେବେ ତାଙ୍କୁ
ଛୁଇଁପାରେନା ଅର୍ଜୁନ !
ସ୍ୱାଭାବିକ କର୍ମ ଦୋଷଯୁକ୍ତ ହେଲେ ମଧ୍ୟ
ଛାଡ଼ିବା ଉଚିତ ନୁହେ ପାର୍ଥ ! କଦାଚନ ।
ଧୂଆଁରେ ଅନଳ ପରି ସବୁ କର୍ମ ଦୋଷେ
ଥାଏ ଆଚ୍ଛାଦିତ ।
ଆସକ୍ତି ବରଜିଦେଇ ସବୁ ବିଷୟରୁ,
ସୁସଂଯତ କରି ଚିତ୍ତ ସ୍ପୃହାହୀନ ହୋଇ
ଆନନ୍ଦେ ଯେ ବ୍ୟକ୍ତି ରହିଥାଏ ଅବସ୍ଥିତ,
ସ୍ୱଭାବଜ କର୍ମ କରି ଫଳାଶା ନ ରଖି
କରମ ବନ୍ଧନ ଭାଙ୍ଗି ମହାସିଦ୍ଧି ଲଭକରେ ସେ ପାଣ୍ଡୁନନ୍ଦନ !

ସେହି ସିଦ୍ଧିପ୍ରାପ୍ତ ଜନ ଯେ ଭାବରେ ପାଇଥାଏ ବ୍ରହ୍ମଭାବ
ସଂକ୍ଷେପେ କହୁଛି ଶୁଣ ।
ଯା ପରିସମାପ୍ତି ହୁଏ ଜ୍ଞାନରେ ଅର୍ଜୁନ !
ବିଶୁଦ୍ଧ ବୁଦ୍ଧିରେ କରଣ ଆତ୍ମସଂଯମ ଧୈର୍ଯ୍ୟ ସହିତ
ଶବ୍ଦ ଅନୁରାଗ ଦ୍ୱେଷ ଆଦି ଯେ ବିଷୟ
ବିସର୍ଜନ କରିଦେଇ ନିର୍ଜନ ସ୍ଥାନରେ,
ବସି ନିଶ୍ଚଳ ଧ୍ୟାନରେ ମିତାହାର କରି,
ମନ ଓ ବାକ୍ୟର ସଙ୍ଗେ ଶରୀର ସଂଯମି,
ବୈରାଗ୍ୟ ଆଶ୍ରୟ କରି ଅହଂକାର, ବଳ,
ଦର୍ପ, କାମ, କ୍ରୋଧ ସବୁ ତ୍ୟାଗ କରିଦେଇ,
ଭୋଗସାଧ ଦ୍ରବ୍ୟମାନ ଗ୍ରହଣ ନ କରି,
ଧ୍ୟାନେ ରହିଲେ ନିରତ ବିସର୍ଜି ମମତା,
ହୃଦେ ହୋଇ ସ୍ଥିରଚିତ୍ତ କରିଲେ ଯତନ,
ସାଧକମାନେ ସମର୍ଥ ହୁଅନ୍ତି ଅର୍ଜୁନ !
ବ୍ରହ୍ମଭାବ ପାଇବାକୁ ।
ବ୍ରହ୍ମଭାବ ପ୍ରାପ୍ତ ହେଲେ ଯୋଗୀଜନମାନେ
ହୁଅନ୍ତି ପ୍ରସନ୍ନଚିତ୍ତ, ନିଶ୍ଚୟ ଅର୍ଜୁନ !
ଦୁଃଖ, ଅଭିଳାଷ ହୁଏଇ ଅପସାରିତ ସର୍ବଦା ମନରୁ ।
ସମାନ ଦୃଷ୍ଟିରେ ପାର୍ଥ ! ଦେଖି ଥାଆନ୍ତି ସେ
ସମସ୍ତ ପ୍ରାଣୀମାନଙ୍କୁ ।
ଆମ୍ଭଠାରେ ଦୃଢ଼ ଭକ୍ତି ଲଭି ସାର୍ଥକ ସେ କରନ୍ତି ଜୀବନ ।
ଆମ୍ଭର ସ୍ୱରୂପ ତତ୍ତ୍ୱ ଜାଣିପାରନ୍ତି ସେ,
ତାଙ୍କ ଦୃଢ଼ ଭକ୍ତି ବଳେ ।
ଆମ୍ଭର ବିଭବ କିସ ଅବା ଆମ୍ଭେ କିଏ,
ଆମ୍ଭର ସାମର୍ଥ୍ୟ କେତେ, ଆମ୍ଭର ଯଥାର୍ଥ ତତ୍ତ୍ୱ ଏହିପରି
ବୁଝି ଯେ ସାଧକ ଜନ ଆମ୍ଭଠାରେ ଶେଷେ
ଲଭନ୍ତି ଆଶ୍ରୟ ନିଶ୍ଚେ ଜାଣ ହେ ଅର୍ଜୁନ !
ଆମ୍ଭର ଆଶ୍ରୟେ ରହି କର୍ମଯୋଗୀମାନେ

କଲେହେଁ ସକଳ କର୍ମ ଅମ୍ଭ ଅନୁଗ୍ରହେ
ଲଭିଥାନ୍ତି ଶେଷେ ସ୍ଥାନ ପରମ ଶାଶ୍ୱତ ।
ମନ ମଧ୍ୟେ ସର୍ବକର୍ମ କରି ସମର୍ପଣ
ଆମ୍ଭଠାରେ ଅର୍ଜୁନ ! ସାମ୍ୟବୁଦ୍ଧି ଯୋଗ
ଅନୁସ୍ୟୂତରେ ରହି ନିତ୍ୟ ସ୍ମରଣ ଆମ୍ଭଙ୍କୁ
କର ହେ ପାଣ୍ଡୁନନ୍ଦନ !
ହେ କୁନ୍ତୀନନ୍ଦନ ! ମୋଠାରେ ଚିତ୍ତ ନିବେଶି
ଅନୁଗ୍ରହ ଲଭ କଲେ ସଂସାର-ସଙ୍କଟ
ହୋଇଯିବ ପାର ।
ଅହଙ୍କାର କରି ଯେବେ ମୋର ଉପଦେଶ
ଶୁଣିବ ନାହିଁ ହେ ପାର୍ଥ ! ନିଶ୍ଚୟ ତୁମର
ବିନାଶ ଘଟିବ, ନାହିଁ ଏଥିରେ ସନ୍ଦେହ ।
ଯୁଦ୍ଧ ନ କରିବ ବୋଲି କହୁଛ ଯା ତୁମେ
ଅହଙ୍କାର କରି ମନେ, ସେକଥାଟି ମିଛ ।
ପ୍ରକୃତି ତୁମକୁ ବାଧ୍ୟ କରିଇବ ଧରି ।
ସ୍ୱଭାବଜ କର୍ମେ ତୁମେ ରହିଛ ଆବଦ୍ଧ ।
ପରବଶ ହୋଇ ଇଚ୍ଛା କରୁ ନାହିଁ ଯାହା
କରିବାକୁ ଅର୍ଜୁନ, ନିଶ୍ଚୟ କରିବ ।
ଈଶ୍ୱର ପ୍ରାଣୀଙ୍କ ହୃଦେ ବିରାଜିତ ରହି
ଚଳାଉଛନ୍ତି ସକଳ ମାୟାବଶେ କ୍ରୀଡ଼ା—
ପୁତ୍ତଳିକା ପରି ପାର୍ଥ ! ହେ କୁନ୍ତୀନନ୍ଦନ !
ସର୍ବତୋଭାବରେ ତେଣୁ ତାଙ୍କର ଚରଣ
ତଳେ ପଶ ହେ ଶରଣ ।
ତାଙ୍କ ଅନୁଗ୍ରହ ହେଲେ, ପାଇବ ପରମ
ସ୍ଥାନ ନିତ୍ୟ ଶାନ୍ତି ।"
ଏହି ଗୋପନୀୟ ଜ୍ଞାନ କହିଲି ବୁଝାଇ
ଦେଇ ଆହେ ଅର୍ଜୁନ ! ଭଲରୂପେ କରି
ଆଲୋଚନା ଯାହା ଇଚ୍ଛା ତାହା କର ତୁମେ ।"

ତୁମେ ପ୍ରିୟତମ ଯେଣୁ କହୁଛି ତୁମକୁ
ଉତ୍ତମ ବଚନ ସବୁଠାରୁ ଗୁହ୍ୟତମ ।
କେବଳ ମୋଠାରେ ଦେଇ ମନଧ୍ୟାନ ହୁଅ
ମୋହର ଭକତ, କର ନମସ୍କାର ମୋତେ
ପୂଜୁଥାଅ ସବୁବେଳେ, କହୁଛି ପ୍ରତିଜ୍ଞା
କରି ଯେଣୁ ତୁମେ ପ୍ରିୟ, ପାଇବ ନିଶ୍ଚୟ
ମୋତେ ନାହିଁ ହେ ସନ୍ଦେହ ।
ଲୋକାଚାର ଧର୍ମ, ଶ୍ରୁତିଧର୍ମ, ସ୍ମୃତିଧର୍ମ
ଆଦିଙ୍କର ଦାସ ନୋହି, ବରଜଣି ସବୁ
ମୋହର ଚରଣେ ପଶ ହେ ଶରଣ ତୁମେ ।
ତାହା କଲେ ମୁହିଁ ସବୁ ପାପରୁ ତୁମକୁ କରିବ ମୁକତ ।
ଏହା ହିଁ ନିଗୂଢ଼ ସତ୍ୟ, ଶୋକ କର ନାହିଁ
ତେଣୁ କେବେହେଁ ଅର୍ଜୁନ !
ସ୍ୱଧର୍ମାନୁଷ୍ଠାନ-ରୂପ ତପସ୍ୟାରେ ଯିଏ
ନୁହେ ଅନୁରାଗୀ, ଶୁଣିବାକୁ ଇଚ୍ଛା ଯିଏ
କରେ ନାହିଁ ପାର୍ଥ ! ନୁହଇ ସେ ଭକ୍ତ ମୋର ।
ଯେଉଁମାନେ ମୋତେ ବିଶ୍ୱାସ ନ କରି ନିନ୍ଦା କରୁଥାନ୍ତି ପାର୍ଥ !
ସେମାନଙ୍କୁ ଗୀତାଶାସ୍ତ୍ର କଦାପି କହିବନି
କେବେ ଜାଣିଥା ଅର୍ଜୁନ !
ଏ ଗୁପତ ଶାସ୍ତ୍ର ମୋର ଭକତଙ୍କ ପାଖେ
ଯେ କରଇ ଅର୍ଥ, ଆମ୍ଭ ଠାରେ ଦୃଢ଼ଭକ୍ତି
ଥିବାରୁ ତାଙ୍କର, ଲଭନ୍ତି ପରମ ସ୍ଥାନ ।
ମାନବ-ସମାଜେ ଗୀତାବ୍ୟାଖ୍ୟାକାରୀଠାରୁ
ଅନ୍ୟ ପ୍ରିୟତର ବ୍ୟକ୍ତି ନାହିଁ ହେ ମୋହର ।
ହେବେ ନାହିଁ ମଧ୍ୟ ଏ ଭୁବନେ ଅରଜୁନ !
ଆମ୍ଭ ଦୁହିଁଙ୍କର ଧର୍ମ ବିଷୟକ ଏହି
କଥୋପକଥନ ପଢ଼େ ଯେ ଜ୍ଞାନ-ଯଜ୍ଞରେ ପୂଜଇ ସେ ମୋତେ ।
ଦୋଷ ନ ବାଛି ଯେ ଶୁଣେ ଶ୍ରଦ୍ଧାର ସହିତ,

ସର୍ବ ପାପରୁ ମୁକତ ହୋଇ କୁନ୍ତୀସୁତ,
ଲଭଇ ପରମଲୋକ । ଏକାଗ୍ର ମନରେ
ଶୁଣିଲ ତ ପାର୍ଥ ! ତୁମେ ଏ ଶାସ୍ତ୍ର ବିଷୟ,
ଅଜ୍ଞାନସମ୍ଭୂତ ତୁମ ମୋହ ହୋଇଲା କି
ତିରୋହିତ ଅର୍ଜୁନ ?"
ଉତ୍ତରିଲେ ପାର୍ଥ—"ପାଇ ତୁମ ଅନୁଗ୍ରହ
ଦୂର ହୋଇଗଲା ଅଜ୍ଞାନଜନିତ ମୋହ ହୃଦୟରୁ ମୋର ।
ଅପସରିଅଛି ମନୁ ସକଳ ସଂଶୟ ।
ପାଇଛି ମୁଁ ଜ୍ଞାନ ପ୍ରଭୁ ! ହୋଇଛି ମୁଁ ସ୍ଥିର ।
ପାଳିବି ଏବେ ନିଶ୍ଚୟ ତୁମ ଉପଦେଶ ।"
ସଞ୍ଜୟ କହିଲେ, "ରାଜା ! ଶୁଣିଛି ମୁଁ ସବୁ
ଅଦ୍ଭୁତ ରୋମହର୍ଷଣ କଥୋପକଥନ
ମହାତ୍ମା ଶ୍ରୀକୃଷ୍ଣ ଆଉ ପାର୍ଥ ଦୁହିଁଙ୍କର ।
ହେ ନରେଶ, ଧୃତରାଷ୍ଟ୍ର ! ବ୍ୟାସଙ୍କ କୃପାରୁ
ଶୁଣିପାରିଛି ପ୍ରତ୍ୟକ୍ଷେ ସ୍ୱୟଂ ଯୋଗେଶ୍ୱର
ଶ୍ରୀକୃଷ୍ଣ କହିଲେ ଯେଉଁସବୁ ଯୋଗତତ୍ତ୍ୱ ।
କୃଷ୍ଣ ଅରଜୁନଙ୍କର ଅଦ୍ଭୁତ ସମ୍ବାଦ
ପରମ ପବିତ୍ର ଅଟେ ।
ମନେପଡ଼ିବାରୁ ବାରମ୍ବାର ହେଉଅଛି
ମୋର ହର୍ଷ ଜାତ ।
କୃଷ୍ଣଙ୍କର ସେହି ବିଶ୍ୱ-ରୂପ ମୋର ଏବେ
ପଡ଼ୁଅଛି ମନେ ରାଜା ଆହା କି ବିଚିତ୍ର !
ତାହା ଉଲ୍ଲସାଏ ପ୍ରାଣ ମନ ଉଭୟଙ୍କୁ ।
ଯହିଁ ପାର୍ଥ ଧନୁର୍ଦ୍ଧର ଶ୍ରୀକୃଷ୍ଣ ଯେ ପକ୍ଷେ,
ସେ ପକ୍ଷର ଜୟ ନିଶ୍ଚେ ।
ସେ ପକ୍ଷରେ ଲକ୍ଷ୍ମୀ, ସେହି ପକ୍ଷରେ ହେ ମିତ୍ର
ମଣୁଛି ଏକତ୍ର ।"

———

# ନାରାୟଣୀ-ସେନା ବୃତ୍ତାନ୍ତ

ଅର୍ଜୁନ ପୁଚ୍ଛିଲେ, "କହ ମୋତେ ପ୍ରଭୁ !
ନାରାୟଣୀ-ସେନାଙ୍କର ବୃତ୍ତାନ୍ତ,
ନୁହନ୍ତି ଯାଦବ ବୃଷ୍ଣି ବଂଶୋଦ୍ଭବ
କେଉଁଠୁ ଆସିଲେ ପାଉନି ଅନ୍ତ ।
ନାରାୟଣୀ-ସେନା ତୁମ ଅନୁରୂପ
ତୁମର ଲକ୍ଷଣ ତୁମ ଶକତି,
ମୁଁ କ'ଣ ସମର୍ଥ ହେବି ଜଗନ୍ନାଥ !
କରିବ ସମର ପାଣ୍ଡବ ବର୍ଗି ?"
ଶ୍ରୀକୃଷ୍ଣ କହିଲେ, "ଶୁଣ ଧନଞ୍ଜୟ !
ନାରାୟଣୀ-ସେନାଙ୍କର ବୃତ୍ତାନ୍ତ,
ଆଜଯାଏ ବୋଲି କେହି ପୁଚ୍ଛି ନାହିଁ
ତେଣୁକରି ତାହା ଥିଲା ଗୁପତ ।
ଦିନେ ପିତୃଲୋକେ କହିଲେ ଆରତେ
ନାରାୟଣ ତୁମେ ମୁକତିଦାତା,
ପଡ଼ି ରହିଅଛୁ ଆମେ ଯେ ଅମୁକ୍ତ
ଆମ ଦୁଃଖ ଟିକେ କର ହେ ଚିନ୍ତା ।
ମଗଧ ଅରଣ୍ୟେ ଅଛି ଏକ ବାର୍ଦ୍ଧା
ତାର ମାଂସ ଆଣି ଦିଅ ହେ ଶ୍ରାଦ୍ଧ,
ତୁମ ପିତୃଲୋକେ ମୁକତ ହୁଅନ୍ତୁ
ତୁଟିଯାଉ ତାଙ୍କ ମନର ସାଧ ।

ତୁମେ ଏକା ଯିବ ପାରିଧି କରିବ
 ଜଣେ ହେଲେ କେହି ଯିବେନି ସଙ୍ଗେ,
ଏତକ ନ କଲେ ଅମୁକ୍ତ ରହିବୁ
 ଆମେ ପିତୃଗଣଙ୍କ ଏହି ରୌରବେ ।
ଗଲି ମୁଁ ଏକାକୀ ମଗଧ ଅରଣ୍ୟ
 ଜରାସନ୍ଧର ସେ ଅରଣ୍ୟ ଦେଶ,
ପ୍ରହରିଏ ସବୁ ଜଗି ରହିଥିଲେ
 ସବୁଗୁଡ଼ାଙ୍କର ଅସୁର-ବେଶ ।
ମୋତେ ଦେଖିକରି ଜାଣିଲେ ସେମାନେ
 ଜରାସନ୍ଧକୁ ସେ କହିଲେ ଯାଇ,
ସେନା ସେନାପତି ସଜବାଜ ହୋଇ
 ସେଇନା ଆସିଲେ ରାଗରେ ଧାଇଁ ।
ଉପାୟ ନ ପାଇ ହେଲି ବିଶ୍ୱରୂପ
 ସେଇଥିରୁ ଜାତ ହେଲା ଏ ସେନା,
ଏକ ଅରବୁଦ ନୁହନ୍ତି ଅଳପ
 କେହି କାହାଠାରୁ ନୁହନ୍ତି ଊଣା ।
ସେତେବେଳୁ ସିଏ ମାଗିଛନ୍ତି ବର
 ଅନ୍ୟ କାହା ହାତେ ମରିବେ ନାହିଁ,
ମୋର ପର ହେବ ଯାର ରୂପ ଗୁଣ
 ତାହାରି ହାତରେ ମରିବା ପାଇଁ ।
ତୁମ ଛଡ଼ା ଭଲା ଆଜ କେ ମୋ ପର ?
 ତୁମରି ହାତରେ ସବୁ ମରିବେ,
ଏଇନା କେବଳ ତୁମ ବିରୁଦ୍ଧରେ
 ଦୁର୍ଯ୍ୟୋଧନ ପାଇଁ ଯୁଦ୍ଧ କରିବେ ।
ମୁଁ ତୁମ ସାରଥି ସେମାନେ ମୋ ଅଂଶ
 ସମରେ ପାଇବେ ତାଙ୍କର ବର,
ଦୁର୍ଯ୍ୟୋଧନ ପୁଣି ମୋର ତ ଆତ୍ମୀୟ
 ମୋହରି ଅବସ୍ଥା ବିଚାର କର ।

ନରଶ୍ରେଷ୍ଠ ମୁଁ ତ          ରହିପାରିଲିନି
    ତୁମରି ଅଙ୍କକୁ ପଡ଼ିଲ ଢଳି,
କ ଚିନ୍ତା ତୁମର          ତୁମେ ମୋର ସଖା
    ନାଗପୂଣୀ-ସେନା ଯିବେନି ବଳି ।
ଜମା ଭିନ ଭିନ          କରିବେ ସମର
    ସେଇଥି ଭିତରେ ହୋଇବେ ଧ୍ୱଂସ,
ମୋହର ଦେହରେ          ମିଶିଯିବେ ପୁଣି
    ଯେଣୁ ସେ ଆଗରୁ ମୋହର ଅଂଶ ।
ଡରଯାଅ ନାହିଁ          ମୁଁ ଅଛି ପାଖରେ
    ନାଗପୂଣୀ-ସେନା ପାରିବେ ନାହିଁ,
ତୁମର ହାତରେ          ମରିବା ପାଇଁ କି
    ଦୁର୍ଯ୍ୟୋଧନେ ଦେଇଦେଲେ ପଠାଇ ।”

——

# ଭୀଷ୍ମଙ୍କ ମୁକ୍ତିରେ ଶ୍ରୀକୃଷ୍ଣ

ଶ୍ରୀକୃଷ୍ଣଙ୍କଠାରୁ ଗୀତବାଣୀ ଶୁଣି
ଅର୍ଜୁନ ବର୍ଜିଲେ ମନରୁ କ୍ଷୋଭ,
କ୍ଷତ୍ରିୟ-ଧରମ ବର୍ଣ୍ଣାଶ୍ରମ-କର୍ମ
ସାଧନା ନିମିତ୍ତ ବଳିଲା ଲୋଭ ।
ଆତ୍ମୀୟ ବିନାଶ ଭାବନା ମନରୁ
ପୋଛି ପକାଇଲେ ଧରିଲେ ଦମ୍ଭ,
ଧନୁଶର ଧରି ଉଠିଲେ ଅର୍ଜୁନ
ସମର ଏଥର ହେଲା ଆରମ୍ଭ ।
ପହିଲେ ପଡ଼ିଲା ଭୀଷ୍ମଙ୍କର ପାଳି
ସେନାପତି ଆଜ କୌରବ ପକ୍ଷେ,
ତାଙ୍କର ପ୍ରତିଜ୍ଞା ପାଣ୍ଡବ ମାରିବେ
ହାତମାରି କହିଅଛନ୍ତି ବକ୍ଷେ ।
ପାଣ୍ଡବ ପକ୍ଷରେ ସେନାପତି ପାର୍ଥ
ଶ୍ରୀକୃଷ୍ଣ ତାଙ୍କର ସଦା ସାରଥି,
ସେପାଖେ ଭୀଷ୍ମଙ୍କୁ ଏପାଖେ ଅର୍ଜୁନ
ସମାନ ସମାନ ଉଭୟ ରଥୀ ।
ଭୀଷ୍ମ ଭୀମକର୍ମା ଭୀଷଣ ପ୍ରତିଜ୍ଞା
ଚିର ବ୍ରହ୍ମଚାରୀ ଅଟଳ ପଣ,
ପର୍ଶୁରାମ ଗର୍ବ ଗଞ୍ଜନକାରୀ ସେ
ତହିଁକି ତାଙ୍କର ଇଚ୍ଛା ମରଣ ।

ଯମ ତାଙ୍କ ପାଖେ ପଶି ପାରିବନି
ସେ ଇଚ୍ଛା ନ କଲେ କାଳକ ଯାକ,
ତାଙ୍କର ପାଇଁକି ମର୍ତ୍ତ୍ୟଟା କେବଳ
ପାଇଯିବ ପରା ଅମର୍ତ୍ତ୍ୟ ଡାକ !
ଧୃଷ୍ଟଙ୍କୁ ପାଇଣ ଦୁର୍ଯ୍ୟୋଧନ ଗର୍ବ
ବଢ଼ି ଯାଇଅଛି ଆହୁରି ବେଶୀ,
ବସି ବସିକରି ଦେଖୁଛି ସ୍ୱପନ
ପାଣ୍ଡବବଂଶକୁ ଦେବ ସେ ଧ୍ୱଂସି ।
ଅଦୃଷ୍ଟ ହସୁଛି ଲୁଚି ଲୁଚି କରି
ନିଷ୍ଠୁର କହୁଛି ନୟନ ଠାରି,
ଯାଆନା ଯାଆନା ସମରେ ପଶନା
ରାଜ୍ୟ ବାଣ୍ଟିଦେଏ ସମାନ କରି ।
ଧୃଷ୍ଟ ହୋଇଯିବ ଭସ୍ମରେ ପାଗଳ
ଇଚ୍ଛା ମରଣଟି ହୋଇବ ମାରି,
ମରଣେ ଜନମି ମରେନା କିଏ ରେ
ଅଉ ସବୁ ମିଛ ମରଣ ଖାରି ।
ମରିବାକୁ କିଏ କରଇ କି ଇଚ୍ଛା ?
ଇଚ୍ଛା ନ କଲେ ସେ ମରିବ ନାହିଁ,
ମରିବା ପାଇଁକି ଦିନେ ଦେବ ଇଚ୍ଛା
ସେ ଦିନକୁ ବସି ଥାଆ ତୁ ରହି ।
କୁରୁକ୍ଷେତ୍ର ଆଜ ଜନ-ପାରାବାର
ସବୁଠି ଲହରୀ, ସବୁଠି ଖେଳ,
ରଥ, ଗଜ, ଅଶ୍ୱ, ପଦାତି, ବାଦିତ୍ର
ସମର-ନିଶାରେ ସକଳେ ଭୋଳ ।
କି ମଦ ମଦିରା ପଶିଛି ଛାତିରେ
ମାରିବା ମରିବା ହୋଇଛି ସୁଖ,
ମରିବା ପାଇଁକି ଟିକେ ଡର ନାହିଁ
ମାରିବାକୁ ନାହିଁ କାହାରି ଦୁଃଖ ।

ଦାଗ ସୁତ ମାୟା ପଶୁନି ମନରେ
ସେଥିନ୍ତୁ କଣେ ତ ପଡ଼ନି ଖାଲି,
ସବୁଠି ତ ସେହି ରକ୍ତ-ମାଦକତା
ଦୁଃଖ ସୁଖ ଦେଇଅଛି ନିକାଳି ।
ଯୁବକ ଭୁଲିଛି ଯୁବତୀ-ପ୍ରଣୟ
ମଦନ ହାରିଛି ପଶୁନି ପାଶେ,
ରଣ-ବେଶ-ଭୂଷା ଶୁଭୁଛି ମଧୁର
ବଇଁଶୀ ବେହେଲା ବାଜୁନି ତ୍ରାସେ ।
ସମର-ବାଜଣା ଅଲଗା ପ୍ରକାର
ରକତ ଦାନରେ ତାର ଆନନ୍ଦ,
ରକତ ପାନରେ କିଏ ହୁଏ ମୁଗ୍ଧ
ସେଇଥିରେ ଖାଲି ବେଶୀ ଆହ୍ଲାଦ ।
ବୁଢ଼ା ମଣେ ନାହିଁ ନିଜକୁ ଦୁର୍ବଳ
ତାର ସବୁ ପେଶୀ ଉଠଇ ଫୁଲି,
ଦୁର୍ବଳର ବକ୍ଷ ଉଲ୍ଲସି ଉଠଇ
ଯୁବତୀ ରମଣୀ ଯାଏ ସେ ଭୁଲି ।
ଦେଖଣାହାରିଏ ଭୋଗନ୍ତି ହରଷ
ସ୍ୱପକ୍ଷ ସେନାର ବିଜୟ ଦେଖି,
ବିପକ୍ଷ ଦଳର ବିଜୟ ଦେଖିଲେ
ମୁହଁ ଟୁଆଡ଼ନ୍ତି ନାସିକା ଟେକି ।
ସବୁ ଦୁଃଖ ସୁଖ ହଜି ଯାଇଅଛି
ସମର-ପ୍ରାଙ୍ଗଣେ ଲୋକ ଗହଳେ,
ସୋଦର ସମ କି ଗଳି ପଡ଼ିଅଛି
ବିପୁଳ ସେନାର ଚରଣ ତଳେ ?
ଖୋଜିଲେ କି ସତେ ମିଳିବ ନାହିଁ ସେ
କିଏ ସେ ଖୋଜିବ କାହାକୁ ତର ?
ସବୁ ବୃଥା ଆଶା ଚଢ଼ିଛି ମୁଣ୍ଡରେ
ମରଣକୁ ଭାଳେ ନାହିଁ ବି ଡର ।

ମରିବେ ମାରିବେ ଯଶ ଅରଜିବେ
ଏହି ତ କେବଳ ଗୋଟିଏ ସୁଖ,
ବାଟ କି କୋଉଠି ଅଛି ହେଲେ ଟିକେ
ପଶିବ ତହିଁରେ କାହାର ଦୁଃଖ !
ଧନ୍ୟ ରେ ସମର ଧନ୍ୟ ତୋ କଉଶିଳ
କେତେ ଗରବରେ ମତାଇପାରୁ,
ପୁଣି ସେ ଗରବ ଚୂନା କରିଦେଇ
କାହାକୁ କି ବାଟେ ବୁଡ଼ାଇ ମାରୁ ।
ଜଣକ ମରଣେ ଅନ୍ୟ ତ ଡରେନା
ଆହୁରି ଦ୍ୱିଗୁଣ ବଢ଼ଇ ନିଶା,
ଜୟ ପରାଜୟ ସମରେ ସମାନ
ହରଷ ବିଷାଦ ନ ଥାଏ ମିଶା ।
ଯିଏ ଦେଖେ ଖାଲି କାନ୍ଦଇ ହସଇ
ଯେଣୁ ସେ ମରଣ ପାଖରେ ବନ୍ଧା,
ଯୋଦ୍ଧାଙ୍କ ମରଣ ନୁହଇ ମରଣ
ସରଗ ସୁଖର ଗୋଟିଏ ଫନ୍ଦା ।
ଗୋଲକଧନ୍ଦାରୁ ବାଟ ଫିଟିଯାଏ
ସରଗ ଦୁଆର ଦିଶଇ ପାଖେ,
ସରଳ ସୁନ୍ଦର ପାହାଚଗୁଡ଼ିଏ
ତଳୁ ଉପରକୁ ପଡ଼ିଛି ଆପେ ।
କିନ୍ତୁ ସେ ପାହାଡ଼ ଚିକ୍କଣ ଖସଡ଼ା
ଯାଉଁ ଯାଉଁ ଗୋଡ଼ ଖସଡ଼ ଯାଏ,
କିଏ ଗୁଳଯାଏ ଗୋଡ଼ ଚପି ଚପି
କିଏ ପଡ଼ି ଗଡ଼ଗଡ଼ଉ ଥାଏ ।
ଦେଖ ଦେଖ ଏକା ରଥେ ନର-ନାରାୟଣ,
ଆହା କି ସୁନ୍ଦର ରୂପ ମୋହୁଛି ନୟନ !
ଜଣକ ହାତରେ ଧନୁ ଅନ୍ୟ ଅସ୍ତ୍ରହୀନ,
ଛଡ଼ ନର ରଥୀ ଆଜ ସୂତ ନାରାୟଣ ।

ଜୀବନ-ସଂଗ୍ରାମ କର ଧର୍ମେ ରଖି ଲକ୍ଷ୍ୟ,
ନାରାୟଣ ଏହିପରି ହୋଇବେ ସହାୟ ।
ସମରେ ଶାନ୍ତିରେ ସଦା ହୋଇବେ ସେ ସାଥୀ,
କର ଅହିଂସା ସମର ଧରମରେ ମାତି ।
ଭକତ ଭାବନା କେବେ କରନ୍ତି ନ ତୁଚ୍ଛ,
ସଂଶୟ ହୋଇଲେ ଡାକ ତାହାଙ୍କୁ ହିଁ ପୁଚ୍ଛ ।
ଦେବେ ସେ ଉତ୍ତରଟିଏ ଆଗୁ ଦେଇଛନ୍ତି,
ବହୁତ ଭକତ ପୁଚ୍ଛି ପାଇଛନ୍ତି ଗତି ।
ଭୀଷ୍ମଙ୍କୁ ଛୁଇଁଛି ପାପ ପକ୍ଷପାତ କରି,
ଆହୁରି ଚରିତ୍ର ଛନ୍ତି ହୃଦୟରେ ଧରି ।
ଜାଣି ଶୁଣି ତାଙ୍କୁ କରି ଅଛନ୍ତି ଅବଜ୍ଞା,
ପାଣ୍ଡବ ସୋଦର ଯିଏ ଜାଣିବ ପ୍ରତିଜ୍ଞା ।
କରିଛନ୍ତି ପାଣ୍ଡବଙ୍କୁ କରିବେ ସଂହାର,
ଶ୍ରୀକୃଷ୍ଣ କରିବେ ତାର ଯୋଗ୍ୟ ପ୍ରତିକାର ।
ତାଙ୍କର ପ୍ରତିଜ୍ଞା ପାଇଁ ସୁଦର୍ଶନ ଧରି,
ଆସିବେ ରଥ ଉପରୁ ନିଜେ ଅବତରି ।
ଲଙ୍ଘିବେ ନିଜ ପ୍ରତିଜ୍ଞା ହେବେନି ନିରସ୍ତ,
ଶ୍ରୀକୃଷ୍ଣ ଭାଙ୍ଗିଲେ ପଣ ଘୋଷିବ ଜଗତ ।
ଧରିବେ ବିଶ୍ୱମୂରତି ଜଗତେ ଦୁର୍ଲ୍ଲଭ,
ଭକତର ମନ ଜାଣି କରିବେ ସୁଲଭ ।
ପାପ ପୁଣ୍ୟ ତାଙ୍କୁ କେବେ ଛୁଇଁପାରେ ନାହିଁ,
ଆଉ କାହାର ଦେଖିଲେ ଆସନ୍ତି ସେ ଧାଇଁ ।
ପ୍ରତିଜ୍ଞା ପାଖରେ ତାଙ୍କ ଭକତଟି ବଡ଼,
ପ୍ରତିଜ୍ଞା ଭାଙ୍ଗି ପ୍ରତିଜ୍ଞା କରନ୍ତି ସେ ଦୃଢ଼ ।
କରିବେ ଗରବ ଖର୍ବ ଶରଶେଯେ ଶୁଆଇ,
ରଖିବେ ପକାଇ ତାଙ୍କୁ ବ୍ରହ୍ମପଦ ପାଇଁ ।
ମିଳିବ ତାହାଙ୍କୁ ମୁକ୍ତି ଆତ୍ମସଙ୍ଗ କରି,
ବଇକୁଣ୍ଠେ ଯିବେ ଚଳି ଦିବ୍ୟ ବପୁ ଧରି ।

କହିଲେ ଦେଖାଇ ପାର୍ଥେ, "ଦେଖ ଧନଞ୍ଜୟ,
ବାଛି ଧରିଲେଣି ଶର କର ନାହିଁ ଭୟ ।
ଜୟ ପରାଜୟ ପରେ ଯୁଦ୍ଧ ପରିଣାମ,
କର ପ୍ରଚଣ୍ଡଶର ଛାଡ଼ ଧରି ମୋର ନାମ ।"
ଅରଜୁନ ପ୍ରଚଣ୍ଡଶର କଲେ ବାଛି ବାଛି,
କାହା ଶର କାହାରିକୁ କଲା ନାହିଁ କିଛି ।
ଯୁଝୁଁ ଯୁଝୁଁ ଦଶ ଦିନ ହୋଇଗଲା ଅନ୍ତ,
ସେନା ସେନାପତି ସବୁ ବହୁ ହେଲେ ହତ ।
ଅରଜୁନ ହୋଇଗଲେ ଶେଷରେ ହତାଶ,
ଏଥରକ ଭୀଷ୍ମ ନିଶ୍ଚେ କରିଦେବେ ନାଶ ।
ବାନ୍ଧିଲେ ଅମୋଘ ଶର ତୂଣୀରରୁ କାଢ଼ି,
ଅର୍ଜୁନ ନଦେଖିଣ ତାହା ଧନୁ ଦେଲେ ଛାଡ଼ି ।
ଶ୍ରୀକୃଷ୍ଣ ଏତିକିବେଳେ ରଥୋପରୁ ଡେଇଁ,
ଧାଇଁଲେ ଭୀଷ୍ମେ ମାରିବେ ସୁଦର୍ଶନ ନେଇ ।
ଭକତ-ପ୍ରଧାନ ଭୀଷ୍ମେ ମାରିଲେ ତ ନାହିଁ,
ବିଶ୍ୱରୂପ ଧରି ଖାଲି ଦେଲେ ଦେ ଡରାଇ ।
ଭକତ କାମନା କଲେ ଏପରି ପୂରଣ,
ଧନ୍ୟ ଯୁଗ-ଅବତାର ଧନ୍ୟ ନାରାୟଣ !
ଶିଖଣ୍ଡିକୁ ପାଶେ ରଖି ବୀର ଧନଞ୍ଜୟ,
ବାନ୍ଧିଲେ ବହୁତ ଶର ଗାଙ୍ଗେୟ ଅଥୟ ।
ନପୁଂସକ ଦେଖି ଆଗ ବରଜିଲେ ଧନୁ,
ପାଣ୍ଡବ ମାରିବା ପଣ ଛାଡ଼ିଦେଲେ ମନୁ ।
ଅର୍ଜୁନ ବାନ୍ଧିବା ଶରେ ପଡ଼ିଲେ ସେ ଢଳି,
ଶରସବୁ ଡେରିହୋଇ ହେଲା ଶେଯ ଭଳି ।
ଅର୍ଜୁନ ନିକ୍ଷେପି ଶର ଦେଲେ ଉପାଧାନ,
ଏହିପରି ଭୀଷ୍ମ ହେଲେ ଶରରେ ଶୟାନ ।
ପିତାମହ ସୁଖେ ଶୋଇ କଲେ ଆଶୀର୍ବାଦ,
ହୁଅ ସମର-ବିଜୟୀ ତୁଟୁ ଏ ବିବାଦ ।

ଯାହାର ସହାୟ୍ ନିଜେ କୃଷ୍ଣ ଭଗବାନ,
କି କରିବ ଖ୍ରିଷ୍ମ ଶୁର ମାନବ ସାମାନ୍ୟ ।
ତୃଷାର୍ତ୍ତ ହୋଇ ଖୋଜିଲେ ଖ୍ରିଷ୍ମ ଗଙ୍ଗା ବାରି,
ଅର୍ଜୁନ ପାତାଳୁ ଆଣି ଦେଲେ ଶର ମାରି ।
ମାଘ ମାସ ଶୁକ୍ଳପକ୍ଷ ଏକାଦଶୀ ଦିନ,
ଚଳିଲେ ଖ୍ରିଷ୍ମ ସରଗେ ଦେଖି ନାରାୟଣ ।
ସେହି ଦିନୁ ନାମ ହେଲା ଖ୍ରିଷ୍ମ ଏକାଦଶୀ,
ଆଜି ବି ବିଷ୍ଣୁ ଭକତେ ପାଳନ୍ତି ତା ଚପି ।
ହରିଦିନ ପାଇଁ ଖ୍ରିଷ୍ମ ହୋଇଲେ ଅମର,
ତେଣୁ ତ ମହାଭାରତ ଧରମ ସମର ।
ଇଚ୍ଛା ମରଣ ତାଙ୍କର ହୋଇଲା ସଫଳ,
ଖ୍ରିଷ୍ମ ପ୍ରତିଜ୍ଞା ଏବେ ରହିଲା ଅଟଳ ।
ଅନ୍ତିମ କାଳରେ କୃଷ୍ଣ ନାମ ଜପ କରି,
ଚଳନ୍ତି ସକଳେ ସ୍ୱର୍ଗେ ପାପ କ୍ଷୟ କରି ।
କୃଷ୍ଣ ଦରଶନ ଯୋଗ ନୁହଇ ସମ୍ଭବ,
ସମ୍ପଦେ ବିପଦେ ବସି ତାହାଙ୍କୁ ହିଁ ଭାବ ।
ଭାବନାରେ ମିଳିଯିବ ପରମ ମୁକତି,
ତାହା ଛଡ଼ା ମାନବର ନାହିଁ ଅନ୍ୟ ଗତି ।
କୌରବ ଶିବିରେ ବିକଳ କ୍ରନ୍ଦନ
ପାଣ୍ଡବ ଶିବିରେ ହରଷ ରୋଳ,
ହର୍ଷ ଶଶଧର ଉଇଁଛି ଗଗନେ
ଆନନ୍ଦ-ସାଗର ତେଣୁ ଉଦ୍ବେଳ ।
କୌରବଙ୍କ ଆଜି ଉଆଁସ ରଜନୀ
ବିଷାଦ-ବାରିଦ ବସିଛି ମାଡ଼ି,
ହରଷ ଆମୋଦ ହସ ଖୁସିସବୁ
ହୃଦୟ-ରାଇଜ ଯାଇଛି ଛାଡ଼ି ।

ଜଣକ ହସରେ ଆଉ ଜଣେ କାନ୍ଦେ
ଏହିଟିକ ସତେ ସଂସାର-ନୀତି,
ସ୍ୱାର୍ଥ ପାଇଁ ସିନା ଏସବୁ ରହସ୍ୟ
ନ ହେଲେ କେବଳ ତୁଚ୍ଛା ଦୁର୍ନୀତି ।
ଏ ଦୁର୍ନୀତି ବାଟୁ ଜଣେ ହିଁ କେବଳ
ଭୀଷ୍ମଙ୍କ ମରଣେ କାନ୍ଦୁଛୁ ବସି,
ଯୁଧିଷ୍ଠିର ସିଏ ଆଉ କେହି ନୁହେ
ସେଥିପାଇଁ ପାରୁ ନାହାନ୍ତ ହସି ।
ନିଃସ୍ୱାର୍ଥପର ସେ ଧରମରେ ମତ୍ତ
ପର ଆପଣା ସେ ଜାଣନ୍ତ ନାହିଁ,
ପର ପାଇଁ ଯାହା ନିଜ ପାଇଁ ତାହା
ସବୁର ସୁଖ ସେ ବସନ୍ତ ଚାହିଁ ।

———

# ଦ୍ରୋଣ ଓ ଜୟଦ୍ରଥ ବଧେ ଶ୍ରୀକୃଷ୍ଣ

ପଡ଼ିଲା ଏଥର ଦ୍ରୋଣଙ୍କର ପାଳି
ସେନାପତି ସାଜି ଆସିବେ ରଣେ,
ନାରାୟଣୀ-ସେନା ସମରେ ପ୍ରଚଣ୍ଡ
ଅର୍ଜୁନ କରିବେ ସମର ତେଣେ ।
ପାଣ୍ଡବ ପକ୍ଷରେ ସେନାପତି ହେବ
ଏପରି ତ କାହିଁ ମିଳୁନି ଜଣେ,
କେତେ ଭାବ ଚିନ୍ତି ବାଛିଲେ ଭୀମଙ୍କୁ
କିନ୍ତୁ ପାରିବେ କି ଗୁରୁଙ୍କୁ ରଣେ ?
ଭୀମ ଖାଲି ସିନା ଗଦାଯୁଦ୍ଧେ ଶ୍ରେଷ୍ଠ
ପାରିବେ କି କେବେ କାର୍ମୁକ ଧରି ?
ଅକାରଣେ ଆଜି ପାଣ୍ଡବ ସଇନ
ଅରକ୍ଷ ହୋଇଣ ପଡ଼ିବେ ମରି ।
ଅର୍ଜୁନ ଯା ଶିଷ୍ୟ ଭୃଗୁପତି ଗୁରୁ
ତା ବିପକ୍ଷେ ଧନୁ ଧରିବ କିଏ ?
ସିଏ ବା ଧରନ୍ତା ନାରାୟଣୀ-ସେନା
ସଙ୍ଗରେ ସମର କରୁଛି ସିଏ ।
କଉଣସି ମତେ ଗଲା ତିନି ଦିନ
ଚତୁର୍ଥ ଦିନରେ ପ୍ରତିଜ୍ଞା କଲେ,
ଆଜି ଯୁଧିଷ୍ଠିରେ ବାନ୍ଧିବି ନିଶ୍ଚୟ
କିଏ ସେ ରଖିବ ଦେଖିବି ବଳେ !

ଚକ୍ରବ୍ୟୂହ ରଚି କଲେ ଘୋର ରଣ
ଭେଦ ପାରିଲେନି ସେ ବ୍ୟୂହ କେହି,
ଯୁଧିଷ୍ଠିର ଭୟେ ହୋଇଲେ ଅସ୍ଥିର
ଡାକଲେ କୃଷ୍ଣଙ୍କୁ ଶରଣଂ ଦେହି ।
ଅଭିମନ୍ୟୁ ଆସି କହିଲା ଗରବେ,
"କାହିଁକି ଭାବିଲେଣି କରୁଛ ପିତଃ,
ବ୍ୟୂହ ଭେଦିଯିବି ବିପକ୍ଷ ମାରିବି
ଆଜି ଏ ସମରେ ଅଯୋଗ୍ୟ ସୁତ ।
ଅର୍ଜୁନ ଶ୍ରୀକୃଷ୍ଣ ରହିଛ ଏ ଦେହେ
ବହୁଅଛି ଧରି ମିଳିତ ତନୁ,
ଦ୍ରୋଣ କିବା ଛାର ବୁଢ଼ା ବ୍ରାହ୍ମଣଟା
ଅଭିମନ୍ୟୁ ଆଗେ ଧରିବ ଧନୁ !
ଭେଦିଯିବି ସିନା ଆସି ପାରିବିନି
ସେକଥାଟି ଜାଣି ପାରିଲି ନାହିଁ,
ପିତାଙ୍କ ପାଖରୁ ଶିଖିବା ପାଇଁକି
ବେଳ କେତେବେଳେ ପାଇଲି କାହିଁ !
ଜନନୀ-ଗରଭେ ଥିଲି ଯେତେବେଳେ
ଜନନୀକୁ ପିତା କହୁଣ ଥିଲେ,
ଶୁଣିଥିଲି ମାତ୍ର ଶୁଣୁ ଶୁଣୁ ମାଆ
ସୁଖ ଶୟନରେ ଶୋଇପଡ଼ିଲେ ।
ଭାଙ୍ଗିବି ମୁଁ ଦ୍ୱାର ପଶିବି ବ୍ୟୂହରେ
ମୋ ପଛେ ପଶିବେ ଆଉ ସକଳେ,
ଜୟଦ୍ରଥ ଛାର ଜଗିଛି ତ ଦ୍ୱାର
ବଳ ଯିବ କି ସେ ଭୀମଙ୍କୁ ବଳେ ?
ଆଜି ସେନାପତି କର ମୋତେ ପିତଃ !
ହେଳାରେ ଜିଣିବି ଗୁରୁଙ୍କୁ ତବ,
ଏ ବିଶାଳ ଢାଲ-' ଗଜା ତନୟର
ରଖିବ କି ତବ ଗୁରୁ-ଗୌରବ !

ଜାଣିବେ ଆଚାର୍ଯ୍ୟ ଅର୍ଜୁନ ତନୟ
ଅର୍ଜୁନଙ୍କଠାରୁ ନୁହଇ ଊଣା,
ସମର-ଭୂଇଁରେ ତାଙ୍କର ଗରବ
ଘଙ୍ଗେଇ୍ଦ୍ଭୁଙ୍ଗି ସବୁ କରବ ଚୂନା ।"
ବାନ୍ଧଦେଲେ ଶାଡ଼ୀ ଚଳିଲା କୁମର
ହାତରେ ଧରିଛି ଶିଶୁ ଗାଣ୍ଡୀବ,
ଛୁଆ ବିଷଧରଠାରୁ ଯେ ଅଧିକ
କିଏ ତା ଗରଳ ସହିପାରିବ !
ଅନାୟାସେ ବ୍ୟୂହେ ପଶିଲା ବାଳକ
ମାରି ପଦା କଲା ବିପକ୍ଷପକ୍ଷ,
କର୍ଣ୍ଣ ଦୁଃଶାସନ ଦ୍ରୋଣାଚାର୍ଯ୍ୟ ଅଦି
କେହି ହେଲେ ନାହିଁ ତା ସମକକ୍ଷ ।
ଦୁର୍ଯ୍ୟୋଧନ ଶେଷେ ହତାଶ ହୋଇଲା
ସାତ ରଥୀଯାକ ମାରି ଦେ ମିଣି,
କହିଲା ଗରଜ ଶୁଣ ଛୁଆଟାଏ
ସବୁ ସେନା ମୋର ଦେଲାଣି ଧ୍ୱଂସି ।
ସପ୍ତରଥୀ ବେଢ଼ି ମାଇଲେ ପୁଅକୁ
ବିଚାରିଲେ ନାହିଁ ପାପ ଓ ପୁଣ୍ୟ,
ଧିକ ଦୁର୍ଯ୍ୟୋଧନ ତୋ ରାଜ୍ୟଲାଳସା
ପୋଡ଼ିଯାଉ ତୋର ରାଜତ୍ୱପଣ ।
ସଂଶପ୍ତକ ମାରି କୃଷ୍ଣ ଧନଞ୍ଜୟ
ଆସୁଛନ୍ତି ଫେରି ଶିବିର ମୁଖେ,
ଦୁହିଁଙ୍କ ମନରେ ନାହିଁ ହର୍ଷ ଲେଶ
ଦୁହେଁ ବସିଛନ୍ତି ପରମ ଦୁଃଖେ ।
କହିଲେ ଅର୍ଜୁନ ଅନୁତାପ କରି,
"ଏ ଦୁଃଖ କି ସତେ ନିୟତି ମୋର !
ନାରାୟଣୀ-ସେନା ଅତୁଳ ଜଗତେ
ଅର୍ଜୁନ ଏପରି କଲା ସଂହାର !

ସତ୍ୟ ଦ୍ୱୈପାୟନ ଅଦୃଷ୍ଟ ଅପାର
ଦୃଷ୍ଟି ସୀମାରେଖା ବହୁତ ସାନ,
ଅଦୃଷ୍ଟ ତମିରେ ସବୁ ଲୁଚଯାଏ
କିଏ ସେ ଜାଣିବ କା ପରିଣାମ !"
କହିଲେ ଶ୍ରୀକୃଷ୍ଣ ପ୍ରଶାନ୍ତ ବଦନେ,
"କିଆଁ ଅନୁତାପ ବୃଥାରେ ପାର୍ଥ !
ନାରାୟଣୀ-ସେନା ସଙ୍ଗରେ ତୁମର
କେଉଁଠାରେ ଥିଲ କେତେ ଯା ସ୍ୱାର୍ଥ ?
ନାରାୟଣୀ-ସେନା ହୋଇଥିଲ ସୃଷ୍ଟି
ନାରାୟଣ କାର୍ଯ୍ୟ ସାଧିବା ପାଇଁ,
ସେ କରମ ସେ ତ ସାରି ଦେଇଅଛି
କାହିଁକି ବସନ୍ତା ମରତେ ଗୃହୀଁ ?
ସେ ମୋହର ଅଂଶ ମୁଁ ତାର ସମଷ୍ଟି
ମୋହର ଦେହରେ ଗଲ ତ ମିଶି,
ତାଙ୍କର ଏଇନା ଉଜ୍ଜ୍ୱଳ ପ୍ରଭାତ
ତୁମର କାହିଁକି ତାମସୀ ନିଶି ?
ସାଗର-ସଲିଳେ ପାଣି ଫୋଟକା ସେ
ଭଙ୍ଗିଲେ ମିଶିଲେ ବାରିଧି ଜଳେ,
ଏଥିପାଇଁ କିଆଁ ତୁମ ନୟନରୁ
ଅବଶ୍ରାନ୍ତ ଏତେ ଲୋତକ ଗଳେ ?
ତୁମେ କିଏ ତାଙ୍କୁ ମାରିବା ପାଇଁକି
ତୁମେ ତ ନିମିତ୍ତ ମାତ୍ର ତାହାର,
ଯାହାର ସେ ଅଂଶ ଯାହାର ସର୍ଜନା
ସେହି ତ କରିଛି ତାର ସଂହାର ।
ଅନନ୍ତ ଦେହରେ ଅନ୍ତ ମିଶିଗଲ
ହୋଇ ତ ଯାଇନ ତାହାର ଅନ୍ତ,
ହୋଇଛି ଅନନ୍ତ ଆହୁରି ପ୍ରଶାନ୍ତ
ଏଠେଇ ଥିଲେ ତ ଥାଆନ୍ତ ଶାନ୍ତ ।

ତୁମେ ଖୋଜ ନାହିଁ    ଅନନ୍ତ ହେବାକୁ
    ତୁମେ ହେବ ନାହିଁ ଗଗନ ସମ,
ଗଗନ ଭୁବନ    ହେବ ନାହିଁ ଏକ
    ମଝି ବ୍ୟବଧାନ ରହିବ ତମ ?
ଏତେ କଥା କହି    ବୁଝାଇଥିଲି ମୁଁ
    ତଥାପି ତୁମର ତୁଟିନି ମାୟା,
ଏହି ମାୟା ପାଇଁ    ଉଜାଡ଼ି ଦେବ କି
    ତୁମର କରମ ତୁମର କାୟା !
କାୟାଟା ନଶ୍ୱର    ଜାଣିଛ ତ ତୁମେ
    ସେହି ତ ମରଛି ଜୀଇଛି ଆତ୍ମା,
ଆତ୍ମା ପାଇଁ ଶୋକ    କରୁଛ କି ତୁମେ
    କାହା ପାଇଁ ଶୋକ କରୁଛ କହ ?
ପରମ ଆତ୍ମାରେ    ମିଶାଅ ଆତ୍ମାକୁ
    ସେହି ତ ତୁମର ପରମ ମୁକ୍ତି,
କର ଆତ୍ମ-ସଙ୍ଗ    ସାଧ ତୁମ କର୍ମ
    ପାଳ ତୁମ ଧର୍ମ ପାଇବ ଗତି ।
ସାଗର ଗରଭ    ବାଲୁକା ଶଯ୍ୟାରେ
    କଣାଟିଏ ବାଲି ମିଶଇ ନାହିଁ,
ତାର ସତ୍ତା କ'ଣ    ହଜିଯାଏ ତହିଁ
    କିଏ ଭାବେ ସେହି ବାଲିଟି ପାଇଁ !
ଅଦୃଷ୍ଟ ଭିତରେ    ମିଶିଗଲା ଦୃଷ୍ଟ
    ଯେଉଁ ଅଦୃଷ୍ଟକୁ ସେହି ଅଦୃଷ୍ଟ,
ଏଥିପାଇଁ ତୁମ    ଶୋକ ବା କାହିଁକି
    ଅଦୃଷ୍ଟ ହୋଇଛି ଦୃଷ୍ଟରେ ପୁଷ୍ଟ ?
ଶହେ ଶୂନ୍ୟ ସଙ୍ଗେ    ମିଶା ଆଉ ଟିଏ
    ବଢ଼ାଇ ପାରିବ ଶକତି ତାର,
ଶୂନ୍ୟର ସଙ୍ଗରେ    ମିଶାଅ ଅଙ୍କକୁ
    ଗୁଣଶକ୍ତି ତାର ମାପ ଏଥର ।

ସେ ଅଙ୍କ ମିଶାଅ ବାଆଁ ପାଖେ ସବୁ
ଘୁଞ୍ଚିଯିବ ନାହିଁ ରହିବ ଏକ,
ଡାହାଣେ ବସାଇ ମାପ କର ଶକ୍ତି
ହୋଇଯିବ ସାନ ପୌନପୌନିକ ।
ଦଶମିକ ନଅ ଏକକରୁ ଊଣା
ସେହି ଟିକକ ତ ଆମ ଅଦୃଷ୍ଟ,
ମିଶାଅ ସେ ଟିକି ମିଶା ଭଲକରି
ଏକରେ ଅଦୃଷ୍ଟ ହୋଇଛି ପୁଷ୍ଟ ।
ସକଳେ କହନ୍ତି ଶୂନ୍ୟଟାର ଗୁଣ
ଆକାର ଶକତି ନ ଥାଏ କିଛି,
ଏସବୁ କଳ୍ପନା ବୃଥା ଜଳପନା
ଅଜ୍ଞାନ ଭାବନା କରନା ଛିଛି ।
ଅଦୃଷ୍ଟକୁ ତୁମେ ଦେଖିବାକୁ ଚାହଁ ?
କର ତୁମ କର୍ମ ହୁଅ ହେ ବଡ଼,
ବଡ଼ା ଚକ୍ଷୁସୀମା ଖୋଜ ଭଲକରି
କାହିଁ କାହିଁ କଆଁ ହେଉଛ ଜଡ଼ ?
ବଡ଼କୁ ଖୋଜ ହେ ବଡ଼ ନୟନରେ
ଦୃଷ୍ଟିକୁ ଖୋଜ ଅଣୁବୀକ୍ଷଣେ,
ସାନ ହେବ ବଡ଼ ଦଶିଯିବ ଆପେ
ନିଷ୍କାମ କରମ ସାଧନା ଗୁଣେ ।
ରବ ରତରତ ପ୍ରାଚୀ ଗଗନେ
ଶିଙ୍ଘ ଶିଖରେ ଲୋହିତ ଶିଖା,
ଶ୍ୟାମଳମା ଅଛି ଲୋହିତ ମିଶିଛି
ଷଷ୍ଠିଏ ପର ଦିଶୁଛି ଗିରି ।
ଗଗନ ପଥଟା- ଯାକ ନିରଜନ
ଚଢ଼େଇଟିଏ ହି ଉଡ଼ୁନି କାହିଁ,
ଶବ ଆଚ୍ଛାଦିତ ସମର ପ୍ରାଙ୍ଗଣ
ଅନନ୍ତ ଗଗନେ ରହିଛି ଚାହିଁ ।

ଦୂରରୁ ଦିଶିଲା ଭଙ୍ଗା ଚକ୍ରବ୍ୟୂହ
ଶବରେ ଶବରେ ଉଚ୍ଚ ପ୍ରାଚୀର,
ପବନକୁ ଭେଦି ଛୁଇଁପିବ କବା
ଅନନ୍ତ ଗଗନେ ତାହାର ଶିର !
ଗଗନେ ଭୁବନେ କୁହୁଳିଆ ଗୁହି
ଗୋଧୂଳି ଆସୁଛି ମୃଦୁଳେ ଧାଇଁ,
ଅନନ୍ତ ଓ ଶାନ୍ତ କଣ୍ଠଦେବ ଏକା
ଅଲଗା ଅଲଗା ଦିଶିବେ ନାହିଁ ।
କହିଲେ ଅର୍ଜୁନ, "ଦେଖ ଜନାର୍ଦ୍ଦନ !
ଏହି ଚକ୍ରବ୍ୟୂହ ରଚିଲେ ଗୁରୁ,
କଏ ସେହି ବୀର ଭାଙ୍ଗିଛି ତାହାକୁ
ଶବର ପାଚେରି ଦିଶୁଛି ଦୂରୁ ।
ଦାରୁଣ ପ୍ରତିଜ୍ଞା କରିଥିଲେ ସିଏ
ଧର୍ମଙ୍କୁ ବାନ୍ଧି ନେବାର ପାଇଁ,
ବାନ୍ଧିଲେ କି ଗୁରୁ ? ପାଣ୍ଡବ ଶିବିରେ
କାହିଁ ହର୍ଷରୋଳ ଶୁଭୁ ତ ନାହିଁ !
ସକଳ ନୀରବ ନଅଣ୍ଡ କାହିଁକି
ବେଗେ ବାହୁ ରଥ ଦେଖିବା ପାଇଁ,
କାହିଁ ଅଭିମନ୍ୟୁ କାହିଁ ସହୋଦର
କେହି ତ ପାଗ୍ଳେଟି ଆସୁନି ଧାଇଁ !
ସଂଶପ୍ତକଜୟୀ କୃଷ୍ଣ ଫାଲଗୁନୀ
ଆସୁଛନ୍ତି ଫେରି ବିଶ୍ରାମ ପାଇଁ,
ତାଙ୍କୁ ନିଉଛାଇ ନେବାକୁ ଶିବିରେ
କେହି ତ ଗୋଟିଏ ଆସୁନି କାହିଁ !"
ପଶିଲେ ଶିବିରେ ଦେଖିଲେ ସକଳେ
ନୀରବ କ୍ରନ୍ଦନ କରନ୍ତି ବସି,
ଜାହ୍ନବୀ ଯମୁନା ମିଳିତ ସ୍ରୋତଙ୍କ
କଳ କଳ ହୋଇ ଯାଉଛି ଖସି !

ପୁଚ୍ଛିଲେ ଅର୍ଜୁନ        କାନ୍ଦଣା କାରଣ
ଯୁଧିଷ୍ଠିର ଶୋକ ଗଦ୍‌ଗଦ କରି,
କହିଲେ ଖେଦରେ,        "ଶୁଣ ବାସୁଦେବ,
ଆଜ ଫାଲଗୁନ ! ଧଇର୍ଯ୍ୟ ଧରି ।
ଚକ୍ରବ୍ୟୂହ କରି        କରେ କମ୍ବୁ ଧରି
ବଜାଇଲେ ଗୁରୁ ଗରବ କରି,
କଏ ଅଛୁ ବୀର        ପାଣ୍ଡବ ପକ୍ଷରେ
ଆସ ସେ ବହନ କାର୍ମୁକ ଧରି ।
ଆଜ ଯୁଧିଷ୍ଠିରେ        ବାନ୍ଧବ ମୁକରି
ଦୁର୍ଯ୍ୟୋଧନ କରେ ସମର୍ପି ଦେଇ,
ସମର ସମାପ୍ତି        କରିଦେବି ଆଜ
ଦୁର୍ଯ୍ୟୋଧନ ଯିବ କୀରତି ନେଇ ।
ପାଣ୍ଡବ ସଇନ        ଗଣିଲା ପ୍ରମାଦ
ତୁମରି ବହିନେ ହେଲି ମୁଁ ଅନ୍ଧ,
ଅଭିମନ୍ୟୁ ଆସି        କହିଲା ବଚନ
ସେନାପତି ହେବ କରି ନିର୍ବନ୍ଧ ।
ଆତୁରେ କହିଲା        ଭାଙ୍ଗିଦେବି ବ୍ୟୂହ
ମାରିବି ଅରାତି କରିବି ଚଦା,
ନ ଥାନ୍ତୁ ଅର୍ଜୁନ        ନ ଥାନ୍ତୁ କେଶବ
ଅଛୁ ଅଭିମନ୍ୟୁ ପାଖରେ ସଦା ।
କଆଁ ଡର ପିତଃ        ବୁଢ଼ା ବ୍ରାହ୍ମଣକୁ
ଜଣିବ ହେଳାରେ କୌରବ ସେନା,
କରୁଛି ମିନତି,        କରି ସେନାପତି
ମୋର ନିବେଦନ କରନ୍ତୁ ଶୁଣା ।
ଅଦୃଷ୍ଟକୁ ଆଉ        ଦେଖିପାରିଲିନି
ପଠାଇଲି ପୁଅ ତା କଥା କରି,
ଭାଙ୍ଗିଦେଲା ବ୍ୟୂହ        ଏକା ଅଭିମନ୍ୟୁ
ସିଆଡ଼େ ରହିଲା ପଡ଼ିଲା ମରି ।

ସାତ ରଥୀ ତାଙ୍କୁ ବେଢ଼ି ମାଇଲେ ରେ
ଜଣେ କେହ୍ନ ତାଙ୍କୁ ପାରିଲେ ନାହିଁ,
ଦେଖ ତାଇ ଥରେ ମଣ୍ଡା ପାଚେଶ୍ୱ ଟା
ପୁଅ ଗଡ଼ି ଦେଇ ଦେଖିଲ ନାହିଁ ।
ଜୟଦ୍ରଥ ହେଲ ଏକାରେ କୃତଘ୍ନ
କାହାକୁ ଗୋଟିଏ ଘୁଡ଼ିଲ ନାହିଁ,
ଭୀମ ଆଦି କରି ଅଉ ଯେତେ ବୀର
ଦୁଆରେ ରହିଲେ ବକଲେ ଗୃହିଁ ।"
ଶୁଣି ଶୁଣି କରି ମାଉବେ ଅର୍ଜୁନ
ଥକା ହୋଇ ବସି ପଡ଼ିଲେ ତଳେ,
ପୁଅ ଗୁଣ ଝୁରି ପୁଅ ରୂପ ସ୍ମରି
ବୁଡ଼ାଇଲେ ଗଣ୍ଡ ଲୋତକଜଳେ ।
କହିଲେ ଗରଜ ଦମ୍ଭୋଳିଆ ସ୍ୱବେ,
"କୌରବ ମୋହର ଭାଙ୍ଗିଛୁ ମୋହ,
ଫିଟିଛୁ ମୋ ଅଖି ଦେଖିଛୁ ଅନୃଷ୍ଟ
ହୃଦୟେ ଉଠିଛୁ ଦାରୁଣ କୋହ ।"
ଉଠି ଠିଆହେଲେ ଆହ୍ନଣ କହିଲେ—
"ଜୟଦ୍ରଥ ! ଜୟଦ୍ରଥ !"
କୌରବ ଶିବରେ ଗୃହିଁ ଗରଜିଲେ କ୍ରୋଧେ
ଉନ୍ମତ୍ତ ଅର୍ଜୁନ ।
କୁରୁକ୍ଷେତ୍ର ଥରି ଥରି ଥରିଲଟି ପଡ଼ ।
କମ୍ପିଉଠ ଗାଣ୍ଡୀବ ଧନୁ ଏପାଖେ ସେପାଖେ,
କମ୍ପାଇ କୋଦଣ୍ଡ ଶବ୍ଦେ ଗଗନ ଭୁବନ ।
କହିଲେ ସେ, "ଜନାର୍ଦ୍ଦନ ! ଶୁଣ ମୋ ପ୍ରତିଜ୍ଞା,
ନ କର ପୁରୁଷୋତ୍ତମ ! ତୁମକୁ ଆଶ୍ରୟ,
କାଲି ଜୟଦ୍ରଥେ ନଷ୍ଟେ କରିବ ସଂହାର ।
କଲି ମୁଁ ପ୍ରତିଜ୍ଞା ପୁଣି ସୂର୍ଯ୍ୟାସ୍ତ ଆଗରୁ
ନ ମାରି ଜୀବତ ଯେବେ ରଖେଁ ଜୟଦ୍ରଥ,

ଏହିଠାରେ ଅନଳ ମୁଁ କରି ପ୍ରଜ୍ୱଳିତ
ପିତା ପୁତ୍ର ଏକ ଚିତା କରିବୁ ପ୍ରବେଶ ।
ସାତଟା ଶୃଗାଳ ବେଢ଼ି ସିଂହ ଶିଶୁ ମୋର
ଅନ୍ୟାୟ ସମର କରି ମାରିଲେ ଏପରି ।
ହେ କେଶବ ! ତୁମେ ସାକ୍ଷୀ ।”

ଶୁଭିଲା କୌରବ ଶିବିରେ ଶବଦ
ଜୟଦ୍ରଥ ଭୟେ ଉଠିଲା ଥରି,
କାନ୍ଦି କାନ୍ଦି ହୋଇ ଦୁର୍ଯ୍ୟୋଧନେ ଚାହିଁ
କହିଲା ବିକଳେ ତା କର ଧରି ।
"କାଲିଠାରୁ ମୋର ସରିବ ଜୀବନ
ଆଉ ତୁମ ମୁହିଁ ଦେଖିବି ନାହିଁ,
କାହାକୁ ତ ଆଉ ଦେଖୁନାହିଁ କାହିଁ
ଶରଣ ପଶିବି ଜୀବନ ପାଇଁ !"
କୌରବ ଶିବିରେ ପଶିଲା ଛନକା
ଥରି ଥରି ଥରି ଥରିଲେ ସର୍ବେ,
କେହି କହିଲେନି ଶରଣ ରଖିବେ
ଘୃତ ଟାଣି କରି କହୁଛି ହିଁ ଗର୍ବେ ।
ଦଉଡ଼ିଲେ ସବୁ ଦ୍ରୋଣଙ୍କ ସନ୍ନିଧି
ଗୁରୁ ପ୍ରବୋଧିଲେ ସାନ୍ତ୍ୱନା ଦେଇ,
ଧୈର୍ଯ୍ୟ ଧରି ସବୁ କାତର ହୁଅନା
ଅର୍ଜୁନ ପ୍ରତିଜ୍ଞା ରହିବ ନାହିଁ ।
ସୂର୍ଯ୍ୟାସ୍ତ ପୂର୍ବରୁ ମାରି ପାରିବନି
ତାହାର ଉପାୟ କହୁଛି ଶୁଣ,
କାଲି ଏକ ବ୍ୟୂହ ସଜାଡ଼ିବି ମୁହିଁ
ଲମ୍ବାରେ ହେବ ସେ ପଞ୍ଚାଶ ପୂର୍ଣ ।
ଘୁରିପାଖେ ଥିବେ ସେନା ସେନାପତି
ଲୁଛ ପରି ହେବ ଗୋଟିଏ ମୁହିଁ,
ଲୁଞ୍ଚିକୁ ଜଗି ସକଳେ ରହିବା
ଆଗେ ମୁଁ ରହିବି ଆବରି ବ୍ୟୂହ ।

ସବା ଶେଷଭାଗେ ଥିବ ଜୟଦ୍ରଥ
 ଯାଉଁ ଯାଉଁ ବାଟେ ବୁଡ଼ିବ ସଞ୍ଜ,
ଅର୍ଜୁନ ନିଶ୍ଚୟ ଅନଳେ ପଶିବ
 ହେବ ନାହିଁ ତାର ପ୍ରତିଜ୍ଞା ଭଙ୍ଗ ।"
ଅର୍ଜୁନ ପ୍ରତିଜ୍ଞା ଶୁଣି ନାରାୟଣ
 କଲେ ସେ ଭାଳେଣି ଅର୍ଜୁନ ପାଇଁ,
ନନ୍ଦିଘୋଷ ଚଢ଼ି ଡାକି ଫାଲଗୁନି
 ରାତି ରାତି ଚଲେ କୈଳାସେ ଧାଇଁ ।
ହର ପାରବତୀ ତୋଷିଲେ ସେବାରେ
 ଜୟଦ୍ରଥ ଯେଣୁ ଶିବଙ୍କ ଭକ୍ତ,
ଶିବ ବର ଦେଲେ କହିଲେ, "ଶ୍ରୀକୃଷ୍ଣ !
 ଅର୍ଜୁନ ପ୍ରତିଜ୍ଞା ହେବନି ହତ ।"
ପାହିଲା ରଜନୀ ଉଇଁଲା ଭାସ୍କର
 ଗଗନେ ଭୁବନେ ଫୁଟିଲା ପ୍ରଭା,
ସରସୀ ସଲିଳେ ଫୁଟିଲେ ପଙ୍କଜ
 କୁମୁଦିନୀ ହେଲା ମଳିନ ଆଭା ।
ଉଡ଼ିଲେ ଭ୍ରମର ଚଳ ଚଳ ହୋଇ
 ଫୁଲରୁ ଫୁଲରୁ ପୀୟୂଷ ଚୁଷି,
ଫୁଲଦଳେ ବସି ଭୂଷି ଦେଉଛନ୍ତି
 ନୀଳ ଭୂଷଣରେ କୁସୁମରାଶି ।
ଶିବିରେ ଶିବିରେ ଖଡ଼ ଶୈଳପ୍ରାୟ
 ଶୋଭୁଛନ୍ତି ସୁନ୍ଦର ଶୁକଳ ତମ୍ବୁ,
ଶୁଭୁଛି ତହିଁରେ ଗୁରୁ ଗରଜନେ
 ବାଜୁଛି କେବଳ ମଙ୍ଗଳ କମ୍ବୁ ।
ଦୁଇ ଶିବିରରେ ଶୁଣାଗଲା ଶଙ୍ଖ
 ସମର ସଙ୍କେତ ଗମ୍ଭୀର ସ୍ୱର,
ତାତିଲା ରକତ ଶିରରେ ଶିରରେ
 ସୁଅ ବହିଗଲା ପ୍ରଖରତର ।

ଶତ୍ରୁଙ୍କ ପରାଣେ ପଶିଲା ଛନକା
ଥରିଲେ କେବଳ ଛନଆ ହୋଇ,
ଶତ୍ରୁଙ୍କ ଅଗ୍ରଣୀ ଆଜ ଜୟଦ୍ରଥ
ଗତ ରଜନୀରେ ପାରିନି ଶୋଇ ।
ଆଟା ନିଶାର ଲାଗିଅଛି ଦ୍ୱନ୍ଦ୍ୱ
ଜିଇଯିବ ଅବା ଯିବ ସେ ମରି,
ଅର୍ଜୁନ ପ୍ରତିଜ୍ଞା ବଳପଡ଼ିବ କି
ଗୁରୁଙ୍କ ପ୍ରତିଜ୍ଞା ଯିବ ବା ବଳି !
ସମର-କ୍ଷେତ୍ରଟା ପୂରିଗଲା ସୈନ୍ୟେ
ରଥ ଗଜ ଅଶ୍ୱେ ରଚିଲେ ବ୍ୟୂହ,
ଜୟଦ୍ରଥ ଆଜି ମରିବ କି ନାହିଁ
କିଏ ତା ଜାଣିଛି କହିବ କୁହ ।
ଶ୍ରୀକୃଷ୍ଣ ଦେଖନ୍ତି ଜାଣନ୍ତି ତ ସବୁ
ତାଙ୍କୁ ପଚାରିଲେ କହିବେ ସତ,
ଜୟଦ୍ରଥ ଯେବେ ନ ମରିବ ତେବେ
କଆଁ ସେ ଚଳାଉ ଅଛନ୍ତି ରଥ ?
ସାରଥିର କ'ଣ କରମ ନାହିଁ କି
ରଥୀର ନିମିତ୍ତ କରିବା ପାଇଁ ?
ଦେଖ ଦେଖ ଦେଖ କପିଧ୍ୱଜ ରଥ
ଚଞ୍ଚଳ ଚଞ୍ଚଳ ଆସୁଛି ଧାଇଁ ।
ଜୟଦ୍ରଥ ତେଣେ ବ୍ୟୂହର ଭିତରେ
ଚାହିଁଦେଲା ରଥେ କୃଷ୍ଣ ଫାଲ୍‌ଗୁନି,
ଉଠିଗଲା ଝାଇଁ ଉଡ଼ିଗଲା ହଂସ
ମରଣକୁ ଡରି ରହିଲା ଭୁମି ।
ରଥ ପହଞ୍ଚିଲା ବ୍ୟୂହର ଦୁଆରେ
ଦ୍ରୋଣ ଗୁରୁ ତହିଁ ଧନୁଏ ଧରି,
ପଚାରିଲେ ପାର୍ଥେ ଉପହାସ କରି,
"ଡେଇଁକରି ଯିବ ମୋତେ କପରି ?"

କହିଲେ ଅର୍ଜୁନ, ଗୁରୁଙ୍କୁ ପ୍ରଣମି,
"ସ୍ନେହ କର ମୋତେ ପୁଅରୁ ବେଶୀ,
ଛାଡ଼ିଦିଅ ବାଟ ଦେଖିଇ ମୁଁ ଟିକେ
ଜୟଦ୍ରଥ ଅଛି ଭିତରେ ପଶି ।"
ଉତ୍ତରିଲେ ଗୁରୁ ଅକରୁଣ ହୋଇ,
"ତାହା ତ କଦାପି କରିବ ନାହିଁ,
ଜୟ ପରାଜୟ ଆଜର ସମରେ
ମୋହର ହାତକୁ ବସିଛି ଚାହିଁ ।"
ଶ୍ରୀକୃଷ୍ଣ କହିଲେ ଅରଜୁନେ ଚାହିଁ,
"ଏତେ ଅନୁରୋଧ ତାହାଙ୍କୁ କାହିଁ,
ଛାଡ଼ ଉପରୋଧ ଆକ୍ଷେ ଧନୁ ଧର
ନ ହେଲେ ଫଳିବ ଜଳନ୍ତା ନିଆଁ ।"
ଗୁରୁ ଶିଷ୍ୟଙ୍କର ହୋଇଲା ସମର
କେହି ତ କାହାକୁ ଜିଣଇ ନାହିଁ,
ଶ୍ରୀକୃଷ୍ଣ ଚାହିଁଲେ ଟିକେ ଦକ୍ଷିଣକୁ
ସେ ପାଖେ ରକ୍ଷକ କେହି ତ ନାହିଁ ।
ସେହି ବାଟେ ରଥ ଦେଲେ ସେ ଚଳାଇ
ଦ୍ରୋଣ ଜଳ ଜଳ ରହିଲେ ଚାହିଁ,
ହୋଇଲେ ହତାଶ ରଥ ଗଲା ଡେଇଁ
ଆଗରୁ ସଇନ ଗଲେ ପଳାଇ ।
କହିଲେ, "ଅର୍ଜୁନ, ଯୁଦ୍ଧେ ଦେଲୁ ଭଙ୍ଗ
ସମର-ନୀତିକୁ ଭଙ୍ଗିଲୁ ବାହାଃ !"
ଶ୍ରୀକୃଷ୍ଣ କହିଲେ, "ନୀତି-ବିଶାରଦ
ତୁଆର କହିଲେ କଥାଟା ଆହାଃ ।
କାହିଁ ଥିଲା ତୁମ ସମର-ନୀତିଟା
ଅଭିମନ୍ୟୁକୁ ହେ ମାଇଲ ଯେବେ,
ସାତ ରଥୀ ବେଢ଼ି ମାଇଲ ଜଣକୁ
କୋଉଠେଇ ନୀତି ରଖିଲ ତେବେ ?"

ଅର୍ଜୁନଙ୍କ ମନେ ଚେଙ୍ଗି ଦେଲେ ନିଆଁ
ଆତ୍ମୀୟସ୍ୱଜନ ମାନଲେ ନାହିଁ,
ଯାହାକୁ ପାଇଲେ ତାହାକୁ ମାଇଲେ
ଜଳ ଜଳ ସବୁ ରହିଲେ ଚାହିଁ ।
ସବୁ ଉପଦେଶ ଭାସି ଯାଇଥିଲା
ଏକ ଅଭିମନ୍ୟୁ ମରଣ ପାଇଁ,
ସେସବୁ ହୋଇଲା ମହାମନ୍ତ୍ର ଏବେ
କାହାର ମୁହଁକୁ ଚାହିଁଲେ ନାହିଁ ।
"ଜୟଦ୍ରଥ କାହିଁ ଦେଖାଯାଉ ନାହିଁ
କେଉଁଠି ଖୋଜିଲେ ମିଳିବ ଦେଖା ?
ଭେଟାଅ ତାହାକୁ ଆହେ ଜନାର୍ଦ୍ଦନ !
ତୁମେ ତ ମୋହର ଶରଣ ସଖା ।
ତୁମକୁ ଅଦୃଶ୍ୟ ଅଛି ଜଗନ୍ନାଥ
ଜୟଦ୍ରଥ ନୁହେ ବିଶ୍ୱାସ ମୋର,
ଆଉ ଛଳ ନାହିଁ ଆହେ ନାରାୟଣ !
ଅର୍ଜୁନେ ଧାରଛି ବିଷାଦ ଘୋର ।"
ଶ୍ରୀକୃଷ୍ଣ କହିଲେ, "ବାଟ ସଫା କର
ତେବେ ସିନା ଯାଇଁ ପାଇବ ତାକୁ,
ବହୁତ ସଇନ ଏବେ ବି ଆଗରେ
କାହାକୁ କହୁଛ ନ ମାର ତାଙ୍କୁ ?
ଦେଖ ବେଳ ଗଡ ବୁଡ଼ିଯିବ ସଞ୍ଜ
ଏତିକି ବେଳରୁ କର ଉପାୟ,
ନ ବୁଝି ନ କରି କଲ ତ ପ୍ରତିଜ୍ଞା
ମୁଁ ଏବେ କେମିତି ହେବି ସହାୟ !
ଜାଣିଛ ତ ଅସ୍ତ୍ର ଧରିବି ନାହିଁ ମୁଁ
ମୋତେ ଅନାଇଲେ କି ଲାଭ ତବ ?
ପ୍ରତିଜ୍ଞାକୁ ଚାହିଁ କର ହେ ସଂଗ୍ରାମ
ଜୟଦ୍ରଥ ବଧ ନିଶ୍ଚୟ ହେବ ।"

ଏହାତକ କହି ଝରଚଲେ ମାୟା
କ୍ଷିପ୍ର ପଦ ଗୃଳ ଆସିଲା ସଞ୍ଜ,
ପଡ଼ିଲା ଚହଳ କୌରବ ଶିବରେ
ଅରଜୁନ ନଷ୍ଟେ ମରିବ ଆଜ ।
ଦଉଡ଼ିଲେ ସବୁ ଦେଖିବା ପାଇଁକ
ଅସ୍ତ୍ରଶସ୍ତ୍ର ସବୁ ପକାଇ ଦେଇ,
ଜୟଦ୍ରଥ ହସି ଛିଗୁଲିଇ ହୋଇ
କହିଲା ଅର୍ଜୁନ ମୁହଁକୁ ଗୃହିଁ ।
"ଆଉ ଡେରି କାହିଁ ଜଳାଅ ଅନଳ
ପଣ ହେ ଚଞ୍ଚଳ ପ୍ରତିଜ୍ଞା ପାଳ,"
ଶ୍ରୀକୃଷ୍ଣ ତ ଏହି ଜୟଦ୍ରଥ ପାଇଁ
ଗୃହିଁ ବସିଥିଲେ କରଣ ଆଳ ।
କହିଲେ ଫାଲ୍‌ଗୁନି ଧନୁଟିକୁ ନିଅ
କାହା ପାଇଁ ଆଉ ଛାଡ଼ିବ ତାକୁ,
ଅର୍ଜୁନ ଜାଣିଲେ କୃଷ୍ଣଙ୍କ ଇଙ୍ଗିତୁଁ
ଗୁଣ ଦେଇ ଧନୁ ନେଲେ ହାତକୁ ।
ସୁଦର୍ଶନ ଚକ୍ର କାଢ଼ି ଦେଲେ କୃଷ୍ଣ
ଜକଜକ ହୋଇ ଦିଶିଲେ ରବି,
ଆହା କି ସୁନ୍ଦର ଅରୁଣ କିରଣ
କଉରବେ ଦେଖି ଗଲେ ତ ଦବି ।
ଅର୍ଜୁନ ବିନ୍ଧିଲେ ଅପାଲିଟ ଶର
ଜୟଦ୍ରଥ ମୁଣ୍ଡ କାଟିଲା ଥରେ,
ଉଡ଼ାଇଲେ ତାହା ପବନା ଶରରେ
ମୁଣ୍ଡ ନ ପଡ଼ୁଣୁ ଧରଣୀତଳେ ।
ପକାଇଲେ ମୁଣ୍ଡ ତା ବାପ ହାତରେ
କାମ୍ୟକ ବନରେ ତପସ୍ୟାରତ,
ଗୃହିଁ ଦେଲା ବାପ ମୁଣ୍ଡ ହେଲା ଭସ୍ମ
ଜୟଦ୍ରଥ ହେଲା ଏପରି ହତ ।

ଅଶ୍ୱତ୍ଥାମା ମଲା ଶୁଭିଲା ଚହଳ
ଦ୍ରୋଣଙ୍କ କାନରେ ପଶିଲା ଯାଇଁ,
ଯୁଦ୍ଧ ଗହଳରେ ଏ କଥା ସେ କଥା
ଯାହାକୁ ପାଇଲେ ପୁଚ୍ଛିଲେ ଧାଇଁ ।
କାହାର କଥାରେ ବିଶ୍ୱାସ ହେଲାନ
ଯୁଧିଷ୍ଠିରଙ୍କୁ ସେ ବିକଳ ହୋଇ,
ପଚାରିଲେ, "ଧର୍ମ ! କହିବଟି ସତ
ଅଶ୍ୱତ୍ଥାମା ମରିଅଛି କି ନାହିଁ ?"
ଯୁଧିଷ୍ଠି କହିଲେ, "ଅଶ୍ୱତ୍ଥାମା ହତ
ନର ବା କୁଞ୍ଜର କଥାଟି ସତ,"
'ଅଶ୍ୱତ୍ଥାମା' ଖାଲି ଏତିକି ଶୁଣିଲେ
ତାଙ୍କର ଚେତନା ହୋଇଲା ହତ ।
ପୁତ୍ରଶୋକେ ଦ୍ରୋଣ ହରାଇଲେ ଧୈର୍ଯ୍ୟ
ହାତରୁ ଚଳିଲା କାର୍ମୁକ ଖସି,
ଶ୍ରୀକୃଷ୍ଣ ତ ସେଠି ଦେଖୁଥିଲେ ସବୁ
ଅଳପ ଟିକିଏ ଦେଲେ ସେ ହସି ।
ସେତେବେଳେ କୃଷ୍ଣ ହାତ ଠାରିଦେଲେ
ଧୃଷ୍ଟଦ୍ୟୁମ୍ନ ଧାଇଁ ହାଣିଲା ଅସି,
ଦ୍ରୋଣାଚାର୍ଯ୍ୟଙ୍କର ମୁଣ୍ଡଟା କାନ୍ଧରୁ
ଛିଡ଼ିଯାଇ ତଳେ ପଡ଼ିଲା ଖସି ।
ଧୃଷ୍ଟଦ୍ୟୁମ୍ନର ସେ ପିତାର ବଇରୀ
ପ୍ରତିଶୋଧ ନେଲା ଦ୍ରୋଣଙ୍କୁ ମାରି,
ଦୁର୍ଯ୍ୟୋଧନ ଦେଖି ଛାଡ଼ିଲା ବୋବାଳି
କଉରବେ ଗଲେ ସେଦିନ ହାରି ।
ଏହିଟିକି ମିଛ କହିଥିଲେ ବୋଲି
ନରକ ଦେଖିଲେ ସ୍ୱରଗପଥେ,
ଏଇଥିପାଇଁ କି ସତ କହିବାକୁ
ଉପଦେଶ ଦେଇଥାନ୍ତି ସମସ୍ତେ ।

———

# କର୍ଣ୍ଣ ବଧେ ଶ୍ରୀକୃଷ୍ଣ

କର୍ଣ୍ଣ କଉରବ ପକ୍ଷରେ ଲଢ଼ିବେ
ତାଙ୍କୁ ତ ଜିଣିବା ହେବ ଦୁରୂହ,
ଅମୃତ କୁଣ୍ଡଳ ଦେଇଛନ୍ତି ରବି
ଯେଣୁ ସେ ତାଙ୍କର ଔରସ ପୁଅ ।
କର୍ଣ୍ଣ କୁନ୍ତୀଙ୍କର କାନୀନ ତନୟ
କୁମାରୀ ବେଳରେ ହୋଇଲେ ଜନ୍ମ,
ବିବାହ ପୂର୍ବରୁ ପୁଅ ପ୍ରସବିବା
ନୁହଇ ସମାଜେ ଅନୂଢ଼ା ଧର୍ମ ।
ସମାଜ ଦୂଷଣ ଏଡ଼ାଇବା ପାଇଁ
କୁନ୍ତୀ କରିଦେଲେ ଗର୍ହିତ କାମ,
ମଞ୍ଜୁଷାରେ ଭରି ଗଙ୍ଗା ସରିତରେ
ଭସାଇଣ ଦେଇ ରଖିଲେ ମାନ ।
ଅମୃତ କୁଣ୍ଡଳ ଦେଇଥିଲେ ରବି
ପୁଅ ବୋଲି କରି ଶରଧା କରି,
ମଲା ନାହିଁ ଶିଶୁ ଅମୃତ ଖାଇଲା
ତୁଣ୍ଡରେ ପଶିଲା କୁଣ୍ଡଳୁ ଝରି ।
ଭସି ଭସି ଗଲା ତୁଠରେ ଲାଗିଲା
ସୂତ ଅଧିରଥ ଗୋଟାଇ ନେଇ,
ନ ଥିଲା ସନ୍ତାନ ଯାକୁ କଲା ପୁଅ
ଭାର୍ଯ୍ୟା ହାତରେ ତାହାକୁ ଦେଇ ।

ଦେଖିଲେ କାନରେ ଅମୃତ କୁଣ୍ଡଳ
ସେଥିପାଇଁ କ'ଣ ନାଆଁ ତା କର୍ଣ୍ଣ ?
ସୂର୍ଯ୍ୟ ପରି ତେଜ ଝଲସୁଛି ଦେହେ
ତପ୍ତ ସୁନା ପରି ଶିଶୁର ବର୍ଣ୍ଣ ।
ରାଧା ପାଳିଥିଲା ବୋଲି ତାର ନାଆଁ
ସଂସାର କହିଲା ତାକୁ ରାଧେୟ,
ପର୍ଶୁରାମଠାରୁ ଅସ୍ତ୍ରବିଦ୍ୟା ଶିଖି
କ୍ଷତ୍ରିୟ ବୃତ୍ତିରେ ହେଲା ଅଜେୟ ।
କୁନ୍ତୀ, ସୂର୍ଯ୍ୟ, କୃଷ୍ଣ ଜାଣନ୍ତି ଏ କଥା
ତାଙ୍କ ଛଡ଼ା ଅନ୍ୟ ଜାଣଇ ନାହିଁ,
କହିବା ସମୟ ହୋଇ ତ ନ ଥିଲା
କୃଷ୍ଣ ବସିଥିଲେ ସେଥିକୁ ଚାହିଁ ।
ଦ୍ରୋଣଙ୍କର ଅନ୍ତେ କର୍ଣ୍ଣ ସେନାପତି
କୌରବ ପକ୍ଷରେ କରିବେ ଯୁଦ୍ଧ,
ପାଣ୍ଡବ ପକ୍ଷରେ ପଡ଼ିଲା ଚହଳ
ଶ୍ରୀକୃଷ୍ଣ ବି ନିଜେ ହୋଇଲେ କ୍ଷୁବ୍ଧ ।
କୁନ୍ତୀଙ୍କୁ କହିଲେ, "ଯାଅ ଗୋ ମାଉସି !
ପରିଚୟ ଦିଅ କର୍ଣ୍ଣଙ୍କୁ ଯାଇ,
ନ ହେଲେ ପାଣ୍ଡବ ହେବେ ଗୋ ଉଚ୍ଛନ୍ନ
କର୍ଣ୍ଣର ହାତରୁ ଉଦ୍ଧାର ନାହିଁ ।
ଏତେବେଳେ ଆଉ ସରମ ସଂକୋଚ
ଲୁଚାଇ ବସିଲେ ହେବ ଗୋ କ୍ଷତି,
ଜାଣିଛ ତ ସବୁ କର୍ଣ୍ଣର କେତେ
ପାଣ୍ଡବ ଉପରେ ରାଗିଛି ଅତି ।
ମାଆ ବୋଲି କରି ପରିଚୟ ଦେଇ
ଦେଖ ଯଦି ଆଣି ପାର ଗୋ ପାଖେ,
ପାଣ୍ଡବ ତ କେହି ସମର୍ଥ ହେବେନି
ଧନୁ ଧରିବାକୁ କର୍ଣ୍ଣର ସାଥେ ।

ଯାଅ ଗୋ ଚଞ୍ଚଳ ଗଙ୍ଗାକୁ ଯାଇଛି
ଏଠେଇ ବସିବ କଅାଁ ମିଛରେ,
ମାଗିବ ତାହାକୁ ପୁତ୍ର-ପ୍ରାଣଭିକ୍ଷା
ମହାଦାନୀ କର୍ଣ୍ଣ ଦେଇ ବ ପାରେ ।
ସୁଯୋଗ ପଡ଼ିଛି ଗାଧୋଇ ସାରିଛି
ଦାନ ଦେବା ପାଇଁ ଯୋଗ୍ୟ ସମୟ,
ଯାଅ ବେଗ କରି ଦିଅ ପରିଚୟ
ଲଜ ସରମକୁ କରନା ଭୟ ।"
ଚାଲିଗଲେ କୁନ୍ତୀ ଭେଟିଲେ କର୍ଣ୍ଣଙ୍କୁ
ଗାଧୁଆ ତର୍ପଣ କରିଛି ସାରି,
ଦେଖିଲେ ଦୂରରୁ କୁନ୍ତୀ ଆସୁଛନ୍ତି
ଛିଡ଼ା ହୋଇ ପଚାରିଲେ ଜୁହାରି ।
"ପାଣ୍ଡବ-ଜନନୀ ! "କଅାଁ ଗୋ ଏଠେଇଁ
ସଙ୍ଗରେ କାହିଁକ ନାହାନ୍ତି ଦାସୀ ?
ସ୍ନାହାନ କରିବା ପାଇଁ କି ଗଙ୍ଗାକୁ
ଏକୁଟିଆ ହୋଇଅଛନ୍ତି ଆସି ?"
କୁନ୍ତୀ ଉତ୍ତରିଲେ, "ଖାଲି ପାଣ୍ଡବଙ୍କ
ଜନମାରେ କର୍ଣ୍ଣ ନୁହେ ମୁଁ ଏକା,
ଆସିଲି ଏତିକି କହିବି ରେ ତୋତେ
ନବେଳାରେ ଆଗୁ ପାଇନି ଦେଖା ।
ତୁ ମୋ ବଡ଼ପୁଅ କି କହିବି ବାପ !
ଗଳ୍ପ କଥା ପୁଣି ଫାଟୁଛି ଛାତି,
ଶ୍ରୀକୃଷ୍ଣ ଏଇନା କହିଲେ ରେ ମୋତେ
ମୁଣ୍ଡଟା ମୋର ରେ ଉଠିଲା ତାତି ।
ସୂର୍ଯ୍ୟ, କୁନ୍ତୀ ଛଡ଼ା ଆଉ କେହି ବାପ !
ସଂସାରେ ଏ କଥା ନ ଥିଲା ଜାଣି,
ସର୍ବ ଅନ୍ତର୍ଯ୍ୟାମୀ ଅଟେ ରେ ଶ୍ରୀକୃଷ୍ଣ
ଜାଣିଛି ଏସବୁ ଗୁପ୍ତ କାହାଣୀ ।

ସମାଜକୁ ଡର କାନ୍ଦଇ ଲୁଚଇ
ଅନାଇ ପାରେନା ବଦନ ତୋଳି,'
ସୁବିଧା ସୁଯୋଗ ପାଏନା ରେ ବାପ !
ଦେଖି କଥା ପଦେ କହିବ ବୋଲି ।"
ସବୁ ଗୋଟି ଗୋଟି କରି କହିଗଲେ
ଶୁଣି ଶୁଣି କର୍ଣ୍ଣ କହିଲେ କାନ୍ଦି,
"ମଲା ପୁଅକୁ ତୁ ଜିଆଇ ପାରିବୁ
ଆଜି କି ଜନନି !.ସ୍ନେହରେ ବାନ୍ଧି ?
କେତେ ଅପମାନ ସହି ନାହିଁ ମୁହିଁ
ତୋହର ଦେଲେ ଏହି ପାତକ ପାଇଁ,
ଘୃଧା ତୋଠୁ ବଡ଼ ଅଧିରଥ ବାପ
ତାଙ୍କ ଛଡ଼ା ମୋର କେହି ତ ନାହିଁ ।"
ଆଦର କହିଲେ, "ଏତେବେଳେ ଆଉ
ପୁଅ ବୋଲି କହି କି ଲାଭ ତୋର ?
ଜନମ କରି ତ ଗଙ୍ଗାରେ ମେଲିଲୁ
ନାରଖାର କଲୁ ଜୀବନ ମୋର ।
କଅଣ କହୁଛୁ କହ ନେ ଜନନି !
କରିବାର ହେଲେ କରିବି ତାହା,
ମାଗିବୁ ଯାହା ମୁଁ ଦେଇଁ ପାରଇ ଗୋ
ଦେବା ଯୋଗ୍ୟ ଯେବେ ହୋଇବ ତାହା ।"
କୁନ୍ତୀ ଉତ୍ତରଲେ, "ତୁ ମୋ ବଡ଼ପୁଅ
ସମରେ ଜିଣିଲେ ହେବୁ ରେ ରଜା,
ଆଜି ପାଞ୍ଚ ପୁଅ ସମସ୍ତେ ଖଟିବେ
ରଜାକୁ ଖଟଇ ଯେସନ ପ୍ରଜା ।
ମୋର ଅନୁରୋଧ ନିଶ୍ଚୟ ରଖିବୁ
ଆସିବୁ ରେ ପୁଅ ପାଣ୍ଡବ ପକ୍ଷେ,
ପାଣ୍ଡବଙ୍କ ପାଇଁ ତୁ ଧନୁ ଧରିଲେ
ଜିଣି ପାରିବେନ କୌରବ ଲକ୍ଷେ ।"

କର୍ଣ୍ଣ ଉତ୍ତରଲେ          କାନ୍ଦ କାନ୍ଦ ହୋଇ,
"ତୁ ମୋ ମାଆ କେହି ଜାଣଇ ନାହିଁ,
ସୂତପୁତ୍ର ବୋଲି          ଘୃଣିତ ମୁଁ ଏବେ
କହିଲୁ ଜନନି ! କାହାର ପାଇଁ ?
ଅସ୍ତ୍ର ପରୀକ୍ଷାରେ          କେତେ କଥା କହି
ଅପମାନ ଦେଲେ କହିଲୁ ନାହିଁ,
ଏଇନାଏ ଆଜ          ତୋର ପୁଅ ବୋଲି
ପରିଚୟ ଦେବୁ କଅଣ ପାଇଁ ?
ଦୁର୍ଯ୍ୟୋଧନ ମୋତେ          କରିଅଛି ରଜା
ରାଜ୍ୟର ଲାଳସା ମୋହର ନାହିଁ,
ରାଧା, ଅଧିରଥ,          ରାଜା ଦୁର୍ଯ୍ୟୋଧନ
ମୋହର ଜନମା, ଜନକ ଭାଇ ।
କି କଲୁ ଜନନି !          ପରିଚୟ ଦେଇ
କାହିଁକି ମୋ ମନ କଅଁଳ କଲୁ,
କେଉଁ ବଳରେ ମୁଁ          ଅସ୍ତ୍ର ଧରିବି ଗୋ
ମୋ ବଳ ଧଇର୍ଯ୍ୟ ସବୁ ତ ନେଲୁ ।
ଯାହାକୁ ଦେଖୁଛୁ          ଆଗରେ ଲୋ ତୋର
କର୍ଣ୍ଣ ନୁହେ ସିଏ ତାହାର ଛାଇ,
ମଣିଷ ବି ନୁହେ          ପ୍ରେତ ବି ସେ ନୁହେ
ଦେହରେ ତାହାର ଜୀବନ ନାହିଁ ।"
କହିଲେ କ୍ଷୋଭରେ          କାନ୍ଦ କାନ୍ଦ ହୋଇ,
"କ୍ଷମିବୁ ଲୋ ମାଆ ପାରିବି ନାହିଁ,
ଦୁର୍ଯ୍ୟୋଧନ ପାଖେ          ବିକଛି ମୋ ମୁଣ୍ଡ
ନିଶ୍ଚୟ ଲଢ଼ିବି ତାହାର ପାଇଁ ।
ବିଶ୍ୱାସଘାତକ          ହୋଇପାରିବିନି
ଯଦି ମୁଁ ତୋର ଲୋ ପ୍ରକୃତ ପୁଅ,
ଅନୀତ କରମ          ମହାପାପ ମାଆ !
ଲେଉଟି ଯାଆ ଲୋ ଏବେ ତୁ ଗୃହ ।

ଅର୍ଜୁନ ମୋହର ଯୋଗ୍ୟ ପ୍ରତିଯୋଦ୍ଧା
ତାହାର ମୋହର ହେବ ସମର,
ଆଜ ଗୃହ ପୁଅ ମାରିବ ନାହିଁ ମୁଁ
ଏତିକେ ମୁଁ କରିପାରେମାତର ।
ଆଗରୁ ପ୍ରତିଜ୍ଞା କରିଅଛି ମାଆ
ତହିଁକି ଆଜ ତ ଉପାୟ ନାହିଁ,
ସେ ପ୍ରତିଜ୍ଞା ମାଆ ବଡ଼ କଠିନ ଗୋ
ପ୍ରତିଜ୍ଞା ମରିବା ମାରିବା ପାଇଁ ।
ତୋର ଲଭ କ୍ଷତି ନାହିଁ ଲେ ଜନନୀ !
କର୍ଣ୍ଣ ମରୁ ଅବା ଅର୍ଜୁନ ମରୁ,
ତୋର ପାଞ୍ଚ ପୁଅ ଥିବେ ହବୁବେଳେ
କର୍ଣ୍ଣକୁ କାହିଁକ ଏତେ ତୁ ଡରୁ ?
ଶ୍ରୀକୃଷ୍ଣ ତୋହର ସାହା ଲେ ଜନନୀ !
ଅର୍ଜୁନ ତ କେବେ ମରିବ ନାହିଁ,
କୃଷ୍ଣଙ୍କ ବୋଲରେ ଆସିଲୁ ମୋ ପାଖେ
ମୋତେ ତ ସମରେ ମାରିବା ପାଇଁ ।
ଶିଶୁବେଳେ ଥରେ ମାରିଥିଲୁ ମାଆ !
ଏଇନା ମାରିବୁ ଆହୁରି ଥରେ,
ଏଇନାଏ ଥାଉ ସମରଟା ସରୁ
ମାଆ ପୁଅ ହେବା ମରଣ ପରେ ।”
ଦ୍ରୋଣ ଅନ୍ତେ କର୍ଣ୍ଣ ହେଲେ ସେନାପତି
ପ୍ରତିଜ୍ଞା ତାଙ୍କର ମାରିବେ ପାର୍ଥ,
ସମର ଜିଣି ସେ ଦେବେ ରାଜ୍ୟବାଞ୍ଛ
ଦୁର୍ଯ୍ୟୋଧନର ସେ ରଖିବେ ସ୍ୱାର୍ଥ ।
କର୍ଣ୍ଣ-ଅରଜୁନ ତୁମୁଳ ସମର
ଇନ୍ଦ୍ର ଗୋବିନ୍ଦଙ୍କ ସମର ପରି,
ଦୁଇଜଣଯାକ ସମକକ୍ଷ ଯୋଦ୍ଧା
ଗାଣ୍ଡୀବ, ବଜ୍ରଯୁ କାର୍ମୁକ ଧର ।

ଅର୍ଜୁନ ସାରଥି ଦ୍ୱାରକାଧିପତି
କର୍ଣ୍ଣଙ୍କ ସାରଥି ମାତୁଳ ଶଲ୍ୟ,
ରଥୀ ଓ ସାରଥି ଯେ ଯା'ର ଗୁଣରେ
ଏକ ଆରକର ଅତ୍ୟନ୍ତ ତୁଲ୍ୟ ।
ବେଳୁ ବେଳ ହେଲା ଉଗ୍ରତର ଯୁଦ୍ଧ
କେହି କାହା ପାଖେ ଯାଉନ ହାରି,
ଶର ବର୍ଷୁଛନ୍ତି ଦୁଇ ରଥୀଯାକ
ଶ୍ରାବଣ ଘନ କି ବରଷେ ବାରି ।
ପର୍ଶୁରାମ ଦତ୍ତ ଧନୁ ଧରି କର୍ଣ୍ଣ
ବ୍ରହ୍ମଶର ଯୋଚି ବନ୍ଧିଲେ ଟାଣି,
ଅର୍ଜୁନଙ୍କୁ ଧ୍ୱଂସି- ଦେବ ବ୍ରହ୍ମଶର
ଶ୍ରୀକୃଷ୍ଣ ଏ କଥା ପାରିଲେ ଜାଣି ।
ନିଜେ ସେ ଶରକୁ ଧରି ପକାଇଲେ
ବକ୍ଷ ତେଜ ପାଖେ ସେ ବ୍ରହ୍ମଶର,
ହରାଇଲା ଶକ୍ତି ବାହୁଡ଼ିଲା ଖରେ
ପରାଣ ରହିଲା ଅର୍ଜୁନଙ୍କର ।
ଖାଣ୍ଡବ ଦହନ କାଳରେ ଅର୍ଜୁନ
ସାପଟାଏ ଥିଲେ ପୋଡ଼ାଇ ମାରି,
ତାର ଛୁଆଟାଏ ମାତୃବୈରୀ ବୋଲି
ଅର୍ଜୁନଙ୍କୁ ରଗିଥିଲା ସେ ଘରି ।
ଏଇନା ତାହାର ପ୍ରତିଶୋଧ ନେବ
କୋଳଣ କର୍ଣ୍ଣଙ୍କୁ କହିଲା ଆସି,
ମୋତେ ଥରେ ପେଶ ଧନୁରେ ବସାଇ
ଅର୍ଜୁନଙ୍କୁ ନଷ୍ଟ ଦେବି ମୁଁ ଗ୍ରାସି ।
କର୍ଣ୍ଣ ରୁଦ୍ରମନ୍ତ୍ରେ ମନ୍ତ୍ରି ସାପକୁ
ପେଶିଲେ ଅର୍ଜୁନେ ନାଶିବା ପାଇଁ,
ଶ୍ରୀକୃଷ୍ଣ ଚୁପିଲେ ରଥଟା ତଳକୁ
ସାପ ଅର୍ଜୁନଙ୍କୁ ପାଇଲା ନାହିଁ ।

କେବଳ ମୁକୁଟ- ଟାକୁ ଗିଳିକରି
ଫେରିଗଲା ସାପ କର୍ଣ୍ଣଙ୍କ ପାଶେ,
କହିଲା ବିନୟି, "ଆଉ ଥରେ ପେଶ
ଦେଖ ମୁଁ କପରି ଅର୍ଜୁନେ ନାଶେ।"
କର୍ଣ୍ଣ ପଠାଇଲେ ଆଉ ଥରେ ସାପ
ଶ୍ରୀକୃଷ୍ଣ ଦୂରରୁ ତାକୁ ଦେଖିଲେ,
"ବେଗେ ପ୍ରତିଶର କର ଅରଜୁନ !
ଡାକ କରି କୃଷ୍ଣ ଉଚେ କହିଲେ।
ଅର୍ଜୁନ ବନ୍ଧିଲେ ଯୋଗ୍ୟ ପ୍ରତିଶର
ସାପକୁ କାଟିଲା ଛ'ଗଡ଼'କରି,
ଆଉ ହଲଚଲ ହୋଇ ପାରିଲାନି
ମରିଲା ସେଇନା ସେଇଠି ପଡ଼ି ।
ଯୁଦ୍ଧ କରୁ କରୁ କର୍ଣ୍ଣଙ୍କର ରଥ
ଚକ ପଶିଗଲା ମାଟି ଭିତରେ,
କର୍ଣ୍ଣ ଡାକ ଦେଲେ, "ରହ ରହ ପାର୍ଥ !
ମୁଁ ପଡ଼ିଛି ଛଳେ ତୁମେ ଉଚ୍ଚରେ।
ସମରନୀତି ଏ ନୁହଇ ଅର୍ଜୁନ !
ରଥ ଠେକିବାକୁ ଦିଅ ହେ ଛାଡ଼ି,
ଏଇନା ଟିକଏ ଧନୁ ଧର ନାହିଁ
ରଥକୁ ଗଲେ ମୁଁ ମାରିବ ଶର।"
ଶ୍ରୀକୃଷ୍ଣ କହିଲେ, "ଏ ଧର୍ମ ନୀତି
କୋଉଠେଇ ଥିଲା ଧାର୍ମିକ କର୍ଣ୍ଣ,
ସାତ ରଥୀ ମିଳି ଅଭିମନ୍ୟୁ ମାରି
କରିଛ ତ ଯୁଦ୍ଧନୀତି ପାଳନ।"
ଶ୍ରୀକୃଷ୍ଣଙ୍କଠାରୁ ଶୁଣିଣ ଏତିକ
ଅର୍ଜୁନ ବନ୍ଧିଲେ ଅମୋଘ ଶର,
କର୍ଣ୍ଣଙ୍କ ଉପରେ ପଡ଼ିଲା ସେ ଯାଇ
ଗଣ୍ଡି ମୁଣ୍ଡ କରିଦେଲା ଦ'ଗଡ଼ ।

ସୂର୍ଯ୍ୟ ଅସ୍ତ ହେଲା ନିଶି ସଞ୍ଚରିଲା
ପୁଅ ପାଇଁ ରବ କଲେ କ ଶୋକ,
ଚରଚର ହୋଇ ଲୁଚିଗଲେ କଆଁ
ପୁଅ ମଲେ ବାପ କରଇ ଦୁଃଖ ।

---

# ଦୁର୍ଯ୍ୟୋଧନ ଜାନୁଭଗ୍ନେ ଶ୍ରୀକୃଷ୍ଣ

ଅଠର ଦିନରେ ସମର ସରିଲା
ସମରକ୍ଷେତ୍ରଟା ହେଲା ମଶାଣି,
ତେବେ ଦୁର୍ଯ୍ୟୋଧନ ହିଂସା ପରିଣାମ
ଜାଣିକରି ମଧ୍ୟ ପାରୁନ ଜାଣି ।
ଏହି ହିଂସା ପାଇଁ ଏଗାର ଅକ୍ଷୌଣୀ
ମରିକରି ପଛେ ହୋଇଲେ ପଦା,
ତଥାପି ତାହାର ହିଂସା ସରି ନାହିଁ
ହାତରେ ଧରିଛି ବିଶାଳ ଗଦା ।
ପୁଣି ବି ଡରୁଛି ଭୀମଙ୍କୁ ଅନ୍ତରେ
ପଡ଼ୁଛି ଅନ୍ତରେ ଭୀମର ପଣ,
ଶହେ ଭାଇଙ୍କୁ ସେ ମାରିବ ସମରେ
ପୁଣି କରିବ ତା ଜାନୁ ଭଗନ ।
କୃଷ୍ଣା ବିବସନ ପଡ଼ୁଛି ମନରେ
ପୁଣି ବିଷଦିଆ, ଜଉର ଘର,
ପଡ଼େ ଗୋଟି ଗୋଟି ମନରେ ତାହାର
ସେଇଥିପାଇଁକି ମାଡ଼ୁଛି ଡର ।
ସବୁ ପଡ଼ୁଅଛି ପଡ଼ୁନି ଆହୁରି
ମନରେ ପୋଷିଛି ଆଶାଏ କ୍ଷୀଣ,
ସେ ଆଶାରେ ପୁଣି ମିଶିଛି ଆଶଙ୍କା
ବଳ ଓ ସାହସ ହେଉଛି ଲୀନ ।

ଭୀମ ତ ଆସିବ ଏଇନା ନାଶିବ
ଏହ୍ଲ ଚିନ୍ତା ତାର ଦହୁଛି ମନ,
ତେଣୁ କାନ୍ଧ କରି ଗଦାଟାଏ ଧରି
ପଳାଇଛନ୍ତି ଯୁଦ୍ଧ ଗୁଡ଼ ବଦନ ।
ରଜା ମରି ନାହିଁ ଯୁଦ୍ଧ ସରି ନାହିଁ
ନିଶାଣ ନଇଁ ନ ଉଡ଼ୁଛି ଖରେ,
ସମର ନିଃସ୍ୱନ ଭୀମ ଅନ୍ୱେଷଣ
ଗୋଡ଼ାଇ ଆସୁଛି ତାର ପଛରେ ।
ବ୍ୟାସ ସରୋବରେ ରହିଲା ସେ ଲୁଚି
ତଥାପି ମନରେ ପରମ ଶଙ୍କା,
ଭାବି ନ ଥିଲା ସେ ସମରେ ପଶିଲେ
କର୍ମ ହୁଅଇ ଏପରି ବଙ୍କା ।
କାହାରି କଥାକୁ ଶୁଣିଲା ନାହିଁ ସେ
ମିତ୍ର ଉପଦେଶ ମାନିଲା ନାହିଁ,
ପୁଅ ଭାଇ ସହ ଝିଙ୍କିପୋକ ପରି
ନିମିଷକେ ଉଡ଼ି ମରିବା ପାଇଁ ।
ଈର୍ଷାରେ ହିଂସାରେ ପାଣ୍ଡବଙ୍କ ଶିରୀ
ନ ଦେଖି ଦେଇଛି ବିବେକ ମୋଡ଼ି,
ଏବେ ଅନୁତାପ କଲେ ବା କି ହେବ
ମିଳିବ କି ଆଉ ବୁଲିଲେ ଲୋଡ଼ି?
ହିଂସା, ଈର୍ଷା, ଲୋଭ ପରିଣାମ ଏ ତ
ଗଡ଼ଗଡ଼ଉଛି ପଦାରେ ପଡ଼ି,
କିଏ ହେଲେ କିଛି ଶିଖୁଛି ଏଥିରୁ
ଖାଲି ତ ସେଇଥି ଚାଲିଛି ବଢ଼ି ।
କେତେ ଉଚ୍ଚକୁ ଏ ବଢ଼ି ପାରନ୍ତି ବା
କେତେ ଦୂରଯାଏ ଯାଙ୍କ ବିସ୍ତାର,
ତାଙ୍କ ସୀମାରେଖା ମାପି ଦେବା ପାଇଁ
ଶକତି କି କାହିଁ ଅଛି କାହାର ?

ସରଗପୁରରେ ଅଛୁ ତ ପ୍ରବେଶ
ଦେବରଜାଙ୍କର ମିତ୍ର ଏ ପରି,
କଏ ସେ ଧରାରେ କଲଣି ଧରମ
ତାଙ୍କ ଗାଦି ପାଇଁ କର ତା ମାରି ।
ସମରକ୍ଷେତ୍ରରେ ନାହିଁ ଦୁର୍ଯ୍ୟୋଧନ
କୁଆଡ଼େ ସେ ଗଲା ଲଗିଲା ଖୋଜା,
ଦୁର୍ଯ୍ୟୋଧନ ନାହିଁ ରଥଟା ରହିଛି
ଉଡ଼ୁଛି ତ ପୁଣି ତହିଁରେ ଧ୍ୱଜା ।
ଖୋଜ ଖୋଜ କରି ଥକଲେ ପଚ୍ଛକେ
କୋଉଠେଇ ତାଙ୍କୁ ପାଇଲେ ନାହିଁ,
ଧୂମ ତମ ତମ ହେଉଥାଏ ଖାଲି
ହାବୁଡ଼େ ପଡ଼ିଲେ ମାରିବ ଯାଇ ।
ବ୍ୟାଧଟାଏ ଆସି କହିଲା ଖବର
ବ୍ୟାସ ସରୋବରେ ଅଛନ୍ତି ପଶି,
ପାଞ୍ଚ ଭାଇଯାକ ଶ୍ରୀକୃଷ୍ଣଙ୍କ ସହ
ଧାଇଁଲେ ସେଇନା ରଥରେ ବସି ।
ଭୀମ ସିଂହ ରଡ଼ି ଦେଇ ଡାକ ଦେଲା,
"ଧିକ ଧିକ ତୋତେ ରେ ଦୁର୍ଯ୍ୟୋଧନ,
ଭାଇ ପୁଅ ସବୁ ମରାଇଣ ଦେଇ
ଲୁଚଛୁ ବେହିଆ ଧରି ଜୀବନ ।
ଧିକରେ ଭୀରୁଟା ଏଡ଼େ ପ୍ରାଣରଙ୍କ
ଛେଳଟାଏ ପରି ତୋ ଆଚରଣ,
ଏଇଥିପାଇଁକି କେଶବ ସଙ୍ଗରେ
ଲଗାଇ ବସିଲୁ ଭୁଚ୍ଛାରେ ରଣ ।
ଅନ୍ଧ ବାପଟାର ପୁଅ ପରି ଭୁଲି
ଲୁଚିବୁ ନାହିଁ ତ କରିବୁ କିସ ?
ଏତେ ବାଟ ଯାହା ପଳାଇ ଆସିଲୁ
ମିଳିଲା ନାହିଁ କି ଠିକଏ ବିଷ ?

ମୋତେ ଦେଇଦେଲୁ କଣ୍ଠୁ ରଖିଲୁନ
କ୍ଷତ୍ରିୟ କୁଳରେ ଦେଲୁ କଳଙ୍କ,
ଦ୍ରୌପଦୀକୁ ଅପ- ମାନ ଦେଇଥିଲୁ
ବାଜୁନି କାନରେ ଭାଇପା ଶୋକ ?
ଜଉଘରେ ପରା ପୋଡ଼ି ମାରୁଥିଲୁ
ବାଙ୍କଗଲା କ ତୋ ଦେହରେ ତାତ,
ଧିକ ନିଲର୍ଜ୍ଜ ଟା କୁରୁକୁଳାଙ୍ଗାର
ଧିକ ତୋ ଜୀବନ ଧିକ ତୋ ବ୍ରତ ।
ପାଣିରେ ବୁଡ଼ିଛୁ ନାଆଁ ଲଭାଇବୁ
ବୁଡ଼ି ମରିବୁ ତୁ ମିଛରେ କାଆଁ,
ଉଠିଆ ସ୍ଥଳକୁ ଶଠ ଜୁଆଡ଼ିର
ଆରୁ ବଳୁଆଟା ପାକ ବେହିଆ ।"
ଭୀମ କଟୁଭାଷା ସହି ପାରିଲାନ
ସେ ଯେ ଅଭିମାନୀ କହିଲା ରାଗି,
"ଏତେ ଭରସା ତୋ ହେଲାଣି ରେ ଭୀମା !
ଆସିଛୁ ଲଢ଼ାଇ କରିବା ଲାଗି ।
ଲଢ଼ିବ ନିଶ୍ଚୟ କାନୁ ଯୁଧିଷ୍ଠିର
ତୁମେ ପାଞ୍ଚ ଭାଇ ମୁଁ ଅଛି ଏକା,
କିଏ ମୋ ସଙ୍ଗରେ ସମର କରିବ
ତାକୁ ମୋତେ ଟିକେ ଚଞ୍ଚଳ ଦେଖା ।
ଦୁର୍ଯ୍ୟୋଧନ ନୁହେ ସମରକାତର
ମାରିବା ମରିବା ତାହାର ପଣ,
ମୁଁ ଜୀଇବାଯାଏ ରାଜ୍ୟ ତ ନେଇନା
ରାଜ୍ୟ ଦଆନିଆ କରୁ ଏ ରଣ ।
ମାନଗୋବିନ୍ଦ ମୁଁ ମହତ ରଖିବ
ଏତେ ସହଜରେ ପାଇବ ନାହିଁ,
ମାରେ ଅବା ମରେ ସମର କରିବ
ପ୍ରତିଜ୍ଞା ଭୀମାକୁ ମାରିବା ପାଇଁ ।

ଏ ପ୍ରତିଜ୍ଞା ମୋର          ହୋଇ ନାହିଁ ବାସି
ଆଜି ବି ରହିଛୁ ସତେଜ ସଜ,
ଆରେ ଆରେ ଭୀମା !          ଖୋଜିଲୁ ମରଣ
ପାଇବୁ ନଷ୍ଟପ୍ପ କୃଷ୍ଣଙ୍କୁ ଭଜ ।"
ଭୀମ ଶୁଣି ଗର୍ଜି          କହିଲା ସ୍ୱରେ,
"ଅଭିମନ୍ୟୁକୁ ତ ମାଇଲ ସାତ,
ଏଇନାରେ କଆଁ          ଡରୁଛୁ ପାଞ୍ଚଙ୍କୁ
ଧିକ ତୋ ବହିପ ଧିକ ମହତ ।"
ଭୀମ ଦୁର୍ଯ୍ୟୋଧନେ          ହେଲା ଗଦା ଯୁଦ୍ଧ
ଦୁହିଁଙ୍କ ହାତରେ ଯୋଡ଼ାଏ ଗଦା,
ଦୁଇ ମତ୍ତ ହସ୍ତୀ          ବାଡ଼ଆବାଡ଼ିଇ
ଦୁନଆଁଟା ଭଙ୍ଗି କରିବେ ପଦା ।
କେତେବେଳେ କଏଂ          ପଡ଼ଯାଏ ତଳେ
ବସଇ କେ ଗୁଡ ଉପରେ ମାଡ଼,
କେ ପୁଣି କାହାକୁ          ଓଲଟାଇ ଦେଇ
ସିଂହ ପରି ଗୁଡେ଼ ଖିଷଣ ରଡ଼ ।
ପୁଣି ଛୁଡ଼ା ହୋଇ          ଭଉଁରୀ ପକାଇ
ପିଟନ୍ତି ଗଦାକୁ ବୁଲଇ କରି,
କଏ କେତେବେଳେ          ଫିଙ୍ଗଇ ଦୂରକୁ
ହାତେ ହାତ ଧରି ଓଟାରି କରି ।
ଦୁହେଁ ଗଦା ଧରି          ଯୁଦ୍ଧ କରୁ କରୁ
ଶ୍ରୀକୃଷ୍ଣ ଭୀମକୁ ଉରୁ ଦେଖାଇ,
ଆଖି ଠାରିଦେଲେ          ଭୀମର ପ୍ରତିଜ୍ଞା
ଉରୁ ଭଙ୍ଗିବ ସେ ଦେଲେ ଚେତାଇ ।
ଦୁର୍ଯ୍ୟୋଧନ ଭୀମ          ମୁଣ୍ଡ ଭଙ୍ଗିଦେବ
ବୋଲି କରି ଯେବେ ଉଚ୍ଛୁଙ୍କି ଗଲା,
ସେତିକି ବେଳରେ          ଭୀମ ବାଡ଼େଇଲା
ଦୁର୍ଯ୍ୟୋଧନ ବେନି ଉରୁ ଭାଙ୍ଗିଲା ।

ତେବେ ବି ମଳିନ ପଡ଼ିଲା ସେଇଠି
ଛୁଡ଼ିନ ମନରୁ ତେବେ ବି ହିଂସା,
ଅଶ୍ୱତ୍ଥାମା କୃପା- ଚାର୍ଯ୍ୟ କୃତବର୍ମା
ମିଳିଲେ ସେଇଠି ସେଦିନ ନିଶା ।

———

# ଅଶ୍ୱତ୍ଥାମା ମଣିହରଣେ ଶ୍ରୀକୃଷ୍ଣ

ଅଶ୍ୱତ୍ଥାମା ଆସି ପ୍ରତିଜ୍ଞାଏ କଲା
ପଞ୍ଚପାଣ୍ଡବଙ୍କୁ ମାରିବ ବୋଲି,
ଦୁର୍ଯ୍ୟୋଧନ କଲା ସେନାପତି ତାକୁ
ଜଳ ଆଣିଦେଲା ହାତରେ ଢୋଳି ।
ଚାଲିଲେ ତିନିହେଁ ଅନ୍ଧାର ରାତିରେ
ପାଣ୍ଡବ ଶିବିର ଭିତରେ ପଶି,
ପାଣ୍ଡବ ଭ୍ରମରେ କୃଷ୍ଣା ପାଞ୍ଚ ପୁଅ
ଅଶ୍ୱତ୍ଥାମା ଦେଲା ଅନ୍ୟାୟେ ଧ୍ୱଂସି ।
ପାଞ୍ଚ ମୁଣ୍ଡ ଆଣି ଦେଲା ଦୁର୍ଯ୍ୟୋଧନେ
ଦୁର୍ଯ୍ୟୋଧନ ସବୁ ହାତରେ ଭାଙ୍ଗି,
ଜାଣିଲା ସେ ମୁଣ୍ଡ ନୁହେଁ ପାଣ୍ଡବଙ୍କ
କହିଲା ଧିକ୍‌କାର ବହୁତ ରାଗି ।
"ଶିଶୁଙ୍କୁ ମାରିଲୁ ବଂଶ ବୁଡ଼ାଇଲୁ
ଧିକ ତୋର ବୁଦ୍ଧି ଧିକ ବୀରତ୍ୱ,
ଚୋର ପରି ପଶି ସୁପ୍ତ ଶିଶୁ ମାରି
ବଢ଼ାଇଲୁ ତୋର କୋଉ ମହତ୍ତ୍ୱ !"
ରାତି ପାହିଗଲା ନଜର ପଡ଼ିଲା
ଧୃଷ୍ଟଦ୍ୟୁମ୍ନ ପୁଣି ଶିଖଣ୍ଡୀ ଶବ,
କୃଷ୍ଣା ପାଞ୍ଚ ପୁଅ ମୁଣ୍ଡ ନାହିଁ କା'ରି
କେବଳ ରକତ ଓ ଅବୟବ ।

ଜଣା ପଡ଼ିଗଲା ଅଶ୍ୱତ୍ଥାମା କୃତ୍ୟ
ସେହିଠାକୁ ଖୋଜ ମାରିବା ପାଇଁ,
ଯୁଧିଷ୍ଠିର ଶୋକେ କ୍ରୋଧେ ଋଗିକରି
କହିଲେ ଭୀମଙ୍କୁ ପାଖକୁ ଋଇ ।
କୃଷ୍ଣା କାନ୍ଦି କାନ୍ଦି କହିଲେ ଆହୁରି,
"ଅଶ୍ୱତ୍ଥାମା ଶିରେ ଅଛି ଯେ ମଣି,
କର ହେ ପ୍ରତିଜ୍ଞା ଅଶ୍ୱତ୍ଥାମା ମାରି
ମୋତେ ସେ ମଣିଟି ଦେବ ହେ ଆଣି ।"
ଶ୍ରୀକୃଷ୍ଣ ଶୁଣିଲେ ଭୀମ ଗଲେ ଏକା
ଅଶ୍ୱତ୍ଥାମାକୁ ତ ପାରିବେ ନାହିଁ,
ଅର୍ଜୁନଙ୍କୁ ନେଇ ସଙ୍ଗରେ ତାଙ୍କର
ପଛେ ପଛେ ଗଲେ ଚଞ୍ଚଳ ଧାଇଁ ।
ଅଶ୍ୱତ୍ଥାମା ଥିଲା ବ୍ୟାସ ଆଶ୍ରମରେ
ଭୀମଙ୍କୁ ଦେଖି ସେ ଯୋଚିଲା ଶର,
ବ୍ରହ୍ମଶିର ବୋଲି ନାଆଁଟି ତାହାର
କାଟି ପାରେ ସିଏ ବ୍ରହ୍ମାଙ୍କ ଶିର ।
ଅର୍ଜୁନଙ୍କୁ କୃଷ୍ଣ କହିଲେ ଆରତେ,
"କର ପ୍ରତିଶର ଶୀଘ୍ର ଅର୍ଜୁନ,
ନ ହେଲେ ଏଇନା ଅଶ୍ୱତ୍ଥାମା ବାଣେ
ତ୍ରିଭୁବନଯାକ ହେବ ଦହନ ।"
ଅରଜୁନ କଲେ ଯୋଗ୍ୟ ପ୍ରତିଶର
ଶରରେ ଶରରେ ଘୋର ସମର,
କେହି କାହାରିକୁ ବଳି ପାରିଲେନି
ଆକାଶେ ଜଳିଲା ନିଆଁ ଦୁଃଖର ।
ବ୍ୟାସ ଓ ନାରଦ ମଝିରେ ପଶିଲେ
ନିବାରିଣ ଦେଲେ ଶର ସମର,
ବୁଝାଇ ସୁଝାଇ କହିଲେ ଦୁହିଁଙ୍କୁ
ପରାକ୍ରମ ଦେଖା ନାହିଁ ଏଥର ।

ଅଶ୍ୱତ୍ଥାମା କହେ, "ମୋ ଶର ଫେରେନା
ଯାଉ ସେ ଉତ୍ତରା ଗରଭେ ପଶୁ,
ତାର ଗରଭରେ ଅଛି ଯେ ସନ୍ତାନ
ଭୁଜନ୍ତୁ ଯାଇ ସେ ତାହାକୁ ଧ୍ୱଂସୁ ।"
ଶ୍ରୀକୃଷ୍ଣ ଚଳିଲେ ଶର ପଛେ ପଛେ
ମୃତ ସନ୍ତାନକୁ ଦେଲେ ବଞ୍ଚାଇ,
ଦୂର ଭବିଷ୍ୟତେ ଯୁଧିଷ୍ଠିର ଅନ୍ତେ
ସାମ୍ରାଜ୍ୟରେ ରଜା ହୋଇବ ସେହି ।
ଅସ୍ତ୍ର ପରୀକ୍ଷାରୁ ବଞ୍ଚିଥିଲା ବୋଲି
ପରୀକ୍ଷିତ ଦେଲେ ତାହାର ନାଆଁ,
ସେହି ହୋଇଥିଲେ ହସ୍ତିନାର ରଜା
ପୁରାଣେ ଲିଖିତ ହୋଇଛି ତାହା ।
ଦ୍ୱୈପାୟନ ପୁଣି ଦ୍ରୋଣଙ୍କ ସୁତକୁ
କହିଲେ, "ମୁଣ୍ଡରେ ଅଛି ଯେ ମଣି,
ଦିଅ ବେଗେ କାଢ଼ି ଅର୍ଜୁନଙ୍କ କରେ
ଯାଆନ୍ତୁ ସେ ଫେରି ସେହିଠି ଯେନି ।
କିନ୍ତୁ ଶିରପୀଡ଼ା ଭୋଗିବ ସନ୍ତତ
ଜୀବନଯାକ କହୁଛି ସତ,
ଶମିବ ନାହିଁ ତା ପୋଡ଼ୁଥିବ ଖାଲି
ତେଲ ଦେଲେ ଟିକେ ହୋଇବ ଶାନ୍ତ ।"
ତେଣୁକରି ଏବେ ଗାଧୋଇବା ଆଗେ
ତେଲ ଲଗାଇଲେ ଟିକିଏ ତଳେ,
ଆଙ୍ଗୁଠି ଅଗରେ ଛୁଆଁଇ ଦିଅନ୍ତି
ଧରମ ପାଇଁକି ପର ବାକଲେ ।
ଗୋଟିଏ ପାପ ତ ଛୁଡ଼ାଏ ନାହିଁ
କୋଟିଏ ଜନମ କରିଲେ ତପ,
ଶିଶୁ, ସୁପ୍ତଙ୍କୁ ଯେ ଅନ୍ୟାୟେ ନାଶିଲା
କିଏ ପରିଣାମ କରିବ ମାପ ?

ପାପର ପାଇଁକ ପାପୀର ପାଇଁକ
କୃଷ୍ଣଙ୍କର ପର ଏ ଅବତାର,
କପର ସେ ପାପ ଛଡ଼ାଇ ଦଅନ୍ତ
ତାହାର ପ୍ରମାଣ ଅଛୁ କ କାର ?
ସେ ପ୍ରମାଣ ଅଜ . ଯୁଗେ ଅପ୍ରମାଣ
ନାସ୍ତିକତା ବଢ଼ିଯାଇଛୁ ବେଶୀ,
କୃଷ୍ଣଙ୍କ ମହମା ନାହିଁ କହଦେଲେ
ପାପ ଗ୍ରାଏଁ ଆସି ହୁଅଇ ଲେସି ।
ସବୁ ପାପତାପ ଧୋଇଦେବା ପାଇଁ
ସମ୍ବଲ କେବଳ ତାଙ୍କର ନାମ,
ଶାସ୍ତ୍ରର ତ ମଧ୍ୟ ସେହ୍ନ ଉପଦେଶ
ଜପରେ ସାଧନ କର ସେ କାମ ।

———

# ଗାନ୍ଧାରୀଙ୍କ ଅଭିଶାପେ ଶ୍ରୀକୃଷ୍ଣ

କୌରବ ରମଣୀ      ପିଅର ଜନନୀ
ଶୋକେ ଅଭିଭୂତ ହୋଇଲେ ଯେବେ,
ଯୁଧିଷ୍ଠିରଙ୍କୁ ସେ      କହିଲେ ବକଲେ
ପତି ପୁତ୍ର ଶବ ଯାଇ ଦେଖିବେ ।
ସାଜଲେ ସୁଆର      ସାଜଦେଲେ ରଥ
ବାହାରିଲେ ସବୁ ପୁରୁଷ ନାରୀ,
ସବୁରି ମୁହଁରେ      କରୁଣ କାନ୍ଦଣା
ଲୋଚନ ଶୁଖିଲା ନାହିଁ କାହାରି ।
କୁରୁକ୍ଷେତ୍ର ଆଜ      ଖିଷ୍ଟଣ ଶ୍ମଶାନ
ଅଠର ଅକ୍ଷୌହିଣୀ ପଡ଼ିଛି ମଡ଼ା,
ଚାଲିବାକୁ କାହିଁ      ବାଟ ମିଳୁ ନାହିଁ
ଯହିଁ ଦେଖ ତହିଁ ମୁର୍ଦ୍ଧାର ସଡ଼ା ।
ବିଲୁଆ କୁକୁର      ଖାଆନ୍ତି ଓଟାରି
କାଉ ଶାଗୁଣାଏ ଖାଆନ୍ତି ରସି,
ସଢ଼ା ପଚ୍ଛ ପାଣି      ନଗିଡ଼ି ପଡ଼ୁଛି
ସମରଭୂଇଁଟା ଯାଉଛି ଭସି ।
ପୁଅ ପତିଙ୍କର      ମଡ଼ା ଖୋଜ ଖୋଜ
ବୁଲୁଛନ୍ତି ସଭୁ ରମଣୀ ନର,
କାହାରି ମନରେ      ନାହିଁ ତ ବିକାର
କାହାରି ଟିକଏ ନାହିଁ ତ ଡର ।

କଏ କା'ର ପତି ଶବକୁ କୋଳରେ
ଚାପିଇ କରୁଛି ବଳଲେ ଶୋକ,
ସନ୍ତା ପଶୁ କନ୍ଥି ବାରୁ ତ ନାହିଁ ସେ
ଶବର ଗଣ୍ଡରେ ଦେଉଛି ବୋକ ।
କଏ କା ପୁଅକୁ ସାଉଁଟି ଆଣୁଛି
ବକ୍ଷରେ ତାହାର ଧରୁଛି ଭିଡ଼ି,
କଏସେ ଉଚ୍ଚରେ ଘୁଡ଼ୁଛି ବୋବାଳି
ଗଗନ କି ମୁଣ୍ଡେ ପଡ଼ୁଛି ଛିଡ଼ି ।
କୌରବ ରମଣୀ ପତି ଶବ ଧରି
ବାହୁନ୍ତି ଅଛନ୍ତି ରୂପ ଓ ଗୁଣ,
ଗତ ରଜନୀର ସୁଖ ତଳପକୁ
ଲୁହ ଢାଳି କରୁଅଛି ସ୍ମରଣ ।
"ଅତୀତ ଯାଇଛି କାଳଗର୍ଭେ ପଶି
ବର୍ତ୍ତମାନକୁ ତ ପୂରାଇ ଦେଲ,
ଆମ ଭବିଷ୍ୟତ କେଉଁଠି ରଖିଲ
ଛଳରେ କାହିଁକି ଖେଳିଲ ଖେଳ ?
ଖେଳରେ କାହାର ସରିଯାଏ କହେ
ଜୀବନଯାକର ଯେତେକ ଗେଲ ?
ସଂସାରକୁ କଅଁ ପିତା ମଣିଲ ହେ
ଖେଳ ଗେଲ କ'ଣ କେବଳ ଭେଲ ?
ବର-ଭରସାର ପ୍ରଶୟ ମାଧୁରୀ
ତୁଟିଯାଏ କି ହେ ଏପରି କାହିଁ ?
ଭାଙ୍ଗିଦେବା ଆଗୁଁ କାହିଁକି ହେ ନାଥ !
ସଙ୍କେତ ଟିକଏ ଦେଲ ତ ନାହିଁ ।
ଚାଇଥାନ୍ତୁ ଯଦି ଇସାରା ଟିକଏ
ପାରିଥାଆନ୍ତି କି ଏପରି ଭାଙ୍ଗି,
ମନା କରି ନାହିଁ ବୋଲି କି ହେ ସତେ
ଧୂଳିରେ ଶୋଇଛ ମୋ ଠାରେ ରାଗି ?

ଛାଡ଼ ଛାଡ଼ ରାଗ          କର ହେ ସୋହାଗ
କହୁଛି ବନସ୍ୱେ ଚରଣ ଧରି,
ଅନାଅ ହେ ଥରେ          ଏ ଅଭାଗିନୀକୁ
କିଏ ସେ ରଖିବ ସାଇତି କରି ।
ତୁମେ ଯୋଡ଼ିକି          ଯାଇଛ ହେ ଲୁଚି
ଯାଇ ମୁଁ ପାରିବ ସେଠିକି ଚାଲି,
ସେଇଥିପାଇଁ ତ          ଆସିଛି ଏଠିକି
ଅସିନା କାନ୍ଦିବା ପାଇଁକି ଖାଲି ।”
ଗାନ୍ଧାରୀ ଖୋଲିଲା          ଅନ୍ଧ ପଟଳଟା
ବନ୍ଧୁବନ୍ଧୁ ଥିଲା ଆଖିରେ ବନ୍ଧା,
ଏଜନା ଫିଟିଲା          ପୁଅ ଶବ ଦେଖି
ସାରିଦେବ ପରା ସଂସାରଧନ୍ଦା ।
ଦେଖିଲା ଆଗରେ          ଶ୍ରୀକୃଷ୍ଣଙ୍କୁ ଉଭା
କହିଲା ସକାଇ, “କି କଲୁ ସତେ,
ଭାବିଥିଲି ମନେ          ସୁନାର ପୁଅ ତୁ
କଅଁ ପୁତ୍ରଶୋକ ଦେଲୁ ରେ ମୋତେ ?
ପାଣ୍ଡବ କୌରବ          ତୋର ତ ସମାନ
ବୁଝାଇ ସୁଝାଇ ପାରିଲୁ ନାହିଁ,
ସବୁ ଜାଣିଶୁଣି          ପାଣ୍ଡବଙ୍କ ପକ୍ଷ
କହିଲୁ ତୁ ଭଲ ନେଲୁ କପାଇଁ ?
ଏଇଥିପାଇଁକି          ଦେଉଛି ତୋତେ ଶାପ
ପୁଅ ନାତି ତୋର ମରିବେ ଆଗେ,
ବଂଶ ବୁଡ଼ିବ          କାନ୍ଦିବୁ ତୁ ବସି
ଜଳିବୁ ପୋଡ଼ିବୁ ମୋ ପରି ରାଗେ ।”
ଶ୍ରୀକୃଷ୍ଣ ଟିକିଏ          ହସିଦେଲେ ଖାଲି
କହିଲେ ଲୋ, “ମାଆ ! ମରଣ ପାଇଁ,
ଶ୍ରୀକୃଷ୍ଣ ଛୋରୁ ଲୋ          କାତର ନୁହଇ
କେତେବେଳେ ହେଲେ କାନ୍ଦିବ ନାହିଁ ।

ଜନମ ହୋଇଲେ    ନିଶ୍ଚୟ ମରିବ
ମରଣ ପାଇଁକି କାହିଁକି ଚିନ୍ତା,
ଏ ମିଛ ସଂସାରେ    କିଏ ବା କାହାର
କିଏ ବା ଜନନୀ କିଏ ସେ ପିତା ?
ରମଣୀସୁଲଭ    କଥାଟାଏ କଲୁ
କଲ ଅଭିଶାପେ କି ଅଛି ଲାଭ,
ଯେବେ ସତ, ମାଆ !    ଆଶୀର୍ବାଦ କରି
ମଲା ପୁଅଙ୍କୁ ତୁ ଜେଇଲୁ ଆଗ ?
କଲ୍ୟାଣର ପଦ    ନାହିଁ କିଛି ଫଳ
କି ଫଳ ଫଳିବ ତୋ ଅଭିଶାପ ?
ବୃଥାରେ କାହିଁକି    ମିଛ କଥା ପାଇଁ
ମନରେ କରୁଛୁ ଏତେହେଁ ତାପ ?
ନାରୀର ସ୍ୱଭାବ    ତା ପେଟପିଲାକୁ
କେବଳ ସଂସାରେ ପାଇବ ଭଲ,
ପର ପିଲାଟିର    ଶିଷ୍ଟ ଦେଖିବନି
ସବୁବେଳେ ଖୋଜୁଥିବ ସେ ସଲ ।
ତୁ ପଦ ପୁଅଙ୍କୁ    ଭଆର ଥାଆନ୍ତୁ
ସେ କଥାଁ ହୁଅନ୍ତେ ଏତେ ମନ୍ଦ,
ତୁ ଆଖିକୁ ବାନ୍ଧି    ହେଲୁ ଗୋ ଅନ୍ଧୁଣୀ
ପିତା ତ ସହଜେ ଜନମୁଁ ଅନ୍ଧ ।
ଭଲ ମନ୍ଦ କିଛି    ଦେଖି ପାରିଲନି
ଚଗୁଲରେ ଖାଲି ବିଶ୍ୱାସ କଲ,
ତୁମକୁ ଶୁକର-    ବାକର କହିଲେ
ପୁଅଟିମାନେ ତୋ ସକଳେ ଭଲ ।
ଆଖି କାନକୁ ତୁ    ମିଳାଇ ଥାଆନ୍ତୁ
ତେବେ ଜାଣିଥାନ୍ତୁ ଭଲ କି ମନ୍ଦ,
ଏଇନା କାହିଁକି    ମୋତେ ତୁ ନିନ୍ଦୁଛୁ
ଅଭିଶାପ ଦେଇ କରୁଛୁ ଦ୍ୱନ୍ଦ୍ୱ ?

ତୋର ବାପ ହୋଇ ମଲେ କାହା ପାଇଁ
ଉପୋସ ଶୋକରେ କାଗରେ ସଡ଼ି,
କହିଲୁ ଆତୁର କରନ୍ତ ଅନ୍ୟାୟ
କେଉଁନର ପାପ ବୁଦ୍ଧିରେ ପଡ଼ି ?
ଭୁହି କହ ଦେଖି ତୋହର ବଗୃରେ
ତୋ ପୁଏ ଭଲ କି ପାଣ୍ଡବେ ଭଲ,
ଭୀମକୁ ତୋ ପୁଏ ବିଷ ଦେଇଥିଲେ,
ଦ୍ରୌପଦୀକୁ ସବୁ ଲଙ୍ଗଳା କଲ ।
ଆତୁର ତାହାଙ୍କୁ ପୋଡ଼ି ମାରୁଥିଲ
ଧରମ ବଳରୁ ଗଲେ ଉବୁରି,
ଭାବକରି କହ ପୁଅ ଓ ପୁତୁରା-
ମାନଙ୍କ ଜନନୀ ତୁ ତ ସବୁରି ।
ମିଳାଇ ଦେବାକୁ କରି ନାହିଁ ଯତ୍ନ ?
ପାଞ୍ଚଖଣ୍ଡି ପଡ଼ା ମାଗିଲି ଯାଇଁ,
କଅଣ ପାଇଁକି ତୋର ଦୁର୍ଯ୍ୟୋଧନ
ତିନି ଥର ମୋତେ କଲା ଗୋ ନାହିଁ ।
ଦ୍ରୌପଦୀକୁ ଯେବେ ଲଙ୍ଗଳା କଲ ଗୋ
ବୋହୂଙ୍କ ଅଞ୍ଚଳେ ଲଗିନ ନିଆଁ ?
ଧରମ ତ ଆଗୁଁ କହି ଦେଇଥିଲ
ସେବୁଁ ହୁସିଆର ହେଲିନ କିଆଁ ?
ଅଭିମନ୍ୟୁଟାକୁ ସାତଟା ମାଇଲେ
ଏଇଟା ତୋହର ପୁଅଙ୍କ ନ୍ୟାୟ,
ମୋତେ ତୁ ଖାଲି ଗୋ ହିଂସାରେ କହୁଛୁ
ମୁହିଁ ଖାଲି କରିଦେଲି ଅନ୍ୟାୟ ।
ବାପ ମାଆ କେହି ସୁଧାରିଲ ନାହିଁ
ପୁଅଙ୍କୁ ତାଂକଲ ଅନ୍ୟାୟୀ ଦୁଷ୍ଟ,
ଏଇନା କାହିଁକି ମିଛରେ ଜନନି ?
ମୋର ଉପରେ ତୁ ହେଉଛୁ ରୁଷ୍ଟ ।

ମୋହର ଏଥିରେ    କି ଲଭ କହିଲୁ
    ରାଜ୍ୟରୁ ବାଡ଼ରୁ ନେବ କି କହୁ,
ମିଛରେ ତୁ ମୋତେ    ଅଭିଶାପ ଦେଲୁ
    ନାଶ ଆଚରଣ ଏଗୁଡ଼ା ଛି ଛି ।
ଅନ୍ୟାୟ ବିପକ୍ଷେ    ସବୁବେଳେ ମୁଁ ଗୋ
    ମୁଁ କାହାର ନୁହେ କଣାକଙ୍କର,
ଧର୍ମ ଯେ କରିବ    ନ୍ୟାୟ ଯେ କହିବ
    ସବୁବେଳେ ରହେ ସପକ୍ଷ ତାର ।
ତେବେ ତୋ ପୁଅଙ୍କ    ବିପକ୍ଷେ ଯାଇନ
    ସେ ପାଖେ ରହିଲ ଏକା ନିରସ୍ତ୍ର,
ତୋ ପୁଅଙ୍କୁ ଦେଲି    ନାରାୟଣୀ ସେନା
    ତାଙ୍କର ହାତରେ ଅସ୍ତ୍ର ଓ ଶସ୍ତ୍ର ।
କହ ମୁଁ କପଟ    ତୋ ପୁଅମାନଙ୍କ
    ବିପକ୍ଷରେ କାହିଁ କେଉଁଠି ରହି,
ଅର୍ଜୁନଙ୍କୁ ଦେଲି    ଭଉଣୀ କହିବୁ
    ତୋ ନାତୁଣୀ ନେଇ ବୋହୂ ତ କଲି ।
ସେଥିପାଇଁ ରାଗି    ଶାପଟାଏ ଦେଲୁ
    ଧରମ ବିଗ୍ରହ କରିବ ତାର,
କାହାର ଶାପକୁ    କା'ର କଲ୍ୟାଣକୁ
    କେବେ ଡରେ ନାହିଁ କୃଷ୍ଣଟା ତୋର ।
ନିଜ ଦୋଷ କେହି    ବାଛଇ ନାହିଁ ଗୋ
    ବାଛୁଥିଲେ ଦୋଷ ଥାଆନ୍ତା ଠିକ,
ମୋର ଦୋଷ ଗୁଣ    ପର ଦୋଷ ଗୁଣ
    ନିରପେକ୍ଷ ହୋଇ ପାରଇ ଦେଖି ।
ହେଇଥିପାଇଁ ତ    ଡରେନା କାହାକୁ
    ଯିଏ ସାଧୁ ମୋତେ ଚିହ୍ନଇ ସିଏ,
ଅସାଧୁ ଚିହ୍ନନ୍ତୁ    ଅବା ନ ଚିହ୍ନନ୍ତୁ
    ତାଙ୍କୁ ବା ଖାତର କରୁଛି କିଏ ?

ଧରମରୁ ସୂର୍ଯ୍ୟ ଉଇଁଛି ବୁଡ଼ୁଛି
ସାଗର ଡେଇଁନି ତାହାର ବନ୍ଧ,
ବରଷୁଛି ମେଘ, ବହୁଛି ପବନ,
ଜଳୁଛି ଅନଳ, ହସୁଛି ଚନ୍ଦ ।
ଏସବୁକୁ କିଏ ଓଲଟାଇ ଦେବ ?
ତୋହର ଏ ରାଗ ତୋହର କାନ୍ଦ ?
ଶହେଟା ପୁଅ ତୁ ଜନମ କଲୁ ଯେ
ନୁହେ ଜଣେ ଭଲ ସବୁ ତ ମନ୍ଦ ।
ସମରେ ସେହବୁ ପଶନ୍ତ ଲୋ ମାଆ !
କେବଳ ପଶନ୍ତ ମରିବା ପାଇଁ,
ଅଠର ଅକ୍ଷୌଣୀ ପଶିଲେ ଯୁଦ୍ଧରେ
କେତୁଟା କେଉଁଠି ଅଛନ୍ତି କାହିଁ ?
ସେଇଥିରେ ତାଙ୍କୁ ମିଳିଲା ମୁକତି
ଝଇଲେ ହୁଅନ୍ତେ ସଂସାରେ ବନ୍ଧା,
କେଉଁ ଥିରେ ତେବେ କହିଲୁ ତୁ ଭଲା
ତୁଟିଯିବ ସବୁ ମାୟାର ଧନ୍ଦା ?
ଧରମରେ ରହି କରମ ସମ୍ପାଦି
ମରଣକୁ ଯେବେ କରିବ ଫନ୍ଦା,
ତେବେ ଗୋ ଜନନି ! ମୁକୁଳିବ ଫାଶୁଁ
ଫିଟିଯିବ ଆପେ ଗୋଲକଧନ୍ଦା ।
ମରଣ ନୁହଇ ପାପ ପରିଣାମ
ପୁଣ୍ୟର ଫଳ ବି ଅଟଇ ସିଏ,
ମା ଆଉ କାନ୍ଦନା କରମର ଫଳ
ମରଣର ଛଡ଼ା ଅଛି ବା କିଏ ?
ମରଣ ନୁହଇ ଖାଲି ଜନ୍ମ ପାଇଁ
ସେହି ତ ଆତ୍ମର ଅଜନ୍ମ ପାଇଁ,
ଜାଣୁନୁ ଜନନି ! ମରଣରେ ମୁକ୍ତି
ଅମରଣେ ମୁକ୍ତି ବସିଛି ରହିଁ ।

ଉଭୟଙ୍କ ପାଇଁ କରମ ଧରମ
ଦୁଇଟି ଯେ ଲୋଡ଼ା ଏହା ଯେ କରେ,
ଜୀଇ ଏଥି ଦେହେ ଭୋଗଇ ସେ ସୁଖ
ମୁକତି ଲଭଇ ମରଣ ପରେ ।

— ——

# ଧୃତରାଷ୍ଟ୍ରଦ୍ୱାରା ଲୌହଭୀମଭଗ୍ନରେ ଶ୍ରୀକୃଷ୍ଣ

ପୁଅମାନଙ୍କର    ମୃତ ଶବ ଦେଖି
ଧୃତରାଷ୍ଟ୍ରଙ୍କର ଦାରୁଣ ଚିନ୍ତା,
ହସ୍ତିନା ନଅର    ରାଜ ଉପଗୃର
ସବୁ ସୁଖ ତାଙ୍କୁ ଲଗିଲା ପିତା ।
ଏକା ଭୀମ ଶତେ    ପୁଅ ହତ୍ୟା କଲା
ପିଣ୍ଡ ଦେବା ପାଇଁ ଗୋଟିଏ ନାହିଁ,
କେତେ ଜନ୍ମ ମୁହିଁ    ପିଣ୍ଡଟିଏ ପାଇଁ
ପର ପୁଅଟିକୁ ବସିବି ଚାହିଁ ?
ଏକା ଭୀମ ମୋର    କଲା ସର୍ବନାଶ
ରୁନ୍ଧିଦେଲା ମୋର ମୁକତି ପଥ,
ଭୀମକୁ ମାରିଲେ    କଲେ କଉଶଳେ
ପୂରିଯିବ ଅବା ମୋ ମନୋରଥ ।
ଭୀମକୁ ମାରିବା    କଲେ ସଂକଳପ
ସୁବିଧା ସୁଯୋଗ ଖୋଜିଲେ ଖାଲି,
ସ୍ନେହରେ ଡାକିବ    କୋଳେ ପୂରାଇବ
ଚାପିଚୂପି କରି ମାରିବ ବୋଲି ।
ଅନ୍ତର୍ଯ୍ୟାମୀ କୃଷ୍ଣ    ଜାଣିଲେ ତା ମନ
ପାଣ୍ଡବଙ୍କୁ ଡାକି କହିଲେ କାନେ,
ଧୃତରାଷ୍ଟ୍ର ମନ    ନୁହଇ ନିର୍ମଳ
ମାରିବେ ସେ ନିଜେ ଭୀମକୁ ଧନେ ।

ଅଶ୍ୱମେଧ ଯଜ୍ଞ କରିବା ପାଇଁକି
ସୁନାରେ ଜାନକୀ ଗଢ଼ିଲେ ରାମ,
ଧୃତରାଷ୍ଟ୍ରଙ୍କର ଭୀମମେଧ ଯଜ୍ଞ
ପାଇଁ ତୁମେ ଗଢ଼ ଲୁହାରେ ଭୀମ ।
ଅନ୍ଧ ହୋଇବାରୁ ଆଖିର ଶକତି
ବ୍ୟସ୍ତ ନୋହି ଅଛି ଦେହରେ ପୂରି,
ସେ ଶକତି ତାର ଏତେ ଅଧିକ ଯେ
ଲୁହାର ଭୀମ ସେ ପାରିବ ଚୂରି ।
ସେଇଟିକୁ ଗଢ଼ି ଲୁଚାଇ ରଖିଥା
ଡାକିବ ସେ ଦିନେ ସଭାରେ ବସି,
କେତେ ଭଲ ମନ୍ଦ କହିବ ତୁମକୁ
କପଟ ହୃଦୟେ ମୁହଁରେ ହସି ।
ଶେଷରେ ଡାକିବ ଭୀମକୁ କୋଳକୁ
କପଟରେ ସ୍ନେହ କରିବା ପାଇଁ,
ସେତିକି ବେଳରେ ଲୁହା ଭୀମଟାକୁ
କୋଳକୁ ତାହାର ଦେବ ବଢ଼ାଇ ।
ମୁଁ ଆଉ ସାତ୍ୟକି ଥିବୁ ସେତେବେଳେ
ଦେଖିବା ପାଇଁକି ବୁଢ଼ାର ବଳ,
ଭୀମକୁ ମରଣୁ ରଖିବା ପାଇଁକି
ଏହି ତ ଗୋଟିଏ ମାତ୍ର କୌଶଳ ।
ସତକୁ ସତ ସେ ଦିନେ ସଭା କରି
ପାଞ୍ଚ ଭାଇଯାକ ନେଲା ଡକାଇ,
ସେହି ଦିନ ସିଏ ମାରିବ ଭୀମକୁ
ବୋଲି ଏତେ ଦିନ ଥିଲା ତକାଇ ।
ଶୁଣିଲେ ସଞ୍ଜୟ, ବିଦୁର, ଶ୍ରୀକୃଷ୍ଣ,
ସାତ୍ୟକି ସହିତ ସମସ୍ତେ ଗଲେ,
ଲୁହା ଭୀମଟାକୁ ନିଅ ହେ ସଙ୍ଗରେ
ଖାଲି ଯାଅ ନାହିଁ କୃଷ୍ଣ କହିଲେ ।

ଧୃତରାଷ୍ଟ୍ର ପଦେ ଚହ୍ଲାଇଲେ ଓଳଗି
ଧୃତରାଷ୍ଟ୍ର କେତେ କଲ୍ୟାଣ କରି,
ନାନା ଭଲ ମନ୍ଦ ପଚାରି ବୁଝିଲେ
ଶେଷରେ କହିଲେ, "ହାଇରେ ହରି !
ଏଡ଼େ ଅନ୍ୟାୟ ତୁ କଲୁ ରେ କାହିଁକି
ମୋର ଶହେ ପୁଅ ଦେଲୁ ମରାଇ,
ଜଗତନାଥ ତୁ . ଇଚ୍ଛା କରିଥିଲେ
ପାରି ନ ଥାନ୍ତୁ କି ତାଙ୍କୁ ତରାଇ ?
ବୁଝାଇ ସୁଝାଇ ସାଇତି ଦେଲୁନି
ମାରିଦେଲୁ ସିନା ଅନ୍ୟାୟ କରି,
ଉଭୟ ପକ୍ଷ ତ ମାନିଥିଲେ ତୋତେ
ଜବରଦସ୍ତିରେ ଥାଆନ୍ତୁ ଧରି ।
ଯାହା ହେବାର ତ ହୋଇଗଲାଣି ରେ
ଅଛନ୍ତି ଏଠି ପାଞ୍ଚଟି ଭାଇ,
ଭୀମଟା ମୋହର ଟିକେ ବେଶୀ ହୁଣ୍ଡା
ପିଲାଦିନୁ ରାଗୀ, ସେ ଗଲା କାହିଁ ?
ଆସିଲୁ ଆସିଲୁ ବାପ ମୋ ପାଖକୁ
ଶହେଟା ଭାଇଙ୍କୁ ଦେଲୁ ତୁ ମାରି,
ତୋର ବଳ ଯେତେ ଜାଣେ ରେ ସବୁ
ମୋ ପୁଏ ଥାଆନ୍ତେ ତୋତେ ହିଁ ଡରି ।
ସେମାନେ ତ ମଲେ ଆଉ କେହି ନାହିଁ
ତୁହି ମୋତେ ଦେବୁ ପିଣ୍ଡ ଓ ପାଣି,
ପିଲାଟି ଦିନରୁ ତୋ ଢଙ୍ଗଢାଙ୍ଗରୁ
ଏହିଟିକୁ ପାରିଥିଲି ମୁଁ ଜାଣି ।
ହଉ, ହଉ, ମୋର କୋଳକୁ ଆସିଲୁ
କୋଳରେ ଟିକଏ ଧରଇ ତୋତେ,
ତୁହି ତ କେବଳ ବଂଶରେ ବଳିଆ
ଚିତ୍ତ ମୁକ୍ତି ଅନ୍ତେ ଦେବୁ ରେ ମୋତେ ।"

ଜହ୍ନା ଝୁମଟାକୁ ଦେଖାଇଛି ବଡ଼ାଇ
ଟାଣି ଭିଡ଼ି ମୋଡ଼ି କଲା ସେ ଗୁଣ୍ଡା,
ସକଳେ ଚକିତେ କହିଲେ ବୁଢ଼ାଟା
ସତେ ଟି କୁଟିଳ ନିହାତି ଦୁଣ୍ଡା ।
ଆହୁରି କହିଲେ ବିସ୍ମିତ ହୋଇଣ
ବୁଢ଼ାଟା ଦେହରେ ଏତିକି ବଳ,
ଚତୁର୍ଥ ବୟସ, ମରିବାକୁ ହେଲା
ହୃଦୟୁଁ ତାର ନୁହେ ଗରଳ ।
ବୁଢ଼ାକୁ ସମସ୍ତେ କଲେ ଛି ଛି କର
ତାହାର ଉଦ୍ଦେଶ୍ୟ ହେଲା ବିଫଳ,
ଧରା ପଡ଼ିଗଲା ଅନୁତାପ କଲା
ବାକି ରହିଗଲା କରମ ଫଳ ।
ଫଳିବ ସେ ଦିନେ ଅତି ଅଚିରେ
ଅରଣ୍ୟ-ଅନଳେ ମରିବ ପୋଡ଼ି,
ପାପ ପରିଣାମ ସଙ୍ଗେ ଗୋଡ଼ାଇବ
ମରଣ ପରେ ବି ଯିବନି ଛାଡ଼ି ।
ଯାହାକୁ ରଖିବେ ଅନନ୍ତ ସଂସାରେ
କି କରିପାରିବ କେ ବଳବନ୍ତ,
ସେହି ଅନନ୍ତଙ୍କୁ ଧ୍ୟାନକର ମନ
ସବୁ ପାପ ତାପ ହୋଇବ ଅନ୍ତ ।

# ଅଶ୍ୱମେଧ ଯଜ୍ଞେ ଶ୍ରୀକୃଷ୍ଣ

ଯୁଦ୍ଧେ ଜୟ କରି ମଧ୍ୟ ଧର୍ମଙ୍କ ନନ୍ଦନ,
ନେବେ ନାହିଁ ସିଂହାସନ କିବା ରାଜ୍ୟଧନ ।
ବ୍ୟାସ ତପୋଧନ ପୁଣି କୃଷ୍ଣ ଉପଦେଶ,
ଶୁଣି ଯୁଧିଷ୍ଠିର କଲେ ହସ୍ତିନା ପ୍ରବେଶ ।
ଉପରୋଧେ ଖାଲି ରାଜ୍ୟ ନେଇ ଯୁଧିଷ୍ଠିର,
ପ୍ରଜାଙ୍କୁ ପାଳିଲେ ମାତ୍ର ମନଟି ଅସ୍ଥିର ।
ଭୀମାର୍ଜୁନ ସହଦେବ ନକୁଳ ସୁମନ୍ତ,
ଭାଇମାନଙ୍କ ସଙ୍ଗରେ ବିଚାର କରନ୍ତ ।
"ଶୁଣ ଭାଇମାନେ ! ମୋର ଅନ୍ତରର ଦୁଃଖ,
ଆତ୍ମୀୟ ସଂହାର କରି ମନେ ନାହିଁ ସୁଖ ।
ଦେଖି ନାହିଁ କେତେ ଦିନୁ ଶ୍ରୀକୃଷ୍ଣଙ୍କ ମୁଖ,
କାହିଁକି ଆସୁନାହାନ୍ତି ତେଣୁ ବେଶୀ ଦୁଃଖ ।
ଛାଡ଼ିକି ଗଲେ ରେ ଭାଇ ଦେଖି ମୋର ପାପ,
ସବୁବେଳେ ପୋଡ଼ିଲାଟ ରେ ମୋତେ ଅନୁତାପ ।"
ଅର୍ଜୁନ କହିଲେ ଶୁଣି, "ଚିନ୍ତା କର ନାହିଁ,
ଶ୍ରୀକୃଷ୍ଣ ଆମ ଶରଣ ଛାଡ଼ିବେନି ଭାଇ !
ଆମ ଆତ୍ମୀୟ ନିଧନେ ଅଛି ତାଙ୍କ ଭାଗ,
ସେଥିପାଇଁ ଆମଠାରେ ନାହିଁ ତାଙ୍କ ରାଗ ।
ସ୍ମରଣ କଲେ ଆସିବେ ନିଶ୍ଚୟ ଶ୍ରୀହରି,
ସ୍ଥିର ହୁଅନ୍ତୁ ଆପଣ ଚିନ୍ତା ପରିହରି ।"

ବ୍ୟାସ ଆସି ପହଞ୍ଚିଲେ ସେହି ସମୟରେ,
ପାଞ୍ଚ ଭାଇ ପ୍ରଣମିଲେ ତାଙ୍କର ପୟରେ ।
ବ୍ୟାସଦେବ ସେମାନଙ୍କୁ କରିଲେ କଲ୍ୟାଣ,
ପଚାରିଲେ ଯୁଧିଷ୍ଠିରେ, "କହ କି କାରଣ ?
ଦିଶୁଛି ମଳିନ ମୁଖ ମରିଅଛି ମନ,
କରୁଛ କି ଯୁଧିଷ୍ଠିର ନୀରବ କ୍ରନ୍ଦନ ?
ସସାଗରା ଧରଣୀର ହେଲ ଅଧିକାରୀ,
ସମରେ ଅଜେୟ ଶତ୍ରୁମାନଙ୍କୁ ସଂହାରି ।
ଭୀମ ଅର୍ଜୁନଙ୍କ ସମ ସହୋଦର ଯାର,
ତାହାର ମନ ବିଷଣ୍ଣ, କି ଅଭାବ ତାର ?
ନକୁଳ ଭାଇ ସୁଶୀଳ ମନ୍ତ୍ରୀ ସହଦେବ,
ହାତକୁ ଅନାଇ ଯିଏ ଭବିଷ୍ୟ କହିବ ।
ତାର ମନେ ସୁଖ ନାହିଁ ବିଚିତ୍ର ମୁଁ ମଣେ,
କହ ରଜା କି ଅଭାବ ଶାନ୍ତି ନାହିଁ ମନେ ?"
ବ୍ୟାସଙ୍କ ମୁହଁରୁ ଶୁଣି ଏସନକ କଥା,
ଯୁଧିଷ୍ଠିର ଖେଦ ମନେ ନୁଆଁଇଲେ ମଥା ।
କହିଲେ ଖେଦରେ, "ଋଷି ! ମୋ ମର୍ମ ବେଦନା,
କା ଆଗେ କହିବି ଅବା କେ କରିବ ସେନା !
ଲୋଭ ପାଇଁ କି ଅନ୍ୟାୟ ମୁଁ ବା କରି ନାହିଁ,
ଆତ୍ମୀୟସ୍ୱଜନ ସବୁ ଦେଇଛି ମରାଇ ।
ବହୁତ ପାପ ଆଚରି ହେଲି ଲୋକହସା,
ଅଯୋଗ୍ୟ ମୁଁ ଶୁଣିବାକୁ କୌଣସି ପ୍ରଶଂସା ।
ଜ୍ଞାତିବଧ ପାପ ଭୟ ମୋର ନିରନ୍ତର,
କପରି ମୁକତି ହେବ କହ ମୁନିବର !"
କହିଲେ ବ୍ୟାସ ଆଶ୍ୱାସି, "ଶୁଣ ନରବର,
ଅଶ୍ୱମେଧ ଯଜ୍ଞଟିଏ ସେଥିପାଇଁ କର ।"
ସ୍ମରଣ କଲେ କୃଷ୍ଣଙ୍କୁ ପାଣ୍ଡବପ୍ରଧାନ,
ନିଶି ଅର୍ଦ୍ଧେ ସବେ ସୁଖ ଶଯ୍ୟାନେ ଶୟାନ ।

"ଆହେ ଜନାର୍ଦ୍ଦନ ! ପତିତ ପାବନ
ଯୁଧିଷ୍ଠିରଙ୍କୁ କି କଲ ହେ ପର,
କରୁଣା ବରଜ ଦେଲ କି ମନରୁ
କରିଦେଲ ପ୍ରଭୁ ପାଶୁଁ ଅନ୍ତର ।
ତୁମେ ପାଖେ ଥିଲେ କମଳ ଲୋଚନ
ମୋ ମନ-ନୟନ ରହେ ଶୀତଳ,
ପାଶରୁ ଅନ୍ତର ହୋଇଗଲେ କୃଷ୍ଣ
ହୁତୁ ହୁତୁ ହୋଇ ଜଳେ ଅନଳ ।।
ଯୁଦ୍ଧ ଜିଣି ନାହିଁ କିଣିଛି ମୁଁ ପାପ
ଉଦ୍ଧର ସେଥିରୁ କରୁଣାକର,
ପଡ଼ିଛି ପାପରେ ହୀନକାମ କରି
ପାପୀ ଜନଙ୍କୁ ଉଦ୍ଧରେ ଧର ।"
ବାଜିଲା କାନରେ ଯୁଧିଷ୍ଠି କାନ୍ଦଣା
ଆସିଲେ ଶ୍ରୀକୃଷ୍ଣ ଅପ୍ରତ୍ୟତରେ,
ତେବେ ଯୁଧିଷ୍ଠିର ହୋଇଲେ ଆଶ୍ୱସ୍ତ
ଧଇର୍ଯ୍ୟ ପଶିଲା ତାଙ୍କ ଚିତ୍ତରେ ।
ସତ୍କାର କରି ବସାଇଲେ ଧରି
ନିଜେ ବି ବସିଲେ ତାଙ୍କର ପାଶେ,
ଆଉ ଭାଇମାନେ ଦ୍ରୌପଦୀଙ୍କ ସହ
ସକଳେ ବସିଲେ ବେଢ଼ି ଚୌପାଶେ ।
ତେବେ ଯୁଧିଷ୍ଠିର ହାତ ଯୋଡ଼ିକରି
କହିଲେ ବିନୟେ, "ହେ ଜଗନ୍ନାଥ,
ତୁମେ ନ ରଖିଲେ ବୁଡ଼ିଲି ହେ ପ୍ରଭୁ !
ତୁମେ ଯେ ମୋହର ରକ୍ଷକ ନାଥ ।
ଅଭିଷେକ କରି ଦେଲ ସିଂହାସନ
ସେ ଏବେ ହେଲଣି ଶରର ଶେଯ,
ପିତାମହ କଥା ଯାଉନି ମନରୁ
ତୁମେ ବି ଚିନ୍ତାଏ ମୋ ପାଇଁ 'ହେଜ ।

ଗୁରୁ ହତ୍ୟା କରି କି ପୁଣ୍ୟ ଅର୍ଜିଲି
ମୁକୁଳାଇଲି ମୋ ନରକ ପଥ,
ଜ୍ଞାତି କୁଟୁମ୍ବଙ୍କୁ ଧ୍ୱଂସ କରିଅଛୁ
ପ୍ରାର ପରିଣାମ ତୁମେ କହ ତ ।
ବ୍ୟାସ ଉପଦେଶ ଅଶ୍ୱମେଧ ଯଜ୍ଞ
କରିବି କୁଆଡ଼େ ହେବି ମୁକତ,
ବ୍ରହ୍ମସ୍ୱ ନେଇ ମୁଁ କରିବି କି ଯଜ୍ଞ
ଯୋଉଟିକି ଅଛି କରିବି ହତ ?
ଯୁବନାଶ୍ୱପୁରେ ଅଛି ଅଶ୍ୱଟିଏ
ତାକୁ ପୁଣି ଯାଇ ଆଣିବି ଭୀମ,
ସବୁ ପରଧନ ଆଣିବି କାହିଁକି
ହୋଇବ କି ପୁଣ୍ୟ ପୂରିବ କାମ ?
ସେଇଥିପାଇଁକି ନେଉଛି ଶରଣ
ଜାଣିଛି ତୁମର ଅଛି କରୁଣା,
ଆଗେ ଯାହା ଥିଲି ଆଜ ବି ରହୁଛି
ଭଲେ ହେଲେ ତହୁଁ ହୋଇନ ଊଣା ।"
ଉତ୍ତରିଲେ କୃଷ୍ଣ ଗମ୍ଭୀର କଣ୍ଠରେ
ଅଳ୍ପ ଅଳ୍ପ ହସି ମଧୁର ଭାଷି,
"କର ତୁମେ ଯଜ୍ଞ କିଛି ଦୋଷ ନାହିଁ
ସେଥିପାଇଁ ସିନା ଅଛି ମୁଁ ଆସି ।
ବ୍ରହ୍ମସ୍ୱ ନୁହେ ସେ ଦାନ ନେଇ ବେଶୀ
ହେବାରୁ ସେ ଧନ ପକାଇ ଗଲେ,
ରଜାର ତ ରାଜ୍ୟ ରଜାର ବି ଧନ
ଦୋଷ ହେବ କାହିଁ ସେ ଧନ ନେଲେ ?
ଯୁବନାଶ୍ୱପୁରେ ଅଛି ଯେଉଁ ଅଶ୍ୱ
ଯଜ୍ଞ ଉପଯୋଗୀ ଅଟଇ ସେହୁ,
ସିଏ ଯେତେବେଳେ ଯଜ୍ଞ କରୁ ନାହିଁ
ଯଜ୍ଞ ତ କରିବ ଆଉ ଏକ ନେଇ ।

ଚେତବେ ଭୀମ ଆଣି ପାରିବେ ନାହିଁ ତା
ତାଙ୍କର ତ ଅଛି ମନ୍ଦ ପ୍ରକୃତି,
ଦାନବୀ ମାନବୀ କିଛି ବାଛନ୍ତିନ
ଘୋଡ଼ା ଆଣୁ ଆଣୁ କରିବେ ପ୍ରୀତି ।
ରାକ୍ଷସୀ ପ୍ରକୃତି ଦାନବ ଆକୃତି
ମଣିଷ ରକତ ତାଙ୍କ ଆହାର,
ଦୁଃଶାସନ ବଧି କଅଣ ନ କଲେ
ଦେଖିଛ ତ ସବୁ ସେ କାରବାର ।
ବନବାସେ ଗଲେ ରାକ୍ଷସୀ ରମିଲେ
ଫେଷ୍ଟୁ ରାକ୍ଷସର ନୁହେ ଏ କାମ,
ପଠା ଆଉ ଜଣେ ଆଣୁ ସେ ତୁରଗ
ଭୁଲେ ଧର ନାହିଁ ଭୀମଙ୍କ ନାମ ।"
ଶୁଣି କୃଷ୍ଣ ବାଣୀ କହିଲେ ପାବନି,
"ଆପଣଙ୍କ ଗଲ ନାହିଁ ତ କିଛି !
ଗୋପପୁରେ ରହି କଅଣ କରନା
ଲାଜ ମାଡ଼ୁ ନାହିଁ ମୁହଁକୁ ଛି ଛି !
ମଣି ଖୋଜିଗଲ ଆଣିଲ ଭାଲୁଣୀ
କେଉଁ ଥରେ ଉଷା ତୁମେ କହିଲ ?
ଭୀମ ସବୁ କରେ ତୁମେ ଧୂଆମୂଳା
ମୂକ ହୋଇ କାହିଁ ବସି ରହିଲ ?"
ଶ୍ରୀକୃଷ୍ଣ ହସିଲେ ଉଠି କୋଳ କଲେ
କହିଲେ, "ନିଶ୍ଚୟ ଘୋଡ଼ା ଆଣିବ,
ମୋର ଦୋଷ କିଏ ତୁମ ଛଡ଼ା ଆଉ
ଉତ୍ପ୍ରୋଧ ତୁଟାଇ କହିପାରିବ ?
ମୁହଁ କୁହାକୁ ମୁଁ ଭଲ ପାଏ ବେଶୀ
କାରଣ ତାହାର ମନ ନିର୍ମଳ,
କହିଁ ନଥା କୁହା ଦରହସକୁଳ
ଖୋସାମୋଦଆ ସେ ବଡ଼ କୁଟିଳ ।"

ପରଦିନ ପ୍ରାତେ ଦେଖିଲେ ସକଳେ
ଶ୍ରୀକୃଷ୍ଣ ନାହାନ୍ତି ପାଣ୍ଡବ ଘରେ,
ଅର୍ଜୁନଙ୍କୁ ଡାକି ପଚାରିଲେ ସବୁ
ଶ୍ରୀକୃଷ୍ଣ ତ ଥିଲେ କୁଆଡ଼େ ଗଲେ ?
ଅର୍ଜୁନ କହିଲେ, "ମୁଁ ତ ଜାଣେ ନାହିଁ
ବାହାରିଗଲେ କି ଦ୍ୱାରିକା ଆଜି ?
ଯୁଧିଷ୍ଠିର କହିଲେ ଭୀମ ଚାଲିଯାଇଛି
ଆଣୁ ସେ କୃଷ୍ଣଙ୍କୁ ଏଇନା ଯାଇ ।
ଭୀମ ଦ୍ୱାରକାରେ କୃଷ୍ଣଙ୍କୁ କହିଲେ
"ଖାସା ଭଲଲୋକଟିଏ ଆପଣ,
କାହାକୁ ନ କହି ନ କରି ହେ କଣ୍ଠ
ଚୋରର ପରି କଲ ତ ଆଚରଣ ।
ଆସିବା ହେଉନ୍ତୁ ଯୁଧିଷ୍ଠିର ଆଜ୍ଞା
ନ ଆସିବ ଯେବେ ନେବ ମୁଁ ଟେକି,
ଉଠି ଠିଆ ହୁଅ ନ ହେଲେ କହୁଛି
ଟେକିନେବ କିଏ ରଖିବ ଦେଖି ।
ଶ୍ରୀକୃଷ୍ଣ କହିଲେ, "ହଉ ବସ ବସ
ଖାଇପିଇ ସାର ଯିବା ତ ପଛେ,
ତୁମେ ସିଧା ସିଧା ନ କହି ନ କରି
ପଶିଲ ଭିତରେ ସିଧା ସଳଖେ ?"
ଭୀମ ଉତ୍ତରିଲେ, "ଅଛି ଅଧିକାର
ଦେଇଛ ତା ତୁମେ କରିବ ମନା,
ତୁମ ବନ୍ଧୁପଣ ତୁମ ଭଲପଣ
ଗତ ଜନମରୁ ହୋଇଛି ଜଣା ।
ଭଉଣୀ ଘରକୁ ଯାଇ ତ ଥିଲ ହେ
କାହାକୁ ନ କହି ଆସିଲ କିଆଁ,
ଆସ ଆସ ବେଗେ ଉତ୍ତର କରନା
ମୋ ମନରେ ଆଜି ଜଳାନା ନିଆଁ ।

ତୁମେ ତ କହୁନା    ମୁହିଁ ବା କହିଲି
ଏଥିପାଇଁ ଏତେ ରାଗ କାହିଁକି,
ଖୀସା ଉଲଟେଇ    ଜଣା ପଡ଼ିଲାଣି
ପଳାଇ ଆସିଲ ଯାହା ପାଇଁକି ।
ଭାଇଙ୍କ ହୁକୁମ    ବାନ୍ଧି ନେଇଯିବ
ନ ହେଲେ ତ ଯଜ୍ଞ ହୋଇବ ନାହିଁ,
ଘୋଡ଼ା ଆଣିବାକୁ    କହିଦେଲ ମୋତେ
ଅସଲ ବେଳକୁ ଶ୍ରୀକୃଷ୍ଣ କାହିଁ ?
କହ ଦାମୋଦର !    ଉଚିତ ହେଲା କି
ସଭିଙ୍କ ମନରେ ଛୁଇଁଛି ପାପ,
ଶ୍ରୀକୃଷ୍ଣ କୁଆଡ଼େ    ଅମର୍ଯ୍ୟାଦା ପାଇ
ବାହାରି ଆସିଲେ ବହନ୍ତି ତାପ ।
ଦେହଟା ତ ଭରି    କାଳୁଆ ଲାଗୁଛି
ତାପ ଫାପ କିଛି ଲାଗୁ ତ ନାହିଁ,
ଉଠ ଉଠ ଆଉ    ମଠ କର ନାହିଁ
ବସିଥିବେ ତେଣେ ଯୁଧିଷ୍ଠିର ଭାଇ ।
ପାଣ୍ଡବଗଣ    ଢେଙ୍କୁରୀ ବଜାଇ
ଏତେଇ କରୁଛ ଦିବ୍ୟ ଭୋଜନ,
ଯୁଧିଷ୍ଠିରଙ୍କର    ଦିନ ସରୁ ନାହିଁ
ବସି ଗାଉଛନ୍ତି ତୁମ ଭଜନ ।"
ଶ୍ରୀକୃଷ୍ଣ ହସିଲେ    ଟୋଅ ଟୋଅ କରି
କହିଲେ, "ମୋତେ କି କଣିଛ ସତେ",
ଭୀମ ଉତ୍ତରିଲେ,    "ତୁମେ ତ କଣିଛ
ପ୍ରଭୁ ବୋଲି କହିହେଉନ୍ଥ କେତେ ?
ଖୋସାମଦ କରି    ଟିକଏ କହିଲେ
ପଛରେ ଧାଇଁବ ସହସ୍ର କୋଶ,
ପୁଣି ସେଇନାଏ    ମୁହଁ ଫୁଲାଇବ
ଟିକଏ ଦୋଷରେ କରିବ ରୋଷ ।"

ସଙ୍ଗେ ସଙ୍ଗେ କୃଷ୍ଣ ଚଳିଲେ ହସ୍ତିନା
ଯଜ୍ଞ ଶେଷଯାଏ ରହିବେ ସେଠି,
ଆବଶ୍ୟକ ହେଲେ ପାଣ୍ଡବଙ୍କ ପାଇଁ
କେତେ କେତେବେଳେ ଖଟିବେ ବେଟି ।
ଭକତ ଅଧୀନ ସଦା ଭଗବାନ
ଭୀମଙ୍କ କଥାରୁ ଉତ୍ତର ନିଅ,
କୃଷ୍ଣଙ୍କୁ ପାଇବା ପାଇଁ ଇଚ୍ଛା ଥିଲେ
ସକଳ ତାଙ୍କଠି ସମର୍ପି ଦିଅ ।
ଶୁଭିଲା ତହିଁଲ ରଣ ଗଣ୍ଡଗୋଳ
ଅନୁଶାଲ୍ୱ ଆସି କଲା ଉତ୍ପାତ,
ଅଶ୍ୱମେଧ ଯଜ୍ଞ ଆରମ୍ଭ ନୋହୁଣୁ
କାହିଁକି ପଡ଼ିଲା ଏ ବଜ୍ରପାତ ?
ଦୂତେକ କହିଲା ଅନୁଶାଲ୍ୱ ଆସି
ଖୋଜୁଛି ରଣରେ କୃଷ୍ଣଙ୍କୁ ଏକା,
କହୁଛି ଆତୁର ମାଗ ପକାଇବ
ଅକସ୍ମାତ୍ ଯେବେ ପାଇବ ଦେଖା ।
ଧାଇଁଲେ ପାଣ୍ଡବ ସେନାବଳ ଧରି
ସକଳେ ଆସିଲେ ତା ପାଖ୍ୟ ହାରି,
ହତ-ଆଶା ହୋଇ ଯୁଧିଷ୍ଠିରଙ୍କ ପାଶେ
ହାତଯୋଡ଼ି କରି କଲେ ଗୁହାରି ।
ଶ୍ରୀକୃଷ୍ଣ ପେଶିଲେ ପୁଅ ପ୍ରଦ୍ୟୁମ୍ନଙ୍କୁ
ସିଏ ବି ସମରେ ପାରିଲା ନାହିଁ,
କୃଷ୍ଣ ତାଙ୍କୁ ଦେଖି କହିଲେ ରାଗରେ
ସମରେ ହାରିଲୁ ମୋ ପୁଅ ହୋଇ !
କୃଷ୍ଣ ନିଜେ ଗଲେ ସିଏ ବି ହାରିଲେ
ଫେରିଆସି ଲାଜେ ଅଛନ୍ତି ବସି,
ବ୍ୟାସ ସେଠି ଥିଲେ କୃଷ୍ଣଙ୍କୁ କହିଲେ
ଗର୍ଗ ଅଭିଶାପ ଫଳିଲା ଆସି ।

କର୍ଣ୍ଣସୁତ ବୃଷ- କେତୁ ଛୁଡ଼ାଦେହାଇ
ହାତ ଯୋଡ଼ିକରି କହିଲା ଆସି,
ମୋତେ ଆଜ୍ଞା ଦେଉ ବାନ୍ଧିଆଣି ଦେବ
ତାର ସେନାବଳ ସମସ୍ତ ନାଶି ।
ଅନୁଶାଲ୍ୱ ମନୁ ଦୂଆଇଲେ ମାୟା
ଶ୍ରୀକୃଷ୍ଣଙ୍କଠାରେ ହେଲା ଭକତ,
ବୃଷକେତୁ ପାଶେ ପଶିଲା ଶରଣ
କୃଷ୍ଣ ଦରଶନ କଲା ତୁରିତ ।



# ଯୁବନାଶ୍ୱପୁରରୁ ଯଜ୍ଞାଶ୍ୱ ଆନୟନ

ଭୀମ ବୃଷକେତୁ          ପୁଣି ମେଘବର୍ଣ୍ଣ
ସଜବାଜ ହୋଇ ଅଶ୍ୱର ପାଇଁ,
ରଥ ଗଜ ସେନା          ପଦାତି ସହିତ
ଯୁବନାଶ୍ୱ ରାଜ୍ୟେ ପଶିଲେ ଯାଇଁ ।
ରାଜ୍ୟ ନୁହେ ସେ ତ          କୁସୁମ କାନନ
କୁସୁମ ଦୋଳରେ ଖେଳୁଛି ଦୋଳି,
ପବନ ହିଲ୍ଲୋଳେ          ଗଛରେ ଲତାରେ
ସୁମନ-ସୌରଭ ହୋଇଛି ବୋଳି ।
ଶୁଆ, କାକତୁଆ          ଆଉ କେତେ ଜାତି
ପକ୍ଷୀ ଅନୁକରି ମାନବ-ସ୍ୱର,
ଗାଆନ୍ତି ମଧୁରେ          ମିଳିତ ସଙ୍ଗୀତ
ସପ୍ତସ୍ୱରରେ ମଧୁରତର ।
ନଦୀ ବକ୍ଷେ ବକ୍ଷେ          ସ୍ୱଚ୍ଛ ନୀଳ ବେଣୀ
ତହିଁରେ ଝଲୁଛି ରବିର କର,
ସରସୀ ସଲିଳେ          କୁମୁଦ କହ୍ଲାର
ଶତ ଶତଦଳେ ବାସ ଛୁଟିର ।
ରାଜ୍ୟ ସୁରକ୍ଷିତ          ଆହୁରି ସୁଭିକ୍ଷ
ଧନ ଧାନ୍ୟେ ପୂର୍ଣ୍ଣ ଲକ୍ଷ୍ମୀବସନ୍ତ,
ଘରେ ଘରେ ସଦା          ତାଙ୍କର ଚରଣ
ଅଧିଷ୍ଠାନ କରନ୍ତି ଘରଣୀ ।

ରଜା ଯୁବନାଶ୍ୱ ତନୟ ସୁବେଗ
ଦୁହେଁ ଧନୁର୍ଦ୍ଧର ଯୁଦ୍ଧ-ନିପୁଣ,
ବଇରୀ ଦେଖିଲେ ଗୁଣକୁ ଫୁଲାଇ
ଧନୁରେ ଚଢ଼ାନ୍ତି ତାଙ୍କର ଗୁଣ ।
ରାଜ୍ୟ ସୁସଂଯତ ପ୍ରଜାଏ ସୁଦକ୍ଷ
କାହାର ମନରେ ନ ଥାଏ ଡର,
ତାଙ୍କ ତେଜଃ ଶୁଣି ଭୟେ ଥରହର
ସାହସରେ ପଶି ପାରେନା ପର ।
ପାଣ୍ଡବ ସଇନ ପଶିଲେ ରାଜ୍ୟରେ
ରଜାଙ୍କୁ କହିଲେ ପ୍ରଜାଏ ଯାଇଁ,
ପିତା ପୁତ୍ର ଦୁହେଁ ଧରି ଧନୁଶର
ସମର କରିବେ ଆସିଲେ ଧାଇଁ ।
ମେଘବର୍ଣ୍ଣ ତାର ଆସୁରୀ ମାୟାରେ
ହରିଆଣି ଅଶ୍ୱ ରଖିଲା ଧରି,
ସେନା ସେନାପତି ସମର କଠିଣ
ଥକିଗଲେ କେତେ ପଡ଼ିଲେ ମରି ।
ଯୁବନାଶ୍ୱ ସଙ୍ଗେ ବୃଷକେତୁ ରଣ
କଥାରେ କେ କହିପାରିବ ନାହିଁ,
କର ତରତର ଶର କ୍ଷିପ୍ରତର
ପାଖରେ ରହି ବ ହେଉନ ଗୃହି ।
ସୁବେଗ ପାବନ ସମର ଖ୍ୟାପଣ
ଗଦାରୁ ଗଦାରୁ ବାହାରେ ନିଆଁ,
ତାହାର ଧାସରେ ପବନ ତାଲୁଛି
ପାଖରେ କେ ହୋଇପାରୁନି ଠିଆ ।
ବୃଷକେତୁ ଶରେ ଯୁବନାଶ୍ୱ ମୂର୍ଚ୍ଛା
ରଥର ଉପରେ ପଡ଼ୁଛି ଢଳି,
ଶରଜାଲେ ଘେରି ଅଛି ଚଉପାଶ
ସାରଥି ରଥକୁ ପାରୁନି ଚାଳି ।

ବୃଷକେତୁ ଯୁବ- ନାଶ୍ୱ ରଣେ ମୁଗ୍ଧ
ଶ୍ରୀକୃଷ୍ଣଙ୍କୁ ସ୍ମର କଲ ଜଣାଣ,
ଜୟ ଜଗବନ୍ଧୁ ଜଗତେ କାରଣ
ରଖ ଯୁବନାଶ୍ୱ ରଜା ପରାଣ ।
ଶ୍ରୀକୃଷ୍ଣ ଶୁଣିଲେ ବୃଷକେତୁ ସ୍ତବ
ଯୁବନାଶ୍ୱ ରଥେ ବସିଲ ଉଠି,
କର୍ଣ୍ଣସୁତ ତତ୍ତ ହୋଇଲା ଭକତ
ପଶୁଚଲା ସେହି ରଥରେ ଲୋଟି ।
"କଏ ସେ ଆପଣେ ଦିଅ ପରିଚୟ
ଯୁବନାଶ୍ୱ ଆଜ ଯାଇଛୁ ହାରି,
ଆଜଯାଏ ମାନ ନ ଥିଲ ସେ ହାର
ନ ଥିଲ ଶରଣ ଲୋଡ଼ କାହାର ।"
ବୃଷକେତୁ ଦେଲ ସବୁ ପରିଚୟ
ରଜା ଆନନ୍ଦରେ କଲ ବରଣ,
ଅଶ୍ୱ ସମରପି ଭୀମଙ୍କ ହାତରେ
ବନ୍ଦିଲ ଭକ୍ତିରେ ତାଙ୍କ ଚରଣ ।
ଅଶ୍ୱ ନେଇଗଲେ ହସ୍ତିନା ନଗର
ଅପୂର୍ବ ତୁରଗ ପୁଣି ନକ୍ଷତ୍ର,
ସର୍ବ ସୁଲକ୍ଷଣ କେଶ ପୁଚ୍ଛ ସ୍ୱର୍ଣ୍ଣ
ଶରୀର ଚକ୍‌କଣ ଶ୍ୟାମଳ ବର୍ଣ୍ଣ ।

———

# ନୀଳଧ୍ୱଜ ରାଜ୍ୟେ ଯଜ୍ଞାଶ୍ୱ

ଅଶ୍ୱର ଭାଲରେ ଜୟପତ୍ର ବାନ୍ଧି
ଛାଡ଼ିଦେଲେ ଅଶ୍ୱ ଚଳିଲା ଧାଇଁ,
ନୀଳଧ୍ୱଜ ରଜା ମାହେଷ୍ମତୀପୁର
ଧାର୍ମିକ ରାଜ୍ୟରେ ପଶିଲା ଯାଇ ।
ନୀଳଧ୍ୱଜ-ରାଣୀ ଜନା ତାର ନାମ
ରୂପରେ ପର୍ବତ-କୁମାରୀ ସମ,
ପତି ପୁତ୍ର ତାର ସମରେ ଜିଣନ୍ତୁ
ସବୁବେଳେ ତାର ଏପନ ମନ ।
ବଡ଼ପୁଅ ତାର ଅଟଇ ପ୍ରବୀର
ଝରଙ୍କର ବୀର ବାନ୍ଧିଲା ଅଶ୍ୱ,
ସମର କରି ସେ ପାଣ୍ଡବ ସେନାରୁ
ବହୁତ ସୈନ୍ୟଙ୍କୁ କରିଲା ଧ୍ୱଂସ ।
ଅର୍ଜୁନ ବିପକ୍ଷେ ସମର କରି ସେ
ପଡ଼ିଲା ସମରେ ପ୍ରାଣ ହରାଇ,
ନୀଳଧ୍ୱଜ ରଜା ଶରଣ ପଶିଲା
ଅର୍ଜୁନଙ୍କ ପାଖେ ତୁରଗ ଦେଇ ।
କିନ୍ତୁ ତାର ପତ୍ନୀ , ସହିଲା ନାହିଁ ତା
କହିଲା ପତିଙ୍କୁ ସମର ପାଇଁ,
ନୀଳଧ୍ୱଜ ଯେତେ ବୁଝାଇ କହିଲେ
ତେବେ ବି ରମଣୀ ମାନିଲା ନାହିଁ ।

ଭାଇ ପାଶେ ଗଲା    ତାକୁ ବି କହିଲା
ଭାଇ ଶୁଣି ବଡ଼ ଭର୍ତ୍ସନା କଲା,
ଜନାର ସଂକଳ୍ପ    ଝାସିବ ଗଙ୍ଗାରେ
ଭାଇ ପାଖୁଁ ଆସି ଗଙ୍ଗାକୁ ଗଲା ।
ଗଙ୍ଗାଙ୍କୁ ନିବେଦି    କହିଲା ସୁନ୍ଦରୀ,
"ଶୁଣ ଗୋ ଜନନି ! ମୋହର କଥା,
ତ୍ୟଜିବି ଜୀବନ    ତୋହର ସଲିଳେ
ଅର୍ଜୁନଠାରୁ ମୁଁ ପାଇଲି ବ୍ୟଥା ।
କର ଗୋ ଜନନି !    ତାର ପ୍ରତିକାର"
ଏତିକି କହି ତ୍ୟଜିଲା ପ୍ରାଣ,
ଗଙ୍ଗାଙ୍କ ମନରେ    ପଡ଼ିଗଲେ ଭୀଷ୍ମ
ଅର୍ଜୁନ ତାଙ୍କର ମୃତ୍ୟୁ କାରଣ ।
ମନରେ ତାଙ୍କର    ବଢ଼ିଗଲା ରାଗ
କହିଲେ, "ଅର୍ଜୁନ ! ଶ୍ରୀକୃଷ୍ଣ ପାଇଁ,
କଲୁ ତୁ ଗରବ    ସମରେ ତୁ ପଶି
ଗୁରୁ-ଗଉରବ ମାନିଲୁ ନାହିଁ ।
ଭୀଷ୍ମଙ୍କୁ ମାଇଲୁ    ପ୍ରଖର ନାଶିଲୁ
ପରୋକ୍ଷରେ କଲୁ ରମଣୀ ନାଶ,
ତୋତେ ଅଭିଶାପ    ଦେଉଛି ଅର୍ଜୁନ !
ପୁଅହାତେ ନାଶ ହେବୁ ଅବଶ୍ୟ ।"
ଶ୍ରୀକୃଷ୍ଣ ଏ କଥା    ତେଣେ ହସ୍ତିନାରେ
ଜାଣିଲେ ସେଇନା କହିଲେ ଧର୍ମେ,
"ଗଙ୍ଗା ଅଭିଶାପ    ଦେଲେ ଅର୍ଜୁନଙ୍କୁ
ଶାପ ଫଳିଯିବ ସମୟକ୍ରମେ ।
ସେଥିପାଇଁ କିଛି    କରନା ଶୋଚନା
ଶୁଭ କରମରେ ଆପଦ ନାହିଁ,
ଯଜ୍ଞ ହେବ ପୂର୍ଣ୍ଣ    ଦାନବ୍ରତ ଏଠି
ଜଗି ବସିଛି ମୁଁ କଅଣ ପାଇଁ ?

ଆଠ ପୁଅ ଗଙ୍ଗା          ଜନମ କରିଲ
ପନିକରେ କାଟି ମାଇଲ ସାତ,
ଅଷ୍ଟମ ପୁଅକୁ          କାଟି ମାରୁଥିଲ
ଶାନ୍ତନୁ ଧରିଲେ ରାଗରେ ହାତ ।
କହିଲେ ଗାଙ୍ଗୀ ତୁ          କ କରମ କଲୁ
ଏହିତଙ୍କ ଗଙ୍ଗା ଆସିଲ ଗୁଡ଼ି,
ଏଇନା କୋଡ଼ିଟି          ଯୁଦ୍ଧ କରୁ କରୁ
ଭୀଷ୍ମ ମରିଗଲେ ରଣ ତ ଘୋର ।"

— —

# ଭଦ୍ରାବତୀପୁରେ କୃଷ୍ଣାର୍ଜୁନ

ଚଳିଚଳି ଅଶ୍ୱ ଭଦ୍ରାବତୀପୁରେ
ଲଲାଟେ ବିଜୟ ପଟିକା ହଲେ,
ହର ଉରଗ କି ଫଣା ଟେକି କରି
ପବନକୁ ତୋଳି ଉତ୍‌ଫୁଲ୍ଲେ ଖେଳେ ।
ଭଦ୍ରାବତୀପୁର ଗିରିସଂରକ୍ଷିତ
ଶିଖରେ ଶିଖରେ ଗିରିମଲ୍ଲିକା,
ଫୁଟିଛି ବାସୁଛି ଚକ୍ଷୁ ନାସା ମୋହି
ସରଟର ପାରିଜାତ ପରିକା ।
ମଝିରେ ମଝିରେ ଗିରି ନିର୍ଝରିଣୀ
ଝର ଝର କରି ଗାଉଛି ଗୀତ,
ଝର ମାର ଛୁଇଁ ଶୀକର ମରୁତ
ସଞ୍ଚରୁଅଛି ମୃଦୁଳ ଶୀତ ।
ଶସ୍ୟକ୍ଷେତସବୁ କନକଗଡ଼ାଣିଆ
ଢାଲୁରେ ଢାଲୁରେ ଶ୍ୟାମଳ ଶସ୍ୟ,
କାଏ କଞ୍ଚା ଅଛି କାଏ ବା ପାଚିଛି
ମାନସ-ନୟନ କରୁଛି ବଶ ।
ଗଛି ଲତାସବୁ ସବୁଜ ସତେଜ
ଇନ୍ଦ୍ରସଂରକ୍ଷିତ ଖାଣ୍ଡବ ଢବା,
ଅଳକା ନଗରୀ କୁବେର ରାଜ୍ୟ କି
ଚିର ପୁଷ୍ପମୟ ଚୈତ୍ରରଥ ବା ।

ସୁବର୍ଣ୍ଣ ଲଙ୍କାର ଅଶୋକ ବନ କି
ସବୁ ରମଣୀଏ ସୀତା ସରମା,
ସବୁ ସୁଖ ଦୁଃଖ ସେଇଠେଇ ରୁନ୍ଧି
କିଏ ସେ ଗଢ଼ିଛି ଅଭିମନ୍ୟ।
ଧନରେ କୁବେର ଜ୍ଞାନେ ବୃହସ୍ପତି
ହଂସଧ୍ୱଜ ବୋଲି ସେ ଦେଶ ରଜା,
ବିଷ୍ଣୁ ଭକତ ସେ ରାମରାଜ୍ୟ ଗଢ଼ି
ବଇଷ୍ଣବ ପଣ ପାଳଇ ପ୍ରଜା।
ନାହିଁ ହିଂସା ଦ୍ୱେଷ ନାହିଁ ପ୍ରଜା ପୀଡ଼ା
ଧନୁ ଧରେ ଖାଲି ରାଜ୍ୟର ପାଇଁ,
ତାର ରାଜନୀତି ତା ଧରମ ନୀତି
ଯେପରି ସେ ଧନୁ ଧରନ୍ତା ନାହିଁ।
ରାଜଧର୍ମ ଧନୁ- ବେଦ ଶିକ୍ଷାଦୀକ୍ଷା
ତେଣୁ ସେ ଶିଖିଛି ତିନିଟି ଧନୁ,
ସେ କାଳୁ ଅଭ୍ୟାସ କରି ସାରିଛି ସେ
ଏଇନାଏ ଗ୍ରାଡ଼ପାରୁନି ଧନୁ।
ମୃଗୟା ବିନୋଦ ଯୁଦ୍ଧ ପରିଗ୍ରହ
କେତେବେଳେ ତାର ନ ଥାଏ ଦେଶେ,
ତୁଳସୀର ମାଳା ଚିତା ଚଇତନ
କରି ସେ ରହଇ ବୈଷ୍ଣବ ବେଶେ।
ରାଣୀ ବି ମିଳିଛି ତାର ମନ ଜାଣି
ବିଷ୍ଣୁ ପରାୟଣା ବିଷ୍ଣୁରେ ମତି,
ହରିସେବାରେ ସେ ରତ ରହିଥାଏ
ବିଷ୍ଣୁ ପ୍ରତିନିଧି ମଣଇ ପତି।
ଦୁଇଟି ତନୟ ସୁଧନ୍ୱା, ସୁରଥ
ଦୁହେଁ ମହାରଥୀ ଦୁହେଁ ଧାନୁକୀ,
ଯୁବା ବୟସରେ ଦେବତା ଭକତି
କୋଉଠି ଏମିତି ଦେଖାଯାଏ କି ?

ଶ୍ରୀକୃଷ୍ଣ ରହନ୍ତୁ ଯହିଁ ଯେତେବେଳେ
ଭଦ୍ରାବତୀପୁରେ ତାଙ୍କର ମନ,
ରଜା ରାଜପୁତ୍ର ସମସ୍ତେ ଭକତ
ତାଙ୍କୁ ତ ଛାଡ଼ିବା ମହା ଗହନ ।
ସମରେ ନିପୁଣ ବିକ୍ରମେ ଅତୁଳ
ଶତ୍ରୁ ବୋଲିକରି ଜାଣନ୍ତି ନାହିଁ,
ବଇଷ୍ଣବର ବା ଶତ୍ରୁ କିଏ ହେବ
ଭକତ ପଥକୁ ବସନ୍ତି ଚାହିଁ ।
ଯଜ୍ଞାଶ୍ୱ ପଶିଲା ତାଙ୍କର ରାଜ୍ୟରେ
ଦୂତ ଜଣାଇଲା ରଜାଙ୍କୁ ଯାଇ,
ଅଶ୍ୱର ଭାଲରେ ଅଛି ଜୟପତ୍ର
ଦୂରରୁ ଦେଖିଛି ଏତିକ ଚାହିଁ ।
ରଜା ତ ଜାଣିଲେ ଯୁଦ୍ଧ ଡାକରା ଏ
କେଉଁ ଦେଶ ରଜା କାହାର ବାଜି,
ବୈଷ୍ଣବ ରାଜ୍ୟରେ କାହିଁକି ପଶିଲା
ମୋ ଧରମ ହାନି ହେଲା ତ ଆଜି ।
ଆହେ ନରୋତ୍ତମ ଦ୍ୱାରକା ଈଶ୍ୱର
ତୁମର ଧରମ ରଖ ହେ ତୁମେ,
ତୁମ ଭକତକୁ ଅଭକତ ବୋଲି
ଯେପରି କେ କହି ନ ହୁଏ ଭ୍ରମେ ।
ନଗରପାଳକୁ ଡାକ ବରଗିଲା
ଦେଖି ଆସ ଯାଇ କାହାର ଅଶ୍ୱ,
କହ ସକଳଙ୍କୁ ପ୍ରସ୍ତୁତ ରହିବେ
ଆଜି ଯେ ସମର ହେବ ଅବଶ୍ୟ ।
ଦୂତ ଦେଖି ଆସି ଜଣାଇଲା ଖରେ
ଯୁଧିଷ୍ଠିର ରଜା କରନ୍ତି ଯାଗ,
ଜୟ ପତ୍ରକାରେ ଲେଖା ହୋଇଅଛି
ଯେ ଘୋଡ଼ା ଧରିବ ମରିବ ଆଗ ।

ଘୋଡ଼ା ପଛେ ପଛେ ଅଛନ୍ତି ଅର୍ଜୁନ
ବୀର ବେଶ ପିନ୍ଧି କାର୍ମୁକ ଧରି,
ଆଜଯାଏ ବୋଲି ଦେଖି ମୁଁ ନ ଥିଲି
ଏତେ ମନୋହର ରୂପ ମାଧୁରୀ ।
ନୀଳ ଗଗନରେ ଇନ୍ଦ୍ରଧନୁ ସମ
ହାତରେ ଶୋଭୁଛି ବିଶାଳ ଧନୁ,
ସେ ଶୋଭାସମ୍ପଦ ଧରଣୀର ନୁହେ
ସ୍ୱର୍ଗର ସେ ଭୁଲି ପାରୁନି ମନୁ ।
ହଂସଧ୍ୱଜ ଶୁଣି ଚକିତ ହୋଇଲେ
ଦେଖି କୃଷ୍ଣଙ୍କର ଶୁଭାଗମନ,
ସେ ଏକା କାହିଁକି କୋଉଠି ରହିଲେ
ମୋ ଇଷ୍ଟ ଦେବତା ଶ୍ରୀ ନାରାୟଣ ।
ଆଜି ମୁଁ ସମରେ ଓଟାରି ଆଣିବି
ନର ନାରାୟଣ ହେବେ ଅଲଗା,
ମୋହଠାରୁ ବଳି କିଏ ଧରଣୀରେ
ଅଛି ଏଡ଼େ ପାପୀ ଏଡ଼େ ଅଭାଗା ?
ସେନାପତିଙ୍କୁ ସେ କହିଲେ ଗମ୍ଭୀରେ
ଯାଅ ବେଗେ ଏବେ ଘୋଡ଼ାକୁ ବାନ୍ଧ,
ବିଷ୍ଣୁ ଦରଶନ ଇଚ୍ଛା ଯଦି ଅଛି
ତାଙ୍କର ଚରଣେ ଭକ୍ତିରେ କାନ୍ଦ ।
ଅର୍ଜୁନ ଆସିଲେ କୃଷ୍ଣ ଆସିଲେ ବି
ସମରେ ଉଜାଡ଼ି ମିଶାଇ ଦିଅ,
ନର ନାରାୟଣ ଏକାଠେଇ କରି
ସ୍ୱରଗ ସଂପଦ ଅରଜି ନିଅ ।
ରଜାକୁ ରାଜ୍ୟକୁ କରିଦିଅ ମୁକ୍ତ
ଏ ରାଜ୍ୟର ଭାଗ୍ୟ ଯାଉ ବଦଳି,
ନ ହେଲେ ଆମର ପାପ ଯେତେ ଅଛି
ଯାଉ ହେ ତାଙ୍କର ବାଣ୍ଟିରେ ଜଳି ।

ଆମର ଭକତ ଯେବେ ନିର୍ମଳ
ଆସିବେ ପାଖକୁ ଯିବେନି ବଳ,
ଭଲରେ ସେ ଯେବେ ନ ଆସିଲେ ଆଜି
ସମସ୍ତେ ମିଶିଣ କରିବା କଳି ।
ଯାଅ ସେନାପତି ସାଜ ମୋର ସେନା
ଯୁଦ୍ଧକ୍ଷେତ୍ର ହେବ ଶ୍ରୀବୃନ୍ଦାବନ,
ନରରୁଣ୍ଡଧାରୀ ଗୋରୁଏ ଚରିବେ
ଯୁଦ୍ଧ-ବାଜା ହେବ ମୁରଲୀ ସ୍ୱନ ।
ଯୁଦ୍ଧ ଆୟୋଜନ ଲାଗିଲା ନଗରେ
ଶର ଆଉ ଖଣ୍ଡା ହୋଇଲା ଘଷା,
କୁହାକୋହି ହେଲେ ସକଳେ ଉତ୍ସାହେ
ସମରଭୂଇଁକୁ ରକତେ ଭସା ।
ହେବ ରେ ଯେ ଭକ୍ତ ରକତର ସୁଅ
ହେବ ସେ ରକତ ଜବାର ରାଶି,
ସମର ବିଜୟୀ ଗଳାରେ ବକ୍ଷରେ
ଜୟମାଲ୍ୟ ସମ ଖେଳିବ ଭାସି ।
ସେ ଲହୁର ସୁଅ ହେବ ରେ ଯମୁନା
ଜଳ ଅମ୍ବରରେ ହେବାର ଭଳି,
ରଜାପ୍ରଜା ମିଶି ଶର ପିଚକାରି
ମାରିବାରେ ସବୁ ଖେଳିବା ହୋରି ।
ବସନ ଭୂଷଣ ହେବ ରେ ରକତ
ଅମ୍ବର ରଙ୍ଗିମା ହୋଇବା ବୋଲି,
ମରଣ ଲଭିଣ ସ୍ୱରଗେ ଚଳିବା
ପବନ ହିଲ୍ଲୋଳେ ଖେଳିବା ଦୋଳି ।
ଗଗନ ଭୁବନ ଏକ କରିଦେବା
ଜୀବନ-ସୂତାରେ ଦେବା ରେ ଯୋଡ଼ି,
ବ୍ୟୋମଯାନ ଚଢ଼ି ଯିବା ସ୍ୱରଗକୁ
ସଂସାର ଜଞ୍ଜାଳ ଦେଇଣ ପୋଡ଼ି ।

ଆତୁର କହିଲେ ସକଳେ ସକାଳେ
ସମର ସାଜରେ ମିଳିବ ଆସି,
ଆମର ପ୍ରତିଜ୍ଞା ଆମର କାମନା
ଦେଖିବ ଯେପରି ହେବନି ବାସି ।
ଯାଅ ସବୁ ଚଳି ସଜବାଜ ହୁଅ
କଣ୍ଟେବଲ କର ନାହିଁ ଉତ୍ତର,
ଆଜି ଏ ଜୀବନ କରିବାରେ ଧନ୍ୟ
ଆଗରେ ଅମୃତ ଅଛି ପ୍ରଚୁର ।
ଉତ୍ତର ହୋଇଲେ ତତଲ ତେଲରେ
ପକାଇବ ଧରି ଗୁଣ୍ଡିବ ନାହିଁ,
ସବୁ ସଜହୋଇ ବାହାର ଆସିବ
ମୋର ଏ କଠୋରପଣକୁ ଚାହିଁ ।
ସେନା ସେନାପତି ପଞ୍ଚାଶ୍ୱ ବାନ୍ଧିଲେ
ରଖିଲେ ଆକଟି କରି ଯତନ,
ପହଞ୍ଚିଲେ ଯାଇଁ ବୀର ଅରଜୁନ
ସଙ୍ଗରେ ତାଙ୍କର ବହୁତ ସୈନ୍ୟ ।
ରଜାଙ୍କ ଆଜ୍ଞାରେ ଠାଆ ଠାଆ ହୋଇ
ଚୁଲିରେ ଚୁଲିରେ ଫୁଟିଲି ତେଲ,
ରଜାଙ୍କ ପ୍ରତିଜ୍ଞା ଆତୁର ଆଦେଶ
କିଏ ସେ ମଣିବ ତାହାକୁ ଖେଳ ?
ଶୁଭିଲା ଚହଳ ଅର୍ଜୁନ ଆସିଲେ
ଉପାୟ ଶରଣ କି ଅବା ରଣ,
ଏହାଛଡ଼ା ଆଉ ଅନ୍ୟ ପନ୍ଥା ନାହିଁ
ନ ହେଲେ ହେବନି କୃଷ୍ଣ ଦର୍ଶନ ।
କୃଷ୍ଣ ତ ନାହାନ୍ତି ସମର ନଷ୍ଟପୁ
ସେନାପତି ଆଜ ସୁଧନ୍ୱା ପୁଅ,
ଯେତେ ଭକ୍ତି ଶକ୍ତି ଅଛିଟା ଦେହରେ
ଆତୁର ମନରେ ଦେଖାଉ କହ ।

ଦେଖାଇବ କୃଷ୍ଣ ଆଜ ସେ ସମରେ
ଦୃଢ଼ କରି କହି କରୁ ସେ ପଣ,
ନ ହେଲେ ମୋ ତପ, ଜପ ଆଦି ସବୁ
ହେବ ଅକାରଣ ଯିବ ଜୀବନ ।
ବେଳ ହୋଇଗଲା ବାଜଣା ବାଜିଲା
ଆଉ ସବୁ ଆସି ହେଲେ ହାଜର,
କିନ୍ତୁ ସୁଧନ୍ୱା ତ ଆସି ପାରିଲାନି
ରମଣୀ ତାହାର କଲା ଜଗର ।
ପୁତ୍ର ଦାନ ଦେଇ ଯାଅ ସମରକୁ
ନ ହେଲେ ତୁମକୁ ଛାଡ଼ିବ ନାହିଁ,
ଆଜ ଋତୁ-ସ୍ନାନ ସାରି ମୁଁ ବସିଛି
ବଚ୍ଚ ର କଟିବ ତାକୁ ହିଁ ଚାହିଁ ।
ରାଜାଙ୍କ ପ୍ରତିଜ୍ଞା ଭଙ୍ଗିଲେ ନାହିଁ ସେ
ସୁଧନ୍ୱା ପଡ଼ିଲା ତତଲା ତେଲେ,
କୃଷ୍ଣ କୃଷ୍ଣ ଗାଇ ଘୋଷିଲା ତୁଣ୍ଡରେ
ଅଟକ ନାହିଁ ସେ ଟିକିଏ ହେଲେ ।
ବୁଡ଼ିଲା ନାହିଁ ସେ ତତଲା ତେଲରେ
କୃଷ୍ଣଙ୍କ ଭକତ ସେ ମଲା ନାହିଁ,
ସକଳେ ଦେଖିଲେ ରାଜାଙ୍କୁ କହିଲେ
ବାପା ମାଆ ଭାର୍ଯ୍ୟା ଆସିଲେ ଧାଇଁ ।
କୃଷ୍ଣଙ୍କ ମହିମା ଘୋଷିଲେ ସକଳେ
ମନରେ ବଢ଼ିଲା ଦର୍ଶନ ଆଶା,
ସୁଧନ୍ୱା ବଞ୍ଚିଲା ଟପଥ ତଇଲୁଁ
ବଢ଼ିଗଲା ତାର ବେଶୀ ଭରସା ।
ସେନାପତି ହୋଇ ଚଳିଲା ସମରେ
ଦେଖିଲା ଶ୍ରୀକୃଷ୍ଣ ନାହାନ୍ତି ରଥେ,
ଆଉ ଜଣେ କିଏ ହୋଇଛି ସାରଥି
ବାହୁଅଛି ରଥ ବସିଣ ପାଖେ ।

ପାଞ୍ଚିଲା ମନରେ ଚହିଲେ ମାଧବ
ସାରଥିଙ୍କୁ ଶର ସନ୍ଧାନ କରି,
ଅର୍ଜୁନ ପଡ଼ିବେ ମହା ବିଇରାଣେ
ଆଣନ୍ତୁ କୃଷ୍ଣଙ୍କୁ ସ୍ମରଣ କରି ।
ମାଇଲା ସାରଥି ଅର୍ଜୁନ ଏକାକୀ
ସୁଧନ୍ୱା ସମର ପ୍ରଚଣ୍ଡତର,
ଯୁଦ୍ଧ କରି କରି ଥକଲେ ଅର୍ଜୁନ
ଶେଷରେ ହୋଇଲେ ବଡ଼ କାତର ।
ସ୍ମରିଲେ ସେଇଠି ଶ୍ରୀକୃଷ୍ଣଙ୍କୁ ବସି
ଶ୍ରୀକୃଷ୍ଣ ଆସିଲେ ବସିଲେ ପାଶେ,
କେଉଁ ବାଟେ କୃଷ୍ଣ ଆସିଲେ ସେଠିକି
ଜଳରେ ସ୍ଥଳରେ କବା ଆକାଶେ ।
ସମର ଭିତରେ ନର ନାରାୟଣ
ଯୋଗ୍ୟ ସାରଥିଙ୍କୁ ନପୁଣ ରଥୀ,
କଏ ବା ଜଣିବ ସମରେ ତାହାଙ୍କୁ
ସୁଧନ୍ୱା ତ ଗ୍ଲର ବାଳକମତି ।
ସୁଧନ୍ୱା କହନ୍ତି ସେନାଏ ପରାସ୍ତ
ରଜାଙ୍କ ମନରେ ପରମ ଦୁଃଖ,
ସୁରଥ ଆସିଲା ବନପ୍ତେ କହିଲା,
"ଦେଖାଇବି ପିତଃ ଶ୍ରୀକୃଷ୍ଣ ମୁଖ" ।
ହଂସଧ୍ୱଜ ଶୁଣି ଭୁଲିଗଲେ ଶୋକ
ପୁଅକୁ କହିଲେ ହରଷେ କାନ୍ଦ,
ସବୁ ଆଶା ମୋର କରିବୁ ରେ ପୂର୍ଣ୍ଣ
ଯାହା ପାଇଁ ଘୋଡ଼ା ରଖିଲି ବାନ୍ଧ ।
ଚଳିଲା କୁମର କଲା ଘୋର ରଣ
ବସିଲା ରଥକୁ ଫିଙ୍ଗିବ ବୋଲି,
ଶ୍ରୀକୃଷ୍ଣ ଧରିଲେ ବିଶ୍ୱମ୍ଭର ରୂପ
ପାରିଲା ନାହିଁ ସେ ରଥକୁ ତୋଳି ।

ଅର୍ଜୁନଙ୍କ ଶରେ ଛିଣ୍ଡିଗଲା ମୁଣ୍ଡ
ଖବର ପାଇଲା ରଜା ନଅରେ,
ଗଣ୍ଡେ ହାତ ଦେଇ କାନ୍ଦିଲା ବେଳେ ବି
କୃଷ୍ଣ ନାମଟିକୁ ଭୁଣ୍ଡରେ ଧରେ ।
ଅଶ୍ୱ ସହ ଆସି ଭେଟିଲା ରଥରେ
ନର ନାରାୟଣ ଯୁଗଳ ମୂର୍ତ୍ତି,
କୃତାର୍ଥ ମଣିଲା ସ୍ତବ ସ୍ତୁତି କଲା
ସ୍ଥିର ହେଲା ତାର ବିକଳ ମତି ।
ହଂସଧ୍ୱଜ ଭକ୍ତ ଯୁଧିଷ୍ଠିର ଭକ୍ତ
ଅର୍ଜୁନ ତାହାଙ୍କୁ ବୋଲିଲେ ପର,
ଡାକୁ ନ ଡାକୁଣୁ ସମର କ୍ଷେତ୍ରରେ
କେହି ନ ଦେଖୁଣୁ ହେଲେ ସେ ଧରା ।

———

# ଅର୍ଜୁନ ନୟନେ ଶ୍ରୀକୃଷ୍ଣ

ମଣିପୁର ରାଜ୍ୟ          ପର୍ବତସଙ୍କୁଳ
ଗିରିରେ ଗିଶରେ ମର୍କତ ଆଭା,
ଗିରି ଶିରେ ଶିରେ          କନକ ମୁକୁଟ
ସରଜନା କରେ ଆଦିତ୍ୟ ପ୍ରଭା ।
ମଣିପୁର ରୂପ          ମଣିପୁର ବଣ୍ଣୀ
ମଣିର ସଦୃଶ ସଂସାରେ ସାର,
କିନ୍ନରୀ ଗନ୍ଧର୍ବ          ଅପସରୀମାନେ
ସନ୍ତତ କରନ୍ତି ସେଠି ବିହାର ।
ଚିତ୍ରାଙ୍ଗଦା ସମ          ସ୍ୱରଗ ସୁନ୍ଦରୀ
ଇନ୍ଦ୍ରାଣୀଙ୍କ ପରି ରାଣୀ ଯାହାର,
କେଉଁ ଶିଳ୍ପୀ ଅବା          ସେ ରାଜ୍ୟରେ ନାହିଁ
କେଉଁ ଗୁଣଟିକୁ ବର୍ଣ୍ଣିବ ତାର ?
ବନବାସବେଳେ          ଅର୍ଜୁନ ଏକାକୀ
ଯାଇଥିଲେ ଦିନେ ସେ ରାଜ୍ୟେ ପଶି,
ଚିତ୍ରାଙ୍ଗଦା ରୂପେ          ହୋଇଗଲେ ମୁଗ୍ଧ
ପ୍ରଣୟ କରିଲେ ତା ସଙ୍ଗେ ରସି ।
ଯେଉଁ ଅର୍ଜୁନଙ୍କୁ          ସ୍ୱରଗ ଅପ୍ସରୀ
ଉର୍ବଶୀର ରୂପ ରୁଚିଲା ନାହିଁ,
ସେହି ଅରଜୁନ          ବ୍ରହ୍ମଚାରୀ ହୋଇ
ଭଜିଲେ ଏ ନାରୀ ରୂପକୁ କାହିଁ ।

ଏଥିରୁ କଳାବ ମଣିପୁର ଶୋଭା
ପ୍ରକୃତି ତାହାକୁ କରନ୍ତି ଦାନ,
ମଣିପୁର ସଙ୍ଗେ ଆଉ ଯେତେ ରାଜ୍ୟ
ଶୋଭା ସମ୍ପଦରେ ନୁହେଁ ସମାନ ।
ଚିତ୍ରାଙ୍ଗଦା ଗର୍ଭେ ଜନ୍ମିଲା ତନୟ
ନାଆଁଟି ତାହାର ବଭ୍ରୁବାହନ,
ବାପ ପରି ତେଜ ବାପ ପରି ଗୁଣ
ଅପୂର୍ବ ସଂଯୋଗ ମଣି କାଞ୍ଚନ ।
ତରୁଣ ବୟସ ବିପୁଳ ବୀରତ୍ୱ
ମଣିପୁର ରାଜ୍ୟେ ସେ ଆଜି ରଜା,
କେଶରୀ ଛୁଆ ସେ ପାଣ୍ଡବ ରକତ
ଧରମରେ ରହି ପାଳଇ ପ୍ରଜା ।
ଯଜ୍ଞାଶ୍ୱ ପଶିଲା ସେହି ରାଇଜରେ
ବଭ୍ରୁବାହନ ତା ରଖିଲା ଧରି,
ଅର୍ଜୁନ ଗରଜି କହିଲେ ରାଗରେ
ତାକୁ ତା ମାଆକୁ ଭର୍ତ୍ସନା କରି ।
ବାପ ପୁଅଙ୍କର ହୋଇଲା ସମର
ଅର୍ଜୁନ ଶୋଇଲେ ସେଇଠି ମରି,
ଯେତେବେଳେ ଯାଇଁ ଚେତନା ପଶିଲା
କାନ୍ଦିଲା ବିକଳେ ଚରଣ ଧରି ।
ମାଆ ପୁଅ କାନ୍ଦି ସ୍ମରିଲେ କୃଷ୍ଣଙ୍କୁ
କଷ୍ଟ ତା ଶୁଣିଲେ କେଉଁଠି ଥିଲେ,
ନନ୍ଦିଘୋଷେ ଚଢ଼ି ତରତର ହୋଇ
ମଣିପୁରେ ଆସି ପ୍ରବେଶ ହେଲେ ।
ଗଙ୍ଗା ଅଭିଶାପ ପଡ଼ିଲା ମନରେ
ମନକୁ ମନକୁ ଟିକିଏ ହସି,
ଅଦୃଷ୍ଟର ଲିପି ଦେଖି ପାରିଲେ କି
ତେଣୁ ଅଦୃଷ୍ଟକୁ ଥିଲେ ପ୍ରଶଂସି ।

ଗଙ୍ଗାଙ୍କ ଚରଣ ପଡ଼ିଗଲା ମନେ
ସାତଟା ପୁଅ ତ ମାଇଲ୍‌ ଆପେ,
ସମରେ କେଉଁଠି ଦୃଷ୍ଟ ମତିଗଲେ
ଅର୍ଜୁନେ ଶାପିଲ୍‌ ତାହାର ତାପେ ।
ନିଜ ଦୋଷଟିକେ ବାଛୁଲ୍‌ ନାହିଁ ତା
ଦେଖି ବୋଲି କଥା କହିବ କିଏ ?
ପତିତପାବନୀ ନାଆଁ ଟା ଧାଇଛୁ
କାହାକୁ ଉଦ୍ଧାର କରିବ ସିଏ ?
ଅର୍ଜୁନ ମୋହର ପ୍ରାଣରୁ ଅଧିକ
ମୋହର ଆଗରେ ଯିବ ସେ ମରି,
ତେବେ ମୁଁ କାହିଁକି ମର୍ତ୍ତ୍ୟରେ ଜନମି
ଦୟାନିଧି ନାମ ରହିଛୁ ଧରି ।
ଶାପ ହେଲା ପୂର୍ଣ୍ଣ କରିବ ମୋ କାମ
ପାତାଳପୁରରୁ ଅଣାଇ ମଣି,
ଜୀୟାଇବ ଅର୍ଜୁନ ରଖିବ ଧରମ
ଚିତ୍ରାଙ୍ଗଦା ସଙ୍ଗ କାନ୍ଦିବ ପୁଣି ।
ଅର୍ଜୁନତନୟ ଆଣିଦେଲା ମଣି
ଜୀଇଲେ ଅର୍ଜୁନ ଦେଲେ ଅନାଇଁ,
ଚିତ୍ରାଙ୍ଗଦା, ପୁଅ, ଉଲୁପୀ, ଶ୍ରୀକୃଷ୍ଣ
ସକଳେ ଅଛନ୍ତି ତାଙ୍କୁ ହିଁ ଚାହିଁ ।
ବାପରେ ପୁଅରେ ହେଲେ କୋଳାକୋଳି
ଭାର୍ଯ୍ୟା ଚିତ୍ରାଙ୍ଗଦା ପୁଣି ଉଲୁପୀ,
ସକଳେ ପାଇଲେ ଅର୍ଜୁନଙ୍କୁ ଫେରି
ଶ୍ରୀକୃଷ୍ଣ ଦର୍ଶନେ ହୋଇଲେ ସୁଖୀ ।

———

# ରତ୍ନାବତୀପୁରେ ଶ୍ରୀକୃଷ୍ଣ

ରତ୍ନାବତୀପୁର ରତନେ ଭୂଷିତ
ରତନ ଆକର ଅଳକାପୁରୀ,
ମୟୂରଧ୍ୱଜ ତ ସେ ଦେଶର ରଜା
ମୟୂର ପକ୍ଷ ତ ଧ୍ୱଜାର ଶିଖା ।
ସେ ଦେଶ ଅରଣ୍ୟ ମୟୂରସଙ୍କୁଳ
ରଜା ରଜା ପୁଅ କାର୍ତ୍ତିକ ପରି,
ବଳେ ବଳବାନ ରୂପରେ ସୁନ୍ଦର
ଡରୁଥାନ୍ତି ତାଙ୍କୁ ଦୁର୍ଦ୍ଦାନ୍ତ ଅରି ।
ନବ ଘନାଗମେ ମୟୂର ନର୍ତ୍ତନ
କେକାରବ ଶୁଭେ ବାଦ୍ୟର ସମ,
ହିମାଳୟ କୋଳେ କପିଳାଷ କି ସେ
ହର କରିଛନ୍ତି ସେଠି ଆଶ୍ରମ ।
ପୁଅ ତାମ୍ରଧ୍ୱଜ ତା ଧ୍ୱଜାରେ ହଂସ
ମରାଳର ସମ ତାର ଗଠନ,
ମରାଳଟି ପରି ଉଡ଼ୁଥାଏ ସିଏ
ଦେହରେ ବାଜିଲେ ଧୀର ପବନ ।
ନଦୀ ପୁଷ୍କରିଣୀ ମରାଳମାଳିନୀ
ତରଙ୍ଗେ ତରଙ୍ଗେ ମରାଳ ଗ୍ରୁଇ,
ଶ୍ୱେତ ଶତଦଳ ସୁନୀଳ କୁମୁଦ
ଦେଇଛନ୍ତି ତାଙ୍କ ଶୋଭା ବଢ଼ାଇ ।

ପୁଷ୍କରିଣୀ କୂଳେ ସରିତର ତଟେ
ସୁନ୍ଦର ଶୁକଳ ଦେବ ମନ୍ଦିର,
ଭକ୍ତ ଆରାଧନା ଘଣ୍ଟା ଶଙ୍ଖଧ୍ୱନି
ସକାଳେ ସଞ୍ଜରେ ବାଜେ ଗମ୍ଭୀର ।
ସେହି ରାଜ୍ୟରେ ଯଜ୍ଞାଶ୍ୱ ପଶିଲା
କୃଷ୍ଣ ଅରଜୁନ ଉଭୟ ରଥେ,
ସଇନ ସାମନ୍ତ ଯେ ଯାହାର ସଜେ
ଜଗି ରହିଛନ୍ତି ଅଶ୍ୱର ପଛେ ।
ସେ ଦେଶର ରଜା ଆଉ ଏକ ଘୋଡ଼ା
ରଖିଥିଲା ଯଜ୍ଞ କରିବା ପାଇଁ,
ପୁଅ ତାମ୍ରଧ୍ୱଜ ଜଗିଥିଲା ତାକୁ
ନର୍ମଦା ତଟରେ ଯୋଗକୁ ଚାହିଁ ।
ପାଣ୍ଡବ ତୁରଗ ପହଞ୍ଚିଲା ସେଠି
ତାମ୍ରଧ୍ୱଜ ତାକୁ ରଖିଲା ଧରି,
ପଛରେ ଦେଖିଲା ରଥେ ଅରଜୁନ
ସାରଥି ତହିଁରେ ଅଛନ୍ତି ହରି ।
ରଥ ବାହୁଛନ୍ତି ଧୀର ସ୍ଥିର ଭାବେ
ଘୋଡ଼ା ଚାଲୁଛନ୍ତି ନର୍ତ୍ତନ ବାଗେ,
ଚହ୍ନି ନ ଥିଲା ସେ କିଏ ସେ ଦୁଇଜଣ
ଦେଖି ନ ଥିଲା ସେ ଆଗରୁ କେବେ ।
ଶୁଣିଥିଲା ରଜା ଯୁଧିଷ୍ଠିର ଚେଷ୍ଟା
ଅଶ୍ୱମେଧ ଯଜ୍ଞ କରିବା ପାଇଁ,
ଛାଡ଼ି ଦେଇଛନ୍ତି ଜୟପତ୍ର ବାନ୍ଧି
ଘୋଡ଼ା ଆସି ରାଜ୍ୟେ ପଶିଲା ଧାଇଁ ।
ତାମ୍ରଧ୍ୱଜ ତାକୁ ବାନ୍ଧି ରଖିଅଛି
ଜୟପତ୍ର ପଢ଼ି ସମର ପାଇଁ,
ପାଣ୍ଡବ ସଇନ ରୁଣ୍ଡ ହୋଇଲେଣି
ଦୁଇଜଣ ଆସନ୍ତି ରଥରେ ବାହି ।

ରଥ ପତାକାରେ        ହନୁମାନ ଚିହ୍ନ
ଭିତରେ ଶ୍ୟାମଳ ଯାଆଁଳା ଭାଇ,
ଦୁହେଁଯାକ ଶିର        ବେଶରେ ଭୂଷିତ
ଜଣେ ଧନୁ ଧରି ବସିଛି ଚାହିଁ ।
ମୟୂରଧ୍ୱଜ ତ        ଜାଣିଲା ନିଶ୍ଚୟ
ସେହି ଦୁଇ ଜଣ କୃଷ୍ଣ ଅର୍ଜୁନ,
ଭାବିଲା ମନରେ        ଏତେ ଦିନକରେ
ମୋ ମନ କାମନା ହୋଇଲା ପୂର୍ଣ୍ଣ ।
ନର-ନାରାୟଣ        ଏକା ରଥକରେ
ଦେଖି ମୁଁ ପାଇବି ପରମ ଗତି,
ଅଶ୍ୱମେଧ ଯଜ୍ଞେ        କି ଲୋଡ଼ା ବା ମୋର
ବିଜୟ ମୋ ରାଜ୍ୟେ ଜଗତ-ପତି ।
ଏକେତ ଶୁଣିଲା        ସେନା କୋଳାହଳ
ତାମ୍ରଧ୍ୱଜ ଗଲା ସମର କରି,
କୃଷ୍ଣ ଅରଜୁନ        ଦୁହିଁଙ୍କୁ ବି ଦେଖି
ପୁଅ ତା ଯାଇନି ଟଳେହେଁ ଡରି ।
ରଜାର ମନରେ        ହରଷ ବିଷାଦ
କଅଣ କରିବ ହୋଇଲା ଧନ୍ଦ,
ଏକ ଆଡ଼େ ଭକ୍ତି        ଅନ୍ୟ ଆଡ଼େ ମାୟା
ଦୁଇଥିରେ ରଜା ହୋଇଲା ଛନ୍ଦ ।
ଭକ୍ତିରେ ତାହାର        ପରମ ବିଶ୍ୱାସ
ଭକ୍ତିରେ ନିଶ୍ଚୟ ପାଇବ ହରି,
ଭକତ ମୋହର        ହେଉ ଚରିତାର୍ଥ
ପୁଅ ପଛେ ଯାଉ ସମରେ ମରି ।
ବରଜିଲା ମାୟା        ସଂସାର ମମତା
ଶ୍ରୀକୃଷ୍ଣ ଚରଣେ ଦେଲା ସେ ଲୟ,
ସମରେ ମରିବା        ମାରିବା ପାଇଁକି
ମନରେ ତାହାର ହେଲାନି ଭୟ ।

ଶ୍ରୀକୃଷ୍ଣ ଜାଣିଲେ ତାହାର ଅନ୍ତର
ତାମ୍ରଧ୍ୱଜକୁ ସେ ଦୋଲେ ଶକତ,
ଅର୍ଜୁନ କ ସ୍ୱର ତାହାକୁ ଜଣିବ
ଅପାର କରୁଣା ଭକତ ପ୍ରତି ।
ସମର ହୋଇଲା ଉଗ୍ର ଜଗ୍ରତର
କେହ୍ବା ବଳୁ ନାହିଁ କାହାକୁ ବଳେ,
କୃଷ୍ଣଙ୍କ କରୁଣା ହୁଅଇ ଯାହାକୁ
ପଙ୍ଗୁଟାଏ ମଧ୍ୟ ସାଗର ତରେ ।
ତାମ୍ରଧ୍ୱଜ ବାଣେ ଅର୍ଜୁନ ଅଚେତ
ରଥର ଉପରେ ପଡ଼ିଲେ ଢଳି,
ଶ୍ରୀକୃଷ୍ଣ ସଚେତ କରଇଲେ ତାଙ୍କୁ
ଉପଚାର କରି ବକ୍ଷରେ ଧରି ।
ଶେଷରେ କହିଲେ ପାରିହେବ ନାହିଁ
ତାଙ୍କୁ ହେ ଅର୍ଜୁନ ସମରେ କେବେ,
ଅପସରି ଯିବା ଉପାୟ କରିବା
ଅଶ୍ୱକୁ ଆମର ପାଇବା ତେବେ ।
ଦୁହେଁଯାକ ହେବା ବ୍ରାହ୍ମଣର ବେଶ
ଯୁଦ୍ଧକୁ ବରଜି ଯିବା ହେ ଚାଲି,
ଭୁଚ୍ଛାଟାରେ ଖାଲି ସମରେ ମାତିଲେ
ପରିଣାମ କିଛି ହେବନି ଭଲ ।
କୃଷ୍ଣ ହେଲେ ପିତା ଅର୍ଜୁନ ତନୟ
ଦୁହେଁଯାକ ରଥୁଁ ହେଲେ ଅନ୍ତର,
କେହି ଜାଣିଲେନି କେତେବେଳେ ଗଲେ
ଶ୍ରୀକୃଷ୍ଣ କ ଆଉ କଲେ ମନ୍ତ୍ର ।
ଦୁଇ ଜଣଯାକ ଆଗ ପଛ ହୋଇ
ଚାଲିଗଲେ ବେଗେ ରାଜ ନଅରେ,
ରଜାର ନଜର ପଡ଼ିଲା ତାଙ୍କଠି
ଉଠି ଆସିଲା ସେ ଆସନୁ ଖରେ ।

କଲ୍ଲି ସତକାର ବିଧି ଅନୁସାରେ
ବୁଝିଲି ବନଯେ ଯିବା କାରଣ,
ଅର୍ଜୁନଙ୍କୁ କହୁଁ କହିବା ପାଇଁକି
ଆଗୁଁ କରିଥିଲେ କୃଷ୍ଣ ବାରଣ ।
ବ୍ରାହ୍ମଣ କହିଲେ କହିବି କଥାଏ
ମହାରାଜା ଯଦି କରିବେ ପଣ,
ଅନୁମତି ହେଲେ ମାଗିବି ଗୋଟିଏ
ଦାନ ଶ୍ରୀଗୁମୂଙ୍କୁ ଦୁଃଖୀ ବ୍ରାହ୍ମଣ ।
ରଜା ଖୁସି ହୋଇ କହିଲେ ବ୍ରାହ୍ମଣ
କି ଦାନ ମାଗିବ ମାଗ ବହନ,
ଯାହା ମାଗିବ ମୁଁ ଦେବି ହେ ନିଶ୍ଚୟ
ତିନି ବାର ସତ୍ୟ କରୁଛି ପଣ ।
ବ୍ରାହ୍ମଣ କହିଲେ ଏହି ପୁଅଟିକୁ
ଆଣିଥିଲି ବର ବେଶରେ ସାଜ,
ଗ୍ରାମୁଙ୍କ ରାଜ୍ୟରେ ତାର ବାହାଘର
ଏହି ଲଗନରେ ହୁଅନ୍ତା ଆଜ ।
ଗୋଟିଏ ତ ଏହି ଆଉ କେହି ନାହିଁ
ଘଟିବ ଦୁର୍ଯୋଗ, ବୁଢ଼ାବୁଢ଼ୀ ଭେଲା,
ଅରଣ୍ୟ ଭିତରେ ଆସୁ ଆସୁ ବାଟେ
ସିଂହଟାଏ ଆସି ଆଗୁଳ ଦେଲା ।
କହିଲା ଖାଇବି ପୁଅଟିକୁ ମୋର
ଅନୁନୟ କରି କହିଲି କେତେ,
ତୋର ଯେବେ ଭୋକ ହେଉଛି କେଶରୀ
ପୁଅକୁ ବରଜ ଖାଆ ତୁ ମୋତେ ।
କହିଲା କଅଁଳ ମାଉଁସ ଗ୍ରାଡ଼ି ମୁଁ
ବୁଢ଼ାଟାର ମାଂସ ଖାଇବି ନାହିଁ,
ଶୁଖି ଶାଖି କରି ଖାଲି ଶିରାମୟ
ରକତ ଟୋପାଏ ଅଛି କି କାହିଁ ?

ବହୁ କନ୍ଦାକଟା କରି ମୁଁ କହିଲି
ପିଣ୍ଡ ଦେବା ପାଇଁ ଗୋଟିଏ ପୁଅ,
କପରି ମୁକତ ହେବ ନରକରୁ
ପଶୁରାଜ ତୁମେ ବିଗୃହି କହ ।
ମନକୁ ମନରେ କଅଣ ଭାବିଲା
କହିଲା ବ୍ରାହ୍ମଣ ପୁଅକୁ ଛୋର,
ଖାଇବି ନାହିଁ ମୁଁ ରଜା ମାଂସ ଯେବେ
ମଣୋହି ପାଇଁକି ଦେବୁ ରେ ମୋର ।
ହାତରୁ ଗୋଡ଼ରୁ ଜୀବ ଗୁଡ଼ିଗଲା
ଡରିମରି କରି କହିଲି ହଁଅଁ,
ତୁମ୍ଭଙ୍କ ପାଖରେ ଗୁହାରି କରୁଛି
ଏହାର ଉପାୟ ଆପଣ କହ । .
ରଜା ଶୁଣିସାରି କହିଲେ ଆନନ୍ଦେ
ଏଥିପାଇଁ କିଆଁ ଚିନ୍ତା ବ୍ରାହ୍ମଣ !
ଦାନ ଦେବା ପାଇଁ କହି ତ ସାରିଛି
ସେଥିପାଇଁ ଦରି କରିଛି ପଣ ।
ଏ ଦେହଟା ନୁହେ ଚିରସ୍ଥାୟୀ କା'ରି
ଧନେ ତ ଖାଆନ୍ତେ କାଉ ଶାଗୁଣା,
ଦାନ କରିଦେବି ଯୋଗ୍ୟ ବ୍ରାହ୍ମଣଙ୍କୁ
ମନ କାହିଁପାଇଁ କରୁଛ ଊଣା ।
ଭାବିଥିଲି ମନେ ଅଶ୍ୱମେଧ ଯଜ୍ଞ
କରି ଅରଜିବି ବହୁତ ପୁଣ୍ୟ,
ଏବେ ନିଜ ଦେହ ଦେବି ବ୍ରାହ୍ମଣଙ୍କୁ
କାମନା ଅଧିକ ହୋଇବ ପୂର୍ଣ୍ଣ ।
ତାମ୍ରଧ୍ୱଜ ଥିଲା ପାଶେ ଉଭା ହୋଇ
କହିଲା ବିନୟେ, ଶୁଣ ବ୍ରାହ୍ମଣ,
"ଶାସ୍ତ୍ରରେ ତ ଅଛି ପିତା ପୁତ୍ର କେହି
ନୁହନ୍ତି ଅଲଗା, ଦୁହେଁ ସମାନ ।

ରାଜା ଗଲେ ହେବ ରାଜ୍ୟ ଅରାଜକ
ଧରମରେ ହେବ ବହୁତ ହାନି,
ସେଥିପାଇଁ କହେ ମୋତେ ଦିଅ ସିଂହେ
ବେଶୀ ଖୁସି ହେବ ପାରୁଛି ଜାଣି ।"
ଶ୍ରୀକୃଷ୍ଣ କହିଲେ, ହସକୁ ଲୁଚାଇ
"ସିଂହ ଯା କହୁଛି ଆହୁରି ଶୁଣ,
ରଜାଙ୍କ ଦେହରୁ ଅଧେ ହେଲେ ମଧ
ତାହାର ଉଦର ହୋଇବ ପୂର୍ଣ୍ଣ ।"
ରାଣୀ ଥିଲେ ସେଠି ଶୁଣିଲେ, କହିଲେ
"ପୁରୁଷ ଦେହରୁ ଅଧେ ତ ନାରୀ,
ରାଜାଙ୍କୁ ବରଜି ମୋତେ ଦିଅ ସିଂହେ
ଖାଉ ସିଏ ମୋତେ ସୁଖରେ ମାରି ।"
ଶ୍ରୀକୃଷ୍ଣ କହିଲେ, "ତୁମେ ବାମ ଅଙ୍ଗ
ସିଂହ ତା ଆଦଉ ଛୁଇଁବ ନାହିଁ,
ତାହାର ଜବାବ ଡାହାଣ ପାଖକୁ
ସେଥିପାଇଁ ସିଏ ବସିବ ରହି ।"
ଏହିଶେଷେ ରାଜା କହିଲେ ଆନନ୍ଦେ
ଅଧେ ମୋ ଦେହରୁ ଦେଉଛି ଦାନ,
ନିଅ ଦ୍ଵିଜବର ବରଜ ଭାବନା
ଦେହ-ଦାନ ନେଇ ରଖ ମୋ ମାନ ।
ବ୍ରାହ୍ମଣ କହିଲେ ଶୁଣ ମହାରାଜା
କରତେ ଚିରିବେ ପୁଅ ଭାରିଯା,
ସେଥିପାଇଁ ଠିକେ କେହି କାନ୍ଦିବେନି
ଥରିଯିବ ନାହିଁ କାର କଲିଜା ।
ଗାଧୋଇ ପାଧୋଇ ଶୁଦ୍ଧ ଶୌଚ ହୋଇ
ଆସିଲେ ନୃପତି ଦେବାକୁ ଦାନ,
ପୁଅ ଭାରିଯାଙ୍କୁ କହିଲେ ହରଷେ
ଦିଅ ଚିର ମୋତେ କରତ ଆଣ ।

ସାବଧାନ କେହ୍ନ କାନ୍ଦିବ ନାହିଁଟି
କାନ୍ଦିଲେ ମୋ ପୁଣ୍ୟ ହୋଇବ ନାଶ,
କାଳ କାଳ ପାଇଁ ତୁମର ମୋହର
ହୋଇବ ନିଶ୍ଚୟ ନରକେ ବାସ ।
କରତକୁ ଧରି ତନୟ ଭାର୍ଯ୍ୟା
ଚର ଚର କରି ଚିରିଲେ ଯେବେ,
ବାମ ନୟନରେ ଟିକିଏ ଲୋତକ
ଜକେଇ ଆସିଲା କାହ୍ନିଁ କି ତେବେ ।
ଶ୍ରୀକୃଷ୍ଣ ଦେଖିଲେ କହିଲେ, "ନୃପତି
ତୁମ ନୟନରୁ ବହିଲା ଲୁହ,
ମୋର ଦାନ ନେବା ହେଲା ନାହିଁ ଆଜ
ଏଥିକୁ ଉପାୟ ଅଛି ତ କହ ।"
ରଜା ଉଠି ଆସି କହିଲେ କାତରେ
ଚରଣ ଧରୁଛି ଶୁଣ ଗୋସାଇଁ,
କହୁଛି କାରଣ ବାମ ନୟନରେ
ଲୁହ ଦେଖାଦେଲା କାହିଁକି ପାଇଁ ।
ମଣିଷ ଦେହରେ ଯୋଡ଼ିଏ ତ ଆଖି
ଏକା କରମ ତ କରନ୍ତି ଦୁହେଁ,
ଦକ୍ଷିଣ ଆଖିକି ଏଡ଼େ ଭାଗ୍ୟବାନ
ସେଥିପାଇଁ ବାମ ଭିଜିଲା ଲୁହେ ।
କୃଷ୍ଣ ହସି ହସି ଦେଖାଇଲେ ମାୟା
ଶଙ୍ଖ ଚକ୍ର ଗଦା କମଳ ଧରି,
ଛୁଞ୍ଚା ଧୋଇଗଲେ ସେଇଠି ଆଗରେ
ଦଶ ହଗ ଦେଲେ ଆଲୁଅ କରି ।
ଭକତ ଭକତ ପରୀକ୍ଷା କରନ୍ତି
କେତେ ବାଗେ କୃଷ୍ଣ କେତେଠି ପଶି,
ପରୀକ୍ଷାରେ ଯିଏ ଉତ୍ତୀର୍ଣ୍ଣ ହୁଅଇ
ନିଜର ବକ୍ଷରେ ଧରନ୍ତି ହସି ।

ଶ୍ରୀବତ୍ସ ଋଗରେ ମାଇଲ ଗୋଇଠା
ତା ପାଦ ଚିହ୍ନକୁ ବହିଲେ ଅଙ୍ଗେ,
ସୁଦାମା ଦରିଦ୍ର ଅତି ଧୀନ ହୀନ
ଖୁଦ ଖାଇ ତାକୁ ରଖିଲେ ସଙ୍ଗେ ।
ଅର୍ଜୁନ ତାଙ୍କର ପରମ ଭକତ
ତାଙ୍କୁ ସେ ସର୍ବସ୍ୱ ଦେଲେ ତ ଯାଚି,
ରଥ ତଙ୍ଗ ଯାନ ବାହନ, ଭଉଣୀ
ଆଉ କେଉଁ କଥା ରଖିଲେ ବାକି ।
ରଜା କୃତକୃତ୍ୟ ହେଲ ରୂପ ଦେଖି
ନଅର ମଣିଲ ବୈକୁଣ୍ଠ ସମ,
କହିଲ ଗଦ୍‌ଗଦେ ନିସ୍ତରିଲି ପାପୁଁ
ଆଉ କି କରିବ ମୋହର ଯମ !
ମୋର ତ ତପସ୍ୟା ହୋଇଗଲ ପୂର୍ଣ୍ଣ
ନରନାରାୟଣ କଲ କରୁଣା,
ମୟୂରଧ୍ୱଜକୁ ରଖିବ ଚରଣେ
ଏହି ଅନୁଗ୍ରହ ହେବନି ଊଣା ।
ମରଣାନ୍ତେ ପ୍ରଭୁ ଦେବ ଥାନଟିଏ
ଏ ରଙ୍ଗାଚରଣ ନଖ କଣରେ,
ବିଷ୍ଣୁ ପଦ୍ମ ପରି ହେବ ମୁଁ ପବିତ୍ର
ପୁଅ, ଭାର୍ଯ୍ୟା, ପ୍ରଜା ଥିବେ ସଙ୍ଗରେ ।
ଅନନ୍ତ ଦେହରେ ଅନ୍ତ ହୋଇଯିବୁଁ
ଆଉ ଭିନ୍ନ ସତ୍ତା ରହିବ ନାହିଁ,
ସଂସାର ଜଞ୍ଜାଳ ସବୁ ସରିଯିବ
ମୁକତି ପଥକୁ ବଢ଼ିଲ ଗୁହିଁ ।
ଶରଣ ପଶିଲ ଚରଣ ପ୍ରାନ୍ତରେ
ଦୁଇ ଅଶ୍ରୁଧାର ଭେଟିଲ ଆଣି,
ଗ୍ରହଣ କଲେ ତା ଅତି ଶରଧାରେ
ତାହାର ନିର୍ମଳ ଭକତି ଜାଣି ।

———

# ଅଶ୍ୱମେଧ ପରେ ଶ୍ରୀକୃଷ୍ଣ

ଅଶ୍ୱମେଧ ଯଜ୍ଞ ହେଲା ସୁସମ୍ପନ୍ନ
ଶ୍ରୀକୃଷ୍ଣ ଫେରିଲେ ଦ୍ୱାରକାପୁର,
ହସ୍ତିନା ନଗରୀ ହେଲା ହତଶିରୀ
ଧନ ଜନ ସୁଖ ଥାଇ ପ୍ରଚୁର ।
ପାଣ୍ଡବ ନବର ନୀରବ ନିଶ୍ଚଳ
ହସ ଖୁସି ଆଉ ନାହିଁ କାହାର,
ଆଖିରେ ଆଖିରେ ଲୁହ ଛଳଛଳ
ସକଳେ ବସିଲେ କୃଷ୍ଣଙ୍କୁ ଝୁରି ।
କାହିଁ ସେହି ରୂପ କାହିଁ ସେହି କଥା
କାହିଁ ସେ ସୁନ୍ଦର ମୁହଁର ହସ,
କାହିଁ ସେ ସାନ୍ତ୍ୱନା କାହିଁ ସେ ଧଇର୍ଯ୍ୟ
କାହିଁ ରହିଲା ସେ ଧୀର ସାହସ ।
ଚାଲି ଯାଉଥିଲେ ପଦ୍ମ ଫୁଟୁଥିଲା
କୁସୁମ ବନଟି ଗଲା ଉଜୁଡ଼ି,
ହସ୍ତିନା ନଗରୀ ସହ ରାଜପୁରୀ
ରହିଲା କେବଳ ଲୁହରେ ବୁଡ଼ି ।
ତୁଣ୍ଡରେ ତୁଣ୍ଡରେ କୃଷ୍ଣଙ୍କର କଥା
ଘରେ ଓ ବାହାରେ ତାଙ୍କରି ଛବି,
ନଈ ପୋଖରୀରେ ତାଙ୍କରି ବର୍ଣ୍ଣ
ଲହରେ ଲହରେ ଯାଉଛି ବହି ।

ପକ୍ଷୀ କଣ୍ଠେ କଣ୍ଠେ ତାଙ୍କର ବଚନ
ଲଳିତ ମଧୁର ସଙ୍ଗୀତ ଛନ୍ଦ,
ପବନ-ଚଞ୍ଚଳିତ ପତରେ ପତରେ
ତାଙ୍କର ଗମନ ମନ୍ଥର ମନ୍ଦ ।
ଫୁଲରେ ଫୁଲରେ ତାଙ୍କର ଭୂଷଣ
କଣ୍ଠ ବନମାଳ ସୁନ୍ଦରତର,
ସଜ କୋକନଦ ରକ୍ତ ଦଳେ ଦଳେ
ତାଙ୍କର ଚରଣ ତାଙ୍କ ଅଧର ।
ଶଙ୍ଖରେ ଶଙ୍ଖରେ .ତାଙ୍କ କଣ୍ଠ ସ୍ୱର
ବାରଣ ଚଳିଲେ ତାଙ୍କର ଗତି,
ନାହିଁ ରାଜ୍ୟବାଡ଼ ନୁହନ୍ତି ସେ ରଜା
ତେବେ ବି ଜଗତଯାକର ପତି ।
ସଖି ହସ୍ତିନାର ସୀମନ୍ତ ସିନ୍ଥିରୁ
ପୋଛି ହୋଇଗଲା କି ସିନ୍ଦୂର ବିନ୍ଦୁ,
ଶରତ ଗଗନୁଁ ଅକାଳରେ କିବା
ଅସ୍ତ ହୋଇଗଲା ପୂର୍ଣ୍ଣିମା ଇନ୍ଦୁ ।
କାନ୍ଦିଥିଲା ଦିନେ ଯମୁନା ନଦୀଟି
ନନ୍ଦନନ୍ଦନ ଆଗେ ଗୋପ ନଗରେ,
ଏଠି ବି ଯମୁନା କାନ୍ଦିଲା ଆତୁରେ
କୃଷ୍ଣ ଚାଲିଗଲେ ଦ୍ୱାରକା ପୁରେ ।
ଅର୍ଜୁନ ତାଙ୍କର ପ୍ରତିମୂର୍ତ୍ତି ସିନା
ବୁଝାଇ ପାରିବେ ତାଙ୍କ ଅଭାବ ?
ନାହିଁ ସେ ମାଧୁରୀ ନାହିଁ ସେ ଭଙ୍ଗିମା
ନାହିଁ ରଙ୍ଗତାଙ୍କ ମନର ଭାବ ।
ଦ୍ରୌପଦୀ, ସୁଭଦ୍ରା ଶୋକେ ଅଭିଭୂତ
ପାଣ୍ଡବଙ୍କର ବି ତେସନ ଦଶା,
ଗୋଟି ଗୋଟି ହୋଇ ପଡ଼ୁଛି ମନରେ
ତାଙ୍କ କଥାଭାଷା ମଧୁର ହସା ।

କୁନ୍ତୀଙ୍କ ମନରେ ନାହିଁ ସୁଖ ଲେଶ
ନୟନ କଣରୁ ଫିଟିଛି ଝର,
ଶ୍ରୀକୃଷ୍ଣ ତ ମୋର ଛାଡ଼ିଗଲା ମୋତେ
ଅସୁନ୍ଦର କରିଦେଇ ମୋ ଘର ।
ଆଉ ସତେ କଣ ଆସିବ ହସ୍ତିନା
ପାସୋରି ଦେବ କି ଆମକୁ ସତେ,
ତାର ସେ ବଦନ ଦେଖିବ ଆତୁର
ମନରେ ତ ମୋର ହେଉନି ପ୍ରତେ ।
ନାନା ଜଞ୍ଜାଳରେ ଜଞ୍ଜାଳିଆ ସିଏ
ମୋର ଜଞ୍ଜାଳ ସେ ବୁଝିବ କେତେ ?
ତାର ସୁଖ ଦୁଃଖ ସେହି ସିନା ଜାଣେ
ଆଉ କେ ତା ପାଇଁ ଜାଣିବ ସେତେ ।
ଯାଅ ରେ ବାପ ତୁ ଯୁଧିଷ୍ଠିର ହୁଅ
ପାଣ୍ଡବ ଭାଇଙ୍କୁ ଭୁଲିବୁ ନାହିଁ,
ଆପଦ ବିପଦ ପଡ଼ିଲା ବେଳରେ
ଡାକିଲେ ଟିକିଏ ଆସିବୁ ଧାଇଁ ।

—

# ଦ୍ୱାରକାରେ ଶ୍ରୀକୃଷ୍ଣ

କ୍ଷଣକ ଅଭାବେ ରହସ୍ୟ ଦ୍ୱାରକା
ଥିଲା କେତେ ଦିନ ହୋଇ ମଉନ,
ଏଇନା ଫିଟିଲା ତାର ପାଟିତୁଣ୍ଡ
ଶୁଭିଲା ସବୁଠି ଶଙ୍ଖର ଧ୍ୱନି ।
କୋଇଲିଗୁଡ଼ିକ କୋଉଠେଇ ଥିଲେ
ଆସିଲେ ଗାଇଲେ ପଞ୍ଚମେ ରସି,
ବୃନ୍ଦାବନ କୁଞ୍ଜ ହେଲା କି ଦ୍ୱାରକା
ଗଛେ ଗଛେ କିଆଁ ବାଜିଲା ବଂଶୀ ।
ଯାଦବ ଯାଦବୀ ଗୋପ ଗୋପୀ ସମ
ଆନନ୍ଦ ସରିତେ ଖେଳିଲେ ଭାସି,
ଗଗନେ ଚନ୍ଦ୍ରମା ଧୋବ ଲୁଗା ପିନ୍ଧି
ଅଳନ୍ଦେ ଅଳନ୍ଦେ ପଶିଲା ଆସି ।
ସାଗର ବକ୍ଷରେ ଖେଳିଲା ଲହରୀ
ଶଶାଙ୍କ କିରଣେ ଦେଲାଣି ଧୋଇ,
କୋଳରେ ପୂରାଇ ଉଜ୍ଜ୍ୱଳ ହୀରକ
ଭବନେ ଭବନେ ଦେଲାଣି ଥୋଇ ।
ନାଉରୀ ଗାଇଲେ ନାଆ ମଙ୍ଗେ ମଙ୍ଗେ
ଫେରି ଆସିଲେ ରେ, ଅସୁର ଅରି,
ଡର ଭୟ ସବୁ ବରଜ ଦିଅ ରେ
ଘରେ ପଶିଲେଣି ଆୟୁଧ ଧରି ।

ବିନା ନଉକାରେ ପାରି ହୋଇଯିବା
ସଂସାର ଦୁସ୍ତର ବାରିଧି ବାରି,
ଶ୍ରୀକୃଷ୍ଣ ଆମର ଶରଣ ସୋଦର
ସେହି ତ ଆମର ଯୋଗ୍ୟ କାଣ୍ଡାରି ।
ଦ୍ୱାରକା ଏଥର ଭଜିବ ସୁମୂର୍ତ୍ତି
କାହାର ମନରେ ଚିନ୍ତାର ଲେଶ,
ନାହିଁ, ସବୁବେଳେ ପିନ୍ଧିଲି ସଜାଡ଼ି
କେତେ ରକମର ସୁନ୍ଦର ବେଶ ।
କେତେବେଳେ ପିନ୍ଧେ ଶୁକଳ ବସନ
କେତେବେଳେ ପିନ୍ଧେ ବସନ ପୀତ,
ଯେତେ ଦେଖୁଥିଲେ ଅଭିନବ ବେଶ
ପୁଲକ ଉଠଇ ମନକୁ ଚିତ୍ତ ।
ଉଆଁସୀ ରଜନୀ ପିନ୍ଧିପାରେ ନାହିଁ
କଳା ଶାଢ଼ୀଟାକୁ ଭରସି କରି,
ସାଗର ବକ୍ଷର ରତନ ସମ୍ଭାର
ରଜନୀକୁ ଦିଏ ଉଜ୍ଜ୍ୱଳ କରି ।
ସାଗର ସଲିଳ ଛୁଆଁ ସମୀରଣ
ଶୀତଳାଇ ଦିଏ ଗ୍ରୀଷମ ତାତି,
ପଉଷ ମାସର କୁହୁଡ଼ିଆ ଶୀତ
ପଶିପାରେ ନାହିଁ ଥରେ ତା ଛାତି ।
ସବୁଠି ଆନନ୍ଦ ହସ କଉତୁକ
ଶିଶୁଟିଏ କେବେ କାନ୍ଦଇ ନାହିଁ,
ମାଆମାନେ ସବୁ ହରଷ କଣ୍ଟିତ
ଛୁଆଙ୍କୁ ବସନ୍ତ ନାହିଁ ସେ ଗୃହେଁ ।
ପୁଅ ନାତିମାନେ ଧରାଧରି ହୋଇ
କୃଷ୍ଣ ଚନ୍ଦ୍ରପାଖେ ଯାଆନ୍ତି ବେଢ଼ି, ,
ସ୍ୱଚ୍ଛ ନୀଳ ଜଳ ସରୁ ସରୁ ବେଣୀ
ଦ୍ୱୀପଦଣ୍ଡୀକୁ କି ଧରନ୍ତି ଘେରି ?

କେତେ ବାଟେ ଗେଲ କରନ୍ତି ପିଲାଙ୍କୁ
କାହାକୁ କୋଳାଇ କାଖରେ ଧରି,
କାହାକୁ କାନ୍ଧରେ ବସାଇ ଦିଅନ୍ତି
ଶ୍ୟାମଳ ସୁନ୍ଦର କଣ୍ଢାଇ ପରି ।
ଚିପି ଦେଉଥାନ୍ତି କାହା ଗାଲ ଟିକେ
କାହାର କଅଁଳ ଚିବୁକ ଧରି,
ହସାଇ ଦିଅନ୍ତି ଟିକି ମୁହଁଟିକୁ
କା ଦେହୁ ବଦନୁଁ ଝାଡ଼ନ୍ତି ଧୂଳି ।
ଗୋଟିଏ ଯୋଡ଼ିଏ ପିଲା ତ ନୁହନ୍ତି
ତେଲୁଣି ପୋକର ଚରଣ ପରି,
ଝାଳ ହାଉଯାଉ ଖାଲି ଚରଚରି
ଏତିଙ୍କୁ କି କୃଷ୍ଣ ପାରନ୍ତେ ଧରି ?
ଷୋହଳ ହଜାର ଆଠ ଜଣ ଭାର୍ଯ୍ୟା
ସବୁରି କୋଳରେ ଦଶଟି ପୁଅ,
ପୁଣି ତା ସଙ୍ଗକୁ ସଭିଙ୍କ କୋଳରେ
ଗୋଟିଏ ଗୋଟିଏ ସୁନ୍ଦରୀ ଝିଅ ।
ପୁତୁରା ନାତି ତ ଅଛନ୍ତି ବହୁତ
କୃଷ୍ଣଙ୍କ ସଂସାର ରାଜ୍ୟରୁ ଅଧେ,
କିପରି ଚିହ୍ନନ୍ତି ଏତେ ପିଲାଙ୍କୁ ସେ
କିଏ ବଡ଼ କିଏ ସାନ ତା ମଧ୍ୟେ ।
ସେ ଯେ ଅନ୍ତର୍ଯ୍ୟାମୀ ସେ ପାରନ୍ତି ଚିହ୍ନି
କାଳ ଦରେ ଏକା ଠାଆକେ ବସି,
ପୁଅ ଝିଅ ନାତି ନାତୁଣୀ ସମସ୍ତି
ଭିତରେ ଶ୍ରୀକୃଷ୍ଣ ଥାଆନ୍ତି ପଶି ।
ମାନବ ଲକ୍ଷଣ ଅଛି ସବୁତକ
ଦେବତା ଶକତି ଆହୁରି ଅଛି,
ଦେବ ଶକ୍ତି କିଆଁ ତାଙ୍କର ଶକତି
ବିଶ୍ୱବ୍ରହ୍ମାଣ୍ଡରେ ବ୍ୟାପି ରହିଛି ।

ବଳାପ ବୟସରେ    ଉଣା ନୁହନ୍ତି ସେ
ତ୍ୟାଗରେ ମନ୍ତରେ ଅଶେଷ ଖ୍ୟାତି,
ବ୍ରହ୍ମ ସନାତନ    ଅନନ୍ତ ଶୟାନ
ଶର ଜାଗ୍ରତ ସେ ନ ଥାଏ ଶ୍ରାନ୍ତ ।
ନାହିଁ ତାଙ୍କ ମିତ୍ର    ନାହିଁ ବା ଅମିତ୍ର
ଅନ୍ୟାୟ ଦେଖିଲେ ସହେନା ଚିତ୍ତ,
ପାଳକ ହୋଇବ    ସଂହାର କରନ୍ତି
ଶୀତଳ ବହନ୍ତି ଧରଣୀ ତାତ ।
ଯାହାକୁ ମାରନ୍ତି    ତାହାକୁ ତାରନ୍ତି
କଳୁଷ କାଳିମା ଟୋଳନ୍ତି ଅଙ୍ଗେ,
ସବୁର କଳଙ୍କ    ଲୁଚନ୍ତି ଦେହରେ
କିନ୍ତୁ ଦିଶେ ନାହିଁ ସେ ଅଙ୍ଗ ରଙ୍ଗେ ।
ସେ ବର୍ଣ୍ଣ ତାଙ୍କର    ନୁହେ ଜଣକର
ବିଶ୍ୱର କାନ୍ତି ସେ ଲୁଚଏ ବର୍ଣ୍ଣ,
ଲୁଚକାଳି ଖେଳ    ନ ଥାଏ ତହିଁରେ
ସବୁ ଅପ୍ରକାଶ ସବୁ ପ୍ରକାଶ ।
ଗଗନ ବକ୍ଷରେ    ଦିଶନ୍ତି ଜ୍ୟୋତିଷ୍କ
କିନ୍ତୁ ତାଙ୍କ ଦେହେ ଦିଶଇ ନାହିଁ,
ସବୁ ସେଇଥିରେ    ମିଶି ହଜିଯାଏ
ନେଳିଆ କହନ୍ତି ଗଗନେ ଚାହିଁ ।
ଗଗନଠାରୁ ସେ    ଆହୁରି ବିଶାଳ
ନିର୍ମଳ, ଗୋଳିଆ ଦିଶଇ ନାହିଁ,
ଧଳା କଳା ଆଦି    ବାରିଦ ଫଉଜ
ଦିଶେ ନାହିଁ ଟିକେ କେଉଁଠି କାହିଁ ।
ସେହି ମହାଶୂନ୍ୟ    ପୁଣି ମହାପୂର୍ଣ୍ଣ
ପୂର୍ଣ୍ଣରେ ଶୂନ୍ୟରେ ପୂର୍ଣ୍ଣ ବିକାଶ,
ପୁଣି ସେ ଶୂନ୍ୟରେ    କଳିପାରନ୍ତି ସେ
ମହାପୂର୍ଣ୍ଣତାର ପୂର୍ଣ୍ଣ ପ୍ରକାଶ ।

ବଚନ ତାଙ୍କର ସବୁ କାରବାର
ସବୁଥିରେ ଫୁଟେ ସୁନ୍ଦର ଛନ୍ଦ,
ଗୋଟିଏ ରଙ୍ଗରେ ସାନ୍ତ ରଙ୍ଗରାଗ
ରହିଥାଏ ସଦା ହୋଇ ଏକାନ୍ତ ।
କେତେବେଳେ ଶୁକ୍ଳ କେତେବେଳେ ପୀତ
ବସନ ପିନ୍ଧିଣ ପାଆନ୍ତି ଶୋଭା,
କଣ୍ଠେ ବନମାଳା ଅଧରେ ରକ୍ତିମା
ଆହା କି ମୂରତି ନୟନଲୋଭା !
ଏପରି ମୂରତି ଦେଖିଛି କି କିଏ,
କିବା ଏ କଳ୍ପନା ରଚିତ ଛବି ?
କଳ୍ପନା ତ ନୁହେଁ ସିଦ୍ଧ ଦରଶନ
ତାହାକୁ ଗାଇଛି ବଙ୍କିମ କବି ।
ଚତୁର କରେ ପୁଣି ଖଞ୍ଜିଦେଇ ଅଛି
ଶଙ୍ଖ, ଚକ୍ର, ଗଦା, କମଳ ନେଇ,
କାହାକୁ ଶାସନ୍ତି ଗଦା ସୁଦର୍ଶନେ
ମାନି ଶିକ୍ଷା ଦିଅନ୍ତି ଶଙ୍ଖଟି ବାଇ ।
ସେବା ଶେଷରେ ସେ ଶୁଆଇ ପକାନ୍ତି
ଶୀତଳ କମଳ ଦଳ ବଛାଇ,
ସବୁ ପାପ ତାପ ସବୁ ଦୁଃଖ ଶୋକ
ସେହି ଶୟନରେ ଯାଏ ଉଭାଇ ।
ସପନ ପଶେ ନା ସେ ନିଦରେ କେବେ
ବ୍ରେଗ ପାଟରେ ନାହିଁ ତାକୁ ଉଠାଇ,
ଚିର ସୁସୁପ୍ତି ସେ ପରମ ମୁକତି
ମୋକ୍ଷ ଧାମକୁ ସେ ଦିଏ ପଠାଇ ।
ଯୁଗେ ଯୁଗେ ସିଏ ଏଇଥି ପାଇଁକି
ବୈକୁଣ୍ଠ ତ୍ୟଜି ଆସନ୍ତି ଧରା,
ଶୀତଳ କରନ୍ତି ପାପ ତାପ ଦାଉ
ଫିଟାଇ ଦିଅନ୍ତି ସଂସାର-କାରା ।

ଏଇନା ସେ କାମ ହୋଇଅଛି ଅଧା
ଆହୁରି ଅଧେ ତ ପଡ଼ିଛି ବାକି,
ଯେ ଅଧିକ ହେବ ଏଇଠି ସମାପ୍ତ
ସାଗର ହୋଇବ ତାହାର ସାକ୍ଷୀ,
ତାଙ୍କର ଆସ୍ଥାନେ ପଶିବ ଦୁର୍ନୀତି
ତାଙ୍କ ଶାସନକୁ ମାନିବ ନାହିଁ,
ଧରଣୀ ହୋଇବ ଧରମ ବର୍ଦ୍ଧିତ
କୃଷ୍ଣ ଅବତାର ଯୋଉଥିପାଇଁ ।
ଅନ୍ୟାୟ ଟିକିଏ ହଣି ହଣିଲଣି
ଶ୍ରୀକୃଷ୍ଣ ଅଧରେ କୁଟିଳ ହସ,
ଧରାରେ ଧରମ ରଖିବାକୁ ହେଲେ
ମାରିବାକୁ ହେବ ନିଜର ବଂଶ ।
କଳଙ୍କ ଏଥର ଛୁଡ଼ିଦେବ ବାଟ
ମୋହର ବଂଶରେ ପଡ଼ିବ ଫାଟ,
ଅସୁ କଲ ଚଣି ହାତ ଗୋଡ଼ ବାନ୍ଧି
ସବୁରି ପିଠିରେ ପିଟିବୁ ସେ ଗୂଠ ।
ଗାନ୍ଧାରୀ ଶାପ ତ ବାସି ହୋଇ ନାହିଁ
ଆହୁରି ଟିକିଏ ବଢ଼ିଛି ଏ ପାପ,
ଆସନ୍ତି ଋଷିଏ ଏକାଦଶ ଜଣ
ଦୁର୍ବୃତ୍ତଙ୍କୁ ଦେଖି ଦିଅନ୍ତି ଶାପ ।
ସତୀ ରମଣୀର ଅଭିଶାପକୁ ମୁଁ
ହସି ହସି କରି ନେଇଛି ବରି,
ଶ୍ରୀବତ୍ସ ଚରଣ ଶତ୍ରୁର ସଦୃଶ
ଏବେ ବି ରଖିଛି ବକ୍ଷରେ ଧରି ।
ବଂଶ ପଦାଘାତ ସହିବ ନାହିଁ ମୁଁ
କାହିଁକି ସହିବ କଏ ମୋ ବଂଶ !
ସେମାନେ କଅଣ ସଂସାରୁ ବାହାର
ସକଳେ ତ ବିଶ୍ୱ ଜଗତ ଅଂଶ ।

ମୁଁ ଏକା ଜଗତ ପୁଣି ତାର ନାଥ
ସଭିଙ୍କୁ ଦେହରେ ଦେବ ମିଶାଇ,
ଧରାରେ ଅଧର୍ମ ଯେତେ ଯହିଁ ଅଛୁ
ମୋ ପ୍ରେମ ପ୍ରବାହେ ଦେବ ଭସାଇ ।
ଏହ୍ମ ମୋ ଭବିଷ୍ୟ ଏହ୍ମ ମୋ ଅଦୃଷ୍ଟ
ଏ କଥା ଅଛୁ କ ମୋଠାରୁ ଲୁଚ,
ଦେଖିଅଛୁ ସବୁ ଦେଖୁଅଛୁ ସବୁ
ଦେଖିବ ଆହୁର ଯିବନ ଧୂଞ୍ଜ ।
ବେଳ କାଳ ମୋର ସର ଆସିଲଣି
ଆହୁର ଛତିଶ ବରଷ ବାକ,
ଏହାର ଭିତରେ କରିବ କରମ
ଦେବତା ଏଥର ଆସିବେ ଡାକ ।
ଅଗ୍ରଦୂତ ହୋଇ ଆସିବେ ଋଷିଏ
ଓଳାଇ ଯିବେ ମୋ ଯିବାର ବାଟ,
ସିଂଧୁ ସଲଖରେ ଫିଟିବ ସରଣୀ
ଯାତ୍ରୀ ହେବେ ତହିଁ ମୋହର ଥାଟ ।
ଅଦୃଷ୍ଟ ଆଗରୁ ଘୁଞ୍ଚାଇ ପରଦା
ଅଦୃଷ୍ଟକୁ କାଢ଼ି ଦେବ ଦେଖାଇ,
ଦେଖି କରି ଯିଏ ଶିଖିବ ନାହିଁ ତ
ମାରି ଧରି କରି ଦେବ ଶିଖାଇ ।
ଇନ୍ଦ୍ର ପିତାମହ ଆସିଲେ ସ୍ୱରଗୁଁ
କହିଲେ ଖେଦରେ ଶୁଣ ହେ ହରି,
ଦୁଷ୍ଟର ଦଳନ ଶିଷ୍ଟର ପାଳନ
ଧର୍ମ ସଂସ୍ଥାପନା ସାରିଛ କରି ।
ବଇକୁଣ୍ଠ ତେଣେ ହେଲା ମରୁଭୂଇଁ
କାହିଁକି ଧରାରେ ହେ ଜଗନ୍ନାଥ,
ପୂରିଗଲା କାଳ ଗ୍ଭଲ ବଇକୁଣ୍ଠେ
ସେଠି ହୁଅ ପୁଣି ଦେବଙ୍କ ନାଥ ।

ବଇକୁଣ୍ଠ ଆଉ          ଶୋଭା ପାଉନାହିଁ
ଦିଶୁଛି ନିର୍ଜନ ମଶାଣି ପରି,
ସିଂହାସନ ତେଣେ          ଧୂଳି ଚଢ଼ିଅଛି
ଭୂଷ ତାଙ୍କୁ ଏବେ ଭାର୍ଯ୍ୟାଙ୍କୁ ଧରି ।
ଲକ୍ଷ୍ମୀ ଧରଣୀରେ          ବାଣୀ ଧରଣୀରେ
ସ୍ୱରଗ ସମ୍ପଦ ଗଲା ଉଜୁଡ଼ି,
ଧରା ରଖି ରଖି          ସ୍ୱରଗ ସିଆଡ଼େ
ମୂର୍ଖତା ଦାରିଦ୍ର୍ୟ ଯିବ କି ବୁଡ଼ି ?
କାନ୍ଦୁଥିଲା ମହୀ          ହେଲା ତ ଉଶ୍ୱାସ
ଶୋକ ଭୁଲିଭାଲି ଦେଲାଣି ହସି,
କାହିଁକି ହେ ପ୍ରଭୁ          ବଇକୁଣ୍ଠ ଛାଡ଼ି
ମର୍ତ୍ତ୍ୟରେ ରହିବେ ଲୁକ୍କାରେ ବସି ?
ସରିଅଛି ଯୁଗ          ଯାଇଛି ଦୁର୍ଯୋଗ
ସରିଛି ମରତ ଭୋଗ ବାସନା,
ଏଥର ହେ ପ୍ରଭୁ          ଚାଲ ନିଜ ପୁରେ
ଦେବତାମାନଙ୍କ ପୂରା କାମନା ।
କଳି ଆସିବାକୁ          ହେଲାଣି ଉଚ୍ଛନ୍ନ
ତାକୁ ବାଟ ଛାଡ଼ିଦିଅନ୍ତୁ ହରି,
ଚାରି ଯୁଗରୁ ତ          ସେ ପୁଣି ଗୋଟିଏ
ଆସୁ ସେ ମର୍ତ୍ତ୍ୟକୁ ଯାଉ ବିହରି ।
ଶ୍ରୀକୃଷ୍ଣ କହିଲେ          ହସି ହସି କରି
"ଯାଅ ଦେବରାଜ ଯାଅ ହେ ବ୍ରହ୍ମା,
ତୁମ କଥା ମାନି          ଯିବି ମୁଁ ଏଥର
ରହିବି କେତେଟା ବରଷ ଜମା ।
ଆତୁର କହିଲେ          ହସି ହସି କରି
ଆତୁର ଠିକଏ, ରହିଛି ପରା,
ଯାଦବଙ୍କ ପାଇଁ          ପାପ ଯାଇନାହିଁ
ଉଶ୍ୱାସ ତଁ ଏବେ ହୋଇନି ଧରା ।"

———

# ଦ୍ୱାରକା ରହସ୍ୟ

ରାମ ଅବତାର          ଚଢ଼ିଲ ମନରେ
ବନବାସବେଳେ ଋଷିଏ ଦେଖି,
ଶ୍ୟାମଘନ କାନ୍ତି          ମୋ ମୋହନ ମୂର୍ତ୍ତି
ମରମ କଣରେ ରଖିଲେ ଲେଖି ।
କନ୍ଦର୍ପ ପୀଡ଼ାରେ          ହୋଇଥିଲେ ଘାରି
ଅଙ୍ଗସଙ୍ଗ ସୁଖ ଖୋଜିଲେ ତେବେ,
କହିଥିଲି ତାଙ୍କୁ          ଏହି ଜନମରେ
ଗୋପୀ ହୋଇ ମୋତେ ଭୋଗିବେ ସର୍ବେ ।
କେବଳ ଆଠଟି          ବରଷ ମାତର
ଭୋଗ କରିଛନ୍ତି ମୋହର ତନୁ,
ଏବେ ବି ତାଙ୍କର          ବାସନା ପୂରିନି
ମ୍ଳରୁଛି ନାହାନ୍ତି ତାଙ୍କର ମନୁ ।
ଗୋଠକୁ ବରଜ          ଆସିଲି ବାହାରି
କେତେ କାଳ ହେଲା ଦେଖିନି ତାଙ୍କୁ,
ଗୋପ ଗୋପୀସବୁ          ଆକୁଳ ଆକ୍ରନ୍ଦେ
ଅନାଇ ଅଛନ୍ତି ମୋର ବାଟକୁ ।
ବନବାସ କାଳେ          ଭୋକାତୁର ହୋଇ
ଗୋପାଳଠୁଁ ମାଗି ଖାଇଲି କ୍ଷୀର,
କହିଥିଲି ତାକୁ          ହେବ ତାର ପୁଅ
ଯେବେ ସେ ଆକୁଳେ ମାଗିଲା ବର ।

ସେହି ଗଉଡ଼ ତ          ଗୋପପୁରେ ନନ୍ଦ
    ଶିଶୁକାଳେ ମୋର ପାଳକ ପିତା,
ବାତ୍ସଲ୍ୟ ସେନେହ          ଢାଳି ଦେଇଥିଲା
    ବୁଢ଼ା ଆସି ତାକୁ ଦେଇଛି ଚିନ୍ତା ।
ଯଶୋଦା ବଳଇ          ନିଜ ମାଆଠାରୁ
    କ୍ଷୀର ଖୋଇ ମୋତେ ଥିଲା ବଢ଼ାଇ,
କଂସ ଛଳ କରି          ତାହାର କୋଳରୁ
    ମୋତେ ପିତା ଆଣିଥିଲା ଛଡ଼ାଇ ।
ମୋତେ ଝୁରି ତାର          ଦିନ ସରୁନାହିଁ
    କାନ୍ଦୁଛି ସତତ ମୋହର ପାଇଁ,
ଯିବି ମୁଁ ଗୋପକୁ          ଆଣିବି ତାହାକୁ
    ଦେଖୁ ସେ ଏଇଠି ସର୍ବଦା ରହି ।
ପୁଅ ହୋଇଥିଲେ          ସେବା କରିନାହିଁ,
    ତାହାର ସେ ଋଣ ନାହିଁ ମୁଁ ସୁଝି,
ଯଶୋଦା ଜନନୀ          ନିର୍ମଳ ବାତ୍ସଲ୍ୟ
    କିପରି ଭୁଲିବି ପାରୁନି ବୁଝି ।
ହନୁକୁ ପେଶିଲି          ସୀତା ଖୋଜିବାକୁ
    ଲଙ୍କା ରାଇଜରେ ପଶିଲା ଯାଇ.
ଅଶୋକ ବନରେ          ସୀତା ଠାବ କଲା
    ଭଜିଲେ ମନ ତା ରୂପ ରହି ।
ମନାସି ଥିଲା ସେ          ଭାରିଯା କରନ୍ତା
    ଭୋଗନ୍ତା ଟିକଏ ସଂସାର ସୁଖ,
ପାଶୋରି ପକାନ୍ତା          ସବୁ ଦୁଃଖ ତାର
    ଦେଖି ସୀତା ଗୁରୁ ଚନ୍ଦ୍ରମା ମୁଖ ।
ଯେ ମୋର ଭକତ          ମୁଁ ତ ତାର କିଣା
    ବର ଦେଇଥିଲି ତା ମନ ଜାଣି,
ସେହି ଗୋପପୁରେ          ଚନ୍ଦ୍ରସେଣା ଏବେ
    ସୀତା ରାଧାରୂପେ ତାର ଘରଣୀ ।

ଏକା ଜାମ୍ବବାନ ପଚାରିଛନ୍ତି କାମ
ମୋ ସଙ୍ଗରେ ଦିନେ ସମର କରି,
ଝିଅକୁ ଦେଇଛି ସ୍ୟମନ୍ତକ ସହ
ଶରଣ ପଶିଛି ଭକତ କରି ।
ଅଙ୍ଗଦ ବାପକୁ ମାରିଥିଲି ମୁହିଁ
ତେଣୁ ମୁଁ ତାହାର ପିତୃ-ବଇରି,
ଏ ଜନ୍ମରେ ସିଏ ହୋଇଛନ୍ତି ଶବର
ଅରଣ୍ୟରେ ଜନ୍ତୁ ନାଆଁକୁ ଧରି ।
ତା ମନ କାମନା ପୂର୍ଣ୍ଣ ହୋଇନାହିଁ
ପୁଅ ହୋଇ କରୁ ବାପର କାମ,
ମୋର ସେ ଭକତ ପୁଅରୁ ଅଧିକ
ପିତା-ଶତ୍ରୁ ମାରି ରଖୁ ତା ନାମ ।
ସବା ଶେଷରେ ସେ କରିବ ତା କାମ
ଏଇନା ତାହାର ହୋଇନି ବେଳ,
ଦ୍ୱାରକା ଗ୍ରାସିବ କରାଳ ସାଗର
ସବୁ ଆଡ଼ ପୂର୍ଣ୍ଣ ହୋଇବ ଜଳ ।
ଯାଦବ ବଂଶଟା ମରାମରି ହୋଇ
ପୂରାଇବେ ନିଜ ନିଜର କାଳ,
ପଦ୍ମନଙ୍କୁ ଶେଷେ ଛେଦିବ ଚକ୍ରରେ
ଆଶ୍ରୟ କରିବ ଅଶ୍ୱତ୍ଥ ଡାଳ ।
ଲୁହା ମୂଷଳର ଅବଶେଷେ ଶର
ଗଢ଼ାଇ ଶବର ମାରିବ ଆସି,
ସେତେବେଳେ ଯାଇ ମରତ ବରଜ
ହେବ ତାଙ୍କ ସଙ୍ଗେ ବୈକୁଣ୍ଠବାସୀ ।
ଦେବତାଏ ଆସି କେତେ ଥର ମୋତେ
ଜଣ ଜଣ କରି ଗଲେଣି ଡାକ,
ଇହ ଜନମର କାମ ତ ସରନି
ଆଉ କେତେ କାମ ପଡ଼ିଛି ବାକି ।

ମୋର ଅବତାର ଦୁଷ୍ଟ ଦଳିବାକୁ
ମୋହର ବଂଶ ତ ସବୁଠୁଁ ବଳି,
ତାଙ୍କୁ ରଖିଯିବ ଖାସା ତ କରବ
ହନକେ ସଂଯାର ଦେବେ ସେ ଦଳି ।
ପରମାୟୁରୁ ତ ସରିଲାଣି ଅଧେ
ବାକି ଅଧକରେ କରିବ ସବୁ,
ଗୋପ ଗୋପୀ ପୁଣି ଯାଦବ ଯାଦବୀ
ସବୁ ଏକା ସଙ୍ଗେ ସ୍ୱର୍ଗେ ଯିବୁ ।
ସବୁର ପଛରେ ପାଣ୍ଡବ ଆସିବେ
ସଂସାର ଧନ୍ଦାକୁ ବୁଝାଇ କରି,
ଧରମ, ବାସବ, ବାୟୁ, ସ୍ୱର୍ଗବୈଦ୍ୟ
ଏଇନା ଥାଆନ୍ତୁ ମାନବ ପରି ।
ସତ୍ୟଭାମା ସଙ୍ଗେ ରୁକ୍ମଣୀ ଗର୍ବିଣୀ
ଭାବଛନ୍ତି ଖାଲି ସୁନ୍ଦରୀ ସେହି,
ତାଙ୍କଠାରୁ ବଳି ସଂସାର ଭିତରେ
ଆଉ ରୂପବତୀ ନାହାନ୍ତି କେହି ।
ଆଣିବ ଗୋପୀଙ୍କୁ ଦେଖିବେ ଆଖିରେ
ରାଧାର ଲଳିତ ସୁଷମାରାଶି,
ରାଧା ରୂପ ପାଶେ ମଉଳିବ ମୁହଁ
ସରମେ ଗରବ ପଶିବ ଖସି ।
ଅଷ୍ଟ ପାଟବଂଶୀ- ମାନଙ୍କ ମନରେ
ଜାଗିଛି ବାସନା ଦେଖିବାପାଇଁ,
ଗୋପୀଏ କପରି ଅଧିକ ସୁନ୍ଦରୀ
ଦେଖିବେ କୋଉଠି ପାଖରେ ରହି ।
ପିଲାଦିନ ସ୍ମୃତି ପୀୟୂଷୁ ମଧୁର
କେହି କି କୋଉଠି ପାରଇ ଭୁଲି,
ସେ ହଜା ସୁଖକୁ ଆଉ କାହା ସଙ୍ଗେ
ସତେ କଣ କେବେ ହୋଇବ ତୁଳି ?

ପଡ଼ଲେ ମନରେ ଗୋଟି ଗୋଟି ହୋଇ
ଗୋପ ବୃନ୍ଦାବନ ଯଶୋଦା ନନ୍ଦ,
ଶୋକ ଉଚ୍ଛୁଳିଲ ମନ ତରଳିଲା
ଭୁଷୁଡ଼ ପଡ଼ିଲା ଧଇର୍ଯ୍ୟ-ବନ୍ଧ ।
ମନକୁ ମନକୁ ପଶିଲା କାନରେ
ପିଲାଦିନର ସେ ମୋହନ ବଂଶୀ,
ବାଲ୍ୟ-ସ୍ମୃତିଯାକ ହୋଇଲେ କି ସତ୍ୟ
କୃଷ୍ଣ କାନମୂଳେ ଦେଲେ ସେ ଦଂଶୀ ।
ନାହିଁ ସେହି ବେଶ, ନାହିଁ ସେହି ବଂଶୀ
କାଳବଶୁଁ କରୁ ପଡ଼ିଛି ଖସି,
କୃଷ୍ଣଙ୍କ ମନରୁ ହସ ଖୁସି ସବୁ
ଯାଇଛି ଉଭେଇ ଝୁରନ୍ତି ବସି !
ଯମୁନାର ସେହି କଳ କଳ ନାଳ
ଲହଡ଼ି ଆଖିରେ ଗଲା ଚହଲି,
ଶ୍ରୀକୃଷ୍ଣଙ୍କ ମନେ ଧୈର୍ଯ୍ୟ ଦମ୍ଭ ଯେତେ
ଏକାବେଳକରେ ଗଲା ଦୋହଲି ।
କଦମ୍ବ ଗଛର ଗୋଟି ଗୋଟି ଫୁଲ
ଗଗନ ବକ୍ଷରେ ତାରକା ପରି,
ପ୍ରତି ନିମିଷରେ ଆଖି ଆଗେ ଆଗେ
ପବନ ହିଲ୍ଲୋଳେ ପଡ଼ିଲେ ପହଁରି ।
ତାହାର ଡାଳରେ ରଖିଥିଲେ ବାସ
ସ୍ମୃତି ନୟନରେ ରହିଲେ ଗୃହିଁ ।
ପ୍ରିୟ ଗୋପୀମାନେ ଯମୁନା ଗର୍ଭରେ
ଲାଜ ସରମରେ ଡାକନ୍ତି "ହାହି" ।
ଘନ ଶ୍ୟାମଳିଆ ଲତା କୁଞ୍ଜେ କୁଞ୍ଜେ
ଲୁଚକାଳି ଖେଳ ବଡ଼ ମଧୁର,
ଶରତ ଜୋଛନା ଅଧିକ ମଲ୍ଲିକା
ଗୋପ ରମଣୀଙ୍କ ଲାଲ ଅଧର ।

ଧବଳୀ ଶ୍ୟାମଳୀ ଲାଲ ଆଉ କାଳୀ
ଜାହ୍ନବୀ ଯମୁନା ଗାଈଙ୍କ ନାମ,
ସ୍ମୃତି-ସାଇତର ଅମୂଲ୍ୟ ସମ୍ପଦ
ଭୁଲିବା ମନର ସ୍ୱରଗ ଧାମ ।
ଯମୁନା ନଈର ଜଳ ଝରଧାର
ଦୁଇ ପାଖେ ଦୁଇ ବାଲୁକା ଶେଯ,
ରୂପା ଜରି ପରି ଝଲମଲ କରେ
ପଡ଼ିଲେ ଜହ୍ନର ସଉର ତେଜ ।
ଖରା ମଉଳିଲେ ବାଲି ଶୀତଳଇ
ଚରଚର ହୋଇ ମୋହର ପାଇଁ,
ସହଜ ଶୀତଳ କାଚ କେନ୍ଦୁ ପାଣି
ବସିଲିଣି ତେଣେ ମୋତେ ହିଁ ଚାହିଁ ।
ବେଲବୁଡ଼ ବାଆ ଦେହକୁ ସୁହାଏ
କ୍ଳାନ୍ତ ପରେ ନିଦ ଆସଇ ମାଡ଼ି,
ଉହକ ବଜାଲ ସବୁ ଶ୍ରମ ଝାଳ
ଅନାଉ ଅନାଉ ପଳାଏ ଗୁଡ଼ି ।
କାଳିନ୍ଦୀ ଥରେ ଯେବେ ବଇଁଶୀ ବଜାଏ
ଗୋପୀମାନେ ମିଳି ଆସନ୍ତି ଧାଇଁ,
ଘରଦ୍ୱାରସବୁ ପାସୋରି ପକାନ୍ତି
କାହାରି ଆକଟ ମାନନ୍ତି ନାହିଁ ।
ସବୁ ଗୋଟି ଗୋଟି ପଡ଼ିଲା ମନରେ
ବିରହ ଦାଉ ତ ହେଲାନି ସହି,
ମୁଁ ଖାଲି ଏକାକୀ ଯିବି ବଇକୁଣ୍ଠେ
ଗୋପ ଗୋପୀ ସବୁ ଯିବେ କି ରହି !
ଭକ୍ତର ପ୍ରେମର ନାହିଁ କିଛି ଶକ୍ତି
ପ୍ରେମ-ଭକ୍ତି କେହି କରିବେ ନାହିଁ,
ପ୍ରେମ ବିନା ଭବ ଜଡ଼ ହୋଇଯିବ
କାହିଁକି ଆସିଲି ମରତେ ଧାଇଁ ?

ଦୋଷୀଏ ପାଇଲେ ମୋହର ସାଯୁଜ୍ୟ
ଭକତ ରହିବେ ଦୂରରେ ପଡ଼ି,
ମୋର ଅସ୍ଥି, ମାଂସ, ମଜ୍ଜାରେ ସେମାନେ
ଦିବସ ରଜନୀ ଅଛନ୍ତି ଜଡ଼ି ।
ମୋହର ସରବ ତାଙ୍କର ସରବ
କାହା କାମ ବାକି ରହିବ ନାହିଁ,
ଧରା ଧର ହୋଇ ଯିବୁ ବଇକୁଣ୍ଠେ
ମରତବାସୀଏ ଦେଖିବେ ଗୃହିଁ ।
ଦୂର ବ୍ୟବଧାନ ଘୁଞ୍ଚାଇଣ ଦେବା
ଗୋପ ଓ ଦ୍ୱାରକା ରହିବେ ପାଖେ,
କେହି ତ କାହାକୁ ଘୁଞ୍ଚ ପାରିବୁନି
ମିଳି ମିଶିଯିବୁ ଏଇଠି ଆସେ ।
ଯାଏ ବରୁଣଙ୍କୁ କହଇ ଆଦରେ
ଥାନ ଖଣ୍ଡେ ପୁଣି ଦେଉ ସେ ଛାଡ଼ି,
ବିଶ୍ୱକର୍ମା ଦେଉ ତାହାର ଉପରେ
ସୁନ୍ଦର ଗୋଟିଏ ନଗରୀ ଗଢ଼ି ।
ଦ୍ୱାରକା ପରି ସେ ହୋଇବ ସୁନ୍ଦର
ସେଇଠି ରହିବେ ଗୋପ ଓ ଗୋପୀ,
ଦୀର୍ଘ ବିଚ୍ଛେଦରୁ ବିରହେ ସଢ଼ିଲେ
ସନ୍ତାପ ତାପରେ ହେଲେଣି ତାପି ।
ବିରହ ଅନଳେ ପୋଡ଼ି ହୋଇ ହୋଇ
ଅରଜିଲେଣି ତ ବହୁତ ପୁଣ୍ୟ,
ନିଷ୍ପାପ ଜୀବନ ନିଷ୍କାମ କରମ
ସାଧି କରିଲେଣି ତପସ୍ୟା ପୂର୍ଣ୍ଣ ।
ଏଇ ଶରୀରରେ ଏଇ ଦ୍ୱାରକାରେ
ଗୋପ ଗୋପୀ ସଙ୍ଗେ ହୋଇବ ଏକା,
ଯାଦବ ଯାଦବୀ ସଙ୍ଗେ ଗୋପ ଗୋପୀ
ହସି ଖେଳିକରି କରିବେ ଦେଖା ।

ରହସ୍ୟେ ଭୂରଇ ଦେବ ମୁଁ ନଗରୀ
ଗୋପ ଓ ଗୋପୀଙ୍କୁ ନିକଟ କରି,
ଏହି ମରତର ମାଟି ଗୋଡ଼ ପରେ
ସରଗର ଶିରୀ ଯାଉ ସଞ୍ଚରି ।
ରହସ୍ୟ ଦ୍ୱାରକା ବୋଲି ପରିଚିତ
ହୋଇବ ନଗରୀ ରହସ୍ୟମୟୀ,
ରହନ୍ତୁ ସେଇଠି ଟିକଏ ସୁଖରେ
ଜୀବନଟାଯାକ ହେଲେଣି ଦହି ।
ତାଙ୍କୁ ନ ଦେଖି ମୋ ଆଖି ପୋଡ଼ିଲାଣି
ଦିଅଇ ଏଥର ଅଞ୍ଜନ ବୋଳି,
ବୃନ୍ଦାବନ ଲୀଳା କରେ ଆଉ ଥରେ
ପ୍ରଭୃତି ଜୀବନେ ସଂସାରୀ ଭଳି ।
ଗୋପେ ରାସ ରଚି କରିଲି ରହସ୍ୟ
ମୋହନ ମୁରଲୀ ବଜାଇ କରି,
ଏଠେଇ ରହସ୍ୟ ହେବ ଭିନ୍ନ ରୂପ
ମରଣେ ମିଳନ ଯିବ ସଞ୍ଚରି ।
ଗୋପ ଗୋପୀ ସଙ୍ଗେ ଯାଦବ ଯାଦବୀ
ମିଳିବେ ମିଶିବେ ସରଗ ପଥେ,
ଗୋପ ରାସଲୀଳା ଦ୍ୱାରକା ସଂସାର-
ଲୀଳା ଦେଖାଦେବ ଦେବତା ରଥେ ।
ବାଜିବନି ବଂଶୀ ଗାଇବନି ପିକ
ଫୁଟିବନି ଫୁଲ, ଶୁଭିବ ରୋଳ
ମହା ଭୟଙ୍କର ଦ୍ୱାରକା ଗ୍ରାସିବ
କରାଳ ସାଗର ତରଙ୍ଗମାଳ ।
ମୋର ଆଗେ ଆଗେ ଯିବେ ସେ ସ୍ୱରଗେ
ନେବେ ମୋତେ ଅଭିସାରିଣି ପରି,
ଯିବି ମୁଁ ପଛରେ ବଇକୁଣ୍ଠପୁରେ
ତାଙ୍କ ପ୍ରେମଭକ୍ତି ନିଶାଣ ଧରି ।

ମାନଙ୍କ ଘୋର ଯିବ ହାହାକାର
ଦିବ୍ୟ ଦେବ ବପୁ ଧରିବୁ ଗର୍ବେ,
ସେ ରୂପ ପଛରେ ଲୁଚି ପଡ଼ିବନି
ଯେଣ୍ଠା ଘରେ ଯିଏ ପଶିବୁ ସର୍ବେ ।
ଯୁଗ ସରିଯିବ କଳି ପ୍ରବେଶିବ
ମରତ ବେଶର ଯିବ ବଦଳି,
ସତ୍ୟ, ନ୍ୟାୟ, ଧର୍ମ କିଛି ରହିବନି
ଦୁଷ୍ଟ ଅତ୍ୟାଚାର ପଡ଼ିବ ବଳି ।
ଯିବ କିଛି ଦିନ ଆହୁରି ଆସିବି
ଶଙ୍ଖ, ଚକ୍ର, ଗଦା ଧରିବି ନାହିଁ,
କାଳିଆ ରୂପରେ କଳା ଘୋଡ଼ା ଚଢ଼ି
ଖଣ୍ଡାଧରି ପାପୀ ମାରିବା ପାଇଁ ।
ଏହିପରି ମୋର ଚକ୍ରନେମି କ୍ରମେ
ଯା ଆସ, ଆ ଆସ ସରିବ ନାହିଁ,
କିଏ କହେ ମୋର ନାହିଁ ଜନ୍ମ ମୃତ୍ୟୁ ?
ମରତେ ଆସଇ ମରିବା ପାଇଁ ।
ମରଣେ ଅମୃତ ଜୀବନେ ଗରଳ
ଦୁହିଁଙ୍କ ମିଳନ ବଡ଼ ମଧୁର,
ଏଇ ଯୋଡ଼ିକରେ ଅଛି ସବୁ ରସ
ରସ ରଚିବାକୁ ମିଳେ ପ୍ରଚୁର ।
ଗରୁଡ଼କୁ ବସି ସୁମରଣା କଲେ
ବିନତାନନ୍ଦନ ଆସିଲା ଖରେ,
ଶ୍ରୀକୃଷ୍ଣଙ୍କ ପାଶେ ହାତଯୋଡ଼ି କରି
ପ୍ରଣିପାତ କଲା ପଡ଼ି ପୟରେ ।
ଶ୍ରୀକୃଷ୍ଣ କହିଲେ ଚାଲ ଟିକେ ଯିବା
ବରୁଣ ପାଖକୁ ସିନ୍ଧୁ ସମୀପେ,
କଥା ସରି ହୋଇ ଫେରିବା ଏଇନା
ତୁମେ ବାହୁଡ଼ିବ ରମ୍ୟକ-ଦ୍ୱୀପେ ।

ଶ୍ରୀକୃଷ୍ଣଙ୍କୁ ନେଇ ଉଡ଼ଲ ଗରୁଡ଼
ପହଞ୍ଚିଲ ଶୀଘ୍ର ସାଗର କୂଳେ,
ଗରୁଡ଼ ଆବେଗେ ଶ୍ରୀକୃଷ୍ଣ ଆହିଲେ
ଧ୍ୟାନରେ ବରୁଣ ଜାଣିଲେ ପୁରେ ।
ତର ତର ହୋଇ ସାଗରୁ ବାହାରି
ବିନମ୍ର ବଚନେ ପୁଚ୍ଛିଲେ ହସି,
"କାହିଁକି ଅସିଲେ ମୋ ପୁରେ କେଶବ
ଅନୁଗ୍ରହ କରି କହ ପ୍ରକାଶି ।"
ଶ୍ରୀକୃଷ୍ଣ କହିଲେ, "ଆଜ ଖଣ୍ଡେ ଥାନ
ଛାଡ଼ ଦିଅ ମୋତେ ବାରିଧି-ପତି,
ନଗରୀ ଗୋଟିଏ ଗଢ଼ିବି ତହିଁରେ
ଗୋପ ଗୋପୀ ସବୁ କରିବେ ବସ୍ତି ।"
ବରୁଣ ପାଳିଲେ କୃଷ୍ଣଙ୍କ ଆଦେଶ
ସରିଗଲେ, ଦ୍ୱୀପ ସୁନ୍ଦର କରି,
ନଗରୀ ଗୋଟିଏ ଗଢ଼ି ଦେଲେ ତହିଁ
ହେଣିବ ସୁନ୍ଦର ଦ୍ୱାରକା ପରି ।
ଶ୍ରୀକୃଷ୍ଣଙ୍କ ମନ ମାନିଲା ଦ୍ୱୀପରେ
ବିଶ୍ୱକରମାଙ୍କୁ କଲେ ସ୍ମରଣ,
ସରଗ ବିନ୍ଧାଣି ଆସିଲେ ଓହ୍ଲାଇ
କୃଷ୍ଣଙ୍କ ଚରଣ କଲେ ଦର୍ଶନ ।
ଶ୍ରୀକୃଷ୍ଣ କହିଲେ, "ଦେବତାଙ୍କ ଶିଳ୍ପୀ !
ଅନୁଗ୍ରହ କରି ଆଉଥରେ,
ଗଢ଼ି ଦିଅ ଏଠି ନଗରୀ ଗୋଟିଏ
ଯତନ କରିଣ ବଡ଼ ଭକତରେ ।
ଦ୍ୱାରକାପୁରରୁ ହେବ ନାହିଁ ଊଣା
ଶୋଭା ସମ୍ପଦରେ ହୋଇବ ସମ,
ଗୋପ ଗୋପୀ ଆସି ରହିବେ ଏଇଠି
ପାସୋରିବେ ଯେତେ ଗୋପଭୁବନ ।

ଫୁଲ ଫଳ ଗଛେ ଉଦ୍ୟାନଗୁଡ଼ିଏ
ରଚିବ ଏଇଠି ସୁନ୍ଦର କରି,
ସାଗର ସଲିଳ- ଛୁଆଁ ଶୀତାନିଳ
ଶୀତଳିବ ତାକୁ ସଦା ସଂଚରି ।
ଏତେ କଥା କଲେ କେହି ଜାଣିଲେନି
ବଳରାମ ମଧ୍ୟ ଜାଣିଲେ ନାହିଁ,
ଆଉ କାହା କଥା କହିବା କାହିଁକି
ସବୁ ରହିଲଣି ଭବିଷ୍ୟ ପାଇଁ ।
ବାହୁଡ଼ିଲେ ଘରେ ହସି ହସି କରି
ରୁକ୍ମିଣୀ ଦେଖିଲେ ହରଷ ମୁହଁ,
ଗେହ୍ଲେଇ ହୋଇଣ ପଚାରିଲେ ଆସି
କାହିଁକି ହରଷ ଟିକିଏ କହ ।
ସେ ହସରୁ ଟିକେ ଭାଗ ଦେବ ନାହିଁ ?
ଦେହ ସିନା ଭିନ୍ନ ପ୍ରାଣ ତ ଏକା,
ହାତଯୋଡ଼ି କରି ପଚାରୁଛି ପରା
କପଟ ନ କରି କରୁଣା ଦେଖା ।
ତୁମର ହସରୁ ଖିଅ ମିଳେ ନାହିଁ
ଯେତେ ଦରାଣ୍ଡିଲେ କୋଉଠି କାହିଁ ।
ସତ କରି କହ ଏ ହସରେ ସତେ
ଟିକିଏ ହେଲେ ବି କପଟ ନାହିଁ ।
ମାୟାରେ ଭୁଲାଇ ରଖିଛ ଜଗତ
ଅବଳା ଭୁଲାଇ କି ପଉରୁଷ ?
ଦୁନିଆ ଆଗରେ ଆମେ ତ ପ୍ରକୃତି
ତୁମେ ଆମମାନଙ୍କର ପୁରୁଷ ।
ପ୍ରକୃତି ପୁରୁଷ ନୁହନ୍ତି ତ ଭିନ୍ନ
ଗୋଟିଏ ଶରୀର ଗୋଟିଏ ପ୍ରାଣ,
ସେହି ଯୋଡ଼ିକର ସଦା ଅବସ୍ଥାନ
ବିଶ୍ୱବ୍ରହ୍ମାଣ୍ଡର ସୃଷ୍ଟି କାରଣ ।

କହ୍ନୁ ନାଥ ! ତୁମେ          ମିଶି ମିଶ ନାହିଁ
ଗୁଡ଼ ରହ୍ସପାର କପଟ ସତେ,
ମୋହଠାରୁ ତୁମେ          ସଂସାରୁ ଅଲଗା
ଏ କଥା ବା କଏ ଯିବ ପରତେ ?
ଆଉ କେତେ ଥର          କହିବୁ ତୁମକୁ
ଗୋପୀଙ୍କ ସଙ୍ଗରେ ରାଧାକୁ ଦେଖା,
କାହିଁ କି ଶୁଣିବ,          କାହିଁ କି କରିବ,
କୋଉ ଖରପାଟରେ ଆମେ ବା ଲେଖା ।
ଆଜି ତ ସକାଳୁ          ନ ଥିଲ ନଅରେ
ଗୋପ ବୃନ୍ଦାବନେ ଯାଇଥିଲ କି,
ଗୋପୀଙ୍କ ଗହଣେ          ରାଧିକାକୁ ଧରି
କୁଞ୍ଜବନେ ପୁଣି କେଳି କଲ କି ।
ବଇଁଶୀଟି କାହିଁ          ଲୁଚାଇ ଥୋଇଲ
ଦେଖେ ଦେଖେ ଟିକେ କପଟ ବଂଶୀ,
ମୁଁ ଥରେ ଟିକଏ          ତୁମ ପାଇଁ ଫୁଙ୍କେ
ତୁମେ ଶୁଣ ଥରେ ଏଇଠି ବସି ।
ବାଉଁଶ କଣିରୁ          କେତେ କରାମତି
କଣ୍ଢୁ ଭୂଆସୁଣୀ ଆଣଇ ଟାଣି,
ବଇଁଶୀ ବାଜିଲେ          ଉଜାଣି କୁଆଡ଼େ
କଳ କଳ ବହେ ଯମୁନା ପାଣି ।
ସେଥିପାଇଁ କଂଣ          ସାଗର ବକ୍ଷରେ
ସବୁବେଳେ ଉଠେ ଏତେ ଲହରୀ,
କାହିଁ କି ତ ଦିନେ          ଆମେ ଏତେ ନାରୀ
କାହାରିକୁ ଧରି ନାହିଁ ପହରି ।
ସତେ ଦିନେ ବସି          ସାଗର ବେଳାରେ
ଝାଉଁ ବଣେ ବସି ବଜାଅ ବଂଶୀ,
ଆମେ ସବୁ ଯେତେ          ଝରିଆ ତୁମର
ଦେଖିବୁ ଧାଇଁବୁ କପଟ ରସି ।

ଆମ ରସରେ କ ସ୍ୱସ ହେବ ନାହିଁ ?
ମୂନେଇଁ ଗୃନ୍ଦ କ ଉଇଁବ ନାହିଁ,
ହେନ୍ତାଳ ବଣ ତ ହାଜି ଯାଉ ଏଠି
କୁଞ୍ଜ ସଜାଇବା ରହସ୍ୟ ପାଇଁ ।
ସାଗର ସେପାଖ ରହିଛି ବସନ୍ତ
ମନକୁ ଆସିବ ଏଠାକୁ ଧାଇଁ,
କୋଇଲି କୋଉଠି ଲୁଚିକରି ଅଛି
ଦଉଡ଼ି ଆସିବ ସଙ୍ଗୀତ ଗାଇ ।
ମଲ୍ଲୀ ଫୁଲଟାକୁ ପଚାରୁଛି କିଏ
ପାରିଜାତ ପର ଦୁଆରେ ଅଛି,
ତାକୁ ନେଇ କ'ଣ ସ୍ୱସ ହେବ ନାହିଁ
ବଣୁଆ ଫୁଲରେ ଖେଳିବା ଛି ଛି ।
ଅନନ୍ତ ସାଗର ପାଖରେ ଯାହାର
ସେ କିଆଁ ଖୋଜିବ ଯମୁନା ପାଣି,
ମଳ ଦରପଣ ଆଗରେ ପଡ଼ିଛି
ମୁହଁ ନ ଦେଖି କେ ହେବ ମ କାଣୀ ?
କୋଉଠି ଗୋଟାଏ ନଈଟା କୂଳରେ
ଉଠିଛି ଗୋଟାଏ କଦମ୍ବ ଗଛ ,
ଯୋଉଠି ନଡ଼ିଆ ଗଛ ମାଳ ମାଳ
ତା ସଙ୍ଗେ ବଣୁଆ ଗଛକୁ କଛ ।
ଓହୋ ! କଦମ୍ବର ଡାଳେ ରଖିଥିଲ
ଗୋପୀମାନଙ୍କର ପିନ୍ଧା ବସନ,
ନିର୍ଲଜ୍ଜୀ ଗୋପୀଏ ଲାଜ ପରିହରି
ତୁମକୁ ଦେଖାଇ ଥିଲେ ଜଘନ ।
ସେଠି ଗାଈ ଗୋରୁ ' ଏଠି ହାତୀ ଘୋଡ଼ା
ତେବେ ବ ତୁମର ମାନୁନ ମନ,
ଗଉଡୁଣୀ 'କ'ଣ ସତରେ ସୁନ୍ଦରୀ
ମଉଳଇ ନାହିଁ ତାଙ୍କ ଯୌବନ ?

କେଉଁ କାଳେ ତାଙ୍କୁ ଦେଖିଥିଲ ସିନା
ଆଜି ବି ସେ କ'ଣ ଅଛେ ଯୁବତୀ,
ପୁଅ ନାତି ଛ୍ୟଜ ତୁମକୁ ଭଜନ୍ତି
ମଲ୍ ମୋର ଗଉଡ଼ୁଣୀ ଅସତୀ ।
ତାଙ୍କୁ ଦେଖିବାକୁ କହିଲୁଣି କେତେ
ଦେଖାଇବ ନାହିଁ ଲାଜ ମାଡ଼ୁଛି,
ବୁଢ଼ୀ ଗଉଡ଼ୁଣୀ କି ଶୋଭା ବା ଥିବ
ଜଳ ଜଳ ହୋଇ ସବୁ ଦିଶୁଛି ।
ହାତେ ବାହି ଖଡ଼ୁ କଂସା ପିତଳର
ନାକେ ଖଣ୍ଡି ଗୁଣା ଗୋଟାଏ ପାଖେ,
ଫଙ୍କଣି କଉଡ଼ି ବଦ କହୁଣୀରେ
କାନରେ ଫାଶିଆ ନାଆଁକୁ ଧାପେ ।
ଚିତାକୁଟା ବାହା ଗୁଣ୍ଡ ପୁଣି ପେଣ୍ଡ୍ରା
ସେଥିରେ ସୌନ୍ଦର୍ଯ୍ୟ ପଡ଼େ ଉକୁଟି,
ମଲ୍ ଗଉଡ଼ୁଣୀ ହାଣ୍ଡୁଆଣୀଗୁଡ଼ା
କେତେ ଯୁଗର ସେ ବୁଢ଼ୀ ସୁକୁଟୀ ।
ହାଟେ ବାଟେ ପଡ଼ି ଦହି ଦୁଧ ବିକି
ଜୀବିକା କରନ୍ତି ବାରଟି ପଣି,
କି ମାନ ମହତ ସେଗୁଡ଼ାଙ୍କର ଲୋ
କାହିଁକି ବା ସତେ ଯାଉଛ ରସି ।
ସବୁ ଶୁଣି ଶୁଣି ହସିଲେ ଶ୍ରୀକୃଷ୍ଣ
କହିଲେ, "ସତାର ସ୍ମରଟି ଦିନ,
ଦେଖିବ ଗୋପୀଏ କପରି ସୁନ୍ଦରୀ
ଚମ୍ପା ଫୁଲ ହୋଇଯିବ ମଳିନ ।
ରାଧା ରୂପଶିଶି ସବୁଠୁ ସୁନ୍ଦର
ତରଳିବ ଦେଖି ସତୀଙ୍କ ମତି,
ସଂସାରୀଙ୍କ କଥା କିଏ, ପଚାରୁଛି
ତପସ୍ୟା ବରଜ ଧାଇଁବେ ଯତି ।

ସରଗ ରାଇଜ ଉର୍ବଶୀ ମେନକା
ନନ୍ଦନ-ବନର ସେ ପାରିଜାତ,
ତ୍ରେତୟା-ଯୁଗର ରାମଙ୍କ ବନ୍ଧୁ ତା
ଦଶଶିର ହେଲା ତା ପାଇଁ ହତ ।
ମାନ ସରୋବର ନୀଳ ଉରସରେ
ରାଧା ଗୋପୀମାନେ ସରସ ପଦ୍ମ,
ଶରତ-କାଳରେ ଅମଳ ଗଗନେ
ସେଗୁଡ଼ିକ ସବୁ ନକ୍ଷତ୍ର ବୃନ୍ଦ ।
ତାଙ୍କ ଶୋଭା ଶିଖା ମରତର ନୁହେ
ସମ୍ଭବେ ସରଗ ରାଇଜ ଦେଶ,
ମାନବୀ ହୋଇଣ ଜନମି ଅଛନ୍ତି
ଅଙ୍ଗରେ ଅଙ୍ଗରେ ସ୍ୱର୍ଗୀୟ ଛବି ।
ତାଙ୍କ ଯଉବନ ଉକୁଡ଼ିଇ ନାହିଁ
ସବୁବେଳେ ସଜ ପୁଣି ସରସ,
ଅଙ୍ଗ ସଉରଭ ମହକଇ ନାହିଁ
ରଙ୍ଗ ସଜ ଗଞ୍ଜି କଳ ଉରସ ।
ବିଶ୍ୱକର୍ମା ଗଢ଼ି- ଦେଲେ ନଗରୀଟେ
ଆକାର ତାହାର ଏମନ୍ତି ପରି,
ଆରବ ସାଗର ନୀଳ ସ୍ୱଚ୍ଛ-ବାରି
ରହିଅଛି ତାକୁ ସବୁଠି ଘେରି ।
ମଝିରେ ତାହାର ପଣାପାଳି ପରି
ପଡ଼ିଛି ସୁନ୍ଦର ରାସ୍ତାର ଛକ,
ଯତନ କରିଣ ଗଢ଼ି ଦେଇଅଛି
ସମ ବ୍ୟବଧାନ ସବୁଠି ରଖି ।
ଯେତେ ଘର ସବୁ ଧବଳ ସଉଧ
ପ୍ରବାଳ ରଙ୍ଗରେ ଧୋଇଛି ଛାତ,
ନୀଳ ମରକତ ତାହାର ମଝିରେ
ସ୍ୱର୍ଣ୍ଣ କାରିଗରୀ ଅତି ବିଚିତ୍ର ।

ମନ୍ଦିରେ ମନ୍ଦିରେ ସବୁଜ ଉଦ୍ୟାନ
ଉଦ୍ୟାନେ ଉଦ୍ୟାନେ ନୀଳ ସରସୀ,
ଚକ୍ରବର୍ତ୍ତୀ ରାଣୀର ମୁଖ ଦରଶନେ
ସ୍ୱଚ୍ଛ ନିରମଳ କାଚ ଆରସି ।
ରାସ୍ତା କଡ଼େ କଡ଼େ ଫୁଲ ଫଳ ଗଛ
ଫୁଲରେ ଫଳରେ ହୋଇଛି ପୂର୍ଣ୍ଣ,
ନନ୍ଦନ-ବନର ଫୁଲଣିଆ ମନ
ତା ଶୋଭା ପାଖରେ ହେଉଛି ଚୂର୍ଣ୍ଣ ।
ଶ୍ରୀକୃଷ୍ଣ ଦେଖିଲେ ଅପୂର୍ବ ନଗରୀ
ଶୋଭା ସଉନ୍ଦର୍ଯ୍ୟେ ମାନିଲା ମନ,
ଗୋପ-ଗୋପୀଙ୍କର ସୁଯୋଗ୍ୟ ହୋଇଛି
ଭୁଲିଯିବେ ଏଠି ବୃନ୍ଦାବନ ।
ଦ୍ୱାରକା ପାଖରେ ରହସ୍ୟ ଦ୍ୱାରକା
ଇନ୍ଦ୍ରପୁର ପାଶେ ଅଳକା ସରି,
ରାବଣ ରାଇଜ ସ୍ୱର୍ଣ୍ଣଲଙ୍କା କବା
ସାଗର ରହିଛି ତାହାକୁ ଘେରି ।
ଯାଏ ମୁଁ ଏଥର ଗୋପ ନଗରକୁ
ଆଣେ ସବୁ ଗୋପ-ଗୋପୀଙ୍କୁ ଡାକି,
ମୋହର ନଗରୀ ଦେଖନ୍ତୁ ତାହାଙ୍କୁ
ତାଙ୍କ ଇଚ୍ଛା କିଆଁ ରଖିବି ବାକି ?
ନିଜେ ନିଜେ ସବୁ ଭୁଲାଭୁଲି ହୋଇ
ଛୁଟାଇ ଦିଅନ୍ତୁ ମନୁଁ ଗରବ,
ରାଧା ରୂପ ଦେଖି ହୁଅନ୍ତୁ ଲଜ୍ଜିତ
ତାଙ୍କ ଅହଂ ଭାବ ହେଉ ନୀରବ ।
ରୁକ୍ମିଣୀଙ୍କୁ ଯାଇ କହିଲେ ହରଷେ
କାଲି ପ୍ରଭାତେ ଯିବି ମୁଁ ଗୋପପୁର,
ଆଣିବି ଗୋପୀଙ୍କୁ ଦେଖିବ ଗୋ ସବୁ
ଅଭିମାନ ମନୁଁ କରିବ ଦୂର !

———

# ଗୋପଗମନ ପଥେ

ଦାରୁକକୁ ଡାକି କହିଲେ ଶ୍ରୀକୃଷ୍ଣ
ରଥ ସଜକର କାଲି ସକାଳେ,
ଯିବି ମୁଁ ଗୋପକୁ ସନ୍ତୋଳିବା ପାଇଁ
ମୋର ପ୍ରିୟ ବନ୍ଧୁ ଗୋପୀ ଗୋପାଳେ ।
ଅକ୍ରୂର ଉଦ୍ଧବ ଯିବେ ମୋ ସଙ୍ଗରେ
ନନ୍ଦ ଯଶୋଦାଙ୍କୁ କରିବୁ ଦେଖା,
ବହୁକାଳ ପରେ ଯାଉଛୁ ଗୋପକୁ
ମନ ମାନୁ ନାହିଁ ଯିବାକୁ ଏକା ।
ଆଜ୍ଞା ପରମାଣେ ଦାରୁକ ଚଳିଲା
ରଥ ମଣ୍ଡିଦେଲା ବିଚିତ୍ର କରି,
ନୀଳ, ଧଳା, କଳା ବନାଉଛି ଘେରି
ମଣ୍ଡିଲା କନକ ରଜତ ଜରି ।
ଅକ୍ରୂର ଉଦ୍ଧବ ସମୀପକୁ ଯାଇ
ଶ୍ରୀକୃଷ୍ଣଙ୍କ କଥା ଦେଲା ଜଣାଇ,
ଘୋଡ଼ାଶାଳେ ପଶି ବାଛିଦେଲା ବାଜି
ତାଙ୍କ ଦେହପାଆ କୁଶଳ ଚାହିଁ ।
ନିଶି ପ୍ରଭାତିଲା କୁକୁଡ଼ା ଡାକିଲା
କାଉଏ ରାବିଲେ ଗଛରେ ବସି,
ରବି ଉଦେ ହେଲା ସିନ୍ଦୂର ଫାଟିଲା
କୋଇଲି ଗାଇଲା ପଞ୍ଚମେ ରସି ।

ଉଷା ପ୍ରକାଶିଲା    କଞ୍ଜ ବିକଶିଲା
ଅରୁଣ କିରଣ ଧୋଇଲା ଧରା,
ଧୀରେ ଧୀରେ ହୋଇ    ବଢ଼ିଲା ଦିବସ
ଦେହକୁ ସ୍ୱାହିଲା ମଧୁର ଖରା ।
କାକର ଛୁଡ଼ିଲା    ଦଳ ଦଳ ହୋଇ
ଭଅଁର ଉଡ଼ିଲେ କୁଣ୍ଡଳ ବାନ୍ଧି,
ଶଶାଙ୍କ ବୁଡ଼ିଲା    ଶେଫାଳୀ ଝଡ଼ିଲା
କୁମୁଦିନୀ ସରେ ବସିଲା କାନ୍ଦି ।
ଦିନଗନ୍ଧା ଫୁଲ    ଫୁଟିଲେ ଖୁସିରେ
ସୁଗନ୍ଧ ସୌରଭ ଧାଇଁଲା ଛୁଟି,
ମଳୟ ମରୁତ    ଲୁଟି ଲୁଟି କରି
ଅଞ୍ଚଳେ ପୂରାଇ ନେଲା ତା ଲୁଟି ।
ବାଣ୍ଟି ବୁଣ୍ଟି ଦେଲା    ଅକୁଣ୍ଠ ଚିତ୍ତରେ
ଯାହାକୁ ଭେଟିଲା ଆଗରେ ତାର,
ଏ ନିଃସ୍ୱାର୍ଥ ଦାନ    ଦେଖି ବା କାହିଁକି
ପବନକୁ କିଏ କହିବ ଚୋର ?
ଚୋର ନାଆଁ ଟାଏ    ଅରଜିଲା କିନ୍ତୁ
ସକଳେ କହିଲେ ଚୋରା ବସନ୍ତ,
ସର୍ଜନା ବିଧାନ    ରହିଛି ତହିଁରେ
ତା ଚୋର ବୃତ୍ତିରେ ଅଛି ମହତ୍ତ୍ୱ ।
ପୁଷ୍ପ ଗର୍ଭବତୀ    ହୁଅନ୍ତା ନାହିଁ ତ
ଗଛଲତା ବଂଶ ବଢ଼ନ୍ତା ନାହିଁ,
ଛୁଆଟିଏ ପାଇଁ    ଆକୁଳ ଆଗ୍ରହେ
ବୃନ୍ତରେ କେବଳ ବସନ୍ତ ଚାହିଁ ।
କୋଉଠେଇ ଥିଲା    ଦୌଡ଼େଇ ଆସିଲା
ପାଉଁଶିଆ ହୋଇ କୁହୁଡ଼ି ବାରି,
ବସନ୍ତ କାଳର    ବାସନ୍ତୀ ଉତ୍ସବେ
ମାତିଦେଲା ଆସି ଫଗୁ ପିଚ୍‌କାରି ।

ଫଗୁ ବୋଳା ହୋଇ ଆସିବାରୁ କଣ
କହନ୍ତ ତାହାକୁ ଫଗୁଣ ମାସ,
ସବୁ ଜୀବ-ଜନ୍ତୁ ପୁଲକାଇ ହଏ
ରଚଯାନ୍ତ ସବୁ ବସନ୍ତ ରସ ।
ଚୂତ ମୁକୁଳର ଦେହ ସହ୍ମଳନ
ଉଦୁ ଉଦୁ କର ଜଳନ୍ତ ପଡ଼,
କଳାକାଠ ପର ହଶିଲ ଶଗୀର
ଧୂଳ ଶେଯପରେ ପଡ଼ିଲ ଝଡ଼ ।
କୁହୁଡ଼ ପାଣିରେ ଗୋଳହୋଇ କର
ଥାଏ କ କୋଉଠି ଦାରୁଣ ନିଆଁ,
ନ ହେଲେ କାହିଁକ ସେ ପୋଡ଼ ମରନ୍ତା
ବଧାତାର ଏତେ ଅମୀଷ୍ଟ କିଆଁ ।
ସଂସାରଟା ଯେବେ ଶୀତେଇ ଉଠଇ
କେବଳ ବଉଳ ମରଇ ଜଳ,
ପଡ ବରହରେ ବରହିଣୀ ନାରୀ
ପୋଡ଼ମରେ ସିନା ଏହାର ଭଳ !
ହସି ହସି କର ବାହାରଲେ କୃଷ୍ଣ
ଆଗେ ଆଗେ ନାରୀ ଫୁଙ୍କନ୍ତ ଶଙ୍ଖ,
ଟଳେ ହୁଳହୁଳ ଉଛୁଳ ପଡ଼ଇ
କୃଷ୍ଣ ଦରଶନୁ ଭୁଟିନ ରଙ୍କ ।
ଚନ୍ଦନ ଚର୍ଚ୍ଚିତ ନୀଳ ତନୁଟିଏ
କଟି ଦେଶେ ପୀତ ବସନ ଶୋହେ,
କନ୍ଧ ଉତ୍ତରୀୟେ କୃଷ୍ଣ ନାମାବଳ
ପୀତ ବସନ ସେ ନୟନ ମୋହେ ।
କରେନାହିଁ ବଂଶୀ କଅବା ପାଞ୍ଚଣ
ସେ ବେଶ ଏଇନା ପଡ଼ୁଛୁ ଦିଶି,
ଗୋପ ବୃନ୍ଦାବନ ବେଶ ସିନା ସିଏ
ଦ୍ୱାରକାରେ କିଆଁ ରହନ୍ତା ସେଠି ।

ନାହିଁ ଶଙ୍ଖ ଚକ୍ର ଗଦା ଆଉ ପଦ୍ମ
ସକଳ ବେଶଟି ପାଉଛି ଶୋଭା,
ରୂପ ମନୋହର ଶ୍ୟାମଳ ସୁନ୍ଦର
କଣ୍ଠ ବନମାଳ ଲୋଚନ ଲୋଭା ।
ବାମରେ ଅକ୍ରୂର ଡାହାଣେ ଉଦ୍ଧବ
ମଝିରେ ଶ୍ରୀକୃଷ୍ଣ ଅଛନ୍ତି ବସି,
ରଥର ଗମନ ଚଞ୍ଚଳ ଚଞ୍ଚଳ
ଅଳନ୍ଦେ ପବନ ପଶୁଛି ରସି ।
ସୁଦାମା ନଗର ଦିଶେ ମନୋହର
ଲକ୍ଷ୍ମୀଙ୍କ ମନ୍ଦିର ପରାୟ ଛାଇ
ସୁନା ରାଜ ହଂସ- ଟିଏ କି ସତରେ
ଶାଳ ସରସୀରେ ଗୃହିଁଛି ଚାହିଁ ।
ଚଳଗଲା ରଥ ପୂରୁବେ ପୂରୁବେ
ଯୁନାଗଡ଼ ରାଜ୍ୟେ ପଶିଲା ଯାଇଁ,
ଯୁଧିଷ୍ଠିରଙ୍କର ଅଧୀନ ସେ ରଜା
ଭକତ ତାହାର ପାଣ୍ଡବଠାଇଁ ।
ରାଜକୋଟ ରଜା ବଡ଼ ଧାରମିକ
ତା ରଜ୍ୟ ସମ୍ପଦ ସମୃଦ୍ଧ ବଳ,
ଅକାଳ ମରଣ ପେଟର ତରକ୍ତ
ସୁଶାସନ ଯୋଗୁ ଯାଇଛି ଜଳ ।
କେଦାରେ କେଦାରେ ପକ୍ୱ ଶସ୍ୟ ରାଶି
ଫଳ-ଭରେ ଅଛି ଧରାରେ ଶୋଇ,
ଆଉ ଅଳ୍ପଦିନେ କୃଷୀକୁଳ ହସି
ଅମଳ କରିବେ ଖଳାରେ ଥୋଇ ।
ସୁରେନ୍ଦ୍ର ନଗର ଯାହାକୁ କହନ୍ତି
ମହା-ଶୂରେ ଗଢ଼ିଛନ୍ତି କଟକ,
ମହାଭାରତରେ ପାଣ୍ଡବ ସପକ୍ଷ
ତେଣୁ ତାର ନାହିଁ କେହିଁ କଣ୍ଟକ ।

ଧନ ଧାନ୍ୟେ ପୂର୍ଣ୍ଣ ଥାଏ ସବୁବେଳେ
ନ୍ୟାୟେ ରଜା ରାମଚନ୍ଦ୍ରଙ୍କ ପରି,
ପାଳୁଥାଏ ପ୍ରଜା ସୁଖରେ ଶାନ୍ତିରେ
ସେ ରାଜ୍ୟରେ ପଶିପାରେ ନା ଅରି ।
ଅହମଦାବାଦ ବାଣିଜ୍ୟର କେନ୍ଦ୍ର
ମଣି ମାଣିକ୍ୟରେ ହୋଇଛି ପୂର୍ଣ୍ଣ,
ଅଳକା ନଗରୀ କୁବେର ଭଣ୍ଡାର
ଧନ ଗଉରବ କରିଛି ଚୂର୍ଣ୍ଣ ।
ରାଜପୁତାନାର ସାର ରଜା ରାଜ୍ୟ
ଚିତୋର ନଗର ତା ରାଜଧାନୀ,
ସତୀତ୍ୱର ଟୀକ ଅଟେ ସେ ରାଜ୍ୟର
ସତୀ ଶିରୋମଣୀ ତାହାର ରାଣୀ ।
ସେ ରାଜ୍ୟର ରଜା ପରଜା ସକଳେ
ମହାବଳବାନ ଆବର ଶୂର,
ପାହାଡ଼ ପରିଖା ସଂରକ୍ଷିତ ରାଜ୍ୟ
ଅରି ପଶିପାରେ ନାହିଁ ସେ ପୁର ।
ଚିତୋର ଗଡ଼ର ନ୍ୟାୟ ଧର୍ମ ଥାଣ
ସତୀତ୍ୱର ପାଇଁ ପ୍ରସିଦ୍ଧି ତାର,
ରମଣୀ ସେ ରାଜ୍ୟେ କାଟି ଦେଇପାରେ
ରମଣ ବକ୍ଷରେ ରକତ ଧାର ।
ଯେତେ ନାରୀ ଏଠି ସକଳେ ପଦ୍ମିନୀ
ପାହାଡ଼ ବକ୍ଷରେ ଫୁଟନ୍ତି ସିଏ,
ସରସୀ ସଲିଳ ନଳିନୀ ନୁହନ୍ତି
କଅଁଳ ବୋଲିବା କହିବ କିଏ ?
ଭରତ ଆଶ୍ରମ ନନ୍ଦିଗ୍ରାମ ସମ
ଅରଣ୍ୟସଙ୍କୁଳ ଭରତପୁର,
ସ୍ୱାର୍ଥତ୍ୟାଗ ତାର ରାଜାର ଧରମ
ବାଟେ ଘାଟେ ତେଜ ଦେଇଛି ଝୁର ।

ଟିକଏ ଏ ପାଖ ସେ ପାଖ ହୋଇଲେ
କାଟି ହୋଇ ଯିଏ ମଶକ ଯିନା,
ରାଜ୍ୟ ସଜାଡୁଛି ଏପରି ବାଗରେ
ଚଳକ ଶାସନ ମନ୍ତ୍ରୀର ବିନା ।
ଦୂରରୁ ଦିଶିଲା ମଥୁରା ନଗରୀ
କଂସ ରାଜଧାନୀ ପଡ଼ୁଛି ଭାଙ୍ଗି,
ଆଖି ଛଳଛଳ ଅନାଇଁ ରହୁଛି
କାହ୍ନୁଙ୍କ ଏପରି କାହାକୁ ରାଗି ।
ସେଣ୍ଟ ମାଟି ବାଲି ପଡ଼ୁଛି ସେଠେଇ
ଜନ ପ୍ରାଣୀ ବୋଲି ଗୋଟିଏ ନାହିଁ,
ମଶାଣିଠା ପରି ବିକଟ ନୟନେ
ଚାରନକୁ ଖାଲି ରହୁଛି ଚାହିଁ ।
ଯାଦବମାନଙ୍କ ଘରଦ୍ୱାର ସବୁ
ଭାଙ୍ଗିରୁଜି ଯାଇ ରହୁଛି କାନ୍ଥ,
ନିର୍ଜନତା ଖାଲି ବସା ବାନ୍ଧିଅଛି
ଚରିଣ ବିହୀନ ମରଣ ଶାନ୍ତ ।
ଦେଖ ହେ ଅକ୍ରୂର ଏ ମଥୁରାପୁର
ମାନବର ଗୁଳି ସହିଲା ନାହିଁ,
ଅସୁର-ପ୍ରିୟ ସେ ଅସୁରଙ୍କ ଶିରୀ
ସବୁବେଳେ ଖାଲି ବସିଲା ଚାହିଁ ।
ନାହିଁ କଂସାସୁର ନାହିଁ ଜରାସନ୍ଧ
ସଂସାରୁ ଯାଇଛି ଅସୁର ଭୟ,
ତଥାପି ମଥୁରା ରାଗ ସରିନାହିଁ
ନର କେହି ଏଠି ହେଲେନି ଥୟ ।
ତୁମର ମୋହର ଏହି ଜନ୍ମଭୂଇଁ
ତୁଟାଇ ଦେଲା ସେ ଆମଠୁ ମାୟା,
ଦେଖ ଦେଖ ଥରେ କେଡ଼େ ଛକଲାଙ୍ଗ
ହୋଇ ପଡ଼ିଅଛି ଏହାର କାୟା ।

କେବେ ବା ସୁଦନ ଆସିବ ଏଦାର
ଆମକୁ ଆଦ୍ଧର ଦେବ ଏ କୋଳ,
ଆମ ମମତା ତ ତୁଟି ଯାଇନାହିଁ
ମନେ ଅନୁତାପ ଅନଳ ଘୋର ।
ଜନମ ଜନମ ଭୂଇଁ ପରା ଏକା
ଯାର ରୂପ ଦେଖି ମାଡ଼ୁଛୁ ଡର,
ଯାଦବ ବଂଶର କେହ୍ନ କେବେ କଣ
ଫେରି ଆସି ଏଠି କରିବ ଘର ?
ରଜାର ନଅର ହୋଇଛି ଅରଣ୍ୟ
ବଣ ପଶୁ ପକ୍ଷୀ କଲେଣି ବସା,
ଅକ୍ରୂର ଉଦ୍ଧବ କହ ଦେଖି ଅରେ
ବଦଳିବ ନାହିଁ ଯାର ଏ ଦଶା !
ଏହ୍ନଠାରେ ପରା ଥିଲା ତୁମ ଘର
ହୋଇ ସେଠି ଥିଲା ରାଜ ଉଆସ,
ଦେଖ ଦେଖ ଏବେ ମାଡ଼ ବସିଅଛି
ସବୁଆଡ଼େ ଖାଲି ଅରମା ଘାସ ।
ଏଇଠେଇ ଥିଲା ପରା ବନ୍ଦୀଘର
ଲୁହାର କଳଣୀ ଥିଲା ତ ଚଢ଼,
ଏଇନାଏ ସବୁ ମୁକୁଳା ପଡ଼ିଛି
କାନ୍ଥ ବାଡ଼ ସବୁ ପଡ଼ୁଛି ଝଡ଼ ।
ଯମୁନା ପାଖରେ ବହ୍ନ ଯାଉଥିଲା
କାହିଁକି ଯାଇଛି ଦୂରକୁ ଘୁଞ୍ଚି,
ମଥୁରା ପ୍ରତି ଯା ଥିଲା ତାର ମାୟା
ସବୁ କି ମନରୁ ଦେଇଚି ମୁଞ୍ଚି ?
ଏଇଠେଇ ଥିଲା ହାଟ ଓ ବଜାର
ବସୁଥିଲା ଦୁଧ ଦହ୍ନ ପସରା,
ଗୋପୀମାନେ ସବୁ ଗୋପପୁରୁ ଆସି
ବିକା କଣା କରୁଥିଲେ ହେ ପରା ।

ଦେଖ ଦେଖ ଏବେ ମଧୁବନ ଛୋଟା
ଗଛ ଲତା ସବୁ ହେଲେଣି ଖୁଣ୍ଟା,
ଗଛରେ ଗଛରେ ମାଡ଼ି ବସିଅଛୁ
ଅଜାଡ଼ିଆ କେତେ ମଲ୍ଲିଙ୍ଗ ଲଟା ।
କେତେ ଯୁଗ ଯୁଗ ବଢ଼ି ଯାଇଥିଲା
ଚଢ଼ିବା ପାଇଁକି ଏହି ନଗସ୍ତି,
ଅନାଉଁ ଅନାଉଁ ଭାଙ୍ଗିରୁଜି କରି
ନାରଖାର ହୋଇ ରହିଛି ପଡ଼ି ।
ମୂଳ ଏବେ ସବୁ ଯିବା ବୃନ୍ଦାବନ
କପର୍ଣ ଦିଶୁଛି ତାହାର ଶିସ୍ତି,
କଅଁଳ ଘାସରେ ସବୁଜ ସୁନ୍ଦର
ଚରୁଛନ୍ତି କି ଗାଈ ବାଛୁରି ?
ବଣରେ ବୁଦାରେ ଫୁଟିଛି କି ଫୁଲ
ଲତାରେ ଲତାରେ ହୋଇଛି କୁଞ୍ଜ,
ଗଛରେ ଗଛରେ ଫଳ ଅଛି କି କ
ସୁନ୍ଦର ମଧୁର କୋଇଲର ଗୁଞ୍ଜ ?
ବଣରେ ବୁଦାରେ ପଶୁଛନ୍ତି କି
ଚରି ଚରି କରି ସାନ ବାଛୁରି,
ଗୋପାଳ ପିଲାଏ ବାଉଛନ୍ତି କି
ମଧୁରିଆ କରି ମୁରଲୀ ଧରି ।
ଚୂଳରେ ତାଙ୍କର ବେଢ଼ାଇଛନ୍ତି କି
ଶରଧା କରିଣ ଗୁଞ୍ଜାରମାଳ ?
ପାଞ୍ଚ ସାତ ମିଳି ନାଚୁଛନ୍ତି କି
ଗୀତ ଗାଇ ଗାଇ ବଜାଇ ତାଳ,
ଲଉଡ଼ି ବୁଲାଇ ଖେଳୁଛନ୍ତି କି
ଛକାଛକ ହୋଇ ଲଉଡ଼ି ଖେଳ ?
ବଉଳ ବୋଲଣ ଘୋଷାନ୍ତିଏ ଘୋଷି
ଗାଉଛନ୍ତି କି ଘକାଇଁ ତାଳ ?

ଛଟାରେ ଛଟାରେ ବାନ୍ଧିଛନ୍ତି ଟିକେ
ଗୋରୁ ଚରନ୍ତି କରି ଧୂଡ଼ୁକ ବାଜା,
ଭଦଭଦଳିଆ ନେଳ ଧଳା ପକ୍ଷୀ
ଛଟା ମଥାନରେ ଅଛି କି ଗେଞ୍ଜା ।
ଢେଫା ଢେଫା କରି କାଠର କଠାଉ
ମାଡ଼ିଛନ୍ତି ଟିକି ଗଉଡ଼ ପିଲା,
ଚେମେଣି ନଇରେ ବାନ୍ଧିଛନ୍ତି ତାଙ୍କୁ
ଗୋଡ଼ଠୁଁ ଟିକଏ କରିଣ ଢିଲା ।
ଦେଖ ଦେଖ ସବୁ ଯମୁନା ନଈର
ନୀଳ ନୀର ଧାର ହୋଇଚି କ୍ଷୀଣ,
ଦୁଇ ପାଖ ଦୁଇ ବାଲିର ଶେଯରେ
ହୋଇଯାଉଅଛି କ୍ରମଶଃ ଲୀନ ।
ଏଡ଼େ ସରୁଆ ତ ନ ଥିଲା ଯମୁନା
ଦୁଇ ପାଖ ଛୁଇଁ ଥିଲା ତା ଜଳ,
ସବୁବେଳେ ଥିଲା ନଉକା ମାଳିନୀ
ଏଇନା ଦିଶୁଛି ସବୁଠି ଥଳ ।
ଭୁଲିଛି କି ଲୋ ସେହି କାଳିନ୍ଦ ନନ୍ଦିନୀ
ଯମର ଭଉଣୀ ଚିର ଶ୍ୟାମଳୀ,
କାହିଁକି ତୋହର ଦେହଟି ଶୁଖିଛି
କାହାପାଇଁ ମନ ତୋହର ବାଉଳି ?
କାଳିଆ ନାଗ ତ ନାହିଁ ଲୋ ତୋ ବକ୍ଷେ
କାହାର ବିଷରେ ହୋଇଛୁ ଧାଉ,
କାହାପାଇଁ କହ ଶୁଖାଇ ଦେଇଛୁ
ମୃତ ସଞ୍ଜୀବନୀ ଅମୃତ ବାରି ।
ଦେଖ ହେ ଉଦ୍ଧବ ଏହି ସେ କଦମ୍ବ
ପତର ସେଥିରେ ଗୋଟିଏ ନାହିଁ,
ମୁଣ୍ଡ ଟେକି କରି ଆକୁଳ ନୟନେ
କାହିଁକି ରହିଛି ଆମକୁ ଚାହିଁ ?

ପିଲାଦିନେ ମୋତେ ଦେଉଥିଲା କୋଳ
ଏଇନା ବସୁଧ ଯାଇଛୁ ଗଡ଼ି,
ତାର ବ ଏଇନା ଦେଖ ସୁଖ ନାହିଁ
ସବୁ ସବୁଜମା ଯାଇଛୁ ଝଡ଼ି ।
ଦେଖ ଦେଖ ସବୁ ଘଞ୍ଚ କୁଞ୍ଜବନ
ହୋଇ ଯାଇଅଛୁ କେଡ଼େ ପତଳା,
କାହା ହାତ ଗଲା କଏ ଉଜାଡ଼ିଲା
ଏଡ଼େ ନାରଖାର କାହିଁକି କଲା ?
ଏହି ଦେଖ ସେହି ଗୋପପୁର ଦାଣ୍ଡ
ଗୋବର ପାଉଁଶେ ଗନ୍ଧା ତା ତନୁ,
ଯୋଉପରି ଥିଲା ସେହିପରି ଅଛୁ
ଗୋପପୁର ଗୁଡ଼ି ମୁଁ ଗଲା ଦିନୁ ।
ଗଉଡ଼ ଗାଆଁ ତ ଗୋରୁଗାଈଙ୍କର
ଦାଣ୍ଡରେ ବାଟରେ ଗୋବର ଗଦା,
ଯୋଉଠି ଦେଖିବ ଗଦାରୁ ଗୋଟିଏ
ଗୋରୁ ଗାଈ ତହିଁ ହୁଅନ୍ତି ବନ୍ଧା ।
କାନ୍ଥରେ ବାଡ଼ରେ ଛଟା ହୋଇଅଛୁ
ଫଡ଼ା ଫଡ଼ା ହୋଇ ସବୁଠି ଘସି,
ବନମାଟି କାନ୍ଥ ସବୁଆଡ ଫାଟ
ଠାଏ ଠାଏ ମାଟି ପଡ଼ୁଛୁ ଖସି ।
ଏହି ଗାଁଆ ମୋର ଥିଲା ଟି ସ୍ୱରଗ
ଏଠୁ ନେଇଥିଲା ଅକ୍ରୂର ଧରି,
ଯମପୁର ପରି କଂସ ନଗରଟା
ତାହାର ଭିତରେ ଥିଲି ହେ ଭରି ।
ଦେଖ ଦେଖ କେତେ କଅଁଳା ବାଛୁରୀ
ଲାଞ୍ଜ ଟେକି କରି ମାରନ୍ତି ଡିଆଁ,
କୁକୁର ଗୋଟାଏ ଭଉ ଭଉ କରି
ଆମ ଆଡ଼େ ଚାହିଁ ଭୁକୁଚି କିଆଁ ?

ଗୋପାଳ ପିଲାଏ ଦେଖିଲେ ଚକଟେ
ରଥଟା ଦାଣ୍ଡରେ ପାରୁନ ଯାଇ,
ଦଉଡ଼ିଲେ ସବୁ ହପ୍‌ଚା କରିଦେଲେ
ନର ନାରୀ ସବୁ ଆସିଲେ ଧାଇଁ ।
ଶ୍ରୀକୃଷ୍ଣ ଦେଖିଲେ ସବୁ ଚିହ୍ନା ମୁହଁ
ଡେଇଁଲାଇ ଚଢ଼ିଲେ ରଥରୁ ଖରେ,
କୋଳାକୋଳି ହେଲେ ସୁଦାମ ସୁବଳ
ପ୍ରିୟ ସଖାମାନଙ୍କର ସଙ୍ଗରେ ।
ବାଳଲୀଳା କଥା ଉଇଁଲା ମନରେ
ସଭିଙ୍କର ମନ ଗଲା ତରଳି,
ସ୍ନେହର ଯମୁନା କଳ କଳ ହୋଇ
ନୟନ କଣରୁ ଚଢ଼ିଲା ଗଳି ।
କୃଷ୍ଣ ପଚାରିଲେ ରେ ସଖା ସୁବଳ
ଗାଈଜଗା ଛାଡ଼ି ଆଉ କି ଧନ୍ଦା,
କରୁଛ ଟି ଭାଇ ଏକାଳକୁ ଚାହିଁ
ବିଲରେ ବାଡ଼ିରେ ଫସଲ ଫନ୍ଦା ?
ସୁଦାମ କହିଲା ହଳଧର ଆସି
ଶିଖାଇ ଯାଇଛି କରୁଛୁ ଚାଷ,
ମଥୁରା ହାଟ ତ ଭାଙ୍ଗି ରୁଜି ଗଲା
ଚରିଆଡ଼େ ଭାଇ ଉଠିଲା ଘାସ ।
ଦୁଧ ଦହିରୁ ବା କି ଆଶା ଭରସା
ଗାଈଙ୍କୁ ଏଥର ଚେଲିଏ ଦୁହିଁ,
ହଳ ହଣ୍ଡା ବାନ୍ଧ ଚାଷରେ ଲାଗିଛୁ
ରାତି ନ ପାହୁଣୁ ବିଲକୁ ଧାଇଁ ।
ଖାଁହା ବୁଦ୍ଧି ଟିଏ ଶିଖାଇ ଦେଲା ସେ
ଦୁଧ ଦହି ସଙ୍ଗେ ମିଶାଇ ଭାତ,
ଖାଇ ଆନନ୍ଦରେ ଅଛୁରେ ସୁଖରେ
ଆମକୁ ଧାମର ପାଉନ ହାତ ।

ତୋର କଥା ଖାଲି ପଡ଼େରେ ମନରେ
କାହିଁକି ରେ କୃଷ୍ଣ ହେଲୁ ଦାରୁଣ,
ବୁଢ଼ା ବୁଢ଼ୀ ତୋର ଜନକ ଜନନୀ
ତାଙ୍କୁ ବା କପଟ ଦେଲୁ କଷଣ ?
ଶୁଣିଲୁ ରେ ଯେବେ ତୁ ହୋଇଛୁ ରଜା
ଆଉ ସ୍ୱାଡ଼କୁ ତୁ ନୋହୁ କାହାର,
ରଜାର ଧରମ ତାର ରାଜନୀତି
ବିଶ୍ୱାସ ବିହୀନ କୁଟିଳ ଘର ।
ଦୋଷ ଖୋଜି ବୁଲେ ଗୁଣ ଦେଖେ ନାହିଁ
ପ୍ରିୟପ୍ରୀତି ତାର ରହଇ ନାହିଁ,
ତୋହର ଆମର କାକ ପିକ ଭେଦ
ଆହୁରି ଆସିଲୁ କଅଣ ପାଇଁ ?
ବାପ ମାଆ କେହି ନୁହନ୍ତି ତୋହର
କି କହିବ ଅବା ପରର କଥା,
କଂସଠାରୁ ସବୁ ଦେଖିଛୁ ରେ ହରି
ବାପଟାକୁ କଲା କେଡ଼େ ହିନସ୍ତା !
ଭଉଣୀ ଭଣେଇ ଦୁଇଟାଙ୍କୁ ବାନ୍ଧି
ପୂରେଇ ଦେଲା ରେ କଏଦ ଘରେ,
ସାତଟା ଭଣଜା ମାଇଲା ଛଡ଼ାଇ
ମିଛଟାରେ ସିନା ତୁଚ୍ଛା ରାଗରେ ।
କୋଉ ଶର ଧନ ରହିଲା ସଂସାରେ
କେତେଟା ଧନକୁ କଲାଣି ଅକର୍ତ୍ତି,
ମଥୁରା ଅବସ୍ଥା ଦେଖି ଆସିଲୁଟି
ବାଘ ସାପ ହୋଇଅଛନ୍ତି ଭର୍ତ୍ତି ?
ତୁ ଏଇନା ରଜା ଆମେ ତ ଗଉଡ଼
କ୍ଷତ୍ରିୟ କରିବ ଗଉଡ଼ ବନ୍ଧୁ,
କାଉ କୋଇଲି କି ହୋଇବେ ରେ ଏକା
ଛୁ ଛୁ ଶିଖି ଭୁଟିଯିବ ତୋ କନ୍ଧୁ ?

ଆପଣାର ହେଲେ          କରନ୍ତୁ ଏପରି
ପର ବୋଲି ସିନା କଲୁ ରେ ଏହା,
ଯଶୋଦା ଓ ନନ୍ଦ          ଅନ୍ଧ ଅନ୍ଧୁଣୀ ରେ
କା ଆଗେ କହିବେ ଏ ଦୁଃଖ ଆହା !
ଆମେ ସାଙ୍ଗ ସାଥୀ          ଯେତେ ସବୁ ତୋର
ପାସୋରି ଦେଲୁ ରେ କଅଣ ପାଇଁ ?
ଧନ ସରେ ନାହିଁ          ଦୁଃଖ ଘୁଞ୍ଚେ ନାହିଁ
କେବଳ ତୋହର ବାଟକୁ ଗୃହିଁ ।
ତୋହର ପାଇଁକି          ଗାଈ ଗୋରୁ ବିଲ
ଲଙ୍ଗଳ ବଳଦ କଲୁ ରେ ସଜ,
ଅଜାତିକୁ ହେଲା          ବଣିଜ ଅଡ଼ୁଆ
ଭୁଇଁ ଚାଡ଼ି କରି ମେଣ୍ଟୁ ଗରଜ ।
ଏଇନାଏଁ ଭାଇ          ଲେଉଡ଼ା ହେଲାଣି ରେ
ଗାଈ କାଟିବାକୁ ଗୃଷର ପାଇଁ,
ଗୋବର ନ ଦେଇ          ଖାଲି ଗୃଷ କଲେ
ବିଲରେ ଫସଲ ବଢ଼ିଲା ନାହିଁ ।
ମାଇପେ ମିଣିପେ          ସକଳେ ଝୁରିଲେ
ଝୁରି ଝୁରି କରି ରହିଲ କଣ୍ଠା,
ତୋହର ପାଇଁକି          ନନ୍ଦ ଓ ଯଶୋଦା
ଦୁହିଁଙ୍କର ଭାଙ୍ଗି ପଡ଼ିଲା ଅଣ୍ଟା ।
ଯଶୋଦା ଆଖିରେ          ଆଉ ଲୁହ ନାହିଁ
ଯୋଡ଼ାକ ଯାକ ତ ଶୁଖିଲା କାଠ,
ନନ୍ଦଙ୍କ ମନରେ          ଆଉ ସୁଖ ନାହିଁ
ତୁଟି ଯାଇଅଛି ତାଙ୍କର ଆଣ୍ଠ ।
ଏଇ ଅକ୍ରୂର ତ          କ୍ରୂର ହୋଇ ଆସି
ଏଇଠୁ ତ ତୋତେ ନେଲାରେ ଧରି,
କୋଉଁ ସାହସରେ          ଆସିଛି ଆହୁରି
ଭୂନ ହୋଇ ସୁନା ପୁଅଟି ପରି ।

ସେତେବେଳେ ସଗ       ଥାଆନ୍ତାରେ ଯେବେ
ତାର ଅଣ୍ଟାକୁ ଦଉଡ଼ିକୁ ସଙ୍ଗେ,
ତାର ମାଡ଼୍‌ରୁ ରେ       ତୁ ଆଣିଚୁ ସଙ୍ଗେ
କାଳେ ତୁ ଆମକୁ ଯିବୁରେ ଭାଗି ।
ଏଇ ଉଦ୍ଧବ ତ       ଆସିଥିଲା ଥରେ
ସାଙ୍ଗୁଲେଇ କରି କହିଲା କଥା,
ଟଳି ଯେ ସିଆଡ଼େ       ଆଉ ଦେଖା ନାହିଁ
ତୁହି ତ ଆମକୁ ଦେଲୁ ରେ ବ୍ୟଥା ।
ଚଲେ ନନ୍ଦ ଘରେ       ସବୁ ମିଳାମିଶି
ଯଶୋମତୀଙ୍କର ଶୁଖିଲା ଆଖି,
ଜକେଇ ଆସିଲା       ଛଳ ଛଳ ହୋଇ
କୃଷ୍ଣଙ୍କୁ ବକ୍ଷରେ ରଖିଲେ ଜାକି ।
କହିଲେ ରେ ବାପ       ପଡ଼ିଲା କି ମନେ
ଆସିଲୁ ରେ ମୋତେ ଦେଖିବା ପାଇଁ,
କେତେ ଯୁଗ ମୋର       ବିତି ଯାଇଚୁ ରେ
କାନ୍ଦି କାନ୍ଦି ତୋର ବାଟକୁ ଚାହିଁ ।
ଆଜି ସକାଳେ ରେ       କାଉ ବୋବାଇଲା
ସଙ୍କେତଟି ଦେଲା ଏଇଥିପାଇଁ,
ଆସିଲୁ ରେ ବାପ       ରୁକ୍ମିଣୀ କୋଳକୁ
ବାପକୁ ତୋହର ଦେଖ ରେ ଯାଇଁ ।
କହରେ କହ୍ନାଇ       କି ଦୋଷ କଲୁ ରେ
ଛାଡ଼ିଛୁଡ଼ି ଦେଇ ରହିଲୁ ଦୂରେ,
ପିଣ୍ଡିକୁ ପକାଇ       ପରାଣକୁ ନେଇ
କପରି ରହିଲୁ ଦ୍ୱାରକାପୁରେ ?
ଆକୁଳ ପରାଣ       ଲୋଡ଼ଇ ରେ ସଦା
ତୋର ମୁହଁ ଟିକେ ଦେଖିବା ପାଇଁ,
ନେଲୁ ନାହିଁ ଦିନେ       ଦେଖାଇଲୁ ନାହିଁ
କପରି ଝଇବ କାହାକୁ ଚାହିଁ ?

ସୁଖରେ ରହିଲୁ ଘର ଦ୍ୱାର କଲୁ
ବୁଢ଼ା-ବୁଢ଼ୀ ଦଣ୍ଡା ମଲୁରେ କାନ୍ଦ,
କୋଳକୁ ଆସିଛୁ ଆଜ ଛାଡ଼ିବନ
ପଣନ୍ତରେ ତୋତେ ରଖିବ ବାନ୍ଧ ।
ଗଛରେ ବୃକ୍ଷରେ ବାନ୍ଧିବ ତ ନାହିଁ
କାଲେ ସେ ରେ ବାପ ପଡ଼ିବ ଭାଙ୍ଗି,
ଚିହ୍ନିବ ଏଥର ତେନ୍ତୁଳି ଗଛରେ
ସତ ରେ ମୁଁ କାହ୍ନୁ ଯାଉଛି ରଗି ।
ତୋର ଗାଈଗୋରୁ ନାହାନ୍ତି ରେ ଆଜ
କ୍ଷୀର ସର ଆଦ ପାଇବୁ ନାହିଁ,
ଛାଡ଼ିଗଲୁ ଦିନୁ ସବୁ ସୁଖ ଗଲା
କାହା ପାଇଁ ଆଜ ପୋଷନ୍ତି ଗାଈ ?
ଗାଧୁଆ ପାଧୁଆ କର ଯା ରେ ବାପ
ଶାଗ ଭାତ ଯାହା ଅଛି ରେ ଖାଆ,
ଖିରି ବାଡ଼ି ଆଜ ଚାରୁ ତ ନାହିଁ ରେ
ଖାଆ ଯା ଦେଉଛି ଦୁଃଖିନୀ ମାଆ ।
ମାଆ ହାତ କାଞ୍ଜି ହେଉ ରେ ଅମୃତ
ପୁଅକୁ ତା ମୋର ଲାଗୁ ସୁଆଦ,
ତୁହି ତ ରେ କୃଷ୍ଣ ସୁଦାମା ହାତରୁ
ଖାଇଥିଲୁ ପୁଣି କରଆ ଖୁଦ ।
ଯୁଉଣି ଦେଖିଲେ ସେହି ପିଲା ପୁଅ
ଅଜଟ ହେଉଛି ଅଞ୍ଚଳ ଧରି,
ଦେଖିନାଏଁ ଦୂରେ ଟେଲାଇ ଯାଉଛି
ତେନ୍ତୁଳି ଗଛର ମାଡ଼କୁ ଡରି ।
ନନ୍ଦ ଘରେ ଆଜ ଫିଟିଛି ସାହାଣ
ପୂରି ଯାଇଅଛି ଘରି ବାହାର,
ଯାଆନ୍ତି ଆସନ୍ତି 'ଗୋପପୁରବାସୀ
ଲାଗିଛି କିଏ ଆଜ ପିମ୍ପୁଡ଼ି ଧାର ।

କଏ କେତେ ମତେ      କହୁଛୁ ଛଳାଇ
  କଏ ବା କହୁଛୁ ଶକାଇ କରି,
କଥା କହୁ କହୁ      କାହାର ଆଖିରୁ
  ଲୋତକର ଧାର ପଡ଼ୁଛି ଝରି ।
କଏ କହୁ କହୁ      କହିପାରୁ ନାହିଁ
  ହୃଦୟୁ ଭିତରୁ ଉଠୁଛି କୋହ,
କଏ ଅଭିମାନେ      କହୁଛୁ ଅନାଇଁ
  ଆମଠୁଁ ତୁଟାଇ ଦେଲୁଟିରେ ସ୍ନେହ ।
ଜନତା ଦେଖୁଛୁ      ସେ ବାଳ ଗୋପାଳ
  ବଂଇଶୀ ବଜାଇ ଗାଉଛୁ ଗୀତ,
ଗୋପୀଏ ନଦେଖନ୍ତି      ସେ ରାସବିହାରୀ
  ବେଶ ମନୋହର ମୋହୁଛୁ ଚିତ୍ତ ।
ଆଠ ସଖୀଯାକ      କେହି ଆସିଲେନି
  ଅଭିମାନରେ କି ରହିଲେ ଘରେ,
କିବା କୃଷ୍ଣ ମନେ      ଜଳାଇ ଦେବେ ସେ
  ବିରହ ଅନଳ ଆହୁରି ଥରେ ?
ତାଙ୍କର ମନରେ      ଉଇଁ ନ ଥିଲା କି
  ଶରତ ରଜନୀ ପୁନଅଁ ଚନ୍ଦ,
ସତରେ କଅଣ      କୃଷ୍ଣ ଅଭିମାନେ
  ମାଡ଼ି ନ ଥିଲା କି କାହାକୁ କାନ୍ଦ ?
ବିରହର ଦାଉ      ଜାଣଇ ବିରହୀ
  କେବେ ଅଭିମାନେ ଶୁଅଇ ରୁଷି,
କେବେ ବିରହରେ      ମିଳନ ରତି ବା
  ମନକୁ ମନକୁ ହୁଅଇ ଭୁଷି ।
କେତେବେଳେ ପେଶେ      କାଉ କୋଇଲିଙ୍କୁ
  ଦୂତ କରି ତାର ପ୍ରେମିକ ପାଶେ,
କେବେ ତାର ମେଘ      ଦୂତଟିଏ ହୋଇ
  ଦେଶେ ଦେଶେ ବୁଲି ଗଲେନି ଭାସେ ।

କେତେବେଳେ ବସି ଲେଖଇ ଚିଠାଉ
ଲେଖି ଶତଟିଏ ଲୁଚାଇ ରଖେ,
ଥର ଥର କର ପୁଣି କାଢ଼ି ଆଣି
ନିରେଖି ନିରେଖି ପଢ଼େ ଓ ଦେଖେ ।
କଏ ବା କୁମୁଦ କମଳର ସମ
ଖଗରେ କାକରେ ମରଇ ପୋଡ଼ି,
କଏ କେତେବେଳେ ଦେବତାଙ୍କୁ ଡାକି
ଗୁହାରି କରଇ କରକୁ ଯୋଡ଼ି ।
କଏ ବା ଶୀତଳ ଚନ୍ଦନ ଲଗିଲେ
ବକଲେ କାନ୍ଦଇ ହୃଦୟ ଛାଡ଼ି,
ଉଦ୍ଧବ ବକଲ ହୋଇ ତଳେ ଗଡ଼ି
ଶୁଅଇ ଦୁଃଖରେ ମୁହଁକୁ ମାଡ଼ି ।
କୃଷ୍ଣଙ୍କ ମନରେ ନ ଥିଲା ଲାଳସା
ସଖୀଙ୍କ ବଦନ ଦେଖିବା ପାଇଁ,
ଜନ ଗହଳରେ ଖୋଜି ନ ଥିଲେ ସେ
ସଖୀଏ ଅଛନ୍ତି କି ଅବା ନାହିଁ ।
ଘରେ ଆଠ ସଖୀ ଅପ୍ରୀ ହେଲେ ନାହିଁ
ମନକୁ ମନକୁ ହେଲା ଉଚ୍ଚାଟ,
କୃଷ୍ଣ ବି ସେଥର ରହି ପାରିଲେନି
ଚଞ୍ଚଳ ଆକୁଳ ହେଲେ ନିପଟ ।
କୃଷ୍ଣ ଅଭିସାରୀ ସଖୀଙ୍କୁ ସୁମରି
ସଖୀଏ ହୋଇଲେ ଅଭିସାରିକା,
ଉଭୟ ଦିଗକୁ ଉଭୟ ଧାଇଁଲେ
ମଝି ଦାଣ୍ଡଟାରେ ହୋଇଲା ଦେଖା ।
ନୀରବତା ପୁଣି ପରମ ବରଜି
କହିଗଲା କେତେ କରୁଣ ଭାଷା,
ତୁଟିଗଲା ମନରୁ ମାନ ଅଭିମାନ
ଫଳବତୀ ହେଲା ମିଳନ ଆଶା ।

ଆଖି ଠାରେ ନିଭୃତ କାହାଣୀ
କହି ଦେଇଗଲା ପୂରୁବ କଥା,
କଅଁଳ ମଧୁର ଉପନ୍ୟାସ ସେ
ପ୍ରତି ପଦେ ପଦେ ଅମିୟ ମଖା ।
ବିରହେ ମିଳନ ବଡ଼ ମଧୁରିଆ
ରଖି ଦିଏ ନାହିଁ ମରମେ ବ୍ୟଥା,
ଏହି ମିଳନରେ ଆସ୍ୱାଦନ ପାଇଁ
ପଶୁପକ୍ଷୀ ଗୀତେ କହନ୍ତି କଥା ।
ଯଶୋଦା ରଚିଲେ ମହୋତ୍ସବଟିଏ
ଖିର ଖିରସାର ଅମୃତ ଭୋଜି,
ଗୋପପୁରବାସୀ ଖାଇବେ ସକଳେ
ତେଣୁ ସମସ୍ତଙ୍କୁ ଆଣିଲେ ଖୋଜି ।
ଖିଆପିଆ ସବୁ ସରିଲା ଖୁସିରେ
ଶ୍ରୀକୃଷ୍ଣ କହିଲେ ବଚନ୍ୟେ ଭାଷି ।
ଚାଲ ସବୁ ଯିବା ଦ୍ୱାରକାକୁ ଥରେ
ନେବା ପାଇଁ ଖାଲି ଅଛି ମୁଁ ଆସି ।
ସକଳେ ଖୁସିରେ କଲେ ସନମତ
ସଜବାଜ ହେଲେ ଯେ ଯାର ଘରେ,
କୃଷ୍ଣ ସୁମରିଲେ ବିନତା ନନ୍ଦନ
ପହଞ୍ଚିଲା ସିଏ ଗୋପ ନଗରେ ।
ଶ୍ରୀକୃଷ୍ଣ କହିଲେ ବଢ଼ାଅ ଶରୀର
ଗୋପ ଗୋପୀ ସବୁ ଦ୍ୱାରକା ଯିବେ,
ରହସ୍ୟ ଦ୍ୱାରକା ନଗରୀ ହୋଇଛି
ସେହିଠାରେ ଯାଇଁ ସବୁ ରହିବେ ।
ବସିଲେ ସକଳେ ଗରୁଡ଼ ପିଠିରେ
ଗରୁଡ଼ ଉଡ଼ିଲା ପବନେ ଭାସି,
ନନ୍ଦଘୋଷ ରଥେ ପକ୍ଷିରାଜ ଘୋଡ଼ା
ସିଏ ବି ଉଡ଼ିଲେ ଗଗନେ ପଶି ।

ପଚ୍ଛୁଥିଲେ କ୍ଷଣେ ରହସ୍ୟ ଦ୍ୱାରକା
ଘରେ ଘରେ କୃଷ୍ଣ ସାଇତ ଦେଇ,
ଖିଆପିଆ ସାରି ଚଳିଲେ ଦ୍ୱାରକା
ସଙ୍ଗରେ ଉଦ୍ଧବ ଅକ୍ରୂରେ ନେଇ ।
ଦ୍ୱାରକା ନଗରୀ ହସିଲା ଏଥର
ଅଷ୍ଟ ପାଟବଂଶୀ ଅରଘ୍ୟ ଧରି
ହସି ହସି ଆସି ବନ୍ଦାଇଲେ କୃଷ୍ଣ
ସରସତା ଅଛି ବଦନେ ପୂରି ।
ଶ୍ରୀକୃଷ୍ଣ ହସିଲେ ମୃଦୁ ମୃଦୁ କରି
ଗର୍ବିଣୀ ଗରବ ଗଞ୍ଜିବେ ପରା,
ନୂଆ ଦ୍ୱାରକାରେ କମଳ ଫୁଟାଇ
ଭରିଯା ସୁଷମା କରିବେ ମାରା ।
ରହସ୍ୟ ଦ୍ୱାରକା କାନ୍ଥ ବାଡ଼ ସବୁ
ଅମଳ ମୁକୁରେ ହୋଇଛି ଗଢ଼ା,
ଯୋଉଠିକି ଯିବ ଦିଶିବ ଆନନ
ଦିଶୁଥିବ ଆରସି ହେବନି ଲୋଡ଼ା ।
ନିଜ ନିଜ ମୁହଁ ଦେଖିବେ ଯାଦବୀ
ଗୋପୀଙ୍କ ବଦନ ସଙ୍ଗରେ ତୁଳି,
ତେବେ ଯିନା ଯାଇଁ ଗରବ ଭାଙ୍ଗିବ
ନିଜର ବଡ଼ିମା ପାରିବେ ଭୁଲି ।
ରୁକ୍ମିଣୀ ପୁଚ୍ଛିଲେ ଆସିଲେ ଗୋପୀଏ ?
ମୁହଁରେ ତ ଆଜି ମୁକୁଳା ହସ,
ଆସିଛନ୍ତି ପରା, ନ ହେଲେ କାହିଁକି
ଉଛୁଳା ପଡ଼ନ୍ତା ସରସ ରସ ।
ବୟସ ହେବ ଟିରେ କି ଅବା ହୋଇଛି ?
ଗୁରି ଦିନ ପରି ଥିଲି ସିଆଡ଼େ,
ଆଜି ବା କାହିଁକି ମନ ଗୁଡ଼ିଗଲା
ଆଡ଼ୁରି ଲେଉଟି ଗୃହିଁଲ ପୂଛେ ।

ଏ ରସଟି କ'ଣ          ବସନ୍ତ କାଳର
    ସେକଥିପାଇଁ ତ ଫୁଟଇ ମଲି,
କଳା ମନ ମତ          କୋଇଲି ଚଢ଼େଇ
    ବଜାଇ ଦେଉଛି ତାର ମୁରଲି ।
ତୁମ ମୁରଲିଟି          ଥୋଇଲ କୋଉଠି ?
    ବଜାମ ଟିକିଏ ଶୁଣିବା ଦେଖି,
କେବେ ତ ଶୁଣିନୁଁ          କହନ୍ତ ଯା ସବୁ
    ସେହି କଥାଟିକୁ ରଖିଛୁ ଲେଖି ।
ଶ୍ରୀକୃଷ୍ଣ କହିଲେ          ମୋର ମୁରଲିଟା
    ଖସି ପଡ଼ିଲା ଗୋ ନେଲା ତା କାଉ,
ଗୋପକୁ ବରଜ          ଯେ ଦିନୁ ଆସିଲି
    ତୁମର ଦାଉରୁ ବାଜୁନି ଆଉ ।
ସତ୍ୟଭାମା ମୋର          ବଜାଇବ ବଂଶୀ
    ଲଳିତା ହାତରେ ଅଛି ମୋ ବଂଶୀ,
ବଜାଇବେ ଦୁହେଁ          ତୁମେ ତା ଶୁଣିବ
    କାହାକୁ ନିନ୍ଦିବ କାକୁ ପ୍ରଶଂସି ।
ତୁମେ ତ ମୋର ଗୋ          ପାରିଜାତ ଟିଏ
    ରାଧା ତ ବଣର ଅଟଲିଡ଼ା ମଲି,
ଯିବା ଗୋ ସକାଳେ          ଦେଖାଦେଖି ହେବ
    ଆପେ ଆପେ ବସି ହୋଇବ ତୁଲ ।
ସତ୍ୟଭାମା ବସି          ସବୁ ଶୁଣି ଶୁଣି
    କହିଲେ ମୁହଁକୁ ଟିକେ ଫୁଲାଇ,
ବାଣୀ କ'ଣ ତୁମେ          ବାଉଥିଲ ରସେ
    କାହିଁକି କହୁଛ ଏତେ ଛଳାଇ ?
ତୁମ ପେଟ କଥା          ଜାଣଇ ହେ ସବୁ
    ଏତେ ବା ବଢ଼ାଇ କହୁଛ କିଆଁ ?
କାହିଁ ଗଉଡୁଣୀ          କାହିଁ ସତ୍ୟଭାମା
    କାହାକୁ କା ସଙ୍ଗେ ତୁଳୁଛ ତୁଆ ।

ଶ୍ରୀକୃଷ୍ଣ କହିଲେ ତୁମଠୁଁ ଏତକ
ନ ଶୁଣିଲେ ରାଣୀ ମାନେ ନା ମନ,
ତୁମେ ଏକା ହିନା ଜାଣ ମୋ ଅନ୍ତର
ତୁମେ ଏକା ମୋର ଶଯ୍ୟା ରତନ ।
ତୁମେ ମୋର ରାଣୀ ସରଗ ସମ୍ପଦ
କେବେ ପିଲାଦିନେ ଖାଇଲି ଖଟା,
ସେଥିପାଇଁ ପରା ପଚିଶ ବରଷ
ଗୁଡ଼ ଆସିଲାଣି; କରିବ ଅଛା ?
ଦେଖିବା ପାଇଁ କ ତଣ୍ଟି ତ ଫୁଟିଲ
ଆଣିଲି କେବଳ ତୁମରି ପାଇଁ,
କାଲି ସକାଳେ ଗୋ ରହସ୍ୟ ଦ୍ୱାରକେ
ସବୁ ଗଉଡୁଣୀ ଦେଖିବ ଯାଇଁ ।
ରହସ୍ୟ ଦ୍ୱାରକା ସେ ପୁଣି କଅଣ ?
କୋଉଠି ସେ ଗାଆଁ ? ବଡ଼ ରହସ୍ୟ !
ଶ୍ରୀକୃଷ୍ଣ କହିଲେ "କହିଲ ଯା ରାଣୀ
କିଛି ମିଛ ନୁହେ ସତ ଅବଶ୍ୟ ।"
ରହସ୍ୟ ଦ୍ୱାରକା ରହସ୍ୟମୟୀ ସେ
ରହସ୍ୟେ ସର୍ଜନା ରହସ୍ୟେ ହସ,
ହସ କାନ୍ଦଣାର ଯନ୍ତ୍ର କୁଣ୍ଡ ପିଏ
କରୁଣ ହସକୁ ଶୀତଳ ତ୍ରାସ ।
ରଚନ୍ତି ନଗରୀ ରହସ୍ୟର ପାଇଁ
ସେ ରହସ୍ୟେ ରସ ଭିନ୍ନ ପ୍ରକାର,
ମିଳନ ଭିତରେ ବିରହ ପଶିଚି
ସେ ମୁରଲୀ ସ୍ୱନ କର୍କଶ ଘୋର ।
ବନେ ତା ବାଜିବ କର୍କଶ ହୋଇ ଗୋ
ଶୁଣିବାକୁ କାନ ଖୋଜିବ ନାହିଁ,
ବୃନ୍ଦାଆଡ଼େ ଖାଲି ଦେଖିବେ ସକଳେ
ଚିର ବିରହର କଙ୍କାଳ ଛାଇ ।

ତେଣୁ ତ କାଉକୁ    ଦେଇଛୁ ମୁରଲୀ
ତାହାର ଛନ୍ଦରେ ବାଇବା ପାଇଁ,
ବୃନ୍ଦାବନ ବେଣ    ଫିଟି ପଡ଼ୁଅଛୁ
ଏଠେଇ କାଳକୁ ବସିଛୁ ଗୁହିଁ ।
କାହାର ବରଦେ    କେହି କାନ୍ଦବନ
ରହସ୍ୟେ ରହସ୍ୟ ଯିବ ଗୋ ସରି,
ଗୋଟିଏ ବାଟରେ    ସକଳେ ଚଳିବା
ସବୁ ସୁଖ ଦୁଃଖ ଯିବ ଗୋ ଝରି ।
ରୁକ୍ମିଣୀଙ୍କ ମୁହେଁ    ଚନ୍ଦ୍ରାର କାଳିମା
ସତ୍ୟଭାମା ମୁହଁ ବଡ଼ ନିରସ,
ରମଣୀ କଳିବ    ଶ୍ରୀକୃଷ୍ଣ ରହସ୍ୟ ?
ବର୍ତ୍ତମାନ ନୂଆ ଚିର ଭବିଷ !
ଦେବତାଙ୍କୁ ତାହା    ଦୃଶ୍ୟ ହୁଏ ନାହିଁ
ସେହି ରହସ୍ୟକୁ ଦେଖିବା ପାଇଁ,
ଯୁଗ ଯୁଗ ଧରି    ତପସ୍ୟାରେ ବସି
ଯୋଗୀ ଋଷି ଶିରୁ ଉଠଇ ଝାଇଁ ।
ଆଶା ଆଶଙ୍କାରେ    ନିଶି ପୁହାଇଲେ
ସକାଳ ଉଠିଲି ଅଳସ ଭାଙ୍ଗି,
ଯାଦବ ଯାଦବୀ    ଚାଲିଗଲେ ସବୁ
ଗୋପ ଓ ଗୋପୀଙ୍କୁ ଦେଖିବା ଲାଗି ।
ଦେଖିଲେ ନଗରୀ    ରହସ୍ୟରେ ପୂର୍ଣ୍ଣ
ଇନ୍ଦ୍ରପ୍ରସ୍ଥ ପରି ମାୟାର ପୁରୀ,
ସବୁ ଘରେ ସବୁ    ଘର ପ୍ରତିବିମ୍ବ
କେହି କାହାଠାରୁ ନୋହନ୍ତି ବାରି ।
ରଥ ହାତୀ ଘୋଡ଼ା    ଶୁଆଣି ପାଲିଙ୍କି
କାନ୍ଥରେ ପଡ଼ୁଛି ସବୁରି ଛାଇ,
ଦେଖିଲେ ଯାଦବୀ    ମଣି ଗଲି ଦବି
ଛାଡ଼ିଗଲାଣି ଛୁଏଁ ସକଳ ବାଇ ।

ଜଣ ଜଣ କର ଗୋପୀ ଓ ଯାଦବୀ
ଦେଖାଶୁଣା ହୋଇ କଲେ ଆଳାପ,
ଅଷ୍ଟ ପାଟବଂଶୀ ଅଷ୍ଟ ଗୋପସଖୀ
ମିଳନ ରହସ୍ୟ ସରସ ଗଳ୍ପ ।
ଆଠ ଭରଯାଙ୍କ ଆଖି ଝଲସିଲା
କାହ୍ନୁ ଦରପଣେ ବଦନ ଦେଖି,
ଗୋପୀଙ୍କ ମୂରତି ଦେଖିଲେ ଆଗରେ
ସରମେ ମନକୁ ନଇଁଲା ଆଖି ।
ରାଧା, ମନ୍ତ୍ର ପର ଉଚ୍ଚରିଲା ଆପେ
ଅନ୍ତରେ ସେଇଆ ଘୋଷିଲେ ଖାଲି,
ଚନ୍ଦ୍ରଶର ସମ ମୋହିତ ହୋଇଲେ
ମନାସିଲେ କୋଳ କରିବେ ବୋଲି ।
ଛୁଟିଲା ଗରବ ଭଙ୍ଗିଗଲା ମୋହ
ଇଚ୍ଛିଲେ ପୁରୁଷ ହେବାର ପାଇଁ,
ଆହେ ପ୍ରାଣନାଥ ! କର ଦୋଷ କ୍ଷମା
ଗୋପୀଏ ସୁଯୋଗ୍ୟ ତୁମର ପାଇଁ ।
ଆମକୁ କର ହେ ଗୋପୀଙ୍କ ସେବକୀ
ଖଟିବୁଁ ସତତ ତାଙ୍କ ଚରଣ,
ଗୋପୀ କୃଷ୍ଣ ଜପି ଜପି ହନବନ୍ତ
ଯାଉ ଆମମାନଙ୍କର ଜୀବନ ।
ଯଶୋଦା ଦେବକୀ ହେଲେ କୋଳାକୋଳି
କୁହାକୁହି ହେଲେ ଦୁଃଖ ଓ ସୁଖ,
ଦୁହିଁଙ୍କ ମନରେ ଉଛୁଳା ଆନନ୍ଦ
ହସରେ ଉଜ୍ଜ୍ୱଳ ଦୁହିଁଙ୍କ ମୁଖ ।
କଥାଭଷା ହେଉଁ କହିଲେ ଦେବକୀ
ଶୁଣ ସଙ୍ଗାତୁଣି ମୋ ଦୁଃଖ କଥା,
ଆଜ ବି ସେ କଥା ମନେ ପଡ଼ିଗଲେ
ଫାଟିଯିବ ମନ ସେ ହନ କଥା ।

କୃଷ୍ଣ ଜନମିଲ ଯେ ଦିନ ମୋ କୋଳେ
ବନ୍ଦୀଘରେ ପଡ଼ିଥିଲ ଗୋ ସହି,
ଗୋଡ଼ରୁ ହାତରୁ ଫିଟିଲା ଶିକୁଳି
ଉଡିଆଣି କୁଆ ଦେଲା ଟୋ କହି ।
ଜନକ ଜନନୀ ! ନିଅ ମୋଟେ ବେଗେ
ରଖି ଦେଇ ଆସ ଯଶୋଦା ଘରେ,
ଝିଅ ଜନ୍ମ କରି ଶୋଇଛି ସେ ନିଦେ
ଜାଣି ପାରିନାହିଁ କୁହୁକ ବଳେ ।
ବଦଳାଇ ଆଣ ସେ ଝିଅକୁ ବେଗେ
ରାତି ନ ପାହୁଣୁ ଏତକ କର,
ଛଅପୁଅ ମାରି ଜଗି ଅଛି କଂସ
ତାକୁ ଯେବେ ଅଛି ତୁମର ଡର ।
ନେଲେ ବସୁଦେବ ରଖିଲେ ତୋ କୋଳେ
ଆଣିଲେ ପାଲଟି ତୋହର ଝିଅ,
ତାକୁ ଗୋ ସଙ୍ଗାତ କଂସ କରିଗଲା
ଶ୍ରୀକୃଷ୍ଣ ଟି ମୋର ଗୋଟିଏ ପୁଅ ।
ଯଶୋଦାଙ୍କ ମନେ ପଶିଲା ବିଷାଦ
ଶୁଖିଲା ବଦନ ମଉଳା ହସ,
ଶ୍ରୀକୃଷ୍ଣ ଜାଣିଲେ ତା ମନ ବେଦନା
ନିଜେ ବି ଟିକିଏ ହେଲେ ବିରସ ।
ଯଶୋଦାଙ୍କୁ ଦେଲେ ବଳ ଓ ବୟସ
ସାତ୍ୟକି ତା ଗର୍ଭୁ ହୋଇଲା ଜନ୍ମ,
ଏହାପରେ କୃଷ୍ଣ ସୁଧାରିଣ ଦେଲେ
ଆନନ୍ଦିତ ହେଲା ଯଶୋଦା ମନ,
ଦେବକୀଙ୍କୁ ଦେଲେ ଛଅ ପୁଅ ଆଣି
ଭୁଟାଇଲେ ତାଙ୍କ ପୁଅର ରଙ୍କ ।
ସବୁରି ମନରୁ ଧୋଇଧାଇ ଦେଲେ
କଲ୍ମଷ କାଳିମା କଳୁଷ ପଙ୍କ ।

ରହସ୍ୟ ଦ୍ୱାରକା ନାଆଁ ଚରିତାର୍ଥ
ହେଲା ହେ ସୁଜନେ ଏଇଥିପାଇଁ,
ଶ୍ରୀକୃଷ୍ଣ କେବଳ ତାହାର କରତା
ସେହି ତ ଜଗତଯାକର ସାଇଁ ।

———

# ବ୍ରହ୍ମଶାପେ ଶ୍ରୀକୃଷ୍ଣ

ଦଇବ ଲେଖନ          କେ କରିବ ଆନ
ଏଗାର ଋଷିଏ ହୋଇଲେ ଏକା,
ମୁକତିକୁ ଲୋଡ଼ି          ଆସିଲେ ଦ୍ୱାରକା
ଶ୍ରୀକୃଷ୍ଣଙ୍କ ସଙ୍ଗେ କରିବେ ଦେଖା ।
ବିଶ୍ୱାମିତ୍ର, ଅତ୍ରି,          ବଶିଷ୍ଠ, ଦୁର୍ବାସା,
ଅଂଗିରା, କଶ୍ୟପ, ଅସିତ, କଣ୍ୱ,
ଭୃଗୁ, ବାମଦେବ,          ଦେବର୍ଷି ନାରଦ
ଶ୍ରୀକୃଷ୍ଣଙ୍କୁ ଘରେ କଲେ ଦର୍ଶନ ।
ବିଶ୍ୱାମିତ୍ର ଋଷି          କ୍ରୋଧକୁ ଅନଳ
ଦୁର୍ବାସା ତହିଁରୁ ଆହୁରି ବେଶୀ,
କଥାକେ କଥାକେ          ମାନ ଅପମାନ
ଅଭିଶାପ ଦେଇ ଦିଅନ୍ତି ନାଶି ।
ତାଙ୍କ ଦୋଷ ଗୁଣ          ଶାସ୍ତ୍ରରେ ବିଦିତ
ଏତେ ରାଗ ରୋଷ ତେବେ ବି ଋଷି,
ତପଃ ପ୍ରଭାବରୁ          ସବୁ ନିରମଳ
ପାପ ପାରେ ନାହିଁ ତାଙ୍କୁ ପରଶି ।
ହିଂସା ଓ ଅହିଂସା          ସବୁ ତ ସମାନ
ଏହିପରି ସିଏ ଦେଖନ୍ତି ଧରା,
ଅଭିଶାପରେ ସେ          ଦୁଷ୍ଟ ନିବାରନ୍ତି
ତାଙ୍କ ମିତ ନୁହେ ଖଡ଼ିଗ ଧରା ।

କଥାରେ ଛୁଡ଼ବ ଖଣ୍ଡା କସ ହେବ
ଭୁଣ୍ଡଟାରେ ଦେଇ ଥାଆନ୍ତି ଶାଣ,
କଥା ନୁହେ ସେତ ସହାର ଶକତ
ଆଟମ ବାଣରୁ ଅଧିକ ଟାଣ ।
କ୍ଷତ୍ରିୟର ଅସ୍ତ୍ର ଖଣ୍ଡା ଧନୁଶର
ବ୍ରାହ୍ମଣର ଅସ୍ତ୍ର କେବଳ ବାଣୀ,
କଥାର ଶକତ ଖଣ୍ଡାଠାରୁ ବେଶୀ
ରକତ ବହେନା ଦେଲେ ସେ ହାଣି ।
ବ୍ରାହ୍ମଣ ହାଡ଼ରେ ଅଶନି ଗଠିତ
ଇନ୍ଦ୍ରଙ୍କର ତାହା ଅମୋଘ ଅସ୍ତ୍ର,
ସେ ଯେଉଁଠି ପଡ଼େ ଧ୍ୱଂସ କରିଦିଏ
ଚୂନା କରିଦିଏ ଟାଣ ପର୍ବତ ।
ଦେବତା ହେଲେ ବି ନାହିଁ ପରିତ୍ରାଣ
ଶାପରୁ ପାରନ୍ତି ନାହିଁ ଉବୁରି,
ଦେବତା ମାନବ ପୁଣି ଅନ୍ୟ ଋଷି
ଶାପକୁ ତ ଡର ଥାଏ ସବୁରି ।
ଶ୍ରୀକୃଷ୍ଣ ଦର୍ଶନ ସାରିଲେ ଋଷିଏ
ବାହାରିଲେ ଫେରି ଯିବାର ପାଇଁ,
କୃଷ୍ଣଙ୍କ ମନରେ ପଶିଲା ଭାବନା
ରହିଲେ ଗମ୍ଭୀରେ କର୍ତ୍ତବ୍ୟ ଗୁହିଁ ।
ତାଙ୍କ ଅବତାର ଦୁଷ୍ଟ ନିବାରିବେ
ଗୋଟିଏ ହେଲେ ବି ଛାଡ଼ିବେ ନାହିଁ,
ତାଙ୍କ ନିଜ ବଂଶ ସବୁଠାରୁ ଦୁଷ୍ଟ
ତାକୁ ବା ରଖିବେ କଅଣ ପାଇଁ ।
ପାଇଲେ ଋଷିଙ୍କୁ ଦେଖିଲେ ଅଦୃଷ୍ଟ
ତୁଅମାନଙ୍କୁ ସେ ଶାପନ୍ତୁ ଯାଇ,
ପୁଅ ଖେଳୁଥିଲେ ପିଣ୍ଡାରକ ତୀର୍ଥେ
ସେହିବାଟେ ତାଙ୍କୁ ଦେଲେ ପଠାଇ ।

ଋଷିଏ ଜାଣନ୍ତି ଆଗତ ଭବିଷ୍ୟ
କହ୍ନାଦ୍ୟନ୍ତ ସବୁ ଦେଖିଲାପରି,
ପୁଅଙ୍କ ମନରେ ପଶିଗଲା କାଳ
ପରୀକ୍ଷା କରିବେ ପଚାରି କରି ।
କିଏ ବା ପିଅର ହୋଇ ସାରିଅଛି
କିଏ ବା ଯାଉଛି ହେବାର ପାଇଁ,
ଏ ବୟସରେ କେ ଖେଳେ ପିଲାଖେଳ
ବୟସ ଧରମ ମାନିଲେ ନାହିଁ ।
ଜାମ୍ବବତୀ ପୁଅ ବଡ଼ ସୁକୁମାର
ରୂପ ତା ଗୋଟିଏ ରମଣୀ ପରି,
ବେଶ ଭୂଷାକରି ଠିଆ କରିଦେଲେ
ବାରି ହୁଏ ନାହିଁ ନର କି ନାରୀ ।
ତାକୁଇ ରମଣୀ ବେଶଟିଏ କରି
ପେଟଟିକୁ ତାର କରି ଉଞ୍ଚୁଆ,
ପଚାରିଲେ ସବୁ ଋଷିଙ୍କୁ ଅନାଇ
ଏ ନାରୀ ଗରଭେ ଅଛି କି ଛୁଆ ?
ଏ ଯୁବତୀ ବଧୂ ହେଲୁ ଗର୍ଭବତୀ
କାହିଁକି ଏ କରୁ ନାହିଁ ପ୍ରସବ,
କହନ୍ତୁ ଏ କେବେ ପ୍ରସବ କରିବ
ଦେଖି ଗୁହିଁକରି ଏହାର ଗର୍ଭ ।
ଦଇବ ଘୁଡ଼ିଲା ପରିହାସ କଲେ
ପରିଣାମ କଥା ଭାବିଲେ ନାହିଁ,
ନୟୃତ୍ତ ତ ଜେଣେ ଗୁହିଁ ବସିଥିଲା
ଶ୍ରୀକୃଷ୍ଣଙ୍କ ମନ କଥାକୁ ଗୁହିଁ ।
ଶ୍ରୀକୃଷ୍ଣଙ୍କ ପିଲା ଏତେ ଦୈବଛଡ଼ା
ଦେଖିଲେ ଦୁର୍ବାସା ହୋଇଲେ କ୍ଷୁବ୍ଧ,
କହିଲେ "ରେ ମୂଢ଼ ! ଲାଜ ମାଡ଼ୁ ନାହିଁ
ସବୁ ଗୁଣ୍ଡାକ ତ ହେଲଣି ବୃଦ୍ଧ ।"

ଦେଲ ଅଭିଶାପ ସ୍ତ୍ରୀ ଗରଭେ ଅଛି
ଦାରୁଣ କଠିନ ଲୁହା ମୂସଳ,
ଉପହାସ କଲେ ଧ୍ୱଂଶ କରିବ ତା
ଯାଦବ ବଂଶକୁ ଭୋଗ ତା ଫଳ ।
ଶ୍ରୀକୃଷ୍ଣ ଜାଣିଲେ ଘରେ ବସି ବସି
କରିଥିଲେ କି ସେ ସତରେ ଦୁଃଖ,
ଯଦୁବଂଶ ହେବ ଧ୍ୱଂସ ବ୍ରହ୍ମଶାପେ
ଏହି ତ ତାଙ୍କର ଚରମ ଲକ୍ଷ ।
ସବୁରି ଆଗରେ ଶାପ ବିଭୀଷିକା
ତାର ରୂପ ଦେଖି ସବୁ ଡରିବେ,
ବଂଶ ମାରିବାକୁ ପଡ଼ିବନି ତାଙ୍କୁ
ଆପେ ହଣାମରି ହୋଇ ମରିବେ ।
ଫେଡ଼ିଲେ ବସନ ଦେଖିଲେ ତନୟେ
ସତକୁ ସତ ତ ମୂଷଳ ଟାଏ,
ମୁଣ୍ଡ ଘୂରିଗଲା ହାଲିକ ଶୁଖିଲା
କଲିଜା ସବୁରି ଥରିଲା ଗ୍ରୁଏଁ ।
ଦଉଡ଼ିଲେ ସବୁ ଶ୍ରୀକୃଷ୍ଣ ସନ୍ନିଧି
ଡର ମର କରି କହିଲେ ସବୁ,
ଶୁଣି ସାରି କୃଷ୍ଣ କହିଲେ·କ୍ଷୋଭରେ
ଉପହାସ କିଆଁ କଲ ରେ ବାବୁ ।
କର ପ୍ରତିକାର ଘଷି ଏ ମୂଷଳ
ସାଗର ସଲିଳେ ଭସାଇ ଦିଅ,'
ମୂଷଳ ତ ନୁହେ ବ୍ରହ୍ମ ଅଭିଶାପ
ତାଡ଼ି ପକାଇବ ବଂଶ ସିଅ ।
କଲେ ସେହିପରି ଅବଶେଷ ଯାହା,
ଘଷିହେଲା ନାହିଁ ଫିଙ୍ଗିଲେ ଜଳେ,
ମାଛ ଗିଳି ଦେଲା ସେ ଲୁହା ଟିକକ
କୋଉଠେଇ ଥିଲା ଦଇବ ବଳେ ।

ସେ ମାଛଟା ଦିନେ ପଡ଼ିଲା ଜାଲରେ
ଜାଲିଆ ଭେଟିଲା ବନ୍ଧୁ ଶବରେ,
ଶବର ଗଢ଼ିଲା ସେଥିରେ ଫଳକ
ବସାଇ ଦେଲା ତା ଶର ଅଗରେ ।
ଦ୍ୱାରକା ଗୋଷ୍ଠୀକ ପଡ଼ିଲା ଚହଲ
ଋଷିମାନଙ୍କର ଦାରୁଣ ଶାପ,
ଯଦୁବଂଶ ଧ୍ୱଂସ ହୋଇବ ବସ୍ତୁତଃ
ରଖି ପାରିବନି କାହାରି ବାପ ।
ସବୁରି ମନରେ ଭୟ ବିଭୀଷିକା
ଦେଖାଦେଲା ଆସି ବହୁତ ବେଗେ,
ସତ୍ୟଭାମାପୁରେ ସବୁଠୁଁ ଅଧିକ
ଖ୍ୟମେଇ ପଶିଲା ସେଇଠି ଆଗେ ।
ବିଷ୍ଣୁଙ୍କ ଘରଣୀ ସରସ୍ୱତୀ ସିଏ
ପ୍ରକୃରତ ହେବ ସେଇଠି ସିଏ,
ବାଣୀଙ୍କ ତୁଣ୍ଡରୁ ଶୁଣି ବିଭୀଷିକା
ଅବିଶ୍ୱାସ ଅବା କରିବ କିଏ ?
ଆଲୋ ବିଭୀଷିକେ କେତେ ଅପରୂପ
ରଚି ତୁ କୌଶଳେ ଡରାଇ ଦେଉ !
ଅପରୂପ କିବା ଅରୂପ ଲେଖୁ ଲୋ
ମରଣ ଆଗକୁ କଢ଼ାଇ ନେଉ ।
ବିଭୀଷିକେ କ'ଣ କୋକୁଆ ସତରେ
ତୋର କ'ଣ ସତେ ଅଛି ଲୋ ରୂପ,
କିଏ ସେ ରଚିଛି କିବା ଖାଲି ମିଛ
ଛୁଆ ଡରାଇବା ପାଇଁ ତା କୋକ ।
ଡାଆଣୀ ଗୋସାଣୀ ଭୂତ ଚିରଗୁଣୀ
ବାଡ଼ ଠାକୁରାଣୀମାନଙ୍କ ଡର,
ଆଜି ବି ସଂସାରେ ବାସି ହୋଇ ନାହିଁ
ସବୁରି ମନରେ କରିଛି ଘର ।

କେତେ ଉରକୁଳା ଭେଟଣା ହୋଇଣ
ଅକାଳ ମରଣ ଆଣନ୍ତି ଡାକି,
ଯାଦବ ବଂଶଟା ତାଳବଣ ପରି
ତାକୁ ଖାଇବାକୁ ବସିଛୁ ଠାକି ?
ତୋର ଲୋ କୋଉଠି ଛଅଗୋଟା ଗୋଡ଼
ଛଅଗୋଟା ପକ୍ଷି ନଅଟା ଆଖି,
ଦନ୍ତ ଭିଡ଼ି ବୁଲି ମଣିଷ ଖାଉ ତୁ
ନଖେ ମୁଖେ ଥାଉ ରକତ ମାଖି ।
ହାଇଜା ବସନ୍ତ କଅଣ ଲୋ ତୁହି
ଉରାଇ ମାରୁଛ ପାଖକୁ ଡାକି,
ସତ ରେ ତୁ କଣ ମହାମାରୀଟାଏ
ରଖିବୁ ନାହିଁ ଲୋ କାହାକୁ ବାକି ।,
ବଡ଼ ଅଘଟଣ ବିକୃତ ଗଠନ
କିଏ ବା କାହିଁକି ଦେଲା ଲୋ ତୋତେ,
ଦେବ ଦୁରୁଜୟ ଯାଦବଙ୍କୁ କ୍ଷୟ
କରିବୁ କି ସତେ କହିଲୁ ମୋତେ ?
ଦଇବ ସର୍ଜନା ନୁହଇତ ଇଏ
ଭଉତିକ ରୂପ ନୁହେ ତ ତୋର,
ସୁରିରେ ତୋ ତନୁ ଗଢ଼ା ତ ନୁହେ ଲୋ
ଅଶରୀରୀ ନୁହେ ରୂପଟା ଘୋର ।
ବ୍ରହ୍ମଶାପ କ'ଣ ଧରିଲା ଶରୀର
କଦାକାର ହୋଇ ଉରାଇ ଦେଉ ।
ହେଉ ଉର କ'ଣ ଭେଳକି ଲଗାଇ
ଭେଟଣା କରି କି ମାରଇ ଆଉ ।
ଆଲୁଏ ପବନେ ଗତି କି ଲୋ ତୋର
ମାଟିରେ ଲାଗଇ ନାହିଁ ଚରଣ,
ତରତର ହୋଇ ପଳାଇ ପାରୁ ଲୋ
ଯିଏ ଦେଖେ ତାକୁ ଦେଉ ମରଣ ।

ମରଣଟା କ'ଣ ଏଡ଼େ ଭୟଙ୍କର
ଅମୃତ ସେ ପର୍ବ ହଏ ଚଖାଇ,
କଏ ଯେ ମରନ୍ତି ଅମୃତ ନ ଖାଇ
ଅମରାବତୀକୁ ପାଉନ୍ତି ଯାଇ ।
ମର୍ତ୍ତ୍ୟ ଓ ଅମର୍ତ୍ତ୍ୟ ଦୁହିଁଙ୍କ ଭିତରେ
ଅ, ଅକ୍ଷରଟି କେବଳ ଭେଦ,
ତାହାର ଲୋ ସତେ ଏଡ଼େ କରାମତି
ବ୍ୟପଗାତ କରି ହଏ ଲୋ ବେଦ ।
ଅଣ ଅକ୍ଷରରେ ଗଢ଼ା ତ ବ୍ରହ୍ମାଣ୍ଡ
ଅକ୍ଷର ମିଶିଲେ ହୁଅଇ ଧ୍ୱଂସ,
ତୁ କ'ଣ ସତରେ ସେହି ଅକ୍ଷର ଲୋ
ଧ୍ୱଂସ କରି ଦେବୁ ଯାଦବ ବଂଶ ?
ବାଶିଷ୍ଠିକେ ତୋର ଏ କି ଆଚରଣ
ଅବଳା, ଦୁର୍ବଳେ ଗ୍ରାସିଆ କରୁ,
ତୁ ଛାଟରେ କଆଁ ଅନ୍ଧାରେ ବୁଲୁ ଲୋ
ଭେଳକି ଲଗାଇ ନିଜେ ତୁ ଡରୁ ।
ଦ୍ୱାରକା ନଗରୀ ଜଗେ ସୁଦର୍ଶନ
ମାତ୍ର ନବଖଣ୍ଡ ହୁଏ ଲୋ ତହିଁ,
ସେହିଠାରେ ପୁଣି ଏତେ ନଷ୍ଟ ତୋର
ସେଥିପାଇଁ କ'ଣ ଡରୁ ଲୋ ତୁହି ?
କୃଷ୍ଣଙ୍କ ଆଖିରେ ଧୂଳି ପକାଇବୁ
ତିନି ଭୁବନକୁ ଦେଖନ୍ତି ଯିଏ,
ଯୋଜନଠେଇଁ ଯାହା ହୁଏ ଯେତେବେଳେ
ଦେଖନ୍ତି ସେ ମନା କରିବ କଏ ?
ତୁ ଅବା କି ଗ୍ରାର ଲୁଚି ରହିଥିବୁ
ଅନ୍ଧାରେ ବୁଲୁଛୁ ସେଇଥିପାଇଁ,
ସତ୍ୟଭାମା ତୋତେ ଦେଖି ସାରିଲେଣି
ସୁଦର୍ଶନ ଯିବ ତୋ ପଛେ ଧାଇଁ ।

ଦୂରଆଡ଼ ହେବ ଘୁଏଁ ଆଲୋକର
କୋଉଠି ଅନ୍ଧାର ରହିବ ନାହିଁ,
ମରଣକୁ ଯେବେ ଡର ଅଛି ତୋର
ଦ୍ୱାରକା ବରଜ ଚଳା ଲେ କାହିଁ ।

———

# ଅଭିଷିକାର ପ୍ରଚାର

ସତ୍ୟଭାମା—

ଶୁଣିଲୁଣି ଅପା ଦାରୁଣ ବାରତା
ଋଷିଏ ଦେଲେ ଗୋ ପିଲଙ୍କୁ ଶାପ,
ତାର କ'ଣ କିଛି ପ୍ରତିକାର ନାହିଁ
ମୁହଁ ତ ବଢ଼ାଇ ଅଛନ୍ତି ବାପ ।
ଗୁରୁ ଗଉରବ ମାନଲେ ତ ନାହିଁ
କାହାକୁ ତ ଠିକେ ଡରିଲେ ନାହିଁ,
ଋଷି ଯାଉଥିଲେ ତାଙ୍କ ବାଟେ ବାଟେ
ତାଙ୍କୁ ଥଟ୍ଟା କଲେ କଅଣ ପାଇଁ ?
ଋଷିଗୁଡ଼ାଙ୍କର କି ପିଲା କବିଲା
ସନ୍ତାନ ମମତା ଜାଣିବେ କାହୁଁ,
କପଟ ତାଙ୍କର ସତ ବଳନ୍ତ ଲୋ
ଅଭିଶାପ ଦେଲେ ମୁହଁକୁ ଚହୁଁ ।
ପିଲଙ୍କ ମନରେ ପଶିଛି ଛନକା
ଢଳିଲେଣି କଳା କାଠର ଭଳି,
ବାପ କ'ଣ ତାଙ୍କୁ ରଖିବେ ନାହିଁ ଲୋ
ବଅଁଶଟା ଯାକ ଯିବେ ଲୋ ଜଳି !
ପିଲଗୁଡ଼ାକ ତ ଠିକେ କଲେ ଥଟ୍ଟା
ଋଷି ବି ତ ଗଲେ ଧରମ ହୁଡ଼ି !
ଯାର ପ୍ରତିକାର କରିବେ ନାହିଁ ସେ
ଏଡ଼େ ବଡ଼ କୁଳ ଯିବ ଲୋ ବୁଡ଼ି ।

ତାଙ୍କ ଶକତି ତ ଦେବତା ଦୁର୍ଲ୍ଲଭ
ଋଷି ଅଭିଶାପ କେତେ ମାତର ?
ମୁଷଳ ଟା ଦେଖି ପିଲଗୁଡ଼ାକ ଗୋ
ହୋଇ ଯାଇଛନ୍ତି ବେଶୀ କାତର ।
ଦଧିଚିର ହାଡ଼ରେ ଗଢ଼ା ଯେଉଁ ବଜ୍ର
ତାଙ୍କୁ ମାରିଥିଲେ ଯେବେ ବାସବ,
ତାଙ୍କୁ ତ ସେ ପୁଣି ବୃଥା କରିଥିଲେ
ଭାଙ୍ଗିଥିଲେ ଦେବ ରଜା ଗରବ ।
କାଲି ରଜନୀରେ ଦେଖିଛୁ ଅଲକ୍ଷେ
ଲକ୍ଷରେ ଲୋ ଅପା ଭୀଷଣ କାୟା,
ବୁଲଇ ନଅରେ ପଶେ ଘରେ ଘରେ
ଘରଆଡ଼େ ତାର କଜଳ ଛାୟା ।
କାୟା କି ଛାୟା ସେ ବାରି ହେଉ ନାହିଁ
ଚଞ୍ଚଳ ସର୍ବଦା ନୁହେ ଲୋ ସ୍ଥିର,
ଶୁଭିଯାଏ ସତେ କଅଣ କହୁଛି
ଅବୁଝା ଅସ୍ପଷ୍ଟ ଅପା ସେ ସ୍ୱର ।
କେତେବେଳେ କାନ୍ଦେ କେବେ ବା ହସଇ
ସେଥିରେ ହୁଅଇ ଭୟ ସଞ୍ଚାର ।
କମ୍ପଇ ଲୋ ଘର ଥରିଯାଏ ଛାତ
ଶୁଣି ସେ ବିକଟ ଶବଦ ତାର ।
ଭୂମିକମ୍ପ କ'ଣ ହେଲା ଲୋ ରାତିରେ
ଶୁଣିନାହୁଁ ସତେ ତୁ ସେ ଶବଦ,
ଶୁଣିଥାନ୍ତୁ ଯେବେ ସ୍ଥିର କି ଥାଆନ୍ତୁ
ବସିଛୁ କି ଆଉ ହୋଇ ସ୍ତବଧ ?
ବସି ବସିକରି ଦେଖିଲି ସପନ
ସପନ ନୁହେ ତ ଅଦୃଶ୍ୟ ଦେଖା,
ପୁଣି ସେ ଦେଖାଟା ଅନ୍ତର୍ଦ୍ଧାନ ହୁଏ
ମୋର ଆଖିଦେଖାକୁ ସେହି ଅଦେଖା !

ଜାଣିପାରେ ନାହିଁ ସତକି କଳ୍ପନା
ମୁଣ୍ଡଟା ଭିତର ହୁଏ ଲୋ ଘାଣ୍ଟି,
ଅଭିଶାପର କି ପରିଣାମ ଏ ଲୋ
କାନ୍ଦୁରେ ବାତ୍ଯରେ ହେଉଛୁ ଗୁଣ୍ଠି ।
ଅନ୍ଧାରେ ବଶଇ କାଳିଆ ରୂପଟା
ଆଲୁଅରେ ଜମା ବଶଇ ନାହିଁ,
ସେଇସ୍ବାକୁ ଖାଲି ଭାବ ଭାବ କରି
ଗଡିଟା ପାକ ଲୋ ବସିଲେ ଗୃହ୍ନିଁ ।
କହୁ କାହିଁ ନାହିଁ ଶୁଣଇ ଶବଦ
କଏ ସେ କୋଉଠି କାନ୍ଦନ୍ତି ପରି,
କାନ ପାରି ବସି ଶୁଣଇ ଲୋ ଖାଲି
କାନ୍ଦଣା ଶବଦ ବଗାନୁସରି ।
ପୁଣି କେ ହସଇ ଖିଲିଖିଲିକରି
ଉପହାସ ସତେ କରେ କାହାକୁ,
ଯେତେ ମୁଁ ଖୋଜିଲି ଦେଖିବା ପାଇଁ ଲୋ
ଦେଖି ପାରିଲିନା କେବେହେଁ ତାକୁ ।
କୃଷ୍ଣ ଗଡପାକ ରହିଲେ କୁଆଡ଼େ
ମିଳିଲା ନାହିଁ ଲୋ ତାଙ୍କର ଦେଖା,
କଏ ସେ ଦେଖନ୍ତି ସେ ଅରୂପ ରୂପ
କଏ ବା ପଢ଼ନ୍ତା ଅଲେଖା ଲେଖା ?
ପେଚ୍ଛଟାଏ ଆସି ରହି ରହି କରି
ପାରିଜାତ ଗଛେ ବୋବାଇ ଦଏ,
ଶୁଭଇ ଲୋ ତାହା ବଡ଼ ବିକଟାଳ
ସତେକି ଖତାଇ ହେଉଛୁ କଏ ।
ସରଗର ଗଛ ଦେବତା ବାଞ୍ଛିତ
ପେଚ୍ଛଟାଏ କିଆଁ ବସିଲା ସତେ !
ଡର ମାଡ଼େ ଅପା ଅମଙ୍ଗଳ ହେବ
ଜଳଜଳ ହୋଇ ଦଶୁଛୁ ମୋତେ ।

ବୁଧୀ ଜାମୁ ଗଛେ ଘବଲ ପେଚୁଟା
ସକାଳୁ ଫୁଆଟା ମଲା ଲୋ ତାର,
ଅମଙ୍ଗଳ ପେଚୁ ବୋବାଇ ଦେଲା ଲୋ
ତେଣୁ ମୋତେ ବେଶୀ ମାଡ଼ୁଛ ଡର ।
ମୃଗଗୁଡ଼ାକ ଲୋ ମଚକଣ ସବୁ
ଗୋଟା ଗୋଟା ହୋଇ ପଡ଼ନ୍ତି ଖସି,
ବଳେଇଗୁଡ଼ାକ ଛୁଅଁନ୍ତ ନାହିଁ ଲୋ
ସେଇଠି ଚାଖରେ ଥାଆନ୍ତି ବସି ।
ଦେଖିଲୁ ଦେଖିଲୁ ଚଳପାକୁ ମୋର
କାଟିଦେଇଛୁ ମୋ ଅଳତା ଦାଡ଼,
ନଖ ବ କାଟିଛୁ ଖଟଚଳ ଯାକ
ଖୋଲି ଛାଡ଼ ଦେଇ କରିଛୁ ଗାଡ଼ ।
ଅନ୍ଧାର ଘଡରେ କାଉଟା ରଡ଼ିଲା
ଘଉ ଘଉ କରି ଚୂଲରେ ବସି,
ଅଣ୍ଡିରା ବଲୁଆ ଭୁକିଲା ଲୋ ଖାଲି
ମଡ଼କ କି ଆଉ ପଡ଼ିବ ଆସି ।
ବାଦୁଡ଼ିଗୁଡ଼ାକ ଚଇଁଚୁଆଁ ହୋଇ
ପିଜୁଳି ଗଛଟା ଯାଆନ୍ତି ବେଢ଼ି,
ଫଳଗୁଡ଼ାକ ଲୋ ଦୂର୍ ଦାର୍ ହୋଇ
ଘଡଟା ଯାକ ଲୋ ପଡ଼ଇ ଝଡ଼ି ।
ଗୋରୁଏ ଗୁହାଳେ ଥର ଥର କରି
ଚଡ଼ିଲେ ଲୋ ଅପା ବିକଳ ହୋଇ,
ଖାଇବାକୁ ଯାହା ଦିଆ ହୋଇଥିଲା
ଛୁଇଁ ନାହାନ୍ତି ଲୋ ଅଛନ୍ତି ଥୋଇ ।
ଯମୁନା ଜାହ୍ନବୀ ଗାଈଙ୍କ ଆଖିରୁ
ବହି ଯାଉଛି ଲୋ ଲୋତକ ଧାର,
କୋଉ ଦିନ ନାହିଁ ଆଜି ଲୋ ସାଧୁଆ
ଦୁଆରେ କାଟୁଛି ଲୁହାର ଗାର ।

ଶତଧନ୍ୱା ଯେବେ ବାପାଙ୍କୁ ମାରିଲ
ଏକ୍ଷପର ହୋଇଥିଲ ଉତ୍ପାତ,
ମୋର ତ ସାହସ ଉଡ଼ି ଯାଉଅଛୁ
କାହାର ଲୋ ଅଛୁ ଏଥକୁ ହାତ ।
ବଡ଼ ଚଟେଇଟା କାହୁଁ ଉଡ଼ିଆସି
ଘରରେ ଆସି ଲୋ ବସିଲ ଗୃଳେ,
ଏକା ଠାଆ କରେ ଛୁଅଟା ଆଲୁଅ
ମେଞ୍ଚାଟାଏ କର କଏ ସେ ଜାଳେ ?
ପୁଣି ଉଡ଼ି ଯାଏ ଫଡ଼ ଫଡ଼ ହୋଇ
ଆଲୁଅଗୁଡ଼ାକ ଧାଏଁ ଲୋ ଆଗେ,
ଉଡ଼ି ଗଲବେଳେ ହଣିଯାଏ ଅପା
ଶାଗୁଣା ଗୋଟାଏ ଉଡ଼ିଲ ବେଗେ ।
କୁଲପର ତାର ଛୁଅଟା ପକ୍ଷି ଲୋ
ସୁଉ ସୁଉ ଧାଏଁ ପଛେ ପବନ,
ସେ ଶବଦ ଯେବେ କାନରେ ବାଜିଲ
ଗୋଡ଼ୁଁ ହାତୁଁ ଗ୍ଲୁଡ଼ିଗଲ ଜୀବନ ।
ଗୋଟ୍ଟଏ ଗୋଡ଼ି ଲୋ ଠେଙ୍ଗା ପର ସବୁ
ବଗ ଗୋଡ଼ ପରି ପଛକୁ ଥାଏ,
ସମୁଦ୍ରରୁ କ'ଣ ସେଇଟା ଆସେ ଲୋ
ରାତରେ ଗାଆଁରେ କଅଣ ଖାଏ ?
କଳଜାଟା ମୋର ଥରଇ ଲୋ ଖାଲି
ଡାକିବାକୁ ବସେଁ ପାରଇ ନାହିଁ,
ନଦ ହେଲ ନାହିଁ ରାତଟା ଯାକ ଲୋ
ଛଟପଟ ହୋଇ ବସିଲି ଗୃହିଁ ।
ଦେଖିଛୁ କି ଅପା ଘର ପାହାନ୍ତାରେ
ପଶ୍ଚିମ ଆକାଶେ ବଡ଼ ଲଞ୍ଜାଏ,
ଲଞ୍ଜ ଲମ୍ବିଅଛୁ ଚନ୍ଦ୍ରବାଙ୍କ ଯାଏଁ
ତହିଁ ଜକ ଜକ ତାରା ପଞ୍ଝାଏ ।

ରାତ୍ର ଅଧରେ ଲୋ ଉଲୁକା ଗୁଡ଼ାଏ
ଆଗ ପଛ ହୋଇ ଆଲୁଅ କରି,
ଗଗନୁଁ ଖସିଲେ ଆସୁ ଆସୁ କାହିଁ
ପବନରେ ଲିଭି ଗଲେ କପରି ।
କୋଉଠି ଶୁଣିଛୁ ଅନ୍ଧାର ରାତ୍ରରେ
ଭଅଁ ଭଅଁ କରି ଭଅଁର ଉଡ଼େ,
କୋଉଠି ଦେଖିଛୁ ପୂର୍ଣ୍ଣିମାର ଗୃଧ
ରାତ୍ର ଥାଉଁ ଥାଉଁ ଗଗନେ ବୁଡ଼େ ?
ଏତେ ଅମଙ୍ଗଳ କାହିଁକି କହିଲୁ
ସତେ ଯଦୁବଂଶ ଯିବ କି ବୁଡ଼ି,
ନ ହେଲେ କାହିଁକି ଋଷିଶାପ ଦ୍ୟନ୍ତେ
ଢେଣ୍ଡାପୁଏ ବୁଦ୍ଧି ଯାଆନ୍ତେ ଛାଡ଼ି !
ଆମର ଭରସା ଏକା ସିନା କୃଷ୍ଣ
ଏତେ ଅମଙ୍ଗଳ ପାରିବେ ଜାଣି,
ଯାଦବେ କି ସତେ ତାଙ୍କ ମନ ଜାଣି
କାମକରି ତାଙ୍କୁ ଅଛନ୍ତି କିଣି ?
ରୁକ୍ମିଣୀ—ତାଙ୍କ ବାହା ସାହା କରି ଲୋ ଅଛନ୍ତି
ଆମରି ଆପଦେ ବିପଦେ ନାହିଁ,
କାହିଁକି ବୃଥାରେ ଡରୁଛୁ ଭଉଣୀ
ମିଛ ଅମଙ୍ଗଳ ଦୃଶ୍ୟକୁ ଚାହିଁ ।
ମାୟାଧର ଆମ ପରମ ଈଶ୍ୱର
ମଣୁଛି ଏ ସବୁ ତାଙ୍କରି ମାୟା,
ତାଙ୍କର ନଗରେ ମରଣ ପଶେନା
ସେ ଘରେ କି ଅଦେବତା ଛାୟା ?
ତେତେ ପରିହାସ କରନ୍ତି ଲୋ ସିଏ
କରିବାକୁ ତାହା ପାଆନ୍ତି ସୁଖ,
ତାଙ୍କ ପରିହାସ ଖେଳିବା ପାଇଁ ଲୋ
ସେଥିପାଇଁ କିଆଁ କରୁଛୁ ଦୁଃଖ ?

ସବୁ ଡର ଭୟ ସେହି ଘୁଞ୍ଚାଇବେ
କହ୍ନର୍ ସ୍ମୃତିରେ ନ ଥିଲେ ସିଏ,
ଏତେ ଲୁଟ୍ଖୁଟ୍ ତାଙ୍କର ଭର୍ତ୍ସଣୀ
ତାଙ୍କ ଛଡ଼ା ଆଉ କରନ୍ତା କଏ ?
ସବୁ ଅମଙ୍ଗଳ ମଙ୍ଗଳ ତାଙ୍କର
ଗୋବର୍ଦ୍ଧନକୁ ଯେ ପାରଲେ ଟେକ,
ଏଡ଼େ ପରାକ୍ରମୀ କଂସ ରଜା ପରା
ମରିଗଲା ଖାଲି ରୂପକୁ ଦେଖି ।
ପାଣ୍ଡବଙ୍କୁ କୋଳ ବିପଦ ପଡ଼ନ୍ତ
ତାଙ୍କୁ ତ ପୁରୁଣି ରଖିଲେ ସେହି,
ଗୁରୁଙ୍କୁ ଦକ୍ଷିଣା ଦେଲେ ମଲାପୁଅ
ଯମଘରୁ ପୁଣି ଜୀଆଇ ଦେଇ ।
ଛ'ଛଟା ଭାଇଙ୍କୁ କଂସ ମାରିଥିଲା
ଯମ ପୁଣି ଦେଲା ତାଙ୍କୁ ଫେରାଇ,
ଜରାସନ୍ଧ ପୁଣି ଲାଗିଲା ପଛରେ
ତାଙ୍କୁ ତ ସେ ପୁଣି ଦେଲେ ମରାଇ ।
ମହାଭାରତରେ କେବଳ ସାରଥୀ
ଜିଣିଲେ ସମର ଜାଣିତ ଥାଇଁ,
ତାଙ୍କର ଭରସା ଆମେ ତ ଲୋ ସବୁ
ଯାଦବ ତାଙ୍କର, ଡରୁ କ ପାଇଁ ?
ବାସବ ବରୁଦ୍ଧେ ତୋହରି ପାଇଁକ
ସରଗରେ ପଶି କଲେ ଗୋ କଳି,
ଋଷି ହାଡ଼ ଗଢ଼ା ବଜ୍ର ଅସ୍ତ୍ର ମାରି
ପାରିଲା କି ଇନ୍ଦ୍ର ତାଙ୍କୁ ଲୋ ବଳି ?
ଦେବ ରଜା ହାରି ଶରଣ ପଶିଲା
ଆସିଲା କ୍ଷେତ୍ରେ ପାରିଜାତକୁ ଧରି,
ଏଇନା ଭୁ କଅଁ ଯାଉଚ୍ଛୁଲୋ ସତେ
ଏହି କୁଲକ୍ଷଣଗୁଡ଼ାକୁ ଡରି ?

କେତେ ଉତପାତ ପଡ଼ିବ ରାଜ୍ୟରେ
କୃଷ୍ଣ ରଖିଛନ୍ତି ସବୁ ନିବାରି,
ଘୁର ଋଷି ଶାପ କଅଣ କରିବ
ଶ୍ରୀକୃଷ୍ଣ ଅଛନ୍ତି ଶାପ ତ ଘାରି !
ଲୁହା ମୂଷଳ ତ ଘଷା ସରିଲାଣି
ଭସିଗଲାଣି ତା ସାଗର ଜଳେ,
ଆଉ ଋଷି ଶାପ କଅଣ କରିବ
କୃଷ୍ଣଙ୍କ ଆଗରେ ଶାପ କି ଫଳେ ?
ଶ୍ରୀକୃଷ୍ଣ ମିଳିଲେ ଏତିକି ବେଳରେ
ବଦନରୁ ହସ ଯାଇଛି ମରି,
ଦୁଇ ଭାର୍ଯ୍ୟା ଉଠି ଚରଣ ବନ୍ଦିଲେ
ରୁକ୍ମିଣୀ କହିଲେ ହାତଟି ଧରି ।
"ଆଜି ସତ୍ୟଭାମା ଜରି ଯାଇଅଛି
ଅମଙ୍ଗଳ ସବୁ ଦେଖିଣ ସିଏ,
ଅଶରୀରୀ ରୂପ ବୁଲେ ଘରେ ଘରେ
ହସୁଛି କାନ୍ଦୁଛି ଅନ୍ଧାରେ କିଏ ।
କାଲି ରାତିଯାକ ନିଦ ନାହିଁ ତାର
ମନରେ ପଶିଛି ଦାରୁଣ ଦକା,
ତୁମେ ବି ରାତିରେ ଯାଇନା ତା ପୁରେ
ତୁମେ କ'ଣ ଆଉ ହୋଇଲ କି ଶଙ୍କା ?"
"ଛି ଛି ପ୍ରାଣେଶ୍ୱର ଆମେ ଯେ ଅବଳା
ଉଚିତ ହେଲା କି ତୁମର ନାଥ ?
ଆମର ମଙ୍ଗଳ ଅମଙ୍ଗଳ କାହିଁ
କାହାର ପାଇବ ଆମକୁ ହାତ ?
ଆଜି ସତ୍ୟଭାମା ମାନସୀ ନୁହଇ
ତାହାର ମନରେ ଋଷିଙ୍କ ଶାପ,
ଦେଇଛୁ ଦେଉଛୁ ଆହୁରି ବି ଦେବ
ତୁମେ ନ ଖମିଲେ ଦାରୁଣ ତାପ ।

ଆହେ ପ୍ରାଣନାଥ ଦଅ ହେ ଭରସା
ଉଶ୍ୱାସି ଦେଉ ମେ ମନର ଭର,
ତୁମେ ଡରଇଲେ କଏ ସେ ରଖିବ
ଅବଳା ରମଣୀ ହେବୁଁ ବା କାର ।"
"ଶ୍ରୀକୃଷ୍ଣ କହିଲେ ଗମ୍ଭୀର ହୋଇଣ
ତୁମେ ଦେଖ ଥରେ କହ ତ ସତ,
ସତ୍ୟଭାମା ତଙ୍ଗ ସତ୍ୟଭାମା କାମ
ସେଥିରୁ କଏ ସେ ପାଇବ ଅନ୍ତ ।"
ସତ୍ୟଭାମାର ତ ନୁହଇ ମୁଁ ଏକା
ଜଗତପାକର ମୁହିଁ ତ ସାଇଁ,
ଧନ ଗୃହ ଖାଲି ଚିନ୍ତା କରୁଥିବ
ଖାଲି ସତ୍ୟଭାମା ଭରସା ପାଇଁ ।
କାହିଁକି କରିବ କଥାଁ ନବାରିତ
ଯଦି ଅମଙ୍ଗଳ ହୁଅଇ କଛି,
ଖାଲି ଅମଙ୍ଗଳ ମଙ୍ଗଳ ତାହାର
ଏଗୁଡ଼ାକ ସବୁ ଭୀରୁତା ଛି ଛି ।
ଯାହା ଯେତେବେଳେ ହେବାକୁ ତେ ଥିବ
ନଷ୍ଟପ୍ରୁ ହୋଇବ ରୋକିବ କଏ ?
ଯିଏ ଅମଙ୍ଗଳ ମଙ୍ଗଳ କରିଛୁ
ତାର କଥା ସିନା ବୁଝିଇ ସିଏ ?
କେତେ ଅମଙ୍ଗଳ ନବାରିବ କହ
ମହାଭାରତରେ କରନ କସ ?
ଅମଙ୍ଗଳ ଗଲୁ ଦେଖ ଗୋ ନରେଖି
ମୋହର ବଂଶରେ ପଶିଛି ବଷ ।
ନବାରି ନବାରି ବୁଢ଼ା ହୋଇଗଲି
ଆଉ ମୁଁ ନବାରି ପାରିବ ନାହିଁ,
ନବାରିବ ଯେବେ ନବାରିବ କାଳ
ସେହି କାଳକୁ ମୁଁ ବସିଛି ଗୃହିଁ ।

କାଳର ପ୍ରଭାବ ଅଛି କାଳେ କାଳେ
ଆସଇ ଯେ ଯୁଗ ନାଁଆକୁ ଧରି,
ସତ୍ୟ ତ୍ରେତା ଗଲା ଦ୍ୱାପର ଚାଲିଛି
ଇଏ ବି ଏଥର ଯିବ ଗୋ ସରି ।
ଆସିଯିବ କଳି ଦେଇଯିବ ଦଳି
ତାକୁ କେଉଁପରି ମୁଁ ନିବାରିବି ?
ପୁଣି ସେ ସରିବ ଯୁଗ ବଦଳିବ
କହ ତ ଏଥିରେ ମୁଁ କି କରିବି ।
କରିବାର ଯାହା ସାରିଛି ମୁଁ କରି
ଆଉରି କିଛିଏ ରହିଛି ବାକି,
କାଳ ତା କରିବ ନଷ୍ଟଭ୍ରଷ୍ଟ କରିବ
ସେଥିପାଇଁ ବସିଲାଣି ସେ ଓଟାକି ।
ବର୍ତ୍ତମାନ ପାଇଁ ଆମେ ସବୁ ଦାୟୀ
ଭବିଷ୍ୟତେ କାର କି ଅଧିକାର,
ବର୍ତ୍ତମାନ ସୀମା ସରି ଆସିଲାଣି
ଅଳ୍ପଦିନେ ବଣି ଯିବ ତା ଗାର ।
ରୁକ୍ମିଣୀ—କୋକୁଆ ବୋଲଣ ଚଢ଼େଇ ଟୋଟାଏ
କଲାଣି ବହୁତ ଲୋକଙ୍କୁ ହତ,
ଦ୍ୱାରକାଟା ଯାକ ଚହଲ ପଡ଼ିଛି
ଶୁଣିକରି ସବୁ ଭୟେ ଚକିତ ।
ଛଅ ଗୋଟା ପକ୍ଷୀ ନଅ ଗୋଟା ଗୋଡ଼
ସେଥିରେ ଆଉରି ଛଅଟା ଆଖି,
ଏତେ ଜୀବଟା କୋଉଠୁଁ ଆସିଲା
କେହି ତ କୋଉଠି ନ ଥିଲ ଦେଖି ।
ଶ୍ରୀକୃଷ୍ଣ—ତୁମ ସତ୍ୟଭାମା- ଙ୍କର ଏ ପ୍ରକୃତି
ସେହି ଏକା ପୁଣି ତାହାର ସାକ୍ଷୀ,
ନିଜେ ଉରକୁଳୀ ଉରାନ୍ତି ସଭିଙ୍କି
କାହାକୁ ବୁଝାଇ ପାରିବ ରଖି !

କୋକୁଆ କୋକୁଆ ଖାଲି ଅମଙ୍ଗଳ
ସତ୍ୟଭାମାଙ୍କୁ ସେ ବସିଚ୍ଛି ଗୃହ୍ଣିଁ,
ସତ ଯନ୍ଦ ହୋଇ ଥାଏ ଗୋ ସୁନ୍ଦରୀ
ମାରବ ନଷ୍ଟପୁ ତୋହର ପାଇଁ ।

———

# ଯୁଗ ଶେଷ

ଧନ୍ୟ ସତ୍ୟଭାମା        ଚହ୍ନିଲ କି ଚହ୍ନ
ଘରେ ଓ ବାହାରେ କୋକୁଆ ଡର,
କୋକୁଆ ନୁହେ ସେ        ଯୁଗର ଶେଷ ଗୋ
ତାହାରି କରାଳ ମୂରତି ଘୋର ।
ଦ୍ୱାରକା ନଗରୀ        ଭୟେ ଥରି ଥରି
ପୁହାଇଲା ଣି ଜାଗର ଜାଳ,
କୋକୁଆ କୋକୁଆ        କେବଳ କୋକୁଆ
ସକଳେ ତ ହେଲେ ତାକୁ ହିଁ ଭାଳ ।
ତୁମ ପୋଥି ପତ୍ର        ଫିଟାଇ ଦେଖ ଗୋ
କୋକୁଆ କି ବଖ୍ଷିକା ସେ ଖାଳ,
ଛଳାଇ ତୁମକୁ        ଡରାଇ ଦେଉଛି
ଦେଖ ଥରେ ଭଲା ନୟନ ମେଲି ।
ଦ୍ୱାରକା ନଗରୀ        ମର୍ତ୍ତ୍ୟ ବଇକୁଣ୍ଠ
ସେଠି କି କୋକୁଆ ସେଠି କି ଭୟ ?
ତୁମେ ସରସ୍ୱତୀ        ଜ୍ଞାନ ବିଦ୍ୟାଦାତ୍ରୀ
ଦମ୍ଭ ଧରି ଟିକେ ରହ ଗୋ ଥୟ ।
ମାୟାଧର ତୁମ        ଚରଣ ଈଶ୍ୱର
ମାୟାରେ ଭୁଲାଇ ଦେଖାନ୍ତି ଛାୟା,
ସ୍ନେହ ଗୋ କୋକୁଆ        ହୋଇ ରଜନୀରେ
ଦେଖାଇ ଦେଉଛି କରାଳ କାୟା ।

ନାହିଁ ତା ଜୀବନ ନାହିଁ ପକ୍ଷୀ ଆକ୍ଷି
ନାହିଁ ତା ଚରଣ ନାହିଁ ଗୋ କଛୁ,
ତୁଚ୍ଛା ଅଦେହୀ ଯା ନାହିଁ ରୂପ ରେଖ
ତାକୁ ହିଁ ଦେଖି ଗୋ ଡରୁଛ ଛୁ ଛୁ ।
କୋକୁଆ ଜନ୍ତୁ ଯା ସତ କବା ମିଛ
ତୁମେ ପାରୁ ନାହିଁ ଏ କଥା ଜାଣି,
ତୁମେ ପର ଦେଖା ବିଷ୍ଣୁଙ୍କ ଘରଣୀ
ତିକାଳ ଦେଖ ଗୋ ନାଆଁଟି ବାଣୀ !
ଆଜ କେ ଦେଖିବ ଆଜ କେ ଜାଣିବ
ଖାଲ ବଖାଣିକା ନୁହଇ ସତ,
କେତୁଯା ଖୁରୁ ତ ଭେଟଣାରେ ମଲେ
କୋକୁଆଯା କଆଁ କରନ୍ତୁ ହତ !
ତୁମେ ଯେଉଁପରି ଡରିଲ ଗୋ ଦେବୀ
ଅନ୍ୟେ ଡରିଇଲ ତୁମଠୁଁ ବେଶୀ,
ଯେହ୍ନ ବର୍ଣ୍ଣିକା ଶତ ରୂପ ଧରି
ନରକ କାଳିମା ଦେଇଛୁ ଲେପି ।
ଡର ପରିହରି କର ଗୋ ବାରଣ
କୋକୁଆ ସଂହାର ଯିବେନ କେହ୍ନ,
କହିଲ ତ ଥରେ ସେ କେବଳ ଛାଇ
ନାହିଁ ଗୋ ପରଣ ତୁଚ୍ଛା ଅଦେହୀ ।
ଅଦେହୀର କାହିଁ ମରଣ ଅଛୁ ଗୋ
ଆତ୍ମା ବ ସେପରି ନାହିଁ ଗୋ ତାର,
ଦେହ ପର ମର୍ତ୍ତ୍ୟେ ଆତ୍ମାର କୁଆଡ଼େ
ଅଳପଦନର ଅସ୍ଥାୟୀ ଘର ।
ଆତ୍ମାକୁ ତ ତୁମେ ଡରୁନା କେବଳ
ଡରୁଛ ତାହାରି ଦେହଯା ଦେଖି,
ନାହିଁ ତାର ଦେହ ନାହିଁ ତାର ଆତ୍ମା
କହୁଛୁ ହୁଁ ସତ ରଖ ଗୋ ଲେଖି ।

ମାରିବାକୁ ଗଲେ ହେବ ଅମଙ୍ଗଳ
ଦ୍ୱାରକା ଗ୍ରାସିବ ବାରିଧି ଜଳ,
ପୁଅ ନାତି ସବୁ ହଣା ମରା ହୋଇ
ପୂରାଇବେ ନିଜ ନିଜର କାଳ ।
ଶ୍ରୀକୃଷ୍ଣ ଛାଡ଼ିବେ ତାଙ୍କ କଳେବର
ତୁମେ ଅନୁସରି ଯିବ ଗୋ ପରେ,
ଦ୍ୱାପର ସରିବ କଳି ପ୍ରବେଶିବ
ରାଜତ୍ୱ କରିବ ମରତପୁରେ ।
ବିବେକ ବାରଣ ମାନିଲେନି ବାଣୀ
ଅଦୃଷ୍ଟ ଲିଖନ ହେବ କି ଆନ,
କାଳର ଗତିକୁ ରୋକିବ ବା କିଏ
ଶ୍ରୀକୃଷ୍ଣଙ୍କ ସଙ୍ଗେ କିଏ ସମାନ ।
ତାଙ୍କ ଇଚ୍ଛା ହେଲା ଛାଡ଼ିବାକୁ ମର୍ତ୍ତ୍ୟ
ପୁଅ ନାତି ସହ ଯିବେ ସେ ଚାଲି,
ଦ୍ୱାରକା ବୁଡ଼ିବ ସାଗର ଗରଭେ
ଅନିରୁଦ୍ଧ ପୁଅ ରହିବ ଖାଲି ।
ବଜ୍ର ତାର ନାଆ ବଜ୍ରହୁଁ କଠିନ
କୋଳୁଆର ଭୟ ଛୁଇଁବ ନାହିଁ,
ଦ୍ୱାପର ଯୁଗର ସେହି ଅବଶେଷ
କଳି କରାମତି ଦେଖିବ ସେହି ।
ପରୀକ୍ଷିତ ତେଣେ ପାଣ୍ଡବ ବଂଶରେ
ରହିବେ ଏକାକୀ ହେବେ ସେ ରାଜା,
କଳି ଓ ଦ୍ୱାପର ଘଡ଼ି ସନ୍ଧି ବେଳେ
କେତେ ଦିନପାଇଁ ପାଳିବେ ପ୍ରଜା ।
ଯାଦବେ ଆସିଲେ ସଜବାଜ ହୋଇ
ହାତୀ ଘୋଡ଼ା ଚଢ଼ି ଯେ ଯାର ଝଞ୍ଜେ,
କୃଷ୍ଣ ବଳରାମ ଧରିଲେ ଆୟୁଧ
ଚଢ଼ି ତାଙ୍କ ରଥେ କରିଲେ ବିଜେ ।

ଶ୍ରୀକୃଷ୍ଣ ରଚିଲେ ଜାଣି ଶୁଣି ମାୟା
କୋକୁଆ ବୁଲିଲା ସମ୍ମୁଖ ଆଗରେ,
ଧାଇଁଲେ ସକଳେ ଅସ୍ତ୍ର ଶସ୍ତ୍ର ଧରି
ତାହାକୁ ମାରିବା ପାଇଁକ ବେଗେ ।
କୃଷ୍ଣ ହଳଧର ସଭିଙ୍କ ଆଗରେ
ପଛରେ ଯାଦବେ ଘୋଡ଼ାରେ ଚଢ଼ି,
ସାଗର ତରଙ୍ଗ ପରାଏ ଧାଇଁଲେ
ମାରିବେ କୋକୁଆ ଧକଲେ ବେଢ଼ି ।
ଦୃଷ୍ଟିର ବିକାର ନାହିଁ ତା ଆକାର
କପଟ ମିଛକୁ ମଣିଲେ ସତ,
ଜଣ ଜଣ କରି ପ୍ରତିଜ୍ଞା କରନ୍ତି
ସେହି ଏକା ତାକୁ କରିବ ହତ ।
ପବନକୁ ଖାଲି ହାଣନ୍ତି ମାରନ୍ତି
କାହିଁ ସେ କୋକୁଆ ବାଜିବ ଶର,
ବାଣ ମାରିଗଣେ ବରଷି ଯାଆନ୍ତି
ତର ତର କରି ଥରକୁ ଥର ।
ବାଜେ ନାହିଁ ଶର ମରେନା କୋକୁଆ
ଆଗରେ ଆଗରେ ଆତୁର ଧାଏଁ,
ଦେଖୁଁ ଦେଖୁଁ ଆଗେ କୋକୁଆର ଗୁଇ
କେହି ଦେଖଇ କି କୁଆଡ଼େ ଯାଏ ।
ଗୋଡ଼ାଇ ଗୋଡ଼ାଇ ଥକୁ ବ ନାହାନ୍ତି
କାଳ ତ ନେଉଛି ବାଟ କଢ଼ାଇ,
କୋକୁଆ ତ ନାହିଁ ଧାଏଁ ବିଭୀଷିକା
ନିଜ ନିଜ ମଧ୍ୟେ ହେବ ଲଢ଼ାଇ ।
ଗୋପ ବୃନ୍ଦାବନେ ଯମୁନା-ପୁଳିନେ
ହଜିଲା କୋକୁଆ କଦମ୍ବ ତଳେ,
ମାରିଲେ ମୂଷଳ ବଳରାମ କ୍ରୋଧେ
ଆତୁର ପିଟିଲେ ତାଙ୍କ ଲଙ୍ଗଳେ ।

ମୂଷଳ ଲଙ୍ଗଳ ବାଜିଲା କଦମ୍ବେ
ନିଗିଡ଼ି ପଡ଼ିଲା ତହିଁରୁ ରସ,
ବଳରାମ ତହୁଁ ପିଇ ଦେଲେ ପେଟେ
ନିରସ ମୁହଁଟା ହେଲା ସରସ ।
କାଦମ୍ବରୀ ରସ ଉଗ୍ର ମାଦକ ସେ
ତାଙ୍କ ଦେଖା ଦେଖି ପିଇଲେ ସର୍ବେ,
ଉନ୍ମତ୍ତ ହୋଇଲେ ଜ୍ଞାନ ହରାଇଲେ
କୋକୁଆ କୋକୁଆ ଘୋଷିଲେ ଗର୍ବେ ।
ହଜିଲା ବିବେକ ବୁଲିଲା ମସ୍ତକ
ଧାଇଁଲେ କେବଳ କୋକୁଆ ପଛେ,
ବଳରାମ ଏକା ହରାଇଲେ ପ୍ରାଣ
ଆଉଜି ପଡ଼ିଲେ କଦମ୍ବ ଗଛେ ।
ଶ୍ରୀକୃଷ୍ଣ ପେଶିଲେ ସୁଦର୍ଶନ ଚକ୍ର
କୋକୁଆ ଗୋଟାକୁ ମାରିବା ପାଇଁ ।
କୋକୁଆ କାହିଁ ସେ ସଂହାରିବ ଚକ୍ର
ସୁଦର୍ଶନ ଗଲା ଫେରିଲା ନାହିଁ ।
ଶ୍ରୀକୃଷ୍ଣଙ୍କର ଏ ଛଳ ଛଦାରମ
ଏ କଥା କାହିଁକି ଜାଣିବ କିଏ ?
ଲୋକ ଭୁଲାଇବା ପାଇଁକି କେବଳ
କୋକୁଆ ପଛରେ ଧାଆନ୍ତି ସିଏ ।
କୋକୁଆ ଦଉଡ଼ି ଦଉଡ଼ି ପଶିଲା
ପ୍ରଭାସ ସାଗର ନଳ ବଣରେ,
ଯାଦବ ଖୋଜିଲେ ଅନ୍ଧ ସନ୍ଧି ସବୁ
କୋକୁଆ ଲୁଚିଲା କେଉଁ କଣରେ ।
ଯାଦବେ ଦେଖିଲେ ଯାଦବଙ୍କୁ ପୁଣି
ଭେଳକି ବଶରୁ କୋକୁଆ ପରି,
ନଳକୁ ଉପାଡ଼ି ପିଟାପିଟି ହେଲେ
ନିଜ ମାଡ଼େ ନିଜେ ପଡ଼ିଲେ ମରି ।

ଲୁହା ଷର ଖାଇ ନଳ ବଢ଼ିଥିଲା
ତେଣୁ ନଳ ନୁହେ ଝାଣ ଶାବଳ,
ତା ମାଡ଼ରୁ କିଏ ଉବୁର ବା ଯିବ
କାଳ ତ ଓଝାର ନେଇଛୁ ବାଳ ।
ସବା ଶେଷେ କୃଷ୍ଣ ସୁଦର୍ଶନ ପେଶି
ଛେଦିଲେ ପଦ୍ମନ ଶିର କମଳ,
ଝର ଝର ହୋଇ ବହିଲା ଆଖିରୁ
ବଡ଼ପୁଅ ପାଇଁ ଲୋତକ ଜଳ ।
ବିକଳେ ଶ୍ରୀକୃଷ୍ଣ ଶିଆଳି ଲତାର
ଘନ କୁଞ୍ଜ ବନେ ପଶିଲେ ଯାଇଁ,
ଅଶ୍ୱତ୍ଥ ତରୁଏ ଥିଲା ତା ଭିତରେ
ତାର କଣଲସୁ ଦଳ ଦେଖାଇ ।
ଜରା ଆସିଥିଲା ପାରିଧିକ ତାର
ସେହି ଲୁହାବସା ଶରଟା ନେଇ,
କୃଷ୍ଣ ପାଦ ମଣି ହରିଣର କାନ
ଶର ବନ୍ଧ ଦେଲା ଗୁଣ ବଯାଇ ।
ବାଜିଲା ପାଦରେ ଶ୍ରୀକୃଷ୍ଣ ବ୍ୟଥିତ
ଶବର ଆସିଲା ପାଶକୁ ଧାଇଁ,
କାନ୍ଦିଲା ବିକଳେ ଗଡ଼ି ଧୂଳି ପରେ
କୃଷ୍ଣଙ୍କ ମୁହଁକୁ କେବଳ ଚାହିଁ ।
ଶ୍ରୀକୃଷ୍ଣ କହିଲେ ପୂର୍ବ ଜନ୍ମ କଥା
ଚେତାଇ କହିଲେ ଅଙ୍ଗଦ ତୁହି,
ରାମ ଅବତାରେ କିଷ୍କିନ୍ଧ୍ୟାରେ ପଶି
ତୋ ବାପକୁ ମାରିଥିଲି ରେ ମୁହିଁ ।
ପିତୃ ଋଣ ତୁଟେ ସୁଝିଲୁ ଶବର
କାହିଁ ତୁ କରୁଛୁ ସେଥିକୁ ଦୁଃଖ,
ଭକତର ପାଇଁ ମୋ ଜୀବନ ସିନା
ଭକ୍ତର ସୁଖରେ ମୋର ତ ସୁଖ ।

କେତେ ଦୁଃଖ ସହି ଲଙ୍କାରେ ମୋ ପାଇଁ
କରିଥିଲ ତୁମେ ବହୁତ କାମ,
ମୋ ହୃଦ ଭିତରେ ଏବେ ବି ଲେଖିତ
ହନୁ ଓ ଅଙ୍ଗଦ ଦୁଇଟି ନାମ ।
ଯାଅ ରେ ବନ୍ଧନ କର କାମଟିଏ
ଅର୍ଜୁନଙ୍କୁ ଟିକେ ଆଣିବୁ ଡାକି,
ସେ ମୋହର ପ୍ରିୟ ପରମ ଭକତ
ତାର ଲାଗି ଜୀବ ରହିଛୁ ବାକି ।
ଯୁଗ ସରିଅଛୁ ମୋ କାମ ସରିଛି
ତାର ଲାଗି କିଛି ରହିଛି ଖାଲି,
ତାକୁ ହିଁ ସେବକ କହି ଦେଇ କରି
ଦେହ ତ୍ୟାଗକରି ଯିବି ମୁଁ ଚାଲି ।

———

# ସ୍ୱର୍ଗାରୋହଣ

ବାଡ଼ବ ଜଳନ୍ତି କିବା ବାରିଧି ଗରଭେ,
ଧୂମ୍ର ରାଶି ଆଚ୍ଛାଦିଲା ଅତର୍କିତେ ନଭେ ।
ଆଗ୍ନେୟ ଭୂଧର ଦ୍ରବ ଗୈରିକ ତରଳ,
ପ୍ରବାହିତ ସ୍ରୋତେ ସ୍ରୋତେ କ୍ଷିପ୍ର ଅବିରଳ ।
ଅପରାହ୍ଣ ବସନ୍ତର ଶୁକ୍ଳା ଚତୁର୍ଦ୍ଦଶୀ,
ଧରଣୀ କୁହେଳି ଘେରା ନାହିଁ ରବି ଶଶୀ ।
ଅଦୃଶ୍ୟ ରବିର କର, ଅଦୃଶ୍ୟ ଅମ୍ବର,
ଗର୍ଜୁଅଛି ମହାସିନ୍ଧୁ କ୍ରୋଧେ ପ୍ରଭାସର ।
ତରଙ୍ଗ ଉଚ୍ଛଳ ଉଗ୍ର ଫେନରେ ଫେନିଳ,
ସୁନୀଳ ସଲିଳ ବକ୍ଷ ଅସ୍ଥିର ଫଙ୍କିଳ ।
ଘନ ଘନ ପ୍ରଭଞ୍ଜନ କରେ ଗରଜନ,
ବିଶ୍ୱ ଚରାଚର କିବା କରିବ ଭଗନ ।
ଭୂକମ୍ପନ ମୁହୁର୍ମୁହୁଃ ଥର ଥର ଥର,
କମ୍ପେ ଧରା କଳେବର ସହ ପାରାବାର ।
ଉଦ୍‌ବେଳ ଫେନିଳ ସିନ୍ଧୁ ଧୌତ କରେ ବେଳା
ପ୍ରଭାସ ପୁଲିନେ ତାର ଉଗ୍ରତମ ଖେଳା ।
ଖେଳରେ ଖେଳନ୍ତର ଗ୍ରାସି ଦ୍ୱାରକା ନଗରୀ,
ଶ୍ମଶାନ କରିଦେବ କି ଉଚ୍ଛଳ ଲହରୀ ?
ପ୍ରାବୃଟ ଅମା ରଜନୀ ଯିବ କି ସଞ୍ଚରି,
ସାଗର ଆସଇ ଗ୍ରାସି ଭୀମ ରୂପ ଧରି ।

ଜଳଧି, ପ୍ରଶାନ୍ତ ହୁଅ, ହେନ ଅନୁରୋଧ,
ରେ ଅନଳ ସ୍ଥିର ହୁଅ, ସମ୍ବର ତୋ କ୍ରୋଧ ।
ସୁବିସ୍ତୀର୍ଣ୍ଣ ବେଳା ଭୂମି ଆଚ୍ଛାଦିତ ଶବେ,
ଅସଂଖ୍ୟ ବସ୍ତୁଚ୍ଛ ଦେଖ ଏ ତୋର ଗରଭେ ।
ଶେଷ ହୋଇ ନାହିଁ ତୋର ମାନବ ପାରଣା,
କାହିଁକି ଉଭସ୍ଥ ଆଜ ଏସନ ମାରଣା ?
ଜଗତର ମହାଦିବା ଦିନ ପ୍ରଳୟର,
ସେ ଦିନ କ ଉପସ୍ଥିତ ହେଲରେ ସାଗର ?
ତଟରେ ଶ୍ରୀକୃଷ୍ଣ ତୋର ଦେବ ବପୁ ଧରି,
ଦୁଃସାହସ ତୁ ବା ଆଜ କରୁଛୁ କପରି ?
ସରଜି ପାରିବୁ କି ରେ ତୁ ମହାପ୍ରଳୟ ?
ଗର୍ଜନା ରେ ବୃଥା ଏତେ ରହ ଧରି ଥୟ ।
କ୍ଷାନ୍ତ ଶାନ୍ତ ସୌମ୍ୟ ହୁଅ ଯାଅ ଅପସରି,
ଦୁଷ୍ଟ ଯାଦବ ବଂଶ ତ ଯାଇଅଛି ମରି ।
ଜଗତରେ ପାପ ତାପ ଲଭିଛି ସମାପ୍ତି,
ତୋ ତରଙ୍ଗ କରେ ସିଞ୍ଚି ଦିଅ ବାରି ଶାନ୍ତି ।
ରେ ନିର୍ଦ୍ଦୟ ! ଦେଖ ଥରେ ଆସେ କାଳ ରାତ୍ରି,
କରାଳ କାଳିମା ଲିପ୍ତ ତାର ଉଗ୍ରକାନ୍ତି ।
ମୁକ୍ତ କରି ଦେବୁ କି ରେ କଳି ପାଇଁ ଦ୍ୱାର,
ରେ ସାଗର କଳି କାଳ ତୋଠାରୁ କରାଳ ।
ଗ୍ରାସିବ ତୋ ସହ ଧରା ବିଶ୍ୱ ଚରାଚର ।
ସୃଷ୍ଟିର ସର୍ଜନା ହେବ ସବୁ ନାରଖାର ।
କ୍ଷାନ୍ତ ହୁଅ, ଶାନ୍ତ ହୁଅ, କଳିକୁ ଅନାଇ,
ଦ୍ୱାପର କି ଅନ୍ତ ହେବ କେବଳ ତୋ ପାଇଁ ।
ମାନିଲା ନାହିଁ ସାଗର ନାଚିଲା ତାଣ୍ଡବ,
ଦମ୍ଭୋଳି ଗର୍ଜିଲା ଦମ୍ଭେ ଭୀଷଣ ଆରାବ ।
ବରଜ ଗରଜ ବେଳା କରି ଦେଲା କ୍ଷୟ,
ସଞ୍ଚାରି ଦେଲା ଗର୍ବେ ପ୍ରଳୟର ଭୟ ।

ଦ୍ୱାରକା ମଜ୍ଜିଲ ଜଳେ ରୁକ୍ମଣୀ ମନ୍ଦିର,
ପ୍ରଳୟ ପୟୋଧି ଜଳେ ଅଚଞ୍ଚଳ ସ୍ଥିର ।
ରହସ୍ୟ ଦ୍ୱାରକା ଗଲା ଜଳ ସ୍ରୋତେ ଭାସି,
ଅଧିକ ଦୁର୍ଦ୍ଦିନ ହେଲା ପ୍ରଳୟର ବାସି ।
ଶ୍ରୀକୃଷ୍ଣ ଦେହ ବରଜ ଭଜିଲେ ଶ୍ମଶାନ,
ଦୁର୍ଦ୍ଦିନେ ଦ୍ୱାପର ଯୁଗ ହେଲା ଅବସାନ ।
କୋକୁଆ କୋକୁଆ ଭୟ ହୋଇଗଲା ଲୀନ,
ଜଗତରେ ସୃଜିଗଲା ଗୋଟାଏ ଦୁର୍ଦ୍ଦିନ ।
ଏ ଦିନଟି ବହୁ ଯୁଗୁ ହୋଇଛୁ ଅଜ୍ଞାତ,
ପୁରାଣେ ସଂସାରେ କାହିଁ ହେଉନ ପାଳିତ
କି କୁକ୍ଷଣେ ଋଷିମାନେ ଆସିଲେ ଦ୍ୱାରକା,
ଶାପ ଦେଇ ରଚିଗଲେ ଭୀମ ବିଭୀଷିକା ।
ବିଭୀଷିକେ ତୋ ବିଗ୍ରହ କେତେ କୋ କରାଳ,
ଦିନକେ ଯାଦବଙ୍କର ପୂରିଗଲୁ କାଳ ।
ଯାଦବ କୁଳର ତୁ ଲୋ ହେଲୁ ମହାମାରୀ,
ତୋର ସହ ସହଯୋଗୀ ବାଣଧର ବାରି ।
ସହଯୋଗ ପରିଣାମ ହୁଏ କି ଏସନ,
ବିଭୀଷିକେ ! ତୋ ଚରଣେ କୋଟିଏ ପ୍ରଣାମ ।

———

# ଜରାଶବରର ହସ୍ତିନା ପ୍ରବେଶ

ଜରା ଶବର ଖେଦ ଭରେ । ମିଳିଲା ହସ୍ତୀନା ନଗରେ ॥
କହିଲା ପାଣ୍ଡବଙ୍କ କତ । କାନ୍ଦଣା କରୁଣ ଭାରତ ॥
ଶୁଣ ଅଖଣ୍ଡ ମହୀପତି ! ଦାରୁଣ କାମ କଲି ଅତି ॥
ପାରଧି ପାଇଁ ଗଲି ବନେ । ହରିଣ ମଣି ଭ୍ରାନ୍ତ ମନେ ॥
ବିନ୍ଧିଲି ଲୁହା ଶର ଧରି । କୃଷ୍ଣ ଚରଣେ ଗଲା ଗଳି ॥
ଶୁଣିଲି ନର କଣ୍ଠ ଶବ୍ଦ । ହେଲି ମୁଁ ଚକିତ ସ୍ତବଧ ॥
ଧାଇଁ ଦେଖିଲି ବୃକ୍ଷ ମୂଳେ । ଶ୍ରୀକୃଷ୍ଣ ଲୁଠନ୍ତି ଆକୁଳେ ॥
ବସିଲି କରିବି ବିଶଲ୍ୟ । ଶୁଣିଲି ତାଙ୍କର ବୈକଲ୍ୟ ॥
ବାରଣ କଲେ ଯଦୁବୀର । କହିଲେ, "ତୁଅନା ଶରୀର ॥
"ତୁ ମୋର ପରମ ଭକତ । ତ୍ରେତାରେ ବାଳି ରଜା ସୁତ ॥
"ମୁଁ ତୋର ପିତା ଶତ୍ରୁ ଜାଣ । ପିତାର ତୁ ମୁକ୍ତି କାରଣ ॥
"ତୋହର ତିଳେ ଦୋଷ ନାହିଁ । ବସି ମୁଁ ଥିଲି ତୋତେ ଗୃହିଁ ॥
"ହସ୍ତୀନା ଯାଇ ତୁ ବହନ । ଆଣ ମୋ ପ୍ରିୟ ଅରଜୁନ ॥
ଆସିଲେ ସେ ହେବ କାରଣ । କରିବ ବାଣ ବିମୋଚନ ॥"
ହେ ମହୀ ପତି ଦୟାକର । ପଠାଅ ପାର୍ଥ ଧନୁର୍ଦ୍ଧର ॥
ପାଣ୍ଡବେ ହୋଇଲେ ହତାଶ । ହୃଦୁ ବହିଲା ଶୋକୋଚ୍ଛ୍ୱାସ ॥
ସକଳେ କାନ୍ଦିଲେ ବିକଳେ । ଅର୍ଜୁନ ଗଡ଼ି ଭୂମି ତଳେ ॥
ବାହନ ସଖା ସଖା କହି । ବକ୍ଷ ତାଡ଼ିଲେ ଖେଦ ବହି ॥
ଯୁଧିଷ୍ଠି ନୀରବ ନିଶ୍ଚଳ । ନୟନୁ ବହେ ଅଶ୍ରୁଜଳ ॥
ଭୀମ କେଶରୀ ସମ ଗର୍ଜି । ଜରାକୁ ମାରିବାକୁ ତର୍ଜି ॥

ଆସିଲେ ହାତ ମୁଠାଙ୍କର । ମନ୍ତ୍ରୀ ରୋକଲେ ହାତ ଧରି ॥
ନକୁଳ ପରମ କାତର । ନିଃଶ୍ୱାସ ବହେ ଖରତର ॥
ସହଦେବ ଭବିଷ୍ୟ ଜ୍ଞାତା । ସେହି କେବଳ ସ୍ଥିର ଚେତା ॥
ଦ୍ରୌପଦୀ ଶୋକେ ଅଚେତନ । ସୁଭଦ୍ରା ଦେବୀ ବି ତେସନ ॥
ଯୁଧିଷ୍ଠି ସହଦେବ ଗୃହିଁ । ପୁଛିଲେ କହିବୁଟି ଭାଇ ॥
ଶ୍ରୀକୃଷ୍ଣ ଅଛନ୍ତି ଟି ଭଲେ । ଦେଖିବ ଟିକ ପାର୍ଥ ଗଲେ ?
ସହଦେବ ହାତକୁ ଗୃହିଁ । କହିଲେ ଦେଖିବେ ହେ ଭାଇ ॥
ପାର୍ଥଙ୍କୁ କରନ୍ତୁ ବାରଣ । ଛୁଇଁବେ ନାହିଁ କଦାଚନ ॥
ଛୁଇଁଲେ କୃଷ୍ଣ ଯିବେ ଚଳି । ପଶିବ ଭବେ ଘୋର କଳି ॥
ପାର୍ଥଙ୍କଠାରୁ ନେଇବ କଳା । ବୈକୁଣ୍ଠେ ଯିବେ ନନ୍ଦ ବଳା ॥
ଅର୍ଜୁନ ଶୁଣି ସବୁ କଥା । ନୁଆଇଁ ଦେଲେ ତାଙ୍କ ମଥା ॥
ବହିଲା ଧାର ଧାର ଲୁହ । ସମ୍ଭାଳି ପାରିଲେନ କୋହ ॥
କହିଲେ ସଖା ଉପକାର । କଲ ଯେ ଅଶେଷ ପ୍ରକାର ॥
ଏକଣ ପ୍ରତି ଉପକାର । କରିବ ଅର୍ଜୁନ ତୁମର ॥
ରହିଥିବ ଟି ଯିବା ଯାଏ । ମୋ ମନ ଆଗେ ଆଗେ ଧାଏଁ ॥
ଅର୍ଜୁନ ତୁମର ଶରଣ । ପାଇ ଧନ୍ୟ ହେ ଜନାର୍ଦ୍ଦନ ॥
ଜ୍ୟାଇଛ ମରଣରୁ କେତେ । ମୁଁ ଗଲେ ଜଇବଟି ସତେ ॥
ଆହୁରି ମାଗଇ ଶରଣ । ଭରସା ମୋର ତୋ ଚରଣ ॥
ସେହି ଶ୍ରୀପଦ ଶରାହତ । କହ ମୁଁ କି କରିବ ନାଥ ॥
ମୋର ଶିର କି କାଟି ଦେଲେ । ଚରଣ ସୁସ୍ଥ ହେବ ଭଲେ ॥
ଯାଇଛି ଯାଉଛି ମୁଁ ସଖା । ରଖିବ ସେ ଚରଣେ ମଥା ॥
କରିବ ବିଶଲ୍ୟ ମୁଁ ଧରି । ଗଲେ ପଛକେ ଯିବ ମରି ॥
କୋଉ କଥାକୁ ନାହିଁ ଭୟ । ତୁ ମୋ ଶରଣ ଦୟାମୟ ॥
ନିଅ ପଛକେ ମୋଠୁଁ କଳା । କୁଶଳ ରହ ନନ୍ଦବଳା ॥
କୃଷ୍ଣ ଜୀବନ୍ତ ଦେହ ଧରି । ଲୋଡକ ଯାଉଅଛୁ ଝରି ॥
ଅର୍ଜୁନେ ଦେଖି ଦୁଃଖ ଭୁଲି । କହିଲେ ସଖା ନିସ୍ତରିଲି ॥
ଶର ଜ୍ୱାଳାରେ ଜଳେ ଦେହ । ଛୁଟାଇ ନିଅ ମୋଠୁଁ ମୋହ ॥
ବେଗେ ଉଦ୍ଧାର କର ଶର । ସୁସ୍ଥ ହେଉ ମୋ କଳେବର ॥

ଅର୍ଜୁନ ଛୁଉଁ ଛୁଉଁ ତନୁ । ରଥକ ଆସିଲା ଗଗନୁଁ ॥
ଜବ ଶ୍ରୀକୃଷ୍ଣ ଏକା ରଥେ । ଚଳିଲେ ବଇକୁଣ୍ଠ ପଥେ ॥
ଅର୍ଜ୍ଜୁନ ଠାରୁ କଳା ନେଇ । ବୈକୁଣ୍ଠେ ଗଲେ ଭୁବଗ୍ରାହୀ ॥
ସେହି ଗାଣ୍ଡୀବ ସେହି ପାର୍ଥ । ତୋଳିବା ପାଇଁ ଅସମର୍ଥ ॥
ଟେକିଲେ ବେନି ହାତ ଦେଇ । ଶିରେ ଥୋଇଲେ ଧନୁ ନେଇ ॥
ସର୍ବେ ଚଳିବେ କାଳ ବଳେ । କଥା ରହିବ ମହୀତଳେ ॥
କୃଷ୍ଣ ରହିବେ କାଳେ କାଳେ । ସବୁର ମନେ ଦେବ ଆଲେ ॥
ଶ୍ରୀକୃଷ୍ଣ ନାମ ଜପି ଜପି । ବୈକୁଣ୍ଠେ ଯିବେ କେତେ ତପୀ ॥
ପାପୀଏ କରି ବହୁ ପାପ । ଅନ୍ତେ ଶ୍ରୀକୃଷ୍ଣ କରି ଜପ ॥
ନାଶିବେ ପାପର ସନ୍ତାପ । ନାମର ମହିମା ଅମାପ ॥
ଚଳିବ ଯେବେ ସ୍ୱର୍ଗେ ହସି । ଜପୁଥା କୃଷ୍ଣ କୃଷ୍ଣ ବସି ॥
ସରିବ ପରମାୟୁ ଯେବେ । ସ୍ମରିବ କୃଷ୍ଣ ନାମ ତେବେ ॥

ଯାଅ ପାପୀ ତାପୀ ଦ୍ୱାରକା ଦେଖି,
ଚିତ୍ରଗୁପ୍ତ ଅଛି ଯେ ପାପ ଲେଖି ।
ପୋଛି ହୋଇଯିବ ପାଞ୍ଜିରୁ ତାର,
ସ୍ଥାନର ମହିମା ଗୁଣ ଅପାର ।
ନାମାବଳୀ ଖଣ୍ଡେ ବେକରେ ପକା,
ଯମର ଦୂତକୁ ମାରିବ ଧକ୍କା ।
ଦ୍ୱାରକା ଛୁପାରେ ତିଳକ ବୋଳ,
ଦେହରେ ଛୁପରେ ଉକତ କର ।
ଚଢ଼ିବରେ ସବୁ ଦେବତା ରଥ,
ମୁକୁଳା ହୋଇବ ସରଗ ପଥ ।
ଲେଖକକୁ ବାଟ ଦଶିଛ ନାହିଁ,
ଶ୍ରୀକୃଷ୍ଣ ଜପୁଛି ଦେଖିବାପାଇଁ ।
ଘଢ ଜୀବନଟା ନୁହଇ ଝିଲ,
ପାପକୁ କରଇ ଶୁଣାଏ ସଲ୍ୟ

———